# ଜୀବନ ଅନ୍ୱେଷା

ଲେଖକ :
ଅଧ୍ୟାପକ ଧନେଶ୍ୱର ସାହୁ



ପ୍ରକାଶନ ଉପଦେଷ୍ଟା :
ବିନୋଦ ବିହାରି ବିଶୋଇ
ମୋ: ୯୯୩୭୬୯୪୭୮୧

ପ୍ରକାଶକ :
ଜ୍ଞାନଯୁଗ ପବ୍ଲିକେଶନ୍
ଏନ୍-୬/୪୨୮, ଆଇ.ଆର୍.ସି. ଭିଲେଜ୍
ନୟାପଲ୍ଲୀ, ଭୁବନେଶ୍ୱର - ୧୫
ଫୋନ୍ ନଂ : ୦୬୭୪-୨୩୬୨୦୯୧

ଡି.ଟି.ପି
ଅଚ୍ୟୁତାନନ୍ଦ ମହାରଣା
ଡିଙ୍ଗର, ଖୋର୍ଦ୍ଧା, ୭୫୨୦୬୨
ମୋ: ୮୩୪୨୦୧୫୦୮୪

ମୁଦ୍ରଣ :
କ୍ରିଏଟିଭ୍ ଅଫ୍‌ସେଟ୍,
ଭୁବନେଶ୍ୱର - ୭୫୧୦୧୫

ପ୍ରଥମ ପ୍ରକାଶ : ୨୦୧୬

ପ୍ରଚ୍ଛଦ : ସମର

ମୂଲ୍ୟ : ଟ.୩୦୦.୦୦

# JEEVAN ANWESHA

Writer
**Dhaneswar Sahoo**



*Publisher's Adviser :*
**Sri Binod Bihari Bisoi**
Mob. : 9937694781

*Publisher :*
**Gyanajuga Publication**
N-6/428, I.R.C. Village
Nayapalli, Bhubaneswar-15
Phone : (0674) 2362091

*TypeSetting :*
**Achyutananda Maharana**
Dinger, Khurda - 752062
Mobile : 8342015084

*Printer :*
**Creative Offset**
Bhubaneswar-15

First Edition—**2016**

Cover : **Samar**

Price : Rs.300.00

---

Published by Srimati Susama Bisoi on behalf of Gyanjug Publication, N-6/428, IRC Village, Nayapalli, Bhubaneswar-751015, Odisha, Ph. : (0674) 2362091

# ଉତ୍ସର୍ଗ

ଜେଜେ,

ମୁଁ ଦୁନିଆର ଆଲୋକ ଦେଖିବା ପୂର୍ବରୁ ତୁମେ ଆଖି ବୁଜି ସାରିଥିଲ । ହେଲେ ତୁମ ସମୟର ଓ ତୁମକୁ ଜାଣିଥିବା ଭୁବନ ଗ୍ରାମର ଅନେକ ଲୋକଙ୍କ ମୁହଁରୁ ମୁଁ ତୁମର ବହୁ ପ୍ରଶଂସା ଶୁଣିଛି । ତୁମେ କୁଆଡେ ଥିଲ ଜଣେ ସତ୍ୟନିଷ୍ଠ, ଉଦାର ଓ ସମ୍ବେଦନଶୀଳ ମଣିଷ ।

ଏବେ ଜ୍ଞାନ ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ବିକାଶ ଯୋଗୁ ଜୀବନକୁ ସୁଖମୟ କରିବାର ବହୁ ସାମଗ୍ରୀ ଆମ ଚାରିପାଖରେ ଉପଲବ୍ଧ । ତଥାପି ସାମାଜିକ ଜୀବନରେ ନାନା ଅଶାନ୍ତି ଦୃଷ୍ଟିଗୋଚର ହୁଏ । ଜନଜୀବନରେ ସତ୍ୟନିଷ୍ଠତା, ଉଦାରତା ଓ ସମ୍ବେଦନଶୀଳତାର ବିକାଶ ହେଲେ ଜୀବନ ଯଥାର୍ଥରେ ସୁଖମୟ ହୋଇପାରିବ ।

ମୋ ଜେଜେ ଭିକାରି ସାହୁ ଓ ଦୁନିଆର ସତ୍ୟନିଷ୍ଠ, ଉଦାର ଓ ସମ୍ବେଦନଶୀଳ ମଣିଷଙ୍କ ହାତରେ ଏହି ପୁସ୍ତକଟିକୁ ଉତ୍ସର୍ଗ କରୁଛି ।

-ଲେଖକ

# ମୁଖବନ୍ଧ

ଏହି ପୁସ୍ତକଟିରେ ରହିଛି ଶହେଟି ବିଚାରଧର୍ମୀ ପ୍ରବଂଧ । 'ପ୍ରଗତିବାଦୀ' ସମ୍ବାଦ ପତ୍ରରେ ଜୀବନ ଜିଜ୍ଞାସା ସ୍ତମ୍ଭରେ ମୁଁ ଲେଖିଥିବା ପ୍ରବଂଧ ଭିତରୁ ଶହେଟି ପ୍ରବଂଧର ଏହା ହେଉଛି ଏକ ସଙ୍କଳନ । ଏହା ପୂର୍ବରୁ 'ଜୀବନ ଜିଜ୍ଞାସା' ଶୀର୍ଷକରେ ମୋର ଏକ ପୁସ୍ତକ ଶହେଟି ପ୍ରବନ୍ଧକୁ ନେଇ ପ୍ରକାଶ ପାଇସାରିଛି । ସେହି ଧାରାରେ ଏହା ହେଉଛି ଏକ ଦ୍ୱିତୀୟ ପୁସ୍ତକ ସଙ୍କଳନ ଓ ଏଥିରେ ଆଉ ଶହେଟି ପ୍ରବଂଧ ରହିଛି ଓ ଏହାର ଶିରୋନାମା "ଜୀବନ ଅନ୍ୱେଷା" ରଖାଯାଇଛି । ପ୍ରବଂଧ ଗୁଡିକ ସମ୍ବାଦପତ୍ର ପାଇଁ ଲେଖା ଯାଇଥିବାରୁ ଏହାର କଳେବର ସୀମିତ ଓ ସୁନିର୍ଦ୍ଦିଷ୍ଟ । ତେବେ ଯେଉଁ ପ୍ରସଙ୍ଗ ଉପରେ ପ୍ରବନ୍ଧଟି ଉଦ୍ଦିଷ୍ଟ ସେଥିରେ ମୁଁ ମୋର ମତ ମୁକ୍ତ ଭାବରେ ବ୍ୟକ୍ତ କରିଥିବା ମନେହୁଏ । ଏହି ପ୍ରବନ୍ଧମାନଙ୍କୁ କ୍ରମାନ୍ୱୟରେ ପ୍ରକାଶ କରାନଯାଇ ଏହାକୁ ପ୍ରସଙ୍ଗ ଆଧାରରେ କେତୋଟି ସାଧାରଣ ଶ୍ରେଣୀରେ ବିଭକ୍ତ କରି ସ୍ଥାନିତ କରାଯାଇଛି । ପ୍ରବଂଧମାନଙ୍କୁ ଯେଉଁ ଦଶଟି ଶ୍ରେଣୀରେ ବିଭାଜିତ କରାଯାଇଛି ତାହା ହେଲା-ବ୍ୟକ୍ତି ଓ ବ୍ୟକ୍ତିତ୍ୱ; ଧର୍ମ ଓ ଦର୍ଶନ; ମାନବବାଦ; ନୈତିକତା; ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ; ସମାଜ ଓ ସାମାଜିକ ଦୃଶ୍ୟପଟ; ସଭ୍ୟତା, ସଂସ୍କୃତି ଓ ଭବିଷ୍ୟତ; ହେତୁବାଦ ବନାମ କୁସଂସ୍କାର; ଶିକ୍ଷା ଓ ଭାଷା; ପରିବେଶ ।

ପ୍ରବନ୍ଧମାନଙ୍କର ପ୍ରସଙ୍ଗ ଓ ବିଷୟବସ୍ତୁକୁ ଆଧାର କରି ସେମାନଙ୍କୁ ଏହି ଦଶଟି ଶ୍ରେଣୀ ଭିତରେ ସ୍ଥାନିତ କରାଯାଇଛି । ଏପରି ସ୍ଥାନିତ କରାଯିବାରେ ସେପରି କିଛି ନିର୍ଦ୍ଦିଷ୍ଟ ମାନଦଣ୍ଡ ଅବଲମ୍ବନ କରାଯାଇ ନାହିଁ । କେବଳ ସାଧାରଣ ସୁବିଧା ପାଇଁ ଏପରି କରାଯାଇଛି । ଏକ ନିର୍ଦ୍ଦିଷ୍ଟ ପ୍ରସଙ୍ଗ ସଂପର୍କିତ କେତେ ଗୁଡିଏ ସମଧର୍ମୀ ପ୍ରବନ୍ଧ ଥିବାରୁ ସେହି ପ୍ରତ୍ୟୟ ଉପରେ ଏକ ବିସ୍ତାରିତ ଚିତ୍ର ପାଠକ ପାଇପାରିବେ ବୋଲି ଆଶା କରୁଛି । ତେବେ ପ୍ରବଂଧ ଗୁଡିକ ବିଭିନ୍ନ ଅବସରରେ ଲେଖା ଯାଇଥିବାରୁ ହୁଏତ ଭାବନା ମାନଙ୍କର କାଁ ଭାଁ ଆଂଶିକ ପୁନରାବୃତ୍ତି ଲେଖାରେ ପ୍ରକାଶ ପାଇଥିବା ପାଠକମାନଙ୍କ ନଜରକୁ ଆସିପାରେ । ମୁଁ ଏହି ଦୁର୍ବଳତାକୁ ବିନୟର ସହ ସ୍ୱୀକାର କରୁଛି ।

ପ୍ରବନ୍ଧମାନଙ୍କ ଭିତରେ ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ମନୋଭାବ ଓ ମାନବବାଦୀ ବିଚାରବୋଧର ଭାବନା ପ୍ରଚ୍ଛନ୍ନ ଭାବେ ରହିଥିବା ମୋର ମନେହୁଏ । ଏକ ଗୁଣାତ୍ମକ ଜୀବନର ମୂଲ୍ୟ ଏହି ଭାବଧାରା ଉପରେ ଯେ ନିର୍ଭରକରେ ମୁଁ ତାହା ବିଶ୍ୱାସ କରେ । ଏହି ବିଚାରବୋଧର ସମନ୍ୱିତ ଅଭିବ୍ୟକ୍ତି ହେଉଛି "ହେତୁବାଦୀ ଜୀବନ-ଦର୍ଶନ" । ହେତୁବାଦୀ ଜୀବନ-ଦର୍ଶନ ଯେ ଏକ ମହତ୍ତର ଜୀବନବୋଧର ବାର୍ତ୍ତା ଦିଏ ଏଥିରେ ମୁଁ ଗଭୀର ବିଶ୍ୱାସ ସ୍ଥାପନ କରେ । ଜଣେ ଯେଉଁ ଜୀବନବୋଧରେ ଆସ୍ଥା ସ୍ଥାପନ କରେ ତାହାର ପ୍ରଚ୍ଛନ୍ନ ଅଭିବ୍ୟକ୍ତି ତାଙ୍କର ଲେଖାରେ ପ୍ରକାଶ ପାଇବା ସ୍ୱାଭାବିକ ମନେହୁଏ ।

ଲେଖାଟିଏ ପ୍ରକାଶ ପାଇବା ପରେ କେତେକ ବିଦଗ୍ଧ ପାଠକ ସେମାନଙ୍କର ସୁଚିନ୍ତିତ ମନ୍ତବ୍ୟ ଫୋନରେ ଜଣାନ୍ତି, କେତେକ ବି ପତ୍ର ଲେଖିଛନ୍ତି । ଲେଖାଟିଏ ପ୍ରକାଶିତ ହେଲା ପରେ ତାହା ପାଠକର ମୂଲ୍ୟାୟନ ଓ ବିଚାରର ବିଷୟ ହୁଏ । ଏହି ଧାରାରେ ପାଠକମାନଙ୍କର ଅଭିମତ ଲେଖକକୁ ପ୍ରେରଣା ଦିଏ ଓ ସ୍ଥଳ ବିଶେଷରେ ଅଧିକ ମନନଶୀଳ ହେବାକୁ ସାହାଯ୍ୟ କରେ । ସୁତରାଂ ପାଠକ ମାନଙ୍କ ଅଭିମତକୁ ମୁଁ ଶ୍ରଦ୍ଧା ଓ ସମ୍ମାନର ସହ ଗ୍ରହଣ କରେ ।

ମୋର ଲେଖାମାନଙ୍କୁ ବାଙ୍ଗାଲୋରରେ ରହୁଥିବା ପ୍ରଗତିଶୀଳ ଲେଖକ-ବନ୍ଧୁ ଶ୍ରୀ ବାଲ୍ମୀକି ନାୟକ ଫେସବୁକ୍‌ରେ ସ୍ଥାନିତ କରିବା ଫଳରେ ତାହା ପଢ଼ି କେତେକ ନିଜର ମନ୍ତବ୍ୟ ପ୍ରକାଶ କରନ୍ତି । ଏହି ଅବସରରେ ବାଲ୍ମୀକି ନାୟକ ଓ ଅନ୍ୟାନ୍ୟ ବଂଧୁମାନଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଜ୍ଞାନଯୁଗ ପ୍ରକାଶନର ଉପଦେଷ୍ଟା ଶ୍ରୀ ବିନୋଦ ବିହାରି ବିଶୋଇ ଏହି ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ବହନ କରିଥିବାରୁ ମୁଁ ତାଙ୍କୁ କୃତଜ୍ଞତା ପ୍ରକାଶ କରୁଛି ।

ଧନେଶ୍ୱର ସାହୁ

ମୋବାଇଲ-୯୪୩୮୫୪୭୮୯୫

ଏ-୧୨, ଭାଗୀରଥି ବିହାର, ଢେଙ୍କାନାଳ

# ସୂଚୀପତ୍ର

| କ୍ର.ନଂ. | ପ୍ରବନ୍ଧର ନାମ | ପୃଷ୍ଠା |
|---|---|---|

## ଜୀବନ ଅନ୍ବେଷା



**ମାନବବାଦ**



**ନୈତିକତା**



**ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ**

## ଜୀବନ ଅନ୍ୱେଷା



## ହେତୁବାଦ ବନାମ କୁସଂସ୍କାର



## ଶିକ୍ଷା ଓ ଭାଷା



## ପରିବେଶ





# ଗାନ୍ଧୀ ଓ ମାଓ : ଏକ ତୁଳନାତ୍ମକ ଅନୁଶୀଳନ

ମହାତ୍ମା ଗାନ୍ଧୀ (୧୮୬୯-୧୯୪୮) ଓ ମାଓ ସେ ତୁଙ୍ଗ (୧୮୯୩-୧୯୭୬) ଇତିହାସର ଦୁଇ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ । ରାଜନୈତିକ ପରିବର୍ତ୍ତନ ଓ ସାମାଜିକ କ୍ରାନ୍ତି ଆଣିବାରେ ସେମାନଙ୍କର ଅବଦାନ ବିଶ୍ୱ-ସ୍ୱୀକୃତ । ଇତିହାସର ବେଳାଭୂମିରେ ସେମାନେ ଯେଉଁ ପଦଚିହ୍ନ ଛାଡି ଯାଇଛନ୍ତି ତାହା ବିଶ୍ୱର ଅଗଣିତ ବିପ୍ଳବୀଙ୍କୁ ପ୍ରେରଣା ଯୋଗାଇ ଆସିଛି । ସେମାନଙ୍କର ପ୍ରଦର୍ଶିତ ପନ୍ଥା ଭିତରେ ମୌଳିକ ପାର୍ଥକ୍ୟ ରହିଥିଲେ ବି ସେମାନେ ଏକ ନୂତନ ସମାଜର ସ୍ୱପ୍ନ ଦ୍ରଷ୍ଟା । ଏକ ଶୋଷଣମୁକ୍ତ, ସମତାଭିତ୍ତିକ ଓ ନ୍ୟାୟ ଆଧାରିତ ସମାଜ ଗଠନ ପାଇଁ ସେମାନଙ୍କର ବିଚାର ଓ ସମ୍ପୃକ୍ତି ଅନସ୍ୱୀକାର୍ଯ୍ୟ । ତେବେ ଗାନ୍ଧୀ ଭାରତରେ ଓ ମାଓ ଚୀନରେ ରାଜନୈତିକ ପରିବର୍ତ୍ତନ ଦିଗରେ ଯେଉଁ ଅବଦାନ ଦେଇଛନ୍ତି ସେସବୁର କିଛି ସୈଦ୍ଧାନ୍ତିକ ଭିତ୍ତି ରହିଥିବା ମନେହୁଏ । ପ୍ରତ୍ୟେକଙ୍କ ବିଚାର, କାର୍ଯ୍ୟପନ୍ଥା ଉପରେ ଅସଂଖ୍ୟ ପୁସ୍ତକ ଲେଖାଯାଇଛି ଓ ଏବେ ବି ସେମାନଙ୍କୁ ନେଇ ଚର୍ଚ୍ଚା ହେଉଛି । ସେମାନଙ୍କର ଏକ ତୁଳନାତ୍ମକ ଅନୁଶୀଳନ ଏକ ଜଟିଳ ବ୍ୟାପାର । ତେବେ କୌଣସି ଜଟିଳ ପ୍ରସଙ୍ଗକୁ ନ ଯାଇ ଉଭୟଙ୍କ ବୈଚାରିକ ଅବଦାନ ଓ କର୍ମପନ୍ଥା ଉପରେ ସାମାନ୍ୟ ସୂଚନା ଦେବା ସହ ସେ ସବୁର ତୁଳନାତ୍ମକ ବ୍ୟାଖ୍ୟା କରିବା ପାଇଁ କେତୋଟି ଲେଖା ଭିତରେ ପ୍ରୟାସ କରିବାକୁ ଲକ୍ଷ୍ୟ ରଖିଛି ।

ଏକ ରାଜନୈତିକ ବା ସାମାଜିକ କ୍ରାନ୍ତି ପାଇଁ ଜଣେ ବ୍ୟକ୍ତିଙ୍କର ଅବଦାନର ମୂଲ୍ୟାୟନ ଏକ ସହଜ ପ୍ରଶ୍ନ ନୁହେଁ । ସମସାମୟିକ ଘଟଣା ପ୍ରବାହ, ରାଜନୈତିକ ପରିସ୍ଥିତି, ଅର୍ଥନୈତିକ ଅବସ୍ଥାକୁ ଏକ ବିଚାର କେତେଦୂର ପ୍ରଭାବିତ କରେ ବା ଏକ ନୂତନ ପରିସ୍ଥିତି ସୃଷ୍ଟି ଦିଗରେ ଏକ ବିଚାରର କ'ଣ ପ୍ରାଧାନ୍ୟ ଥାଏ ତାହା ସ୍ଥିର କରିବା ସହଜ ନୁହେଁ । ଭାରତର ରାଜନୈତିକ ସ୍ୱାଧୀନତା କ୍ଷେତ୍ରରେ ଗାନ୍ଧୀଙ୍କର ଯଥେଷ୍ଟ ପ୍ରଭାବ ବା ଅବଦାନ ରହିଥିଲା । ସେହିପରି ଚୀନରେ ଯେଉଁ ସମାଜବାଦୀ ବିପ୍ଳବ ଆସିଲା ସେଥିରେ ମାଓଙ୍କର ଯଥେଷ୍ଟ ଭୂମିକା ଥିଲା । ତେବେ ଗାନ୍ଧୀଙ୍କ ଆବିର୍ଭାବ ହୋଇ ନଥିଲେ ଭାରତର

ସ୍ୱାଧୀନତା ହୋଇ ନ ଥାନ୍ତା ତାହା କହିବା ସମୀଚୀନ ମନେହୁଏ ନାହିଁ । ସେହିପରି ମାଓ ନଥିଲେ ଚୀନରେ ସମାଜବାଦୀ ବିପ୍ଳବ ହୋଇ ପାରି ନଥାନ୍ତା ଏହା ବି କହିବା ଯଥାର୍ଥ ମନେହୁଏ ନାହିଁ । ଗୋଟିଏ କ୍ରାନ୍ତି ଆଣିବାରେ ଏକ ନେତୃତ୍ୱ ବା ବିଚାରର ଯଥେଷ୍ଟ ଅବଦାନ ଥିଲେ ମଧ୍ୟ ତାହା ଯେ ସାମାଜିକ ପରିବର୍ତ୍ତନରେ ନିର୍ଣ୍ଣାୟକ ତାହା ନିଶ୍ଚିତ ଭାବେ କୁହାଯାଇ ନପାରେ । ଏକ ବ୍ୟକ୍ତି ବା ଏକ ବିଚାର ଗୋଟିଏ ପରିବର୍ତ୍ତନ ପାଇଁ ଯଥେଷ୍ଟ ପ୍ରେରଣା ଦେଇଥିଲେ ବି ତାହା ହିଁ ଯେ ସେହି ପରିବର୍ତ୍ତନର ଏକମାତ୍ର କାରଣ, ତାହା କହିବା ଯଥାର୍ଥ ମନେହୁଏ ନାହିଁ । ସାମାଜିକ ବିକାଶ, ପରିବର୍ତ୍ତନ ନାନା କାରଣ ଜନିତ ପରିସ୍ଥିତି ଦ୍ୱାରା ପ୍ରଭାବିତ ହୋଇଥାଏ, ସୁତରାଂ ଏ କ୍ଷେତ୍ରରେ କୌଣସି ଏକକ କାରଣକୁ ଏକ ମାତ୍ର କାରଣ ବୋଲି ନେବା, ସମ୍ଭବତଃ ଯଥାର୍ଥ ନୁହେଁ । ପୁନଶ୍ଚ କୌଣସି ପରିବର୍ତ୍ତନ କ୍ଷେତ୍ରରେ ମଧ୍ୟ ପାର୍ଥକ୍ୟ ରହିବା ଅସଙ୍ଗତ ନୁହେଁ । ଆକସ୍ମିକ ଭାବରେ କିଛି ସାମୟିକ ପରିବର୍ତ୍ତନ ହେବା ଓ ଏକ ପ୍ରକ୍ରିୟା ଭିତରେ ଏକ ପରିବର୍ତ୍ତନ ଆସିବା ଭିତରେ ମଧ୍ୟ ପାର୍ଥକ୍ୟ ରହିପାରେ । ଏକ ସାମୟିକ ପରିବର୍ତ୍ତନ ଓ ଏକ ପ୍ରକ୍ରିୟା ଭିତର ଦେଇ ଦୀର୍ଘ ସମୟ ଭିତରେ ଆସିଥିବା ପରିବର୍ତ୍ତନ ଭିତରେ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଏକ ସାମୟିକ ପରିବର୍ତ୍ତନ ହୁଏତ ଦୀର୍ଘସ୍ଥାୟୀ ନ ହୋଇପାରେ ଓ ଦୀର୍ଘ ସମୟ ଭିତରେ ଧୀର ମନ୍ଥର ଗତିରେ ଆସିଥିବା ପରିବର୍ତ୍ତନ ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡରେ ହୁଏତ ଗୁରୁତ୍ୱପୂର୍ଣ୍ଣ ମନେ ନ ହୋଇପାରେ । ସୁତରାଂ ସାମାଜିକ ବା ରାଜନୈତିକ ପରିବର୍ତ୍ତନର ପ୍ରକ୍ରିୟା ଓ ସମୟ ବ୍ୟବଧାନ ଭିତରେ ପାର୍ଥକ୍ୟ ମଧ୍ୟ ରହି ଥାଇପାରେ । ପୁନଶ୍ଚ ରାଜନୈତିକ ସ୍ୱାଧୀନତା ପରେ ଗାନ୍ଧୀଙ୍କ ଦେହାନ୍ତ ଯୋଗୁଁ ସାମାଜିକ ପରିବର୍ତ୍ତନ କ୍ଷେତ୍ରରେ ଗାନ୍ଧୀ ବିଚାରର କେତେ ପ୍ରଭାବ ରହିଲା ବା ରହିଲା ନାହିଁ ତାହା ବି ଜଟିଳ ମନେହୁଏ । ସେହିପରି ମାଓଙ୍କ ମୃତ୍ୟୁ ପରେ ମାଓବାଦ ସାମାଜିକ ପରିବର୍ତ୍ତନକୁ କେତେ ପ୍ରଭାବିତ କରିଛି, ତାହା କହିବା ସହଜ ନୁହେଁ । ଏହି ସବୁ ପ୍ରସଙ୍ଗ ଗୁଡ଼ିକ ବେଶ୍ ଜଟିଳ ଓ ସେହି ସବୁ ଜଟିଳ ପ୍ରସଙ୍ଗକୁ ଏଠାରେ ଆମେ ଆଲୋଚନା କରିବା ନାହିଁ ।

ଗାନ୍ଧୀ ଓ ମାଓ ଦୁଇଟି ପୃଥକ୍ ରାଷ୍ଟ୍ରରେ ଓ ଦୁଇଟି ପୃଥକ୍ ସାମାଜିକ ସ୍ଥିତିରେ ନିଜର ରାଜନୈତିକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ ମଧ୍ୟ ଉଭୟଙ୍କ ଭିତରେ କେତେକ ମୌଳିକ ସାମଞ୍ଜସ୍ୟ ଦୃଷ୍ଟିଗୋଚର ହୁଏ । ଗାନ୍ଧୀ ମାଓଙ୍କଠାରୁ ୨୪ ବର୍ଷ ବୟସରେ ବଡ଼ ଥିଲେ ବି ଗାନ୍ଧୀ ଭାରତରେ ଓ ମାଓ ଚୀନରେ ପ୍ରାୟ ଏକ ସମୟରେ ସେମାନଙ୍କର ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଉଭୟ ନେତାଙ୍କର ରାଜନୀତିରେ ଆବିର୍ଭାବ ହୋଇଥିଲା । ସେମାନଙ୍କ ଆବିର୍ଭାବ ସମୟକୁ ଭାରତ ଓ ଚୀନର

ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ସ୍ଥିତି ଭିତରେ କେତେକ ସାମଞ୍ଜସ୍ୟ ଓ କେତେକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଅର୍ଥନୈତିକ ମାନଦଣ୍ଡରୁ ଦେଖିଲେ ଭାରତ ଓ ଚୀନ୍‌ର ସ୍ଥିତି ପ୍ରାୟତଃ ସମାନ ଥିଲା । ଉଭୟ ରାଷ୍ଟ୍ର ଜନବହୁଳ ଓ ଏକ କୃଷିଭିତ୍ତିକ ଗ୍ରାମୀଣ ପରିବେଶରେ ଦେଶର ପ୍ରାୟ ୯୦ ଭାଗ ଲୋକ ଜୀବନ ଅତିବାହିତ କରୁଥିଲେ । ଉଭୟ ଦେଶରେ ଉତ୍କଟ ଦାରିଦ୍ର୍ୟ ରହିଥିଲା । ଉଭୟ ଦେଶର ଜନସଂଖ୍ୟାର ମୁଖ୍ୟ ଅଂଶ ଶୋଷଣର ଶିକାର ହେଉଥିଲେ । ସାମନ୍ତବାଦୀ ପରିବେଶ ଉଭୟ ଦେଶରେ ରହିଥିଲା ଓ ମୁଷ୍ଟିମେୟ ଲୋକ ଅଗଣିତ ଲୋକଙ୍କୁ ଶୋଷଣ କରୁଥିଲେ । ସମାଜରେ ବ୍ୟାପକ ଭାବେ ବେକାରୀ ସମସ୍ୟା ରହିଥିଲା ଓ ଜନସଂଖ୍ୟାର ପ୍ରମୁଖ ଭାଗ ନିରକ୍ଷର ରହିଥିଲେ ।

ତେବେ ଉଭୟ ଦେଶର ରାଜନୈତିକ ସ୍ଥିତିରେ ମୌଳିକ ପାର୍ଥକ୍ୟ ରହିଥିଲା । ଭାରତ ବ୍ରିଟିଶ ସାମ୍ରାଜ୍ୟବାଦର ଅଧୀନ ଥିବା ବେଳେ ଚୀନରେ କୌଣସି ସାମ୍ରାଜ୍ୟବାଦୀ ବିଦେଶୀ ସରକାର ନଥିଲା । ତେବେ ଚୀନର ସ୍ୱଦେଶୀ ସରକାର ଏକଛତ୍ରବାଦୀ-ଭିତ୍ତିକ ଥିଲା ଓ ତାହା ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କଠାରୁ ନିଜର ପ୍ରତିରକ୍ଷା ପାଇଁ ସାହାଯ୍ୟ ନେଉଥିଲା ଓ ପରିଣାମତଃ ସାମ୍ରାଜ୍ୟବାଦୀ ଶକ୍ତିର ନିୟନ୍ତ୍ରଣ ଭିତରେ ରହିଥିଲା । ଚୀନରେ ମାଓଙ୍କ ଆବିର୍ଭାବ ପୂର୍ବରୁ ଯେଉଁ ସରକାର ଥିଲା ତାହାର ମୁଖ୍ୟ ଥିଲେ ଚିଆଙ୍ଗ କାଇ-ସେକ୍ ଯେ ପ୍ରାୟତଃ ଏକଛତ୍ରବାଦୀ ଥିଲେ । ତାଙ୍କ ପୂର୍ବରୁ ସନୟାତ ସେନ ଯେଉଁ ବୈପ୍ଳବିକ ଆନ୍ଦୋଳନ ସୃଷ୍ଟି କରିଥିଲେ ତାହାଦ୍ୱାରା ଚୀନରେ ରାଜତନ୍ତ୍ରର ବିଲୋପ ହୋଇ ଚିଆଙ୍ଗ କାଇ ସେକ୍ କ୍ଷମତାକୁ ଆସି ଏକଛତ୍ରବାଦୀ ପାଲଟିଗଲେ । ତେବେ ଚୀନରେ ଜନବାଦୀ ଆନ୍ଦୋଳନର ଏକ ପରମ୍ପରା ଗଢ଼ିଉଠିଥିଲା ଓ ସମାଜର ଶିକ୍ଷିତ, ବୁଦ୍ଧିଜୀବୀ ବର୍ଗଙ୍କ ଭିତରେ ବୈପ୍ଳବିକ ଚେତନାର ମାନସିକତା ସୃଷ୍ଟି ହୋଇ ସାରିଥିଲା ।

ଭାରତବର୍ଷରେ ୧୮୮୫ ରେ କଂଗ୍ରେସ ଦଳ ଗଠନ ପରେ ଓ ବିଶ୍ୱବିଦ୍ୟାଳୟ ଶିକ୍ଷା ଆସିବା ପରେ ଯେଉଁମାନେ ଶିକ୍ଷାର ସୁଯୋଗ ପାଇଲେ ସେମାନେ ଦେଶର ପ୍ରାଚୀନ ଐତିହ୍ୟ ଓ ପାଶ୍ଚାତ୍ୟ ଗଣତାନ୍ତ୍ରିକ ବ୍ୟବସ୍ଥା ବିଷୟରେ ଜାଣିବାର ଅବକାଶ ପାଇଲେ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଯେତେ ସୀମିତ ଅର୍ଥରେ ହେଲେ ମଧ୍ୟ ଭାରତରେ ଯେଉଁ ନବଜାଗରଣ ଆସିଥିଲା ତାହାର ପରିଣାମ ସ୍ୱରୂପ ଜାତୀୟ ଚେତନାର କିଛି ବିକାଶ ହୋଇଥିଲା । ଇଂରେଜ ଶିକ୍ଷା ପାଇଥିବା ଯୁବଗୋଷ୍ଠୀ ଭିତରେ ଜାତୀୟତାର ଯେଉଁ ଭାବ ସୃଷ୍ଟି ହୋଇଥିଲା ସେହି ପୃଷ୍ଠଭୂମିରେ ଗାନ୍ଧୀ ପ୍ରଥମ ବିଶ୍ୱଯୁଦ୍ଧ ପରେ କଂଗ୍ରେସର ନେତୃତ୍ୱ ଭିତରକୁ ଆସି ଦେଶର ରାଜନୈତିକ ସ୍ୱାଧୀନତା ପାଇଁ ଆନ୍ଦୋଳନର ମୁଖ୍ୟ ମଙ୍ଗୁଆଳ ହୋଇଗଲେ ।

ଗାନ୍ଧୀ ଓ ମାଓ ସ୍ୱ ସ୍ୱ ଧାରାରେ ଏକ ଆଦର୍ଶ ସମାଜର ପରିକଳ୍ପନା କରିଥିଲେ । ଗାନ୍ଧୀ ଏକ ଗ୍ରାମବହୁଳ ଦେଶରେ ଯେଉଁଠି ଜନସଂଖ୍ୟାର ୮୦ ଭାଗ ଲୋକ କୃଷି ଉପରେ ନିର୍ଭର କରି ଚଳନ୍ତି, ଗ୍ରାମ ସ୍ୱରାଜର ପରିକଳ୍ପନା କରିଥିଲେ । ପ୍ରତ୍ୟେକ ଗ୍ରାମ ସ୍ୱାବଲମ୍ବନଶୀଳ ହେବ ଓ ସେ ପାଇଁ ସେ ଏକ ବିକେନ୍ଦ୍ରିତ ଅର୍ଥନୀତିର ଯୋଜନା ପ୍ରସ୍ତୁତ କରିଥିଲେ । କୁଟୀରଶିଳ୍ପ ଓ ଖଦୀର ପ୍ରସାରକୁ ପ୍ରାଧାନ୍ୟ ଦେଉଥିଲେ ଯଦ୍ୱାରା ସମାଜର ସବୁସ୍ତରର ଲୋକମାନେ କର୍ମସଂସ୍ଥାନ ପାଇପାରିବେ । ଏକ ଶୋଷଣମୁକ୍ତ, ସମତାଭିତ୍ତିକ ସମାଜ ପାଇଁ ସେ ପରସ୍ପର ନିର୍ଭରଶୀଳ ଗ୍ରାମ ସ୍ୱରାଜର ଚିନ୍ତା କରିଥିଲେ । ସେ ତାଙ୍କର ଆଦର୍ଶ ଜନରାଜ୍ୟର ବାସ୍ତବ ରୂପରେଖ ପାଇଁ ରାଜନୈତିକ ସ୍ତରରେ ଭାରତ ପ୍ରଥମେ ସ୍ୱାଧୀନତା ହାସଲ କରିବା ଆବଶ୍ୟକ ବୋଲି ମନେ କରିଥିଲେ । ଅର୍ଥାତ୍ ଏକ ନୂତନ ସମାଜ ପ୍ରତିଷ୍ଠା ପାଇଁ ସାମ୍ରାଜ୍ୟବାଦୀ ଶାସନରୁ ଦେଶ ସ୍ୱାଧୀନ ହେବା ଦରକାର ଭାବି ଦେଶର ସ୍ୱାଧୀନତା ପାଇଁ ସେ ଜନଗଣଙ୍କୁ ପ୍ରଭାବିତ କରିଥିଲେ । ରାଜନୈତିକ ସ୍ୱାଧୀନତା ଆସିଲେ ଦେଶରୁ ସବୁ ଦାରିଦ୍ର୍ୟ, ଶୋଷଣ, ବୈଷମ୍ୟ ଯେ ଦୂର ହୋଇଯିବ ଏହିଭଳି ଏକ ସ୍ୱପ୍ନରେ ସେତେବେଳେ ବହୁ ଲୋକ ବିଭୋର ହୋଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ । ବିଶେଷକରି ସମାଜର ଶିକ୍ଷିତ ଗୋଷ୍ଠୀ ଓ ମଧ୍ୟବିତ୍ତ ସଚେତନ ଜନଗଣଙ୍କୁ ନେଇ ସାରା ଦେଶରେ ଜାତୀୟ ଆନ୍ଦୋଳନ ଗଢ଼ି ଉଠିଥିଲା ।

ମାଓ ଚାଇନାରେ ରହିଥିବା କମ୍ୟୁନିଷ୍ଟ ଦଳର ନେତୃତ୍ୱ ଭିତରକୁ ଆସି ରାଷ୍ଟ୍ରର ଅଗଣିତ କୃଷକ, ଶ୍ରମଜୀବୀ ଓ ଶୋଷିତ ବର୍ଗର ମୁକ୍ତିପାଇଁ ଗଣ-ଆନ୍ଦୋଳନର ନେତୃତ୍ୱ ନେଲେ । ପୁଞ୍ଜିବାଦ, ସାମନ୍ତବାଦ ଓ ସାମ୍ରାଜ୍ୟବାଦର ଶୋଷଣ ଯୋଗୁଁ ଜନଗଣ ଯେ ଏତେ ଦାରିଦ୍ର୍ୟ ଭିତରେ ରହିଛନ୍ତି ତାହା ଅନୁଭବ କଲେ । ଏଥିରୁ ଜନଗଣଙ୍କୁ ମୁକ୍ତ କରିବାକୁ ହେଲେ ଶ୍ରେଣୀ-ସଂଘର୍ଷ ଜରିଆରେ ଏକ ଶ୍ରେଣୀହୀନ ସମାଜର ରୂପରେଖ ସମ୍ଭବ ବୋଲି ଭାବନା ବ୍ୟକ୍ତ କଲେ । ମାଓଙ୍କ ଆବିର୍ଭାବ ସମୟକୁ ଚୀନର ରାଜନୈତିକ ସ୍ଥିତି ବେଶ୍ ଖରାପ ଥିଲା ଓ ଜନଗଣଙ୍କ ଭିତରେ ସରକାର ପ୍ରତି ବହୁ ଅସନ୍ତୋଷ ରହିଥିଲା । ଚୀନର କେନ୍ଦ୍ରୀୟ ସରକାରର ସାମର୍ଥ୍ୟ ସୀମିତ ଥିଲା ଓ ମୁଖ୍ୟତଃ ବିଦେଶୀ ସାମ୍ରାଜ୍ୟବାଦୀଙ୍କ ସାହାଯ୍ୟରେ ବିଦେଶୀ ଆକ୍ରମଣକୁ ପ୍ରତିହତ କରାଯାଉଥିଲା । ଚୀନର ଅନେକ ସ୍ଥାନରେ ସାମନ୍ତବାଦୀ ଶକ୍ତିମାନେ ରହି ଜନଗଣଙ୍କୁ ଶୋଷଣ କରୁଥିଲେ ଓ ସେମାନେ ପରସ୍ପର ଭିତରେ କଳହ, ଦ୍ୱନ୍ଦ୍ୱରେ ବ୍ୟାପୃତ ରହିଥିଲେ । ଏହି ସ୍ଥିତିରେ ଚୀନରେ କମ୍ୟୁନିଷ୍ଟ ପାର୍ଟି କେତେକ ଆଦର୍ଶର ଭିତ୍ତି ଉପରେ ଜନଗଣଙ୍କ ଭିତରେ ସଙ୍ଗଠନକୁ ପ୍ରସାର କରିଥିଲା । ତା' ସହିତ ରୁଷରେ ସାମ୍ୟବାଦୀ ସରକାରର ପ୍ରତିଷ୍ଠା ଚାଇନାର କମ୍ୟୁନିଷ୍ଟମାନଙ୍କ ଭିତରେ

ପ୍ରେରଣା ସୃଷ୍ଟି କରିଥିଲା । ଏହି ଭଳି ରାଜନୈତିକ ସ୍ଥିତିରେ ଜନଗଣଙ୍କ ଭିତରେ ଏକ ଗଣ ବିପ୍ଳବ ସୃଷ୍ଟି ପାଇଁ ମାଓଙ୍କର ନେତୃତ୍ୱକୁ ଦେଶର ଜନଗଣ ଗ୍ରହଣ କରିଯାଇଥିଲେ ।

ଭାରତ ଓ ଚୀନ ଉଭୟ ଦେଶରେ ଗ୍ରାମୀଣ ଜୀବନଧାରା ଓ କୃଷିଭିତ୍ତିକ ସମାଜ ରହିଥିଲେ ମଧ୍ୟ ଚୀନର କୃଷକ ମାନଙ୍କର ଆର୍ଥିକ ସ୍ଥିତି ଭାରତୀୟ ଜନଗଣଙ୍କ ଅପେକ୍ଷା ତୁଳନାତ୍ମକଭାବେ ଉନ୍ନତ ଥିଲା । ତେବେ ଭାରତରେ ଏକ ବିଦେଶୀ ସରକାର ରହିଥିଲେ ବି ଏହା ସମଗ୍ର ଦେଶକୁ ଏକ ଶାସନାଧୀନ କରି ପାରିଥିଲା ଓ ସାରା ଦେଶରେ ସରକାରୀ କର୍ତ୍ତୃତ୍ୱ ଥିଲା । ଡାକ, ଯାତାୟତ କ୍ଷେତ୍ରରେ ଭାରତର ସ୍ଥିତି ଚୀନଠାରୁ କିଛିଟା ଉନ୍ନତ ଥିଲା । ବ୍ରିଟିଶ ସାମ୍ରାଜ୍ୟବାଦ ଉଦାରବାଦୀ ରହି ଜାତୀୟ ଆନ୍ଦୋଳନ କ୍ଷେତ୍ରରେ ବିଶେଷ କଟକଣା ସୃଷ୍ଟି କରି ନଥିଲା । ତେବେ ଭାରତୀୟ ସମାଜ ଓ ଚାଇନା ସମାଜ ଭିତରେ ଅନ୍ୟକ୍ଷେତ୍ରରେ ମୌଳିକ ପାର୍ଥକ୍ୟ ରହିଥିଲା । ଚୀନର ଜନଗଣଙ୍କ ଭିତରେ ରାଜନୈତିକ ସଚେତନତା ଅଧିକ ରହିଥିଲା ଓ ସେଠିକାର ଜନସମୂହ ଭିତରେ ସାମାଜିକ ସଂହତି ପୂର୍ଣ୍ଣ ଭାବରେ ଥିଲା । ସେଠିକାର ସାଧାରଣ ଜୀବନ ସ୍ତରରେ ଲୋକମାନେ ଅନେକାଂଶରେ ଧର୍ମନିରପେକ୍ଷ ରହିଥିଲେ ଓ ଐହିକ ଜୀବନଧାରାକୁ ମୁଖ୍ୟ ସ୍ଥାନ ଦେଉଥିଲେ । ମାନବବାଦୀ ଓ ହେତୁବାଦୀ ପରମ୍ପରା ସାମାଜିକ ଜୀବନ ପ୍ରବାହର ଆଦର୍ଶ ଥିଲା । ଅପର ପକ୍ଷରେ ଭାରତୀୟ ସମାଜ ସମ୍ପୂର୍ଣ୍ଣ ଜାତିଭିତ୍ତିକ ରହି ସାମାଜିକ ସ୍ତରରେ ନାନା ଭେଦଭାବ ଭିତରେ ରହିଥିଲା । ଜାତିଆଣ ମାନସିକତା ଭିତରେ ସମାଜ ଶହ ଶହ ଭାଗରେ ବିଭକ୍ତ ରହିଥିଲା ଓ ସାମାଜିକ ସ୍ତରରେ ସଂହତି ନଥିଲା । ବର୍ଣ୍ଣ ବ୍ୟବସ୍ଥା, ଜାତିଆଣ ଦୃଷ୍ଟିଭଙ୍ଗୀ, ସାମାଜିକ ଭେଦଭାବ ଓ ପାରଲୌକିକ ଜୀବନଦୃଷ୍ଟି ଭାରତୀୟ ସମାଜର ଅନ୍ତର୍ନିହିତ ସ୍ୱରୂପ ଥିଲା ।

ଏହିପରି ଭାରତ ଓ ଚୀନର ଅର୍ଥନୈତିକ, ରାଜନୈତିକ ଓ ସାମାଜିକ ଜୀବନ ପ୍ରବାହ ଭିତରୁ ଗାନ୍ଧୀ ଓ ମାଓଙ୍କର ଆବିର୍ଭାବ ହୋଇଥିଲା । ଭାରତର ରାଜନୈତିକ ସ୍ୱାଧୀନତା ୧୯୪୭ ରେ ଓ ଚୀନରେ କମ୍ୟୁନିଷ୍ଟ ଶାସନ ୧୯୪୯ରେ ପ୍ରତିଷ୍ଠାଲାଭ କଲା । ଭାରତୀୟ ସ୍ୱାଧୀନତା ପରେ ଗାନ୍ଧୀଙ୍କର ନିଧନ ହୋଇଥିଲା କିନ୍ତୁ ମାଓ କମ୍ୟୁନିଷ୍ଟ ସରକାର ଆସିବା ପରେ ୧୯୭୬ ପର୍ଯ୍ୟନ୍ତ ମୁଖ୍ୟ ଭାବେ ଶାସନ ବ୍ୟବସ୍ଥାକୁ ନିୟନ୍ତ୍ରଣ କରିଥିଲେ ।

(୯.୫.୧୨)



# ଗାନ୍ଧୀ ଓ ମାଓ : ସାମାଜିକ ପୃଷ୍ଠଭୂମି

ଭାରତରେ ମହାତ୍ମା ଗାନ୍ଧୀଙ୍କର (୧୮୬୯-୧୯୪୮) ଓ ଚୀନରେ ମାଓ ସେ ତୁଙ୍ଗଙ୍କର (୧୮୯୩-୧୯୭୬) ରାଜନୈତିକ ଆବିର୍ଭାବ ଏକ ସମୟରେ ହୋଇଥିଲା । ଗାନ୍ଧୀ ଭାରତ ବର୍ଷରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ହଟାଇ ରାଜନୈତିକ ସ୍ୱାଧୀନତା ହାସଲ କରିବାକୁ ପ୍ରାଧାନ୍ୟ ଦେଇଥିଲେ ଓ ମାଓ ଚାଇନାରେ ଏକ ସମାଜବାଦୀ ବିପ୍ଳବ ଆଣିବାକୁ ପ୍ରୟାସ କରିଥିଲେ । ନାନା ପାରିପାର୍ଶ୍ୱିକ ଘଟଣା, ସେମାନଙ୍କର ବଳିଷ୍ଠ ନେତୃତ୍ୱ ଓ ଜନସମୂହର ସମର୍ଥନ ଯୋଗୁଁ ସେମାନେ ଜନ ଆନ୍ଦୋଳନ ଜରିଆରେ ସେମାନଙ୍କର ଲକ୍ଷ୍ୟ ପ୍ରାପ୍ତିରେ ସଫଳ ହୋଇଥିଲେ । ଉଭୟ ଦେଶର ଇତିହାସରେ ଏହା ଥିଲା ଯୁଗାନ୍ତକାରୀ । ଭାରତର ରାଜନୈତିକ ସ୍ୱାଧୀନତା ଓ ଚୀନର ସମାଜବାଦୀ କମ୍ୟୁନିଷ୍ଟ ବିପ୍ଳବ ଯଥାକ୍ରମେ ଗାନ୍ଧୀ ଓ ମାଓଙ୍କ ନେତୃତ୍ୱରେ ପରିଚାଳିତ ହୋଇ ନିଜର ଲକ୍ଷ୍ୟ ହାସଲ କରିଥିଲା ।

ଭାରତ ଓ ଚୀନ ଦୁଇଟି ଜନବହୁଳ ଏସୀୟ ରାଷ୍ଟ୍ର ଓ ଉଭୟ ଥିଲା କୃଷି ପ୍ରଧାନ । ଉଭୟ ଦେଶର ଜନସଂଖ୍ୟାର ମୁଖ୍ୟ ଭାଗ ଗ୍ରାମୀଣ ପରିବେଶରେ ରହୁଥିଲେ ଓ କୃଷି ତଥା କୌଳିକ ବୃତ୍ତିକୁ ଆଧାର କରି ଜୀବନ ନିର୍ବାହ କରୁଥିଲେ । ଉଭୟ ଦେଶରେ ବିଂଶ ଶତାବ୍ଦୀର ଆରମ୍ଭ ପର୍ଯ୍ୟନ୍ତ ସହର ସଂଖ୍ୟା ସୀମିତ ଥିଲା ଓ ସହରରେ ବାସ କରୁଥିବା ଲୋକଙ୍କ ସଂଖ୍ୟା ଥିଲା ଖୁବ୍ ଅଳ୍ପ । ଉଭୟ ଦେଶରେ ଉତ୍କଟ ଦାରିଦ୍ର୍ୟ ଓ ସାମନ୍ତବାଦୀ ଶୋଷଣ ରହିଥିଲା । ଗଣଶିକ୍ଷା ଓ ଆଧୁନିକ ପ୍ରଯୁକ୍ତିର ପରିବେଶ ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ଉଭୟ ଦେଶରେ ଆରମ୍ଭ ହୋଇନଥିଲା । ଗ୍ରାମୀଣ ପରିବେଶରେ ଅଗଣିତ ଜନଗଣ ଦାରିଦ୍ର୍ୟ, ନିରକ୍ଷରତା ଭିତରେ କାଳାତିପାତ କରୁଥିଲେ ଓ ସାମନ୍ତବାଦୀ ଶୋଷଣର ଶରବ୍ୟ ହେଉଥିଲେ । ଏହି ସ୍ଥିତିରେ ଭାରତବର୍ଷରେ ରାଜନୈତିକ ସ୍ୱାଧୀନତା ପାଇଁ ଗାନ୍ଧୀ ଓ ଚୀନରେ କମ୍ୟୁନିଷ୍ଟ ବିପ୍ଳବ ପାଇଁ ମାଓ ଜନମାନସକୁ ଗଭୀର ଭାବରେ ଆଲୋଡିତ କରିଥିଲେ । ଏକ ନୂତନ ଆଶା ଓ ସ୍ୱପ୍ନ ସଂଚାର କରିବାରେ ଉଭୟ ନେତା ନିଜ ନିଜ ଦେଶର ଅଗଣିତ ଜନଗଣଙ୍କର ବିଶ୍ୱାସ ଭାଜନ ହୋଇ ପାରିଥିଲେ ।

ତେବେ ଭାରତବର୍ଷ ସାମ୍ରାଜ୍ୟବାଦୀ ଶକ୍ତିର ନିୟନ୍ତ୍ରଣରେ ରହି ପରାଧୀନ ଥିଲା, ସୁତରାଂ ରାଜନୈତିକ ସ୍ୱାଧୀନତା ସେ ଯୁଗରେ ସଚେତନ ଜନଗଣଙ୍କ ପାଇଁ ସବୁଠାରୁ ବଡ଼ ଆହ୍ୱାନ ଥିଲା । ଚୀନ ପରାଧୀନ ନଥିଲେ ବି ସେଠାରେ ଅର୍ଥନୈତିକ ବୈଷମ୍ୟ ଉତ୍କଟ ଭାବେ ରହିଥିଲା, ଫଳରେ ଏକ ସାମ୍ୟବାଦୀ ସମାଜର ସ୍ୱପ୍ନ ସାଧାରଣ ଜନଗଣଙ୍କ ପାଇଁ ପ୍ରେରଣାର ଆଧାର ହୋଇଥିଲା । ଉଭୟ ଦେଶର ସଭ୍ୟତା ବେଶ୍ ପ୍ରାଚୀନ ଥିଲା । ଭାରତ ଓ ଚୀନରେ ଏହି ସାମଞ୍ଜସ୍ୟ ରହିଥିଲେ ବି ଉଭୟ ଦେଶର ସାମାଜିକ ଓ ସାଂସ୍କୃତିକ ଦୃଶ୍ୟପଟ ଅନେକାଂଶରେ ଭିନ୍ନ ରହିଥିଲା । ଦୁଇ ଦେଶର ସାମାଜିକ ଓ ସାଂସ୍କୃତିକ ପରିବେଶ ଓ ଐତିହ୍ୟ ଭିତରେ ନାନା ମୌଳିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଭାରତରେ ଇଂରାଜୀ ଭାଷାର ପ୍ରଚଳନ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିବେଶ ଆସିବା ପୂର୍ବରୁ ଭାଷା ଜନିତ ବିଭେଦତା ଯୋଗୁଁ ସାମାଜିକ ଗତିଶୀଳତା ଓ ଆଦାନ ପ୍ରଦାନ ଖୁବ୍ ସୀମିତ ରହିଥିଲା । ଚୀନରେ ଏତେ ଭାଷାଗତ ଜଟିଳତା ନଥିଲା ଓ ଭାଷାଜନିତ ସଂହତି ସାରା ଦେଶରେ ବ୍ୟାପକ ଭାବରେ ରହିଥିଲା । ପୁନଶ୍ଚ ଭାରତରେ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ସମାଜ ଜାତିଗତ ମାନଦଣ୍ଡରେ ବିଭାଜିତ ହୋଇ ରହିଥିଲା । ଫଳରେ ସାମାଜିକ ସଂହତି ଜାତୀୟ ଜୀବନରେ ଅଚିନ୍ତନୀୟ ଥିଲା । ଜାତିଗତ ଉଚ୍ଚନୀଚ ଭେଦଭାବ ଓ ଅସ୍ପୃଶ୍ୟତା ଯୋଗୁଁ ସାମାଜିକ ସଂହତି ଭାରତବର୍ଷରେ ସମ୍ଭବ ନଥିଲା । ଭାରତୀୟ ହିନ୍ଦୁ ସମାଜରେ ଚତୁର୍ବର୍ଣ୍ଣ ଓ ତହିଁରୁ ଉତ୍ପନ୍ନ ଚାରି ହଜାରରୁ ଊର୍ଦ୍ଧ୍ୱ ଜାତି ଜନଗଣଙ୍କୁ ନାନା ଭାବରେ ବିଭାଜିତ କରି ରଖିଥିଲା । ପ୍ରତ୍ୟେକ ଜାତି ସ୍ୱୟଂ ସମ୍ପୂର୍ଣ୍ଣ ରହିଥିଲା ଓ ଜାତିମାନଙ୍କ ଭିତରେ ସାମାଜିକ ଆଦାନ ପ୍ରଦାନ ଖୁବ୍ ସୀମିତ ଥିଲା । ଜାତି ଜାତି ଭିତରେ ସହଭୋଜନ ବା ବିବାହ ଅସମ୍ଭବ ଥିଲା । ଏହି ଦୃଷ୍ଟିରୁ ଦେଖିଲେ ଚାଇନାର ସାମାଜିକ ଜୀବନ ବେଶ୍ ସଂହତିପୂର୍ଣ୍ଣ ଥିଲା । ସାମାଜିକ ଭେଦଭାବ ଚୀନରେ ନ ଥିଲା ଓ ସାମାଜିକ ଜୀବନଧାରାରେ ପାରସ୍ପରିକତା ଓ ସଂହତିପୂର୍ଣ୍ଣ ସହାବସ୍ଥାନ ମୂଳରୁ ରହିଥିଲା । ଭାରତବର୍ଷରେ ଅର୍ଥନୈତିକ ଶୋଷଣ ସହିତ ସାମାଜିକ ଶୋଷଣ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ପର୍ଯ୍ୟନ୍ତ ଉତ୍କଟ ହୋଇ ରହିଥିଲା ଓ ସମାଜର ଦଳିତ ଓ ଶୂଦ୍ରମାନେ ସାମାଜିକ ସ୍ତରରେ ନାନା ଭେଦଭାବର ଶରବ୍ୟ ହେଉଥିଲେ । ଅପର ପକ୍ଷରେ ଏହି ସାମାଜିକ ଭେଦଭାବରୁ ଚୀନର ସାଧାରଣ ଜୀବନ ମୁକ୍ତ ରହିଥିଲା । ପୁନଶ୍ଚ ଚୀନର ସାଂସ୍କୃତିକ ଜୀବନ ପ୍ରବାହରେ ଧର୍ମନିରପେକ୍ଷ ଜୀବନ ଦୃଷ୍ଟି ଓ ଐହିକ ଜୀବନ ପ୍ରତି ପ୍ରତିବଦ୍ଧତା ରହିଥିଲା । ଭାରତବର୍ଷରେ ଧର୍ମୀୟ ମାନସିକତାର ଗଭୀର ପ୍ରଭାବ ରହିଥିଲା ଓ ପରିଣାମତଃ ନାନା କୁସଂସ୍କାର, ଅହେତୁକ ବିଶ୍ୱାସ, ପାରଲୌକିକ ଜୀବନଦୃଷ୍ଟି, ରକ୍ଷଣଶୀଳ ଦୃଷ୍ଟିଭଙ୍ଗୀ ବ୍ୟାପକ ଭାବେ ରହିଥିଲା । ଭାରତୀୟ ଜନ ଜୀବନରେ ମାନବିକ ଅଧିକାର, ସମତାର ଭାବନା, ସାମାଜିକ ନ୍ୟାୟ

ପ୍ରତି କୌଣସି ପ୍ରତିବଦ୍ଧତାର ପରିବେଶ ନଥିଲା ଓ ସମାଜ ମଧ୍ୟଯୁଗୀୟ ଆଦର୍ଶ ଭିତରେ ଅତ୍ୟନ୍ତ ରକ୍ଷଣଶୀଳ ଥିଲା । ଏହି ଦୃଷ୍ଟିରୁ ଚୀନର ସାମାଜିକ ଓ ସାଂସ୍କୃତିକ ପରିବେଶ ସଂହତିପୂର୍ଣ୍ଣ ଓ ଅନେକଟା ପ୍ରଗତିଶୀଳ ରହିଥିଲା । ଧର୍ମୀୟ କୁସଂସ୍କାର, ପାରଲୌକିକ ଜୀବନଦୃଷ୍ଟି, ପରିବର୍ତ୍ତନ ବିରୋଧୀ ରକ୍ଷଣଶୀଳତା ଭାରତୀୟ ଜନଜୀବନରେ ବ୍ୟାପକ ଭାବେ ରହିଥିଲା, ଅଥଚ ଚୀନର ସାମାଜିକ ଜୀବନ ପ୍ରବାହ ଏ ସବୁଥିରୁ ଅନେକାଂଶରେ ମୁକ୍ତ ରହିଥିଲା । ଚୀନରେ ପ୍ରଚାରିତ ଧର୍ମ ଓ ଜୀବନଦର୍ଶନ ବହୁଭାବରେ ଇହଲୌକିକ ଓ ମାନବକୈନ୍ଦ୍ରିକ ରହିଥିଲା । ଚାଇନାର ସଭ୍ୟତା ଓ ସଂସ୍କୃତିକୁ ଦୁଇ ପ୍ରବୀଣ ମାନବବାଦୀ ଦାର୍ଶନିକ କନଫୁସିଅସ (ଖ୍ରୀ:ପୂ: ୫୫୧ରୁ ୪୭୯) ଓ ଗୌତମ ବୁଦ୍ଧ (ଖ୍ରୀ:ପୂ:୫୬୦ ରୁ ୪୮୦) ଗଭୀର ଭାବେ ପ୍ରଭାବିତ କରିଥିଲେ । ଏ ଉଭୟଙ୍କର ଦର୍ଶନ ମାନବବାଦୀ ଜୀବନଦୃଷ୍ଟି ଓ ନୈତିକ ବିଚାରବୋଧ ଉପରେ ଆଧାରିତ ଥିଲା । ଶୃଙ୍ଖଳିତ ସାମାଜିକ ଜୀବନ, ନୈତିକ କର୍ତ୍ତବ୍ୟବୋଧ, ମାନବବାଦୀ ବିଚାର ଉଭୟ ଦର୍ଶନର ପ୍ରତିପାଦ୍ୟ ବିଷୟ ଥିଲା ଓ ଏହି ଭାବଧାରା ଚୀନର ସାମାଜିକ ଓ ସାଂସ୍କୃତିକ ଜୀବନ ପ୍ରବାହକୁ ଯୁଗ ଯୁଗ ଧରି ପ୍ରଭାବିତ କରିଆସିଥିଲା । ଅପର ପକ୍ଷରେ ଭାରତୀୟ ଦର୍ଶନ ଅନେକାଂଶରେ ପାରଲୌକିକ ବିଚାରବୋଧ, ଦେହାତୀତ ମୁକ୍ତି, ମୋକ୍ଷ ଇତ୍ୟାଦି ଭାବନା ଦ୍ୱାରା ପ୍ରଭାବିତ ହୋଇ ଆସିଥିବା ଦେଖାଯାଏ । ସାମାଜିକ ଜୀବନ ପ୍ରବାହ ଓ ନୈତିକ ବିଚାରବୋଧକୁ ସଂହିତାମାନଙ୍କର ବର୍ଣ୍ଣାଶ୍ରମ ଭାବନା ଓ ଭେଦଭାବ ମୂଳକ ଜାତିଗତ ଦୃଷ୍ଟିଭଙ୍ଗୀ ଯୁଗ ଯୁଗ ଧରି ପ୍ରଭାବିତ କରିଥିବା ଜଣାଯାଏ । ଚୀନ ଓ ଭାରତର ସଭ୍ୟତା ପ୍ରାଚୀନ ଓ ପ୍ରତ୍ୟେକ ସଭ୍ୟତା ଓ ସଂସ୍କୃତି ଭିତରେ ବହୁ ବିବିଧତା ଦୃଷ୍ଟିଗୋଚର ହୋଇଥାଏ । ପ୍ରତ୍ୟେକ ସଭ୍ୟତା ଓ ସଂସ୍କୃତିରେ ନାନା ଧାରାର ସମନ୍ୱୟ ଦେଖିବାକୁ ମିଳେ । ତେବେ ଉଭୟ ଦେଶର ବୌଦ୍ଧିକ ଚିନ୍ତନ ସ୍ତରରେ କେତେକ ମୌଳିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ଭାରତୀୟ ଧର୍ମ, ଦର୍ଶନ ଓ ବୌଦ୍ଧିକ ଦୃଶ୍ୟପଟରେ ଅତିପ୍ରାକୃତିକ ବା ଅତୀନ୍ଦ୍ରିୟ ଭାବନାର ପ୍ରାବଲ୍ୟ ଦେଖିବାକୁ ମିଳେ, ଅଥଚ ଚୀନର ବୌଦ୍ଧିକ ଦୃଶ୍ୟପଟରେ ବୈଜ୍ଞାନିକ ପ୍ରକୃତିବାଦ ଏକ ମୁଖ୍ୟ ଭାବନା ଅଟେ । ସେହିପରି ଭାରତୀୟ ଜନଜୀବନରେ ଧାର୍ମିକ ଆବେଗ, ଈଶ୍ୱରୀୟ ଭକ୍ତିଭାବନା ଓ ପାରଲୌକିକ ବିଶ୍ୱାସର ପ୍ରାଧାନ୍ୟ ପରିଲକ୍ଷିତ ହେବାବେଳେ ଚାଇନାର ସାମାଜିକ ଜୀବନ ପ୍ରବାହରେ ମାନବବାଦୀ ବିଚାର, ସାମାଜିକ କର୍ତ୍ତବ୍ୟବୋଧ ଓ ବିଚାରଶୀଳତାର ପ୍ରାଧାନ୍ୟ ଅଧିକ ଦେଖିବାକୁ ମିଳେ । ମୋଟ ଉପରେ ଉଭୟ ଦେଶର ସାଂସ୍କୃତିକ, ସାମାଜିକ, ଧାର୍ମିକ ଦୃଶ୍ୟପଟ ତଥା ଜୀବନ-ଦର୍ଶନ କ୍ଷେତ୍ରରେ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଉଭୟ ଦେଶର ସଭ୍ୟତା ବେଶ୍ ପ୍ରାଚୀନ ଓ ଉଭୟ ଦେଶରେ ରାଜତନ୍ତ୍ର, ସାମନ୍ତବାଦ ଓ ସାମ୍ରାଜ୍ୟବାଦ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ରହିଥିଲା ।

ଉଭୟ ଦେଶରେ କୃଷିଭିତ୍ତିକ ଗ୍ରାମୀଣ ସଭ୍ୟତା, ଶୋଷଣ, ଦାରିଦ୍ର୍ୟ ରହିଥିଲା । ଏସବୁ ସାମଂଜସ୍ୟ ସତ୍ତ୍ୱେ ସାଂସ୍କୃତିକ ପୃଷ୍ଠଭୂମିରେ ଉଭୟ ଦେଶର ବୌଦ୍ଧିକ ଓ ଦାର୍ଶନିକ ପରମ୍ପରା ଭିତରେ କେତେକ ମୌଳିକ ପାର୍ଥକ୍ୟ ରହିଥିବା ଦେଖାଯାଏ ।

ଉଭୟ ଦେଶର ପ୍ରଚଳିତ ବ୍ୟବସ୍ଥାକୁ ପରିବର୍ତ୍ତନ କରି ଏକ ନୂତନ ଆଦର୍ଶ ସୃଷ୍ଟି ପାଇଁ ଗାନ୍ଧୀ ଓ ମାଓ ନିଜ ନିଜ ଧାରାରେ ଆଲୋଡ଼ନ ସୃଷ୍ଟି କରିଥିଲେ । ପ୍ରଚଳିତ ବ୍ୟବସ୍ଥା ଅନୈତିକ ଓ ଅମାନବିକ ବୋଲି ସେମାନେ ବିଚାର କରି ସେଥିପାଇଁ ନିଜସ୍ୱ ଧାରାରେ ଏକ ଏକ ବୈପ୍ଳବିକ ପରିବର୍ତ୍ତନ ପାଇଁ ବିଚାରର ଅବତାରଣା କରିଥିଲେ । ଭାରତରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ଦୂର ନ କଲେ ସମାଜରୁ ଦୁଃଖ ଦୁର୍ଦ୍ଦଶା ଘୁଞ୍ଚିବ ନାହିଁ ବୋଲି ଗାନ୍ଧୀଙ୍କର ଆବେଦନ ଜନଗଣଙ୍କ ଭିତରେ ଏକ ରାଜନୈତିକ ଆଲୋଡ଼ନ ସୃଷ୍ଟି କରିଥିଲା । ସେହିପରି ସାମନ୍ତବାଦୀ ପୁଞ୍ଜିବାଦକୁ ଚୀନରୁ ଦୂର ନକଲେ ସେଠାରେ ଦାରିଦ୍ର୍ୟ ଓ ଶୋଷଣ ଦୂର ହେବ ନାହିଁ ବୋଲି ମାଓ ନିଜର ସିଦ୍ଧାନ୍ତ ଦ୍ୱାରା ଜନଗଣଙ୍କ ଭିତରେ ଏକ ଜାଗରଣ ସୃଷ୍ଟି କରିଥିଲେ । ଗାନ୍ଧୀଙ୍କ ରାଜନୈତିକ କାର୍ଯ୍ୟସୂଚୀ ଭାରତୀୟ ଧର୍ମ, ଦର୍ଶନ ଇତ୍ୟାଦିଦ୍ୱାରା ଅଧିକ ପ୍ରଭାବିତ ହୋଇଥିବାବେଳେ ମାଓଙ୍କର ରାଜନୈତିକ କାର୍ଯ୍ୟସୂଚୀ ମାର୍କସଙ୍କର ବିଚାରବୋଧ ଓ ରୁଷର କମ୍ୟୁନିଷ୍ଟ ଆନ୍ଦୋଳନଦ୍ୱାରା ପ୍ରଭାବିତ ହୋଇଥିଲା । ଗାନ୍ଧୀଙ୍କ ରାଜନୈତିକ କାର୍ଯ୍ୟଧାରା ଭିତରେ ଧର୍ମର ଯଥେଷ୍ଟ ପ୍ରଭାବ ରହିଥିଲା ଓ ସେ ଧର୍ମ ଓ ରାଜନୀତି ଭିତରେ ଏକ ସମନ୍ୱୟ ଆଣିବାକୁ ପ୍ରୟାସ କରିଥିଲେ । ଭାରତବର୍ଷରେ ଯେକୌଣସି ସାମାଜିକ ଆଲୋଡ଼ନ ପଛାତରେ ଧାର୍ମିକ ବିଶ୍ୱାସର ପ୍ରଭାବ ରହିବା ଦେଖାଯାଏ । ଗାନ୍ଧୀ ସେହି ଧାରାରେ ତାଙ୍କର ରାଜନୈତିକ ଆଦର୍ଶକୁ ଧାର୍ମିକ ଆବେଗ ସହିତ ସଂଶ୍ଳିଷ୍ଟ କରି ଜନଗଣଙ୍କ ଭିତରେ ଏକ ଆଲୋଡନ ସୃଷ୍ଟି କରିଥିଲେ । ଅବଶ୍ୟ ଗାନ୍ଧୀ ଧର୍ମ ଓ ରାଜନୀତିକୁ ସେମାନଙ୍କ ପ୍ରଚଳିତ ଅର୍ଥରେ ନ ବୁଝି ସେ ସବୁକୁ ଭିନ୍ନ ଭାବରେ ବ୍ୟାଖ୍ୟା କରିଥିଲେ । ତାଙ୍କପାଇଁ ଧର୍ମ ନ୍ୟାୟର ଅର୍ଥ ବହନ କରୁଥିଲା ଓ ରାଜନୀତିର ଲକ୍ଷ୍ୟ ସାମାଜିକ ବ୍ୟବସ୍ଥାକୁ ନ୍ୟାୟପୂର୍ଣ୍ଣ କରିବା ଥିଲା । ସୁତରାଂ ସେ ଧର୍ମ ଓ ରାଜନୀତିକୁ ଏହି ପରିବର୍ତ୍ତିତ ଅର୍ଥରେ ବ୍ୟବହାର କରୁଥିଲେ ଓ ସେହି ଅର୍ଥରେ ଧର୍ମ ଓ ରାଜନୀତି ଭିତରେ ସମନ୍ୱୟ ସୃଷ୍ଟି କରିଥିଲେ ।

ଅପର ପକ୍ଷରେ ମାଓ ରାଜନୈତିକ ପରିବର୍ତ୍ତନ ପାଇଁ ବୈପ୍ଳବିକ କାର୍ଯ୍ୟସୂଚୀକୁ ଅଗ୍ରାଧିକାର ଦେଇଥିଲେ । ପ୍ରଚଳିତ ରାଜନୈତିକ ବ୍ୟବସ୍ଥା ଓ ତାହାର ଅନ୍ତର୍ନିହିତ ଅର୍ଥନୀତି ହିଁ ତାଙ୍କ ପାଇଁ ଶୋଷଣ ଓ ବୈଷମ୍ୟର ଆଧାର ହୋଇଥିଲା । ସୁତରାଂ ରାଜନୈତିକ ବ୍ୟବସ୍ଥାର ପରିବର୍ତ୍ତନ ଦ୍ୱାରା ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଆସିପାରିବ, ଫଳରେ ସମାଜରୁ ପୁଞ୍ଜିବାଦ ଜନିତ ଶୋଷଣ ଓ ବୈଷମ୍ୟର ବିଲୋପ ସମ୍ଭବ ହେବ । ଏଥିପାଇଁ

ଜନଗଣଙ୍କ ଭିତରେ ଏକ ବୈପ୍ଳବିକ ନବଜାଗରଣ ସୃଷ୍ଟି କରିବାକୁ ସେ ପ୍ରୟାସ କରିଥିଲେ । ଉଭୟ ଦେଶର ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି ପୃଥକ୍ ଥିଲା ଓ ଉଭୟ ଦେଶର ରାଜନୈତିକ ସ୍ଥିତି ମଧ୍ୟ ଭିନ୍ନ ରହିଥିଲା । ଏହି ସ୍ଥିତିରେ ଗାନ୍ଧୀ ଓ ମାଓ ଦୁଇଟି ପୃଥକ ପରିବେଶରେ ନିଜସ୍ୱ ଶୈଳୀରେ ଏକ ଏକ ଆଦର୍ଶ ସମାଜର ଚିତ୍ର ଆଙ୍କିଥିଲେ । ସେମାନେ ଭାବିଥିଲେ ଯେ ସେମାନଙ୍କ ସ୍ୱପ୍ନର ସମାଜ ସାର୍ଥକ ହେଲେ ସମାଜରୁ ଦାରିଦ୍ର୍ୟ, ବୈଷମ୍ୟ, ଅନ୍ୟାୟ ଓ ଭେଦଭାବ ଲୋପ ପାଇବ ।

(୧୬.୫.୨୦୧୨)



# ଗାନ୍ଧୀ ଓ ମାଓଙ୍କ ଆଦର୍ଶ ଜନରାଜ୍ୟ

ମହାତ୍ମା ଗାନ୍ଧୀ (୧୮୬୯-୧୯୪୮) ଭାରତବର୍ଷ ପାଇଁ ଓ ମାଓ ସେ ତୁଙ୍ଗ (୧୮୯୩-୧୯୭୬) ଚୀନ ପାଇଁ ନିଜ ନିଜ ଧାରାରେ ପୃଥକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ । ନିଜ ଦେଶର ପ୍ରଚଳିତ ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥା ସେମାନଙ୍କ ଦୃଷ୍ଟିରେ ମନ୍ଦ ଆଦର୍ଶ ଉପରେ ଆଧାରିତ ଥିବାରୁ ସମାଜରେ ନାନା ଅନ୍ୟାୟ, ଶୋଷଣ, ଦାରିଦ୍ର୍ୟ ଓ ଭେଦଭାବ ରହିବା ସେମାନେ ଅନୁଭବ କରିଥିଲେ । ସେହି ପୃଷ୍ଠଭୂମିରେ ସେମାନେ ନିଜସ୍ୱ ଧାରାରେ ଆଦର୍ଶ, ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ ଜନରାଜ୍ୟର (ବା ୟୁଟୋପିଆ) ବିଚାର ଦେଇଥିଲେ । ଏକ ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ ଜନରାଜ୍ୟର ଲକ୍ଷ୍ୟ କିପରି ପୂରଣ ହେବ ସେ ପାଇଁ ସେମାନେ ପନ୍ଥାର ମଧ୍ୟ ଅନୁସନ୍ଧାନ କରିଥିଲେ । ଗାନ୍ଧୀ ଏଥିପାଇଁ ବ୍ରିଟିଶ ସାମ୍ରାଜ୍ୟବାଦକୁ ଭାରତରୁ ବିଦାୟ ଦେଇ ଦେଶର ସ୍ୱାଧୀନତାକୁ ଗୁରୁତ୍ୱ ଦେଇଥିଲେ । ଏକ ସ୍ୱାଧୀନ ରାଷ୍ଟ୍ର ସୁବ୍ୟବସ୍ଥିତ ଯୋଜନା ମାଧ୍ୟମରେ ଇପ୍ସିତ ସାମାଜିକ ଓ ଅର୍ଥନୈତିକ ଲକ୍ଷ୍ୟ ହାସଲ କରିବା ସମ୍ଭବ ବୋଲି ଭାବିଥିଲେ । ଏଥିପାଇଁ ସେ ପରାଧୀନ ଭାରତରୁ ହିଁ ତାଙ୍କର ରଚନାତ୍ମକ କାର୍ଯ୍ୟକ୍ରମ ଜରିଆରେ ଦେଶନିର୍ମାଣର ଭିତ୍ତି ସ୍ଥାପନ ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । ଜନମଙ୍ଗଳ ଲକ୍ଷ୍ୟ ପୂରଣ ସହ ସାମାଜିକ ନ୍ୟାୟ, ସମତା ଓ ମାନବିକ ଅଧିକାର ଯେ ଏକ ସ୍ୱାଧୀନ ରାଷ୍ଟ୍ରରେ ସମ୍ଭବ ହେବ ଏହା ତାଙ୍କର ଚିନ୍ତନ ଥିଲା । ରାଜନୈତିକ ସ୍ୱାଧୀନତା ଓ ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ ସମାଜର ପୁନଃ ନିର୍ମାଣ ତାଙ୍କ ରାଜନୈତିକ କାର୍ଯ୍ୟସୂଚୀର ପ୍ରଧାନ ଲକ୍ଷ୍ୟ ହୋଇଥିଲା । ମାଓ ସେହିପରି ଚୀନର ପ୍ରଚଳିତ ରାଜନୈତିକ ବ୍ୟବସ୍ଥାକୁ ଦୂର କରି ଏକ ସମାଜବାଦୀ ରାଷ୍ଟ୍ରର ରୂପରେଖ ଆଙ୍କିଥିଲେ । ସମାଜବାଦ ଜନିତ ଆଦର୍ଶକୁ ରୂପାୟନ କରିବା ପାଇଁ ଦେଶର ରାଜନୈତିକ ଦୃଶ୍ୟପଟ୍ଟ ପରିବର୍ତ୍ତନ ହେବା ଆବଶ୍ୟକ ବୋଲି ଗ୍ରହଣ କରିଥିଲେ । ଚୀନରେ ବିଦେଶୀ ଶାସନ ନ ଥିଲେ ମଧ୍ୟ ଯେଉଁ ରାଜନୈତିକ ବ୍ୟବସ୍ଥା ରହିଥିଲା ତାହାଦ୍ୱାରା ଅନ୍ୟାୟ, ଶୋଷଣ, ଦାରିଦ୍ର୍ୟ ଯେ ଉତ୍କଟ ହୋଇ ରହିଛି ତାହା ମାଓଙ୍କର ବିଚାର ଥିଲା । ଫଳତଃ ପ୍ରଚଳିତ ରାଜନୈତିକ ବ୍ୟବସ୍ଥାର ମୂଳୋତ୍ପାଟନ ହେଲେ ଯାଇ

ଆଦର୍ଶ ଜନରାଜ୍ୟର ଭିତ୍ତି ଯେ ପଡିପାରିବ ଏହା ହିଁ ମାଓ ଚିନ୍ତା କରିଥିଲେ । ମୋଟ ଉପରେ ଗାନ୍ଧୀ ଓ ମାଓ ସେମାନଙ୍କ ଦେଶର ପ୍ରଚଳିତ ବ୍ୟବସ୍ଥାକୁ ଅନ୍ୟାୟପୂର୍ଣ୍ଣ ମନେକରି ନିଜସ୍ୱ ଧାରାରେ ଏକ ଏକ ନ୍ୟାୟପୂର୍ଣ୍ଣ ସମାଜର ପରିକଳ୍ପନା କରିଥିଲେ । ନିଜର ଲକ୍ଷ୍ୟ ପୂରଣ ପାଇଁ ସେମାନେ ନିଜସ୍ୱ ଧାରାରେ ପନ୍ଥା ବି ଚିନ୍ତା କରିଥିଲେ ।

ଉଭୟ ଗାନ୍ଧୀ ଓ ମାଓ କେତେକ ଆଦର୍ଶର ଆଧାର ଉପରେ ନିଜ ନିଜ ପରିକଳ୍ପିତ ଜନରାଜ୍ୟ ପ୍ରକଳ୍ପର ରୂପରେଖ ଆଙ୍କିଥିଲେ । ଗାନ୍ଧୀ ସତ୍ୟ ଓ ଅହିଂସାକୁ ସର୍ବଶ୍ରେଷ୍ଠ ମୂଲ୍ୟବୋଧ ଭାବରେ ଗ୍ରହଣ କରୁଥିଲେ । ଏକ ବ୍ୟାବହାରିକ ଅର୍ଥରେ ସତ୍ୟ ତାଙ୍କ ପାଇଁ ଏକ ନ୍ୟାୟପୂର୍ଣ୍ଣ ସମାଜର ଭିତ୍ତି ବୋଲି ସେ ବିଚାର କରିଥିଲେ । ଏକ ନ୍ୟାୟପୂର୍ଣ୍ଣ ସମାଜର ମୌଳିକ ଆଦର୍ଶ ଭାବେ ସେ ଅହିଂସା, ସମତା ଓ ବ୍ୟକ୍ତି ସ୍ୱାଧୀନତାକୁ ମହତ୍ତ୍ୱ ଦେଉଥିଲେ । ଅହିଂସା, ସମତା ଓ ବ୍ୟକ୍ତି ସ୍ୱାଧୀନତା ମୂଲ୍ୟବୋଧ ଗୁଡିକର ମୌଳିକତାକୁ ଗ୍ରହଣ କରି ଏହି ଆଦର୍ଶ ଗୁଡିକ ପରସ୍ପର ସଂଯୋଜିତ ବୋଲି ସେ ଭାବିଥିଲେ । ଏହି ପ୍ରତ୍ୟେକ ଆଦର୍ଶକୁ ସେ ନିରଙ୍କୁଶ ମନେ କରୁଥିଲେ, ତେବେ ସମାଜ ବାସ୍ତବରେ ଯେ ଏହି ନିରଙ୍କୁଶ ଆଦର୍ଶ ଉପରେ ପ୍ରତିଷ୍ଠା ଲାଭକରିବା ସମ୍ଭବ ନୁହଁ, ଏହା ସେ ଗ୍ରହଣ କରୁଥିଲେ । ଏହି ସ୍ଥିତିରେ ସେ ଏହାର ଏକ ଆପେକ୍ଷିକ ଅଭିବ୍ୟକ୍ତିକୁ ଗୁରୁତ୍ୱ ଦେଉଥିଲେ । ତେବେ ଏହି ନିରଙ୍କୁଶ ମୂଲ୍ୟବୋଧ ଗୁଡିକୁ ଜୀବନଧାରାରେ ରୂପାୟନ କରିବା ପାଇଁ ସମାଜର କ୍ରମବିକାଶକୁ ସେ ପ୍ରାଧାନ୍ୟ ଦେଉଥିଲେ । ବାସ୍ତବପକ୍ଷେ ଜୀବନର ଅପୂର୍ଣ୍ଣତା ଭିତରେ ପୂର୍ଣ୍ଣତା ପାଇଁ ପ୍ରୟାସ ଯେପରି ଏକ ମହତ୍ତର ଅଭୀପ୍‌ସାର ସ୍ୱାକ୍ଷର ବହନ କରେ, ସେହିପରି ସମାଜ ଜୀବନରେ ଆପେକ୍ଷିକ ଆଦର୍ଶରୁ ନିରଙ୍କୁଶ ଆଦର୍ଶର ରୂପାୟନ ପାଇଁ ପ୍ରଚେଷ୍ଟା ସମାଜ ଜୀବନକୁ ଉନ୍ନତ ଓ ମହତ୍ତର କରିଥାଏ । ଏକ ସମାଜ କେତେ ସଫଳ ଭାବେ ଏହି ଆଦର୍ଶ ପ୍ରାପ୍ତି ଦିଗରେ ଅଗ୍ରଗତି କରି ପାରୁଛି ତାହାକୁ ସେ ପ୍ରାଧାନ୍ୟ ଦେଉଥିଲେ ।

ମାଓ ମଧ୍ୟ ନିଜସ୍ୱ ଧାରାରେ ଏକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ । ସ୍ୱତନ୍ତ୍ରତା, ସମାନତା ଓ ଭାତୃତ୍ୱ ଆଧାରରେ ସାମାଜିକ ବ୍ୟବସ୍ଥାକୁ ପରିବର୍ତ୍ତନ କରିବା ପାଇଁ ମାଓ ଗଭୀର ସମ୍ପୃକ୍ତି ବ୍ୟକ୍ତ କରିଥିଲେ । ଏପରି ଏକ ସମାଜ କିପରି ସମ୍ଭବ ଯେଉଁଠି ସବୁ ମଣିଷ ମୁକ୍ତ ରହି ସମାନତା ଓ ଭ୍ରାତୃତ୍ୱର ସମ୍ପର୍କ ଭିତରେ ଗୋଷ୍ଠୀ ଜୀବନ ଯାପନ କରିବେ ତାହା ଚିନ୍ତା କରିଥିଲେ । ଏକ ଶ୍ରେଣୀଭିତ୍ତିକ ସମାଜରେ ସମାଜର ଧନୀକ ଶ୍ରେଣୀ ଯେଉଁ ସ୍ୱାଧୀନତା, ସୁଯୋଗ ଓ ଉପକାର ଲାଭ କରୁଛନ୍ତି ସେହି ସୁଯୋଗକୁ ସମାଜର ସବୁ ମଣିଷଙ୍କ ପାଇଁ କିପରି ଉପଲବ୍ଧ କରାଯାଇ ପାରିବ ଫଳରେ ଶ୍ରେଣୀଗତ

ପାର୍ଥକ୍ୟ ସମାଜରୁ ଦୂର ହେବ ତାହା ମାଓଙ୍କ ପାଇଁ ଚିନ୍ତାର ବିଷୟ ହୋଇଥିଲା । ଉତ୍ପାଦନର ସକଳ ସାଧନକୁ ନିୟନ୍ତ୍ରଣରେ ରଖିଥିବା ସମାଜର ବୁର୍ଜୁଆ ଶ୍ରେଣୀ ଯେଉଁ ସୁବିଧା ଓ ସୁଯୋଗକୁ ଉପଭୋଗ କରୁଛନ୍ତି, ସେହି ସୁବିଧା, ସୁଯୋଗ ସମସ୍ତଙ୍କ ପାଇଁ ଉପଲବ୍ଧ କରିବା ପାଇଁ ଶ୍ରେଣୀଗତ ପାର୍ଥକ୍ୟ ସମାଜରୁ ବିଲୋପ ହେବା ଆବଶ୍ୟକ ବୋଲି ସେ ଭାବିଥିଲେ । ପ୍ରତ୍ୟେକ ବ୍ୟକ୍ତି ନିଜ ସାମର୍ଥ୍ୟ ଓ ଶକ୍ତି ଅନୁଯାୟୀ ସାମାଜିକ ବିକାଶ ପ୍ରକ୍ରିୟାକୁ ଅବଦାନ ଦେବ ଓ ନିଜର ଆବଶ୍ୟକତାକୁ ପୂରଣ କରି ଏକ ମର୍ଯ୍ୟାଦାର ଜୀବନ ବଞ୍ଚିବ ମାଓଙ୍କ ଆଦର୍ଶର ଆଭିମୁଖ୍ୟ ଥିଲା । ଏହା ସମ୍ଭବ ହେଲେ ସମତା, ସ୍ୱାଧୀନତା ଓ ଭ୍ରାତୃତ୍ୱର ପରିବେଶ ସମାଜରେ ପ୍ରତିଷ୍ଠା ଲାଭ କରିବ । ସେଥିପାଇଁ ଉତ୍ପାଦନର ସକଳ ସାଧନକୁ ମୁଷ୍ଟିମେୟଙ୍କ ନିୟନ୍ତ୍ରଣରୁ ମୁକ୍ତ କରି ତାହାର ସମାଜୀକରଣ କରିବା ଆବଶ୍ୟକ ।

ଗାନ୍ଧୀ ଯେଉଁ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ ସେଥିରେ ରାଷ୍ଟ୍ର ବା ରାଷ୍ଟ୍ରୀୟ ବ୍ୟବସ୍ଥା ଯଥା ପ୍ରତିରକ୍ଷା ବାହିନୀ, ରାଜନୈତିକ ଦଳ,ସଂସଦ, କେନ୍ଦ୍ରୀୟ ବିଚାର ବ୍ୟବସ୍ଥା ଇତ୍ୟାଦିର ଭୂମିକା ରହିବ ନାହିଁ । ରାଷ୍ଟ୍ର, ସରକାର ଓ ରାଷ୍ଟ୍ରୀୟ ବ୍ୟବସ୍ଥା ଯେ ଏକ ଅହିଂସ ସମାଜ ଦିଗରେ ସହାୟକ ହେବ ନାହିଁ ଏହା ସେ ଭାବୁଥିଲେ । ଏକ ନୈରାଜ୍ୟବାଦୀ (ଆନାର୍କିଷ୍ଟ) ଭାବନାରେ ସେ ବିଶ୍ୱାସ କରୁଥିଲେ ଅବଶ୍ୟ ଗାନ୍ଧୀଙ୍କର ଏହି ବିଚାର କେତେକ ପାଶ୍ଚାତ୍ୟ ଉଦାରବାଦୀ ରାଜନୈତିକ ଚିନ୍ତକଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲା । ଟଲଷ୍ଟୟ, ରସ୍‌କିନ, ଡାଭିଡ୍ ଥରୋ ଇତ୍ୟାଦି ଚିନ୍ତକମାନେ ରାଷ୍ଟ୍ର, ସରକାର, କେନ୍ଦ୍ରୀୟ ବ୍ୟବସ୍ଥା ଓ ସୈନ୍ୟବାହିନୀ ଇତ୍ୟାଦିକୁ ଅନିଷ୍ଟକର ମନେକରି ରାଷ୍ଟ୍ରବିହୀନ ସମାଜର ପରିକଳ୍ପନା କରିଥିଲେ । ଗାନ୍ଧୀଙ୍କ ଆଦର୍ଶ ଜନରାଜ୍ୟ ସେହି ଧାରାରେ ରୂପରେଖ ନେଇଥିଲା । ରାଷ୍ଟ୍ରୀୟ ବ୍ୟବସ୍ଥା ଥିବା ପର୍ଯ୍ୟନ୍ତ ସମାଜରୁ ହିଂସା, ଶୋଷଣ ଓ ବୈଷମ୍ୟ ସମ୍ପୂର୍ଣ୍ଣ ଦୂର ହୋଇ ପାରିବ ନାହିଁ । ସୁତରାଂ ଗାନ୍ଧୀଙ୍କର  ଆଦର୍ଶ ସମାଜ ହେବ ସମ୍ପୂର୍ଣ୍ଣ ବିକେନ୍ଦ୍ରୀଭୂତ । ଏକ ବିକେନ୍ଦ୍ରୀକରଣ ସମାଜ ବ୍ୟବସ୍ଥା ଯେଉଁଥିରେ ଗ୍ରାମ ଗୁଡିକର ପୂର୍ଣ୍ଣବିକାଶ ଓ ପୁନର୍ଗଠନ ହୋଇ ପାରିବ ତାହାକୁ ସେ ଗୁରୁତ୍ୱ ଦେଉଥିଲେ । ପଞ୍ଚାୟତ ମାନଙ୍କର ସାର୍ବଭୌମତ୍ୱକୁ ଗୁରୁତ୍ୱ ଦେଇ ପରସ୍ପର ଭିତରେ ନିର୍ଭରଶୀଳ ପୂର୍ଣ୍ଣସ୍ୱରାଜ୍ୟ ପ୍ରତିଷ୍ଠାକୁ ସେ ଆଦର୍ଶ ବ୍ୟବସ୍ଥା ବୋଲି ଭାବୁଥିଲେ । ସେହି ଆଦର୍ଶ ଜନରାଜ୍ୟ ବ୍ୟବସ୍ଥାରେ ଜନଗଣଙ୍କର ସାର୍ବଭୌମତ୍ୱ, ଆର୍ଥନୀତିକ ସମତା, ବ୍ୟକ୍ତି ସ୍ୱାଧୀନତା ସୁଦୃଢ଼ ହୋଇପାରିବ । ସୁତରାଂ ରାଷ୍ଟ୍ରବିହୀନ ଏକ ବିକେନ୍ଦ୍ରୀଭୂତ ସ୍ୱାବଲମ୍ବନଶୀଳ ସମାଜ ହିଁ ତାଙ୍କ ଆଦର୍ଶ ସମାଜର ସ୍ୱପ୍ନ ହୋଇ ରହିଥିଲା ।

ଅପରପକ୍ଷରେ ମାଓ ମାର୍କସଙ୍କ ଜନରାଜ୍ୟକୁ ଆଦର୍ଶ ବୋଲି ଗ୍ରହଣ କରିଥିଲେ । ମାର୍କସଙ୍କ ଭାବଧାରାରେ ଏକ ରାଷ୍ଟ୍ରବିହୀନ, ଶ୍ରେଣୀବିହୀନ ଓ ସମତାପୂର୍ଣ୍ଣ ସମାଜର ସଫଳ ରୂପାୟନକୁ ଆଦର୍ଶ ବୋଲି ଗ୍ରହଣ କରାଯାଇଥିଲା । ତେବେ ସମାଜରୁ ବୁର୍ଜୁଆ ଓ ଶୋଷକ ଶ୍ରେଣୀର ଆଧିପତ୍ୟକୁ ଦୂର କରିବା ପାଇଁ ସକଳ ପୁଞ୍ଜି ରାଷ୍ଟ୍ରର ଅଧୀନ ହେବା ଆବଶ୍ୟକ । ରାଷ୍ଟ୍ରୀୟ ସମ୍ପତ୍ତି, ଉତ୍ପାଦନର ସାଧନ ଓ ପୁଞ୍ଜି ଉପରେ ବ୍ୟକ୍ତିଗତ ମାଲିକାନା ନ ରହି ଏହା ରାଷ୍ଟ୍ର ଅଧୀନ ହେବା ଆବଶ୍ୟକ । କାଳକ୍ରମେ ରାଷ୍ଟ୍ରୀୟ ଆଧିପତ୍ୟ ଆଧାରରେ ସମାଜରୁ ସକଳ ଶ୍ରେଣୀ-ବୈଷମ୍ୟ ଦୂର ହୋଇପାରିବ । ଯେତେବେଳେ ଶ୍ରେଣୀସଂଘର୍ଷ ଦ୍ୱାରା ସମାଜରୁ ଶ୍ରେଣୀ ବ୍ୟବସ୍ଥାର ବିଲୋପ ହେବ, ସେତେବେଳେ ସର୍ବହରାର ଓ ସର୍ବସାଧାରଣର ଶାସନ ପ୍ରତିଷ୍ଠା ହେବ । ସମାଜର ସକଳ ସାଧନର ଅଧିକାରୀ ସମାଜର ଶ୍ରମିକ ଶ୍ରେଣୀ ହେବେ ଓ ସବୁ ସ୍ତରରେ ସମତାର ପରିବେଶ ଆସିବ । ସମାଜବାଦୀ ରାଷ୍ଟ୍ର ବ୍ୟବସ୍ଥା ଧୀରେ ଧୀରେ ଏକ ସାମ୍ୟବାଦୀ ଜନତନ୍ତ୍ର ବ୍ୟବସ୍ଥାରେ ରୂପାନ୍ତରିତ ହେବ । ସେହି ସ୍ଥିତିରେ ସମତା, ସ୍ୱାଧୀନତା ଓ ଯଥାର୍ଥ ଭ୍ରାତୃତ୍ୱର ପରିବେଶ ଆସିବ ।

ମୋଟ ଉପରେ ଗାନ୍ଧୀ ଓ ମାର୍କସ ଏକ ରାଷ୍ଟ୍ରବିହୀନ, ଶ୍ରେଣୀବିହୀନ, ବୈଷମ୍ୟହୀନ, ସମତା-ଆଧାରିତ ସମାଜ ବ୍ୟବସ୍ଥାର ରୂପରେଖ ଆଙ୍କିଥିଲେ ଯେଉଁଠି ରାଷ୍ଟ୍ର ଓ ରାଷ୍ଟ୍ରୀୟ ବ୍ୟବସ୍ଥାର ଭିତ୍ତି ଗୁଡିକ ରହିବ ନାହିଁ । ଉଭୟ ନୈରାଜ୍ୟବାଦ ବ୍ୟବସ୍ଥାକୁ ଅନ୍ତିମ ଆଦର୍ଶ ଭାବେ ଗ୍ରହଣ କରିଥିଲେ । ତେବେ ଗାନ୍ଧୀ ଓ ମାର୍କସ- ମାଓଙ୍କ ଆଦର୍ଶ ଜନରାଜ୍ୟ ଭିତରେ କେତେକ ମୌଳିକ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଗାନ୍ଧୀଙ୍କର ଆଦର୍ଶ ଜନରାଜ୍ୟ କୃଷିଭିତ୍ତିକ, କୁଟୀରଶିଳ୍ପ ଆଧାରିତ, ପରସ୍ପର ନିର୍ଭରଶୀଳ ଗ୍ରାମୀଣ ପରିବେଶକୁ ଗୁରୁତ୍ୱ ଦେଇଥିବାବେଳେ ମାର୍କସ ବା ମାଓ ଏକ ଶିଳ୍ପୋନ୍ନତ ଓ ଆଧୁନିକ ଯନ୍ତ୍ରଚାଳିତ ବ୍ୟବସ୍ଥାକୁ ଗୁରୁତ୍ୱ ଦେଇଥିଲେ । ତେବେ ଏକ ଶିଳ୍ପୋନ୍ନତ ଓ ଅତ୍ୟାଧୁନିକ ପ୍ରଯୁକ୍ତି-କୈନ୍ଦ୍ରିକ ବ୍ୟବସ୍ଥାର ଯଥାର୍ଥ ଅଧିକାରୀ ସର୍ବସାଧାରଣ ହିଁ ହେବେ । ଗାନ୍ଧୀ ଏକ କୁଟୀରଶିଳ୍ପଭିତ୍ତିକ, କୃଷି-ଆଧାରିତ ଶିଳ୍ପକୁ ଗୁରୁତ୍ୱ ଦେଉଥିଲେ ଓ ସ୍ୱାବଲମ୍ବନଶୀଳ ଗ୍ରାମୀଣ ବ୍ୟବସ୍ଥାକୁ ମୂଳ ଭାବେ ନେଉଥିଲେ । ଏହିପରି ଏକ ସମାଜରେ ଶୋଷଣ ରହିବ ନାହିଁ, ଶ୍ରମର ମର୍ଯ୍ୟାଦା ରହିବ, ଗ୍ରାମଗୁଡିକ ସ୍ୱାବଲମ୍ବୀ ହେବେ ଓ ଲୋକଙ୍କର ନୈତିକ ମାନ ଉନ୍ନତ ହେବ । ଗାନ୍ଧୀ ଯାନ୍ତ୍ରିକ ଉତ୍ପାଦନ ଓ ଆଧୁନିକ ପ୍ରଯୁକ୍ତିର ବିରୋଧୀ ଥିଲେ । କାରଣ ଏହା ହିଁ ସମାଜରେ ଅର୍ଥନୈତିକ ବୈଷମ୍ୟ ଓ ଶୋଷଣର ଆଧାର ବୋଲି ଭାବୁଥିଲେ । ଅପରପକ୍ଷରେ ଶିଳ୍ପୋନ୍ନତି ଓ ଅତ୍ୟାଧୁନିକ ପ୍ରଯୁକ୍ତିକୁ ମାଓ ସମର୍ଥନ କରୁଥିଲେ, ତେବେ ଏହାର ମାଲିକାନା ସର୍ବସାଧାରଣ ହିଁ ହେବେ । ଗାନ୍ଧୀ ଓ ମାଓ ନିଜସ୍ୱ ଶୈଳୀରେ ଏକ ଆଦର୍ଶ ଓ ସମତାଭିତ୍ତିକ ସମାଜର ପରିକଳ୍ପନା କରିଥିଲେ ।

ଗାନ୍ଧୀ ତାଙ୍କ ସମସାମୟିକ ବିଶ୍ୱର ପ୍ରଚଳିତ ରାଜନୈତିକ ଆଦର୍ଶକୁ ବିରୋଧ କରୁଥିଲେ । ଜର୍ମାନ ଓ ଇଟାଲୀ ପ୍ରଭୃତି ରାଷ୍ଟ୍ରର ଫାସିବାଦୀ ଏକଛତ୍ରବାଦ, ରୁଷୀୟ କମ୍ୟୁନିଷ୍ଟବାଦ ଓ ୟୁରୋପୀୟ ଗଣତାନ୍ତ୍ରିକ ପୁଞ୍ଜିବାଦକୁ ଗାନ୍ଧୀ ବିରୋଧ କରୁଥିଲେ । କାରଣ ଏହି ବ୍ୟବସ୍ଥା ତାଙ୍କ ବିଚାରିତ ମୌଳିକ ମୂଲ୍ୟବୋଧ ଅହିଂସା, ସ୍ୱାଧୀନତା ଓ ସମତା ଆଧାରିତ ନଥିଲା । ମାଓ ସେହିପରି ପାଶ୍ଚାତ୍ୟ ପୁଞ୍ଜିବାଦୀ ଗଣତନ୍ତ୍ର ଓ ଫାସିବାଦର ଘୋର ବିରୋଧୀ ଥିଲେ । କାରଣ ଏହି ପ୍ରତ୍ୟେକଟି ବ୍ୟବସ୍ଥା ସମ୍ପୂର୍ଣ୍ଣଭାବେ ବୁର୍ଜୁଆ ସ୍ୱାର୍ଥଭିତ୍ତିକ ଥିଲା । ମାଓ ଯେଉଁ ଶ୍ରେଣୀହୀନ ସମାଜର ସ୍ୱପ୍ନଦ୍ରଷ୍ଟା ଥିଲେ ସେ ପାଇଁ ଶ୍ରେଣୀ ବୈଷମ୍ୟକୁ ଦୂର କରିବା ପାଇଁ କମ୍ୟୁନିଷ୍ଟ ଶାସନ ଅନୁକୂଳ ବୋଲି ଭାବୁଥିଲେ । ସର୍ବହରାର ଶାସନ ଜରିଆରେ ସାଙ୍ଗଠନିକ ବ୍ୟବସ୍ଥା ଦ୍ୱାରା ସମାଜରୁ ସକଳ ଶ୍ରେଣୀ-ବୈଷମ୍ୟ ଓ ଶ୍ରେଣୀ ବିରୋଧାଭାସକୁ ଦୂର କରିବାକୁ ଲକ୍ଷ୍ୟ ବୋଲି ନେଇଥିଲେ । ଏହାକୁ ହିଁ ସେ କମ୍ୟୁନିଜିମ କହୁଥିଲେ ।

ମୋଟ ଉପରେ ଗାନ୍ଧୀ ଓ ମାଓ ନିଜସ୍ୱ ଶୈଳୀରେ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ । ପ୍ରତ୍ୟେକର ସୈଦ୍ଧାନ୍ତିକ ଭିତ୍ତି କେତେ ସୁଦୃଢ଼ ଓ ତାହା ବାସ୍ତବରେ କେତେ ଦୂର ସଫଳ ହେବା ଯୋଗ୍ୟ ତାହା ଏକ ମୁକ୍ତ ପ୍ରଶ୍ନ ।

(୨୩.୫.୨୦୧୨)



# ଗାନ୍ଧୀଙ୍କ ସତ୍ୟାଗ୍ରହ ଓ ମାଓଙ୍କ ଗଣସଂଗ୍ରାମ

ଗାନ୍ଧୀଙ୍କର ଭାରତରେ ଓ ମାଓଙ୍କର ଚୀନରେ ଏକ ସମୟରେ ରାଜନୈତିକ ଆବିର୍ଭାବ ହୋଇଥିବା ଓ ଉଭୟ ଏକ ଏକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିବା ପୂର୍ବ ପ୍ରକାଶିତ ଲେଖା ମାନଙ୍କରେ କିଛି ଆଲୋଚିତ ହୋଇଛି । ନିଜ ଦେଶର ଜଗଗଣଙ୍କର ଦାରିଦ୍ର୍ୟ, ନିରକ୍ଷରତା ଓ କୃଷକ-ଶ୍ରମଜୀବୀ ଶ୍ରେଣୀର ଶୋଷଣ ଓ ଦୟନୀୟ ସ୍ଥିତି ଦେଖି ଉଭୟ ନିଜ ଦେଶର ପ୍ରଚଳିତ ରାଜନୈତିକ ବ୍ୟବସ୍ଥାକୁ ମୁଖ୍ୟତଃ ଦାୟୀ କରିଛନ୍ତି । ଭାରତବର୍ଷରେ ରହିଥିବା ବ୍ରିଟିଶ ସାମ୍ରାଜ୍ୟବାଦକୁ ହଟାଇବାକୁ ଗାନ୍ଧୀ ଗୁରୁତ୍ୱ ଦେବା ବେଳେ ଚୀନରେ ରହିଥିବା ଚିଆଙ୍ଗ-କାଇ-ସେକ୍ ଏକଛତ୍ରବାଦୀ ଶାସନର ମୂଳୋତ୍ପାଟନ ପାଇଁ ମାଓ ପ୍ରୟାସ କରିଛନ୍ତି । ଗାନ୍ଧୀ ଓ ମାଓ ନିଜ ନିଜ ଦେଶର ପ୍ରଚଳିତ ରାଜନୈତିକ ବ୍ୟବସ୍ଥାର ପରିବର୍ତ୍ତନକୁ ଅଗ୍ରାଧିକାର ଦେଇଛନ୍ତି ଓ ଏହି ପରିବର୍ତ୍ତନ ପାଇଁ ପନ୍ଥାର ସନ୍ଧାନ କରିଛନ୍ତି । ଏହା ସହିତ ସେତେବେଳେର ବିଶ୍ୱ ଦୃଶ୍ୟପଟରେ ଥିବା ରାଜନୈତିକ ବ୍ୟବସ୍ଥାର ଉଭୟ ସମାଲୋଚକ ହୋଇଛନ୍ତି । ଜର୍ମାନୀ, ଇଟାଲୀର ଏକଛତ୍ରବାଦୀ ଫାସିବାଦକୁ ଉଭୟ ପ୍ରତ୍ୟାଖ୍ୟାନ କରିଛନ୍ତି । ତେବେ ଉଭୟ ବି ସେ ସମୟର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଏକ ଆଦର୍ଶ ରାଜନୈତିକ ବ୍ୟବସ୍ଥା ବୋଲି ସ୍ୱୀକାର କରିନାହାନ୍ତି । ସେତେବେଳର ଗଣତାନ୍ତ୍ରିକ ବ୍ୟବସ୍ଥା ସହ ସାମ୍ରାଜ୍ୟବାଦ, ଶୋଷଣଯୁକ୍ତ ପୁଂଜିବାଦ ଓ ଅର୍ଥନୈତିକ ବୈଷମ୍ୟ ସମ୍ପୃକ୍ତ ଥିବାରୁ ଏହାକୁ ଉଭୟ ନେତା ନିଜ ଆଦର୍ଶ ଜନରାଜ୍ୟ ପାଇଁ ମଙ୍ଗଳକର ନୁହଁ ବୋଲି ବିଚାର କରିଛନ୍ତି । ତେବେ ରୁଷରେ ଲେନିନଙ୍କ ନେତୃତ୍ୱରେ ପରିଚାଳିତ ବଲସେଭିକ ଆନ୍ଦୋଳନ ଦ୍ୱାରା ଯେଉଁ କମ୍ୟୁନିଷ୍ଟ ଶାସନ ବ୍ୟବସ୍ଥାର ଭିତ୍ତି ପଡିଛି ଗାନ୍ଧୀ ସେହି ରାଜନୈତିକ ଆଦର୍ଶକୁ ମଧ୍ୟ ହିଂସାତ୍ମକ, ବ୍ୟକ୍ତି ସ୍ୱାଧୀନତା ବିରୋଧୀ କହି ବିରୋଧ କରିଛନ୍ତି । ମାଓ କିନ୍ତୁ ଶ୍ରେଣୀସଂଘର୍ଷଦ୍ୱାରା ଏକ ଶ୍ରେଣୀମୁକ୍ତ ସମାଜବାଦୀ ବ୍ୟବସ୍ଥାର ସମର୍ଥକ ଥିବାରୁ ସେ ବଲସେଭିକ ଆନ୍ଦୋଳନକୁ ସମର୍ଥନ ଦେଇଛନ୍ତି । ବୈଷମ୍ୟପୂର୍ଣ୍ଣ ବୁର୍ଜୁଆ ଗଣତନ୍ତ୍ର ପରିବର୍ତ୍ତେ ସର୍ବହରାର ଶାସନକୁ ଯଥାର୍ଥ ସାମ୍ୟବାଦୀ ଗଣତନ୍ତ୍ର ବୋଲି ସେ

ଅଭିହିତ କରିଛନ୍ତି । ତେବେ ନିଜର ଅଭିଳଷିତ ରାଜନୈତିକ ଲକ୍ଷ୍ୟ ହାସଲ ପାଇଁ ଗାନ୍ଧୀ ଓ ମାଓ ନିଜ ନିଜ ଦେଶର ପ୍ରଚଳିତ ରାଜନୈତିକ ବ୍ୟବସ୍ଥାର ବିଲୋପ ପାଇଁ ନିଜସ୍ୱ ଧାରାରେ ସଂଗ୍ରାମ ଆରମ୍ଭ କରିଛନ୍ତି ।

ଉଭୟ ମାଓ ଓ ଗାନ୍ଧୀ ଯେଉଁ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଛନ୍ତି ତାହା କେତେକ ମୌଳିକ ମୂଲ୍ୟବୋଧର ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ଚାହିଁଛନ୍ତି । ମୁଖ୍ୟତଃ ଉଭୟ ଏକ ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ ସମାଜ ପାଇଁ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି । ସମାଜରୁ ସକଳ ଅନ୍ୟାୟ ଓ ବୈଷମ୍ୟ ଦୂର କରିବା ପାଇଁ ଅଗ୍ରାଧିକାର ଦେଇଛନ୍ତି । ରାଜନୈତିକ ବ୍ୟବସ୍ଥାର ପରିବର୍ତ୍ତନ ଦ୍ୱାରା ନିଜର କଳ୍ପିତ ଆଦର୍ଶ ଜନରାଜ୍ୟର ବାସ୍ତବ ରୂପାୟନ ପାଇଁ ପଥ ସୁଗମ ହେବ ବୋଲି ଚିନ୍ତା କରିଛନ୍ତି । ଏହି ପୃଷ୍ଠଭୂମିରେ ପ୍ରଚଳିତ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ଗାନ୍ଧୀ ସତ୍ୟାଗ୍ରହକୁ ନିଜର ଆୟୁଧ କଲାବେଳେ ମାଓ ଗଣ ସଂଗ୍ରାମକୁ ସାଧନ ଭାବେ ଗ୍ରହଣ କରିଛନ୍ତି । ଏଠାରେ ଏହି ଦୁଇ ପନ୍ଥାର ଏକ ସଂକ୍ଷିପ୍ତ ଆଲୋଚନା ଦର୍ଶାଇବା ଆମର ଲକ୍ଷ୍ୟ ।

ଗାନ୍ଧୀ ଓ ମାଓ ଉଭୟ ନେତା ନିଜର ପରିକଳ୍ପିତ ଲକ୍ଷ୍ୟ ପାଇଁ ସମାଜର ସାଧାରଣ ଜନତାଙ୍କୁ ନିଜ ଆନ୍ଦୋଳନରେ ସାମିଲ କରିବାକୁ ନିଜ ନିଜ ଦେଶରେ ପ୍ରୟାସ କରିଛନ୍ତି । ଉଭୟ ଦେଶର ସାଧାରଣ ଜନଗଣଙ୍କର ସମର୍ଥନ ଲାଭ ପାଇଁ ସେମାନେ ନିଜସ୍ୱ ଧାରାରେ ନିଜର କୌଶଳ ବାହାର କରିଛନ୍ତି । ଉଭୟଙ୍କର ଅନୁଭବ ହୋଇଛି ଯେ ଏକ ରାଜନୈତିକ ପରିବର୍ତ୍ତନ ବା ସାମାଜିକ କ୍ରାନ୍ତି ପାଇଁ ସମାଜର ସାଧାରଣ ଜନତାଙ୍କର ସମର୍ଥନ ଅବଶ୍ୟମ୍ଭାବୀ । ସୁତରାଂ କେତେ ଅଧିକ ବ୍ୟକ୍ତି ସେହି ଆନ୍ଦୋଳନରେ ସମ୍ପୃକ୍ତ ହେବେ ବା ଆନ୍ଦୋଳନକୁ ସମର୍ଥନ ଦେବେ ତାହା ଉଭୟ ଗୁରୁତ୍ୱର ସହ ଚିନ୍ତା କରିଛନ୍ତି । ଉଭୟ ଦେଶର ଗ୍ରାମବହୁଳ ସାଧାରଣ ଜନତାର ଭାବାବେଗକୁ ସ୍ପର୍ଶ କରି ସେମାନଙ୍କ ସମର୍ଥନରେ ଗଣ ଆନ୍ଦୋଳନ ଗଢ଼ି ତୋଳିବାକୁ ଗାନ୍ଧୀ ଓ ମାଓ ପ୍ରୟାସ କରିଛନ୍ତି ।

ଗାନ୍ଧୀ ଏହି ପୃଷ୍ଠଭୂମିରେ ଯେକୌଣସି ପରିବର୍ତ୍ତନ ପାଇଁ ଅହିଂସ ବିରୋଧ ବା ସତ୍ୟାଗ୍ରହକୁ ନିଜର ପନ୍ଥା ଭାବରେ ଗ୍ରହଣ କରିଛନ୍ତି । ଏପରିକି ସାମାଜିକ ପରିବର୍ତ୍ତନ ପାଇଁ ସତ୍ୟାଗ୍ରହକୁ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ପନ୍ଥା ବୋଲି ସ୍ୱୀକାର କରିଛନ୍ତି । ଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଯେଉଁ ଅହିଂସ ଆନ୍ଦୋଳନର ସୂତ୍ରପାତ କରିଥିଲେ, ତାହାର ପ୍ରୟୋଗର ବାସ୍ତବ ଅନୁଭୂତିରୁ 'ସତ୍ୟାଗ୍ରହ' ଧୀରେ ଧୀରେ ଏକ ସିଦ୍ଧାନ୍ତ ଭାବେ ଭିତ୍ତି ନେଇଛି । ସତ୍ୟାଗ୍ରହକୁ ସାମାଜିକ ନିୟନ୍ତ୍ରଣ କ୍ଷେତ୍ରରେ ଈପ୍ସିତ ଲକ୍ଷ୍ୟ ହାସଲ ପାଇଁ ଏକମାତ୍ର ପନ୍ଥା ବୋଲି ସେ ବିଚାର କରିଛନ୍ତି । ଗାନ୍ଧୀଙ୍କ ସମଗ୍ର ରାଜନୈତିକ ସିଦ୍ଧାନ୍ତ ପୃଷ୍ଠଭୂମିରେ ସତ୍ୟାଗ୍ରହ ଏକ ମୁଖ୍ୟ ଆଦର୍ଶ ଭାବେ ବିକଶିତ ହୋଇଛି । ସତ୍ୟାଗ୍ରହୀ ସତ୍ୟ

ଓ ଅହିଂସାକୁ ସର୍ବଶ୍ରେଷ୍ଠ ମୂଲ୍ୟ ଦେବେ ଓ କୌଣସି ପରିସ୍ଥିତିରେ ହିଂସା ଓ ଅସତ୍ୟର ଆଶ୍ରୟ ନେବେ ନାହିଁ । ସତ୍ୟାଗ୍ରହୀ ସମସ୍ତ ଭୟରୁ ମୁକ୍ତ ରହି ଯେକୌଣସି ତ୍ୟାଗପାଇଁ ପ୍ରସ୍ତୁତ ରହିବେ ଓ ପ୍ରତିପକ୍ଷ ପ୍ରତି କୌଣସି ଅସୂୟାଭାବ ରଖିବେ ନାହିଁ । ତେବେ ଗଣ ସତ୍ୟାଗ୍ରହ ବେଳେ ଆନ୍ଦୋଳନରେ ଯୋଗ ଦେଉଥିବା ପ୍ରତ୍ୟେକ ବ୍ୟକ୍ତି ଯେ ଏହି ଉଚ୍ଚ ଆଦର୍ଶର ଅଧିକାରୀ ହେବେ ତାହା ଗାନ୍ଧୀ କହୁନାହାନ୍ତି; ବରଂ ଆନ୍ଦୋଳନର ନେତୃବୃନ୍ଦ ଏହି ଆଦର୍ଶ ପ୍ରତି ଉତ୍ତରଦାୟୀ ରହିବେ । ସତ୍ୟାଗ୍ରହୀ ଅହିଂସ ଉପାୟରେ ଯାଇ ଅନ୍ୟାୟର ପୃଷ୍ଠପୋଷକଙ୍କୁ ପରିବର୍ତ୍ତନ କରିବାକୁ ପ୍ରୟାସ କରିବେ । ଏହା ସମ୍ଭବ ନହେଲେ ସେ ଅନଶନ ଦ୍ୱାରା ପ୍ରତିପକ୍ଷଙ୍କ ଉପରେ ନୈତିକ ଚାପ ପ୍ରୟୋଗ କରିବେ । ଏତଦ୍‌ବ୍ୟତୀତ ଗଣ ଆନ୍ଦୋଳନ କ୍ଷେତ୍ରରେ ଅସହଯୋଗ ଓ ଆଇନ ଅମାନ୍ୟର ଆଶ୍ରୟ ନେବେ । ବସ୍ତୁତଃ ସତ୍ୟାଗ୍ରହର ପରିସର ଭିତରେ ଅହିଂସ ନିବେଦନ ଜରିଆରେ ଅନ୍ୟାୟ ପ୍ରତି ପ୍ରତିପକ୍ଷର ଦୃଷ୍ଟି ଆକର୍ଷଣ କରାଯିବା ସହ ଆବଶ୍ୟକ ହେଲେ ଅନଶନ, ଆଇନ ଅମାନ୍ୟ, ଅସହଯୋଗର ଆଶ୍ରୟ ନିଆଯାଇ ପରିସ୍ଥିତିରେ ପରିବର୍ତ୍ତନ ଆଣିବାକୁ ଉଦ୍ୟମ ହେବ । ଭାରତବର୍ଷରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ହଟାଇବା ପାଇଁ ଗାନ୍ଧୀ ଏହି ସବୁ ବାସ୍ତବ ପଦକ୍ଷେପର ଆଶ୍ରୟ ନେଇଥିବା ଏକ ଐତିହାସିକ ସତ୍ୟ ଅଟେ । ଗାନ୍ଧୀଙ୍କର ବିଭିନ୍ନ ସତ୍ୟାଗ୍ରହ ଆନ୍ଦୋଳନ ଜନମାନସରେ ଏପରି ଆବେଗ ସୃଷ୍ଟି କରୁଥିଲା ଯଦ୍ୱାରା ସେ ଦେଶର ଅଗଣିତ ସାଧାରଣ ମଣିଷର ସମର୍ଥନ ଲାଭ କରିଥିଲେ । ପରିଣାମତଃ ଏକ ବିଦେଶୀ ସରକାର ବିରୁଦ୍ଧରେ ସେ ଏକ ଗଣ ଆନ୍ଦୋଳନ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ ।

ଚୀନରେ ଜନଗଣଙ୍କର ଆର୍ଥିକ ସ୍ଥିତି ଭାରତ ପରି ରହିଥିଲା ଓ ସେଠାରେ ଦେଶୀୟ ସରକାର ଥିଲା । ତେବେ ସମାଜର ମୁଷ୍ଟିମେୟ ଧନୀକ ଶ୍ରେଣୀଙ୍କ ହାତରେ ପୁଞ୍ଜିର ମାଲିକାନା ରହିଥିଲା ଓ ସମାଜରେ ରହିଥିବା ଆର୍ଥିକ ବୈଷମ୍ୟ, ଆଞ୍ଚଳିକ ବୈଷମ୍ୟ ଓ ଶୋଷଣକୁ ରାଷ୍ଟ୍ରୀୟ ସମର୍ଥନ ମିଳୁଥିଲା । ଏହି ସ୍ଥିତିରେ ପରିବର୍ତ୍ତନ ଆଣିବାକୁ ସମାଜର କୃଷକ, ଶ୍ରମିକ, ସର୍ବହରା ଶ୍ରେଣୀକୁ ସଂଘବଦ୍ଧ କରିବାକୁ ମାଓଙ୍କର ଆବେଦନ ବୈପ୍ଳବିକ ଥିଲା । ସେ ଗଣସଂଗ୍ରାମ ବାହିନୀମାନ ଗଠନ କରିବାକୁ ଆହ୍ୱାନ ଦେଇ ସମାଜର ଶୋଷକ, ଅତ୍ୟାଚାରୀ ବୁର୍ଜୁଆ ତଥା ସେମାନଙ୍କ ସମର୍ଥନର ସରକାରକୁ ଦୂର କରିବାକୁ ପ୍ରୟାସ କରିଥିଲେ । ସମାଜରେ ରହିଥିବା ଅନ୍ୟାୟ, ଶୋଷଣ, ବୈଷମ୍ୟ ଯେଉଁ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥାର ପରିଣାମ, ତାହାକୁ ଦୂର କରିବାକୁ ମାଓଙ୍କର ଆବେଦନ ଜନଗଣଙ୍କ ଭିତରେ ଏକ ବୈପ୍ଳବିକ ଚେତନା ସୃଷ୍ଟି କରିଥିଲା । କୌଣସି ଅସ୍ତ୍ର ଧାରଣ କରି ସଂଗ୍ରାମ କରିବା ଅପେକ୍ଷା ଜନଗଣଙ୍କୁ ସଚେତନ କରାଇବାକୁ ମାଓ ଅଧିକ ପ୍ରାଧାନ୍ୟ ଦେଉଥିଲେ ।

ସମାଜର ପ୍ରଚଳିତ ଅନ୍ୟାୟ ବ୍ୟବସ୍ଥା ବିରୁଦ୍ଧରେ ଜନଗଣଙ୍କୁ ସଚେତନ କରାଇବା ନେଇ ମାଓ ନାନା ବାସ୍ତବ ପଦକ୍ଷେପ ନେଇଥିଲେ । ସମାଜର ଶ୍ରମିକ, କୃଷକ ଶୋଷିତ ବର୍ଗ ଭିତରେ ଏକ ବୈପ୍ଳବିକ ଚେତନା ସୃଷ୍ଟିକରି ସେମାନଙ୍କୁ ସଙ୍ଗଠିତ କରିବାକୁ ସେ ବର୍ଷ ବର୍ଷ ଧରି ଉଦ୍ୟମ କରିଥିଲେ । ନିଜର ମୁକ୍ତି ପାଇଁ ଓ ଏକ ଶୋଷଣହୀନ ସମାଜବାଦୀ ବ୍ୟବସ୍ଥାର ରୂପାୟନ ପାଇଁ ସେ ସାରା ଦେଶରେ ଏକ ସଶସ୍ତ୍ର ସଂଘର୍ଷ ବାହିନୀ ସୃଷ୍ଟିକରି ପାରିଥିଲେ । ଅର୍ଥାତ୍ ସମାଜର ଧନୀକ ବୁର୍ଜୁଆ ପୁଞ୍ଜିପତି ଶ୍ରେଣୀର ସ୍ୱାର୍ଥକୁ ସୁରକ୍ଷା ଦେଉଥିବା ରାଷ୍ଟ୍ରୀୟ କ୍ଷମତା ବିରୁଦ୍ଧରେ ସଂଗ୍ରାମ ପାଇଁ ସେ ଜନଗଣଙ୍କ ଭିତରେ ଏକ ବୈପ୍ଳବିକ ଚେତନା ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ରାଜନୈତିକ କ୍ଷମତା ହାସଲ ନ ହେଲେ ସମାଜର ପ୍ରଚଳିତ ଅର୍ଥନୈତିକ ଢ଼ାଞ୍ଚାରେ ପରିବର୍ତ୍ତନ ଆସି ପାରିବ ନାହିଁ । ବ୍ୟବସ୍ଥାରେ ପରିବର୍ତ୍ତନ  ନ ହେଲେ ସମାଜରୁ ଦାରିଦ୍ର୍ୟ, ବୈଷମ୍ୟ ଦୂର ହେବ ନାହିଁ । ସୁତରାଂ ଗଣବିପ୍ଳବ ଜରିଆରେ ଜନଗଣଙ୍କୁ ସଂଗ୍ରାମ କରି ରାଜନୈତିକ ବ୍ୟବସ୍ଥାକୁ ବଦଳାଇବାକୁ ହେବ । ଏହି ଧାରାରେ ମାଓ ସାରାଦେଶରେ ଜନଗଣଙ୍କ ଭିତରେ ଏକ ବୈପ୍ଳବିକ ଚେତନା ସୃଷ୍ଟି କରିବା ସହ ସଂଘର୍ଷବାହିନୀ ସୃଷ୍ଟି କରିପାରିଥିଲେ ।

ଏଠାରେ ଗାନ୍ଧୀଙ୍କ ଗଣ ସତ୍ୟାଗ୍ରହ ଓ ମାଓଙ୍କ ଗଣ ସଂଗ୍ରାମ ଭିତରେ କିଛି ମୌଳିକ ପାର୍ଥକ୍ୟ ଦୃଷ୍ଟି ଗୋଚର ହୋଇଥାଏ । ଗାନ୍ଧୀଙ୍କ ବିଚାରରେ ଲକ୍ଷ୍ୟ ମହନୀୟ ହେବା ସହ ପନ୍ଥା ବା ସାଧନ ସଂପୂର୍ଣ୍ଣ ନୈତିକ ହେବା ଆବଶ୍ୟକ । ଗାନ୍ଧୀଙ୍କ ବିଚାରରେ ପନ୍ଥାର ମହନୀୟତା ଏକାନ୍ତ କାମ୍ୟ । ଏକ ହିଂସାତ୍ମକ ପନ୍ଥାକୁ କେବେ ବି ସ୍ୱୀକୃତି ଦିଆଯାଇ ନପାରେ । ଅପର ପକ୍ଷରେ ମାଓ ଏକ ମହନୀୟ ଲକ୍ଷ୍ୟ ପାଇଁ ଏକ ବାସ୍ତବବାଦୀ ପନ୍ଥା ଗ୍ରହଣ କରିବା ଆବଶ୍ୟକ ବୋଲି ଭାବୁଥିଲେ, ସେହି ପନ୍ଥା ହିଂସାତ୍ମକ ହେଉ ବା ଅହିଂସାତ୍ମକ ହେଉ । ଗୋଟିଏ ଶ୍ରେଣୀବିହୀନ ସାମ୍ୟ ସମାଜ ଗଠନ ପାଇଁ ଯଦି ବି ହିଂସାତ୍ମକ ଗଣ ବିପ୍ଳବ ଆବଶ୍ୟକ ତେବେ ତାହା ଅନୁକରଣୀୟ ବୋଲି ସେ ଗ୍ରହଣ କରୁଥିଲେ । ଗାନ୍ଧୀଙ୍କ ବିଚାରଧାରାରେ ପନ୍ଥା ପବିତ୍ର ହେବା ଆବଶ୍ୟକ, ଲକ୍ଷ୍ୟ ପ୍ରାପ୍ତି ସମ୍ଭବ ହେଉ ବା ବିଳମ୍ବିତ ହେଉ । ମାଓଙ୍କ ଦୃଷ୍ଟିରୁ ଏକ ଆଦର୍ଶ ଲକ୍ଷ୍ୟପାଇଁ ଏକ ବାସ୍ତବବାଦୀ ପନ୍ଥା ଆବଶ୍ୟକ । ଏଠାରେ ହିଂସା-ଅହିଂସାର ପ୍ରଶ୍ନ ନିରର୍ଥକ । ଗାନ୍ଧୀଙ୍କ ବିଚାରାଦର୍ଶ ଓ ପ୍ରଦର୍ଶିତ ପନ୍ଥା କିଛିଟା ଧାର୍ମିକ ବିଶ୍ୱାସଦ୍ୱାରା ପରିଚାଳିତ ହୋଇଥିଲା । ଭାରତୀୟ ଦର୍ଶନ ଓ ସାଧାରଣ ବିଶ୍ୱାସରେ ଗ୍ରହଣ କରାଯାଉଥିବା ଏକ ତାତ୍ତ୍ୱିକ ସିଦ୍ଧାନ୍ତ ଯଥା 'ଯେପରି କର୍ମ ସେପରି ଫଳ' ଗାନ୍ଧୀଙ୍କୁ ପ୍ରଭାବିତ କରିଥିଲା । ଅର୍ଥାତ୍ ପନ୍ଥାର ପବିତ୍ରତା ଉପରେ ଗାନ୍ଧୀ ସର୍ବଦା ଗୁରୁତ୍ୱ ଆରୋପ କରିଥିଲେ ଓ କୌଣସି ସ୍ଥିତିରେ ହିଂସାତ୍ମକ ପନ୍ଥାକୁ ଶ୍ରେୟ ମଣୁନଥିଲେ ।

ସୁତରାଂ ତାଙ୍କ ଦୃଷ୍ଟିରେ ସତ୍ୟାଗ୍ରହ ସବୁଠାରୁ ନୈତିକ ପନ୍ଥା ଥିଲା ଓ ସମାଜର ସକଳ ଅନ୍ୟାୟ, ବୈଷମ୍ୟ ଦୂର କରିବାକୁ ସତ୍ୟାଗ୍ରହକୁ ସେ ଆୟୁଧ କରିଥିଲେ । ଗାନ୍ଧୀ ପ୍ରତ୍ୟେକ ସମସ୍ୟାକୁ ଏକ ନୈତିକ ସମସ୍ୟା ବୋଲି ବିଚାର କରୁଥିଲେ, ସୁତରାଂ ଏକ ନୈତିକ ପନ୍ଥାର ପ୍ରୟୋଗ ଦ୍ୱାରା ଏକ ଅନୈତିକ ବ୍ୟବସ୍ଥାକୁ ଦୂର କରାଗଲେ ଆବଶ୍ୟକୀୟ ପରିବର୍ତ୍ତନ ଦୀର୍ଘସ୍ଥାୟୀ ହେବ ବୋଲି ଭାବୁଥିଲେ । ସତ୍ୟାଗ୍ରହୀ ନିଜର ଦୁଃଖ କଷ୍ଟଦ୍ୱାରା ପ୍ରତିପକ୍ଷ ହୃଦୟରେ ପରିବର୍ତ୍ତନ ଆଣିପାରିବ ବୋଲି ବିଶ୍ୱାସରୁ ସେ ପନ୍ଥାର ପବିତ୍ରତା, ଅନଶନ, ଆତ୍ମପୀଡ଼ନ ଇତ୍ୟାଦିକୁ ସତ୍ୟାଗ୍ରହ ସହ ସଂଶ୍ଲିଷ୍ଟ କରିଥିଲେ । ସତ୍ୟାଗ୍ରହର ନୈତିକ ଆଭିମୁଖ୍ୟକୁ ସ୍ପଷ୍ଟ କରି ସବୁ ପରିସ୍ଥିତିରେ ଏହାକୁ ସାମାଜିକ ନିୟନ୍ତ୍ରଣର ଏକକ ଆୟୁଧ ବୋଲି ଭାବୁଥିଲେ । ଗାନ୍ଧୀଙ୍କର ସମଗ୍ର ବିଚାରଟି ଆଦର୍ଶଭିତ୍ତିକ ଓ ଅନେକାଂଶରେ ୟୁଟୋପିଆନ୍ ରହିଥିଲା । ମାଓ କିନ୍ତୁ ଅନେକଟା ବାସ୍ତବବାଦୀ ଥିଲେ ଓ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ଜନଗଣଙ୍କୁ ଯଥେଷ୍ଟ ସଚେତନ କରାଇ ପାରିଥିଲେ । ପରିଣାମତଃ ସାରାଦେଶରେ ଗଣସଂଗ୍ରାମ ପାଇଁ ଜନଗଣଙ୍କ ଭିତରେ ଏକ ବୈପ୍ଳବିକ ଆବେଗ ସୃଷ୍ଟି କରିଥିଲେ ।

ଗାନ୍ଧୀ ଓ ମାଓଙ୍କ ପନ୍ଥାରେ ପାର୍ଥକ୍ୟ ରହିଥିଲେ ବି ଉଭୟ ନିଜ ଦେଶରେ ଏକ ରାଜନୈତିକ ପରିବର୍ତ୍ତନ ପାଇଁ ଏକ ଐତିହାସିକ ଭୂମିକା ନିର୍ବାହ କରିଛନ୍ତି । ଗାନ୍ଧୀ ବ୍ରିଟିଶ ସାମ୍ରାଜ୍ୟବାଦକୁ ବିଲୋପ କରିବାରେ ସଫଳ ହୋଇଛନ୍ତି ଓ ମାଓ ଚୀନରେ ସମାଜବାଦୀ ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ପଥ ପ୍ରଦର୍ଶକ ହୋଇଛନ୍ତି । ତେବେ ଗାନ୍ଧୀ ଭାରତର ରାଜନୈତିକ ସ୍ୱାଧୀନତା ହାସଲର ପାଞ୍ଚମାସ ପରେ ଶହୀଦ ପାଲଟିଛନ୍ତି ଓ ଭବିଷ୍ୟତର ଶାସନ ବା ସମାଜ ବ୍ୟବସ୍ଥାକୁ ପ୍ରଭାବିତ କରି ପାରିନାହାନ୍ତି । ଅପର ପକ୍ଷରେ ମାଓ ଚାଇନାରେ ସମାଜବାଦୀ ବିପ୍ଳବ ପରେ ୧୯୪୯ରେ କ୍ଷମତା ହାସଲ କରି ପ୍ରାୟ ୨୭ ବର୍ଷ ଧରି ରାଷ୍ଟ୍ର ନିର୍ମାଣକୁ ଗଭୀର ଭାବେ ପ୍ରଭାବିତ କରିଛନ୍ତି ।

(୧୩.୬.୨୦୧୨)



# ଗାନ୍ଧୀ ଓ ମାଓ :
# ରଚନାତ୍ମକ କାର୍ଯ୍ୟକ୍ରମ ଓ ଗଣ-ସମ୍ପୃକ୍ତି

ରାଷ୍ଟ୍ରୀୟ ପୁନଃ ନିର୍ମାଣ ହେଉ ବା ରାଜନୈତିକ ପରିବର୍ତ୍ତନ ପାଇଁ ହେଉ ଗାନ୍ଧୀଙ୍କ ସତ୍ୟାଗ୍ରହ ଓ ମାଓଙ୍କ ଗଣ ସଂଗ୍ରାମ ସମସ୍ୟା ସୁଧାରର ଦୁଇଟି ପୃଥକ୍ ସାଧନ ଭାବେ ବିକଶିତ ହୋଇଛି । ଈପ୍‌ସିତ ଲକ୍ଷ୍ୟ ସାଧନ ଦିଗରେ ରହିଥିବା ପ୍ରତିବନ୍ଧକକୁ ଦୂର କରିବାକୁ ଗାନ୍ଧୀ ସତ୍ୟାଗ୍ରହକୁ ଓ ମାଓ ଗଣସଂଗ୍ରାମକୁ ସାଧନ ଭାବରେ ନେଇଛନ୍ତି । ବସ୍ତୁତଃ ସତ୍ୟାଗ୍ରହ ଓ ଗଣସଂଗ୍ରାମ ପ୍ରତ୍ୟେକର କେତେକ ଆପେକ୍ଷିକ ଉତ୍କର୍ଷ ରହିଥିବା ମନେହୁଏ । ଏତଦ୍‌ବ୍ୟତୀତ ରାଷ୍ଟ୍ରର ସାମାଜିକ ପୁନଃନିର୍ମାଣ ପାଇଁ ଗାନ୍ଧୀ ଗ୍ରାମମାନଙ୍କରେ ରଚନାତ୍ମକ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ ଓ ମାଓ ସାମାଜିକ କ୍ରାନ୍ତି ଦିଗରେ ଜନଗଣଙ୍କୁ ସମ୍ପୃକ୍ତ କରିଥିଲେ । ପରିଣାମତଃ ପ୍ରତ୍ୟେକ ବ୍ୟବସ୍ଥାର ଏକ ସୈଦ୍ଧାନ୍ତିକ ଆଧାର ମଧ୍ୟ ଗଢ଼ିଉଠିଛି । ଭିନ୍ନ ଭିନ୍ନ ପରିସ୍ଥିତିରେ ସେମାନଙ୍କର ପ୍ରୟୋଗରୁ ନୂଆ ନୂଆ ପରିସ୍ଥିତି ଓ ପରିଣାମ କ୍ଷେତ୍ରରେ ସେମାନଙ୍କ ପନ୍ଥାର ବାସ୍ତବତା ନେଇ ନାନା ଚର୍ଚ୍ଚା ହୋଇଆସୁଛି ।

ଗାନ୍ଧୀ ଗ୍ରାମମାନଙ୍କରେ ସାମାଜିକ ପରିବର୍ତ୍ତନ ଓ ଅର୍ଥନୈତିକ ପୁନର୍ଗଠନ ପାଇଁ ବିସ୍ତୃତ ରଚନାତ୍ମକ କାର୍ଯ୍ୟକ୍ରମ ପାଇଁ ଉଦ୍ୟମ କରିଛନ୍ତି । ସେ ଯେହେତୁ ଗ୍ରାମସ୍ୱରାଜ, ଗ୍ରାମ ମାନଙ୍କର ସ୍ୱାବଲମ୍ବନଶୀଳତା, ପଞ୍ଚାୟତମାନଙ୍କର ସାର୍ବଭୌମତ୍ୱ ଉପରେ ଗୁରୁତ୍ୱ ଦେଉଥିଲେ ତେଣୁ ସେ ତାଙ୍କର ରଚନାତ୍ମକ କାର୍ଯ୍ୟକ୍ରମ ଉପରେ ଅଧିକ ପ୍ରାଧାନ୍ୟ ଦେଉଥିଲେ । ଏକ ବିକେନ୍ଦ୍ରୀଭୂତ ଶାସନ ବ୍ୟବସ୍ଥାର ସେ ପକ୍ଷପାତୀ ଥିଲେ କାରଣ ତାଙ୍କର ବିଶ୍ୱାସ ଥିଲା ଯେ ବିକେନ୍ଦ୍ରୀଭୂତ, ସ୍ୱାବଲମ୍ବନଶୀଳ, ସାର୍ବଭୌମ ଗ୍ରାମମାନ ହିଁ ତାଙ୍କ ପରିକଳ୍ପିତ ମୂଲ୍ୟବୋଧ ଉପରେ ଦଣ୍ଡାୟମାନ ହୋଇପାରିବେ । ଅହିଂସା, ସମତା ଓ ବ୍ୟକ୍ତି ସ୍ୱାଧୀନତା ହିଁ ଗ୍ରାମ ସ୍ୱରାଜ ଭିତରେ ସମ୍ପୂର୍ଣ୍ଣ ଭାବେ ଅଭିବ୍ୟକ୍ତ ହୋଇପାରିବ ।

ଏହି ପୃଷ୍ଠଭୂମିରେ ଗାନ୍ଧୀ କୁଟୀରଶିଳ୍ପର ବିକାଶକୁ ପ୍ରାଧାନ୍ୟ ଦେଉଥିଲେ ଓ ଗୁରୁଶିଳ୍ପ, ଆଧୁନିକ ପ୍ରଯୁକ୍ତିର ବିରୋଧୀ ଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଶିଳ୍ପ ବିପ୍ଳବ ଓ ଏହା ସହିତ ସଂଶ୍ଳିଷ୍ଟ ଆଧୁନିକ ପ୍ରଯୁକ୍ତି ଓ ଗୁରୁଶିଳ୍ପ ସମାଜରେ ଶୋଷଣ, ବୈଷମ୍ୟ, ସାମ୍ରାଜ୍ୟବାଦୀ ବ୍ୟବସ୍ଥାର ଉଦ୍ଭବ କରାଇଛି । ଏହାଛଡା ସେ ଭାବୁଥିଲେ ଯେ ଶିଳ୍ପୋନ୍ନତି ଅଧିକ ହେଲେ ସାମାଜିକ ମୂଲ୍ୟବୋଧର ଅବକ୍ଷୟ ହେବ ଓ ଅର୍ଥନୈତିକ ବୈଷମ୍ୟ ଆସିବ । ସୁତରାଂ କୁଟୀରଶିଳ୍ପ ଓ ପ୍ରତ୍ୟେକ ସ୍ଥାନର ପ୍ରାକୃତିକ ସମ୍ବଳକୁ ନେଇ ଆନୁଷଙ୍ଗିକ ହସ୍ତଶିଳ୍ପ ସୃଷ୍ଟି କରାଯାଇ ପଞ୍ଚାୟତ ସ୍ତରରେ ସବୁ ଲୋକଙ୍କ ପାଇଁ କର୍ମସଂସ୍ଥାନର ବ୍ୟବସ୍ଥା କରାଯିବ । ଏତଦ୍‌ବ୍ୟତୀତ ଶ୍ରମର ମର୍ଯ୍ୟାଦାକୁ ଅଗ୍ରାଧିକାର ଦିଆଯିବ ଓ ପ୍ରତ୍ୟେକ ସବଳ ବ୍ୟକ୍ତି ନିଶ୍ଚୟ କିଛି ଶ୍ରମ କରି ସ୍ୱାବଲମ୍ବୀ ହେବେ । ଏହା ସହିତ ଶାରୀରିକ ଶ୍ରମ ଓ ବୌଦ୍ଧିକ କାର୍ଯ୍ୟ ଭିତରେ ପ୍ରଭେଦ ରଖାଯିବ ନାହିଁ । ଧନ୍ଦାମୂଳକ ଶିକ୍ଷା ଜରିଆରେ ପ୍ରତ୍ୟେକ ବ୍ୟକ୍ତି ଶ୍ରମ କରି ସ୍ୱାବଲମ୍ବୀ ହେବା ଦ୍ୱାରା ଶ୍ରମର ମର୍ଯ୍ୟାଦା ବୃଦ୍ଧି ପାଇବ ଓ ସମାଜରୁ ଭେଦଭାବ ଲୋପ ପାଇବ । ତାଙ୍କ ଦୃଷ୍ଟିରେ ଗ୍ରାମମାନଙ୍କର ସ୍ଥିତି ଏ ପ୍ରକାର ହେବ ଯେ କେହି ବିଳାସପୂର୍ଣ୍ଣ ଜୀବନ ଅତିବାହିତ କରିବେ ନାହିଁ ବା କେହି ବେକାର ରହି ଜୀବନର ଆବଶ୍ୟକତା ପୂରଣରୁ ବଞ୍ଚିତ ହେବେ ନାହିଁ । ସମସ୍ତେ ଶ୍ରମଦ୍ୱାରା ସ୍ୱାବଲମ୍ବୀ ହେବେ ଓ ଏକ ମମତାଭିତ୍ତିକ ସର୍ବୋଦୟ ସମାଜ ଗଠନରେ ବ୍ରତୀ ରହିବେ । ଏହି ଲକ୍ଷ୍ୟରେ ଗାନ୍ଧୀ ରଚନାତ୍ମକ କାର୍ଯ୍ୟକ୍ରମରେ ବ୍ରତୀ ହେବାକୁ ଅଭିନିବେଶ ଯୋଗାଇଥିଲେ ।

ଏହାଛଡା ଗାନ୍ଧୀଙ୍କ ସମସାମୟିକ ସମାଜରେ ଯେଉଁ ସାମାଜିକ ମନ୍ଦ ବ୍ୟବସ୍ଥା ରହିଥିଲା ତାହାର ମୂଳୋତ୍ପାଟନ ପାଇଁ ରଚନାତ୍ମକ କାର୍ଯ୍ୟକ୍ରମକୁ ମଧ୍ୟ ସେ ଆୟୁଧ କରିଥିଲେ । ନିଶା ନିବାରଣ, ନିରକ୍ଷରତା ଦୂରୀକରଣ, ପରାଭୂତ ମହିଳାମାନଙ୍କୁ ସାମାଜିକ ସମ୍ମାନ ରଚନାତ୍ମକ କାର୍ଯ୍ୟସୂଚୀର ମଧ୍ୟ ଅପରିହାର୍ଯ୍ୟ ଅଙ୍ଗ ଥିଲା । ଭାରତୀୟ ସମାଜରେ ଯୁଗ ଯୁଗ ଧରି ରହିଥିବା ଭେଦଭାବମୂଳକ ଜାତିପ୍ରଥା ଓ ଅସ୍ପୃଶ୍ୟତା ପରି କଳଙ୍କକୁ ଦୂର କରିବାକୁ ବି ରଚନାତ୍ମକ କାର୍ଯ୍ୟକ୍ରମକୁ ଯଥେଷ୍ଟ ପ୍ରାଧାନ୍ୟ ଦିଆଯାଇଥିଲା । ବସ୍ତୁତଃ ରାଜନୈତିକ ସ୍ୱାଧୀନତା ପାଇଁ ଆନ୍ଦୋଳନ ସହ ରଚନାତ୍ମକ କାର୍ଯ୍ୟକ୍ରମ ଆଧାରରେ ସାମାଜିକ ଜୀବନ ପ୍ରବାହରେ ଗୁଣାତ୍ମକ ପରିବର୍ତ୍ତନ ଗାନ୍ଧୀଙ୍କ ରାଜନୈତିକ କାର୍ଯ୍ୟସୂଚୀର ମୁଖ୍ୟ ପ୍ରସଙ୍ଗ ହୋଇ ରହିଥିଲା ।

ମାଓ ସେହିପରି ସମଗ୍ର ଚୀନରେ ଏକ ସମାଜବାଦୀ ବିପ୍ଳବ ସୃଷ୍ଟିକରିବାରେ ପ୍ରୟାସ କରିଛନ୍ତି । ଜନଗଣଙ୍କ ଭିତରେ ରାଜନୈତିକ ସଚେତନତା ସୃଷ୍ଟିକରି ଏକ ଜନ ଆନ୍ଦୋଳନ ସମଗ୍ର ଚୀନରେ ଗଢ଼ିତୋଳିବାକୁ ମାଓ ନାନା ବାସ୍ତବବାଦୀ ପଦକ୍ଷେପ

ନେଇଛନ୍ତି । ପ୍ରଚଳିତ ବ୍ୟବସ୍ଥାକୁ ପ୍ରଶାସନିକ ବା ଆଇନଗତ ବ୍ୟବସ୍ଥାରେ ପରିବର୍ତ୍ତନ ଅସମ୍ଭବ ମନେ କରି ସମାଜର କୃଷକ, ଶ୍ରମଜୀବୀ, ସାଧାରଣ ଜନତାଙ୍କ ସହଯୋଗରେ ସର୍ବହରା ବିପ୍ଳବ ସୃଷ୍ଟି କରିଛନ୍ତି । ପ୍ରତ୍ୟେକ ଅଞ୍ଚଳରେ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର ସ୍ଥାପନ କରି ସେଥିରେ ଜନଗଣଙ୍କୁ ସମ୍ପୃକ୍ତ କରାଇ ବିକାଶର ନୂତନ ଦିଗନ୍ତ ସୃଷ୍ଟି କରିଛନ୍ତି । ସମାଜର ସାଧାରଣ ଜନଗଣଙ୍କର ସହଯୋଗ, ସମ୍ପୃକ୍ତି ଓ ସମର୍ଥନ ବ୍ୟତୀତ ସମଗ୍ର ଦେଶରେ ବିପ୍ଳବ ଆଣିବା ସମ୍ଭବ ନୁହେଁ ବୋଲି ଅନୁଭବ କରିଛନ୍ତି । ତେଣୁ କମ୍ୟୁନିଷ୍ଟ ଦଳକୁ ଏକ ରାଷ୍ଟ୍ରୀୟ ଭିତ୍ତି ଦେଇ ଏହାକୁ ସୁସଂଗଠିତ ଭାବେ ଜନଆନ୍ଦୋଳନ ପାଇଁ ପ୍ରସ୍ତୁତ କରିଛନ୍ତି । ଜମିଦାରୀ ବୁର୍ଜୁଆ ପ୍ରଥାର ବିଲୋପ, ପୁଞ୍ଜିବାଦର ଅବସାନ ଓ ରାଷ୍ଟ୍ରୀୟ ସ୍ତରରେ ଏକ ସମାଜବାଦୀ ବ୍ୟବସ୍ଥାର ରୂପାୟନ ପାଇଁ ଗଣସଂଗ୍ରାମ ବାହିନୀ ସୃଷ୍ଟି କରିଛନ୍ତି । ଏହି ପ୍ରକ୍ରିୟାରେ ଉତ୍ପାଦନ ପ୍ରଣାଳୀ ଓ ଚାଷକୁ ସମବାୟ ବ୍ୟବସ୍ଥା ଜରିଆରେ ସୁନିୟନ୍ତ୍ରିତ କରିବା ଓ ବୈଜ୍ଞାନିକ ଧାରା ଅବଲମ୍ବନ କରିବାକୁ ଗୁରୁତ୍ୱ ଦେଇଛନ୍ତି । ରାଷ୍ଟ୍ରୀୟ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ଆଧୁନିକ ପ୍ରଯୁକ୍ତି ଯେ ଉପଯୋଗୀ ହେବ ମାଓ ଏହି ଭାବଧାରା ଗ୍ରହଣ କରିଛନ୍ତି । ତେବେ ସମସ୍ତ ଶିଳ୍ପୋଦ୍ୟୋଗ, ଆଧୁନିକ ପ୍ରଯୁକ୍ତି, ଗମନାଗମନର ବିକାଶ, ଉନ୍ନତ ସ୍ୱାସ୍ଥ୍ୟ ସେବା, ଗଣଶିକ୍ଷା ଇତ୍ୟାଦି କ୍ଷେତ୍ରରେ ରାଷ୍ଟ୍ରୀୟ ନିୟନ୍ତ୍ରଣ ରହିବ । ସମାଜରୁ ବ୍ୟକ୍ତିଗତ ମାଲିକାନା, ଶୋଷଣକୁ ଲୋପ କରିବାରେ ରାଷ୍ଟ୍ର ମୁଖ୍ୟ ଭୂମିକା ନେବ । ରାଷ୍ଟ୍ରୀୟ ଲକ୍ଷ୍ୟକୁ ତୃଣମୂଳ ସ୍ତରରେ କମ୍ୟୁନିଷ୍ଟ ଦଳ କାର୍ଯ୍ୟକାରୀ କରିବ । ସମାଜର ସାଧାରଣ ଜନଗଣ ସମାଜବାଦୀ ଆଦର୍ଶରେ ପ୍ରଭାବିତ ହୋଇ ରାଷ୍ଟ୍ରୀୟ ଲକ୍ଷ୍ୟକୁ ବାସ୍ତବ କ୍ଷେତ୍ରରେ ସଫଳ କରାଇବେ । କୌଣସି ସ୍ତରରେ ଭେଦଭାବ ମୂଳକ ବ୍ୟବସ୍ଥାକୁ ପଶ୍ରୟ ଦିଆଯିବ ନାହିଁ ।

ମାଓଙ୍କର ମୁଖ୍ୟ ଆଭିମୁଖ୍ୟ ରହିଲା ଏକ ଜନବାଦୀ ଆନ୍ଦୋଳନ ଜରିଆରେ ରାଷ୍ଟ୍ରର କ୍ଷମତାକୁ ନିୟନ୍ତ୍ରଣ କରିବା ଓ ପ୍ରଚଳିତ ରାଜନୈତିକ ବ୍ୟବସ୍ଥାକୁ ହଟାଇ କମ୍ୟୁନିଷ୍ଟ ଦଳର ଶାସନ ପ୍ରତିଷ୍ଠା କରିବା । ଯେହେତୁ କମ୍ୟୁନିଷ୍ଟ ଦଳ ସମାଜର ଶ୍ରମଜୀବୀ, କୃଷକ ଓ ସର୍ବହରା ଶ୍ରେଣୀର ପ୍ରତିନିଧିତ୍ୱ କରେ ସେହି ଦଳ କ୍ଷମତାକୁ ଆସିଲେ ସମାଜବାଦୀ ବିପ୍ଳବ ଦ୍ୱାରା ସମାଜରୁ ପୁଞ୍ଜିବାଦୀ ଶୋଷଣ, ବୈଷମ୍ୟକୁ ବିଲୋପ କରାଯାଇପାରିବ । ଯେଉଁମାନେ ରାଷ୍ଟ୍ରର ସମାଜବାଦୀ ଆଭିମୁଖ୍ୟକୁ ସହଯୋଗ କରି ଏକ ନୂତନ ସାମ୍ୟବାଦୀ ବ୍ୟବସ୍ଥା ଗଠନ ଦିଗରେ ସହାୟକ ହେବେ, ସେହିମାନେ ହିଁ କମ୍ୟୁନିଷ୍ଟ ଦଳରେ ସମ୍ପୃକ୍ତ ହେବେ । ଯେଉଁମାନେ ପୁଞ୍ଜିବାଦ, ଶୋଷଣ, ବୈଷମ୍ୟ, ସାମନ୍ତବାଦ ଭାବନା ନେଇ ସମାଜବାଦକୁ ବିରୋଧ କରିବେ ସେମାନେ ବୁର୍ଜୁଆ ଶ୍ରେଣୀଭୁକ୍ତ ହେବେ । ବସ୍ତୁତଃ

ସାମାଜିକ ସଚେତନତା ଦ୍ୱାରା ସମାଜରୁ ସମସ୍ତ ଶ୍ରେଣୀ-ବୈଷମ୍ୟକୁ ଲୋପ କରିବାକୁ ହେବ ।

ଏକ ଇପ୍ସିତ ଲକ୍ଷ୍ୟ ହାସଲ ଦିଗରେ ସମାଜର ଶିକ୍ଷା ବ୍ୟବସ୍ଥାର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ମାଓଙ୍କର ଏହି ଅନୁଭବ ହୋଇଛି ଯେ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବା ପାଇଁ ଓ ଲୋକମାନଙ୍କ ଭିତରେ ଦେଶର ସାମୂହିକ ବିକାଶ ପାଇଁ ଆନ୍ତରିକ ସମ୍ପୃକ୍ତି ସୃଷ୍ଟି କରିବା ପାଇଁ ଜନଗଣଙ୍କୁ ସେହିପରି ଶିକ୍ଷା ଦିଆଯିବା ଆବଶ୍ୟକ । ଗାନ୍ଧୀ ମଧ୍ୟ ପରାଧୀନ ଭାରତରେ ଦେଶର ଔପନିବେଶିକ ଶିକ୍ଷା ବଦଳରେ ଏକ ନୂତନ ଶିକ୍ଷାନୀତି କ୍ଷେତ୍ରରେ ତାଙ୍କର ସଂପୃକ୍ତି ବ୍ୟକ୍ତ କରିଛନ୍ତି । ସେ ତାଙ୍କର ମୌଳିକ ଶିକ୍ଷାନୀତି ଜରିଆରେ ପ୍ରଚଳିତ ବ୍ୟବସ୍ଥାର ଏକ ବିକଳ୍ପ ଅବତାରଣା କରିଛନ୍ତି । ତାଙ୍କର 'ନଇ ତାଲିମ' ବା ମୌଳିକ ଶିକ୍ଷାରେ ଧନ୍ଦାମୂଳକ ଶିକ୍ଷା, ସ୍ୱାବଲମ୍ବନଶୀଳତା, ଶରୀର ଶ୍ରମ ଓ ନୀତିବୋଧକୁ ପ୍ରାଧାନ୍ୟ ଦେଇଛନ୍ତି । ଗାନ୍ଧୀ ଶିଳ୍ପ ସଭ୍ୟତା, ଆଧୁନିକ ସମୃଦ୍ଧି, ଯାନ୍ତ୍ରିକ ବିକାଶକୁ ବିରୋଧ କରୁଥିଲେ କାରଣ ତାଙ୍କର ବିଶ୍ୱାସ ଥିଲା ଏସବୁ ହିଂସା, ଭୋଗବାଦ, ଉପଭୋକ୍ତାବାଦୀ ଜୀବନଦୃଷ୍ଟି ଓ ଶୋଷଣର ବିକାଶ ପାଇଁ ମୁଖ୍ୟତଃ ଦାୟୀ । ଏହି ଆଦର୍ଶବୋଧରୁ ସେ ତାଙ୍କ ଧାରାରେ ତାଙ୍କ ପରିକଳ୍ପିତ ସର୍ବୋଦୟ ସମାଜ ପାଇଁ ଏକ ଆନୁଷଙ୍ଗିକ ଶିକ୍ଷାର ଖସଡା ପ୍ରସ୍ତୁତ କରିଥିଲେ । ତେବେ ସ୍ୱାଧୀନତା ପରେ ଯେଉଁ କେତେକ କ୍ଷେତ୍ରରେ ମୌଳିକ ଶିକ୍ଷାର ଯାହା କିଛି ପ୍ରୟୋଗ ହୋଇଥିଲା ତାହା ସରକାରୀ ଓ ପ୍ରଶାସନିକ ସମର୍ଥନ ଅଭାବରେ ଆଗକୁ ଯାଇପାରିଲା ନାହିଁ । ଅପରପକ୍ଷରେ ମାଓ ଚୀନରେ ନିରକ୍ଷରତା ଦୂର କରିବାକୁ ପ୍ରାଧାନ୍ୟ ଦେଇ ଗଣଶିକ୍ଷାକୁ ବ୍ୟାପକ କରିଛନ୍ତି । ଶିକ୍ଷାସ୍ତରରେ ମାଓ ମଧ୍ୟ ସ୍ୱାବଲମ୍ବନ ମୂଳକ ଶିକ୍ଷା ବ୍ୟବସ୍ଥାକୁ ପ୍ରାଧାନ୍ୟ ଦେଇ ଶିକ୍ଷାସ୍ତରରୁ ଏକ ସଂସ୍କାରିତ ଚେତନାର ବିକାଶକୁ ପ୍ରାଧାନ୍ୟ ଦେଇଛନ୍ତି । ତେବେ ମାଓ ଚୀନର ବିଶାଳ ଜନସଂଖ୍ୟା ଦୃଷ୍ଟିରୁ ମାନବସମ୍ବଳର ଉପଯୁକ୍ତ ବିକାଶ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଓ ରାଜନୈତିକ ସଚେତନତା ସୃଷ୍ଟି ଦିଗରେ ତାଙ୍କର ଶିକ୍ଷା ବ୍ୟବସ୍ଥାକୁ ପରିବର୍ତ୍ତନ କରିଛନ୍ତି । ମାଓ ଚୀନରେ ଗଣଶିକ୍ଷାର ପ୍ରସାର ପାଇଁ ଓ ଭେଦଭାବ ମୂଳକ ଶିକ୍ଷା ବ୍ୟବସ୍ଥାର ବିଲୋପ ପାଇଁ ତାଙ୍କର ଉଦ୍ୟମରେ ଅନେକ ସଫଳତା ପାଇଛନ୍ତି । ପରିଣାମତଃ ଚୀନରେ ସମାଜବାଦୀ ବିପ୍ଳବ ପରେ ଗଣଶିକ୍ଷାର ବିକାଶକୁ ଆଧାର କରି ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରାଯାଇଛି । ଏହି ସାଂସ୍କୃତିକ ବିପ୍ଳବ ଜରିଆରେ ସମାଜରୁ ସକଳ ପ୍ରକାରର ସାମନ୍ତବାଦୀ ଆଧିପତ୍ୟ ଲୋପ ପାଇଛି । ବୁର୍ଜୁଆ ଧନୀକ ପ୍ରଭାବଶାଳୀ ଗୋଷ୍ଠୀର ବିଲୋପ ହୋଇଛି ଓ ସମାଜର ବୁଦ୍ଧିଜୀବୀ ଗୋଷ୍ଠୀଙ୍କର ବୈଚାରିକ ପରିବର୍ତ୍ତନ ଆସିଛି । ଚୀନରେ ସମାଜବାଦୀ ବିପ୍ଳବ

ପରେ ଗଣଶିକ୍ଷାର ବିକାଶକୁ ଆଧାର କରି ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରାଯାଇଛି । ଏହି ସାଂସ୍କୃତିକ ବିପ୍ଳବ ଜରିଆରେ ସମାଜରୁ ସକଳ ପ୍ରକାରର ସାମନ୍ତବାଦୀ ଆଧିପତ୍ୟ ଲୋପପାଇଛି, ଧନୀକ ପ୍ରଭାବଶଳୀ ଗୋଷ୍ଠୀର ବିଲୋପ ହୋଇଛି ଓ ସମାଜର ବୁଦ୍ଧିଜୀବୀ ଗୋଷ୍ଠୀଙ୍କର ମାନସିକତାରେ ପରିବର୍ତ୍ତନ ଆସିଛି । ଚୀନରେ ସମାଜବାଦୀ ବିପ୍ଳବପରେ ଅର୍ଥନୈତିକ ଓ ସାଂସ୍କୃତିକ ପରିବେଶ ପୂର୍ଣ୍ଣଭାବେ ପରିବର୍ତ୍ତିତ ହୋଇଛି ।

ଭାରତୀୟ ସମାଜଧାରାରେ ଗାନ୍ଧୀଙ୍କର ରଚନାତ୍ମକ କାର୍ଯ୍ୟସୂଚୀ ଓ ମୌଳିକ ଶିକ୍ଷା ନାନା ଜଟିଳ ପରିସ୍ଥିତି ଯୋଗୁଁ ସେପରି କିଛି ଗୁଣାତ୍ମକ ପରିବର୍ତ୍ତନ ଆଣିବାରେ ସମର୍ଥ ହୋଇନାହିଁ । ଭାରତୀୟ ସମାଜ ଯୁଗ ଯୁଗ ଧରି ଜାତିଭିତ୍ତିକ, ଭେଦଭାବମୂଳକ ଓ ବୈଷମ୍ୟପୂର୍ଣ୍ଣ ହୋଇ ରହିଛି । ସାମାଜିକ ସ୍ତରରେ ଜାତିପ୍ରଥା ଓ ଅସ୍ପୃଶ୍ୟତା ଦୂରୀକରଣ ପରାଧୀନ ଭାରତରେ ବିଶେଷ ସଫଳତା ହାସଲ କରିନାହିଁ । ଧାର୍ମିକ ବିଶ୍ୱାସ, ପରମ୍ପରାଗତ ଚଳଣି ଓ ଅହେତୁକ ଭାବାବେଗ ଜନଜୀବନରେ ଏତେ ବ୍ୟାପକ ଭାବେ ରହିଛି ଯେ ସାମାଜିକ କ୍ରାନ୍ତି ଭାରତବର୍ଷରେ ଏତେ ସହଜ ହୋଇନାହିଁ । ସବୁ ସମୟରେ ସାମାଜିକ ସମତା ଓ ଦଳିତ-ଶୂଦ୍ର ଅଧିକାର ବହୁ ବିରୋଧର ସମ୍ମୁଖୀନ ହୋଇ ଆସିଛି । ଶିକ୍ଷା ମୁଷ୍ଟିମେୟ ଉଚ୍ଚ ଜାତିର ନିୟନ୍ତ୍ରଣରେ ସର୍ବଦା ରହିଛି ଓ ଦଳିତ ଓ ଶୂଦ୍ରମାନେ ଏହି ବ୍ୟବସ୍ଥାରେ ସର୍ବଦା ଶୋଷିତ ଓ ଅବହେଳିତ ହୋଇ ରହିଛନ୍ତି । ଗଣଶିକ୍ଷାର ପରିବେଶ, ସମତା ଭିତ୍ତିକ ସମାଜ ବ୍ୟବସ୍ଥା, ସାମାଜିକ ନ୍ୟାୟ, ମାନବିକ ଅଧିକାର ଭାରତୀୟ ସମାଜ ପାଇଁ ଏତେ ସହଜ ହୋଇନାହିଁ । ବସ୍ତୁତଃ ସ୍ୱାଧୀନତା ପ୍ରାପ୍ତିର ଛ' ଦଶନ୍ଧି ପରେ ମଧ୍ୟ ଆମ ସମାଜରୁ ଭେଦଭାବ ଓ ନିରକ୍ଷରତା ବିଲୋପ ହୋଇପାରୁ ନାହିଁ । ମୋଟ ଉପରେ ମାଓଙ୍କର ଗଣ ସମ୍ପୃକ୍ତି ଜରିଆରେ ଯେଉଁ ରାଜନୈତିକ ଓ ସାଂସ୍କୃତିକ ପରିବର୍ତ୍ତନ ସଫଳତା ପ୍ରାପ୍ତି ଦିଗରେ ଏତେ ଆଗକୁ ଯାଇପାରିଲା ଗାନ୍ଧୀଙ୍କର ରଚନାତ୍ମକ କାର୍ଯ୍ୟସୂଚୀ ସେପରି କିଛି ଉଲ୍ଲେଖନୀୟ ସଫଳତା ହାସଲ କରିପାରିଲା ନାହିଁ । ଯଦିବା ଭାରତରେ ରାଜନୈତିକ ସ୍ୱାଧୀନତା ଆସିଲା, ରାଜନୈତିକ ସ୍ୱାଧୀନତା ଯେଉଁ ଲକ୍ଷ୍ୟ ପାଇଁ ଅଭିପ୍ରେତ ଥିଲା ତାହା ଏବେ ବି ଅପହଞ୍ଚ ହୋଇ ରହିଥିବା ମନେହୁଏ । ଅଥଚ ଚୀନରେ ସମାଜବାଦୀ ବିପ୍ଳବ ପରେ ସାମାଜିକ ଓ ସାଂସ୍କୃତିକ ଦୃଶ୍ୟପଟରେ ଅନେକ ପରିବର୍ତ୍ତନ ଆସିପାରିଲା ।

(୨୦.୦୬.୨୦୧୨)



# ଗାନ୍ଧୀ ଓ ମାଓ :
# ଆଦର୍ଶବାଦ ବନାମ ବାସ୍ତବବାଦ

ଗାନ୍ଧୀ ଓ ମାଓଙ୍କର ଆବିର୍ଭାବ ସମୟକୁ ଭାରତ ଓ ଚୀନରେ ଦାରିଦ୍ର୍ୟ, ବୈଷମ୍ୟ, ଶୋଷଣ ଓ ନିରକ୍ଷରତାର ଯେଉଁ ପ୍ରାବଲ୍ୟ ରହିଥିଲା ତାହା ଉଭୟଙ୍କୁ ବେଶ୍ ସ୍ପର୍ଶ କରିଥିଲା ଓ ସେମାନେ ପରିସ୍ଥିତିରେ ପରିବର୍ତ୍ତନ ଆଣିବାକୁ ନିଜସ୍ୱ ଧାରାରେ ପ୍ରୟାସ କରିଥିଲେ । ସାମାଜିକ ସ୍ଥିତିରେ ପରିବର୍ତ୍ତନ ପାଇଁ ଉଭୟ ନିଜ ଦେଶର ରାଜନୈତିକ ବ୍ୟବସ୍ଥାକୁ ଦୂର କରିବାକୁ ଚାହିଁଥିଲେ । ଗାନ୍ଧୀ ଭାରତରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ଦୂର କରି ଦେଶର ରାଜନୈତିକ ସ୍ୱାଧୀନତାକୁ ଗୁରୁତ୍ୱ ଦେବାବେଳେ ମାଓ ଏକ ଏକଛତ୍ରବାଦୀ ସରକାରର ପତନ ଘଟାଇ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠାକୁ ପ୍ରାଥମିକତା ଦେଇଥିଲେ । ରାଜନୈତିକ ଲକ୍ଷ୍ୟପ୍ରାପ୍ତି ପାଇଁ ସେମାନେ ନିଜର ପନ୍ଥା ବାହାର କରିଥିଲେ ତଥା ଏକ ନୂତନ ଆଦର୍ଶ ସମାଜର ଚିତ୍ର ଆଙ୍କିଥିଲେ । ଗାନ୍ଧୀ ଭାରତରେ ଓ ମାଓ ଚୀନରେ ଅବିବାଦୀୟ ଜନନେତା ଭାବେ ସ୍ୱୀକୃତି ଲାଭ କରିବା ସହ ନିଜ ଦେଶର ଜନଗଣଙ୍କ ଭିତରେ ଏକ ନୂତନ ସମାଜର ସ୍ୱପ୍ନ ସୃଷ୍ଟି କରିଥିଲେ । ଉଭୟଙ୍କ ପଛରେ ନିଜ ଦେଶର ଅଗଣିତ ସାଧାରଣ ମଣିଷର ଅକୁଣ୍ଠ ସମର୍ଥନ ରହିଥିବା ଏକ ଐତିହାସିକ ସତ୍ୟ ଅଟେ । ତେବେ ଏହି କ୍ଷେତ୍ରରେ ଗାନ୍ଧୀ ଓ ମାଓଙ୍କ ଭିତରେ ରହିଥିବା କେତେକ ପାର୍ଥକ୍ୟକୁ ଦର୍ଶାଇବା ଏଠାରେ ଆମର ଲକ୍ଷ୍ୟ ।

ଗାନ୍ଧୀ ଓ ମାଓ ନିଜସ୍ୱ ଧାରାରେ ଏକ ଏକ ଆଦର୍ଶ ଜନରାଜ୍ୟର ପରିକଳ୍ପନା କରିଥିଲେ । ସମାଜରୁ ସକଳ ଦାରିଦ୍ର୍ୟ, ଶୋଷଣ ଓ ଭେଦଭାବ କିପରି ଲୋପ ପାଇବ ଏହା ଉଭୟଙ୍କ ପାଇଁ ଚିନ୍ତାର ବିଷୟ ଥିଲା । ଏକ ନ୍ୟାୟପୂର୍ଣ୍ଣ, ସମତା ଭିତ୍ତିକ ସମାଜ ପାଇଁ ଉଭୟ ନିଜର ଗଭୀର ସମ୍ପୃକ୍ତି ବ୍ୟକ୍ତ କରିଥିଲେ । ଗାନ୍ଧୀ ନିଜସ୍ୱ ଧାରାରେ ଏକ ବିକେନ୍ଦ୍ରୀଭୂତ, ସ୍ୱାବଲମ୍ବନଶୀଳ ପରସ୍ପର ସହଯୋଗୀ ପଞ୍ଚାୟତରାଜ ବ୍ୟବସ୍ଥାର ଭାବନା

ଦେଇଥିଲେ ଯାହାକୁ ସେ ଗ୍ରାମ-ସ୍ୱରାଜ କହୁଥିଲେ । ଗ୍ରାମସ୍ୱରାଜ ଦ୍ୱାରା ଅହିଂସା, ସମତା ଓ ବ୍ୟକ୍ତି ସ୍ୱାଧୀନତା ମୂଲ୍ୟବୋଧ ସମାଜରେ ଯଥାର୍ଥରେ ପ୍ରତିଫଳିତ ହୋଇପାରିବ ଓ କାଳକ୍ରମେ ରାଷ୍ଟ୍ର ଓ ରାଷ୍ଟ୍ରୀୟ ବ୍ୟବସ୍ଥାର ବିଲୋପ ହେବ । ଭାରତର ସ୍ୱାଧୀନତା ଆନ୍ଦୋଳନ ପାଇଁ ସେତେବେଳେ କଂଗ୍ରେସ ହିଁ ଏକମାତ୍ର ଜାତୀୟ ସଂଗଠନ ଭାବେ ରହିଥିଲା ଓ କଂଗ୍ରେସ ଉପରେ ଗାନ୍ଧୀଙ୍କର ଅଖଣ୍ଡ ପ୍ରଭାବ ଓ କର୍ତ୍ତୃତ୍ୱ ଥିଲା । ତେବେ କଂଗ୍ରେସ କ୍ଷମତାକୁ ନିୟନ୍ତ୍ରଣ କରିବା ବା ସ୍ୱାଧୀନତା ହାସଲ ପରେ କଂଗ୍ରେସ ଏକ ରାଜନୈତିକ ଶକ୍ତି ଭାବେ ରହିବା ଗାନ୍ଧୀ ଚାହିଁନଥିଲେ । ବରଂ କଂଗ୍ରେସର ଲୋକମାନେ ଗ୍ରାମମାନଙ୍କରେ ରଚନାତ୍ମକ କାର୍ଯ୍ୟକ୍ରମରେ ସମ୍ପୃକ୍ତ ହେବା ସେ ପରାଧୀନ ଭାରତରେ ବିଭିନ୍ନ ସମୟରେ ଚାହିଁଛନ୍ତି । ଯେତେବେଳେ କଂଗ୍ରେସ ଭିତରେ କ୍ଷମତା ହାସଲ ନେଇ ଗୋଷ୍ଠୀ ଗୋଷ୍ଠୀ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ସେ କଂଗ୍ରେସ ସହିତ ସମ୍ପର୍କ ଶିଥିଳ କରି ଲୋକଙ୍କ ପାଖକୁ ଯିବାକୁ ନିଜର ଅନୁଗାମୀ ମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ସ୍ୱାଧୀନତା ପରେ ସେ କଂଗ୍ରେସକୁ ଏକ ରାଜନୈତିକ ସଂଗଠନ ଭାବେ ନ ରଖି ଏହାକୁ ଏକ ଲୋକ ସେବକ ସଂଘ କରିବାକୁ ଇଚ୍ଛା କରିଛନ୍ତି । ପରିଣାମତଃ ବହୁ ନିଷ୍ଠାପର ଗାନ୍ଧୀବାଦୀ ସ୍ୱାଧୀନତା ପରେ ରାଜନୀତିରେ ସମ୍ପୃକ୍ତ ନହୋଇ ସମାଜ ସେବାରେ ନିଜକୁ ବ୍ରତୀ କରାଇଛନ୍ତି । ରାଷ୍ଟ୍ର, ରାଜନୈତିକ କ୍ଷମତା, ଦଳୀୟ କାର୍ଯ୍ୟକ୍ରମଠାରୁ ଦୂରେଇ ଯାଇ ବହୁ ଗାନ୍ଧୀବାଦୀ ନେତା ଯେଉଁମାନେ ଏକଦା କଂଗ୍ରେସ ଭିତରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ସେମାନେ ରଚନାତ୍ମକ କାର୍ଯ୍ୟକ୍ରମରେ ବା ନାଗରିକ ସମାଜ ସ୍ତରରେ ରହି କାମ କରିବାକୁ ଶ୍ରେୟ ମଣିଛନ୍ତି । ପରାଧୀନ ଭାରତରେ ଗାନ୍ଧୀ ଦୀର୍ଘ ଦିନ ଧରି କଂଗ୍ରେସ ସଙ୍ଗଠନର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ହୋଇଥିଲେ ମଧ୍ୟ ସେ କଂଗ୍ରେସର ପ୍ରାଥମିକ ସଭ୍ୟ ପଦରୁ ୧୯୩୪ରେ ଇସ୍ତଫା ଦେଇଛନ୍ତି । ଏ ସତ୍ତ୍ୱେ କଂଗ୍ରେସର ସକଳ ନୀତି ନିର୍ଦ୍ଧାରଣ କ୍ଷେତ୍ରରେ ତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ହୋଇ ରହିଛି । ସେ ରାଜନୀତିରେ ରହିଥିଲେ ମଧ୍ୟ ଏକ ସନ୍ଥର ଭୂମିକାରେ ରହିଛନ୍ତି ଓ କ୍ଷମତାଠାରୁ ସର୍ବଦା ଦୂରେଇ ଯାଇଛନ୍ତି ।

ଚୀନରେ ମାଓ କିନ୍ତୁ ଏକ ସକ୍ରିୟ ଭୂମିକା ନେଇ ରାଜନୈତିକ ବ୍ୟବସ୍ଥାକୁ ନିୟନ୍ତ୍ରଣ କରିଛନ୍ତି । ଚୀନରେ ସମାଜବାଦୀ ବିପ୍ଳବ ଆସିବା ପୂର୍ବରୁ ସେ କମ୍ୟୁନିଷ୍ଟ ଦଳକୁ ଏକ ଗଣ ସଂଗଠନରେ ବିସ୍ତାର କରିଛନ୍ତି । ତାଙ୍କର ବଳିଷ୍ଠ ନେତୃତ୍ୱ ଓ ପ୍ରଭାବ ଯୋଗୁଁ କମ୍ୟୁନିଷ୍ଟ ଦଳ ସାରା ଦେଶର ସବୁ ଅଞ୍ଚଳରେ ପ୍ରତିଷ୍ଠିତ ହୋଇ ଏକ ବଳିଷ୍ଠ ଗଣ ସଙ୍ଗଠନ ଭାବେ ରାଜନୈତିକ ବିପ୍ଳବ ପାଇଁ ପ୍ରସ୍ତୁତ ହୋଇଛି । ମାଓ ଚୀନ କମ୍ୟୁନିଷ୍ଟ ପାର୍ଟିର ଚେୟାରମ୍ୟାନ ପଦ ୧୯୩୧ ରୁ ଗ୍ରହଣ କରି ତାଙ୍କର ଦେହାନ୍ତ ୧୯୭୬ରେ ହେବା ପର୍ଯ୍ୟନ୍ତ ସେହି ପଦବୀରେ ରହିଛନ୍ତି । ଅଠର ବର୍ଷ ଧରି ସଙ୍ଗଠନର ମୁଖ୍ୟ ଭାବେ

ସେ ଯେଉଁ ବିପ୍ଲବର ସୂତ୍ରପାତ କରିଛନ୍ତି ତାହାଦ୍ୱାରା ୧୯୪୯ ରେ କମ୍ୟୁନିଷ୍ଟ ଦଳ କ୍ଷମତା ହାସଲ କରିପାରିଛି ଓ ସେ ଚୀନ ଲୋକତନ୍ତ୍ରର ମୁଖ୍ୟ ଭାବେ ୧୯୫୯ ପର୍ଯ୍ୟନ୍ତ ରହି ନିଜ ଆଦର୍ଶର ସଫଳ ରୂପାୟନ ପାଇଁ କାର୍ଯ୍ୟ କରିଛନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଗାନ୍ଧୀ ଭାରତରେ କଂଗ୍ରେସର ବା ମାଓ ଚୀନରେ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ନୁହଁନ୍ତି । ବରଂ ସେମାନେ ନିଜ ନିଜର ବଳିଷ୍ଠ ନେତୃତ୍ୱ ଯୋଗୁ ଦଳ ପାଇଁ ଅପରିହାର୍ଯ୍ୟ ହୋଇଛନ୍ତି । ତେବେ ଗାନ୍ଧୀ କଂଗ୍ରେସ ଦଳରୁ ବା କ୍ଷମତା ପରିସରଠାରୁ ସର୍ବଦା ଦୂରରେ ରହିଛନ୍ତି, କିନ୍ତୁ ମାଓ ଦଳର ନେତୃତ୍ୱର ମୁଖ୍ୟ ପାଲଟିଛନ୍ତି ।

ଗାନ୍ଧୀ ଓ ମାଓ ଯେଉଁ ନ୍ୟାୟପୂର୍ଣ୍ଣ, ସମତାଭିତ୍ତିକ ସମାଜ ପାଇଁ ଗଭୀର ସମ୍ପୃକ୍ତି ବ୍ୟକ୍ତ କରିଛନ୍ତି ସେ କ୍ଷେତ୍ରରେ ଉଭୟଙ୍କ କାର୍ଯ୍ୟଧାରା ଭିତରେ ବି ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ରହିଛି । ଗାନ୍ଧୀ ତାଙ୍କର କଳ୍ପିତ ଗ୍ରାମ ସ୍ୱରାଜ ପାଇଁ ରଚନାତ୍ମକ କାର୍ଯ୍ୟକ୍ରମକୁ ପ୍ରାଧାନ୍ୟ ଦେଇଛନ୍ତି । କୁଟୀର ଶିଳ୍ପର ପ୍ରସାର, ମୌଳିକ ଶିକ୍ଷାର ବିସ୍ତାର, ମହିଳାମାନଙ୍କୁ ସାମାଜିକ ବିକାଶ ପ୍ରକ୍ରିୟାରେ ସମ୍ପୃକ୍ତି, ପ୍ରୌଢ଼ଶିକ୍ଷା କେନ୍ଦ୍ର ଇତ୍ୟାଦି କାର୍ଯ୍ୟକ୍ରମକୁ ଗାଁ ଗାଁରେ କରିବାକୁ ସେ ଉଦ୍ୟମ କରିଛନ୍ତି । ଏହା ସହିତ ଭାରତୀୟ ସମାଜର କେତେକ ମନ୍ଦ ବ୍ୟବସ୍ଥା ଯଥା ଅସ୍ପୃଶ୍ୟତା, ଜାତିଆଣ ଭେଦଭାବ, ଶରୀର ଶ୍ରମର ଅମର୍ଯ୍ୟାଦା ଇତ୍ୟାଦି ଦୂର କରିବାକୁ ଗୁରୁତ୍ୱ ଦେଇଛନ୍ତି । ତେବେ ଏ ସମସ୍ତ ବ୍ୟବସ୍ଥା ସରକାରୀ ନିୟନ୍ତ୍ରଣ ବାହାରେ ସ୍ୱେଚ୍ଛାସେବୀ କାର୍ଯ୍ୟ ଭାବେ କରିବାକୁ ପ୍ରୟାସ କରାଯାଇଛି । ଗ୍ରାମସ୍ୱରାଜ ଯେହେତୁ ସରକାର ବା କେନ୍ଦ୍ରୀୟ ବ୍ୟବସ୍ଥାର ନିୟନ୍ତ୍ରଣରେ ରହିବ ନାହିଁ, ତେଣୁ ଏସବୁ କାର୍ଯ୍ୟ ବେସରକାରୀ ସ୍ତରରେ ସ୍ୱେଚ୍ଛାସେବୀ ସଙ୍ଗଠନ ମାଧ୍ୟମରେ କରାଯିବ । ପରାଧୀନ ଭାରତରେ ରାଜନୈତିକ ସ୍ୱାଧୀନତା ପାଇଁ ଆନ୍ଦୋଳନ ପୃଷ୍ଠଭୂମିରେ ଗ୍ରାମମାନଙ୍କର ବିକାଶ ପାଇଁ ଏସବୁ ରଚନାତ୍ମକ କାର୍ଯ୍ୟକ୍ରମର ବେଶ୍ ମହତ୍ତ୍ୱ ଥିଲା । ତେବେ ସ୍ୱାଧୀନ ଭାରତରେ ରଚନାତ୍ମକ କାର୍ଯ୍ୟକ୍ରମ କ୍ଷେତ୍ରରେ ସେପରି ସରକାରୀ ପ୍ରୋତ୍ସାହନ ଅଭାବରେ ଏହା ଦୀର୍ଘଦିନ ଚାଲି ପାରିଲା ନାହିଁ । ଗାନ୍ଧୀଙ୍କର ବହୁ ଅନୁଗାମୀ ଯେଉଁମାନେ ରାଜନୀତିଠାରୁ ଦୂରରେ ରହି ସମାଜ ସେବାରେ ବ୍ରତୀ ରହିଲେ ସେମାନେ ନିର୍ଦ୍ଦିଷ୍ଟ ଅଞ୍ଚଳରେ କିନ୍ତୁ ଗ୍ରାମମାନଙ୍କରେ ଏସବୁ କାର୍ଯ୍ୟକଲେ, ତେବେ ତାହାର ଏକ ଜାତୀୟ ଆଭିମୁଖ୍ୟ ରହିଲା ନାହିଁ । ଭୂଦାନ ଆନ୍ଦୋଳନ ସ୍ୱାଧୀନ ଭାରତରେ ଜାତୀୟ ସ୍ତରରେ ସବୁଠାରୁ ବଡ଼ ସ୍ୱେଚ୍ଛାସେବୀ କାର୍ଯ୍ୟକ୍ରମ ଭାବେ ଏକଦା କିଛି ଆଲୋଡନ ସୃଷ୍ଟି କରିଥିଲା, ତେବେ ଗ୍ରାମସ୍ୱରାଜ ବା ଆର୍ଥିକ ସମତା ସୃଷ୍ଟି ଦିଗରେ ଏହା ସେପରି କିଛି ସଫଳତା ଆଣିପାରିଲା ନାହିଁ । ସରକାରୀ ପ୍ରୋତ୍ସାହନ ଅଭାବରେ ଓ ଗଣ-ସମ୍ପୃକ୍ତି ନଥିବା ଯୋଗୁଁ ଗାନ୍ଧୀ ଯେଉଁ ରଚନାତ୍ମକ କାର୍ଯ୍ୟକ୍ରମର ସୂତ୍ରପାତ କରିଥିଲେ ତାହା ସ୍ୱାଧୀନ ଭାରତରେ ଆଗକୁ

ଯାଇପାରିଲା ନାହିଁ । ପୁନଶ୍ଚ ଗାନ୍ଧୀଙ୍କ ମୌଳିକ ଶିକ୍ଷାର ଯେଉଁ ଆଭିମୁଖ୍ୟ ଥିଲା ତାହା ବି ସ୍ୱାଧୀନ ଭାରତରେ ଗ୍ରହଣଯୋଗ୍ୟ ହେଲା ନାହିଁ ।

ଅପରପକ୍ଷରେ ମାଓ ଚୀନରେ ରାଜନୈତିକ କ୍ଷମତା ହାସଲ କରିବା ପରେ ତାଙ୍କର ଅର୍ଥନୈତିକ ଓ ସାମାଜିକ ଲକ୍ଷ୍ୟ ପୂରଣ ପାଇଁ କମ୍ୟୁନିଷ୍ଟ ଦଳ ସାହାଯ୍ୟରେ ବିଭିନ୍ନ ପଦକ୍ଷେପ ନେଲେ । ଗୋଟିଏ କେନ୍ଦ୍ରୀୟ ନିୟନ୍ତ୍ରଣ ଭିତରେ ଅଭିଳଷିତ ଲକ୍ଷ୍ୟ ପୂରଣ ପାଇଁ କମ୍ୟୁନିଷ୍ଟ ଦଳର ସମ୍ପୃକ୍ତିଦ୍ୱାରା ନାନା ପ୍ରଗତିଶୀଳ ପଦକ୍ଷେପ ନେବା ସମ୍ଭବ ହେଲା । ପରିଣାମତଃ ଉତ୍ପାଦନ ଓ ପୁଞ୍ଜିର ସାମାଜୀକରଣ ଚୀନରେ କରାଯାଇ ପାରିଲା । ପୁଞ୍ଜିବାଦୀ ଅର୍ଥନୀତି ଓ ଶୋଷଣର ବିଲୋପ ସାଧନ ହେଲା ଓ ସମତାଭିତ୍ତିକ ପରିବେଶ ବାସ୍ତବରେ ଅନେକଟା ସଫଳତା ହାସଲ କଲା । ନିରକ୍ଷରତାର ବିଲୋପ ସହ ଜନମାନସରେ ଉଚ୍ଚ କର୍ମସଂସ୍କୃତିର ମାନସିକତା ସୃଷ୍ଟି କରାଯାଇ ପାରିଲା । ଚୀନରେ ଯେଉଁ ସାଂସ୍କୃତିକ ବିପ୍ଳବ ୧୯୬୬ ରୁ ୧୯୭୬ ପର୍ଯ୍ୟନ୍ତ ଚାଲିଲା ସେଥିରେ ବୁର୍ଜୁଆ ସଂସ୍କୃତିର ଅନେକ ପ୍ରଥାକୁ ବିଲୋପ କରାଗଲା । ଏହି ପରିପ୍ରେକ୍ଷୀରେ ସହରର ଯୁବକମାନଙ୍କୁ ନେଇ ଲାଲବାହିନୀ ଗଠନ କରାଗଲା ଯେଉଁମାନେ ସମଗ୍ର ଦେଶରେ ପ୍ରାଚୀନ ବୁର୍ଜୁଆ ପରମ୍ପରା, କୁସଂସ୍କାର ଓ ସାମନ୍ତବାଦୀ ବ୍ୟବସ୍ଥାର ମୂଳୋତ୍ପାଟନ କଲେ । ପ୍ରଗତିଶୀଳ ଭାବନା, ସମାଜବାଦୀ ଦୃଷ୍ଟିଭଙ୍ଗୀ, ବିଜ୍ଞାନ ଭିତ୍ତିକ ଶିକ୍ଷା ବ୍ୟବସ୍ଥାକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ନିଆଯାଇ ତାହାକୁ ସମଗ୍ର ରାଷ୍ଟ୍ରରେ ବ୍ୟାପକ ଭିତ୍ତି ଦିଆଗଲା । ଏହି କ୍ଷେତ୍ରରେ ହୁଏତ ପ୍ରତିବାଦ ବା ବିରୋଧର ଯେଉଁ ସ୍ୱର ଉଠିଲା ତାହାକୁ ଦମନ କରାଗଲା । କୁହାଗଲା ଯେ ମନ୍ଦ ବ୍ୟବସ୍ଥା, ବୁର୍ଜୁଆ ପ୍ରଥା ଓ ସମାଜ-ହାନିକର ପରମ୍ପରାର ବିଲୋପ ପାଇଁ ସ୍ଥଳ ବିଶେଷରେ କିଛି ଦମନମୂଳକ ବ୍ୟବସ୍ଥାକୁ ଗ୍ରହଣ କରିବାକୁ ହେବ ।

ହୁଏତ ଚୀନରେ ମାନବିକ ଅଧିକାର, ଗଣତାନ୍ତ୍ରିକ ଉଦାରବାଦ ଓ ଗଣମାଧ୍ୟମର ସ୍ୱାଧୀନତା କେତେକାଂଶରେ ସଙ୍କୁଚିତ ହୋଇଛି । ବିଭିନ୍ନ ପରିବର୍ତ୍ତନ କ୍ଷେତ୍ରରେ କିଛି ଦମନ ମୂଳକ ପନ୍ଥାର ଆଶ୍ରୟ ନିଆଯାଇଛି ଓ ସରକାରୀ ନିୟନ୍ତ୍ରଣକୁ ଦୃଢ଼ କରାଯାଇଛି । ତେବେ ଚୀନ ମାଓଙ୍କ ପ୍ରଦର୍ଶିତ ପନ୍ଥାରେ ଯାଇ ବହୁ ପ୍ରଗତି ହାସଲ କରିଛି, ଏକ ସୁପର ପାୱାର ହୋଇଛି, ସମାଜରେ ଆର୍ଥିକ ସମତା ସୃଷ୍ଟି କରି ପାରିଛି ଓ ବୁର୍ଜୁଆ ସଂସ୍କୃତିରେ ପରିବର୍ତ୍ତନ ଆଣିଛି । ଶିକ୍ଷା, ସ୍ୱାସ୍ଥ୍ୟ ସେବା, ନାଗରିକ ଶୃଙ୍ଖଳାର ସ୍ତର ଓ କର୍ମସଂସ୍କୃତିକୁ ଅନେକାଂଶରେ ଉନ୍ନତ କରିପାରିଛି । ମୋଟ ଉପରେ ଜୀବନର ଗୁଣାତ୍ମକ ମାନରେ ଯଥେଷ୍ଟ ଉନ୍ନତି ସେ ଦେଶରେ ଆସିପାରିଛି । ଅପରପକ୍ଷରେ ଭାରତରେ ଗଣତାନ୍ତ୍ରିକ ଶାସନ, ମୁକ୍ତ ଗଣମାଧ୍ୟମ, ବ୍ୟକ୍ତି ସ୍ୱାଧୀନତାର ପରିବେଶ ରହିଥିଲେ ବି ଦାରିଦ୍ର୍ୟ, ନିରକ୍ଷରତା, ସାମାଜିକ ବୈଷମ୍ୟ, ଦୁର୍ନୀତି ବହୁ ଭାବରେ ରହିଛି ।

ପରିସ୍ଥିତି ଜନିତ ଅବଲୀଳା କ୍ରମେ ଗାନ୍ଧୀ ଭାରତର ରାଜନୈତିକ ସ୍ୱାଧୀନତାର ଓ ମାଓ ଚୀନର ସମାଜବାଦୀ ବିପ୍ଳବର ମୁଖ୍ୟ କର୍ଣ୍ଣଧାର ପାଲଟିଛନ୍ତି । ତେବେ ସମାଜର ପୁନର୍ଗଠନ ଦିଗରେ ଗାନ୍ଧୀ ଅଧିକ ଆଦର୍ଶବାଦୀ ହେବାବେଳେ ମାଓ ଅଧିକ ବାସ୍ତବବାଦୀ ହୋଇଛନ୍ତି । ପରିଣାମତଃ ଗାନ୍ଧୀଙ୍କ ଆଦର୍ଶ ଆଦର୍ଶରେ ରହିଯାଇଛି ଓ ବାସ୍ତବତାରେ ରୂପାନ୍ତରିତ ହୋଇପାରି ନାହିଁ । ମାଓ ବହୁ କ୍ଷେତ୍ରରେ ବାସ୍ତବବାଦୀ ହୋଇ ସମାଜରେ ଆବଶ୍ୟକୀୟ ପରିବର୍ତ୍ତନ ଆଣିବାରେ ଅନେକାଂଶରେ ସଫଳତା ହାସଲ କରିଛନ୍ତି ।

ଭାରତରେ ରାଜନୈତିକ ସ୍ୱାଧୀନତା ହାସଲ ପରେ ଗାନ୍ଧୀଙ୍କର ପରିକଳ୍ପିତ ଗ୍ରାମସ୍ୱରାଜ ଅଧୁରା ରହିଗଲା । ସ୍ୱାଧୀନତା ସହିତ ସାମ୍ପ୍ରଦାୟିକ ପରିସ୍ଥିତି ସୃଷ୍ଟି ହେଲା ଓ ଘଟଣାକ୍ରମେ ସାମ୍ପ୍ରଦାୟିକ ଶକ୍ତିଦ୍ୱାରା ଗାନ୍ଧୀ ନିହତ ହେଲେ । ଏତଦ୍‌ବ୍ୟତୀତ ଭାରତୀୟ ସମାଜ ଏକ ଜାତି ଭିତ୍ତିକ ଓ ଭେଦଭାବ ମୂଳକ ବ୍ୟବସ୍ଥା ଉପରେ ଗଢ଼ି ଉଠିଥିବାରୁ ଏକ ସମତାଭିତ୍ତିକ ସମାଜର ସ୍ୱପ୍ନ ଭାରତୀୟ ଜନ ଜୀବନରେ ଦୃଢ଼ ଭିତ୍ତି ନେଇନାହିଁ । ପୁନଶ୍ଚ ଧାର୍ମିକ ମାନସିକତାର ଗଭୀର ପ୍ରଭାବ ଓ ପାରଲୌକିକ ଦୃଷ୍ଟିଭଙ୍ଗୀ ସାମାଜିକ ବିକାଶରେ ପ୍ରତିବନ୍ଧକ ସୃଷ୍ଟି କରିଛି । ଏହିପରି ନାନା ଜଟିଳ କାରଣରୁ ଭାରତୀୟ ସମାଜର ବିକାଶଧାରା ସବୁ ମଣିଷଙ୍କ ପାଖକୁ ପ୍ରସାରିତ ହୋଇ ପାରିନାହିଁ । ଅପରପକ୍ଷରେ ମାଓ ଗୋଟିଏ ସମାଜବାଦୀ ରାଷ୍ଟ୍ର ଗଠନ ପାଇଁ ଜନମାନସରେ ଯେଉଁ ଆଲୋଡ଼ନ ଆଣିଛନ୍ତି ତାହା ରାଷ୍ଟ୍ରୀୟ ପୁନଃନିର୍ମାଣ କ୍ଷେତ୍ରରେ ଅନେକଟା ନିର୍ଣ୍ଣାୟକ ହୋଇଛି । ଚୀନରେ ସାମାଜିକ ଭେଦଭାବ ନଥିବା ହେତୁ ତଥା ସେଠିକାର ବୌଦ୍ଧିକ ବିଚାରଧାରାରେ ଐହିକ ଜୀବନ ପ୍ରତି ପ୍ରତିବଦ୍ଧତା ଯୋଗୁଁ ମାଓଙ୍କର ପ୍ରଗତିଶୀଳ ଦିଗ୍‌ଦର୍ଶନ ଜନମାନସରେ ବାସ୍ତବ ପରିବର୍ତ୍ତନ ପାଇଁ ପ୍ରେରଣାର ଉତ୍ସ ହୋଇଛି । ପରିଣାମତଃ ଏକ ସମାଜବାଦୀ ରାଷ୍ଟ୍ରରୁ ଶୋଷଣ ଲୋପ ପାଇବା ସହ ରାଷ୍ଟ୍ରୀୟ ବିକାଶ ସାଧାରଣ ମଣିଷ ପାଖକୁ ପ୍ରସାରିତ ହୋଇପାରିଛି ।

(୬.୭.୨୦୧୨)



# ଗାନ୍ଧୀ ଓ ମାଓ : ବିକାଶର ବିକଳ୍ପ

ଗାନ୍ଧୀ ଓ ମାଓଙ୍କ ଆବିର୍ଭାବ ସମୟକୁ ଭାରତ ଓ ଚୀନରେ ୟୁରୋପୀୟ ଦେଶମାନଙ୍କ ତୁଳନାରେ ବହୁ ଦାରିଦ୍ର୍ୟ ରହିଥିଲା । ଇଂଲଣ୍ଡରେ ଯେଉଁ ଶିଳ୍ପ ବିପ୍ଳବ ଆସିଲା ତାର ପରିଣାମ ସ୍ୱରୂପ ଏସିଆ ଓ ଆଫ୍ରିକାର ଦେଶମାନଙ୍କୁ ୟୁରୋପୀୟ ସମୃଦ୍ଧ ରାଷ୍ଟ୍ରମାନଙ୍କର ଉପନିବେଶ ହେବାକୁ ହେଲା । ଆଧୁନିକ ବିଜ୍ଞାନ ଓ ନୂଆ ନୂଆ ପ୍ରଯୁକ୍ତିର ଉଦ୍ଭାବନ ଯୋଗୁଁ ଯେତେବେଳେ ପ୍ରଚୁର ଉତ୍ପାଦନ ହେଲା, ୟୁରୋପୀୟ ରାଷ୍ଟ୍ରମାନେ ଉପନିବେଶବାଦର ପ୍ରସାର କଲେ । ଭାରତ ବ୍ରିଟିଶ ଉପନିବେଶର ଅଧୀନ ହେଲା । ଗାନ୍ଧୀଙ୍କ ସଂଗ୍ରାମ ଉପନିବେଶବାଦୀ ସାମ୍ରାଜ୍ୟବାଦ ବିରୁଦ୍ଧରେ ଥିଲା । ଉପନିବେଶବାଦ ଓ ରାଷ୍ଟ୍ରର ରାଜନୈତିକ ପରାଧୀନତା ବିରୁଦ୍ଧରେ ଲଢ଼ିବା ପାଇଁ ଗାନ୍ଧୀ ଓ କଂଗ୍ରେସ ସାରା ଦେଶରେ ଏକ ରାଜନୈତିକ ଜାଗରଣ ସୃଷ୍ଟି କରିପାରିଥିଲେ । ସେହି ଭାବେ କେତେକ କାର୍ଯ୍ୟସୂଚୀ ଭିତରେ ଏକ ଜାତୀୟବାଦୀ ଚେତନା ସାରା ଦେଶରେ ସୃଷ୍ଟି କରିଥିଲେ । ଜାତୀୟବାଦୀ ଚେତନାର ଭାବନାତ୍ମକ ଆଧାର ଥିଲା ଯେ ଦେଶ ରାଜନୈତିକ ଦାସତ୍ୱରୁ ମୁକ୍ତ ହେଲେ ଏହାର ବିକାଶ ତ୍ୱରାନ୍ୱିତ ହୋଇପାରିବ । ଫଳରେ ଦେଶରେ ରହିଥିବା ଦାରିଦ୍ର୍ୟ, ବୈଷମ୍ୟ, ଶୋଷଣ, ନିରକ୍ଷରତାର ଦୂରୀକରଣ ସମ୍ଭବ ହେବ । ଏପରି ଏକ ଭାବନାତ୍ମକ ଆବେଗ ଦେଶର ସବୁ ଶ୍ରେଣୀର ଲୋକଙ୍କ ଭିତରେ ସୃଷ୍ଟି ହୋଇଥିଲା । ଗାନ୍ଧୀ ଏହିପରି ଏକ ଆବେଗ ଓ ସ୍ୱପ୍ନ ସମାଜରେ ସୃଷ୍ଟି କରିଥିଲେ ଯାହାଦ୍ୱାରା ଦେଶର ରାଜନୈତିକ ସ୍ୱାଧୀନତା ପାଇଁ ତାଙ୍କ ସଂଗ୍ରାମ ପଛରେ ଦେଶର ଅକୁଣ୍ଠିତ ସମର୍ଥନ ମିଳିଥିଲା ।

ଚୀନରେ ଯଦିବା ଉପନିବେଶବାଦୀ ସରକାର ନଥିଲା, ତଥାପି ସେଠାରେ ସାମ୍ରାଜ୍ୟବାଦୀ ଶକ୍ତିର ନିୟନ୍ତ୍ରଣରେ ଏକଛତ୍ରବାଦୀ ସରକାର ରହିଥିଲା । ଏକଛତ୍ରବାଦ ଓ ସାମ୍ରାଜ୍ୟବାଦର ମୂଳଭିତ୍ତି ଥିଲା ଏକ ପୁଞ୍ଜିବାଦୀ ବ୍ୟବସ୍ଥା । ସୁତରାଂ ପୁଞ୍ଜିବାଦୀ ବ୍ୟବସ୍ଥାର ପରିବର୍ତ୍ତନ କରି ଏକ ସମାଜବାଦୀ ରାଷ୍ଟ୍ର ଗଠନ ଦ୍ୱାରା ସମାଜରୁ ସକଳ ଶୋଷଣ,

ଅନ୍ୟାୟ, ଭେଦଭାବ, ଦାରିଦ୍ର୍ୟ ଇତ୍ୟାଦି ଲୋପ ପାଇବ ବୋଲି ମାଓ ପରିକଳ୍ପନା କରିଥିଲେ । ଫଳରେ ଏକ ସମାଜବାଦୀ ରାଷ୍ଟ୍ର ଗଠନ ପାଇଁ ସେ ଜନଗଣଙ୍କ ମଧ୍ୟରେ ବୈପ୍ଳବିକ ଚେତନା ଓ ଜାଗରଣ ସୃଷ୍ଟି କରିଥିଲେ । ଫଳରେ ଗାଆଁଠାରୁ ସହର ପର୍ଯ୍ୟନ୍ତ ଗଣସଂଗ୍ରାମ ବାହିନୀ ସୃଷ୍ଟି ହେଲା । ରାଜନୈତିକ ବ୍ୟବସ୍ଥାରେ ଆମୂଳ ପରିବର୍ତ୍ତନ ଆଣି ସମାଜବାଦ ଆଧାରରେ ରାଷ୍ଟ୍ର ପୁନଃନିର୍ମାଣ ପାଇଁ ମାଓଙ୍କ ନେତୃତ୍ୱ ପଛରେ ଜନଗଣଙ୍କର ଅକୁଣ୍ଠିତ ସମର୍ଥନ ମିଳି ପାରିଥିଲା । ଗାନ୍ଧୀ ଓ ମାଓ ଦୁଇ ଦେଶର ଦୁଇ ଜନନେତା ଭାବେ ସ୍ୱୀକୃତି ଓ ସମର୍ଥନ ପାଇଥିଲେ । ଗାନ୍ଧୀଙ୍କର ମୁଖ୍ୟ ଲଢ଼େଇ ଥିଲା ଉପନିବେଶବାଦୀ ଶକ୍ତି ବିରୁଦ୍ଧରେ ଓ ମାଓଙ୍କ ଲଢ଼ାଇ ଥିଲା ପୁଞ୍ଜିବାଦୀ ଶକ୍ତି ବିରୁଦ୍ଧରେ । ତେବେ ଏ ପ୍ରତ୍ୟେକଟି ସଂଗ୍ରାମ ଜନବାଦୀ ଆନ୍ଦୋଳନ ଜରିଆରେ ଭିତ୍ତି ନେଇଥିଲା ଓ ସମାଜର ସବୁବର୍ଗର ଲୋକଙ୍କର ଏହାପ୍ରତି ସମର୍ଥନ ରହିଥିଲା ।

ଗାନ୍ଧୀ ଓ ମାଓ ସ୍ୱ ସ୍ୱ ଧାରାରେ ବିକାଶର ଚିତ୍ର ଆଙ୍କିଥିଲେ । ସମାଜରୁ ଦାରିଦ୍ର୍ୟ, ବୈଷମ୍ୟ, ଭେଦଭାବ, ନିରକ୍ଷରତା ଇତ୍ୟାଦି କିପରି ଦୂର ହେବ ସେପାଇଁ ଉଭୟ ଗଭୀର ସମ୍ପୃକ୍ତି ବ୍ୟକ୍ତ କରିଥିଲେ ।

ବିକାଶକୁ ଏକ ବୃହତ୍ତର ପୃଷ୍ଠଭୂମିରେ ଦେଖିଲେ 'ବିକାଶ' କେବଳ ଏକ ଅର୍ଥନୈତିକ ଅବଧାରଣା ନୁହେଁ । ରାଷ୍ଟ୍ରର ଅର୍ଥନୈତିକ ବିକାଶ ବା ସମୃଦ୍ଧି ହେବା ଆବଶ୍ୟକ ଯାହଦ୍ୱାରା ରାଷ୍ଟ୍ରର ସବୁ ମଣିଷଙ୍କର ସର୍ବନିମ୍ନ ଆବଶ୍ୟକତା ପୂରଣ ହୋଇ ପାରିବ । ଖାଦ୍ୟ, ବାସଗୃହ, ଆବଶ୍ୟକ ବେଳେ ଚିକିତ୍ସାର ସୁଯୋଗ, ଶିକ୍ଷାର ପରିବେଶ, ସାମାଜିକ ନିରାପତ୍ତା ଇତ୍ୟାଦି ବିକାଶ ସହ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ତେବେ ଏହା ସହିତ ଏକ ଗୁଣାତ୍ମକ ଜୀବନର ବିକାଶ ପ୍ରଶ୍ନଟି ମଧ୍ୟ ଜଡିତ । ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧ, ଦୁର୍ନୀତିମୁକ୍ତ ପ୍ରଶାସନ, ବିଚାରଶୀଳ ଦୃଷ୍ଟି ଇତ୍ୟାଦି ମୂଲ୍ୟଚୟର ବିକାଶ ଗୁଣାତ୍ମକ ଜୀବନ ସହିତ ଅଙ୍ଗାଙ୍ଗୀ ଭାବେ ସମ୍ପୃକ୍ତ । ସୁତରାଂ ବିକାଶ ସହ ଅର୍ଥନୈତିକ ସମୃଦ୍ଧି ଓ ସାଂସ୍କୃତିକ ମୂଲ୍ୟବୋଧର ପ୍ରସଙ୍ଗ ସଂଶ୍ଳିଷ୍ଟ । ଏ ଉଭୟର ସମ୍ମିଳିତ ଅଭିବ୍ୟକ୍ତି ଦ୍ୱାରା ହିଁ ସାମୂହିକ ଜୀବନ ପ୍ରବାହର ଏକ ଗୁଣାତ୍ମକ ଉତ୍ତରଣ ସମ୍ଭବ ହୋଇଥାଏ ।

ୟୁରୋପୀୟ ରାଷ୍ଟ୍ରମାନଙ୍କ ବିକାଶର ଧାରା କେତେ ଶତାବ୍ଦୀ ଦେଇ ଆଜିର ସ୍ଥିତିକୁ ଆସିଥିବା ମନେହୁଏ । ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ, ରାଜନୈତିକ ଦୃଶ୍ୟପଟରେ ଗଣତାନ୍ତ୍ରିକ ଚେତନାର କ୍ରମବିକାଶ, ସାମାଜିକ ଜୀବନ ପ୍ରବାହରେ ଉଚ୍ଚ ନାଗରିକ ସଚେତନତା, ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ନେଇ ପରିବେଶ, ସାମାଜିକ ନ୍ୟାୟ ନେଇ ଗମ୍ଭୀର ସମ୍ପୃକ୍ତି ଇତ୍ୟାଦି ଚେତନାର ଅଭିବୃଦ୍ଧି

ଦିଗରେ ସହାୟକ ହୋଇଛି । ସୁତରାଂ ୟୁରୋପୀୟ ରାଷ୍ଟ୍ରମାନଙ୍କର ସାଧାରଣ ଜୀବନ ପ୍ରବାହରେ ଅର୍ଥନୈତିକ ସମୃଦ୍ଧି ସହ ଏକ ସମାଜ-ସାଂସ୍କୃତିକ ବିକାଶ ସଂଘଟିତ ହୋଇଥିବା ଲକ୍ଷ୍ୟ କରାଯାଏ ।

ୟୁରୋପ ତୁଳନାରେ ଭାରତ ଓ ଚୀନର ସାମାଜିକ ବିକାଶର ଧାରାଟି ବହୁ ପରେ ଆରମ୍ଭ ହୋଇଥିବା ମନେହୁଏ । ଯଦିବା ଭାରତ ଓ ଚୀନର ସଭ୍ୟତା ଅତି ପ୍ରାଚୀନ ତେବେ ଇତିହାସର ଅବଲୀଳା କ୍ରମେ ଏ ଦୁଇ ଦେଶ ସମୃଦ୍ଧି ଦୃଶ୍ୟପଟରେ ପଛରେ ରହିଥିବା ଦେଖାଯାଏ । ଭୟଙ୍କର ଜନସଂଖ୍ୟାର ଚାପ, ଦାରିଦ୍ର୍ୟ, ନିରକ୍ଷରତା, ସାମନ୍ତବାଦ ଇତ୍ୟାଦି ଭିତରେ ନିଷ୍ପେଷିତ ହୋଇ ରହିଥିବା ଏହି ଦୁଇ ରାଷ୍ଟ୍ରରେ ବିକାଶର ଯେଉଁ ଚିତ୍ରଟି ଘଟଣାକ୍ରମେ ଗାନ୍ଧୀ ଓ ମାଓ ସୃଷ୍ଟି କରିଥିଲେ ତାହା ସେହି ସ୍ଥିତିରେ ଏକ ଏକ ବୈପ୍ଳବିକ ଜାଗରଣ ଥିଲା । ସେହି ବୈପ୍ଳବିକ ଜାଗରଣର ପରିଣାମରୁ ଭାରତର ରାଜନୈତିକ ସ୍ୱାଧୀନତା ଓ ଚୀନରେ ଏକ ସମାଜବାଦୀ ବ୍ୟବସ୍ଥାର ଭିତ୍ତି ପଡିବା ପରଠାରୁ ବିକାଶର ନୂତନ ପର୍ବ ଆରମ୍ଭ ହେଲା ।

ଭାରତର ରାଜନୈତିକ ସ୍ୱାଧୀନତା ହାସଲ ପରେ ବିକାଶର ଯେଉଁ ପର୍ବ ଆରମ୍ଭ ହେଲା, ତାହା ଯଥୋଚିତ ଭାବେ ଯଥେଷ୍ଟ ସଫଳତା ହାସଲ କରିପାରି ନଥିବା ମନେହୁଏ । କାରଣ ଏବେ ବି ସମାଜରେ ଉତ୍କଟ ଦାରିଦ୍ର୍ୟ, ନିରକ୍ଷରତା, ବାଳଶ୍ରମିକ ପ୍ରଥା, ଅନାହାର ମୃତ୍ୟୁ, ସାମାଜିକ ଭେଦଭାବ ରହିବା ସାଧାରଣ ଘଟଣା ଅଟେ । ଏହା ସହିତ ଉତ୍କଟ ଆର୍ଥିକ ବୈଷମ୍ୟ, ଦୁର୍ନୀତି, ରାଜନୈତିକ ଭ୍ରଷ୍ଟାଚାର, ସାମ୍ପ୍ରଦାୟିକ ବିଦ୍ୱେଷ, ପାରଲୌକିକ ଦୃଷ୍ଟିଭଙ୍ଗୀ ଭାରତୀୟ ଜନଜୀବନର ଅଙ୍ଗ ହୋଇ ରହିଛି । ସ୍ୱାଧୀନତାର ପ୍ରାକ୍ କାଳରେ ଗୋଟିଏ ବିଚାର ଅତି ବ୍ୟାପକ ଭାବେ ରହିଥିଲା ଯେ ରାଜନୈତିକ ଦାସତ୍ୱରୁ ମୁକ୍ତି ମିଳିଲେ ସାମାଜିକ ଓ ଅର୍ଥନୈତିକ ଦାସତ୍ୱରୁ ମୁକ୍ତି ମିଳିଯିବ । କିନ୍ତୁ ସ୍ୱାଧୀନତାର ଏତେ ବର୍ଷ ପରେ ମଧ୍ୟ ସମାଜରେ ସାମାଜିକ ଦାସତ୍ୱ ଓ ଅର୍ଥନୈତିକ ଶୋଷଣ ରହିବା ଏକ ବିଡମ୍ବନା ମାତ୍ର । ସାମାଜିକ ଦାସତ୍ୱ ପ୍ରସଙ୍ଗଟି ଏକ ମାନସିକ ସ୍ଥିତିର ସୂଚନା ଦିଏ ଯାହା ସହିତ ସଂସ୍କୃତି, ପରମ୍ପରା, ଅର୍ଥନୀତି ଘନିଷ୍ଠ ଭାବେ ସମ୍ପୃକ୍ତ । ତେବେ ସଂସ୍କୃତି, ପରମ୍ପରାରେ ରହିଥିବା ଅହେତୁକ, ଅବୈଜ୍ଞାନିକ ଓ ଅମାନବିକ ଭାବନା ନେଇ ସାମାଜିକ ଚେତନାର ସ୍ତର ଉନ୍ନତ ନ ହେଲେ ଜୀବନର ଗୁଣାତ୍ମକ ବିକାଶ ସମ୍ଭବ ହେବନାହିଁ । ଏକ ବୈଜ୍ଞାନିକ ଓ ମାନବବାଦୀ ବିଚାରର ବିକାଶ ନହେଲେ ସମାଜରେ ଯାହାକିଛି ଆର୍ଥିକ ପ୍ରଗତି ହେଲେ ମଧ୍ୟ ବୌଦ୍ଧିକ  ଜଡତା ସମାଜରୁ ଦୂର ହୋଇପାରିବ ନାହିଁ । ମଣିଷର ମସ୍ତିଷ୍କ ବୌଦ୍ଧିକ ଜଡତାରୁ ମୁକ୍ତ ନହେଲେ ସମାଜର ବିକାଶଧାରା ଗୁଣାତ୍ମକ ଭିତ୍ତି ନେଇପାରିବ ନାହିଁ । ଏବେ ବି ଆମ ଜନଜୀବନରେ ଅଜ୍ଞାନତାର ଅନ୍ଧକାର ଗଭୀର ହୋଇ ରହିଛି ଯାହାର

ପ୍ରତିଫଳନ ସମାଜର ବିଭିନ୍ନ ସ୍ତରରେ ଦେଖିବାକୁ ମିଳେ । ଜାତିଆଣ ମାନସିକତା, ଉଚ୍ଚନୀଚ ଭେଦଭାବ, ସାମ୍ପ୍ରଦାୟିକ ଓ ପାରଲୌକିକ ଦୃଷ୍ଟିଭଙ୍ଗୀ ଆମ ସମାଜର ଅଙ୍ଗ ହୋଇ ରହିଛି । ଏହା ସହିତ ଦୁର୍ନୀତି, କଳାଧନ ପ୍ରସଙ୍ଗ ବି ରାଜନୈତିକ ସ୍ୱାଧୀନତା ପରେ ତୀବ୍ର ହୋଇଛି । ରାଜନୀତି ବାହାରେ ଭାରତରେ ଯେଉଁ ଭେଦଭାବ ମୂଳକ ସମାଜ ବ୍ୟବସ୍ଥା ଯୁଗ ଯୁଗ ଧରି ରହିଛି ସେହି ସମସ୍ୟାଟିର ଗଭୀରତାକୁ ଯାଇ ସେଥିରେ ଏକ ସାଂସ୍କୃତିକ ପରିବର୍ତ୍ତନ ପାଇଁ ରାଷ୍ଟ୍ରୀୟ ସ୍ତରରେ ବିଶେଷ ଜାଗରଣ ସୃଷ୍ଟି ହୋଇନାହିଁ । କେବଳ ସମାଜର ଦୁର୍ବଳ ସ୍ଥିତିରେ ଥିବା ଜନଗଣଙ୍କୁ ସରକାରୀ କର୍ମସଂସ୍ଥାନ କ୍ଷେତ୍ରରେ କିଛି ସଂରକ୍ଷଣ ଦେଇଦେଲେ ସମସ୍ୟାଟିର ସମାଧାନ ହୋଇଯିବ ନାହିଁ । ଆମର ଶିକ୍ଷା ବ୍ୟବସ୍ଥା, ଗଣମାଧ୍ୟମ, ବୁଦ୍ଧିଜୀବୀବର୍ଗ ସାମାଜିକ ନ୍ୟାୟବୋଧ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ବିକାଶ ଦିଗରେ ସେପରି କିଛି କ୍ରାନ୍ତିକାରୀ ପଦକ୍ଷେପ ନେବା ଦେଖାଯାଏ ନାହିଁ । ବସ୍ତୁତଃ ଆମର ବିକାଶର ଦିଗଟି ଏତେ ସଙ୍କୁଚିତ ଯେ ରାଜନୈତିକ ସ୍ୱାଧୀନତା ପରେ କେବଳ ଯୋଜନା ମାଧ୍ୟମରେ ଆର୍ଥିକ ପ୍ରଗତି ପାଇଁ କିଛି ପ୍ରୟାସ ହୋଇଥିଲେ ବି ସାଂସ୍କୃତିକ ଜାଗରଣ ପାଇଁ ସେପରି କିଛି ପ୍ରୟାସ ହୋଇନାହିଁ । ଏହି ଦୃଷ୍ଟିରୁ ଚୀନର ସାମାଜିକ-ସାଂସ୍କୃତିକ ଦୃଶ୍ୟପଟ ଆମଠାରୁ ଯଥେଷ୍ଟ ଭିନ୍ନ ମନେହୁଏ । କାରଣ ସେଠାରେ ଜାତିଆଣ ଭେଦଭାବ ବା ପାରଲୌକିକ ଜୀବନଦୃଷ୍ଟିର କୌଣସି ପ୍ରଭାବ ନାହିଁ । ଏକ ରାଜନୈତିକ ବ୍ୟବସ୍ଥା ସହିତ ଯେଉଁ ସାମନ୍ତବାଦ, ଅର୍ଥନୈତିକ ଶୋଷଣ ଥିଲା, ସେହି ରାଜନୈତିକ ବ୍ୟବସ୍ଥାରେ ପରିବର୍ତ୍ତନ ଯୋଗୁଁ ଏକ ସମାଜବାଦୀ ରାଷ୍ଟ୍ରର ଭିତ୍ତି ସୁଦୃଢ଼ ଭିତ୍ତି ନେଇ ପାରିଲା । ତଥାପି ଗୋଟିଏ ସାଂସ୍କୃତିକ ବିପ୍ଲବ ଦ୍ୱାରା ସମାଜରୁ ଅନ୍ଧ ସଂସ୍କାର, ଅହେତୁକ ମାନସିକତାକୁ ଅନେକାଂଶରେ ଦୂର କରାଯାଇ ପାରିଲା । ରାଜନୈତିକ ପରିବର୍ତ୍ତନ ସହ ଅର୍ଥନୈତିକ ଢାଞ୍ଚାରେ ପରିବର୍ତ୍ତନ ଓ ସାଂସ୍କୃତିକ ବିପ୍ଲବ ଜରିଆରେ ସାମାଜିକ ସଚେତନତାର ପରିବେଶ ବହୁ ଭାବରେ ବୃଦ୍ଧି ପାଇବା ସମ୍ଭବ ହେଲା । ପରିଣାମତଃ ଚୀନ ଦେଶରୁ ଦାରିଦ୍ର୍ୟ, ବୈଷମ୍ୟ, ନିରକ୍ଷରତା ଇତ୍ୟାଦି ବ୍ୟାଧି ସମୂହକୁ ଦୂର କରି ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣି ଏକ ସୁପର ପାୱାର ହେବାର ପରିବେଶ ଆଣିପାରିଲା ।

ଯେଉଁ ଯୁଗରେ କୁଟୀରଶିଳ୍ପ, ଚରଖା, ପ୍ରାଚୀନ ପ୍ରଣାଳୀରେ ଚାଷର ଗୁରୁତ୍ୱ ଥିଲା ସେହି ସ୍ଥିତିଠାରୁ ଦେଶ, ଦୁନିଆ ବହୁ ଆଗକୁ ଆସିଲାଣି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ଶିଳ୍ପର ବିକାଶ, କୃଷିର ଉନ୍ନତିକରଣ ଓ ବିଜ୍ଞାନ ସମ୍ମତ ଦୃଷ୍ଟିଭଙ୍ଗୀର ବିକାଶକୁ ପ୍ରାଧାନ୍ୟ ଦିଆଯିବା ଆବଶ୍ୟକ । ତେବେ ଆଧୁନିକ ବିକାଶ ଯେପରି ପରିବେଶର

ଧ୍ୱଂସ ସାଧନ ଘଟାଇ ସଭ୍ୟତା ପାଇଁ ସଙ୍କଟ ନ କରେ ବା ସମାଜରେ ବୈଷମ୍ୟ ସୃଷ୍ଟିର କାରଣ ନ ହୁଏ ସେ ପାଇଁ ଯଥେଷ୍ଟ ଧ୍ୟାନ ଦେବାକୁ ପଡିବ ।

ଗାନ୍ଧୀ ଓ ମାଓ ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାର ସମାଲୋଚକ ଥିଲେ ଓ ଉଭୟ ସାମାଜବାଦୀ ଅର୍ଥନୀତିର ସମର୍ଥକ ଥିଲେ । ପୁଞ୍ଜିବାଦୀ ମାଲିକାନାର ବିକଳ୍ପ ଭାବେ ରାଷ୍ଟ୍ରୀୟକରଣ, କମ୍ୟୁନ ଜରିଆରେ ସହଯୋଗ ସମିତି ବ୍ୟବସ୍ଥାର ପ୍ରଚଳନ କ୍ଷେତ୍ରରେ ମାଓ ଯଥେଷ୍ଟ ସଫଳତା ଚୀନରେ ହାସଲ କରିବାରେ ସମର୍ଥ ହେଲେ । ଭାରତ ବର୍ଷରେ ସ୍ୱାଧୀନତା ପରେ ସମବାୟ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଭୂଦାନ ଆନ୍ଦୋଳନ ବି ଏ କ୍ଷେତ୍ରରେ ଗୋଟିଏ ବଡ଼ ସ୍ୱେଚ୍ଛାସେବୀ ଜନଜାଗରଣ ଥିଲା । ତେବେ ନାନା କାରଣ ଯୋଗୁଁ ସମବାୟ ଆନ୍ଦେଳାନ ସଫଳ ହେଲାନାହିଁ । ପୁଞ୍ଜିବାଦରୁ ସମାଜବାଦ ବା ସାମ୍ୟବାଦ ଆଣିବାରେ ମାଓ ବେଳକେ ରାଷ୍ଟ୍ରଶକ୍ତି ଓ ଦମନମୂଳକ ବ୍ୟବସ୍ଥାର ପ୍ରୟୋଗ କରିଥିବା ସୁବିଦିତ । ତେବେ ଗାନ୍ଧୀଙ୍କ ବୈଚାରିକ ଚିନ୍ତନ କ୍ଷେତ୍ରରେ ଅହିଂସ ଭାବନାର ଗଭୀର ପ୍ରଭାବ ଯୋଗୁଁ ସେ ନ୍ୟାସୀବାଦ ବା ଟ୍ରଷ୍ଟିସିପ ପରି ଏକ ବିଚାରର ଅବତାରଣା କରିଥିଲେ । ପୁଞ୍ଜିପତିମାନେ ଆପଣା ସମ୍ପତ୍ତି ବା ଶିଳ୍ପର ଟ୍ରଷ୍ଟି ବା ନ୍ୟାସୀ ବୋଲି ଘୋଷଣା କରିବାକୁ ଗାନ୍ଧୀ ବିଚାର ଦେଇଥିଲେ । ତେବେ ଗୋଟିଏ ସମାଜର ଅର୍ଥନୈତିକ ଢ଼ାଞ୍ଚାରେ ଏକ ମୌଳିକ ପରିବର୍ତ୍ତନ ଏତେ ସହଜରେ ଆସିଯିବ ବୋଲି ଗାନ୍ଧୀ ଯାହା ଭାବିଥିଲେ ତାହା କେତେକାଂଶରେ ଅବାସ୍ତବ ମନେହୁଏ ।

ଇତିହାସର ଏକ କାଳଖଣ୍ଡରେ ଗାନ୍ଧୀ ଉପନିବେଶବାଦ ଜନିତ ସାମ୍ରାଜ୍ୟବାଦକୁ ଓ ମାଓ ବୈଷମ୍ୟପୂର୍ଣ୍ଣ ପୁଞ୍ଜିବାଦକୁ ଆହ୍ୱାନ ଦେଇ ନିଜ ନିଜ ଦେଶରେ ଗଣଆନ୍ଦୋଳନ ଗଢ଼ି ତୋଳିଥିଲେ ଓ ନିଜ ଦେଶର ଇତିହାସର ମୋଡ଼ ବଦଳାଇଥିଲେ । ବର୍ତ୍ତମାନର ପରିସ୍ଥିତିରେ ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦ କେତେ କେତେ ନୂଆ କଳେବର ନେଇ ଆମ ସଂସାରରେ ଆତ୍ମପ୍ରକାଶ କରିବା ଏକ ବାସ୍ତବତା ଅଟେ । ଏହି ସ୍ଥିତିରେ ଯେତେ ଦିନ ପର୍ଯ୍ୟନ୍ତ ଏକ ବ୍ୟବସ୍ଥା ଶୋଷଣ, ବୈଷମ୍ୟ ଓ ଅନ୍ୟାୟ ଉପରେ ଆଧାରିତ ଥିବ ତାହାକୁ ଦୂର କରିବାକୁ ଗାନ୍ଧୀ ଓ ମାଓଙ୍କ ବିଚାରରୁ ନିଶ୍ଚୟ ପ୍ରେରଣା ଆସୁଥିବ । ତେବେ ପରିବର୍ତ୍ତିତ ପରିସ୍ଥିତିରେ ବିକାଶର ନୂତନ ଦିଗ ଉନ୍ମୋଚିତ କରିବାକୁ ହେବ ଯାହା ସମତା, ନ୍ୟାୟ ଓ ମାନବିକ ଉତ୍କର୍ଷକୁ ଅଧିକ ବିକଶିତ କରିବା ସହ ଯୁଗର ଆହ୍ୱାନକୁ ମୁକାବିଲା କରିପାରିବ ।

(୨୭.୭.୨୦୧୨)



# ଇତିହାସର ଆଇନାରେ ଗାନ୍ଧୀ ଓ ମାଓ

ମହାତ୍ମା ଗାନ୍ଧୀ ଓ ମାଓ ସେ ତୁଙ୍ଗ ବିଂଶ ଶତାବ୍ଦୀର ଦୁଇ ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ଭାବେ ଇତିହାସରେ ନିଜର ସ୍ୱାକ୍ଷର ରଖି ଯାଇଛନ୍ତି । ଭାରତର ସ୍ୱାଧୀନତା ସଂଗ୍ରାମକୁ ଗାନ୍ଧୀଙ୍କର ଓ ଚୀନରେ ସମାଜବାଦୀ ବିପ୍ଳବକୁ ମାଓଙ୍କର ଅବଦାନ ଅନନ୍ୟ । ଭାରତର ରାଜନୈତିକ ସ୍ୱାଧୀନତା କ୍ଷେତ୍ରରେ ଗାନ୍ଧୀ ଓ ଚୀନରେ କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠାରେ ମାଓ ଯେଉଁ ଭୂମିକା ନିର୍ବାହ କରିଛନ୍ତି ତାହା ସେମାନଙ୍କୁ ବିଶ୍ୱବିଦିତ କରାଇଛି । ଉଭୟଙ୍କ ଆଦର୍ଶ, କାର୍ଯ୍ୟଧାରା ଓ ଜୀବନଦର୍ଶନ ଭିତରେ କିଛି ମୌଳିକ ପାର୍ଥକ୍ୟ ଥିଲେ ମଧ୍ୟ ଉଭୟ ଦୁଇଟି ପୃଥକ୍ ଦେଶରେ ରାଷ୍ଟ୍ର ନିର୍ମାଣ କ୍ଷେତ୍ରରେ ଯେଉଁ ଐତିହାସିକ ଭୂମିକା ନିର୍ବାହ କରିଛନ୍ତି ତାହା ବିଭିନ୍ନ ଦେଶର ବିପ୍ଳବୀମାନଙ୍କୁ ନାନା ଭାବରେ ଅଭିନିବେଶ ଯୋଗାଇଛି । ସେମାନେ ନିଜ ନିଜ ଦେଶର ଇତିହାସର ମୋଡ ବଦଳାଇବା ସହ ଚିନ୍ତାରାଜ୍ୟରେ କିଛି ଆଲୋଡନ ଆଣି ପାରିଛନ୍ତି । ଗାନ୍ଧୀ ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ଜରିଆରେ ବିଶ୍ୱରେ ସାମ୍ରାଜ୍ୟବାଦକୁ ଆହ୍ୱାନ ଦେଇଛନ୍ତି । ସାମ୍ରାଜ୍ୟବାଦ କବଳରୁ ମୁକ୍ତି ପାଇଁ ସାରା ବିଶ୍ୱରେ ଜନଜାଗରଣ ପାଇଁ ଗାନ୍ଧୀ ପଥପ୍ରଦର୍ଶକ ହୋଇଛନ୍ତି । ମାଓ ଗଣସଂଗ୍ରାମ ଜରିଆରେ ପୁଞ୍ଜିବାଦ ଓ ସାମନ୍ତବାଦକୁ ଆହ୍ୱାନ ଦେଇଛନ୍ତି । ଏକ ସମତାଭିତ୍ତିକ, ଶୋଷଣମୁକ୍ତ ରାଷ୍ଟ୍ର ନିର୍ମାଣ କ୍ଷେତ୍ରରେ ସେ ଅନେକଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛନ୍ତି ।

ଗାନ୍ଧୀ ଓ ମାଓଙ୍କ ରାଜନୈତିକ କାର୍ଯ୍ୟସୂଚୀ ତଥା ସଫଳତାର ମୂଲ୍ୟାୟନ କଲାବେଳେ ଗାନ୍ଧୀ ଆଦର୍ଶବାଦୀ ମନେ ହୁଅନ୍ତି ଅଥଚ ମାଓ ବାସ୍ତବବାଦୀ ମନେ ହୁଅନ୍ତି । ଏହାର ତାତ୍ପର୍ଯ୍ୟ ନୁହେଁ ଯେ ଗାନ୍ଧୀ ବାସ୍ତବତାଠାରୁ ସମ୍ପୂର୍ଣ୍ଣ ଦୂରେଇ ଯାଇଛନ୍ତି ବା ବାସ୍ତବତାକୁ ଗୁରୁତ୍ୱ ଦେଇନାହାନ୍ତି । ସେହିପରି ଏହା କହିବା ମଧ୍ୟ ଠିକ୍ ନୁହେଁ ଯେ ମାଓଙ୍କ ବାସ୍ତବବାଦୀ କାର୍ଯ୍ୟସୂଚୀ ଭିତରେ ଆଦର୍ଶବାଦ ନାହିଁ ବା ସେ କୌଣସି ଆଦର୍ଶକୁ ଗୁରୁତ୍ୱ ଦେଇନାହାନ୍ତି । ଉଭୟ ସେମାନଙ୍କ ମାନଦଣ୍ଡରେ ସ୍ୱ ସ୍ୱ ପନ୍ଥା ଓ ଆଦର୍ଶ ଜନରାଜ୍ୟର

ପରିକଳ୍ପନା କରିଛନ୍ତି । ଗାନ୍ଧୀଙ୍କ ଆଦର୍ଶ ଜନରାଜ୍ୟ ହେଉଛି ଏକ ବିକେନ୍ଦ୍ରିଭୂତ, ସ୍ୱାବଲମ୍ବୀ, କୁଟୀରଶିଳ୍ପ ଭିତ୍ତିକ 'ଗ୍ରାମ ସ୍ୱରାଜ' । ଅହିଂସା, ବ୍ୟକ୍ତି ସ୍ୱାଧୀନତା ଓ ସମତା ହିଁ 'ଗ୍ରାମ ସ୍ୱରାଜ' ର ଆଦର୍ଶ ଓ ଲକ୍ଷ୍ୟ । ମାଓ ସେହିପରି ଏକ ଶୋଷଣମୁକ୍ତ, ସମତା ଭିତ୍ତିକ ଓ ମାନବିକ ଉତ୍କର୍ଷ ଆଧାରିତ 'କମ୍ୟୁନ'ର ପରିକଳ୍ପନା କରିଛନ୍ତି । ଉଭୟ ସାମାଜିକ ନ୍ୟାୟକୁ ପ୍ରାଧାନ୍ୟ ଦେଇ ରାଷ୍ଟ୍ରର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନ ପ୍ରବାହରେ ପରିବର୍ତ୍ତନ ପାଇଁ ଗମ୍ଭୀର ସମ୍ପୃକ୍ତି ପ୍ରକାଶ କରିଛନ୍ତି । ତେବେ ଗାନ୍ଧୀ ରାଜନୀତିରେ ଥାଇ ବି କୌଣସି କ୍ଷମତାର ଅଧିକାରୀ ହୋଇନାହାନ୍ତି ଓ ପ୍ରାୟତଃ ଏକ ସନ୍ଥ ଭଳି ଜୀବନ ନିର୍ବାହ କରିବାକୁ ଚାହିଁଛନ୍ତି । ମାଓ କିନ୍ତୁ ରାଜନୀତିରେ ସମ୍ପୃକ୍ତ ରହି ରାଷ୍ଟ୍ରର କ୍ଷମତାକୁ ନିୟନ୍ତ୍ରଣ କରିଛନ୍ତି । ତେବେ ଚୀନରେ କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠା ପରେ ମାଓ କ୍ଷମତାର କେନ୍ଦ୍ରବିନ୍ଦୁରେ ରହି ସୁଦ୍ଧା ଏକ ସାଧାରଣ ମଣିଷ ଭଳି ସରଳ ଜୀବନକୁ ଆଦରି ନେଇଛନ୍ତି । ସୁତରାଂ ଗାନ୍ଧୀ ଓ ମାଓ ଉଭୟ ନିଜ ନିଜ ଦେଶର ସାମାଜିକ ବାସ୍ତବତା ପ୍ରତି ସମ୍ପୃକ୍ତି ବ୍ୟକ୍ତ କରିବା ସହ ବ୍ୟକ୍ତିଗତ ଜୀବନରେ ସରଳତାକୁ ଆଦରି ନେଇଛନ୍ତି ଓ କେତେକ ଆଦର୍ଶକୁ ଶ୍ରେୟ ଭାବେ ଗ୍ରହଣ କରିଛନ୍ତି । ତେବେ ଉଭୟଙ୍କ ମଧ୍ୟରେ ଏକ ତୁଳନାତ୍ମକ ବିଶ୍ଳେଷଣ କଲାବେଳେ ଗାନ୍ଧୀ ମାଓଙ୍କ ଅପେକ୍ଷା ଅଧିକ ଆଦର୍ଶବାଦୀ ମନେ ହୁଅନ୍ତି ଓ ମାଓ ଗାନ୍ଧୀଙ୍କ ଅପେକ୍ଷା ଅଧିକ ବାସ୍ତବବାଦୀ ମନେ ହୁଅନ୍ତି ।

ଜଣେ ରାଷ୍ଟ୍ରନୀତିଜ୍ଞଙ୍କ ବିଚାର ଓ ଅବଦାନର ମୂଲ୍ୟାୟନ କଲାବେଳେ କେତେକ ପ୍ରଶ୍ନ ସ୍ୱତଃ ଆସିଥାଏ । ପ୍ରଥମତଃ ସେ ଯେଉଁ କାଳଖଣ୍ଡରେ ରହିଥିଲେ, ସେହି ସମୟରେ କ'ଣ ତାଙ୍କ ପାଇଁ ସବୁଠାରୁ ବଡ଼ ଆହ୍ୱାନ ଥିଲା ବା ଅନ୍ୟ ଭାବରେ କହିଲେ କେଉଁ ସମସ୍ୟାକୁ ସେ ଅଧିକ ପ୍ରାଧାନ୍ୟ ଦେଇ ତାହାର ନିରାକରଣ ପାଇଁ ନିଜର ଗମ୍ଭୀର ସମ୍ପୃକ୍ତି ବ୍ୟକ୍ତି କରିଥିଲେ । ଦ୍ୱିତୀୟରେ ସାମାଜିକ ପରିବର୍ତ୍ତନ ବା ରାଷ୍ଟ୍ରୀୟ ଲକ୍ଷ୍ୟ ପାଇଁ କେଉଁ ଆଦର୍ଶକୁ ଗୁରୁତ୍ୱ ଦେଉଥିଲେ । ଅର୍ଥାତ୍ ସମାଜ, ରାଷ୍ଟ୍ରର ପୁନଃ ନିର୍ମାଣ କ୍ଷେତ୍ରରେ କେଉଁ ଲକ୍ଷ୍ୟ ଦିଗରେ ପରିଚାଳିତ ହେବାକୁ ସେ ପ୍ରାଧାନ୍ୟ ଦେଉଥିଲେ । ତୃତୀୟରେ କେଉଁ ପନ୍ଥା ଦ୍ୱାରା ସେହି ଲକ୍ଷ୍ୟ ସମ୍ଭବ ବୋଲି ସେ ଭାବୁଥିଲେ କିମ୍ବା କେଉଁ ପନ୍ଥା ବା ସାଧନଦ୍ୱାରା ନିଜର ଆଦର୍ଶ ରୂପାୟିତ ହେବାକୁ ସେ ପରିକଳ୍ପନା କରୁଥିଲେ । ଚତୁର୍ଥରେ ନିଜ ସମସାମୟିକ ସମାଜର ଆଦର୍ଶ, ସଂସ୍କୃତି, ମୂଲ୍ୟବୋଧର କ'ଣ ପ୍ରଭାବ ତାଙ୍କ ଉପରେ ରହିଥିଲା ବା ସେଥିର କେଉଁ ଭାବଧାରା ତାଙ୍କ ଆଦର୍ଶକୁ ପ୍ରେରଣା ଦେଇଥିଲା । ଏହି ପ୍ରସଙ୍ଗ ଗୁଡିକ ପରସ୍ପର ସହ ସଂଯୋଜିତ ଓ ବହୁ ଆନୁଷଙ୍ଗିକ ପ୍ରଶ୍ନ ସହ ମଧ୍ୟ ସଂଶ୍ଲିଷ୍ଟ ।

ଏହି ପ୍ରଶ୍ନ ଗୁଡିକ ଆଲୋଚନା କଲାବେଳେ ଏହା ଅବଶ୍ୟମ୍ଭାବୀ ମନେହୁଏ ଯେ ଗାନ୍ଧୀ ଓ ମାଓ ନିଜ ନିଜ ଦେଶର ରାଜନୈତିକ ବ୍ୟବସ୍ଥାରେ ଆମୂଳ ପରିବର୍ତ୍ତନ ପାଇଁ ନିଜର ଗମ୍ଭୀର ସମ୍ପୃକ୍ତି ବ୍ୟକ୍ତ କରିଥିଲେ । ସେମାନଙ୍କର ବିଚାର ଥିଲା ଯେ ଦେଶରେ ଥିବା ଦାରିଦ୍ର୍ୟ, ଶୋଷଣ, ବୈଷମ୍ୟ, ନିରକ୍ଷରତା ଇତ୍ୟାଦି ସମସ୍ୟାର ମୂଳକାରଣ ହେଉଛି ରାଜନୈତିକ ବ୍ୟବସ୍ଥା । ସୁତରାଂ ଗାନ୍ଧୀ ଭାରତରୁ ବ୍ରିଟିଶ ସାମ୍ରାଜ୍ୟବାଦକୁ ଓ ମାଓ ଚୀନରୁ ଏକଛତ୍ରବାଦୀ ଚିଆଙ୍ଗ-କାଇ ସେକ୍ ସରକାରକୁ ହଟାଇବାକୁ ପ୍ରାଧାନ୍ୟ ଦେଇଥିଲେ । ଉଭୟ ସ୍ୱ ସ୍ୱ ଧାରାରେ ସାମାଜିକ ନ୍ୟାୟ ଆଧାରରେ ଏକ ଏକ ଆଦର୍ଶ ରାଷ୍ଟ୍ରର ପରିକଳ୍ପନା କରିଥିଲେ । ଗାନ୍ଧୀ ଅହିଂସ ବିରୋଧ ବା ସତ୍ୟାଗ୍ରହକୁ ସାମାଜିକ ପରିବର୍ତ୍ତନର ଆଧାର ଭାବେ ନେଇଥିଲେ । ପରିଣାମତଃ ଅହିଂସା ଓ ସତ୍ୟାଗ୍ରହ ଗାନ୍ଧୀଙ୍କ ରାଜନୈତିକ ସାଧନର ମୌଳିକ ଆଦର୍ଶ ଭାବେ ବିକଶିତ ହୋଇଥିଲା । ମାଓ ଚୀନରେ ସାଧାରାଣ ଜନଗଣଙ୍କୁ ସଙ୍ଗଠିତ କରାଇ ଆବଶ୍ୟକବେଳେ ସଂଘର୍ଷ ବାହିନୀ ଦ୍ୱାରା ବ୍ୟବସ୍ଥାକୁ ପରିବର୍ତ୍ତନ ପାଇଁ ଆହ୍ୱାନ ଦେଇଥିଲେ । ଫଳରେ ଗାଆଁଠାରୁ ସହର ପର୍ଯ୍ୟନ୍ତ ସାଧାରଣ ଜନଗଣଙ୍କ ଭିତରେ ସଚେତନତା ସୃଷ୍ଟିକରି ସଂଘର୍ଷବାହିନୀ ପ୍ରତିଷ୍ଠା କରି ରାଜନୈତିକ କ୍ଷମତା ହାସଲ କରିବାକୁ ପ୍ରୟାସ କରିଥିଲେ । ସେହିଭଳି ନିଜ ଦେଶର ସାଂସ୍କୃତିକ ମୂଲ୍ୟବୋଧ ଓ ଆଦର୍ଶର ପ୍ରଭାବ ଉଭୟଙ୍କ ବିଚାର ଓ ଆଭିମୁଖ୍ୟକୁ ଗଭୀର ପ୍ରଭାବିତ କରିଥିଲା ।

ଏହି ପୃଷ୍ଠଭୂମିରେ ଗାନ୍ଧୀ ଓ ମାଓଙ୍କ ଭିତରେ କେତେକ ମୌଳିକ ପାର୍ଥକ୍ୟର ସାମାନ୍ୟ ସୂଚନା ଦିଆଯାଇପାରେ । ପ୍ରତ୍ୟେକଟି ରାଜନୈତିକ ବା ସାମାଜିକ ସମସ୍ୟାକୁ ଗାନ୍ଧୀ ଏକ ନୈତିକ ସମସ୍ୟା ଭାବେ ଗ୍ରହଣ କରୁଥିଲେ । ସୁତରାଂ ସେ ଭାବୁଥିଲେ ଯେ ପ୍ରତିପକ୍ଷର ଦୃଷ୍ଟିଭଙ୍ଗୀରେ ଏକ ନୈତିକ ପରିବର୍ତ୍ତନ ଆଣିପାରିଲେ ସମସ୍ୟାଟିର ସମାଧାନ ହୋଇଯିବ । ଏହି ପରିପ୍ରେକ୍ଷୀରେ ସେ ସତ୍ୟାଗ୍ରହ ପନ୍ଥାର ପ୍ରବର୍ତ୍ତନ କରିଥିଲେ ଓ ଏହାର ବିଭିନ୍ନ ଦିଗର ବିଚାର ଆଣିଥିଲେ । ଯେକୌଣସି ଲକ୍ଷ୍ୟ ହାସଲ କ୍ଷେତ୍ରରେ ଏହା ସବୁଠାରୁ ବଡ଼ ଆୟୁଧ ବୋଲି ସେ ଭାବିଥିଲେ । ସତ୍ୟାଗ୍ରହକୁ ସେ ମୁଖ୍ୟତଃ ଏକ ନୈତିକ ପନ୍ଥା ଭାବେ ନେଉଥିଲେ ଓ ଏହାର ପ୍ରୟୋଗ ଦ୍ୱାରା ସବୁ ସମସ୍ୟାର ସମାଧାନ ବାହାରି ପାରିବ ବୋଲି ଏକ ସହଜ ବିଶ୍ୱାସ ପୋଷଣ କରୁଥିଲେ । ଅପର ପକ୍ଷରେ ମାଓ ସାମାଜିକ ସମସ୍ୟାର ଜଟିଳତାକୁ ଅନୁଭବ କରିଥିଲେ ଓ ଏହା ସମାଜର ଅର୍ଥନୀତି ସହିତ ସମ୍ପୃକ୍ତ ବୋଲି ଧାରଣା ଆଣିଥିଲେ । ସମାଜର ଆର୍ଥିକ ଢାଞ୍ଚାରେ ପରିବର୍ତ୍ତନକୁ ଗୁରୁତ୍ୱ ଦେଇ ସମାଜର ରାଜନୈତିକ, ସାଂସ୍କୃତିକ ସମସ୍ୟାର ପରିବର୍ତ୍ତନ ପାଇଁ ବାସ୍ତବବାଦୀ କାର୍ଯ୍ୟସୂଚୀ

ଉପରେ ପ୍ରାଧାନ୍ୟ ଦେଉଥିଲେ । ଏକ ବ୍ୟବସ୍ଥାର ପରିବର୍ତ୍ତନ ନ ହେଲେ ସମାଜରେ ସମତା, ନ୍ୟାୟ, ସ୍ଥିରତା ଆସିବା ସମ୍ଭବ ନୁହେଁ ବୋଲି ଅନୁଭବ କରିଥିଲେ । ମୋଟ ଉପରେ କହିଲେ ଏକ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ବାସ୍ତବବାଦୀ ପଦକ୍ଷେପ ନେବାକୁ ମାଓ ଗରୁତ୍ୱ ଦେଇ ଆସିଥିଲେ ।

ଗାନ୍ଧୀ ଓ ମାଓଙ୍କ ବିକାଶର ଭାବନା କ୍ଷେତ୍ରରେ ବି ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ଦୃଷ୍ଟିଗୋଚର ହୋଇଥାଏ । ଗାନ୍ଧୀ ବିକାଶକୁ ବ୍ୟକ୍ତିର ନିମ୍ନତମ ଆବଶ୍ୟକତା ଭିତରେ ସୀମିତ ରଖିଥିଲେ ଓ ଏହାକୁ ଏକ ନିରନ୍ତର ପ୍ରକ୍ରିୟା ଭାବେ ଗ୍ରହଣ କରୁଥିଲେ । ଫଳତଃ ସେ ଆଧୁନିକ ପ୍ରଯୁକ୍ତି, ଭାରିଶିଳ୍ପର ବିରୋଧୀ ଥିଲେ । ଶିଳ୍ପ ବିପ୍ଳବରୁ ଯେଉଁ ସାମ୍ରାଜ୍ୟବାଦ, ଆର୍ଥିକ ଶୋଷଣ ଓ ପୁଞ୍ଜିବାଦୀ ବୈଷମ୍ୟ ଆସିଛି ତାହାକୁ ସେ ବିରୋଧ କରିବାକୁ ଯାଇ ଶିଳ୍ପ ବିକାଶ ଓ ନୂତନ ପ୍ରଯୁକ୍ତିକୁ ବିରୋଧ କରୁଥିଲେ । ଶରୀର ଶ୍ରମ, କୁଟୀର ଶିଳ୍ପ ଓ ସର୍ବନିମ୍ନ ଆବଶ୍ୟକତା ଭିତରେ ଜୀବନ ନିର୍ବାହ ତାଙ୍କ ବିକାଶର ଲକ୍ଷ୍ୟ ହୋଇ ରହିଥିଲା । ଅପର ପକ୍ଷରେ ମାଓ ଦେଶର ଦାରିଦ୍ର୍ୟ ଦୂରୀକରଣ ପାଇଁ ଶିଳ୍ପର ବିକାଶ, କୃଷିର ଉନ୍ନତି ସାଧନ, ନୂତନ ପ୍ରଯୁକ୍ତି ଓ ଆଧୁନିକ ଗବେଷଣା ଉପରେ ଗରୁତ୍ୱ ଦେଇଥିଲେ । ତେବେ ପୁଞ୍ଜିବାଦୀ ଶୋଷଣ ଓ ବୈଷମ୍ୟକୁ ଦୂରକରିବା ପାଇଁ ସେ ଉତ୍ପାଦନର ସାଧନ ଓ ଶିଳ୍ପକୁ ରାଷ୍ଟ୍ରାୟତ କରିବା ସହ ଚାଷକୁ କମ୍ୟୁନ ଜରିଆରେ ସମାଜୀକରଣ କରିବାକୁ ପ୍ରୟାସ କରିଥିଲେ । ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି, ଭାରି ଶିଳ୍ପ, ଅତ୍ୟାଧୁନିକ ଗବେଷଣାର ମାଓ ବିରୋଧୀ ନଥିଲେ ବରଂ ଏସବୁ ଯେ ବିକାଶର ଆଧାର ହୋଇପାରିବ ଏହା ଭାବିଥିଲେ । ତେବେ ପୁଞ୍ଜିବାଦୀ ବ୍ୟବସ୍ଥାର ପରିବର୍ତ୍ତନ ଦ୍ୱାରା ଏହାର ସୁଫଳ ସମାଜର ସାଧାରଣ ବ୍ୟକ୍ତି ପାଖକୁ ବି ପ୍ରସାରିତ ହୋଇପାରିବ ବୋଲି ବିଶ୍ୱାସ କରୁଥିଲେ ।

ଭାରତୀୟ ଧର୍ମ, ସଂସ୍କୃତି ଓ ପ୍ରଚଳିତ ପରମ୍ପରାର ଗଭୀର ପ୍ରଭାବ ଗାନ୍ଧୀଙ୍କ ଉପରେ ପଡିଥିଲା ଓ ସେ ଈଶ୍ୱର, ପାରଲୌକିକ ସତ୍ତା, ଧର୍ମରେ ଗଭୀର ଆସ୍ଥା ସ୍ଥାପନ କରିଥିଲେ । ତେବେ ଗାନ୍ଧୀଙ୍କ ବିଚାରଧାରାରେ ଜୀବନର ବାସ୍ତବ ଅନୁଭବକୁ ନେଇ ପରିବର୍ତ୍ତନ ହେଉଥିଲା ଓ ତାଙ୍କର ସାମଗ୍ରିକ ଚିନ୍ତନ କ୍ଷେତ୍ରରେ ଏକ ସଙ୍ଗତି ଦେଖିବାକୁ ମିଳେ ନାହିଁ । ଏକଦା ସେ ଜାତିପ୍ରଥାରେ ବିଶ୍ୱାସ କରୁଥିଲେ, ଏହାର ମନ୍ଦ ଦିଗ ଜାଣିବା ପରେ ସେ ବର୍ଣ୍ଣବ୍ୟବସ୍ଥାକୁ ସମର୍ଥନ କଲେ ଓ ୧୯୨୭ ରେ ଆମ୍ବେଦକରଙ୍କ ମହାଡ଼ ସମ୍ମିଳନୀର ଘଟଣାର ପ୍ରଭାବରୁ ୧୯୩୩ ରେ ଅସ୍ପୃଶ୍ୟତା ବିରୁଦ୍ଧରେ ସ୍ୱର ଉଠାଇଲେ । ସବୁ କିଛି ଈଶ୍ୱରଙ୍କ ଇଚ୍ଛାରେ ହୁଏ କହୁଥିବା ଗାନ୍ଧୀ ପରେ ସତ୍ୟ ହିଁ ଈଶ୍ୱର କହିଲେ ଓ ନିରୀଶ୍ୱରବାଦୀ ଗୋରାଙ୍କ ସମ୍ପର୍କରେ ଆସି 'ମୁଁ ଜଣେ ପରମ ନାସ୍ତିକ' ବୋଲି ବି କହିଛନ୍ତି ।

ସେହିପରି ଗାନ୍ଧୀ ରାମରାଜ୍ୟର କଥା କହୁଥିଲେ । ରାମଙ୍କ ଚରିତ୍ରରେ ଯାହା ଭଲ ଗୁଣ ଥିଲେ ବି ରାମ ରାଜତନ୍ତ୍ରର ପ୍ରତୀକ ଥିଲେ, ଗାନ୍ଧୀ ରାଷ୍ଟ୍ରରେ ରାଜତନ୍ତ୍ର ଚାହାନ୍ତି କି ବୋଲି କେତେକ ସମାଲୋଚକ ବ୍ୟକ୍ତ କରିଥାନ୍ତି । ଗାନ୍ଧୀଙ୍କ ସତ୍ୟନିଷ୍ଠା, ମାନବିକତା, ଉଦାରତା ଓ ଧର୍ମନିରପେକ୍ଷତା ସନ୍ଦେହର ଊର୍ଦ୍ଧ୍ୱରେ ଥିଲେ ବି ତାଙ୍କର କେତେକ ବକ୍ତବ୍ୟ ତାଙ୍କ ବୌଦ୍ଧିକ ଅସ୍ପଷ୍ଟତାର ସୂଚନା ଦିଏ । "ବ୍ରିଟିଶରମାନେ ଭଗବାନଙ୍କ ହାତରେ ଭାରତକୁ ଛାଡିଦେଇ ଏଠାରୁ ଚାଲିଯାନ୍ତୁ", 'ଅସ୍ପୃଶ୍ୟତା ଯୋଗୁଁ ବିହାର ଭୂକମ୍ପ ହେଉଛି ଭାରତକୁ ଈଶ୍ୱରୀୟ ଦଣ୍ଡ' ଇତ୍ୟାଦି ବକ୍ତବ୍ୟରୁ ଏହାର ସୂଚନା ମିଳେ । ମାଓ କୌଣସି ଅତୀନ୍ଦ୍ରିୟ ଶକ୍ତି, ଭାଗ୍ୟ, ପୂର୍ବନିର୍ଦ୍ଧିଷ୍ଟବାଦରେ ବିଶ୍ୱାସୀ ନଥିଲେ । ମଣିଷର ପ୍ରୟାସଦ୍ୱାରା ସମାଜ, ବ୍ୟବସ୍ଥା, ରାଷ୍ଟ୍ର, ଜୀବନର ମାନ ଉନ୍ନତ ହୋଇପାରିବ ବୋଲି ମାଓ ସର୍ବଦା ବିଶ୍ୱାସ କରୁଥିଲେ । ଏକ ମାନବକୈନ୍ଦ୍ରିକ ଓ ଇହଲୌକିକ ଜୀବନଦର୍ଶନରେ ମାଓ ବିଶ୍ୱାସୀ ଥିଲେ । ସମାଜରେ ଥିବା ଅନ୍ୟାୟ, ଶୋଷଣ, ବୈଷମ୍ୟ ମଣିଷର ଉଦ୍ୟମରେ ବଦଳି ପାରିବ । ଯେଉଁ ଦେଶରେ ଦାରିଦ୍ର୍ୟ ରହିଛି ତାହା ଈଶ୍ୱରଙ୍କ ଅଭିଶାପରୁ ହୋଇନାହିଁ ବା ଯେଉଁଠି ସମୃଦ୍ଧି ରହିଛି ତାହା ପାଣ୍ଟାତରେ ଈଶ୍ୱରଙ୍କ ଆଶୀର୍ବାଦ ନାହିଁ । ମଣିଷର ପ୍ରୟାସ ଓ ଏକ ଉନ୍ନତ ବ୍ୟବସ୍ଥା ଦ୍ୱାରା ସମାଜର ସମୃଦ୍ଧି ଓ ଜୀବନର ମାନ ଉନ୍ନତ ହୋଇପାରିବ ବୋଲି ମାଓ ବିଶ୍ୱାସ କରୁଥିଲେ । ଗାନ୍ଧୀଙ୍କ ଜୀବନ ଦର୍ଶନକୁ ଗୀତା, ରାମାୟଣ, ଧର୍ମ ପ୍ରଭାବିତ କରିଥିବା ବେଳେ ମାଓଙ୍କ ଜୀବନଦର୍ଶନକୁ କନଫୁସିଅସଙ୍କ ମାନବବାଦ ଓ କାର୍ଲମାର୍କସଙ୍କ ସମାଜ ଦର୍ଶନ ପ୍ରଭାବିତ କରିଥିବା ମନେହୁଏ ।

ବସ୍ତୁତଃ ଗାନ୍ଧୀ ଓ ମାଓଙ୍କ ଭିତରେ କେତେକ ସାମଞ୍ଜସ୍ୟ ରହିଛି, ପାର୍ଥକ୍ୟ ବି ରହିଛି । ସାମଞ୍ଜସ୍ୟ ଭିତରେ ଉଭୟ ସାମ୍ରାଜ୍ୟବାଦ, ପୁଞ୍ଜିବାଦ ଓ ବୈଷମ୍ୟର ବିରୋଧୀ । ଉଭୟ ଏକ ଶୋଷଣମୁକ୍ତ ଓ ନ୍ୟାୟଯୁକ୍ତ ସମାଜର ପରିକଳ୍ପନା କରିଛନ୍ତି । ତେବେ ଉଭୟଙ୍କ ଲକ୍ଷ୍ୟ ଭିତରେ ସାମଞ୍ଜସ୍ୟ ଥିଲେ ବି ସେମାନଙ୍କ ପନ୍ଥା, ବିକାଶର ଭାବନା ଓ ଜୀବନ-ଦର୍ଶନ ଭିତରେ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ରହିଛି । ଏହି ପାର୍ଥକ୍ୟର ମୁଖ୍ୟ କାରଣ ହେଉଛି ଯେ ଉଭୟ ଦୁଇଟି ପୃଥକ୍ ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ପରିସ୍ଥିତିରେ କାର୍ଯ୍ୟ କରିଛନ୍ତି ।

(୭.୮.୨୦୧୨)



# ଜ୍ଞାନ ତପସ୍ୱୀଙ୍କ ସ୍ମୃତିରେ

ସ୍ୱାଧୀନତା ସଂଗ୍ରାମୀ, ଗାନ୍ଧୀବାଦୀ ଓ ଜ୍ଞାନମଣ୍ଡଳ ପ୍ରଣେତା ପଦ୍ମଶ୍ରୀ ବିନୋଦ କାନୁନଗୋଙ୍କର ଜନ୍ମଶତବାର୍ଷିକୀ ଚଳିତ ବର୍ଷ ପାଳିତ ହେଉଛି । (ତାଙ୍କର ଜନ୍ମ- ୬.୬.୧୯୧୨, ଦେହାନ୍ତ- ୨୨.୬.୧୯୯୦) ଓଡିଶାର ସାଧାରଣ ଜୀବନକୁ ତଥା ଓଡିଆ ଭାଷାକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ତାଙ୍କର କୌଣସି ଔପଚାରିକ ଶିକ୍ଷା ନଥିଲା । ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାକୁ ସେ ଦଶମ ଶ୍ରେଣୀରୁ ପାଠ ଛାଡିଥିଲେ । ତେବେ ପରବର୍ତ୍ତୀ ଜୀବନରେ ଗଭୀର ଅଧ୍ୟୟନ ଓ ବର୍ଷ ବର୍ଷର ପ୍ରୟାସ ଫଳରେ ତାଙ୍କ ଜୀବନ ହୋଇ ଉଠିଥିଲା ଏକ ବିଶ୍ୱବିଦ୍ୟାଳୟ । ବିନୋଦ ବାବୁଙ୍କର ଜୀବନର ଘଟଣାବଳୀକୁ ଅନୁଧ୍ୟାନ କଲେ ତାହାକୁ ମୁଖ୍ୟତଃ ତିନୋଟି ଶ୍ରେଣୀରେ ପର୍ଯ୍ୟାୟଭୁକ୍ତ କରିହୁଏ । ପ୍ରଥମରେ ସ୍ୱାଧୀନତା ଆନ୍ଦୋଳନରେ ତାଙ୍କର ଯୋଗଦାନ ଓ ଗାନ୍ଧୀଙ୍କ ଆଦର୍ଶରେ ଜୀବନକୁ ଉତ୍ସର୍ଗ କରିବାର ସଂକଳ୍ପ, ଦ୍ୱିତୀୟରେ ସ୍ୱାଧୀନତା ପରେ ନିଜ ଗ୍ରାମରେ ରଚନାତ୍ମକ କାର୍ଯ୍ୟକ୍ରମ ଜରିଆରେ ଗ୍ରାମସ୍ୱରାଜର ବାସ୍ତବ ରୂପାୟନ ପାଇଁ ଏକ ସାଧାରଣ ଜୀବନ ଓ ତୃତୀୟରେ ଓଡିଆ ଭାଷାକୁ ଜ୍ଞାନବିଜ୍ଞାନର ଭାଷା ଭାବେ ସମୃଦ୍ଧ କରିବା ପାଇଁ ଜ୍ଞାନମଣ୍ଡଳ ରଚନା କରିବାକୁ ସାହିତ୍ୟ ସାଧନାରେ ଜୀବନବ୍ୟାପୀ ସାଧନା । ଏହି ପ୍ରତ୍ୟେକଟି କ୍ଷେତ୍ରରେ ସେ ଯେଉଁ ତ୍ୟାଗ, ନିଷ୍ଠା ଓ ସାଧନାର ପରାକାଷ୍ଠା ଦେଖାଇଛନ୍ତି ତାହା ଯଥାର୍ଥରେ ଉଲ୍ଲେଖନୀୟ ।

ବିଦୋଦବାବୁଙ୍କର ଜୀବନ ଥିଲା ଯେପରି ଘଟଣା ବହୁଳ, ସେପରି କିଛିଟା ରୋମାଞ୍ଚକର । କଟକରେ ତାଙ୍କ ମାମୁଁ ପ୍ର. ଆର୍ତ୍ତବଲ୍ଲଭ ମହାନ୍ତି ଯେ ରେଭେନ୍ସା କଲେଜରେ ଅଧ୍ୟାପକ ଥିଲେ ତାଙ୍କ ସରକାରୀ ବାସଭବନରେ ରହି ସେ ଷଷ୍ଠ ଶ୍ରେଣୀରୁ କଟକରେ ପାଠପଢ଼ା ଆରମ୍ଭ କରିଥିଲେ । ତେବେ ୧୯୩୦ ଜାନୁୟାରୀ ୨୬ ଦିନ ଗାନ୍ଧୀଙ୍କ ଆହ୍ୱାନରେ ଦେଶର ବିଭିନ୍ନ ସ୍ଥାନରେ ଲୋକମାନେ ସ୍ୱାଧୀନତା ଘୋଷଣା ପାଇଁ ଶପଥ

ପାଠ କରିଥିଲେ । ସ୍ୱାଧୀନତା ପାଇଁ ଅହିଂସ ଉପାୟରେ ଲଢ଼େଇକରି ଯେକୌଣସି ତ୍ୟାଗ ସହିବାକୁ ଲୋକମାନେ ଶପଥ ନେଇଥିଲେ । କଟକରେ ବିଭିନ୍ନ ସଭା ସମିତିରେ ଯୋଗଦେଇ ବିନୋଦ ବାବୁ ନାନା ମାନସିକ ଦ୍ୱନ୍ଦ୍ୱ ଭିତରେ ନିଷ୍ପତ୍ତି କଲେ ଯେ ସେ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହେବେ । ସେହି ସମୟ ହେଉଛି ଲବଣ ସତ୍ୟାଗ୍ରହର ସମୟ । ଦେଶର ସ୍ୱାଧୀନତା ପାଇଁ ଏକ ଅପୂର୍ବ ଜାଗରଣ ସୃଷ୍ଟି ହୋଇଥାଏ । ଅତ୍ୟନ୍ତ ମେଧାବୀ, ସପ୍ତମରେ ବୃତ୍ତି ପାଇଥିବା ବିନୋଦ ବାବୁ ଦୃଢ଼ ନିଷ୍ପତ୍ତି ନେଲେ ଯେ ପାଠ ଛାଡି ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେବେ । ରେଭେନ୍ସା କଲେଜ ପରିସରରେ ମାମୁଁଙ୍କ ଘରେ ସାତବର୍ଷ ଧରି ରହିଥିବା ବିନୋଦ ବାବୁ ପାଠର ମମତା ତୁଟାଇ ରାସ୍ତାକୁ ବାହାରି ଆସିଥିଲେ । ଏକ ନିରାପଦ ଭବିଷ୍ୟତର ସ୍ୱପ୍ନକୁ ପାଦରେ ଠେଲି ଅନିଶ୍ଚିତତା ଭିତରକୁ ପାଦ ବଢ଼ାଇଥିଲେ । ଏଥିପାଇଁ ମାମୁଁଙ୍କ ପାଖରୁ ବହୁ ଗାଳି ଶୁଣିଛନ୍ତି, ମାଡ ଖାଇଛନ୍ତି ତଥାପି ନିଜର ଦୃଢ଼ତାକୁ ଛାଡି ନାହାନ୍ତି ବା ମାମୁଁଙ୍କ ପାଖକୁ ଫେରିନାହାନ୍ତି ।

ସ୍ୱାଧୀନତା ଆନ୍ଦୋଳନରେ କିଶୋର ବୟସରୁ ଯୋଗଦେବା ଅବସରରେ ସେତେବେଳର ଓଡିଶାର ସମସ୍ତ ବିଶିଷ୍ଟ ସଂଗ୍ରାମୀମାନଙ୍କ ସହ ସେ ସଂପର୍କିତ ହୋଇ ଯାଇଛନ୍ତି । ଓଡିଶାର ବହୁ ସ୍ୱାଧୀନତା ସଂଗ୍ରାମୀ ବନ୍ଦୀ ହୋଇ ଜେଲ ଚାଲିଯିବା ପରେ କାଠଯୋଡି ନଦୀକୂଳରେ ସାଧାରଣ ଲୋକଙ୍କର ଯେଉଁ ସଭା ହୁଏ ସେଥିରେ ସେ ମୁଖ୍ୟ ଭୂମିକା ନେଇଛନ୍ତି । ନାନା ଦୁଃସାହସିକ କାର୍ଯ୍ୟରେ ହାତ ଦେଇଛନ୍ତି, ମଦଦୋକାନ ଆଗରେ ଧାରଣା ଦେଇଛନ୍ତି, ପୋଲିସଠାରୁ ମାଡ଼ ଖାଇଛନ୍ତି, ଜେଲ ଯାଇଛନ୍ତି, ନାନା ଆର୍ଥିକ ଚାପ ଭିତରେ ଜର୍ଜରିତ ହୋଇଛନ୍ତି । ନାନା ପ୍ରତିକୂଳ ସ୍ଥିତି ଭିତରେ ଦେଶର ସ୍ୱାଧୀନତା ଓ ଏକ ଉତ୍ତମ ସମାଜର ସ୍ୱପ୍ନ ଭିତରେ ବିଭୋର ହୋଇଛନ୍ତି ।

ଏହି ସମୟରେ ୧୯୩୪ ମସିହାରେ ଓଡିଶାରେ ଗାନ୍ଧିଜୀଙ୍କ ଅସ୍ପୃଶ୍ୟତା ବିରୋଧୀ ହରିଜନ ପଦଯାତ୍ରାରେ ବିନୋଦ ବାବୁ ଯୋଗଦେଇ ଏକ ଦାୟିତ୍ୱ ତୁଲାଇଛନ୍ତି । ଗାନ୍ଧୀଙ୍କର ପ୍ରତ୍ୟେକ ସ୍ଥାନର ସଭା, ବକ୍ତୃତା ଓ ଆଲୋଚନା ବିଷୟରେ ସମସ୍ତ ବିବରଣୀ ଲେଖିବା ପାଇଁ ସମାଜ ତରଫରୁ ରାଧାନାଥ ରଥ ତାଙ୍କୁ ଦାୟିତ୍ୱ ଦେଇଛନ୍ତି । ଗାନ୍ଧୀଙ୍କ ସହ ଏକାଠି ରହି ସେ ଗାନ୍ଧୀଙ୍କୁ ଅତି ଗଭୀର ଭାବରେ ବୁଝିବାକୁ ପ୍ରୟାସ କରିଛନ୍ତି ଓ ଗାନ୍ଧୀଙ୍କର ପ୍ରତ୍ୟେକ ଦିନର କାର୍ଯ୍ୟସୂଚୀ, ଅଭିଭାଷଣ ଓ କର୍ମୀଙ୍କ ସହ ଆଲୋଚନାର ବିବରଣୀକୁ ଲିପିବଦ୍ଧ କରିଛନ୍ତି । ତାଙ୍କର ଏହି ବିବରଣୀକୁ ଆଧାର କରି "ବାପୁଜୀଙ୍କର ଉତ୍କଳରେ ପଦଯାତ୍ରା" ପୁସ୍ତକଟିଏ ସମାଜଦ୍ୱାରା ସ୍ୱାଧୀନତା ପରେ ପ୍ରକାଶିତ ହୋଇଛି । ଏହି ସମୟରେ ଗାନ୍ଧୀଙ୍କ ଆହ୍ୱାନରେ ଗାଁ ମାନଙ୍କରେ ରଚନାତ୍ମକ କାର୍ଯ୍ୟକ୍ରମ ପାଇଁ ଯେଉଁ ପରିବେଶ ସୃଷ୍ଟି

ହୋଇଛି ସେଥିରେ ବିନୋଦ ବାବୁ ଗୋପବନ୍ଧୁ ଚୌଧୁରୀ ଓ ରମା ଦେବୀଙ୍କ ସହ ସାମିଲ ହୋଇ ବରୀରେ ଅବସ୍ଥାନ କରିଛନ୍ତି । ଗାଁର ଜନଗଣଙ୍କ ଭିତରେ ସ୍ୱାଧୀନତା ଆନ୍ଦୋଳନ ପାଇଁ ସଚେତନତା ସୃଷ୍ଟି କରିବା ସହ ସେମାନେ କିପରି ସ୍ୱାବଲମ୍ବୀ ହୋଇ ପାରିବେ ସେଥିପାଇଁ ହୋଇଥିବା ପ୍ରୟାସରେ ସାମିଲ ହୋଇଛନ୍ତି । ଖଦୀ ଓ କୁଟୀର ଶିଳ୍ପର ପ୍ରସାର, ନିଶା ନିବାରଣ, ଅସ୍ପୃଶ୍ୟତା ଦୂରୀକରଣ, ମହିଳା ସଶକ୍ତିକରଣ, ନିରକ୍ଷରତା ବିଲୋପ ଇତ୍ୟାଦି ରଚନାତ୍ମକ କାର୍ଯ୍ୟକ୍ରମରେ ରମାଦେବୀ ଓ ଗୋପବାବୁଙ୍କ ସହ ଏକାଠି ପାଞ୍ଚବର୍ଷ କାମ କରିଛନ୍ତି । ଏହାପରେ ହରିଜନ ସେବକ ସଂଘର ଦାୟିତ୍ୱ ଆଚାର୍ଯ୍ୟ ହରିହର ନେବାପରେ ତାଙ୍କ ସହ ବିଭିନ୍ନ ଅଞ୍ଚଳକୁ ଯାଇ ଅସ୍ପୃଶ୍ୟତା ନିରାକରଣ ପାଇଁ ପ୍ରୟାସ କରିଛନ୍ତି । ବରୀରେ ଅବସ୍ଥାନ ସମୟରେ ସେ ଏକ ଦଳିତ ବସ୍ତିରେ ଯାଇ ରହିଛନ୍ତି ଓ ଏକ ଦଳିତ ପରିବାରର ସଭ୍ୟ ହୋଇ ଯାଇଛନ୍ତି । ଜାତିଆଣ ଉଚ୍ଚନୀଚ ଭେଦଭାବକୁ ଦୂର କରି ସମସ୍ତଙ୍କ ଭିତରେ ଆତ୍ମମର୍ଯ୍ୟାଦା ଭାବ ଆଣିବା ପାଇଁ ପ୍ରୟାସୀ ହୋଇଛନ୍ତି ।

ବିଭିନ୍ନ ସମୟରେ ଗିରଫ ହୋଇ ବିନୋଦବାବୁ ଯେଉଁ ବନ୍ଦୀ ଜୀବନ ଅତିବାହିତ କରିଛନ୍ତି, ତାହା ତାଙ୍କ ପାଇଁ ଅଧ୍ୟୟନର ଅପୂର୍ବ ସୁଯୋଗ ଆଣିଛି । ବିଶେଷକରି ବିହାରର ପାଟଣା କ୍ୟାଂପ ଜେଲ ଓ ବ୍ରହ୍ମପୁର ଜେଲରେ ଯେଉଁ ବର୍ଷ ଗୁଡିକ ସେ ଅତିବାହିତ କରିଛନ୍ତି ସେଠାରେ ଦେଶର ବହୁ ସ୍ୱାଧୀନତା ସଂଗ୍ରାମୀ ଓ ଚିନ୍ତାଶୀଳ ପ୍ରବୀଣ ବ୍ୟକ୍ତିଙ୍କ ସଂପର୍କରେ ଆସିବାର ଅବକାଶ ପାଇଛନ୍ତି । ବନ୍ଦୀ ସାଥିମାନଙ୍କ ସହିତ ନାନା ବିଷୟରେ ଆଲୋଚନା, ସ୍ୱାଧ୍ୟାୟ ଓ ଗଭୀର ଚିନ୍ତନ ଭିତରେ ତାଙ୍କର ବୌଦ୍ଧିକ ଦିଗ୍‌ବଳୟ ପ୍ରସାରିତ ହୋଇଯାଇଛି । ଜଣେ ରାଜନୈତିକ ବନ୍ଦୀ ହୋଇଥିବାରୁ ଜେଲ ଜୀବନ ଭିତରେ ବହୁ ସମୟ ବିଭିନ୍ନ ବିଷୟ ପଢ଼ିବାର ଅବକାଶ ତାଙ୍କ ପାଇଁ ଏହି ସୁଯୋଗ ସୃଷ୍ଟି କରିଛି । ଜେଲ ଜୀବନକୁ ସେ ରୂପାନ୍ତରିତ କରିଛନ୍ତି ଏକ ବିଶ୍ୱବିଦ୍ୟାଳୟରେ ।

୧୯୪୪ ରେ ଜେଲରୁ ଖଲାସ ହେବା ପରେ ସସ୍ତ୍ରୀକ ଆସି ୧୯୫୩ ଶେଷ ପର୍ଯ୍ୟନ୍ତ ନିଜ ଗ୍ରାମ ମଲ୍ଲିପୁରରେ ରହିଛନ୍ତି । ପତ୍ନୀ ଶଶୀବାଳା ଦେବୀ ତାଙ୍କରି ପଦାଙ୍କ ଅନୁସରଣ କରି ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଛନ୍ତି, ବରୀ ଆଶ୍ରମରେ ରମାଦେବୀଙ୍କ ପାଖରେ ରହିଛନ୍ତି, ବନ୍ଦୀ ଜୀବନ ବି ଅତିବାହିତ କରିଛନ୍ତି । ୧୯୪୪ ଠାରୁ ସସ୍ତ୍ରୀକ ଗ୍ରାମରେ ରହି ଏକ ସରଳ, ଶ୍ରମଭିତ୍ତିକ ଜୀବନ ବିତାଇଛନ୍ତି ଓ ଅନ୍ୟମାନଙ୍କ ପାଇଁ ଆଦର୍ଶ ହୋଇଛନ୍ତି । ଗାନ୍ଧୀଙ୍କ ଜନ ଆନ୍ଦୋଳନ ସମାଜର ସାଧାରଣ ଅପାଠୁଆ ମଣିଷଙ୍କ ଭିତରେ ଯେଉଁ ଦେଶପ୍ରୀତି ସୃଷ୍ଟି କରିଥିଲା ସେହି ମଣିଷମାନେ ବିନୋଦ ବାବୁଙ୍କର ପ୍ରିୟ ହୋଇ ଉଠିଛନ୍ତି । ନିଜ ଗାଆଁର ଦଳିତ ବସ୍ତିର ଅପର୍ତ୍ତି ଯେ ଅନ୍ୟ ଘରେ ମୂଲ ଲାଗନ୍ତି, ନିଷ୍ଠାର

ସହ କାମ କରନ୍ତି, ନାନା ଅଭାବ ଭିତରେ ନିର୍ଲୋଭ ଚରିତ୍ର ଓ ସାଧୁତାର ପରିଚୟ ଦିଅନ୍ତି ସେହିମାନଙ୍କ ପ୍ରତି ବିନୋଦବାବୁ ତାଙ୍କ ଆତ୍ମଜୀବନୀ 'ଋଣ ପରିଶୋଧ' ବହିରେ କୃତଜ୍ଞତା ଜଣାଇଛନ୍ତି । ସ୍ୱାଧୀନ ଭାରତରେ ଯେତେବେଳେ ରାଜନୈତିକ ବ୍ୟକ୍ତିମାନଙ୍କର ଦୁର୍ନୀତି, ନିର୍ବାଚନରେ ଅସାଧୁ ଉପାୟ ଦେଖନ୍ତି ସେତେବେଳେ ସେ ଭାବନ୍ତି ଯେ ଆମ ଭିତରୁ ଗାନ୍ଧୀ ମରିଗଲେ, ଅଥଚ ଗାନ୍ଧୀ ସେହି ଅପର୍ଜିମାନଙ୍କ ଭିତରେ ହିଁ ବଞ୍ଚିରହିଛନ୍ତି ।

୧୯୪୪ ରୁ ୧୯୫୩ ନିଜ ଗାଁରେ ରହିବା ଭିତରେ ବିନୋଦବାବୁ ଆଉ ଏକ ଗରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଲେ । ସ୍ୱାଧୀନତା ଆନ୍ଦୋଳନରେ ସଂପୃକ୍ତ ହେବା ବେଳେ ସମତା ଭିତ୍ତିକ ସମାଜ ଗଠନର ଯେଉଁ ସ୍ୱପ୍ନ ରହିଥିଲା ସେହି ସ୍ୱପ୍ନକୁ ଏକ କ୍ଷୁଦ୍ର ଗ୍ରାମୀଣ ପରିସରରେ ସଫଳ କରିବା ସମ୍ଭବ ନୁହେଁ ବୋଲି ଅନୁଭବ ଆସିଲା । ଭାବିଲେ ଜନଗଣଙ୍କର ମାନସିକତାରେ ପରିବର୍ତ୍ତନ ଓ ଶିକ୍ଷାର ପ୍ରସାର ପାଇଁ ବହି ଲେଖିବେ । ସ୍ଥିର କଲେ କଟକ ଆସି ଲୋକଶିକ୍ଷା ପାଇଁ ସାହିତ୍ୟ ସୃଷ୍ଟି କରିବେ, ଓଡିଆ ଭାଷାରେ ବହି ଲେଖି ବିଜ୍ଞାନକୁ ଜନପ୍ରିୟ କରାଇବେ ଓ ବିଶ୍ୱ ଜ୍ଞାନକୋଷ (ଏନସାଇକ୍ଲୋପେଡିଆ) ଲେଖିବାକୁ ପ୍ରଯତ୍ନ କରିବେ । ଏକଦା ଦଶମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହୋଇ ପାଠ ଛାଡି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଜୀବନର ୨୪ ବର୍ଷ କଟାଇବା ପରେ ପୁଣି ଥରେ ଗାଁ ଛାଡି ଆଉ ଏକ ଦୁଃସାହସିକ କାର୍ଯ୍ୟରେ ହାତ ଦେବାକୁ ସ୍ଥିର କଲେ । ୧୯୫୪ ଆରମ୍ଭରୁ ଆରମ୍ଭ କଲେ ସାହିତ୍ୟ-ସାଧନାର ଜୀବନ ।

୧୯୫୪ ଆରମ୍ଭରେ କଟକରେ ଭଡାଘରେ ରହି ପ୍ରଥମେ ଏଥିପାଇଁ ଅଧ୍ୟୟନ ଆରମ୍ଭ କଲେ । ସେତେବେଳେ ରେଭେନ୍ସା କଲେଜର କନିକା ଲାଇବ୍ରେରୀ ଥିଲା ଓଡିଶାର ସବୁଠାରୁ ବଡ ପାଠାଗାର । କନିକା ଲାଇବ୍ରେରୀ ରେଫରେନ୍ସ ବିଭାଗରେ ଘଣ୍ଟା ଘଣ୍ଟା ଧ୍ୟାନରତ ଭାବେ ବସି ବିଭିନ୍ନ ଏନସାଇକ୍ଲୋପିଡିଆ (ଜ୍ଞାନକୋଷ) ଯଥା ବ୍ରିଟାନିକା, ରିଲିଜିୟନ ଏଣ୍ଡ ଏଥିକିସ୍, ସୋସିଆଲ ସାଇନସ, ସାଇନ୍ସ, ଆମେରିକାନା ଜ୍ଞାନକୋଷର ଭଲୁମ୍ ଗୁଡିକ ମନଯୋଗ ଦେଇ ପଢ଼ି ସେ ସବୁକୁ ଖାତରେ ନୋଟ୍ କଲେ । ଏହା ସହିତ ୧୪ ଖଣ୍ଡରେ ସଂପାଦିତ ଅକ୍ସଫୋର୍ଡ ଶବ୍ଦକୋଷକୁ ମଧ୍ୟ ଅନୁଶୀଳନ କଲେ । ତାଙ୍କ ନିଜସ୍ୱ ଭାଷାରେ ସେ ବର୍ଷ ପରେ ବର୍ଷ ଦିନକୁ ପନ୍ଦର ଷୋହଳ ଘଣ୍ଟା କରି ପଢ଼ି ଜ୍ଞାନମଣ୍ଡଳ ପ୍ରସ୍ତୁତି ପାଇଁ ନିଜର ବୌଦ୍ଧିକ ଭିତ୍ତିକୁ ସୁଦୃଢ଼ କରିଚାଲିଲେ । ଏହା ସହିତ ବିଭିନ୍ନ ପତ୍ର ପତ୍ରିକା, ସମ୍ବାଦପତ୍ରରୁ ବିଭିନ୍ନ ତଥ୍ୟ ସଂଗ୍ରହ କରି କେତେ ହଜାର ଫାଇଲରେ ବିଭିନ୍ନ ଲେଖାକୁ ସ୍ଥାନିତ କରି ରଖିଥିଲେ । ଲକ୍ଷ୍ୟ ରଖିଲେ ଜ୍ଞାନର ସମସ୍ତ ବିଭାଗକୁ ନେଇ ୬୦ ଖଣ୍ଡରେ ଜ୍ଞାନ ମଣ୍ଡଳ ଓ ସାଧାରଣ ପାଠକ ପାଇଁ ବିଭିନ୍ନ ପ୍ରସଙ୍ଗ ଉପରେ ୫୦୦ ଖଣ୍ଡ ବହି ଲେଖିବେ ।

ଗଭୀର ଅଧ୍ୟୟନ ଓ ବର୍ଷ ବର୍ଷର ଏକନିଷ୍ଠ ସାଧନା ଭିତରେ ଯେକୌଣସି ପ୍ରସଙ୍ଗ ଉପରେ ଦିନକୁ ଚାଳିଶ ପଚାଶ ପୃଷ୍ଠା ଲେଖିବାର ସାମର୍ଥ୍ୟ ତାଙ୍କର ଆସି ଯାଇଥିଲା । ଯେକୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ଉପରେ ପଚାଶ ଷାଠିଏ ପୃଷ୍ଠାର ଏକ ଜୀବନୀ ସେ ଦିନେ ଦୁଇଦିନ ଭିତରେ ଲେଖିଦେଇ ପାରୁଥିଲେ । ଏହି କ୍ରମରେ ସେ ଗାନ୍ଧୀ, ଗୋପବନ୍ଧୁ, ରମାଦେବୀ, ଆଚାର୍ଯ୍ୟ ହରିହରଙ୍କ ପରି ବହୁ ମହାନ ବ୍ୟକ୍ତିଙ୍କର ଜୀବନୀ ଓଡିଆରେ ଲେଖି ଯାଇଛନ୍ତି । ବିଜ୍ଞାନର ବିଭିନ୍ନ ବୈଷୟିକ ବିଷୟକୁ ସେ ଏତେ ସରଳ, ସାବଲୀଳ ଭାଷାରେ ଲେଖି ପାରୁଥିଲେ ଯାହା ଅକ୍ଷର ଶିଖିଥିବା ଲୋକର ବି ବୋଧଗମ୍ୟ ହୋଇପାରିବ । ଏହାଛଡା ଜଟିଳ ବିଷୟକୁ ବୁଝାଇବା ପାଇଁ ସେ ଏପରି ମନଛୁଆଁ ନାମ ଦେଉଥିଲେ ଯାହା ଯେକୌଣସି ପାଠକର ମନକୁ ସ୍ପର୍ଶ କରିବ । ଏଠାରେ କେତୋଟି ଉଦାହରଣ ଦିଆଯାଇପାରେ । ସୂର୍ଯ୍ୟ ଉପରେ ବହିର ନାମ 'ସେ ଚୁଲି କେବେ ଲିଭିବ ନାହିଁ', ମହୁଚାଷ ବିଷୟକ ବହିର ନାମ 'ମିଠାଇ ଦେହରେ ଲାଗିଲା ଡେଣା', ଅଣୁ ପରମାଣୁକୁ ବୁଝାଇବା ପାଇଁ ବହିର ନାମ 'ତିନିଖଣ୍ଡ କାଉଁରୀ ହାଡ', ଶରୀରରେ ରକ୍ତ ସଞ୍ଚାଳନ ବିଷୟକୁ ବୁଝାଇବା ପାଇଁ ବହିର ନାମ 'ଚଳନ୍ତା ରାଇଜର ଅମୃହାଁ ନଈ', ମଣିଷର ଦାନ୍ତ ବିଷୟକୁ ବୁଝାଇବା ପାଇଁ ବହିର ନାମ 'ଶରୀର ଦୁର୍ଗର ବତିଶ ପ୍ରହରୀ' ଇତ୍ୟାଦି ଉଲ୍ଲେଖନୀୟ । ଲକ୍ଷ୍ୟ ଥିଲା କିଶୋର ମାନଙ୍କ ପାଇଁ ଏକ ଶିଶୁ ଜ୍ଞାନମଣ୍ଡଳ ସେଟ୍ ବି ପ୍ରସ୍ତୁତ କରିବେ ।

ଏକ ଭାଷାରେ ଏକକ ଉଦ୍ୟମରେ ଜ୍ଞାନମଣ୍ଡଳ ଲେଖିବା ବିଶ୍ୱ ଇତିହାସରେ ଅଚିନ୍ତନୀୟ ଘଟଣା । ତଥାପି ସେ ଏହି ଅସାଧ୍ୟ କାର୍ଯ୍ୟରେ ବ୍ରତୀ ହୋଇଥିଲେ । ଏତଦ୍‌ବ୍ୟତୀତ ନିଜସ୍ୱ ଉଦ୍ୟମରେ ଜ୍ଞାନମଣ୍ଡଳ ଛାପିବା ଓ ପୁସ୍ତକ ବିକ୍ରି କରିବାରେ ସେ ଯେଉଁ ଆର୍ଥିକ ଦୁର୍ଗତିର ସମ୍ମୁଖୀନ ହୋଇଛନ୍ତି ତାହା ମଧ୍ୟ ଅବର୍ଣ୍ଣନୀୟ । ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ପ୍ରଥମ ଖଣ୍ଡ ଡିସେମ୍ବର ୨, ୧୯୬୦ ଦିନ ଡ. ହରେକୃଷ୍ଣ ମହତାବଙ୍କ ଦ୍ୱାରା ଉନ୍ମୋଚିତ ହେଲା, ସେଦିନ ବହୁ ବିଶିଷ୍ଟ ବ୍ୟକ୍ତି ସେହି ସଭାରେ ଯୋଗଦେଇ ବିନୋଦ ବାବୁଙ୍କର ସୃଜନଶୀଳ ସାଧନାରେ ସ୍ତମ୍ଭୀଭୂତ ହୋଇଥିଲେ । ଜ୍ଞାନମଣ୍ଡଳ ୬୦ ଖଣ୍ଡରେ ସମାପ୍ତ କରିବାର ଲକ୍ଷ୍ୟ ରଖିଥିଲେ ବି ସେ ୪୦ ଖଣ୍ଡ ଜୀବନକାଳ ଭିତରେ ଲେଖିବାକୁ ସମର୍ଥ ହୋଇଛନ୍ତି । ସେହିପରି ପିଲାଙ୍କ ପାଇଁ ୩୬୫ ଖଣ୍ଡରୁ ପ୍ରାୟ ୧୦୦ ଖଣ୍ଡ ଲେଖି ପାରିଛନ୍ତି । ତେବେ ଅବଶିଷ୍ଟ ପୁସ୍ତକ ପାଇଁ ସେ ଆବଶ୍ୟକୀୟ ବିବରଣୀ/ ଉପାଦାନ ହଜାର ହଜାର ଫାଇଲରେ ସଂଗ୍ରହକରି ଛାଡି ଯାଇଛନ୍ତି ।

ସେ ଥିଲେ ଜ୍ଞାନ-ତପସ୍ୱୀ । ଏବର୍ଷ ତାଙ୍କ ଜନ୍ମଶତବାର୍ଷିକୀ ଉପଲକ୍ଷେ ଓଡ଼ିଆ ଜାତିର ତାଙ୍କ ପ୍ରତି ବିନମ୍ର ଶ୍ରଦ୍ଧାଂଜଳି ।

(୨୯.୬.୨୦୧୨)



# ଦୁଇ ନୋବେଲ ବିଜେତାଙ୍କ କାହାଣୀ

ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇଥିବା ମାନବ ସମାଜର ଦୁଇ ଶୁଭ ଚିନ୍ତକ ହେଲେ ଲିନସ କାର୍ଲ ପାଉଲିଙ୍ଗ୍ (୧୯୦୧-୧୯୯୪) ଓ ମାର୍ଟିନ ଲୁଥର କିଙ୍ଗ୍ ଜୁନିଅର(୧୯୨୯-୧୯୬୮) । ଉଭୟ ଥିଲେ ଆମେରିକୀୟ ନାଗରିକ । ଲିନସ ପାଉଲିଙ୍ଗ୍ ୧୯୬୨ରେ ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇଥିବା ବେଳେ ମାର୍ଟିନ ଲୁଥର କିଙ୍ଗ୍ ଜୁନିଅର ୧୯୬୪ରେ ନୋବେଲ ପୁରସ୍କାରରେ ସମ୍ମାନିତ ହୋଇଥିଲେ । ଲିନସ୍ ପାଉଲିଙ୍ଗ୍ ଥିଲେ ରସାୟନ ବିଜ୍ଞାନୀ ଓ ଏକ ଶାନ୍ତିପୂର୍ଣ୍ଣ ଯୁଦ୍ଧମୁକ୍ତ ବିଶ୍ୱର ପ୍ରବକ୍ତା । ପୃଥିବୀକୁ ଅଣୁଅସ୍ତ୍ର ମୁକ୍ତ କରିବା ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ବହୁ ପ୍ରୟାସ କରିଥିଲେ । ମାର୍ଟିନ ଲୁଥର କିଙ୍ଗ୍ ଜୁନିଅର ମାନବିକ ଅଧିକାର, ସାମାଜିକ ନ୍ୟାୟ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ପାଇଁ ସଂଗ୍ରାମ କରିଥିଲେ । "ପ୍ରତ୍ୟେକ ବ୍ୟକ୍ତି ସମ୍ମାନର ସହ ବଞ୍ଚିବା ତାର ଏକ ମୌଳିକ ଅଧିକାର" ଏହି ମୂଲ୍ୟବୋଧର ସେ ଥିଲେ ବଡ଼ ପ୍ରବକ୍ତା । ପାଉଲିଙ୍ଗ୍ ଥିଲେ ହେତୁବାଦୀ, ମାନବବାଦୀ କିନ୍ତୁ ଲୁଥର କିଙ୍ଗ୍ ଥିଲେ ଈଶ୍ୱରବିଶ୍ୱାସୀ ଓ ମାନବବାଦୀ । ତେବେ ଉଭୟ ମାନବ ସମାଜର ଶାନ୍ତିକାମୀ ଶୁଭଚିନ୍ତକ ଭାବେ ଇତିହାସରେ ନିଜ ନିଜର ସ୍ୱାକ୍ଷର ରଖିଯାଇଛନ୍ତି ।

ଲିନସ ପାଉଲିଙ୍ଗ୍ ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇବା ପୂର୍ବରୁ ରସାୟନ ବିଜ୍ଞାନରେ ମଧ୍ୟ ନୋବେଲ ପୁରସ୍କାର ୧୯୫୪ ମସିହାରେ ପାଇଥିଲେ । ଦୁଇଥର ସ୍ୱାଧୀନ ଭାବେ ନୋବେଲ ପୁରସ୍କାର ପାଇବାରେ ସେ ହେଉଛନ୍ତି ଅଦ୍ୱିତୀୟ । କୁହାଯାଏ ଯେ ବିଂଶ ଶତାବ୍ଦୀର ଯଦି ଦୁଇଜଣ ବୈଜ୍ଞାନିକଙ୍କୁ ନିଆଯିବ ଯେଉଁମାନେ ବିଜ୍ଞାନ ଜଗତରେ ମୌଳିକ ତତ୍ତ୍ୱ ଦେଇ ଯୁଗ ପ୍ରବର୍ତ୍ତକ ହୋଇଛନ୍ତି, ତେବେ ସେ ଭିତରୁ ଜଣେ ହେବେ ଆଇନ୍‌ଷ୍ଟାଇନ୍ ଓ ଆଉ ଜଣେ ହେବେ ଲିନସ ପାଉଲିଙ୍ଗ୍ । ବିଂଶ ଶତାବ୍ଦୀ ଆରମ୍ଭରେ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଯେଉଁ ନୂଆ ନୂଆ ଦିଗନ୍ତ ଉନ୍ମୋଚିତ ହେଲା

ସେଥିରେ କ୍ୱାଣ୍ଟମ ଯାନ୍ତ୍ରିକୀ ଏକ ନୂତନ ସିଦ୍ଧାନ୍ତର ଅବତାରଣା କଲା । ପଦାର୍ଥ ବିଜ୍ଞାନ କ୍ଷେତ୍ରରେ କ୍ୱାଣ୍ଟମ ତତ୍ତ୍ୱ ଥିଲା ଏକ ଯୁଗାନ୍ତକାରୀ ସିଦ୍ଧାନ୍ତ । ପରମାଣୁର ଗଠନ ପ୍ରକ୍ରିୟା ଓ ବିଶ୍ୱକୁ ବ୍ୟାଖ୍ୟା କରିବାରେ କ୍ୱାଣ୍ଟମ ତତ୍ତ୍ୱ ଯେଉଁ ସିଦ୍ଧାନ୍ତର ଅବତରଣା କରିଥିଲା ପାଉଲିଙ୍ଗ୍ ସେହି ସିଦ୍ଧାନ୍ତକୁ ରସାୟନ ବିଜ୍ଞାନ କ୍ଷେତ୍ରରେ ପ୍ରୟୋଗ କରି ଏ କ୍ଷେତ୍ରରେ ଏକ ନୂଆ ଦିଗନ୍ତ ସୃଷ୍ଟି କଲେ । ଜୈବିକ ଓ ଅଜୈବିକ ରସାୟନ ବିଜ୍ଞାନ କ୍ଷେତ୍ରରେ ସେ ଯେଉଁ ସବୁ ତତ୍ତ୍ୱର ଅବତାରଣା କଲେ ତାହା ଦ୍ୱାରା ଡିଏନଏର ଗଠନ, ପ୍ରୋଟିନର ବିଶ୍ଳେଷଣ ଯୋଗୁ ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ନାନା ନୂଆ ନୂଆ ଉଦ୍ଭାବନମାନ ସମ୍ଭବ ହେଲା । ବିଭିନ୍ନ ଆନୁବଂଶିକ ରୋଗର କାରଣ ଓ ନିରାକରଣ ଦିଗରେ ପାଉଲିଙ୍ଗ୍‌ଙ୍କ ଉଦ୍ଭାବନ ପଥ ପ୍ରଦର୍ଶକ ହୋଇଥିଲା । କ୍ୱାଣ୍ଟମ ରସାୟନ ବିଜ୍ଞାନ ଓ ମଲିକୁଲାର ଜୀବବିଜ୍ଞାନ କ୍ଷେତ୍ରରେ ଯୁଗ ପ୍ରବର୍ତ୍ତକ ଭାବେ ତାଙ୍କୁ ଗ୍ରହଣ କରାଯାଏ ।

ପାଉଲିଙ୍ଗ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ପର୍ଯ୍ୟନ୍ତ ରାଜନୀତିଠାରୁ ସମ୍ପୂର୍ଣ୍ଣ ଦୂରରେ ଥାଇ ତାଙ୍କର ଗବେଷଣା ଭିତରେ ଆବଦ୍ଧ ରହିଥିଲେ । ତେବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆମେରିକା ଜାପାନ ଉପରେ ଯେଉଁ ଅଣୁଅସ୍ତ୍ର ପ୍ରୟୋଗ କରି ତାହାର ଦୁଇଟି ସହରକୁ ଧ୍ୱଂସ କରିଦେଲା, ଏହାପରେ ବୈଜ୍ଞାନିକ ମାନଙ୍କ ମଧ୍ୟରେ 'ମଣିଷ ଜାତିର ଭବିଷ୍ୟତ' ନେଇ ଆଶଙ୍କା ସୃଷ୍ଟି ହେଲା । ଯଦି ପୃଥିବୀରେ ଏକ ତୃତୀୟ ବିଶ୍ୱଯୁଦ୍ଧ ହୁଏ ତେବେ ରାଷ୍ଟ୍ରମାନେ ଆଣବିକ ବୋମା ପ୍ରୟୋଗ କରିବେ ଓ ତାହାର ପରିଣତି ହେବ ପୃଥିବୀ ପୃଷ୍ଠରୁ ମାନବ ସଭ୍ୟତାର ବିଲୋପ । ଆଣବିକ ଅସ୍ତ୍ର ନିର୍ମାଣ ଓ ତାର ଭୟାବହତା ନେଇ ବୈଜ୍ଞାନିକମାନଙ୍କ ଭିତରେ ଯେଉଁ ଆଲୋଡ଼ନ ଆସିଲା, ସେଥିରେ ପାଉଲିଙ୍ଗ୍ ସମ୍ପୃକ୍ତ ହେଲେ । ଆଣବିକ ଅସ୍ତ୍ରନିର୍ମାଣ ବା ଯୁଦ୍ଧକ୍ଷେତ୍ରରେ ପ୍ରତିବନ୍ଧକ ଆଣିବା ପାଇଁ ଅଣୁ ବୈଜ୍ଞାନିକମାନେ ଆଇନ୍‌ଷ୍ଟାଇନ୍‌ଙ୍କ ନେତୃତ୍ୱରେ ଯେଉଁ ସମ୍ମିଳନୀ କଲେ, ସେଥିରେ ପାଉଲିଙ୍ଗ୍ ଏକ ମୁଖ୍ୟ ଭୂମିକା ନେଇଥିଲେ । ଆଣବିକ ବିକିରଣର ଭୟଙ୍କର କୁପ୍ରଭାବ ଥିବାରୁ ଆଣବିକ ପରୀକ୍ଷା ନ କରିବାକୁ ସାରା ପୃଥିବୀରେ ଜନଜାଗରଣ ସୃଷ୍ଟି ଦିଗରେ ବୈଜ୍ଞାନିକମାନେ ଯେଉଁ ସମ୍ମିଳିତ ହେଲେ, ସେଥିରେ ପାଉଲିଙ୍ଗ୍‌ଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲା । ଏକ ଶାନ୍ତିର ବାର୍ତ୍ତାବହ ଭାବେ ସେ ତାଙ୍କର ଉଦ୍ୟମ ଆରମ୍ଭ କରିଥିଲେ । ତାଙ୍କର ପ୍ରୟାସ ଯୋଗୁ ସାରା ପୃଥିବୀର ଏଗାର ହଜାର ବିଶିଷ୍ଟ ବୈଜ୍ଞାନିକ ବିଜ୍ଞାନକୁ ଶାନ୍ତିପୂର୍ଣ୍ଣ ଉପାୟରେ ବିନିଯୋଗ କରିବାକୁ ବିଶ୍ୱ ଜାତିସଙ୍ଘକୁ ଏକ ସ୍ମାରକପତ୍ର ଦେଲେ । ପରିଣାମ ସ୍ୱରୂପ ସେତେବେଳର ଦୁଇ ମହାଶକ୍ତି ଆମେରିକା ଓ ରୁଷ ମଧ୍ୟରେ ୧୯୬୩ ରେ ଏକ ଚୁକ୍ତି ସ୍ୱାକ୍ଷରିତ ହେଲା । ଦୁଇ ରାଷ୍ଟ୍ର ମୁଖ୍ୟ ଜେ. ଏଫ୍. କେନେଡି ଓ ନିକିତା କ୍ରୁଷ୍ଚେଭ

ଆଣବିକ ଅସ୍ତ୍ର ପରୀକ୍ଷା କ୍ଷେତ୍ରରେ କେତେକ କଟକଣା ଆଣିବାକୁ ଚୁକ୍ତିକଲେ । ବିଶ୍ୱର ବୈଜ୍ଞାନିକ, ମାନବବାଦୀ ଓ ଶାନ୍ତିକାମୀ ବୁଦ୍ଧିଜୀବୀ ମାନଙ୍କୁ ନେଇ ପାଉଲିଙ୍ଗ୍ 'ଇଣ୍ଟରନେସନାଲ୍ ଲିଗ୍ ଅଫ୍ ହ୍ୟୁମାନିଷ୍ଟ ସଙ୍ଗଠନ' ଆରମ୍ଭ କଲେ । ଏଥିପାଇଁ ସେ ବହୁ ଆନ୍ତର୍ଜାତିକ ସ୍ୱୀକୃତି ମଧ୍ୟ ଲାଭ କରିଛନ୍ତି । ୧୯୬୨ରେ ନୋବେଲ ଶାନ୍ତି ପୁରସ୍କାର ସହ ୧୯୭୦ ମସିହାରେ ବିଶ୍ୱଶାନ୍ତି ପାଇଁ ତାଙ୍କର ଅବଦାନ ଯୋଗୁଁ ଇଣ୍ଟରନେସନାଲ ଲେନିନ ଶାନ୍ତି ପୁରସ୍କାର ମଧ୍ୟ ପାଇଛନ୍ତି । ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ସେ ଜୀବନର ଶେଷ ପର୍ଯ୍ୟନ୍ତ ପ୍ରୟାସ କରିଛନ୍ତି । ବିଜ୍ଞାନ, ହେତୁବାଦ, ବିଶ୍ୱଭ୍ରାତୃତ୍ୱ, ଶାନ୍ତିପୂର୍ଣ୍ଣ ସହାବସ୍ଥାନ ତାଙ୍କ ଜୀବନଦର୍ଶନର ପ୍ରଧାନ ଆଧାର ହୋଇ ରହିଥିଲା । ମଣିଷର ବୁଦ୍ଧି, ଜ୍ଞାନ ଓ ବୈଜ୍ଞାନିକ ସିଦ୍ଧାନ୍ତକୁ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ଦିଗରେ ବିନିଯୋଗ କରିବାକୁ ସେ ତାଙ୍କର ନାନା ଲେଖାରେ ଓ ପୁସ୍ତକରେ ବ୍ୟକ୍ତ କରିଛନ୍ତି । ଶାନ୍ତି ଓ ବିଶ୍ୱ ଭ୍ରାତୃତ୍ୱ ପାଇଁ ନିଜକୁ ଉତ୍ସର୍ଗ କରିଥିବା ଏହି ହେତୁବାଦୀ ବୈଜ୍ଞାନିକଙ୍କର ପରିଣତ ବୟସରେ ୧୯.୮.୧୯୯୪ ରେ ଜୀବନର ଅବସାନ ଘଟିଥିଲା ।

ମାର୍ଟିନ ଲୁଥର କିଙ୍ଗ୍ ଜୁନିୟର ମାତ୍ର ୩୫ ବର୍ଷ ବୟସରେ ୧୯୬୪ରେ ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇଥିଲେ । ଲୁଥର କିଙ୍ଗ୍ ଥିଲେ ମହାତ୍ମା ଗାନ୍ଧୀଙ୍କର ଉଚ୍ଚ ପ୍ରଶଂସକ ଓ ଅହିଂସା, ସତ୍ୟାଗ୍ରହର ବି ପୂଜାରୀ । ଆମେରିକାରେ କଳା ଗୋରା ଜନିତ ଯେଉଁ ବର୍ଣ୍ଣ-ବୈଷମ୍ୟ ରହିଥିଲା, ତାହା ବିରୁଦ୍ଧରେ ସେ ନିଜର ସ୍ୱର ଉଠାଇ କଳା ନିଗ୍ରୋମାନଙ୍କର ମାନବିକ ଅଧିକାର, ମର୍ଯ୍ୟାଦାବୋଧ ଓ ଆତ୍ମସମ୍ମାନ ପାଇଁ ଅହିଂସ ସଂଗ୍ରାମ ଆରମ୍ଭ କରିଥିଲେ । ଆମେରିକା ଆବିଷ୍କୃତ ହେବାପରେ ୟୁରୋପର ଲୋକମାନେ ସାମ୍ରାଜ୍ୟବାଦୀ ଅଧିକାର ଫଳରେ ଆଫ୍ରିକାରୁ ଲକ୍ଷ ଲକ୍ଷ ନିଗ୍ରୋମାନଙ୍କୁ ଯୋର ଜବରଦସ୍ତ ଆଣି ଆମେରିକାରେ ନିଜର ଦାସ କରି ରଖୁଥିଲେ । କଳା ନିଗ୍ରୋମାନେ ଦାସତ୍ୱର ଶିକାର ହୋଇ ଅବମାନବୀୟ ସ୍ତରରେ ଜୀବନ ବଞ୍ଚୁଥିଲେ । ଆମେରିକାର ରାଷ୍ଟ୍ରପତି ଆବ୍ରାହମ ଲିଙ୍କନ(୧୮୦୯-୧୮୬୫) ଆମେରିକା ସମାଜରୁ ଦାସତ୍ୱ ପ୍ରଥାର ବିଲୋପ ପାଇଁ ଆଇନଗତ ବ୍ୟବସ୍ଥା କରିଥିଲେ ବି ସାମାଜିକ ସ୍ତରରେ ନିଗ୍ରୋମାନେ ଭେଦଭାବର ଶିକାର ହେଉଥିଲେ । ନିଗ୍ରୋମାନଙ୍କର ଅମର୍ଯ୍ୟାଦାପୂର୍ଣ୍ଣ ଜୀବନ ବିରୁଦ୍ଧରେ ଲୁଥର କିଙ୍ଗ୍ ତାଙ୍କର ସଂଗ୍ରାମ ଆରମ୍ଭ କରିଥିଲେ । ଆମେରିକାର ବିଭିନ୍ନ ସ୍ଥାନକୁ ଯାଇ ନିଗ୍ରୋମାନଙ୍କ ମଧ୍ୟରେ ମାନବିକ ଅଧିକାର ପାଇଁ ସଚେତନତା ସୃଷ୍ଟି କରିବାକୁ ପ୍ରୟାସ କରିଥିଲେ । ୧୯୬୩ ଏପ୍ରିଲ ୨୩ ଦିନ ୱାସିଙ୍ଗଟନ୍‌ଠାରେ ଲକ୍ଷାଧିକ ନିଗ୍ରୋମାନଙ୍କର ସମାବେଶରେ ସେ ଯେଉଁ ଭାଷଣ ଦେଇଥିଲେ ତାହା ଥିଲା ମର୍ମସ୍ପର୍ଶୀ ଓ ଅତ୍ୟନ୍ତ ଭାବଗର୍ଭକ । "ମୋର

ଏକ ସ୍ୱପ୍ନ ରହିଛି" (ଆଇ ହାଭ ଏ ଡ୍ରିମ) ଭାଷଣଟିରେ ସେ ନିଗ୍ରୋମାନଙ୍କର ଆତ୍ମସମ୍ମାନର ସହ ଜୀବନ ଓ ସାମାଜିକ ନ୍ୟାୟ ପାଇଁ ଯେଉଁ ହୃଦୟସ୍ପର୍ଶୀ ଭାଷାରେ ଲୋକମାନଙ୍କ ଭିତରେ ଜାଗରଣ ଆଣିଥିଲେ ତାହା ମାନବଜାତିର ଇତିହାସରେ ଏକ ଗୌରବାବହ ଘଟଣା । ଜାତି, ବର୍ଣ୍ଣକୁ ନେଇ ମଣିଷ ମଣିଷ ଭିତରେ ଉଚ୍ଚ-ନୀଚ ଭେଦଭାବର ମାନସିକତା ହେଉଛି ସଭ୍ୟ ମୂଲ୍ୟବୋଧର ପରିପନ୍ଥୀ । ବରଂ ମଣିଷକୁ ମଣିଷର ସମ୍ମାନ ଦେବା ଓ ଭ୍ରାତୃତ୍ୱର ହାତ ବଢ଼ାଇବା ହେଉଛି ସଭ୍ୟ ଦୃଷ୍ଟିଭଙ୍ଗୀ । ସାମାଜିକ ଅନ୍ୟାୟ ଓ ଭେଦଭାବ ଜନିତ ଅମାନବିକତା ବିରୁଦ୍ଧରେ ଅହିଂସ ଭାବେ ସଂଗ୍ରାମ କରି ଏ ସବୁକୁ ଦୂର କରିବାକୁ ସେ ଆହ୍ୱାନ ଦେଇଥିଲେ । କାହାପ୍ରତି ବିଦ୍ୱେଷ, ଘୃଣା, ହିଂସା ଆଚରଣ ନ କରି ବରଂ ଯେଉଁ ମାନସିକତା ଦ୍ୱାରା କିଛି ବ୍ୟକ୍ତି ଅନ୍ୟକୁ ନ୍ୟୂନ ଦୃଷ୍ଟିରେ ଦେଖନ୍ତି ସେହି ମାନସିକତାକୁ ଦୂର କରିବାକୁ ହେବ । ସେମାନଙ୍କ ଭିତରେ ନ୍ୟାୟବୋଧ ଓ ମାନବିକ ହୃଦୟ ସୃଷ୍ଟି କରିବାକୁ ସେମାନଙ୍କ ବିବେକକୁ ସ୍ପର୍ଶ କରିବାକୁ ପଡିବ । ନିଗ୍ରୋମାନେ ଶୃଙ୍ଖଳିତ ଭାବେ ଅହିଂସ ସଂଗ୍ରାମ କରି ନିଜର ଆତ୍ମସମ୍ମାନ ଆଣିବାକୁ ପ୍ରୟାସ କରିବା ଆବଶ୍ୟକ ବୋଲି ସେ ମାର୍ମିକ ଭାବରେ ନିବେଦନ କରିଥିଲେ । ତାଙ୍କ ସ୍ୱପ୍ନର ପୃଥିବୀ ହେଉଛି ଯେଉଁଦିନ ମଣିଷର ହୃଦୟରେ ଏହି ଭାବନା ସୃଷ୍ଟି ହେବ ଯେ ସବୁ ମଣିଷ ଈଶ୍ୱରଙ୍କ ସୃଷ୍ଟିରେ ସମାନ ଓ ମଣିଷର ରକ୍ତରେ କୌଣସି ଭେଦଭାବ ନାହିଁ । ଅତି ଭାବଗର୍ଭକ ଭାବରେ ନିଜ ଦେଶ ବିଷୟରେ ସେ ନିଜ ସ୍ୱପ୍ନ ବ୍ୟକ୍ତ କରିଛନ୍ତି- "ମୁଁ ସେହିଦିନକୁ ଅପେକ୍ଷା କରିଛି ଯେଉଁଦିନ କଳା ରଙ୍ଗର କୁନି ପୁଅଝିଅମାନେ ଗୋରା ରଙ୍ଗର କୁନି ପୁଅଝିଅଙ୍କ ସହିତ ହାତରେ ହାତ ମିଶାଇ ଏକାଠି ଖେଳିବେ ଓ ଭାଇ, ଭଉଣୀ ଭାବେ ପରସ୍ପରକୁ ନିବିଡ଼ ସ୍ନେହ, ମମତାରେ ଭଲ ପାଇବେ । ପ୍ରତ୍ୟେକ ପରିବାରରୁ, ଗାଆଁରୁ, ସହରରୁ ଏହି ବାର୍ତ୍ତା ପ୍ରଚାରିତ ହେବ ଯେ ଆମେ ସମସ୍ତେ ଈଶ୍ୱରଙ୍କ ସନ୍ତାନ, ଆମ ଭିତରେ କୌଣସି ଭେଦଭାବ ନାହିଁ ।

ସେହିପରି ୧୯୬୪ ମସିହା ଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇବା ଅବସରରେ ଡିସେମ୍ବର ୧୦,୧୯୬୪ ଦିନ ଓସଲୋଠାରେ ସେ ଯେଉଁ ଭାଷଣ ଦେଇଥିଲେ ତାହା ବି ଥିଲା ଅହିଂସା, ମାନବିକତା ଓ ବିଶ୍ୱଭ୍ରାତୃତ୍ୱ ପାଇଁ ଏକ ହୃଦୟଭରା ନିବେଦନ । ବିଶ୍ୱରୁ ବର୍ଣ୍ଣଗତ ବୈଷମ୍ୟ, ଶୋଷଣ ଓ ହିଂସାକୁ ଦୂର କରିବାକୁ ସେ ଅହିଂସାର ମାର୍ଗରେ ସଂଗ୍ରାମ କରିବାକୁ ଆହ୍ୱାନ ଦେଇଥିଲେ । ସଭ୍ୟତା ଓ ହିଂସା ପରସ୍ପରର ପରିପନ୍ଥୀ । ପୃଥିବୀରେ ଏକ ନୂତନ ସୂର୍ଯ୍ୟୋଦୟ ହେବ ଯେଉଁ ଦିନ ପୃଥିବୀର ଜନଗଣ ଶାନ୍ତି ଓ ଭ୍ରାତୃତ୍ୱର ସହ ବଞ୍ଚିବାକୁ ପନ୍ଥା ନିର୍ଦ୍ଧାରଣ କରିବେ ଓ ଧରାପୃଷ୍ଠରୁ ଯୁଦ୍ଧ, ବିଭୀଷିକା ଓ

ହିଂସାକୁ କବର ଦେବେ । ମଣିଷ ସମାଜରେ ହିଂସା, ଯୁଦ୍ଧ ଯେ ସବୁଦିନ ରହିବ ସେଥିରେ ବିଶ୍ୱାସ ନ କରି ସେ ବିଶ୍ୱାସ କରୁଥିଲେ ମଣିଷ ଭିତରେ ଯେଉଁ ବିବେକବୋଧ, ବିଚାରଶୀଳତା ଓ ମାନବିକ ହୃଦୟ ରହିଛି ତାହା ଶାନ୍ତି, ଭ୍ରାତୃତ୍ୱର ପରିବେଶ ସୃଷ୍ଟି କରିପାରିବ । ମଣିଷର ସୃଜନଶୀଳତା ସଭ୍ୟତାକୁ ଯେପରି ଆଗକୁ ନେଇଛି, ମଣିଷର ମାନବିକତା ସେହପରି ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ପରିବେଶ ଆଣିପାରିବ । ଅହିଂସା ଓ ମାନବିକତାର ପ୍ରବକ୍ତା ଲୁଥର କିଙ୍ଗ୍ ୧୯୬୮ ଏପ୍ରିଲ ୪ ରେ ଆତତାୟୀର ଗୁଳିରେ ମୃତ୍ୟୁ ବରଣ କରିଥିଲେ ।

ପାଉଲିଙ୍ଗ୍ ଓ ଲୁଥର କିଙ୍ଗ୍ ଦୁଇଜଣ ବିଶିଷ୍ଟ ମାନବବାଦୀ । ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ସେମାନେ ଯେଉଁ ଗଭୀର ହୃଦୟବତ୍ତା ବ୍ୟକ୍ତ କରିଛନ୍ତି, ତାହା ପ୍ରକୃତରେ ଏକ ସଭ୍ୟ ଜୀବନଦୃଷ୍ଟିର ପ୍ରତୀକ । ଜଣେ ବିଜ୍ଞାନକୁ ମଣିଷ ସମାଜର ବୃହତ୍ତର ହିତ ସାଧନ ଦିଗରେ ଓ ଅନ୍ୟ ଜଣେ ଏକ ଭେଦଭାବ ରହିତ ସମାଜ ଦିଗରେ ଗଭୀର ସମ୍ପୃକ୍ତି ବ୍ୟକ୍ତ କରିଛନ୍ତି । ସେମାନଙ୍କ ଭାବନା ଭିତରେ ରହିଛି ଏକ ଶାନ୍ତିପୂର୍ଣ୍ଣ ଓ ଭ୍ରାତୃତ୍ୱପୂର୍ଣ୍ଣ ବିଶ୍ୱର ଚିତ୍ର । ଉଭୟ ହେଉଛନ୍ତି ବିଶ୍ୱ ବିବେକ ଓ ମାନବିକତାର ପ୍ରତୀକ ।

(୨୯.୮.୨୦୧୨)



# ଜଣେ ଦାର୍ଶନିକଙ୍କ ସ୍ମୃତିରେ

ବିଂଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧର ବିଶିଷ୍ଟ ଦାର୍ଶନିକ ଓ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ହେତୁବାଦୀ-ମାନବବାଦୀ ବୁଦ୍ଧିଜୀବୀ ପଲ୍ କର୍ଜ (Paul Kurtz)ଙ୍କର ୨୦୧୨ ଅକ୍ଟୋବର ୨୦ ଦିନ ଦେହାନ୍ତ ହୋଇଯାଇଛି । ତାଙ୍କର ଜନ୍ମ ଆମେରିକାର ନିଉୟର୍କ ଠାରେ ୧୯୨୫ରେ ହୋଇଥିଲା । କଲେଜ ଛାତ୍ର ଥିବା ବେଳେ ୧୮ ବର୍ଷ ବୟସରେ ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଆମେରିକା ସୈନ୍ୟବାହିନୀରେ ଯୋଗ ଦେଇଥିଲେ । ଯୁଦ୍ଧର ଶେଷ ଭାଗରେ ସେ ଜର୍ମାନୀର କନସେଣ୍ଟ୍ରେସନ କ୍ୟାମ୍ପରୁ ଜୀଉମାନଙ୍କୁ ଉଦ୍ଧାର କରିବାରେ ଆମେରିକା ସୈନ୍ୟଦଳରେ ସମ୍ପୃକ୍ତ ଥିଲେ । ସେଠାରେ ଜୀଉମାନଙ୍କ ପ୍ରତି ହେଉଥିବା ଅମାନବିକ ନିର୍ଯ୍ୟାତନା ତାଙ୍କ ପ୍ରାଣକୁ ଗଭୀର ଭାବେ ଆନ୍ଦୋଳିତ କରିଥିଲା । ଯୁଦ୍ଧ ପରେ ଆମେରିକା ଫେରି ସେ ଦର୍ଶନ ବିଷୟ ଅଧ୍ୟୟନ କରି କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପିଏଚ.ଡି. ଡିଗ୍ରୀ ପାଇବା ପରେ ୧୯୫୨ ରୁ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ । କେତେକ କଲେଜରେ କାର୍ଯ୍ୟକରି ପରେ ଷ୍ଟେଟ ୟୁନିଭର୍ସିଟି ଅଫ ନିଉୟର୍କରେ ଅଧ୍ୟାପନା କରି ୧୯୯୧ ରେ ଅବସର ନେଇଥିଲେ । ପଚାଶ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ ଓ ପ୍ରାୟ ଆଠଶହ ପ୍ରବନ୍ଧ ଲେଖିଛନ୍ତି । ସମ୍ଭବତଃ ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧର ବିଶିଷ୍ଟ ଦାର୍ଶନିକ ବର୍ଟ୍ରାଣ୍ଡ ରସେଲଙ୍କ ପରେ ଆନ୍ତର୍ଜାତିକ ସ୍ତରରେ ଜଣେ ପ୍ରବୀଣ ମାନବବାଦୀ ଦାର୍ଶନିକ ଭାବେ ପଲ କର୍ଜ ନିଜର ସ୍ୱାକ୍ଷର ରଖିଯାଇଛନ୍ତି ।

ପଲ କର୍ଜଙ୍କ ଅଧ୍ୟାପନା ଜୀବନ ବ୍ୟତୀତ ସେ କେତେକ ଆନ୍ତର୍ଜାତିକ ସଙ୍ଗଠନ ସହ ସମ୍ପୃକ୍ତ ଥିଲେ । କମିଟି ଫର୍ ସାଇଣ୍ଟିଫିକ ଇନଭେଷ୍ଟିଗେସନ ଅଫ କ୍ଲେମସ ଅଫ ଦି ପାରାନର୍ମାଲ ସଙ୍ଗଠନର (CSI COP) ସେ ପ୍ରତିଷ୍ଠାତା ଚେୟାରମ୍ୟାନ ରହିଥିଲେ । ଏହି ସଂଗଠନ ତରଫରୁ କୌଣସି ଚମତ୍କାରିତା ପ୍ରଦର୍ଶନ ପାଇଁ ଆହ୍ୱାନ ଦିଆଯାଇଥିଲା । ଚମତ୍କାରିତା ଅନୁସନ୍ଧାନ କରି ଏହି ସଙ୍ଗଠନ ସେସବୁର ବୈଜ୍ଞାନିକ ବିଶ୍ଳେଷଣ କରିବା

ସୁବିଦିତ । ଏତଦ୍‌ବ୍ୟତୀତ ଇଣ୍ଟରନେସନାଲ୍ ଏକାଡେମୀ ଅଫ ହ୍ୟୁମାନିଜ୍‌ମ, ରେସନାଲିଷ୍ଟ ଇଣ୍ଟରନେସନାଲ ଓ ଆମେରିକାନ ହ୍ୟୁମାନିଷ୍ଟ ଆସୋସିଏସନ ପରି ସଙ୍ଗଠନ ମାନଙ୍କ ସହ ସେ ନିବିଡ ଭାବେ ସମ୍ପର୍କିତ ଥିଲେ । ଏହି ସଙ୍ଗଠନ ଗୁଡିକ ସାରା ବିଶ୍ୱରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଓ ହେତୁବାଦର ବିକାଶ କରିବାକୁ ଲକ୍ଷ୍ୟ ଭାବେ ନେଇ କାର୍ଯ୍ୟ କରୁଛନ୍ତି । କାଉନସିଲ ଫର ସେକୁଲାର ହ୍ୟୁମାନିଜିମ ସଙ୍ଗଠନ ତରଫରୁ ପ୍ରକାଶ ପାଉଥିବା ମୁଖପତ୍ର 'ଫ୍ରି ଏନକ୍ୱାରୀ' ର ସେ ଦୀର୍ଘ ଦିନ ଧରି ମୁଖ୍ୟ ସମ୍ପାଦକ ରହିଥିଲେ । ଏହା ସହିତ CSICOP ର ପତ୍ରିକା ସ୍କେପ୍ଟିକାଲ ଏନକ୍ୱାରିର ସମ୍ପାଦନା ମଣ୍ଡଳୀରେ ରହିଥିଲେ । ମାନବବାଦ ଓ ହେତୁବାଦର ବିଚାର ଉପରେ ଏହି ପତ୍ରିକା ଦୁଇଟି ଆନ୍ତର୍ଜାତିକ ସ୍ତରରେ ଉଚ୍ଚମାନର ପତ୍ରିକା ଭାବେ ଗୃହୀତ । ତାଙ୍କର ଜୀବନବ୍ୟାପୀ ବୌଦ୍ଧିକ ଅବଦାନ ପାଇଁ ସେ ବହୁ ଜାତୀୟ ଓ ଆନ୍ତର୍ଜାତିକ ସମ୍ମାନରେ ସମ୍ମାନିତ ହେବାର ଗୌରବ ଲାଭ କରିଛନ୍ତି ।

ପଲ କର୍ଜ ମାନବବାଦୀ ଓ ପରିବେଶବିତ୍ ଭାବରେ ଆନ୍ତର୍ଜାତିକ ସ୍ତରରେ ନିଜକୁ ପ୍ରତିଷ୍ଠା କରି ପାରିଥିଲେ । ଦୁଇଟି ବୌଦ୍ଧିକ ଆଲୋଡନର ଜନକ ଭାବେ ତାଙ୍କୁ ସ୍ୱୀକାର କରାଯାଏ । ସେକୁଲାର ହ୍ୟୁମାନିଜମ (ଧର୍ମନିରପେକ୍ଷ ମାନବବାଦ) ଓ ପ୍ଲାନେଟାରୀ ହ୍ୟୁମାନିଜମ (ଗ୍ରହମଣ୍ଡଳୀୟ ମାନବବାଦ) ବିଚାରବୋଧର ସେ ଥିଲେ ବିଶିଷ୍ଟ ପ୍ରବକ୍ତା ।

"ଧର୍ମ ନିରପେକ୍ଷ ମାନବବାଦ" ଏକ ବୌଦ୍ଧିକ ବିଚାର । ଏହାର ତାତ୍ପର୍ଯ୍ୟ ହେଉଛି ଯେ ସଭ୍ୟତାର କ୍ରମବିକାଶ ଧାରାରେ ମଣିଷ ଆଜି ଯେଉଁଠି ପହଞ୍ଚିଛି ସେଥିରେ ବିଜ୍ଞାନର ସହାୟତାରେ ସାରା ପୃଥିବୀରୁ ଦାରିଦ୍ର୍ୟକୁ ଲୋପ କରାଯାଇପାରିବ । ସେହିପରି ଅତ୍ୟାଧୁନିକ ଚିକିତ୍ସାର ବ୍ୟବସ୍ଥାକୁ ସବୁ ମଣିଷଙ୍କ ପାଖକୁ ପ୍ରସାର କରିହେବ, ଯାହାଦ୍ୱାରା ରୋଗ-ଯନ୍ତ୍ରଣାକୁ ଉପସମ କରାଯାଇ ପାରିବ । ମଣିଷର ଜୀବନ ଅଧିକ ସୁଖପ୍ରଦ ହୋଇପାରିବା ସହ ମଣିଷର ଆୟୁବୃଦ୍ଧି କରାଯିବା ସମ୍ଭବ । ପ୍ରତ୍ୟେକ ବ୍ୟକ୍ତି ଭିତରର ସୃଜନଶୀଳ ସାମର୍ଥ୍ୟକୁ ବିକଶିତ କରାଯାଇ ତାର ଜୀବନର ଗୁଣାତ୍ମକମାନ ବୃଦ୍ଧି କରିହେବ । ପ୍ରତ୍ୟେକ ବ୍ୟକ୍ତି ପାଇଁ ଶିକ୍ଷା, ସ୍ୱାବଲମ୍ବନଶୀଳତା, ଆବଶ୍ୟକ ବେଳେ ଚିକିତ୍ସା, ମର୍ଯ୍ୟାଦାପୂର୍ଣ୍ଣ ଜୀବନ ସୃଷ୍ଟିକରାଯିବା ସହ ଜୀବନର ଗୁଣାତ୍ମକମାନ ବୃଦ୍ଧି କରାଯିବା ସମ୍ଭବ । ଆମର ସାଂସ୍କୃତିକ ବାତାବରଣ, ରାଜନୈତିକ ସଂସ୍କୃତି, ଜୀବନଦୃଷ୍ଟିରେ ଉଲ୍ଲେଖନୀୟ ପରିବର୍ତ୍ତନ ମଧ୍ୟ ଅଣାଯାଇ ପାରିବ । ପୃଥିବୀରେ ରହିଥିବା ସକଳ ଭେଦଭାବ ମାନବବାଦୀ ଜୀବନଦର୍ଶନର ପ୍ରସାର ଦ୍ୱାରା ଲୋପ କରାଯାଇ ପାରିବ । ଆମ ସଂସାରରେ ରହିଥିବା ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ ଇତ୍ୟାଦି ବ୍ୟବସ୍ଥାକୁ ଦୂର କରି ବ୍ୟକ୍ତି-ମର୍ଯ୍ୟାଦାବୋଧର ଏକ ସଂସ୍କୃତି ଆମେ ସୃଷ୍ଟି କରିପାରିବା । ସେହିପରି ଆନ୍ତର୍ଜାତିକ ସ୍ତରରେ ଯେଉଁ ସମସ୍ୟା

ରହିଛି ତାହାକୁ ବିଶ୍ୱର ବୁଦ୍ଧିଜୀବୀମାନେ ନିରପେକ୍ଷ ଭାବେ ଶାନ୍ତିପୂର୍ଣ୍ଣ ସମାଧାନ କରିପାରିବେ । ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ସାର୍ବଜନୀନ ବିଚାରବୋଧକୁ ଆମେ ମାନବ ସମାଜରେ ବିକଶିତ କରାଇପାରିବା । ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ଓ ବିଶ୍ୱ-ଭ୍ରାତୃତ୍ୱର ଅବକାଶ ସମଗ୍ର ପୃଥିବୀରେ ଆମର ଆଦର୍ଶ ହୋଇପାରିବ । ଯୁଗ ଯୁଗ ଧରି ଧର୍ମ ନାମରେ ସାମ୍ପ୍ରଦାୟିକ ବିଦ୍ୱେଷର ଯେଉଁ ମାନସିକତା ସୃଷ୍ଟି ହୋଇଛି, ଜାତୀୟତାବୋଧ ଆଳରେ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଯେପରି ଅବିଶ୍ୱାସର ପରିବେଶ ଆସିଛି ସେ ସବୁକୁ ଆମେ ଦୂର କରି ଏକବିଂଶ ଶତାବ୍ଦୀରୁ ଏକ ସାଂସ୍କୃତିକ ଜାଗରଣ ସୃଷ୍ଟି କରିବା ।  ଏହି ସାଂସ୍କୃତିକ ଜାଗରଣର ଭିତ୍ତି, ଲକ୍ଷ୍ୟ ଓ କାର୍ଯ୍ୟସୂଚୀର ସେ ବ୍ୟାପକ ବିଶ୍ଳେଷଣ କରିଛନ୍ତି ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସାରା ପୃଥିବୀର ଜନଗଣଙ୍କୁ ନିକଟତର କରିବାର ପରିବେଶ ଆଣିପାରିଛି, ଯାହା ଚାରି/ପାଞ୍ଚ ଦଶନ୍ଧି ତଳେ ଅଚିନ୍ତନୀୟ ଥିଲା । ସାରା ପୃଥିବୀର ଦୂରତ୍ୱ କମିଯିବାରେ ଲାଗିଛି ଓ ସମ୍ପ୍ରତି ପୃଥିବୀର ଯେକୌଣସି ଅଞ୍ଚଳର ଲୋକ ଯେକୌଣସି ଅଞ୍ଚଳ ସହିତ ସଂଯୋଗ ସ୍ଥାପନ କରିବା ସମ୍ଭବ ହୋଇଛି । ବାହ୍ୟ ସ୍ତରରେ ଆମେ ଯେପରି ନିକଟତର ହୋଇପାରିଛେ, ମାନସିକ ସ୍ତରରେ ଓ ହୃଦୟବତ୍ତାରେ ଆମେ ସେହିପରି ନିକଟତର ହୋଇପାରିବା । ଆମେ ଯଦି ମାନସିକ ସ୍ତରରେ ଘନିଷ୍ଠଭାବେ ସମ୍ପର୍କିତ ହୋଇପାରିବା ଓ ଆମ ମାନସିକତାରୁ ସକଳ ଭେଦଭାବକୁ ଦୂର କରିଦେବା, ତେବେ ଆମେ ଏକ ପ୍ରୀତିପୂର୍ଣ୍ଣ ବିଶ୍ୱ ସୃଷ୍ଟି ଦିଗରେ ଅଗ୍ରସର ହୋଇପାରିବା । ହିଂସା, ଯୁଦ୍ଧ, ସଂଘର୍ଷ, ବୈଷମ୍ୟ, ଶୋଷଣ, ମାନବିକ ନିଷ୍ଠୁରତାକୁ ମଣିଷ ଦୂର କରି ଭ୍ରାତୃତ୍ୱର ବିକାଶ ଦିଗରେ ପ୍ରତିବନ୍ଧକ ମନେ ହେଉଥିବା ଆବେଗ, ବିଚାର ଓ ବ୍ୟବସ୍ଥାକୁ ଦୂର କରିବା ପାଇଁ ଆମେ ଉଦ୍ୟମ କଲେ ଏହା ବିଶ୍ୱର ଚିତ୍ର ବଦଳାଇ ଦେଇ ପାରିବ । ଆମକୁ ଏହା ଗ୍ରହଣ କରିବାକୁ ହେବ ଯେ ମଣିଷର ପ୍ରୟାସରେ ସଭ୍ୟତାର ବିକାଶ ହୋଇଛି ଓ ମଣିଷର ଉଦ୍ୟମ ଦ୍ୱାରା ଏକ ପ୍ରୀତିପୂର୍ଣ୍ଣ ବିଶ୍ୱର ପ୍ରତିଷ୍ଠା ସମ୍ଭବ ହୋଇପାରିବ । କେଉଁ ଦିଅଁ, ଦେବତା, ଈଶ୍ୱର ସଭ୍ୟତାର ବିକାଶ କରିନାହାନ୍ତି, ସେହିପରି କେଉଁ ଦିଅଁ, ଦେବତା ବା ଈଶ୍ୱର ଆମ ସାମାଜିକ ଜୀବନରେ ଉତ୍କର୍ଷ ଆଣିବେ ନାହିଁ । ଆମେ ଆମର ବିଚାରଶୀଳତା ଓ ମାନବିକ ଦୃଷ୍ଟିଦ୍ୱାରା ଆମ ସମାଜରୁ ଓ ସାରା ବିଶ୍ୱରୁ ସକଳ ଭେଦଭାବ ଓ ମନ୍ଦ ବା ସୋସିଆଲ ଇଭିଲକୁ ଦୂର କରିପାରିବା । ସଭ୍ୟତାରେ ଯେଉଁଠି ଯାହା ମହତ୍ତର ଭାବନା ଓ ଆଦର୍ଶବୋଧ ରହିଛି ତାହା ଏକ ନୂତନ ଚେତନାର ବିକାଶ ଦିଗରେ ଏକ ସୂତ୍ରଭାବେ ସେଥିରେ ସମ୍ମିଳିତ ହୋଇପାରିବ । ଆଧୁନିକ ବିଜ୍ଞାନ ଓ ବୈଜ୍ଞାନିକ ପ୍ରଣାଳୀକୁ ଜ୍ଞାନାର୍ଜନ କ୍ଷେତ୍ରରେ ପ୍ରମୁଖ ସ୍ଥାନ ଦିଆଯାଇ ପାରିବ ଓ ଯାହା ଅହେତୁକ ଓ ଅବୈଜ୍ଞାନିକ ତାହାକୁ

ଆମେ ଦୂର କରିପାରିବା । ଯେଉଁଠି ଅଜ୍ଞତା, କୁସଂସ୍କାର, ଦାରିଦ୍ର୍ୟ ଓ ଅନ୍ଧକାର ରହିଛି ତାହାକୁ ଏକ ନିଷ୍ଠାପର ପ୍ରୟାସ ମାଧ୍ୟମରେ ପରିବର୍ତ୍ତନ କରାଯାଇ ପାରିବ । ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟର ଯେଉଁ ପରିବେଶ ରହିଛି ସେ ସବୁକୁ ବିଶ୍ୱସ୍ତରୀୟ ପ୍ରୟାସ ଦ୍ୱାରା ଅଚିରେ ଦୂର କରାଯାଇ ପାରିବ । ସେହିପରି ଅଶିକ୍ଷା ଓ ନିରକ୍ଷରତା ଆଧୁନିକ ଜୀବନଧାରାରେ ଏକ ଅଭିଶାପ । ସେସବୁକୁ ଗୋଟିଏ ପିଢ଼ି ଭିତରେ ପ୍ରୟାସଦ୍ୱାରା ଲୋପ କରିବା ସମ୍ଭବ ହେବ । ପ୍ରତ୍ୟେକ ମଣିଷର ଜୀବନର ମୂଲ୍ୟ, ମର୍ଯ୍ୟାଦା ଓ ମହତ୍ତ୍ୱ ରହିଛି ଓ ଉପଯୁକ୍ତ ବାତାବରଣରେ ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ କରାଯାଇ ପାରିବ । ପଲ କର୍ଜ ତାଙ୍କର ବିଚାରଧାରାରେ ମାନବବାଦର ଏହି ଯେଉଁ ବ୍ୟାଖ୍ୟା ଓ ଦିଗନ୍ତର ସୂତ୍ରପାତ କରିଛନ୍ତି ତାହା ଯଥାର୍ଥରେ ଆଗାମୀ ବିଶ୍ୱର ସଂହତି ଓ ସମ୍ପ୍ରୀତି ପାଇଁ ପଥ ପ୍ରଦର୍ଶକ ହୋଇ ପାରିବ ।

"ନିରପେକ୍ଷ ମାନବବାଦ" ଆଦର୍ଶର ପ୍ରବର୍ତ୍ତକ ହେବା ସହ ସେ "ସୌରମଣ୍ଡଳୀୟ ମାନବବାଦ" ବିଚାରର ବି ଜଣେ ସୃଜନଶୀଳ ଚିନ୍ତକ । ଆଗାମୀ ବିଶ୍ୱର କେତେକ ଜଟିଳ ସଙ୍କଟ ପ୍ରତି ସେ ଦୃଷ୍ଟି ଆକର୍ଷଣ କରିଛନ୍ତି । ସମ୍ପ୍ରତି ବିଶ୍ୱରେ ପରିବେଶ ଜନିତ ପ୍ରଦୂଷଣ ବି ଏକ ଗୁରୁତର ସମସ୍ୟା ସୃଷ୍ଟି କରିଛି । ଆମର ସୌରମଣ୍ଡଳରେ ଯେତେ ଗୁଡିଏ ଗ୍ରହ ରହିଛନ୍ତି ସେ ମଧ୍ୟରେ ପୃଥିବୀ ହେଉଛି ଏକମାତ୍ର ଗ୍ରହ ଯେଉଁଠି ଜୀବନର ବିକାଶ ହୋଇଛି । ଲକ୍ଷ ଲକ୍ଷ ବର୍ଷର କ୍ରମବିକାଶ ଓ ଜୈବିକ ବିବର୍ତ୍ତନ ମଧ୍ୟଦେଇ ଆଦିମ ସ୍ତରରୁ ମଣିଷ ସଭ୍ୟ, ସଂସ୍କୃତି ସମ୍ପନ୍ନ ହୋଇପାରିଛି । ଏହାର ପରିଣାମ ସ୍ୱରୂପ ଆମ ପୃଥିବୀରେ ସଭ୍ୟତା ଗଢ଼ିଉଠିଛି । ଆମର ସଭ୍ୟତାକୁ ଓ ଭବିଷ୍ୟତକୁ ସୁରକ୍ଷା ଦେବା ଓ ଉନ୍ନତ କରିବା ହେଉଛି ଆମର ଏକ ନୈତିକ କର୍ତ୍ତବ୍ୟ । ପରିବେଶକୁ କ୍ଷତି ପହଞ୍ଚାଉଥିବା ଦିଗ ଗୁଡିକ ଉପରେ ଅଧିକ ସଚେତନତା ସୃଷ୍ଟି କରିବା ପାଇଁ ପ୍ରୟାସର ଆବଶ୍ୟକତାକୁ ସେ ଗୁରୁତ୍ୱ ଦେଇଛନ୍ତି । ଜନସଂଖ୍ୟାର ଚାପ କମାଇବା, ପରିବେଶଉପଯୋଗୀ ପ୍ରଯୁକ୍ତିର ବିକାଶ ଘଟାଇବା, ସକଳ ପ୍ରକାର ଗଣବିଧ୍ୱଂସୀ ମାରଣାସ୍ତ୍ରକୁ ଆନ୍ତର୍ଜାତିକ ସ୍ତରରେ ବନ୍ଦ କରାଇବା ପରି କାର୍ଯ୍ୟସୂଚୀକୁ ବହୁ ଗୁରୁତ୍ୱ ଦେଇଛନ୍ତି । ମାନବବାଦର ଭାବନାକୁ ସେ ସମଗ୍ର ପୃଥିବୀ ପ୍ରତି ପ୍ରସାରିତ କରି ମହାମଣ୍ଡଳର ସୁରକ୍ଷା ପାଇଁ ଚିନ୍ତା ପ୍ରକଟ କରିଛନ୍ତି । ସଭ୍ୟତାର ବିକାଶ ଯେପରି ଆତ୍ମ-ଘାତୀ ନ ହୁଏ ସେଥିପାଇଁ ସେ ଗମ୍ଭୀର ସମ୍ପୃକ୍ତି ବ୍ୟକ୍ତ କରି ଆସିଛନ୍ତି ।

ମୋଟ ଉପରେ କହିଲେ ପଲ କର୍ଜ ମାନବବାଦର ଦିଗନ୍ତକୁ ମାନବଜାତି ଓ ସୌରମଣ୍ଡଳ ପ୍ରତି ବ୍ୟାପ୍ତ କରାଇ ତାହାର ବିଭିନ୍ନ ଦିଗନ୍ତ ଉପରେ ଏକ ବୌଦ୍ଧିକ ଜାଗରଣ

ଆଣିବାକୁ ପ୍ରୟାସ କରିଛନ୍ତି । ତାଙ୍କର ବିଚାର, ମାନବିକ ଦୃଷ୍ଟି ଓ ସମ୍ବେଦନଶୀଳ ଜୀବନ ଦର୍ଶନ ତାଙ୍କୁ ବିଂଶଶତାବ୍ଦୀର ଜଣେ ମହାନ ଚିନ୍ତାନାୟକର ଗୌରବ ଆଣିଦେଇଛି ।

ବ୍ୟକ୍ତି ମରଣଶୀଳ, କିନ୍ତୁ ସଭ୍ୟତା ଓ ମଣିଷ ଜାତି ସବୁଦିନ ପାଇଁ ରହିବ ଓ ଉନ୍ନତିର ସୋପାନରେ ଅଗ୍ରସର ହେବ । ପଲ କର୍ଜଙ୍କର ଦେହାନ୍ତ ହୋଇଛି, ହେଲେ ତାଙ୍କର ବିଚାର ଓ ଜୀବନ ଦର୍ଶନ ଏକ ନୂତନ ବିଶ୍ୱ ଗଠନ ପାଇଁ ପ୍ରେରଣାର ଉତ୍ସ ହୋଇପାରିବ । ଏହି ମାନବବାଦୀ ଦାର୍ଶନିକଙ୍କ ପ୍ରତି ଅନ୍ତରର ଗଭୀର ଶ୍ରଦ୍ଧାଞ୍ଜଳି ବ୍ୟକ୍ତ କରୁଛି ।

(୨୧.୧୧.୨୦୧୨)



# ବିଶ୍ୱ ସରକାରର ଦୁଇ ପ୍ରବକ୍ତା : ଗାନ୍ଧୀ ଓ ରସେଲ

ମହାତ୍ମା ଗାନ୍ଧୀ (୧୮୬୯-୧୯୪୮) ଓ ବର୍ଟ୍ରାଣ୍ଡ ରସେଲ (୧୮୭୨-୧୯୭୦) ବିଂଶ ଶତାବ୍ଦୀର ଦୁଇ ମହାନ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ । ଏକ ଅହିଂସ ଓ ଯୁଦ୍ଧ ରହିତ ବିଶ୍ୱ ପାଇଁ ସେମାନଙ୍କର ଗଭୀର ସମ୍ପୃକ୍ତି ସେମାନଙ୍କୁ ଇତିହାସର ପୃଷ୍ଠାରେ ଅମର କରି ରଖିଛି । ସେମାନଙ୍କ ଜୀବଦଶାରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ସେମାନେ ପ୍ରତ୍ୟକ୍ଷ କରିଛନ୍ତି ଓ ପୃଥିବୀରୁ ଯୁଦ୍ଧର ପରିବେଶ କିପରି ଦୂର ହୋଇପାରିବ ସେ ପାଇଁ ନିଜସ୍ୱ ଧାରାରେ ସେମାନଙ୍କର ବିଚାର ବ୍ୟକ୍ତ କରିଛନ୍ତି । ଏହା ସହିତ ଏକ 'ବିଶ୍ୱ ସରକାର' ଗଠନ ନେଇ ସେମାନେ ସେମାନଙ୍କର ଗଭୀର ଚିନ୍ତା ବ୍ୟକ୍ତି କରିଛନ୍ତି । ସେମାନେ ସେମାନଙ୍କ ସମସାମୟିକ ଯୁଗରେ ପୃଥିବୀର ଘଟଣା ପ୍ରବାହକୁ ଯେପରି ଦେଖିଥିଲେ ତାହାରି ଭିତରେ ସେମାନେ ଏକ ଶାନ୍ତିପୂର୍ଣ୍ଣ, ନ୍ୟାୟଯୁକ୍ତ, ଅହିଂସ ଓ ସମତାଭିତ୍ତିକ ସମାଜର ପରିକଳ୍ପନା କରିଥିଲେ । ସେହି ସମୟର ଘଟଣାବଳୀ ମଣିଷ ଜାତିର ଭବିଷ୍ୟତ ନେଇ ସେମାନଙ୍କ ମନରେ ଯେଉଁ ଆଶଙ୍କା ସୃଷ୍ଟି କରିଥିଲା, ସେହି ପୃଷ୍ଠଭୂମିରେ ସେମାନେ ବିଶ୍ୱ ଶାନ୍ତି ପାଇଁ ବିଶ୍ୱ ସରକାରର ରୂପରେଖ ନେଇ କେତେକ ବିଚାର ବ୍ୟକ୍ତ କରିଥିଲେ । ଏହି ଲେଖାଟିରେ ତାହାର କିଞ୍ଚିତ ସୂଚନା ଦେବା ଆମର ଲକ୍ଷ୍ୟ ।

ଗାନ୍ଧୀ ଭାରତୀୟ ଜାତୀୟ ଆନ୍ଦୋଳନର ପୁରୋଧା ଭାବେ ପ୍ରାୟ ତିନି ଦଶନ୍ଧିରୁ ଅଧିକ କାଳ ଦେଶରୁ ସାମ୍ରାଜ୍ୟବାଦୀ ଶକ୍ତିକୁ ହଟାଇବାକୁ ପ୍ରୟାସ କରି ସଫଳ ହୋଇଥିଲେ । ଭାରତର ରାଜନୈତିକ ସ୍ୱାଧୀନତା ପାଇଁ ତାଙ୍କର ସଂଗ୍ରାମ ମୁଖ୍ୟତଃ ଶିଳ୍ପବିପ୍ଳବ ପରବର୍ତ୍ତୀ ଯୁଗର ସାମ୍ରାଜ୍ୟବାଦ ବିରୁଦ୍ଧରେ ଅଭିପ୍ରେତ ଥିଲା । ଭାରତର ରାଜନୈତିକ ସ୍ୱାଧୀନତା ଆନ୍ଦୋଳନର ଏକ ଆନ୍ତର୍ଜାତିକ ତାତ୍ପର୍ଯ୍ୟ ରହିଥିଲା ଯେ ସାରା

ବିଶ୍ୱରୁ ଏହାଦ୍ୱାରା ସାମ୍ରାଜ୍ୟବାଦର ଅବସାନ ହେବ । ଗାନ୍ଧୀଙ୍କ ସଂଗ୍ରାମର ପ୍ରଣାଳୀ ମଧ୍ୟ ଥିଲା କିଛିଟା ଅନନ୍ୟ । ଅହିଂସା ଓ ସତ୍ୟାଗ୍ରହକୁ ରାଜନୈତିକ କର୍ମସୂଚୀର ସାଧନ ଭାବେ ନେଇ ସେ ଇତିହାସର ମୋଡ ବଦଳାଇଥିଲେ । ତାଙ୍କର ଅହିଂସ ପନ୍ଥା ଓ ସତ୍ୟାଗ୍ରହ ବିଶ୍ୱ ଚିନ୍ତାରାଜ୍ୟରେ ଏପରି ପ୍ରଭାବ ପକାଇଛି ଯେ ଜାତିସଙ୍ଘ ଗାନ୍ଧୀଙ୍କ ଜନ୍ମଦିବସକୁ ବିଶ୍ୱ-ଅହିଂସ ଦିବସ ଭାବେ ପାଳନ କରୁଛି । ଏହାଛଡା ଗାନ୍ଧୀ କିପରି ମାନବିକ ମୂଲ୍ୟବୋଧ ଓ ସଭ୍ୟ ଜୀବନଦୃଷ୍ଟିର ପ୍ରତିନିଧି ହୋଇ ପାରିଛନ୍ତି ତାହାର ବହୁ ଦୃଷ୍ଟାନ୍ତ ଭିତରୁ ଏକ ଛୋଟ ଉଦାହରଣ ଏଠାରେ ବ୍ୟକ୍ତ କରୁଛି । ଆମେରିକାରେ ମାନବିକ ଅଧିକାରର ବିଶିଷ୍ଟ ପ୍ରବକ୍ତା ମାର୍ଟିନ ଲୁଥର କିଙ୍ଗ୍ ଜୁନିୟର (୧୯୨୯-୧୯୬୮) ୧୯୬୦ ରେ ଭାରତ ଭ୍ରମଣରେ ଆସିଥିବା ବେଳେ ମନ୍ତବ୍ୟ ଦେଇଥିଲେ ଯେ ତାଙ୍କ ସଂଗ୍ରାମର ଅସ୍ତ୍ର ହେଉଛନ୍ତି ଗାନ୍ଧୀ । ଆମେରିକୀୟ ସମାଜ ଓ ସେହି ଧାରାରେ ସାରା ପୃଥିବୀରୁ ମଣିଷ ମଣିଷ ଭିତରେ ଥିବା ବର୍ଣ୍ଣ ବୈଷମ୍ୟ ଦୂର କରିବା ପାଇଁ ସେ ଯେଉଁ ସଂଗ୍ରାମ କରୁଛନ୍ତି ସେହି ସଂଗ୍ରାମର ପନ୍ଥା ବିଷୟରେ ସେ ଗାନ୍ଧୀଙ୍କୁ ହିଁ ତାଙ୍କର ମାର୍ଗଦର୍ଶକ ବୋଲି ମନେକରନ୍ତି । ସେ ଏହା ମଧ୍ୟ କହିଥିଲେ ଯେ ସେ ଦିଲ୍ଲୀକୁ ଜଣେ ପରିବ୍ରାଜକ ଭାବେ ଆସିଛନ୍ତି, କିନ୍ତୁ ଗୁଜୁରାଟର ଅହମଦାବାଦକୁ ଯିବେ ଜଣେ ତୀର୍ଥଯାତ୍ରୀ ଭାବରେ । କାରଣ ଗୁଜୁରାଟ ଥିଲା ମହାତ୍ମାଗାନ୍ଧୀଙ୍କୁ ଜନ୍ମ ଦେଇଥିବା ରାଜ୍ୟ । ମଣିଷ ସମାଜରୁ ବିଭେଦ, ହିଂସା ଓ ବୈଷମ୍ୟ ଦୂର କରିବାକୁ ଯେଉଁମାନେ ବିଶ୍ୱ ଇତିହାସରେ ସ୍ୱାକ୍ଷର ରଖି ଯାଇଛନ୍ତି ସେମାନଙ୍କ ମଧ୍ୟରେ ଗାନ୍ଧୀଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ ।

ଗାନ୍ଧୀ ଯଦିବା ଗୋଟିଏ ଦେଶର ରାଜନୈତିକ ସ୍ୱାଧୀନତା ପାଇଁ ସଂଗ୍ରାମର ପଥ ପ୍ରଦର୍ଶକ ଥିଲେ, ସେ 'ରାଷ୍ଟ୍ରୀୟତା' କୁ ସର୍ବୋଚ୍ଚ ମୂଲ୍ୟ ଦେଉ ନଥିଲେ । ବରଂ ସେ 'ବିଶ୍ୱ ସମୁଦାୟ' କୁ ସର୍ବୋଚ୍ଚ ମୂଲ୍ୟ ଦେଉଥିଲେ । ଏହି ପୃଥିବୀ ଯଦି ଗୋଟିଏ ସମୁଦାୟ ନ ହୋଇ ଭାଗ ଭାଗ ହୋଇ ରହେ, ତେବେ ସେହି ପୃଥିବୀରେ ସେ ବାସ କରିବାକୁ ଚାହିଁବେ ନାହିଁ ବୋଲି ଗାନ୍ଧୀ କହିଥିବା ଉଲ୍ଲେଖନୀୟ । ପୃଥିବୀରେ ବିଭିନ୍ନ ରାଷ୍ଟ୍ର ରହି ସେମାନେ ପରସ୍ପରର ଶତ୍ରୁ ବୋଲି ମାନସିକତା ରଖିବା ଆଦୌ ସ୍ପୃହଣୀୟ ନୁହେଁ । ବରଂ ପରସ୍ପରର ବନ୍ଧୁ ଓ ସହଯୋଗୀ ଭାବେ ଏକ ସଂଘୀୟ ବ୍ୟବସ୍ଥା ଦ୍ୱାରା ରାଷ୍ଟ୍ରମାନେ ଏକତ୍ରିତ ହେବା ଉପରେ ସେ ବହୁବାର ଗୁରୁତ୍ୱ ଦେଇଛନ୍ତି । ପୃଥିବୀର ଜନଗଣ ଏକ ସମୁଦାୟ ଭାବରେ ପ୍ରତିନିଧିମାନଙ୍କ ଦ୍ୱାରା ଏକ ସଂଘୀୟ ଧାରାରେ ପରିଚାଳିତ ହେଲେ ପୃଥିବୀରେ ଶାନ୍ତି ଓ ଅହିଂସା ରହିପାରିବ ବୋଲି ତାଙ୍କର ଗଭୀର ବିଶ୍ୱାସ ଥିଲା । ରାଷ୍ଟ୍ରମାନଙ୍କର ସାର୍ବଭୌମତ୍ୱକୁ ଆଧାରକରି ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ସାମରିକ ଶକ୍ତି ବୃଦ୍ଧି ନେଇ ଯେଉଁ

ପ୍ରତିଯୋଗିତାର ବାତାବରଣ ରହିଛି ତାହା ପୃଥିବୀ ପାଇଁ ଆଦୌ ମଙ୍ଗଳକର ନୁହେଁ । ବରଂ ଏକ ବିଶ୍ୱ ସରକାର ପ୍ରତିଷ୍ଠା ହେଲେ ରାଷ୍ଟ୍ରମାନଙ୍କ ମଧ୍ୟରେ ଲାଗି ରହିଥିବା ସାମରିକ ପ୍ରତିଯୋଗିତା, ଯୁଦ୍ଧଜନିତ ବିଭୀଷିକା ଓ ହିଂସାର ବାତାବରଣକୁ ଦୂର କରାଯିବା ସମ୍ଭବ ହେବ । ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ଓ ଏକ ଅହିଂସ ପୃଥିବୀ ପାଇଁ 'ବିଶ୍ୱ ସରକାର' ଯେ ଏକ ଅବଶ୍ୟମ୍ଭାବୀ ଆବଶ୍ୟକତା ଏହା ଗାନ୍ଧୀ ବିଶ୍ୱାସ କରୁଥିଲେ ।

ଇଂଲଣ୍ଡର ଅଧିବାସୀ ବର୍ଟ୍ରାଣ୍ଡ ରସେଲ ଥିଲେ ବିଂଶ ଶତାବ୍ଦୀର ଜଣେ ବିଶିଷ୍ଟ ଦାର୍ଶନିକ, ହେତୁବାଦୀ ଚିନ୍ତାନାୟକ ଓ ବିଶ୍ୱଶାନ୍ତିର ଜଣେ ମହାନ ପ୍ରବକ୍ତା । ଜୀବଦ୍ଦଶାରେ ଦୁଇଟି ବିଶ୍ୱଯୁଦ୍ଧର ଯେଉଁ ଭୟଙ୍କର ପରିଣାମ ସେ ଦେଖିଥିଲେ, ତାହାରି ଅନୁଭୂତିରୁ ସେ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ଜୀବନସାରା ପ୍ରୟାସ କରିଛନ୍ତି ଓ ଏ କ୍ଷେତ୍ରରେ ରାଶି ରାଶି ଲେଖା ଲେଖିଛନ୍ତି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଯୋଗୁଁ ପୃଥିବୀର ଜନଗଣଙ୍କ ମଧ୍ୟରେ ଅର୍ଥନୈତିକ ନିର୍ଭରଶୀଳତା ବଢ଼ି ବଢ଼ି ଚାଲିଛି । କିନ୍ତୁ ପରିତାପର ବିଷୟ ଯେ ଏହା ଜନଗଣଙ୍କ ମଧ୍ୟରେ ଭ୍ରାତୃତ୍ୱ ଭାବ ବୃଦ୍ଧି କରୁନାହିଁ ବରଂ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଅବିଶ୍ୱାସର ବାତାବରଣ ବୃଦ୍ଧି ପାଇବାରେ ଲାଗିଛି । ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ବେପାର-ବାଣିଜ୍ୟ ବୃଦ୍ଧି ପାଉଛି ଓ ବେପାର-ବାଣିଜ୍ୟକୁ ଆଧାର କରି ଗୋଟିଏ ଯୁଗରେ ପୃଥିବୀରେ ସାମ୍ରାଜ୍ୟବାଦ ବୃଦ୍ଧି ପାଇଛି । ପୃଥିବୀର ଶକ୍ତିଶାଳୀ  ରାଷ୍ଟ୍ରମାନେ ସେମାନଙ୍କର ଉନ୍ନତ ସାମରିକ ଶକ୍ତି ଯୋଗୁଁ ସାମ୍ରାଜ୍ୟବାଦ ବିସ୍ତାର କରିଛନ୍ତି । ସାମ୍ରାଜ୍ୟବାଦ ବିସ୍ତାର ନେଇ ପ୍ରତିଯୋଗିତାରୁ ପୃଥିବୀରେ ବିଶ୍ୱଯୁଦ୍ଧର ପରିବେଶ ଆସିଛି । ତେବେ ସାର୍ବଭୌମ ରାଷ୍ଟ୍ରର ପରିକଳ୍ପନା ପୃଷ୍ଠଭୂମିରେ ସମ୍ପ୍ରତି ପ୍ରତ୍ୟେକ ରାଷ୍ଟ୍ର ନିଜର ସାମରିକ ଶକ୍ତି ବୃଦ୍ଧି କରିବାକୁ ପ୍ରୟାସ କରୁଛି । ସାମରିକ ଶକ୍ତିରେ ବଳଶାଳୀ ହେବାକୁ ବିଭିନ୍ନ ଦେଶରେ ଯେଉଁ ବୈଜ୍ଞାନିକ ଗବେଷଣା ହେଉଛି, ପରିଣାମତଃ ବିଭିନ୍ନ ଦେଶରେ ଆଣବିକ ଅସ୍ତ୍ର ନିର୍ମାଣ ହେଉଛି । ରାଷ୍ଟ୍ରମାନଙ୍କ ମଧ୍ୟରେ ସାର୍ବଭୌମତ୍ୱ ଭାବନା ଦୃଢ଼ଥିବା ପର୍ଯ୍ୟନ୍ତ ପୃଥିବୀରେ ଯୁଦ୍ଧର ଆଶଙ୍କା ରହିବ ହିଁ ରହିବ । ପୁନଶ୍ଚ ଯଦି ଆଣବିକ ଯୁଦ୍ଧର ପରିବେଶ ଆସେ, ତେବେ ତାହାର ପରିଣାମ ପୃଥିବୀରେ ସଭ୍ୟତାର ଧ୍ୱଂସକାରୀ ହେବ । ରାଷ୍ଟ୍ରର ସାର୍ବଭୌମତ୍ୱ, ସାମରିକ ଶକ୍ତି ବୃଦ୍ଧି, ଦେଶର ସାମରିକ ଶକ୍ତି ବୃଦ୍ଧି ପାଇଁ ଉନ୍ନତମାନର ବୈଜ୍ଞାନିକ ଗବେଷଣା,  ପୃଥିବୀର ଦୁର୍ଲଭ ପ୍ରାକୃତିକ ସମ୍ବଳର କ୍ଷୟ ଇତ୍ୟାଦି ପରିବେଶରୁ ପୃଥିବୀର ଜନଗଣ ଓ ଭବିଷ୍ୟତ ପିଢ଼ିର ଲୋକମାନଙ୍କୁ ରକ୍ଷା କରିବାକୁ ହେଲେ ସାରା ପୃଥିବୀକୁ ଏକ ନିୟନ୍ତ୍ରଣାଧୀନ ବ୍ୟବସ୍ଥା ଭିତରେ ରଖିବାକୁ ହେବ । କୌଣସି ରାଷ୍ଟ୍ର ପାଖରେ ସାମରିକ ଶକ୍ତି ରଖା ନ ଯାଇ ଏକ ବିଶ୍ୱ ସମୁଦାୟ  ସକଳ ଅସ୍ତ୍ର ଶସ୍ତ୍ରକୁ ନିୟନ୍ତ୍ରଣ କରିବ । ଏକ ବିଶ୍ୱ ସରକାର ହାତରେ

ସାମରିକ ଶକ୍ତି ରହିବ । ଏହାର ନିୟନ୍ତ୍ରଣ ବା ପ୍ରୟୋଗ ବିଶ୍ୱର ପ୍ରତିନିଧିଗଣ ସ୍ଥିର କରିବେ । ଆଞ୍ଚଳିକ ସ୍ତରରେ ଆଇନ, ଶାସନ ଓ ବିଚାର ପାଇଁ ବ୍ୟବସ୍ଥା ରହିବ ଓ ଆନ୍ତର୍ଜାତିକ ବିଚାର, ବିମର୍ଶରୁ ନିଷ୍ପନ୍ନ ନ୍ୟାୟ, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧକୁ ଆଞ୍ଚଳିକ ସ୍ତରରେ ଗୁରୁତ୍ୱ ଦିଆଯିବ । ଯଦି ଦୁଇଟି ରାଷ୍ଟ୍ର ବା ଜନଗୋଷ୍ଠୀ ଭିତରେ ଗୁରୁତର ମତ ପାର୍ଥକ୍ୟ ହୁଏ, ତେବେ ଆନ୍ତର୍ଜାତିକ ସ୍ତରର ନିଷ୍ପତ୍ତିକୁ ପ୍ରତ୍ୟେକ ପକ୍ଷ ଗ୍ରହଣ କରିବାକୁ ନିୟମ ରହିବ । ଏହା ସହିତ ସାରା ପୃଥିବୀର ଜନଗଣଙ୍କ ମଧ୍ୟରେ ପ୍ରାକୃତିକ ସମ୍ପଦର ସମବଣ୍ଟନ ନେଇ ସମତାର ବାତାବରଣ ପାଇଁ ପ୍ରୟାସ ହେବ । ପୃଥିବୀର ଯେଉଁ ଭୂଖଣ୍ଡରେ ଦାରିଦ୍ର୍ୟ, ନିରକ୍ଷରତା, ସ୍ୱାସ୍ଥ୍ୟସେବାର ଅଭାବ ରହିଛି ତାହାକୁ ଦୂର କରିବାକୁ ପଡିବ । ଲୋକମାନଙ୍କର ଅଜ୍ଞତା ଓ ରାଷ୍ଟ୍ରର ଅପାରଗତା ହେତୁ ଯଦି ବିଭିନ୍ନ ଭୂଖଣ୍ଡରେ ଉତ୍କଟ ଦାରିଦ୍ର୍ୟ ରହିଛି ତାହାକୁ ଅନୁଶୀଳନ କରାଯାଇ ସେଥିପାଇଁ ଯୋଜନାବଦ୍ଧ ଭାବରେ ଆନ୍ତର୍ଜାତିକ ସହଯୋଗରେ ତାହାକୁ ଦୂରକରାଯାଇ ପାରିବ । ବିଭିନ୍ନ ରାଷ୍ଟ୍ରର ସାମରିକ ବ୍ୟୟକୁ ଯଦି ଜନମଙ୍ଗଳକାରୀ ଲକ୍ଷ୍ୟରେ ବିନିଯୋଗ କରାଯିବ, ତେବେ ଅକ୍ଲେଶରେ ଦାରିଦ୍ର୍ୟ ଦୂର ହୋଇପାରିବ । କିନ୍ତୁ ଏହି ପରିବେଶ ପାଇଁ ସାର୍ବଭୌମ ରାଷ୍ଟ୍ର ପରିବର୍ତ୍ତେ ରାଷ୍ଟ୍ରସଂଘଦ୍ୱାରା ଏକ ବିଶ୍ୱ ସରକାର ଅବଶ୍ୟମ୍ଭାବୀ ମନେହୁଏ ।

ବିଶ୍ୱର ରାଜନୈତିକ ଦୃଶ୍ୟପଟରେ ଏହିପରି ଏକ ପରିବେଶ ଆଣିବାକୁ ହେଲେ ରାଷ୍ଟ୍ର ସମୂହ ଭିତରେ ସହମତି ଆବଶ୍ୟକ । ପୃଥିବୀର ଉନ୍ନତ ରାଷ୍ଟ୍ରମାନ ପ୍ରଥମେ ଏଥିପାଇଁ ସହମତି ପ୍ରକାଶ କଲେ ଅନ୍ୟ ରାଷ୍ଟ୍ରମାନେ କାଳକ୍ରମେ ଆନ୍ତର୍ଜାତିକ ଚାପରେ ହେଉ ବା ଆବଶ୍ୟକତାରୁ ହେଉ ଏହି ଧାରାକୁ ସମର୍ଥନ କରିବେ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସମ୍ପ୍ରତି ଯେପରି ଅଗ୍ରଗତି କରିଚାଲିଛି ସାରା ବିଶ୍ୱ ଏକ ସମୁଦାୟ ହେବାରେ ଅନୁକୂଳ ପରିବେଶ ଆସିଛି । ତେବେ ରାଷ୍ଟ୍ର-ରାଷ୍ଟ୍ର ଭିତରେ ଥିବା ବିଭେଦ, ଅବିଶ୍ୱାସ, ଶତ୍ରୁ ଭାବାପନ୍ନ ଦୃଷ୍ଟିକୋଣ ଆନ୍ତରାଷ୍ଟ୍ରୀୟ ଚେତନାର ବିକାଶଦ୍ୱାରା ଦୂର କରାଯାଇ ପାରିବ । ମାନବିକତା, ଭ୍ରାତୃତ୍ୱଭାବ, ସମ୍ବେଦନଶୀଳ ଜୀବନଦୃଷ୍ଟି, ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ ପରି ମୂଲ୍ୟବୋଧକୁ ସବୁ ସ୍ତରରେ ଶିକ୍ଷା ଦିଆଯାଇ ବିଚାରସ୍ତରରେ ଏକ ବୌଦ୍ଧିକ-କ୍ରାନ୍ତି ଅଣାଯାଇ ପାରିବ । ମଣିଷ ଜାତିକୁ ଏକ ଭ୍ରାତୃତ୍ୱର ଡୋରିରେ ବାନ୍ଧିବାକୁ ହେଲେ ରାଷ୍ଟ୍ର, ଜାତୀୟତା, ସାର୍ବଭୌମତ୍ୱ ଭାବନା ବଦଳରେ ମାନବବାଦ, ନ୍ୟାୟବୋଧ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନକୁ ଆଦର୍ଶ କରାଯାଇ ପାରିବ । ବିଜ୍ଞାନର ଅଗ୍ରଗତି ବିଶ୍ୱର ଜନଗଣଙ୍କ ହିତ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ବିନିଯୋଗ ହେବ, ଏହା ଯୁଦ୍ଧ, ଧ୍ୱଂସାତ୍ମକ ଅସ୍ତ୍ରନିର୍ମାଣ ଦିଗରେ ବିନିଯୋଗ ହେବନାହିଁ ।

ବର୍ଟ୍ରାଣ୍ଡ ରସେଲ ଏକ ଯୁଦ୍ଧ ରହିତ ପୃଥିବୀ ଓ ବିଶ୍ୱଶାନ୍ତି ପାଇଁ ଜୀବନସାରା କାର୍ଯ୍ୟ କରିଛନ୍ତି । ପୃଥିବୀର ରାଷ୍ଟ୍ରନୀତିଜ୍ଞ, ବୈଜ୍ଞାନିକ, ଦାର୍ଶନିକମାନଙ୍କୁ ସେ ଏପାଇଁ ନିବେଦନ କରିଛନ୍ତି । ଯୁଦ୍ଧ ବିରୁଦ୍ଧରେ ଜନଚେତନା ଜାଗ୍ରତ କରିବାକୁ ନିଜ ଦେଶରେ ଜନ ଆନ୍ଦୋଳନ କରିଛନ୍ତି । ନୋବେଲ ପୁରସ୍କାର ବିଜେତା ଏହି ଶାନ୍ତିକାମୀ ଦାର୍ଶନିକ ନିଜର ରାଶି ରାଶି ଲେଖାରେ ସାରା ପୃଥିବୀର ଜନଗଣଙ୍କୁ ଶାନ୍ତି, ମୈତ୍ରୀ, ଭ୍ରାତୃତ୍ୱର ବାଣୀ ଶୁଣାଇଛନ୍ତି । ଧର୍ମ, ଈଶ୍ୱର, ଜାତୀୟତାର ଊର୍ଦ୍ଧ୍ୱରେ ମାନବବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ ଭାବେ ନେଇ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱର ସ୍ୱପ୍ନ ଦେଖିଛନ୍ତି ।

ଗାନ୍ଧୀ ଓ ରସେଲଙ୍କ ଭିତରେ କେତେକ ସ୍ତରରେ ବୈଚାରିକ ମତପାର୍ଥକ୍ୟ ଥିଲେ ବି ଉଭୟ ଦୁଇ ବିଶିଷ୍ଟ ମାନବହିତୈଷୀ ଭାବେ ବିଂଶ ଶତାବ୍ଦୀର ଚିନ୍ତା ଜଗତରେ ନିଜ ନିଜର ସ୍ୱାକ୍ଷର ରଖି ଯାଇଛନ୍ତି । ଗାନ୍ଧୀ ଅହିଂସାକୁ ଓ ରସେଲ ଶାନ୍ତିକୁ ସେମାନଙ୍କ ଜୀବନ ଦର୍ଶନର ବ୍ରତ କରିଛନ୍ତି । ଏକ ଅହିଂସ ଓ ଶାନ୍ତିପୂର୍ଣ୍ଣ ବିଶ୍ୱର ପଥଦ୍ରଷ୍ଟା ଭାବେ ସେମାନଙ୍କର ବିଚାର ସାରା ପୃଥିବୀରେ ଏକ ସାଂସ୍କୃତିକ ଜାଗରଣ ପାଇଁ ପ୍ରେରଣାର ଉତ୍ସ ହୋଇପାରିବ । ପରିଣାମ ସ୍ୱରୂପ ହୁଏତ ପୃଥିବୀରେ ଭବିଷ୍ୟତରେ ଏକ ବିଶ୍ୱ ସରକାର ପ୍ରତିଷ୍ଠା ହେବ । ରାଷ୍ଟ୍ରୀୟ ଭାବାବେଗକୁ ପରିହାର କରି ଏକ ଅନ୍ତରାଷ୍ଟ୍ରୀୟ ଚେତନାର ବିକାଶ ହେଲେ ଆମ ସଂସାରରୁ ସାମରିକ ପ୍ରତିଯୋଗିତା, ହିଂସା ଓ ବିଦ୍ୱେଷର ବାତାବରଣ ଦୂର ହୋଇ ପାରିବ । ସେପରି ହେଲେ ଗାନ୍ଧୀ ଓ ରସେଲଙ୍କର ସ୍ୱପ୍ନ ସାର୍ଥକ ହେବ ।

(୨୯.୫.୧୩)



# ସଂସ୍କାରିତ ଚେତନାର ପ୍ରତୀକ: ମଲାଲା ଓ ଲିଙ୍କନ

ଅକ୍ଟୋବର ୯ ତାରିଖ ୨୦୧୨ ମସିହା ଦିନ ପାକିସ୍ତାନର ସ୍କୁଲଛାତ୍ରୀ ମଲାଲା ୟୁସଫଜାଇଙ୍କୁ ତାଲିବାନ ସନ୍ତ୍ରାସବାଦୀମାନେ ଗୁଳିକରି ମାରିଦେବାକୁ ଉଦ୍ୟମ କରିଥିଲେ । ଏହାପରେ ମଲାଲା ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛନ୍ତି । ଏତେ ଅଳ୍ପ ବୟସରେ ଏହି କିଶୋରୀ ଝିଅ ଯେତିକି ସମ୍ମାନ ଓ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି ତାହା କଳ୍ପନା କରିହେବ ନାହିଁ । ମଲାଲା ଏବେ ଏକ ଆନ୍ତର୍ଜାତିକ ବ୍ୟକ୍ତିତ୍ୱ ଓ ତାଙ୍କର ଜନ୍ମଦିନ ଜାତିସଙ୍ଘରେ ମଲାଲା ଦିବସ ଭାବରେ ପାଳିତ ହୋଇଛି । ଜୁଲାଇ ୧୨,୨୦୧୩ ଦିନ ତାଙ୍କର ୧୬ ତମ ଜନ୍ମ ଦିବସରେ ସେ ଜାତିସଙ୍ଘରେ ଭାଷଣ ଦେବାର ଗୌରବଲାଭ କରିଛନ୍ତି ।

ମଲାଲା ୟୁସଫଜାଇଙ୍କର ଜନ୍ମ ୧୯୯୭ ଜୁଲାଇ ୧୨ ତାରିଖରେ, ପାକିସ୍ତାନର ସ୍ୱାତଭାଲି ଜିଲ୍ଲାର ମିଙ୍ଗୋରା ଗ୍ରାମରେ । ବାପା ଜଉଦ୍ଦିନ ୟୁସଫଜାଇ ଜଣେ ସାଧାରଣ ବ୍ୟକ୍ତି । ତେବେ ସେ ଶିକ୍ଷା ବିଷୟରେ ସଚେତନ ଓ ଏକ ବିଦ୍ୟାଳୟର ପରିଚାଳକ ଥିଲେ । ଝିଅକୁ ପାଠ ପଢ଼ିବା ପାଇଁ ସେ ସର୍ବଦା ପ୍ରେରଣା ଦେଇ ଆସିଛନ୍ତି । ମଲାଲାଙ୍କ ଭିତରେ ପିଲାଟି ବେଳୁ କିଛି ସାମାଜିକ ସଚେତନତା ସୃଷ୍ଟି ହୋଇଥିଲା । ସବୁ ପିଲାମାନେ କିପରି ପାଠପଢ଼ିବେ ସେଥିରେ ସେ ସମ୍ପୃକ୍ତି ବ୍ୟକ୍ତ କରିଥିଲେ । ବିଶେଷକରି ଏକ ରକ୍ଷଣଶୀଳ ପରିବେଶରେ ଝିଅମାନଙ୍କର ପାଠପଢ଼ା କ୍ଷେତ୍ରରେ ଯେଉଁ ପ୍ରତିବନ୍ଧକ ରହିଛି, ସେ କ୍ଷେତ୍ରରେ ସେ ନିଜର ସ୍ୱର ଉତ୍ତୋଳନ କରିଥିଲେ । ତାଳିବାନ ମୌଳବାଦୀମାନେ ସ୍ୱାତ ଜିଲ୍ଲାରେ ବେଶ୍ କ୍ରିୟାଶୀଳ । ସେମାନେ ସାଧାରଣ ଲୋକଙ୍କର ଟେଲିଭିଜନ ଦେଖିବା, ସଙ୍ଗୀତ ଶୁଣିବା ଓ ଝିଅମାନଙ୍କ ପାଠ ପଢ଼ା କ୍ଷେତ୍ରରେ ନାନା କଟକଣା ସୃଷ୍ଟି କରିଥିଲେ । ଏପରିକି ଶତାଧିକ ବାଳିକା ବିଦ୍ୟାଳୟ ଗୁଡିକୁ ସେମାନେ ନଷ୍ଟ କରିଦେଇଥିଲେ । ଏହି ସ୍ଥିତିରେ ମଲାଲା ୨୦୦୯ ମସିହାରୁ ବିବିସି ଉର୍ଦ୍ଦୁ ପ୍ରଚାର

କାର୍ଯ୍ୟସୂଚୀରେ ନିଜର ମତ ରଖିବା ଓ ଲେଖିବା ଆରମ୍ଭ କଲେ । ତେବେ ସେ ନିଜ ନାମକୁ ଗୁପ୍ତ ରଖି ଛଦ୍ମନାମ-ଗୁଲମକାଇରେ ତାଙ୍କର ମତ ବ୍ୟକ୍ତ କରୁଥିଲେ । ନିଜର ହାତ ଲେଖାକୁ ସ୍କାନ କରି ସେ ଇମେଲ୍ ଯୋଗେ ବିବିସିକୁ ପଠାଉଥିଲେ ଓ ତାହା ବିବିସିଦ୍ୱାରା ପ୍ରସାରିତ ହେଉଥିଲା । ମଲାଲାଙ୍କ ବାପା ତାଲିବାନ ମୌଳବାଦୀମାନଙ୍କର ସମାଲୋଚକ ଥିଲେ ଓ ସେମାନଙ୍କ ପାଖରୁ ଧମକପୂର୍ଣ୍ଣ ବାର୍ତ୍ତା ପାଉଥିଲେ । ତେବେ ମଲାଲା ଝିଅମାନଙ୍କର ଶିକ୍ଷା ପାଇଁ ସରକାରଙ୍କର ଦୃଷ୍ଟି ଆକର୍ଷଣ କରୁଥିଲେ ଓ ନିଜର ସାଥିମାନଙ୍କୁ ପାଠ ପଢ଼ିବା ପାଇଁ ସଙ୍ଗଠିତ କରୁଥିଲେ । ତାଲିବାନୀଙ୍କ ନିର୍ଦ୍ଦେଶକୁ ଅବମାନନା କରି ପାଠ ପଢ଼ିବା ପାଇଁ ଝିଅମାନଙ୍କୁ ପ୍ରୋତ୍ସାହନ ଦେଉଥିବା ମଲାଲା ସେମାନଙ୍କର କ୍ରୋଧର ଶିକାର ହେଲେ । ୨୦୧୨ ଅକ୍ଟୋବର ୯ ତାରିଖ ଦିନ ସେ ସ୍କୁଲରୁ ଫେରୁଥିବା ବାଟରେ ଜଣେ ତାଲିବାନ ସନ୍ତ୍ରାସବାଦୀ ତାଙ୍କ ମୁଣ୍ଡକୁ ଗୁଳି କଲା । ସେ ରକ୍ତାକ୍ତ ହୋଇ ଚେତା ହରାଇଲେ । ତାଙ୍କୁ ନିଆଯାଇ ପେଶୱାର ମିଲିଟାରୀ ହସ୍‌ପିଟାଲରେ ଭର୍ତ୍ତି କରାଗଲା । ସେଠାରେ ଚିକିତ୍ସା ଫଳରେ ୯ ଦିନ କୋମାରେ ରହି ସେ ଚେତା ଫେରି ପାଇଲେ । ଏହା ଭିତରେ ପୃଥିବୀର ବିଭିନ୍ନ ଦେଶରୁ ତାଙ୍କର ଚିକିତ୍ସା ପାଇଁ ସହାନୁଭୂତି ପ୍ରକାଶ ପାଇଲା । ଶେଷରେ ଡାକ୍ତରଙ୍କ ପରାମର୍ଶରେ ଇଂଲଣ୍ଡର ବର୍ମିଂହାମ ସ୍ଥିତ କୁଇନ୍ ଏଲିଜାବେଥ ହସ୍‌ପିଟାଲକୁ ସ୍ଥାନାନ୍ତରିତ ହେଲେ । ବିଶ୍ୱର ବିଶିଷ୍ଟ ଚିକିତ୍ସକମାନେ ଅତ୍ୟାଧୁନିକ ଚିକିତ୍ସାଦ୍ୱାରା ତାଙ୍କ ମସ୍ତିଷ୍କର ଅପରେସନ କରି ତାଙ୍କର ଜୀବନ ରକ୍ଷାକଲେ । ହସ୍‌ପିଟାଲରେ ପ୍ରାୟ ତିନିମାସ ରହି ସେ ସୁସ୍ଥ ହେଲେ ।

ତାଙ୍କ ଉପରେ ହୋଇଥିବା ଆକ୍ରମଣକୁ ପାକିସ୍ତାନର ତତ୍କାଳୀନ ରାଷ୍ଟ୍ରପତି ଆସିଫ ଅଲୀ ଜର୍ଦ୍ଦାରି "ସଭ୍ୟ ଜୀବନଧାରା ଉପରେ ଆକ୍ରମଣ" ବୋଲି ଅଭିହିତ କରି ଆତତାୟୀକୁ ଧରାଇଦେବା ପାଇଁ ଏକ କୋଟି ଟଙ୍କାର ପୁରସ୍କାର ଘୋଷଣା କରିଥିଲେ । ଏପରିକି ଆମେରିକାର ରାଷ୍ଟ୍ରପତି ବାରାକ ଓବାମା ଓ ଜାତିସଂଘର ସେକ୍ରେଟାରୀ ଜେନେରାଲ ବାନ କି ମୁନ୍ ଏହାକୁ ନିନ୍ଦା କରିବା ସହ ମଲାଲାଙ୍କର ଆରୋଗ୍ୟ ପାଇଁ ସମ୍ପୃକ୍ତି ବ୍ୟକ୍ତ କରିଥିଲେ । ଆମେରିକାର ବିଶିଷ୍ଟ ଅଭିନେତ୍ରୀ ଆଞ୍ଜେଲିନା ଜୋଲି ଝିଅମାନଙ୍କର ପାଠପଢ଼ା ପାଇଁ "ମଲାଲା ଫଣ୍ଡ" କୁ ଦୁଇ ଲକ୍ଷ ଡଲାର ଦାନ କରିବା ଉଲ୍ଲେଖନୀୟ । ସାରା ପୃଥିବୀର ଶାନ୍ତିକାମୀ ଓ ପ୍ରଗତିଶୀଳ ବୁଦ୍ଧିଜୀବୀମାନେ ମଲାଲାଙ୍କ କାର୍ଯ୍ୟକୁ ସମର୍ଥନ ଜଣାଇ ଶିକ୍ଷାର ସାର୍ବଜନୀକରଣ ଉପରେ ଗୁରୁତ୍ୱ ଦେଇଛନ୍ତି ।

ଜାତିସଙ୍ଘର ଶିକ୍ଷା ବିଭାଗର ଦାୟିତ୍ୱରେ ଥିବା ପ୍ରାକ୍ତନ ବ୍ରିଟିଶ ପ୍ରଧାନମନ୍ତ୍ରୀ ଗୋର୍ଡନ ବ୍ରାଉନ ୨୦୧୫ ମସିହା ସୁଦ୍ଧା କୌଣସି ଦେଶର ଶିଶୁମାନେ ଯେପରି ପାଠ ପଢ଼ାରୁ ବଞ୍ଚିତ ନ ହୁଅନ୍ତି ସେପାଇଁ ଜାତିସଙ୍ଘ ତରଫରୁ ସବୁ ଦେଶକୁ ନିବେଦନ କରିଛନ୍ତି । ମଲାଲାଙ୍କ ସ୍ୱପ୍ନ ପାକିସ୍ତାନରେ ପୁଅ ଝିଅ ନିର୍ବିଶେଷରେ ସବୁ ପିଲା ଶିକ୍ଷାର ସୁଯୋଗ

ଯେପରି ପାଇବେ ତାହା ଉପରେ ସେ ପ୍ରାଧାନ୍ୟ ଦେଉଛନ୍ତି । ସେହିପରି କେତେକ ଦେଶରେ ଝିଅମାନଙ୍କ ପଢ଼ିବା କ୍ଷେତ୍ରରେ ଯେଉଁ ଭେଦଭାବମୂଳକ ସାମାଜିକ ମାନସିକତା ରହିଛି ତାହା ଦୂର କରି ସମସ୍ତଙ୍କୁ ଶିକ୍ଷାର ସୁଯୋଗ ଦେବାକୁ ପରିବେଶ ସୃଷ୍ଟି କରିବାକୁ ଜାତିସଙ୍ଘ ତରଫରୁ ଆବେଦନ କରାଯାଇଛି । ଏହା ସହିତ ପୃଥିବୀରେ ଛ'କୋଟିରୁ ଅଧିକ ପିଲା ଶିକ୍ଷାରୁ ଯେପରି ବଞ୍ଚିତ ହୋଇ ରହିଛନ୍ତି ସେମାନଙ୍କୁ ୨୦୧୫ ମସିହା ସୁଦ୍ଧା ସ୍କୁଲ ଶିକ୍ଷା ଦେବାର ବ୍ୟବସ୍ଥା କରିବାକୁ ଜାତିସଙ୍ଘ ଗମ୍ଭୀର ସମ୍ପୃକ୍ତି ବ୍ୟକ୍ତ କରିଛି । ବିଶେଷକରି ଅନଗ୍ରସର ଦେଶମାନଙ୍କରେ ଓ ରକ୍ଷଣଶୀଳ ସମାଜରେ ଝିଅମାନଙ୍କର ଶିକ୍ଷାକ୍ଷେତ୍ରରେ ଯେଉଁ ପ୍ରତିବନ୍ଧକ ରହିଛି ତାହା ଦୂର କରିବାକୁ ବ୍ରାଉନ ବିଶ୍ୱ ସ୍ତରରେ ଉଦ୍ୟମ କରିବା ମହତ୍ତ୍ୱପୂର୍ଣ୍ଣ ।

ଜାତିସଙ୍ଘର ସେକ୍ରେଟାରୀ ଜେନେରାଲ ବାନ କି ମୁନ ମଲାଲାଙ୍କୁ ତାଙ୍କ ଜନ୍ମଦିନରେ ଜାତିସଙ୍ଘକୁ ନିମନ୍ତ୍ରଣ କରି ତାଙ୍କୁ ବଡ଼ ଗୌରବରେ ଭୂଷିତ କରିଛନ୍ତି । ୧୨.୦୭.୧୩ ଦିନ ତାଙ୍କର ଷୋହଳତମ ଜନ୍ମଦିବସରେ ମଲାଲା ଜାତିସଙ୍ଘରେ କଟ୍ଟରପନ୍ଥୀ ଧର୍ମାନ୍ଧ ଲୋକମାନଙ୍କ ବିଷୟରେ କହିଛନ୍ତି-"ସେମାନେ ମୋର ଲକ୍ଷ୍ୟ ଓ ସ୍ୱପ୍ନକୁ ନଷ୍ଟ କରିପାରିବେ ନାହିଁ, ବରଂ ମୋର ଦୁର୍ବଳତା, ଭୟ ଓ ନୈରାଶ୍ୟକୁ ସେମାନେ ଦୂର କରିଛନ୍ତି । ମୋ ଭିତରେ ଏହି ଘଟଣା ପରେ ଅନେକ ଶକ୍ତି, ସାମର୍ଥ୍ୟ ଓ ସାହସ ସୃଷ୍ଟି ହୋଇଛି । ମୁଁ କାହା ବିରୁଦ୍ଧରେ ନାହିଁ କିମ୍ବା କୌଣସି ସନ୍ତ୍ରାସବାଦୀ ଗୋଷ୍ଠୀ ପ୍ରତି କୌଣସି ପ୍ରତିଶୋଧ ପରାୟଣ ମନୋଭାବ ମୁଁ ରଖିନାହିଁ । ସବୁ ପିଲାଙ୍କର ପାଠ ପଢ଼ିବାର ଅଧିକାର ପାଇଁ ମୁଁ ଆପଣମାନଙ୍କ ପାଖରେ ମୋର ମତ ରଖୁଛି । ଏପରିକି ତାଲିବାନ ଓ ସନ୍ତ୍ରାସବାଦୀ ବ୍ୟକ୍ତିମାନଙ୍କର ପୁଅ ଝିଅମାନେ ଯେପରି ଶିକ୍ଷାର ଆଲୋକ ଲାଭ କରିପାରିବେ ଓ ପାଠ ପଢ଼ିବାର ସୁଯୋଗରୁ ବଞ୍ଚିତ ହେବେ ନାହିଁ ମୁଁ ତାହା ହିଁ ଚାହେଁ" ।

ମଲାଲା ଏହା ଭିତରେ ପାକିସ୍ତାନରୁ ଓ ବିଭିନ୍ନ ଆନ୍ତର୍ଜାତିକ ସ୍ତରରୁ ନାନା ସମ୍ମାନ ଓ ପୁରସ୍କାର ପାଇବାର ଗୌରବ ଲାଭ କରିଛନ୍ତି । ତାଙ୍କ ଉପରେ ବହୁ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇବାରେ ଲାଗିଛି । ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜର୍ଜ ବୁସ୍‌ଙ୍କର ପତ୍ନୀ ଲରା ବୁସ ଆମେରିକାର ଏକ ଦୈନିକ ସମ୍ବାଦପତ୍ର "ୱାଶିଂଟନ ପୋଷ୍ଟ" ରେ ମଲାଲାଙ୍କ ସାହସିକ କାର୍ଯ୍ୟ ପାଇଁ ତାଙ୍କୁ ଗଭୀର ଶ୍ରଦ୍ଧା ଜଣାଇ ଲେଖା ପ୍ରକାଶ କରିଛନ୍ତି । ପାକିସ୍ତାନର ଏକ ମଫସଲ ଗ୍ରାମର ୧୬ ବର୍ଷର ଝିଅ ଆଜି ତାଙ୍କର ମାନବବାଦୀ ଓ ପ୍ରଗତିଶୀଳ ଦୃଷ୍ଟିଭଙ୍ଗୀ ପାଇଁ ଏକ ଆନ୍ତର୍ଜାତିକ ନାଗରିକର ସମ୍ମାନ ପାଇବା ଏକ ଗୌରବର ଘଟଣା କହିଲେ ଅତ୍ୟୁକ୍ତି ହେବନାହିଁ ।

ନିକଟରେ ଆଉ ଜଣେ ଝିଅ ତାଙ୍କର ସଂସ୍କାରବାଦୀ ଦୃଷ୍ଟିଭଙ୍ଗୀ ପାଇଁ ମରଣାନ୍ତକ ଆକ୍ରମଣର ଶିକାର ହୋଇଛନ୍ତି । ସେ ହେଲେ ଓଡିଶାର ଝିଅ, ନାମ ଲିଙ୍କନ ସୁବୁଦ୍ଧି ।

ଲିଙ୍କନଙ୍କ ଘର ନୟାଗଡ଼ ଜିଲ୍ଲାର ଶରଣକୂଳ ଗ୍ରାମରେ । ବାପା ପ୍ରତିରକ୍ଷା ବିଭାଗର ଜଣେ ଅବସରପ୍ରାପ୍ତ କର୍ମଚାରୀ । ତେବେ ଦାଦା ରାଜକିଶୋର ସୁବୁଦ୍ଧି ଓ ମା' ଅହଲ୍ୟା ଦେବୀ ରହନ୍ତି ଭୁବନେଶ୍ୱରରେ । ଲିଙ୍କନ ବୃତ୍ତିରେ ଜଣେ ସଫ୍‌ଟୱେୟାର ଇଞ୍ଜିନିୟର । ଚାକିରୀ କରନ୍ତି ଏକ ସଫ୍‌ଟ୍‌ୱେୟାର କମ୍ପାନୀରେ ଓ ରହନ୍ତି ଦିଲ୍ଲୀ ପାଖରେ ନୋଇଡାରେ । ଲିଙ୍କନ ଚାକିରୀ କରିଥିଲେ ବି ଜଣେ ସମାଜକର୍ମୀ । ନିଜ ରୋଜଗାରର ଏକ ମୁଖ୍ୟ ଅଂଶ ଖର୍ଚ୍ଚ କରନ୍ତି ଅବହେଳିତ ପିଲାଙ୍କର ଶିକ୍ଷାରେ ଓ ସମାଜ ସେବାରେ । "ଏଡ ଇଣ୍ଡିଆ" ନାମକ ଏକ ବେସରକାରୀ ସଂଗଠନରେ ସେ ସେବା ପ୍ରଦାନ କରନ୍ତି । ଏହି ସଙ୍ଗଠନ ଜରିଆରେ ଲିଙ୍କନ ମହିଳାମାନଙ୍କ ଭିତରେ ସଚେତନତା ସୃଷ୍ଟି କରିବା ଓ ବାଲ୍ୟ ବିବାହ ବନ୍ଦ କରିବାକୁ ପ୍ରୟାସ କରି ଆସୁଥିଲେ । ବିଶେଷ କରି ବାଲ୍ୟ ବିବାହ ପରି ବ୍ୟବସ୍ଥା ବିରୁଦ୍ଧରେ ସେ ଲୋକମାନଙ୍କୁ ସଚେତନ କରୁଥିଲେ । ପନ୍ଦରବର୍ଷ ବୟସର ଝିଅକୁ ତାଙ୍କର ଇଚ୍ଛା ବିରୁଦ୍ଧରେ ପରିବାର ଲୋକମାନେ ବିବାହ କରିଦେବାକୁ ପ୍ରୟାସ କରୁଥିଲେ । ଏହି ସମ୍ବାଦ ପାଇ ଲିଙ୍କନ ସେଠାରେ ପହଞ୍ଚି ଏହା ନ କରିବାକୁ ପରିବାର ଲୋକମାନଙ୍କୁ ବୁଝାଇବା ସମୟରେ ସେ ଆକ୍ରମଣର ଶିକାର ହେଲେ । ସମ୍ବାଦ ଅନୁଯାୟୀ ଝିଅଙ୍କର ପରିବାର ଲୋକେ ଓ ଭାବୀ ଜାମାତା ତାଙ୍କୁ ଛୁରୀରେ ଆକ୍ରମଣ କଲେ ଓ ପରିବାର ଲୋକେ ତାଙ୍କ ମୁଣ୍ଡକୁ ଇଟାରେ ଆଘାତ ଦେଲେ । ଏହି ମରଣାନ୍ତକ ଆକ୍ରମଣରେ ସେ କ୍ଷତବିକ୍ଷତ ହେବା ସମୟରେ ସ୍ଥାନୀୟ କେତେକ ବ୍ୟକ୍ତି ତାଙ୍କୁ ଉଦ୍ଧାର କରି ନିକଟସ୍ଥ ଏକ ଡାକ୍ତରଖାନାକୁ ଆଣିଲେ । ତାଙ୍କ ମୁଣ୍ଡରେ ଅନେକ ଆଘାତ ଯୋଗୁଁ ଗୁଡିଏ ଷ୍ଟିଚ ପଡିବା ସହ ସେ ଆଇ ସି ୟୁ ରେ ରହି ଚିକିତ୍ସିତ ହେଉଛନ୍ତି । ସମ୍ବାଦ ଅନୁଯାୟୀ ଏକ ଉଦ୍‌ବେଗଜନକ ସ୍ଥିତିରୁ ତାଙ୍କ ସ୍ୱାସ୍ଥ୍ୟାବସ୍ଥା ଭଲ ଆଡକୁ ଆସିବା ଜଣାପଡିଛି । ସୁଖର କଥା ଓଡିଶା ସରକାର ତାଙ୍କର ଚିକିତ୍ସା ପାଇଁ ବ୍ୟଗ୍ରତା ପ୍ରକାଶ କରିଛନ୍ତି ଓ ତାଙ୍କ ଚିକିତ୍ସାର ସମସ୍ତ ଖର୍ଚ୍ଚ ସରକାର ବହନ କରିବେ ବୋଲି ଘୋଷଣ କରିଛନ୍ତି ।

ବାଲ୍ୟ ବିବାହ ପରି ଏକ ମନ୍ଦ ବ୍ୟବସ୍ଥାକୁ ସରକାରୀ ଆଇନ ବଳରେ ବନ୍ଦ କରାଯାଇଥିବା ବେଳେ ସାମାଜିକ ସଚେତନତା ଅଭାବରେ ଏହା ସମାଜରେ ଏବେ ବି କରାଯାଉଛି । ଯୌତୁକ ପ୍ରଥା, ଅସ୍ପୃଶ୍ୟତା ବିରୁଦ୍ଧରେ ଆଇନ ତ ରହିଛି, ତଥାପି ଏସବୁ ସାମାଜିକ ଜୀବନରେ ଅନେକାଂଶରେ ରହିଛି । ଲୋକମାନେ ସାମାଜିକ ସ୍ତରରେ ଶିକ୍ଷିତ ନ ହେଲେ, ଜନଜୀବନରୁ ନାନା କୁସଂସ୍କାର ଓ ମନ୍ଦ ପରମ୍ପରାର ବିଲୋପ ହେବ ନାହିଁ । ଆଇନ କେବଳ ଆଇନ ବାଟରେ ରହିଯିବ । ତେବେ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବାକୁ ହେଲେ ଶିକ୍ଷା, ଗଣମାଧ୍ୟମ, ସଚେତନତା କାର୍ଯ୍ୟକ୍ରମ ଇତ୍ୟାଦିର ଗୁରୁତ୍ୱ ରହିଛି । ଜନଗଣଙ୍କ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଆଣିବାକୁ ସୁଚିନ୍ତିତ ପଦକ୍ଷେପ ନେବାର ଆବଶ୍ୟକତା ରହିଛି । ଯେଉଁ ବ୍ୟକ୍ତିମାନେ ସମାଜରୁ କୁସଂସ୍କାର ଦୂର କରି ବୈଜ୍ଞାନିକ

ସଚେତନତା, ମାନବିକ ମୂଲ୍ୟବୋଧ, ସାମାଜିକ ସମତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ଆଦର୍ଶ ସୃଷ୍ଟି କରିବାକୁ ପ୍ରୟାସ କରୁଛନ୍ତି, ସେମାନେ ନାନା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହେଉଛନ୍ତି । ନିରକ୍ଷରତା, ଦାରିଦ୍ର୍ୟ ଓ ଯୁଗ ଯୁଗର ନିରର୍ଥକ ପରମ୍ପରା ଯୋଗୁଁ ଜନମାନସରେ ଅନେକ କୁସଂସ୍କାର ଓ ଅହେତୁକ ଭାବନା ରହିଛି । ଯେଉଁ ବିଚାରଶୀଳ ହେତୁବାଦୀ ଓ ସମାଜକର୍ମୀମାନେ ସମାଜର ରୂଢ଼ିବାଦୀ ଦୃଷ୍ଟିଭଙ୍ଗୀ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛନ୍ତି ସେମାନେ ଧର୍ମାନ୍ଧ ଲୋକମାନଙ୍କ ଦ୍ୱରା ନିନ୍ଦିତ ହେଉଛନ୍ତି ବା ନିର୍ଯ୍ୟାତିତ ହେଉଛନ୍ତି । ନିକଟ ଅତୀତରେ ମହାରାଷ୍ଟ୍ର ଅନ୍ଧ ଶ୍ରଦ୍ଧା ନିର୍ମୂଳନ ସମିତିର ପ୍ରତିଷ୍ଠାତା ହେତୁବାଦୀ ବୁଦ୍ଧିଜୀବୀ ଓ ସଂସ୍କାରକ ଡାକ୍ତର ନରେନ୍ଦ୍ର ଦାଭୋଲକର ପୁନେଠାରେ ଆତତାୟୀର ଗୁଳିରେ ନିହତ ହୋଇଛନ୍ତି ।

ଏସବୁ ସତ୍ତ୍ୱେ ସମାଜରେ ତଥାପି ମଲାଲା ଓ ଲିଙ୍କନମାନେ ରହିଛନ୍ତି । ସେହିମାନେ ଲୋକଲୋଚନର ଅଲକ୍ଷ୍ୟରେ ସମାଜ ପାଇଁ କାର୍ଯ୍ୟ କରୁଛନ୍ତି । ନିଜକୁ ବିପନ୍ନ କରି ସମାଜରେ ଜୀବନର ଗୁଣାତ୍ମକମାନ ବୃଦ୍ଧି କରିବାକୁ ପ୍ରୟାସ କରୁଛନ୍ତି । କିଛି ବ୍ୟକ୍ତି କୀର୍ତ୍ତି ଅବିଦିତ ରହି ଜନଜୀବନକୁ ଉନ୍ନତ କରିବାକୁ ନିଜର ସାଧ୍ୟ ମତେ ଉଦ୍ୟମ କରୁଛନ୍ତି । ବିଶେଷତଃ ଯେଉଁମାନଙ୍କ ଭିତରେ ଏକ ସମ୍ବେଦନଶୀଳ ହୃଦୟ ରହିଛି, ଯେଉଁମାନେ ମାନବିକତାକୁ ପ୍ରାଧାନ୍ୟ ଦେଇ ଆସିଛନ୍ତି ତଥା ଯେଉଁମାନେ ମାନବିକ ମର୍ଯ୍ୟାଦାକୁ ମହତ୍ତ୍ୱ ଦିଅନ୍ତି ସେମାନେ ଧାର୍ମିକ ରୂଢ଼ିବାଦ, କୁସଂସ୍କାର, ମାନବିକତା-ବିରୋଧୀ ବ୍ୟବସ୍ଥାକୁ ବିରୋଧ କରିଥାନ୍ତି । ଏହି ବିରୋଧ ଭିତରେ ସେମାନେ ଅତ୍ୟାଚାରିତ ହୁଅନ୍ତି ବା ମରଣାନ୍ତକ ଆକ୍ରମଣର ଶିକାର ହୁଅନ୍ତି । ତେବେ ସେହିମାନଙ୍କର ତ୍ୟାଗ, ମହତ୍ତର ଆକାଂକ୍ଷା ଓ ମାନବିକ ଦୃଷ୍ଟିଦ୍ୱାରା ଅନ୍ୟାୟ ତଥା ମନ୍ଦ ପରିସ୍ଥିତିରେ ପରିବର୍ତ୍ତନ ଆସେ ଓ ସାମାଜିକ ପ୍ରଗତିର ରଥ ଆଗକୁ ଯାଏ । ସେହିମାନେ ସଂସ୍କାରିତ ଚେତନାର ଯେଉଁ ବାର୍ତ୍ତା ଦିଅନ୍ତି ତାହା ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣେ । ମଲାଲା ଓ ଲିଙ୍କନ ସେହି ସଂସ୍କାରିତ ଚେତନାର ପ୍ରତୀକ କହିଲେ ଅତ୍ୟୁକ୍ତି ହେବନାହିଁ ।

(୯.୧୦.୧୩)



# ମହାତ୍ମା ଓ ମାଣ୍ଡେଲା

ବିଂଶ ଶତାବ୍ଦୀର ଦୁଇ ବିଶିଷ୍ଟ ମାନବବାଦୀ, ଶାନ୍ତିକାମୀ ଜନନେତା ହେଲେ ମହାତ୍ମା ଗାନ୍ଧୀ (୧୮୬୯-୧୯୪୮) ଓ ନେଲସନ ମାଣ୍ଡେଲା (୧୯୧୮-୨୦୧୩)। ଏହି ଦୁଇ ନେତା ଦୁଇଟି ମହାଦେଶରେ ଥିବା ଦୁଇଟି ରାଷ୍ଟ୍ରର ନାଗରିକ, ତେବେ ଉଭୟ ଗୋଟିଏ ଦେଶରେ ରାଜନୈତିକ କାର୍ଯ୍ୟ କରିବାର ସୁଯୋଗ ପାଇଛନ୍ତି, ଯାହା ହେଲା ଦକ୍ଷିଣ ଆଫ୍ରିକା। ଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ପ୍ରାୟ ଦୁଇ ଦଶନ୍ଧି ଧରି ରହି ପ୍ରଥମ ବିଶ୍ୱ ଯୁଦ୍ଧ ସମୟକୁ ଭାରତ ଫେରିଆସି ଭାରତର ସ୍ୱାଧୀନତା ଆନ୍ଦୋଳନରେ ସମ୍ପୃକ୍ତ ହୋଇଛନ୍ତି। ମହାତ୍ମା ଗାନ୍ଧୀ ଆଫ୍ରିକା ଛାଡିବାର ଚାରିବର୍ଷ ପରେ ନେଲସନ ମାଣ୍ଡେଲାଙ୍କର ଜନ୍ମ। ଗାନ୍ଧୀ ଯେପରି ଭାରତରେ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରିଛନ୍ତି ଓ ଦେଶର ରାଜନୈତିକ ଆନ୍ଦୋଳନର କର୍ଣ୍ଣଧାର ହୋଇଛନ୍ତି, ଠିକ୍ ସେହିପରି ମାଣ୍ଡେଲା ଦକ୍ଷିଣ ଆଫ୍ରିକାରେ ଜନଆନ୍ଦୋଳନର ନେତୃତ୍ୱ ନେଇ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ସଂଗ୍ରାମ କରିଛନ୍ତି। ଗାନ୍ଧୀଙ୍କ ଠାରୁ ପାଖାପାଖି ପଚାଶ ବର୍ଷ ସାନ ଥିବା ମାଣ୍ଡେଲା ତାଙ୍କ ସଂଗ୍ରାମର ପନ୍ଥା ଭାବେ ଗାନ୍ଧୀଙ୍କ ଆଦର୍ଶକୁ ଅନୁସରଣ କରିଛନ୍ତି। ଉଭୟଙ୍କ ବିଚାର ଓ କର୍ମପନ୍ଥା ଭିତରେ ବହୁ ସାମଂଜସ୍ୟ ରହିଥିବା ପୃଷ୍ଠଭୂମିରେ ମାଣ୍ଡେଲାଙ୍କୁ 'ଦକ୍ଷିଣ ଆଫ୍ରିକାର ଗାନ୍ଧୀ' ବୋଲି କୁହାଯାଇଥାଏ। ଆନ୍ତର୍ଜାତିକ ପୃଷ୍ଠଭୂମିରେ ଏହି ଦୁଇ ମହାନ ନେତା ଆଜି ଶାନ୍ତି, ନ୍ୟାୟ ଓ ଅହିଂସାର ପ୍ରବକ୍ତା ଭାବେ ସ୍ୱୀକୃତି ଲାଭ କରିଛନ୍ତି, ତେବେ କୌତୂହଳର ବିଷୟ ହେଉଛି ଏ ଉଭୟଙ୍କ ପାଇଁ ଦକ୍ଷିଣ ଆଫ୍ରିକା ହିଁ କର୍ମକ୍ଷେତ୍ର ହୋଇଛି। ଜଣେ ଡରକୁଳା, ଅତି ମାମୁଲି ଛାତ୍ର ଦକ୍ଷିଣ ଆଫ୍ରିକାରେ ନବଜନ୍ମ ନେଇ ବିପ୍ଳବୀ ହୋଇଛନ୍ତି ଓ ଭାରତର ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ହୋଇ ସାରା ବିଶ୍ୱରେ ଏକ ବୈଚାରକ ଆଲୋଡନ ସୃଷ୍ଟି କରି ମହାତ୍ମା ପାଲଟିଛନ୍ତି। ଗାନ୍ଧୀ ଭାରତର ରାଷ୍ଟ୍ରପିତା ଓ ମାଣ୍ଡେଲା ଦକ୍ଷିଣ ଆଫ୍ରିକାର ରାଷ୍ଟ୍ରପିତା ଭାବେ ସ୍ୱୀକୃତ ହୋଇଛନ୍ତି। ଉଭୟଙ୍କୁ ଦକ୍ଷିଣ ଆଫ୍ରିକା

ମହାନ ହେବାରେ ପରିବେଶ ଦେଇଛି । ଗାନ୍ଧୀଙ୍କର ଅନୁଗାମୀ ମାଣ୍ଡେଲା ଏକଦା କହିଥିଲେ-' ଭାରତୀୟମାନେ ଆମ ଦେଶକୁ ଜଣେ ମୋହନ ଦାସଙ୍କୁ ପଠାଇଥିଲେ, ଆମ ଦେଶ ତାଙ୍କୁ ମହାତ୍ମା କରି ଭାରତକୁ ଫେରାଇ ଦେଇଛି ।' ଗାନ୍ଧୀଙ୍କ ମୃତ୍ୟୁରେ ସାରା ବିଶ୍ୱ ଯେପରି ଶୋକ ବ୍ୟକ୍ତ କରିଛି ଠିକ୍ ସେହିପରି ମାଣ୍ଡେଲାଙ୍କ ମୃତ୍ୟୁରେ ପୃଥିବୀରେ ଶୋକ ପ୍ରକାଶ ପାଇଛି ।

ଗାନ୍ଧୀ ଓ ମାଣ୍ଡେଲା ଉଭୟ ଥିଲେ ବିପ୍ଳବୀ । ତେବେ ସେମାନେ କୌଣସି ହିଂସାତ୍ମକ ବିପ୍ଳବରେ ବିଶ୍ୱାସ କରୁ ନଥିଲେ । ବିପ୍ଳବ କହିଲେ ସାଧାରଣତଃ ଏକ ପ୍ରତିଷ୍ଠିତ ବ୍ୟବସ୍ଥାକୁ ହିଂସାତ୍ମକ ପନ୍ଥାରେ ପରିବର୍ତ୍ତନକୁ ବୁଝାଏ, କିନ୍ତୁ ଉଭୟ 'ବିପ୍ଳବ' ପ୍ରତ୍ୟୟଟିରେ ବିପ୍ଳବ ସୃଷ୍ଟି କରିଛନ୍ତି । ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ମାନସିକତାରେ ପରିବର୍ତ୍ତନ ଆବଶ୍ୟକ, ତାହା ଘୃଣା ଓ ପ୍ରତିହିଂସା ପରିବର୍ତ୍ତେ ପ୍ରେମ ଓ ଅହିଂସା ଉପାୟରେ ସମ୍ଭବ ହୋଇପାରିବ । ଏହା ହିଁ ଥିଲା ସତ୍ୟାଗ୍ରହର ଆଦର୍ଶ, ଯେଉଁ ଆଦର୍ଶର ସୂତ୍ରଧର ଥିଲେ ଗାନ୍ଧୀ । ଗାନ୍ଧୀ ଯେଉଁ ପନ୍ଥାରେ ସାମାଜିକ ଓ ରାଜନୈତିକ ବ୍ୟବସ୍ଥାରେ ପରିବର୍ତ୍ତନ ପାଇଁ ଜୀବନସାରା ପ୍ରୟାସ କରିଥିଲେ, ସେହି ପନ୍ଥାକୁ ଦକ୍ଷିଣ ଆଫ୍ରିକାରେ ମାଣ୍ଡେଲା, ଆମେରିକାରେ ମାର୍ଟିନ ଲୁଥର କିଙ୍ଗ ଜୁନିଅର ପ୍ରୟୋଗ କରି ବ୍ୟବସ୍ଥାରେ ପରିବର୍ତ୍ତନ ଆଣିଛନ୍ତି । ସମାଜରୁ ଅନ୍ୟାୟ, ଭେଦଭାବ, ଶୋଷଣକୁ ଦୂର କରିବାକୁ ସେମାନେ ଯେଉଁ ପନ୍ଥାକୁ ଗ୍ରହଣ କରିଛନ୍ତି ତାହା ଯେ ସବୁଠାରୁ ସଭ୍ୟ ଓ ମାନବିକ ତାହା ହିଁ ସେମାନେ ବାସ୍ତବରେ ପ୍ରମାଣ କରି ଯାଇଛନ୍ତି ।

ଭାରତ ସାମ୍ରାଜ୍ୟବାଦୀ ଶକ୍ତିଦ୍ୱାରା କବଳିତ ହୋଇ ରହିଥିଲା ଓ ଦେଶରୁ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତିକୁ ଅପସାରଣ କରି ପାରିଲେ ଦେଶର ସ୍ୱାଧୀନତା ଆସିପାରିବ ବୋଲି ଗାନ୍ଧୀ ବିଦେଶୀ ଶାସନ ବିରୁଦ୍ଧରେ ଜନ ଆନ୍ଦୋଳନ ଗଢ଼ି ତୋଳିଥିଲେ । ଦକ୍ଷିଣ ଆଫ୍ରିକାରେ ସ୍ଥିତି ଟିକଏ ଭିନ୍ନ ଥିଲା । ସେଠାକୁ ଷୋଡ଼ଶ ଶତାବ୍ଦୀ ଠାରୁ ସାମ୍ରାଜ୍ୟବାଦ ଆସିଥିଲା । ୧୪୯୭ ରେ ଆଫ୍ରିକାକୁ ଜଳପଥ ଆବିଷ୍କୃତ ହେବାପରେ ଓ ସେଠାରେ ହୀରାଖଣିର ସମ୍ବାଦରୁ ୟୁରୋପରୁ ଲୋକମାନେ ଯାଇ ଆଫ୍ରିକାର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟକୁ ନିଜର ଉପନିବେଶ କଲେ । ତେବେ କାଳକ୍ରମେ ୟୁରୋପର ଲୋକମାନେ ସେଠାରେ ସ୍ଥାୟୀ ଭାବେ ରହିଲେ ଓ ସେଠିକାର ନାଗରିକ ହୋଇଗଲେ । ୟୁରୋପୀୟ ଲୋକମାନେ ଥିଲେ ଗୋରା ଓ ଆଫ୍ରିକୀୟ ଲୋକମାନେ ଥିଲେ କଳା । ସୁତରାଂ ଏକ ବର୍ଣ୍ଣଗତ ବୈଷମ୍ୟ ସମାଜରେ ମୁଣ୍ଡ ଟେକିଲା । ଉପନିବେଶ ସ୍ଥାପନ କରିଥିବା ଲୋକମାନେ ସଂଖ୍ୟାନ୍ୟୂନ ହେଲେ ମଧ କ୍ଷମତା, ଅର୍ଥ ଓ ଶିକ୍ଷାରେ ଶକ୍ତିଶାଳୀ ଥିଲେ ଓ ସ୍ଥାନୀୟ ମୂଳ ଅଧିବାସୀମାନେ ସେ ଦୃଷ୍ଟିରୁ

ବହୁ ପଛରେ ରହିଥିଲେ । ଚାରୋଟି ରାଜ୍ୟକୁ ନେଇ ଦକ୍ଷିଣ ଆଫ୍ରିକୀୟ ରାଷ୍ଟ୍ର ୧୯୧୦ ରେ ସ୍ଥାପନ ହେଲା । ସାମାଜିକ ସ୍ତରରେ ରହିଥିବା ବର୍ଣ୍ଣଭେଦ କାଳକ୍ରମେ ରାଜନୈତିକ ଦୃଶ୍ୟପଟରେ ଏକ ଅନ୍ୟାୟ ଓ ଶୋଷଣ ବ୍ୟବସ୍ଥାକୁ ଦୃଢ଼ୀଭୂତ କଲା । ବର୍ଣ୍ଣ ବୈଷମ୍ୟ ବା ଯାହାକୁ 'ଆପରଥେଡ' କୁହାଯାଉଥିଲା ତାହା ୧୯୪୮ରେ ଏକ ଆନୁଷ୍ଠାନିକ ରୂପ ନେଲା । ଦେଶର ଜନସଂଖ୍ୟାର ପାଖାପାଖି ଏକ ଚତୁର୍ଥାଂଶ ଗୋରା ଲୋକମାନେ ସବୁ ଜମିକୁ ଦଖଲରେ ରଖିଥିଲେ ଓ ରାଷ୍ଟ୍ରୀୟ ସମ୍ପତ୍ତିର ମୁଖ୍ୟ ଉପଭୋକ୍ତା ଥିଲେ । ଗୋରା ଲୋକମାନେ କ୍ଷମତାର ଅଧିକାରୀ ଥିଲେ ଓ ସମସ୍ତ ସରକାରୀ କର୍ମସଂସ୍ଥାନ ସେମାନଙ୍କ ନିୟନ୍ତ୍ରଣରେ ରହିଥିଲା । କଳାଲୋକମାନଙ୍କ ଉପରେ ବିଭିନ୍ନ କଟକଣା ରହିଥିଲା, ଗୋଟିଏ ରାଜ୍ୟର ଲୋକ ଦକ୍ଷିଣ ଆଫ୍ରିକାର ଅନ୍ୟ ରାଜ୍ୟକୁ ଯିବାକୁ ହେଲେ ସରକାରଙ୍କ ଅନୁମତି ଜନିତ ପାସପୋର୍ଟ କରିବାକୁ ପଡୁଥିଲା । ଏହା ସହିତ ଗୋଟିଏ ରାଜ୍ୟରେ ଗୋରାଲୋକଙ୍କ ବସ୍ତିକୁ ଯିବାବେଳେ କଳାଲୋକମାନଙ୍କୁ ନିଜର 'ପରିଚୟ ପତ୍ର' ନେବାକୁ ପଡୁଥିଲା । ଜନସଂଖ୍ୟାକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଥିଲା ଯଥା କଳା, ଗୋରା ଓ ରଙ୍ଗଯୁକ୍ତ । ଆଫ୍ରିକାର ଲୋକମାନେ ଥିଲେ କଳା, ୟୁରୋପୀୟମାନେ ଗୋରା ଓ ଭାରତ ଭଳି ଏସୀୟ ରାଷ୍ଟ୍ରଗୁଡିକରୁ ସେ ଦେଶକୁ ଯାଇଥିବା ଲୋକମାନେ ହେଲେ ରଙ୍ଗଯୁକ୍ତ । ବର୍ଣ୍ଣ-ବର୍ଣ୍ଣ ଭିତରେ ବିବାହ ନିଷେଧ ଥିଲା । ଗୋରା ଲୋକମାନେ ସବୁ ସ୍ତରରେ ଉଚ୍ଚଶ୍ରେଣୀର ବୋଲି ଯେଉଁ ସମ୍ମାନ, ସୁଯୋଗ ପାଉଥିଲେ, କଳା ଓ ରଙ୍ଗ ଯୁକ୍ତ ଲୋକମାନେ ତାହା ପାଇପାରୁନଥିଲେ । କଳା ଓ ରଙ୍ଗଯୁକ୍ତ ଲୋକମାନଙ୍କର ରାଜନୈତିକ କ୍ଷମତା ସଙ୍କୁଚିତ ଥିଲା । ଉଭୟ ରାଜନୈତିକ ଓ ସାମାଜିକ ସ୍ତରରେ ଏହି ଲୋକମାନେ ନାନା ବୈଷମ୍ୟର ଶିକାର ହେଉଥିଲେ । ଭାରତ ବର୍ଷରେ ଦଳିତମାନେ ଯେପରି ସ୍ୱାଧୀନତା ପୂର୍ବରୁ ନ୍ୟୂନ ହୋଇରହିଥିଲେ ଓ ମାନବିକ ଅଧିକାରରୁ ନାନା ଭାବେ ବଞ୍ଚିତ ଥିଲେ, ଦକ୍ଷିଣ ଆଫ୍ରିକାରେ ଗୋରା ହୋଇ ନଥିବା ଲୋକମାନେ ସେହିପରି ମାନବିକ ଅଧିକାରରୁ ବଞ୍ଚିତ ରହିଥିଲେ ।

ଏହି ବୈଷମ୍ୟ, ଶୋଷଣ ଓ ଅନ୍ୟାୟ ବିରୁଦ୍ଧରେ ଦକ୍ଷିଣ ଆଫ୍ରିକାରେ କଳା ଲୋକମାନେ ନିଜର ମାନବିକ ଅଧିକାର ପାଇଁ ୧୯୫୦ ରୁ ସଂଗ୍ରାମ ଆରମ୍ଭ କଲେ । ଆଫ୍ରିକାନ ନେସନାଲ କଂଗ୍ରେସ ବା ଏଏନ୍‌ସି ଆପରଥେଡକୁ ବିଲୋପ କରିବା ପାଇଁ ଦେଶରେ ଆଇନ ଅମାନ୍ୟ ଆରମ୍ଭ କଲା ଓ ତା'ର ପୁରୋଭାଗରେ ରହିଲେ ମାଣ୍ଡେଲା । ଏହି ଯେଉଁ ଆନ୍ଦୋଳନ ଆରମ୍ଭ ହେଲା, ସେଥିରେ ବହୁ ଲୋକ ପ୍ରାଣବଳି ଦେଇଛନ୍ତି, ପୋଲିସ ଠାରୁ ନିର୍ଯ୍ୟାତନା ସହ୍ୟ କରିଛନ୍ତି । ତେବେ ସରକାର ସମସ୍ତ ଦମନମୂଳକ ପଦକ୍ଷେପ ନେଲେ ମଧ୍ୟ ଆନ୍ଦୋଳନ ଚାଲୁରହିଛି । ମାଣ୍ଡେଲା ବି ଗିରଫ ହେଲେ ଓ

୧୯୬୪ ରେ ତାଙ୍କୁ ଆଜୀବନ କାରାଦଣ୍ଡ ମିଳିଲା । ସାଧାରଣ ମଣିଷର ଅଧିକାର, ସମତା ଓ ସାମାଜିକ ନ୍ୟାୟ ପାଇଁ ସଂଗ୍ରାମ କରୁଥିବା ଏହି ଜନନେତା ୨୭ ବର୍ଷରୁ ଅଧିକ ସମୟ ବନ୍ଦୀଜୀବନ ବିତାଇଲେ । ସାରା ବିଶ୍ୱରୁ ତାଙ୍କର ମୁକ୍ତି ପାଇଁ ଚାପ ପଡିଲେ ବି ଗୋରା ସରକାର ତାଙ୍କୁ  ମୁକ୍ତ କଲେ ନାହିଁ । ଗୋରା ସରକାର ଆଫ୍ରିକୀୟ ଜାତୀୟ କଂଗ୍ରେସକୁ ବେଆଇନ ଘୋଷଣା କରି ଆପରଥେଡକୁ ଚାଲୁରଖିଲେ । ବର୍ଷ ବର୍ଷ ଧରି ସଂଗ୍ରାମ, ଆନ୍ଦୋଳନ ଦେଶରେ ଚାଲୁ ରହିଲା, ତେବେ ସମସ୍ୟାର ସମାଧାନ ହେଲା ନାହିଁ । ଏଥିପାଇଁ ଦକ୍ଷିଣ ଆଫ୍ରିକୀୟ ରାଷ୍ଟ୍ର ଉପରେ ଆନ୍ତର୍ଜାତିକ ଚାପ ପଡିଛି, କେତେକ ରାଷ୍ଟ୍ର ବିଭିନ୍ନ କଟକଣା ଜାରି କରିଛନ୍ତି । ଯେତେବେଳେ ଡି.କ୍ଲାର୍କ କ୍ଷମତାକୁ ଆସିଛନ୍ତି ସେ କେତେକ ପଦକ୍ଷେପ ନେଇ ଦେଶରେ ଏକ ଶାନ୍ତିପୂର୍ଣ୍ଣ ବାତାବରଣ ପାଇଁ ପ୍ରୟାସ କରିଛନ୍ତି । ଆଫ୍ରିକୀୟ ନେସନାଲ କଂଗ୍ରେସକୁ ଯେଉଁ ବେଆଇନ କରାଯାଇଥିଲା, ତାକୁ ସେ ଉଠାଇ ଦେଇଛନ୍ତି ଓ କେତେକ ପ୍ରଗତିଶୀଳ ପଦକ୍ଷେପ ନେଇଛନ୍ତି । ଶେଷରେ ଦୀର୍ଘ ସାଢ଼େ ସତେଇଶ ବର୍ଷର ବନ୍ଦୀ ଜୀବନ ପରେ ମାଣ୍ଡେଲା କହିଛନ୍ତି- 'ମୋର ଦେଶବାସୀଙ୍କୁ ମୁଁ ଶାନ୍ତି, ଗଣତନ୍ତ୍ର ଓ ସ୍ୱାଧୀନତା ନାମରେ ବଧାଇ ଜଣାଉଛି । ମୁଁ ଆପଣମାନଙ୍କ ସମ୍ମୁଖରେ କୌଣସି ନେତା ବା ତ୍ରାଣକର୍ତ୍ତା ଭାବରେ ଦଣ୍ଡାୟମାନ ହୋଇନାହିଁ, ବରଂ ଆପଣମାନଙ୍କର ଜଣେ ସେବକ ଭାବରେ ଆପଣମାନଙ୍କୁ ସମ୍ବୋଧିତ କରୁଛି । ଏକ ଐତିହାସିକ ବିଶେଷ ଘଟଣା ଚକ୍ରରେ ମୁଁ ହୁଏତ କିଛି ନେତୃତ୍ୱ ନେବାର ସୁଯୋଗ ପାଇଛି, ହେଲେ ଆମେ ସମସ୍ତେ ନ୍ୟାୟ ଓ ମାନବିକ ଅଧିକାର ପାଇଁ ସଂଗ୍ରାମ କରିଛେ ଓ ତ୍ୟାଗ ସହ୍ୟ କରିଛେ । ସମଗ୍ର ବିଶ୍ୱର ଶାନ୍ତିକାମୀ ଓ ମାନବିକ ଅଧିକାରର ପ୍ରବକ୍ତା ଜନଗଣଙ୍କୁ ଦେଶବାସୀଙ୍କ ତରଫରୁ ମୁଁ କୃତଜ୍ଞତା ଜ୍ଞାପନ କରୁଛି, କାରଣ ସେହିମାନେ ହିଁ ଆମର ସଂଗ୍ରାମକୁ ଓ ମାନବିକ ଅଧିକାର ପାଇଁ ଆନ୍ଦୋଳନକୁ ନାନା ସମର୍ଥନ ଦେଇଛନ୍ତି ।

ମାଣ୍ଡେଲାଙ୍କ ମୁକ୍ତି ପରେ ଦେଶରେ ଗଣତନ୍ତ୍ର ପ୍ରତିଷ୍ଠା କରିବାକୁ ପ୍ରୟାସ ହୋଇଛି । ଏକ ସାମ୍ବିଧାନିକ ବ୍ୟବସ୍ଥା ପାଇଁ ମୂଳଦୁଆ ପଡିଛି ଓ ଦେଶରୁ ଆପରଥେଡ ଜନିତ ଭେଦଭାବ ଦୂର ହୋଇଛି । ଆପରଥେଡର ବିଲୋପ ପରେ ଦକ୍ଷିଣଆଫ୍ରିକା ବିଶ୍ୱ ଜାତିସଂଘ ଓ କମନୱେଲଥ ରାଷ୍ଟ୍ରର ସଭ୍ୟ ହୋଇଛି । ସାଧାରଣ ନିର୍ବାଚନରେ ଆଫ୍ରିକୀୟ ନେସନାଲ କଂଗ୍ରେସ ବିଜୟଲାଭ କରିବାରୁ ମାଣ୍ଡେଲା ଦେଶର ରାଷ୍ଟ୍ରପତି ହୋଇଛନ୍ତି । ତେବେ ଗୋଟିଏ ଟର୍ମ ରାଷ୍ଟ୍ରପତି ରହି ସେ କ୍ଷମତାରୁ ଓହରି ଯାଇଛନ୍ତି । ଦେଶ ନୂତନ ଗଣତାନ୍ତ୍ରିକ ସମ୍ବିଧାନ ୧୯୯୬ରୁ ଗ୍ରହଣ କରିଛି । ଦକ୍ଷିଣ ଆଫ୍ରିକାର ଇତିହାସରେ ଏକ ନୂତନ ଯୁଗ ଆରମ୍ଭ ହୋଇଛି ଓ ବର୍ଣ୍ଣବୈଷମ୍ୟ ଜନିତ ଭେଦଭାବ କବର ନେଇଛି ।

ସାରା ପୃଥିବୀରୁ ସାମ୍ରାଜ୍ୟବାଦର ବିଲୋପ ଦିଗରେ ଗାନ୍ଧୀ ଯେପରି ପଥ ପ୍ରଦର୍ଶକ ହୋଇଛନ୍ତି, ସେହିପରି ବର୍ଣ୍ଣବୈଷମ୍ୟ ଜନିତ ଭେଦଭାବ ଦୂର କରିବାରେ ମାଣ୍ଡେଲା ବିଶ୍ୱରେ ଇତିହାସ ସୃଷ୍ଟିକରିଛନ୍ତି । ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଗାନ୍ଧୀ ଓ ଦ୍ୱିତୀୟ ଭାଗରେ ମାଣ୍ଡେଲା ମାନବିକତା, ସାମାଜିକ ନ୍ୟାୟ ଓ ସମତା ପାଇଁ ସଂଗ୍ରାମ କରି ଆଜି ବିଶ୍ୱମାନବ ସ୍ତରକୁ ଉନ୍ନିତ ହୋଇଛନ୍ତି । ବିଶ୍ୱରେ ଶାନ୍ତି, ଅହିଂସା ଓ ଭ୍ରାତୃତ୍ୱ ସୃଷ୍ଟି କରିବାରେ ମହାତ୍ମା ଓ ମାଣ୍ଡେଲା ବିଶ୍ୱ ଦୃଶ୍ୟପଟରେ ଯେ ଅବିସ୍ମରଣୀୟ ହୋଇ ରହିବେ, ଏହା ନିଃସନ୍ଦେହ ମନେହୁଏ ।

(୨୫.୧୨.୧୩)



# ଜଣେ ବୁଦ୍ଧିଜୀବୀଙ୍କ ସ୍ମୃତିରେ

ବିଶିଷ୍ଟ ସାମ୍ବାଦିକ, ସୁଲେଖକ ଓ ବୁଦ୍ଧିଜୀବୀ ଖୁସବ୍ୱନ୍ତ ସିଂହଙ୍କର ପରିଣତ ବୟସରେ ମାର୍ଚ୍ଚ ୨୦, ୨୦୧୪ ଦିନ ଦେହାନ୍ତ ହୋଇଯାଇଛି । ତାଙ୍କ ବ୍ୟକ୍ତିତ୍ୱରେ ବୁଦ୍ଧି ଓ ବ୍ୟଙ୍ଗର ଏକ ସୁନ୍ଦର ସମନ୍ୱୟ ଦେଖିବାକୁ ମିଳେ । ତାଙ୍କ ଲେଖାରେ ମାନବିକ ଆବେଗ ଓ ସାମାଜିକ ସମସ୍ୟାର ଚିତ୍ର ପ୍ରତିଫଳିତ ହେବା ଦେଖାଯାଏ । ତାଙ୍କର ଲେଖା ଗଳ୍ପ, ଉପନ୍ୟାସ, ଇତିହାସ, ଧର୍ମ ଓ ପ୍ରବନ୍ଧ ସହିତ ସଂପୃକ୍ତ । ଜଣେ ବିଶିଷ୍ଟ ସ୍ତମ୍ଭକାର ଓ ଜାତୀୟ ସ୍ତରର ସମ୍ବାଦପତ୍ର ଓ ପତ୍ରିକାର ସଂପାଦକ ଭାବେ ସେ ନିଜ ସାମର୍ଥ୍ୟର ସ୍ୱାକ୍ଷର ରଖିଯାଇଛନ୍ତି ।

ଖୁସବ୍ୱନ୍ତଙ୍କର ଜନ୍ମ ଏକ ରକ୍ଷଣଶୀଳ ଶିଖ୍ ପରିବାରରେ ହଦାଲି ଗ୍ରାମରେ ଯାହା ଭାରତ ବିଭାଜନ ପରେ ପାକିସ୍ତାନରେ ରହିଛି । ଜନ୍ମ ହୋଇଥିଲା ଫେବୃୟାରୀ ଦୁଇ ୧୯୧୫ ମସିହାରେ । ପିତା ସର ଶୋଭା ସିଂହ ଥିଲେ ଜଣେ ବିଶିଷ୍ଟ ସିଭିଲ ଠିକାଦାର । ଖୁସବ୍ୱନ୍ତ ଦିଲ୍ଲୀ, ଲାହୋର ମହାବିଦ୍ୟାଳୟ ଓ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଶିକ୍ଷା ପ୍ରାପ୍ତ ହୋଇଥିଲେ । କର୍ମମୟ ଜୀବନ ଆରମ୍ଭ କରିଥିଲେ ଲାହୋରଠାରେ କିଛି ବର୍ଷ ଓକିଲାତି କରି । ଏହାପରେ ଭାରତ ସରକାରଙ୍କ ବୈଦେଶିକ ବିଭାଗରେ ଚାକିରି କରି କାନାଡା ଓ ଇଂଲଣ୍ଡରେ କିଛି ବର୍ଷ ଅତିବାହିତ କରିଥିଲେ । ଚାକିରିରୁ ବିଦାୟ ନେଇ ସେ ସାମ୍ବାଦିକତାରେ ଯୋଗ ଦେଲେ । ଆରମ୍ଭ କଲେ ତାଙ୍କର ସାହିତ୍ୟିକ ଜୀବନ । ଭାରତ ସରକାରଙ୍କ ପ୍ଲାନିଙ୍ଗ କମିସନଙ୍କ ଦ୍ୱାରା 'ଯୋଜନା' ନାମକ ପତ୍ରିକାର ସେ ପ୍ରତିଷ୍ଠାତା ସଂପାଦକ ହେଲେ । ଏହାପରେ ପ୍ରସିଦ୍ଧ ସାପ୍ତାହିକ ପତ୍ରିକା ଇଲଷ୍ଟ୍ରେଟେଡ ୱିକିଲର ସଂପଦନା କରି ଏହି ପତ୍ରିକାଟିକୁ ସାରା ଭାରତରେ ଜନପ୍ରିୟ କରାଇଥିଲେ । ଏଥିରୁ କିଛି ବର୍ଷ ପରେ ବିଦାୟ ନେଇ ନେସନାଲ ହେରାଲଡ୍ ଓ ତାପରେ ହିନ୍ଦୁସ୍ତାନ ଟାଇମ୍ସ ସମ୍ବାଦ ପତ୍ରର ସଂପାଦନା ଦାୟିତ୍ୱ ବହନ କରିଥିଲେ । ଦୀର୍ଘ ବର୍ଷ ପର୍ଯ୍ୟନ୍ତ ଜାତୀୟ ସ୍ତରର

ପତ୍ର ପତ୍ରିକାରେ ସେ ନିୟମିତ ସ୍ତମ୍ଭ ଲେଖୁଥିଲେ । ଗଳ୍ପ, ଉପନ୍ୟାସ କ୍ଷେତ୍ରରେ ସେ ନିଜ ସାରସ୍ୱତ ପ୍ରତିଭାର ସ୍ୱାକ୍ଷର ବି ରଖି ଯାଇଛନ୍ତି । ଏହା ସହିତ ଶିଖ୍ ମାନଙ୍କର ଇତିହାସ ଯେଉଁ ଦୁଇ ଖଣ୍ଡରେ ପ୍ରକାଶ କରିଛନ୍ତି ତାହା ପଂଜାବର ଇତିହାସ, ସଂସ୍କୃତି ଓ ଧର୍ମ ସଂପର୍କରେ ଏକ ଅନବଦ୍ୟ କୃତି । ତାଙ୍କର ଆତ୍ମଜୀବନୀ 'ଟ୍ରୁଥ, ଲଭ ଆଣ୍ଡ ଏ ଲିଟିଲ ମାଲିସ' ମଧ୍ୟ ଏକ ସୁଖପାଠ୍ୟ ପୁସ୍ତକ ଯେଉଁଥିରେ ତାଙ୍କ ଜୀବନର ଗୁରୁତ୍ୱପୂର୍ଣ୍ଣ ଘଟଣା ସହ ସାମାଜିକ ଜୀବନର ବହୁ ଘଟଣା ଜାଣିବାକୁ ମିଳିଥାଏ । ଦେଶ ବିଦେଶର କିଛି ବିଶିଷ୍ଟ ବ୍ୟକ୍ତିଙ୍କ ପ୍ରତି ତାଙ୍କର ଶ୍ରଦ୍ଧାଞ୍ଜଳି 'ଡେଥ୍ ଆଟ୍ ମାଇଁ ଡୋର ଷ୍ଟେପସ' ପୁସ୍ତକରେ ବ୍ୟକ୍ତ କରିଛନ୍ତି । ତାଙ୍କର ସମସ୍ତ ଲେଖା ଇଂରାଜୀ ଭାଷାରେ ଥିବାରୁ ସେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ଜଣେ ଲେଖକ ଭାବେ ସ୍ୱୀକୃତି ପାଇଛନ୍ତି । ରାଜ୍ୟସଭାରେ ସେ ୧୯୮୦ ରୁ ୧୯୮୬ ପର୍ଯ୍ୟନ୍ତ ସାଂସଦ ଭାବେ ରହିବାର ଗୌରବଲାଭ କରିଛନ୍ତି । ତାଙ୍କର ପ୍ରତିଭା ଓ ସାରସ୍ୱତ ଅବଦାନ ପାଇଁ ଭାରତ ସରକାର ତାଙ୍କୁ ପଦ୍ମ ବିଭୂଷଣ ଉପାଧିରେ ସମ୍ମାନିତ କରିଛନ୍ତି । ସେ ଏକ ସୁଦୀର୍ଘ ଜୀବନ ଅତିବାହିତ କରିଛନ୍ତି ଓ ପ୍ରାୟ ୯୬ ବର୍ଷ ପର୍ଯ୍ୟନ୍ତ ସେ ନିୟମିତ ଲେଖା ଲେଖିରେ ସମୟ ଅତିବାହିତ କରିଛନ୍ତି ।

ତାଙ୍କର ଶେଷ ବହିଟି ହେଉଛି "ଦି ଫ୍ରି ଥିଙ୍କରସ୍ ପ୍ରେୟାର ବୁକ୍" ଯାହା ତାଙ୍କୁ ସତାନବେ ବର୍ଷରେ ଅର୍ଥାତ୍ ୨୦୧୨ ରେ ପ୍ରକାଶିତ ହୋଇଛି । ଏହି ବହିରେ ପୃଥିବୀର ବିଭିନ୍ନ ଧର୍ମଗ୍ରନ୍ଥରେ ଯେଉଁ ମାନବବାଦୀ ଜୀବନଦୃଷ୍ଟିର ପ୍ରତିଫଳନ ରହିଛି ତାହାର ଉଦ୍ଧୃତି ସେ କରିଛନ୍ତି । ଆଧୁନିକ ମଣିଷକୁ ପ୍ରେରଣା ଦେଲାଭଳି ଯେଉଁ ଭାତୃତ୍ୱ ଭାବନା, ସଦାଚାର, ସମ୍ବେଦନଶୀଳ ଜୀବନଦୃଷ୍ଟି, ସହନଶୀଳତା, ଉଦାରତାର ଝଲକ ଧର୍ମଗ୍ରନ୍ଥ ମାନଙ୍କରେ ରହିଛି ତାହାର ସଂକଳନ ସେ ଏହି ବହିଟିରେ କରିଛନ୍ତି । ହିନ୍ଦୁ ଧର୍ମଶାସ୍ତ୍ର ଉପନିଷଦ୍, ବେଦ; ଖ୍ରୀଷ୍ଟିୟାନ ଧର୍ମଗ୍ରନ୍ଥ ବାଇବେଲ, ଇସଲାମର ପବିତ୍ର ଗ୍ରନ୍ଥ କୋରାନ, ବୌଦ୍ଧଧର୍ମର ତ୍ରିପିଟକ, ଶିଖ୍ ଧର୍ମଗ୍ରନ୍ଥ ଗୁରୁ ଗ୍ରନ୍ଥସାହିବ ଇତ୍ୟାଦି ପୁସ୍ତକରୁ ସେ ନାନା ମହତବାଣୀ ସଂଗ୍ରହ କରିଛନ୍ତି । ସେହିପରି ଜୈନ ଧର୍ମଶାସ୍ତ୍ରରୁ, ଜୋରାଷ୍ଟ୍ରରଙ୍କ ଧର୍ମଗ୍ରନ୍ଥରୁ କିଛି ମାନବବାଦୀ ଚିନ୍ତନକୁ ଉଦ୍ଧାର କରିଛନ୍ତି । ଏହା ସହିତ ବିଶ୍ୱ ବିଖ୍ୟାତ କବି, ଦାର୍ଶନିକ, ସାହିତ୍ୟିକ ମାନଙ୍କର ଅମର କୃତିରୁ ସେ ମହାନବାଣୀର ଉଦ୍ଧୃତି ଦେଇଛନ୍ତି । ମଣିଷକୁ ଏକ ମହତ୍ତର ଜୀବନବୋଧର ବାର୍ତ୍ତା ସହ ସକଳ ଭେଦଭାବକୁ ଦୂର କରି ବିଶ୍ୱ ମାନବିକତାର ସ୍ପର୍ଶ ଦେଉଥିବା ବାଣୀଗୁଡିକୁ ଉଦ୍ଧାର କରିଛନ୍ତି । କାଳିଦାସ, ସେକ୍ସପିୟର, କିଟସ୍, ଗେଟେ, ଘାଲିବ, ରବୀନ୍ଦ୍ରନାଥ, ଇକ୍‌ବଲ, ଇଲିୟଟ ଇତ୍ୟାଦି ବିଶ୍ୱବିଦିତ ଲେଖକମାନଙ୍କ କୃତିରେ ଥିବା ମହତ୍ ଭାବନାକୁ ସେ ବହିଟିରେ ସ୍ଥାନିତ କରିଛନ୍ତି ।

ଯେଉଁ ଭାବନା ଓ ଜୀବନଦୃଷ୍ଟି ବ୍ୟକ୍ତି ଭିତରୁ ସବୁ ଘୃଣା, ବିଦ୍ୱେଷ, ଭେଦଭାବ ଜନିତି ଅହଙ୍କାରକୁ ଦୂର କରି ଏକ ବିଶ୍ୱଦୃଷ୍ଟିର ପ୍ରେରଣା ଦେଇଥାଏ ତାହକୁ ସେ ଉଦ୍ଧାର କରିଛନ୍ତି । ମଣିଷ ଯେତେ ସଂକୀର୍ଣ୍ଣତାରୁ ଊର୍ଦ୍ଧ୍ୱକୁ ଯାଏ ଓ ତାର ହୃଦୟକୁ ପ୍ରସାରିତ କରେ ସେ ସେତିକି ମହନୀୟ ହୁଏ । ଏହି ବିଚାରବୋଧ କିପରି ପୃଥିବୀର ସବୁ ଚିନ୍ତାନାୟକଙ୍କ ଜୀବନଦର୍ଶନକୁ ପ୍ରଭାବିତ କରିଛି ସେ ଏହି ବହିରେ ତାର ନାନା ଝଲକ ଦେଇଛନ୍ତି ।

ଖୁସୱନ୍ତ ବହୁ ସ୍ୱାଧୀନ ଚିନ୍ତାର ବ୍ୟକ୍ତି ଥିଲେ ଓ ସବୁ ଧର୍ମ ଉପରେ ତାଙ୍କର ଗଭୀର ଅଧ୍ୟୟନ ଥିଲା । ୧୯୬୦ ଦଶକରେ ଆମେରିକାସ୍ଥିତ ପ୍ରିନ୍ସଟନ ଓ ହାୱାଇ ବିଶ୍ୱବିଦ୍ୟାଳୟ ମାନଙ୍କରେ ସେ ତୁଳନାତ୍ମକ ଧର୍ମ ଉପରେ ଅଧ୍ୟାପନା କରିଥିଲେ । ଛାତ୍ର ଜୀବନରୁ ଧର୍ମମାନଙ୍କର ଭାବଧାରା ଓ ବିଶ୍ୱାସ ଉପରେ ତାଙ୍କର ଅବିଶ୍ୱାସ ଆସିଥିଲା । ଧର୍ମଗ୍ରନ୍ଥର ନୈତିକ ଉପଦେଶ ବ୍ୟତୀତ ଏହାର ଅନ୍ୟାନ୍ୟ ପ୍ରସଙ୍ଗ ଗୁଡିକ ଯେ କପୋଳକଳ୍ପିତ ଓ ମିଛ ଏହା ସେ ବେଶ୍ ଅନୁଭବ କରିଥିଲେ । ଧର୍ମର ବିଚାର ଗୁଡିକ ଅହେତୁକ ଓ ଏହା କୁସଂସ୍କାର ପ୍ରସାରର ପ୍ରଧାନ ସୂତ୍ରଧର ବୋଲି ଧୀରେ ଧୀରେ ଛାତ୍ର ଜୀବନରୁ ସେ ଅନୁଭବ କରିଥିଲେ । ସେ ନିଜ ଧର୍ମ ବିଷୟରେ ମତପୋଷଣ କରନ୍ତି ଯେ ଶିଖ୍ଧର୍ମରେ ଜାତିଭେଦ ନାହିଁ । କିନ୍ତୁ ତଥାକଥିତ ନିମ୍ନ ଜାତିରୁ ଯେଉଁ ବ୍ୟକ୍ତିମାନେ ଶିଖ୍ଧର୍ମକୁ ଧର୍ମ ପରିବର୍ତ୍ତନ କରିଥାନ୍ତି ସେମାନଙ୍କ ପ୍ରତି ଭେଦଭାବ ଶିଖ୍ମାନଙ୍କ ଭିତରେ ଦେଖିବାକୁ ମିଳେ । ଏହା ସହିତ ଶିଖ୍ଧର୍ମରେ ଈଶ୍ୱରଙ୍କୁ ନିରାକାର ମନେ କରାଯାଏ ଓ ପ୍ରତିମା ପୂଜାକୁ ଏଥିରେ ନିଷିଦ୍ଧ କରାଯାଇଛି । କିନ୍ତୁ ଶିଖଧର୍ମର ଗ୍ରନ୍ଥ 'ଗୁରୁ ଗ୍ରନ୍ଥ ସାହିବ' କୁ ଏକ ରେଶମ ବସ୍ତ୍ରରେ ଗୁଡାଇ ଏହାକୁ ପୂଜା କରାଯାଏ । ଏହିଭଳି ପ୍ରତ୍ୟେକ ଧର୍ମରେ ଏତେ ସବୁ କର୍ମକାଣ୍ଡକୁ ଧ୍ୟାନ ଦିଆଯାଏ ତାହାର ଜୀବନ ପ୍ରତି କୌଣସି ମହତ୍ତର ବାର୍ତ୍ତା ଓ ଏପରିକି ଉପଯୋଗିତା ଥିବା ମନେହୁଏ ନାହିଁ । ଧର୍ମୀୟ କର୍ମକାଣ୍ଡ ପାଳନ କ୍ଷେତ୍ରରେ ବା ଧାର୍ମିକ ଆବେଗରେ ଉତ୍ଫୁଲିତ ହେବା ବ୍ୟକ୍ତିଙ୍କ ପାଖରେ କୌଣସି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ବିଚାରଶୀଳ ମନୋଭାବ ଓ ଉଦାରବାଦୀ ମାନସିକତାର ପରିଚୟ ମିଳେ ନାହିଁ । ସମାଜରେ ସାଂପ୍ରଦାୟିକ ବିଦ୍ୱେଷ ପ୍ରସାର କ୍ଷେତ୍ରରେ ଧାର୍ମିକ ମନୋଭାବ ଯେ ଏକ ପ୍ରମୁଖ ଭୂମିକା ନେଇ ଆସିଛି ଏହା ଏକ ଐତିହାସିକ ସତ୍ୟ ମନେହୁଏ ।

ପ୍ରତ୍ୟେକ ଧର୍ମ ଅଲୌକିକ କାହାଣୀ ଓ ନାନା ଚମତ୍କାରିତାକୁ ବିଶ୍ୱାସ କରେ । ଏହି ଧାର୍ମିକ ଦୃଷ୍ଟିଭଙ୍ଗୀକୁ ସେ ଗ୍ରହଣ କରନ୍ତି ନାହିଁ । ପ୍ରତ୍ୟେକ ଧର୍ମ ଗୋଟିଏ ସମୟର ଆବଶ୍ୟକତାରୁ ଏକ ଭୌଗୋଳିକ ଭୂଖଣ୍ଡରେ ସୃଷ୍ଟି ହୋଇଥିଲା । ଜନଗଣଙ୍କର ସାମାଜିକ, ସାଂସ୍କୃତିକ ଓ ନୈତିକ ଆବଶ୍ୟକତାରୁ କୌଣସି କ୍ରାନ୍ତିକାରୀ ବ୍ୟକ୍ତି କେତେକ ବିଚାର

ଦେଇଥିଲେ । ସେହି ଯୁଗରେ ସେହି ଭାବନା ଏତେ ପ୍ରଭାବଶାଳୀ ହୋଇଥିଲା ଯେ ତାହା କାଳକ୍ରମେ ଏକ ଅନୁଷ୍ଠାନରେ ପରିଣତ ହେଲା ଓ ଏକ ବୃହତ୍ତର ପରିବେଶରେ ଏକ ସଂହତି ସୃଷ୍ଟି କଲା । ତେବେ ଅଜ୍ଞତା, ଭୟ ଓ ମନସ୍ତାତ୍ତ୍ୱିକ କାରଣରୁ ନାନା ବିଶ୍ୱାସ, ଅଲୌକିକ କାହଣୀ ଧର୍ମର ପ୍ରଧାନ ତାତ୍ପର୍ଯ୍ୟ ହେବା ସହ ଏକ ପାରଲୌକିକ ଜୀବନଦୃଷ୍ଟିର ପ୍ରସାରରେ ସହାୟକ ହେଲା ।

ଖୁସୱନ୍ତ ଆନୁଷ୍ଠାନିକ ଧର୍ମଠାରୁ ଦୂରେଇ ଯାଇ ନିଜର ଏକ ଆଦର୍ଶ ଜୀବନବୋଧ ସୃଷ୍ଟି କରିଛନ୍ତି । ତାଙ୍କ ମତରେ ସେହି ଜୀବନବୋଧର ମୂଲ୍ୟଚୟ ହେଉଛି - ଅହିଂସା, କର୍ମ ହିଁ ପୂଜା, ସବୁ କ୍ଷେତ୍ରରେ ସାଧୁତା ଓ ପନ୍ଥାର ପବିତ୍ରତା, ଅନ୍ୟ ପ୍ରତି ସହାନୁଭୂତି ତଥା ସହଯୋଗୀ ମନୋଭାବ (ସାଇଲେଣ୍ଟ ଚାରିଟି) ଓ ପ୍ରାକୃତିକ ପରିବେଶର ସୁରକ୍ଷା । ବେଳେବେଳେ ସେ ନିଜର ଈପ୍ସିତ ଲକ୍ଷ୍ୟ ପୂରଣ କରିପାରନ୍ତି ନାହିଁ, ତେବେ ଏଥି ପାଇଁ ସେ ନିଷ୍ପାପର ଉଦ୍ୟମ କରିଥାନ୍ତି ।

ଖୁସୱନ୍ତ ବିଭିନ୍ନ ଧର୍ମର ବହୁ ସାଧୁ, ସନ୍ଥ ଓ ରହସ୍ୟବାଦୀ ବ୍ୟକ୍ତିଙ୍କୁ ସାକ୍ଷାତ କରିଛନ୍ତି । ଈଶ୍ୱର ଯେ ସୃଷ୍ଟିକର୍ତ୍ତା, ରକ୍ଷାକର୍ତ୍ତା, ସର୍ବଶକ୍ତିମାନ, ସର୍ବବିଦ୍ୟମାନ, କରୁଣାମୟ ଏପରି କଥା ସେ ସେମାନଙ୍କ ପାଖରୁ ଶୁଣନ୍ତି । କିନ୍ତୁ କେଉଁ ଆଧାର ଉପରେ ଏହାକୁ ବିଶ୍ୱାସ କରାଯିବ, କେହି ସେ ସବୁର ବ୍ୟାଖ୍ୟା କରନ୍ତି ନାହିଁ । ଏକ ସର୍ବଶକ୍ତିମାନ ଓ କରୁଣାମୟ ଈଶ୍ୱରଙ୍କ ସୃଷ୍ଟିରେ ଏତେ ପ୍ରାକୃତିକ ଦୁର୍ବିପାକ, ମାନବିକ ବିଭୀଷିକା, ଅନ୍ୟାୟ, ଅତ୍ୟାଚାର କାହିଁକି ହୁଏ କେହି ତା'ର ଉତ୍ତର ଦିଅନ୍ତି ନାହିଁ । ଏପରିକି ଈଶ୍ୱର ବିଶ୍ୱାସ ଦ୍ୱାରା ଯଦି ଲୋକମାନେ ନୀତିବାନ, ସମ୍ବେଦନଶୀଳ ହେବେ ତେବେ ସେହି ବିଶ୍ୱାସକୁ ସେ ସମ୍ମାନ କରିବେ । କିନ୍ତୁ ଧାର୍ମିକ ବିଶ୍ୱାସକୁ ନେଇ ଭାରତ ବିଭାଜନ ବେଳେ ଯେଉଁ ହିଂସାର ପରିବେଶ ସୃଷ୍ଟି ହୋଇଥିଲା ତାହା ତାଙ୍କ ସ୍ମୃତିରେ ଅମଳିନ ରହିଛି । ଏପରିକି ୧୯୮୪ରେ ଶିଖ୍ ବିରୋଧୀ ଦଙ୍ଗା ଓ ନିକଟତର ୨୦୦୨ ରେ ଗୁଜୁରାଟରେ ନରସଂହାର ଧର୍ମଗୋଷ୍ଠୀ ପ୍ରତି ଘୃଣାରୁ ସୃଷ୍ଟି ହୋଇଛି । ଖୁସୱନ୍ତ କହିଛନ୍ତି ତାଙ୍କର ଅଧ୍ୟୟନ ଓ ଅନୁଭୂତି ଆଧାରରେ ସେ ପିଲାଟି ବେଳୁ ପାଇଥିବା ନାନା ରକ୍ଷଣଶୀଳ ଭାବନାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ଶହ ଶହ ବାବା, ଧର୍ମଗୁରୁ, ଗଡମେନ୍‌ଙ୍କ ଅପେକ୍ଷା ମଦର ଟେରେସା, ବାବା ଆମ୍ଟେ, ଏଲା ଭଟ୍ଟଙ୍କ ପରି ମାନବ ଦରଦୀ ହିଁ ତାଙ୍କ ପାଇଁ ଆଦର୍ଶ ବ୍ୟକ୍ତି ହୋଇ ରହିଛନ୍ତି ।

ଖୁସୱନ୍ତ ହେତୁବାଦୀ ଜୀବନଦୃଷ୍ଟିର ପ୍ରବକ୍ତା ଥିଲେ । ତାଙ୍କ ମତରେ ଏକ ଉତ୍ତମ ଓ ନୀତିପୂର୍ଣ୍ଣ ଜୀବନ ହିଁ ତାଙ୍କର ଧର୍ମ । ଅନ୍ୟର ଦୁଃଖରେ ସହାନୁଭୂତିର ହାତ

ବଢ଼ାଇବା ଓ ଅନ୍ୟର ମଙ୍ଗଳକୁ ପ୍ରାଧାନ୍ୟ ଦେବା ହିଁ ଏକ ଉନ୍ନତ ଜୀବନର ମାନଦଣ୍ଡ । ଏହି ଜୀବନକୁ ଶାନ୍ତିପ୍ରଦ ଓ ସୁଖପ୍ରଦ କରିବା ସହ ଆଗାମୀ ପିଢ଼ିମାନଙ୍କ ପାଇଁ ସୁଖ, ଶାନ୍ତିର ପରିବେଶ କରିପାରିବା ହିଁ ଜୀବନର ଧ୍ୟେୟ ହେବା ଉଚିତ । ଏହି ଜୀବନଦର୍ଶନକୁ ତାଙ୍କର ବିଭିନ୍ନ ଲେଖାରେ ବ୍ୟକ୍ତ କରୁଥିବା ଏହି ବୁଦ୍ଧିଜୀବୀଙ୍କ ପ୍ରତି ଅନ୍ତରର ଶ୍ରଦ୍ଧାଞ୍ଜଳି ବ୍ୟକ୍ତ କରୁଛି ।

(୨.୪.୧୪)



# ଜଣେ ମନୋବିଜ୍ଞାନୀଙ୍କ ସ୍ମୃତିରେ

ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ମନୋବିଜ୍ଞାନୀ, ସାହିତ୍ୟିକ ଓ ହେତୁବାଦୀ-ବୁଦ୍ଧିଜୀବୀ ପ୍ରଫେସର ରାଧାନାଥ ରଥଙ୍କର ପରିଣତ ବୟସରେ ସେପ୍ଟେମ୍ବର ୨୯, ୨୦୧୪ ଦିନ ଦେହାନ୍ତ ହୋଇଯାଇଛି । ତାଙ୍କ ଜୀବନ ଥିଲା ଯେପରି ସୃଜନଶୀଳ, ବ୍ୟକ୍ତିତ୍ୱ ଥିଲା ସେପରି ଦୀପ୍ତିମାନ । ଜଣେ ଶିକ୍ଷାବିତ୍, ପ୍ରାବଂଧିକ, ଔପନ୍ୟାସିକ, ସମାଜ ସଂସ୍କାରକ ଓ ମାନବଦରଦୀ ବ୍ୟକ୍ତି ଭାବେ ସେ ବହୁ କ୍ଷେତ୍ରରେ ନିଜର ସ୍ୱର୍ଣ୍ଣାଭ ସ୍ୱାକ୍ଷର ରଖିଯାଇଛନ୍ତି । ଓଡିଶାର ବୌଦ୍ଧିକ ଆକାଶରେ ସେ ଥିଲେ ଏକ ଜାଜ୍ୱଲ୍ୟମାନ ନକ୍ଷତ୍ର । ମୁକ୍ତ ମନ, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ, ବୈଜ୍ଞାନିକ ମାନସିକତା, ଗଭୀର ସୌନ୍ଦର୍ଯ୍ୟବୋଧ, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ହେତୁବାଦୀ ପ୍ରଜ୍ଞା ତାଙ୍କ ବ୍ୟକ୍ତିତ୍ୱରେ ସମନ୍ୱିତ ହୋଇଥିଲା । ବହୁ ଦେଶ ଭ୍ରମଣ କରି ବହୁ ସଭ୍ୟତା ଓ ସଂସ୍କୃତିରୁ ସେ ମହତ୍ତର ଜୀବନବୋଧର ଯେଉଁ ମଣି, ମୁକ୍ତା ସଂଗ୍ରହ କରିଥିଲେ ତାକୁ ନିଜ ରୁଚି ଓ ଜୀବନଧାରାରେ ମିଶାଇ ଦେଇଥିଲେ । ଏକ ସକାରାତ୍ମକ ଜୀବନଦୃଷ୍ଟି ଓ ସୃଜନଶୀଳ ଚେତନା ତାଙ୍କ ବ୍ୟକ୍ତିତ୍ୱର ବୈଭବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଜୀବନରେ ନାନା ଘାତ ପ୍ରତିଘାତ ଓ ସଂଗ୍ରାମଶୀଳ ପରିସ୍ଥିତି ଭିତରେ ତାଙ୍କର ବ୍ୟକ୍ତିତ୍ୱ ଗଢ଼ି ଉଠିଥିଲା । ତାଙ୍କର ଜନ୍ମ ୧୯୧୭ ରେ ଗଂଜାମ ଜିଲ୍ଲାର ତଳଗାମ ପଲ୍ଲୀ ଗ୍ରାମରେ । ରାଧାନାଥଙ୍କୁ ମାତ୍ର ସାତ ବର୍ଷ ସମୟରେ ତାଙ୍କ ବାପା, ମା'ଙ୍କର ଦେହାନ୍ତ ତାଙ୍କ ପ୍ରାଣରେ ଗଭୀର ଆଘାତ ସୃଷ୍ଟି କରିଥିଲା । ବୁଢ଼ୀମା'ଙ୍କ ଯତ୍ନ ଭିତରେ ସେ ବଡ ହୋଇଥିଲେ ବି କଅଁଳ ବୟସରୁ ବାପା, ବୋଉଙ୍କର ବିୟୋଗ ତାଙ୍କୁ ନାନା ବିଷାଦପୂର୍ଣ୍ଣ ଅନୁଭୂତି ଦେଇଥିଲା । ରେଭେନ୍‌ସା କଲେଜରୁ ଆଇ.ଏ.ପାସ୍ କରି ପାଟଣା କଲେଜରୁ ବି.ଏ. ଓ ଦର୍ଶନରେ ଏମ୍.ଏ. ପାସ୍ କଲା ପରେ ୧୯୪୪ ମସିହାରେ ରେଭେନ୍ସା କଲେଜରେ ଦର୍ଶନ ଅଧାପକ ଭାବେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ ।

ସେତେବେଳେ କେବଳ କଲିକତା ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନରେ ସ୍ନାତକୋତ୍ତର ଥିଲା ଓ ରାଧାନାଥ ସେଠାରେ ଚାରି ମାସ ଅଧ୍ୟୟନ କରି ଏହାପରେ ଲଣ୍ଡନ ଯାଇ ସେଠାରେ ମନୋବିଜ୍ଞାନରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. କରି ୧୯୪୯ ରେ ଫେରିଲେ । ଏହାପରେ ତାଙ୍କ ଉଦ୍ୟମରେ ରେଭେନ୍ସା କଲେଜରେ ସ୍ୱତନ୍ତ୍ର ମନୋବିଜ୍ଞାନ ବିଭାଗ ଖୋଲିଲା ଓ ୧୯୫୮ ରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ମନୋବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ଆରମ୍ଭ ହେଲା । ରାଧାନାଥଙ୍କ ପ୍ରୟାସରେ ଉତ୍କଳ ବିଶ୍ୱବିଦ୍ୟାଳୟର ମନୋବିଜ୍ଞାନ ବିଭାଗ "ସେଣ୍ଟର ଅଫ୍ ଆଡ୍‌ଭାନ୍ସଡ୍ ଷ୍ଟଡିଜ ଓ ରିସର୍ଚ୍ଚ" ଭାବେ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଅର୍ଜନ କରିଥିଲା । ଦୀର୍ଘ ୩୭ ବର୍ଷର ଅଧ୍ୟାପନା ଜୀବନ ପରେ ସେ ୧୯୮୧ରେ ଅବସର ନେଲେ । ଏହାପରେ ଏକ ସମ୍ମାନଜନକ ପଦବୀ "ଜାତୀୟ ଫେଲୋ" ଭାବରେ ଭାରତବର୍ଷର ଭିଭିନ୍ନ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେବାର ଅବକାଶ ପାଇଛନ୍ତି । ମନୋବିଜ୍ଞାନର ଜଣେ ପ୍ରବୀଣ ଅଧ୍ୟାପକ ଓ ଗବେଷକ ଭାବେ ସେ ବହୁ ଆନ୍ତର୍ଜାତିକ ଆଲୋଚନା ଚକ୍ରରେ ଯୋଗ ଦେଇଛନ୍ତି, ପୃଥିବୀର ବିଭିନ୍ନ ଖ୍ୟାତିସଂପନ୍ନ ବିଶ୍ୱବିଦ୍ୟାଳୟ ପରିଦର୍ଶନ କରିଛନ୍ତି ଓ ୟୁ.ଜି.ସି.ର ବିଭିନ୍ନ କମିଟିରେ ସଦସ୍ୟ ରହିଛନ୍ତି । ଭାରତୀୟ ବିଜ୍ଞାନ କଂଗ୍ରେସ ଅଧିବେଶନ ୧୯୬୨ ଓ ୧୯୭୭ ରେ ତାଙ୍କରି ତତ୍ତ୍ୱାବଧାନ ଭିତରେ ଓଡିଶାର ରେଭେନ୍ସା କଲେଜରେ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ଅତି ସଫଳତାର ସହ ସମାହିତ ହୋଇଛି ।

ତାଙ୍କର ଇଂରାଜୀ ଲେଖା ବ୍ୟତୀତ ଓଡିଆରେ ସେ ବହୁ ପ୍ରସଙ୍ଗ ଉପରେ ରାଶି ରାଶି ପୁସ୍ତକ ଲେଖିଛନ୍ତି । ନାନା ସାମାଜିକ ସମସ୍ୟା, ଅସ୍ୱାଭାବିକ ବ୍ୟବହାର, ମାନବିକ ସଂକଟ ଇତ୍ୟାଦିର ମନୋବୈଜ୍ଞାନିକ ବ୍ୟାଖ୍ୟା ସରଳ ଓ ସାବଲୀଳ ଭାବେ ବିଶ୍ଳେଷଣ କରିଛନ୍ତି । ଶିଶୁ ମନୋବିଜ୍ଞାନ ଉପରେ ବି ବିସ୍ତୃତ ଭାବେ ଅନେକ କଥା ଲେଖିଛନ୍ତି । ଏସବୁ ପ୍ରସଙ୍ଗ ଉପରେ ତାଙ୍କର ଦଶଟିରୁ ଅଧିକ ପ୍ରବଂଧ ସଂକଳନ ରହିଛି । ପ୍ରତ୍ୟେକଟି ପ୍ରବଂଧ ସଂକଳନ ଭିତରେ ସ୍ଥାନ ପାଇଥିବା ପ୍ରବନ୍ଧ ଗୁଡିକ ଯେପରି ସୁଖପାଠ୍ୟ ସେହିପରି ଭାବଗର୍ଭକ । ମନୋବୈଜ୍ଞାନିକ ପ୍ରବଂଧ ରଚନା କ୍ଷେତ୍ରରେ ସେ ଓଡିଶାରେ ପଥପ୍ରଦର୍ଶକ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡିଆ ଭ୍ରମଣ ସାହିତ୍ୟକୁ ତାଙ୍କର ଅବଦାନ ବି କିଛି କମ୍ ନୁହେଁ । ବିଲାତ ଡାଏରୀ, ଆମେରିକା ଡାଏରୀ, ନବ ସଭ୍ୟତାର ଦେଶ, ନାନା ଦେଶ ନାନା କଥା ପୁସ୍ତକ ଗୁଡିକରେ ବିଭିନ୍ନ ଦେଶର ସାମାଜିକ ଜୀବନ, ସଭ୍ୟତା, ସଂସ୍କୃତି, ଶିକ୍ଷାବ୍ୟବସ୍ଥା, ରାଜନୈତିକ ଦୃଶ୍ୟପଟ, ଅର୍ଥନୈତିକ ବିକାଶ ଇତ୍ୟାଦି ଉପରେ ସୁନ୍ଦର ବ୍ୟାଖ୍ୟା ଥିବା

ଦେଖାଯାଏ । ନବ ସଭ୍ୟତାର ଦେଶ ହେଉଛି ସୋଭିଏତ ରୁଷ ଉପରେ ତାଙ୍କର ଅନୁଭୂତି ଆଧାରିତ ଏକ ଭ୍ରମଣ କାହାଣୀ । ରୁଷକୁ ଦୁଇଥର ଯିବା ଭିତରେ ସେ ଦେଶର ଜନଗଣଙ୍କର କର୍ମପ୍ରବଣତା, ସାମାଜିକ ଶୃଂଖଳା ଓ ବିକାଶର ଯେଉଁ ଚିତ୍ର ଦେଖିଛନ୍ତି ତାହାର ନିଚ୍ଛକ ବର୍ଣ୍ଣନା ପୁସ୍ତକଟିରେ ରହିଛି । ଏହି ପୁସ୍ତକଟି ନେହେରୁ ପୁରସ୍କାର ଲାଭ କରିଛି । ଚୀନ, ଜାପାନ, ସ୍ୱିଡେନ, ମଧ୍ୟପ୍ରାଚ୍ୟ ଦେଶ ଗୁଡିକୁ ଭ୍ରମଣ କରିବା ଅବକାଶରେ ସେ ସବୁ ଦେଶମାନଙ୍କର ସାମାଜିକ ଜୀବନ ଉପରେ ନିଜର ଅନୁଭୂତି ପ୍ରକାଶ କରିଛନ୍ତି । ପୃଥିବୀର ବିଭିନ୍ନ ବିକଶିତ ରାଷ୍ଟ୍ର ମାନଙ୍କର ପ୍ରଗତି କିପରି ଉନ୍ନତ କର୍ମସଂସ୍କୃତି, ସାମାଜିକ ଶୃଂଖଳାବୋଧ, ଶିକ୍ଷଣ ସମାଜର ବିକାଶ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ଦ୍ୱାରା ସମ୍ଭବ ହୋଇଛି ତାହାର ଚିତ୍ର ଦେବା ବେଳେ ଭାରତୀୟମାନେ କାହିଁକି ଅନୁନ୍ନତ ଓ ଦାରିଦ୍ର୍ୟ ସ୍ଥିତି ଭିତରେ ରହିଛନ୍ତି ତାହା ପ୍ରତି ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି ।

ରାଧାନାଥଙ୍କର ଉଲ୍ଲେଖନୀୟ ସାରସ୍ୱତ ଅବଦାନ ହେଉଛି ତାଙ୍କଦ୍ୱାରା ରଚିତ ଅଠେଇଶିଟି ଉପନ୍ୟାସ । ପ୍ରତ୍ୟେକଟି ଉପନ୍ୟାସର ଚରିତ୍ରମାନ ଲେଖକଙ୍କ ବାସ୍ତବ ଅନୁଭୂତିର ମାର୍ମିକ ପରିପ୍ରକାଶ ମନେହୁଅନ୍ତି । ସାଧାରଣ ମଣିଷ ଓ ଏପରିକି ସମାଜର ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ଜୀବନ-ଯନ୍ତ୍ରଣା, ନୈତିକ ଦ୍ୱନ୍ଦ୍ୱ ସ୍ୱପ୍ନ ଓ ସାମାଜିକ ସଂଘାତର ନାନା ଚିତ୍ର ଉପନ୍ୟାସର ଚରିତ୍ର ମାନଙ୍କ ଭିତରେ ଦେଖିବାକୁ ମିଳେ । ପ୍ରତ୍ୟେକଟି ଉପନ୍ୟାସ ଉପରେ ଏକ ସୁଦୀର୍ଘ ସମୀକ୍ଷା ଲେଖାଯାଇପାରେ । ପ୍ରତ୍ୟେକ ଉପନ୍ୟାସ ଭିତରେ ସାମାଜିକ ଚଳଣି, ବ୍ୟକ୍ତି ବିଶେଷର କ୍ରିୟା ଅନୁକ୍ରିୟା, ମାନବିକ ବଂଧନ, ପ୍ରେମ ଓ ନୈରାଶ୍ୟବୋଧର ଚିତ୍ର ରହିଥାଏ । କେତେକ ଚରିତ୍ର ଭିତରେ ପାଶବିକ ଉଦ୍‌ବେଳନ, କ୍ରୂରତା ଓ ହୀନତାବୋଧ ରହିଥିବା ବେଳେ କେତେକ ଚରିତ୍ର ଭିତରେ ଆଦର୍ଶବୋଧ, ଉଚ୍ଚନୈତିକ ଶୃଂଖଳା ଓ ଦରଦୀ ହୃଦୟର ପରିଚୟ ରହିଥାଏ । ଲେଖକଙ୍କର ପ୍ରତ୍ୟେକଟି ଉପନ୍ୟାସରେ ସାଂପ୍ରତିକ ସମାଜର କିଛି ଅବକ୍ଷୟର ଚିତ୍ର ଥିବା ବେଳେ ମାନବିକ ମୂଲ୍ୟବୋଧର ସୁସ୍ଥ ବିକାଶ ପାଇଁ ତାଙ୍କର ସ୍ୱପ୍ନ ପ୍ରକାଶ ପାଇଥିବା ଦେଖାଯାଏ ।

ରାଧାନାଥଙ୍କର ସବୁଠାରୁ ସାର୍ଥକ କୃତି ହେଲା ତାଙ୍କ ଆତ୍ମଜୀବନୀ " ମୋ ସ୍ୱପ୍ନ ମୋ ଜୀବନ" । ଏହି ଆତ୍ମଜୀବନୀଟି ଏକ ଅନନ୍ୟ କୃତି । ଜୀବନର ନାନା ଅନୁଭୂତି, ତାଙ୍କ ସ୍ୱପ୍ନ ଓ ଅଭୀପ୍ସା ତଥା ତାଙ୍କ ଜୀବନ-ଦର୍ଶନର ବହୁ ବୌଦ୍ଧିକ ଓ ତାତ୍ତ୍ୱିକ ଚିତ୍ର ଏହିଥିରେ ପ୍ରତିଫଳିତ ହୋଇଛି । ଅସାଧୁ ଉପାୟରେ ଉପାର୍ଜନ, ପରଶ୍ରୀକାତରତା ଓ କାହା ପ୍ରତି ବିଦ୍ୱେଷପୂର୍ଣ୍ଣ ମାନସିକତାକୁ ରାଧାନାଥ ସର୍ବଦା ପରିହାର କରି ଆସିଛନ୍ତି । ସାଧୁତା, କର୍ତ୍ତବ୍ୟନିଷ୍ଠା, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ସ୍ନେହ ସୌହାର୍ଦ୍ଦ୍ୟପୂର୍ଣ୍ଣ ପାରିବାରିକ

ବାତାବରଣ ଲେଖକଙ୍କ ପାଇଁ ସବୁଠାରୁ ଆକର୍ଷଣୀୟ ମନେହୋଇଛି । ଜାତିଗତ, ବର୍ଣ୍ଣଗତ, ଧର୍ମଗତ ଭେଦଭାବର ବହୁ ଊର୍ଦ୍ଧ୍ୱରେ ରହି ମାନବବାଦର ଜୟଗାନ କରି ଆସିଛନ୍ତି ।

ରାଧାନାଥ ବ୍ୟକ୍ତିଗତ ବିଶ୍ୱାସରେ ଥିଲେ ମାନବ-ଦରଦୀ ହେତୁବାଦୀ । ସମାଜର ପ୍ରଚଳିତ କୁସଂସ୍କାର, ଜାତିବାଦ, ପାରଲୌକିକ ଜୀବନଦୃଷ୍ଟିର ସେ ଥିଲେ କଠୋର ସମାଲୋଚକ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଆଦର୍ଶବୋଧ ତାଙ୍କ ବ୍ୟକ୍ତିତ୍ୱର ପରିଚୟ । ସେ ଏକ ବିଶାଳ ବିଶ୍ୱବ୍ୟକ୍ତିତ୍ୱର ଅଧିକାରୀ ହେବା ସହ ମଣିଷ ସମାଜର ମହାପ୍ଲାବନରେ ଗଭୀର ଆସ୍ଥା ସ୍ଥାପନ କରିଥିବା ମନେହୁଏ ।

ତାଙ୍କର ବିୟୋଗ ଓଡିଶାର ବୌଦ୍ଧିକ ଜୀବନରେ ଏକ ଶୂନ୍ୟସ୍ଥାନ ସୃଷ୍ଟି କରିଛି । ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଂଜଳି ବ୍ୟକ୍ତ କରୁଛି ।

(୧୦.୧୦.୨୦୧୪)



# ଦୁଃଖ : ଏକ ଦାର୍ଶନିକ ଦୃଷ୍ଟି - (୧)

ଜୀବନ ସହ ସୁଖ, ଦୁଃଖ ନିବିଡ଼ ଭାବେ ସଂପୃକ୍ତ । ପ୍ରତ୍ୟେକ ପ୍ରାଣୀ ଜୀବନରେ ସୁଖର ସନ୍ଧାନ କରେ, କେହି ଦୁଃଖ ପାଇଁ ଉଦ୍ୟମ କରେ ନାହିଁ । କେହି ଇଚ୍ଛାକୃତ ଭାବେ ଦୁଃଖ, ଯନ୍ତ୍ରଣା କାମନା କରେ ନାହିଁ, କାରଣ ଦୁଃଖ ଯନ୍ତ୍ରଣା ବ୍ୟକ୍ତିକୁ କଷ୍ଟକର ଅନୁଭବ ଦିଏ । ଏକ ସୁଖକର ଆବେଗ ମୁହଁରେ ହସ, ଆନନ୍ଦ ଆଣିବା ବେଳେ ଏକ ଦୁଃଖକର ଆବେଗ ଏହାର ବିପରୀତ ଅନୁଭୂତି ଦେଇଥାଏ । ଏକ ଦୁଃଖର ଅନୁଭବ ପ୍ରାଣକୁ ଆନ୍ଦୋଳିତ କରିବା ସହ ଚକ୍ଷୁକୁ ଲୋତକପୂର୍ଣ୍ଣ କରିଥାଏ । କେହି ଦୁଃଖ ନ ଚାହିଁଲେ ବି ଜୀବନର ଘଟଣା ପ୍ରବାହ ବେଳକେ ଅତ୍ୟନ୍ତ ପ୍ରତିକୂଳ ହୁଏ ଓ ଜୀବନରେ ହତାଶା, ନୈରାଶ୍ୟ ଭରିଦିଏ । ହତାଶା, ନୈରାଶ୍ୟ ଭିତରେ ମଣିଷ ପ୍ରତିକୂଳ ସ୍ଥିତିକୁ ପ୍ରତିହତ କରିବାକୁ ପ୍ରୟାସ କରେ । କେତେବେଳେ ସଫଳତା ଆସେ, କିମ୍ବା କାହାପାଖରେ ସଫଳତା ମିଳେ ନାହିଁ । ସଫଳତା-ବିଫଳତା, ହସ-କାନ୍ଦ ଓ ସୁଖ-ଦୁଃଖକୁ ନେଇ ଜୀବନ ଆଗକୁ ଯାଏ । ଦୁଃଖର ଅନୁଭବ ସହିତ ନାନା ଅଶୁଭ, ଅନିଷ୍ଟକର, ଅହିତ ଓ ଅମଙ୍ଗଳକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡେ । ଅହିତ ଓ ଅମଙ୍ଗଳକର ପରିସ୍ଥିତି ଦୁଃଖର କାରଣ ହୁଏ । ଅର୍ଥାତ୍ ଏକ ମନ୍ଦ, ଅନିଷ୍ଟକର ଓ ଅହିତକର ପରିସ୍ଥିତି କାରଣରୁ ଦୁଃଖ କାର୍ଯ୍ୟ ଭାବେ ଉଦ୍ଭବ ହୁଏ । ଯାହା ଦୁଃଖ ତାହା ଅଶୁଭ ଓ ଅହିତକର ଓ ସେହି ଦୃଷ୍ଟିରୁ ଅଶ୍ରେୟ ମନେହୁଏ ।

ଦୁଃଖର ପରିବେଶ ବିଭିନ୍ନ ସ୍ତରର ହୋଇପାରେ । ଏହା ବ୍ୟକ୍ତି, ପରିବାର, ସାମାଜିକ ଗୋଷ୍ଠୀ ଓ ଏପରିକି ବୃହତ୍ତର ସମାଜର ହୋଇପାରେ । ଏହା ମଧ୍ୟ ବିଭିନ୍ନ ପ୍ରକାରର ହୋଇପାରେ । ଦୁଃଖ ଯନ୍ତ୍ରଣା ଶାରୀରିକ ବା ମାନସିକ ସ୍ତରର ହୋଇପାରେ । ଅଭାବ ଅନାଟନ ଭିତରେ ଜର୍ଜରିତ ହେବା, ରୋଗରେ ଆକ୍ରାନ୍ତ ହୋଇ ପୀଡା ପାଇବା, ଦୁର୍ଘଟଣାର ସମ୍ମୁଖୀନ ହୋଇ ବିକଳାଙ୍ଗ ହେବା ଶାରୀରିକ ଦୁଃଖ ଯନ୍ତ୍ରଣାର ଇଙ୍ଗିତ ଦିଏ ।

ଏସବୁ ପରିସ୍ଥିତି ନଥାଇ ମଧ୍ୟ ଜଣଙ୍କର ଦୁଃଖ ମାନସିକ ସ୍ତରର ହୋଇପାରେ । ନିଜର ପ୍ରତିଭାବାନ ପୁତ୍ରକୁ ହରାଇବା, ନିଜର ଉଚ୍ଚ ଶିକ୍ଷିତା ସୁଶ୍ରୀ କନ୍ୟାକୁ ବିବାହ କରାଇ ନପାରିବା, ନିଜର ସଂସ୍କାରିତ ଚେତନା ପାଇଁ ସାମାଜିକ ସ୍ତରରେ ସମାଲୋଚନାର ଶରବ୍ୟ ହେବା ମାନସିକ ସ୍ତରରେ ବେଶ୍ ଆଘାତପ୍ରଦ ହୋଇପାରେ । ତେବେ ମାନବିକ ଦୁଃଖ ଯନ୍ତ୍ରଣାକୁ ଶାରୀରିକ ଓ ମାନସିକ ଭାବରେ ବିଭାଜନ କରିବା ଯଥାର୍ଥ ମନେ ନହୋଇପାରେ । କାରଣ ଦୁଃଖ ଅର୍ଥ ଏକ ମାନସିକ ଅନୁଭବ ଓ ଏହି ଦୃଷ୍ଟିରୁ ସମସ୍ତ ଦୁଃଖ ଯନ୍ତ୍ରଣା ସ୍ୱରୂପରେ ମାନସିକ । ଏହା କହିଲେ ଯଥାର୍ଥ ହେବ ଯେ ସମସ୍ତ ଦୁଃଖ ଯଦିଓ ଏକ ମାନସିକ ଅବସ୍ଥାର ସୂଚନା ଦିଏ, ତେବେ ଦୁଃଖର କାରଣ ଶାରୀରିକ ହୋଇପାରେ କିମ୍ବା ମାନସିକ ହୋଇପାରେ । ଅର୍ଥାତ୍ ଦୁଃଖର ଅନୁଭବ ବ୍ୟକ୍ତି ମାନସିକ ସ୍ତରରେ ପାଇଥାଏ ଯଦିବା ଏହି ଅପ୍ରୀତିକର ଅନୁଭବ ଶାରୀରିକ ବା ମାନସିକ କିମ୍ବା ଉଭୟ ଶାରୀରିକ ଓ ମାନସିକ କାରଣ ଯୋଗୁଁ ଉଦ୍‌ଭବ ହୋଇଥାଏ ।

ଦୁଃଖ ବ୍ୟକ୍ତିର, ପରିବାରର, ଏକ ଜନଗୋଷ୍ଠୀର ବା ସାମଗ୍ରିକ ଭାବେ ମଣିଷ ଜାତିର ହୋଇ ପାରେ । ଏକ ବ୍ୟକ୍ତିର ବା ପରିବାରର ଦୁଃଖ, ଦୁର୍ଦ୍ଦଶା ନିତିଦିନିଆ ଅନୁଭବର ବିଷୟ । ସାମାଜିକ ଜୀବନ ପ୍ରବାହରେ ପରିବାର ଏକ ମୁଖ୍ୟ ଅଙ୍ଗ । ବ୍ୟକ୍ତି ଓ ବ୍ୟକ୍ତି-ସଂଶ୍ଳିଷ୍ଟ ପରିବାରର ଦୁଃଖ ଦୁର୍ଦ୍ଦଶା ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ । ଏକ ବ୍ୟକ୍ତିର ଦୁଃଖ, ହତାଶା ବ୍ୟକ୍ତିର ପରିବାରକୁ ପ୍ରଭାବିତ କରିଥାଏ । ଯେଉଁଠି ପାରିବାରିକ ବନ୍ଧନ ଦୃଢ଼, ସେଠାରେ ବ୍ୟକ୍ତିର ଦୁଃଖ ହିଁ ପରିବାରର ଦୁଃଖ ହୋଇଥାଏ । ବ୍ୟକ୍ତିର ଦୁଃଖ ଦ୍ୱାରା ବ୍ୟକ୍ତିର ପରିବାର ଦୁଃଖପୂର୍ଣ୍ଣ ସ୍ଥିତିକୁ ଯାଇଥାଏ । ଏତଦ୍‌ବ୍ୟତୀତ ସାମାଜିକ ପରିବେଶ ଏକ ଜନଗୋଷ୍ଠୀର ଦୁଃଖର କାରଣ ହୋଇପାରେ । ସାଂପ୍ରଦାୟିକ ଭେଦଭାବ ବା ବିଦ୍ୱେଷର ମାନସିକତା ଥିବା ଏକ ସମାଜରେ ଏକ ସଂଖ୍ୟାଲଘୁ ଗୋଷ୍ଠୀ ନୈରାଶ୍ୟଜନକ ସ୍ଥିତିର ସମ୍ମୁଖୀନ ହୋଇଥାଏ । ଏକ ଜାତିଭିତ୍ତିକ ସାମାଜିକ ପରିବେଷ୍ଟନୀରେ ତଥାକଥିତ ନିମ୍ନଜାତିର ଲୋକମାନେ ବେଳକେ ସାମାଜିକ ଅସମ୍ମାନର ଶିକାର ହୋଇଥାନ୍ତି । ଅସମ୍ମାନ ଜନକ ସ୍ଥିତିରେ ଜୀବନ ବଞ୍ଚିବାକୁ ବାଧ୍ୟ ହେଉଥିବା ଏକ ଜନଗୋଷ୍ଠୀ ବହୁ ସମୟରେ ଦୁଃଖ ଓ ନୈରାଶ୍ୟ ଭିତରେ ରହିବାକୁ ବାଧ୍ୟ ହୋଇଥାଏ । ଭାରତବର୍ଷରେ ଦଳିତମାନେ, ଆମେରିକାରେ କଳା ନିଗ୍ରୋମାନେ, ଜର୍ମାନୀରେ ଜିଉମାନେ କିପରି ଅକଥନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଛନ୍ତି ତାହା ସୁବିଦିତ । ଆଧୁନିକ ଚିକିତ୍ସାର ଅଭ୍ୟୁଦୟ ପୂର୍ବରୁ ମହାମାରୀ ଯୋଗୁ କିପରି ଗଣମୃତ୍ୟୁର ପରିବେଶ ଆସୁଥିଲା ତାହା ମଧ୍ୟ ବେଶ୍ ଜଣାଶୁଣା । ସେହିପରି ଯେଉଁ ସମୟରେ ଗମନା ଗମନର ବ୍ୟବସ୍ଥା ନଥିଲା କୌଣସି

ଅଞ୍ଚଳରେ କିଛି ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ଜନଜୀବନ ଅପ୍ରମିତ ଦୁଃଖକୁ ସାମ୍ନା କରୁଥିଲା । ଦୁର୍ଭିକ୍ଷ ପରିବେଶ ବିଭିନ୍ନ ଅଞ୍ଚଳରେ ମଝିରେ ମଝିରେ ସୃଷ୍ଟି ହେଉଥିଲା ଓ ଗଣମୃତ୍ୟୁ ସାଧାରଣ ଘଟଣା ଥିଲା ।

ମାନବୀୟ ଦୁଃଖ କଷ୍ଟ ବ୍ୟକ୍ତିଗତ ହୋଇପାରେ କିମ୍ବା ଅବ୍ୟକ୍ତିକ ହୋଇପାରେ । କୌଣସି ବ୍ୟକ୍ତି ଏକ ଜଟିଳ ପରିସ୍ଥିତି ବା ପ୍ରତିକୂଳ ସ୍ଥିତି ଯୋଗୁ କଷ୍ଟକର ସ୍ଥିତିରେ ଜୀବନ ନିର୍ବାହ କରିଥାଏ । ନିଜର କର୍ମସଂସ୍ଥାନ ହରାଇବାରୁ ଅସୁରକ୍ଷିତ ଆର୍ଥିକ ସ୍ଥିତି ଯୋଗୁ ବା ଏକ ଦୁର୍ଘଟଣାର ସମ୍ମୁଖୀନ ହୋଇ ଗୋଟିଏ ଗୋଡ ହରାଇବାରୁ ଜଣଙ୍କର ଦୁଃଖ ବ୍ୟକ୍ତିଗତ ହୋଇଥାଏ । ବ୍ୟକ୍ତିଗତ ଦୁଃଖରେ ବ୍ୟକ୍ତି ହିଁ ଦୁଃଖକର ପରିବେଶରେ ଥାଏ । ନିଜେ ଦୁଃଖକର ସ୍ଥିତିରେ ନ ଥାଇ ଅନ୍ୟର ଦୁଃଖକର ସ୍ଥିତି ପାଇଁ କଷ୍ଟ ଅନୁଭବ କରିବାକୁ ଅବ୍ୟକ୍ତିକ ଦୁଃଖ କୁହାଯାଏ । ସମାଜରେ ହିଂସାତ୍ମକ ପରିବେଶ ବୃଦ୍ଧି ପାଉଥିବାରୁ, ରାଜନୈତିକ ଜୀବନ ପ୍ରବାହରୁ ନୈତିକତା ହ୍ରାସ ହେଉଥିବାରୁ, ପ୍ରଶାସନିକ ସ୍ତରରେ ଦୁର୍ନୀତି ବ୍ୟାପକ ହେଉଥିବା କାରଣରୁ, ସାଂପ୍ରଦାୟିକତାର ମନୋଭାବ ପ୍ରସାର ଲାଭ କରୁଥିବା ହେତୁ କେହି ଦୁଃଖରେ ମ୍ରିୟମାଣ ହେବା ଅବ୍ୟକ୍ତିକ ଦୁଃଖ କହିଲେ ଅତ୍ୟୁକ୍ତି ହେବନାହିଁ । ବ୍ୟକ୍ତିଗତ ସ୍ତରରେ ଜଣେ କ୍ଷତିଗ୍ରସ୍ତ ନ ହେଲେ ମଧ୍ୟ ସାମାଜିକ ପରିସ୍ଥିତି ଜନିତ କାରଣରୁ ନିଜେ ବିଶ୍ୱାସ କରୁଥିବା ମୂଲ୍ୟବୋଧର ଅବକ୍ଷୟ ଯୋଗୁ କିମ୍ବା ଅନ୍ୟର ପ୍ରତିକୂଳ ସ୍ଥିତିକୁ ଅନୁଭବ କରି ଭାରାକ୍ରାନ୍ତ ମନରେ ଦୁଃଖର ଅନୁଭୂତି ପାଇବାର ମାନସିକତାକୁ ଅବ୍ୟକ୍ତିକ ଦୁଃଖ କହିବା ସମୀଚୀନ ମନେହୁଏ ।

ବ୍ୟକ୍ତିର ଦୁଃଖ ଅନୈତିକ ହୋଇପାରେ କିମ୍ବା ନୈତିକ ହୋଇପାରେ । ଚୋରି କରିବାକୁ ଉଦ୍ୟମ କରି ଅସଫଳ ହେବାର ଦୁଃଖ ପାଇବା ବା ଔଷଧ ଅପମିଶ୍ରଣ କରି ଧରାପଡିବାରୁ ଦଣ୍ଡିତ ହେବାରୁ ଦୁଃଖ ପାଇବା ଅନୈତିକ ଦୁଃଖ । ଅପରପକ୍ଷରେ ଅନ୍ୟର ବା ନିଜର ଅନ୍ୟାୟ ଜନିତ ଦୁଃଖ ଦୁର୍ଦ୍ଦଶାକୁ ଅନୁଭବ କରି ମ୍ରିୟମାଣ ହେବାକୁ ନୈତିକ ଦୁଃଖ କୁହାଯାଇପାରେ । ଏକ ସାଂପ୍ରଦାୟିକ ଦଙ୍ଗାରେ ଜଣେ ନିରୀହ ବ୍ୟକ୍ତି ନିଜର ସର୍ବସ୍ୱ ହରାଇବାରୁ ତାଙ୍କ ଦୁଃଖରେ ବିଗଳିତ ହେବାର ମାନସିକତାକୁ ଏକ ସଭ୍ୟ ବା ନୈତିକ ଦୃଷ୍ଟିଭାବେ ନିଆଯାଏ । ମଣିଷ ଭିତରେ ବିଚାରଶୀଳ ଦୃଷ୍ଟିର ବିକାଶ ପରଠାରୁ ବ୍ୟକ୍ତି ସ୍ୱଭାବରେ ସ୍ୱାର୍ଥପରତା ଯେପରି ସୃଷ୍ଟି ହୋଇଛି ସେହିପରି ସମ୍ବେଦନଶୀଳତା ମଧ୍ୟ ରହିଛି । କେତେକ ବିଚାର ଓ ଆଦର୍ଶ ମାନବିକ ସତ୍ତାକୁ କ୍ଷୁଦ୍ରତମ ବେଷ୍ଟନୀ ଭିତରେ ଆବଦ୍ଧ କରିଥାଏ, ଅପରପକ୍ଷରେ ଅନ୍ୟ ବିଚାର ବ୍ୟକ୍ତି ଭିତରେ ଏକ ପ୍ରସାରିତ ଓ ସମ୍ବେଦନଶୀଳ ଦୃଷ୍ଟି ଦେଇଥାଏ । ସାଂପ୍ରଦାୟିକ ବା ରୁଦ୍ଧ ମାନସିକତା ଦ୍ୱାରା ଆବଦ୍ଧ

ବ୍ୟକ୍ତିର ଚେତନା ସମ୍ବେଦନହୀନ ହେବା ଦେଖାଯାଏ । ଅଥଚ ମଣିଷ ଯେଉଁଠି ଚେତନାରେ ଅଧିକ ପ୍ରସାରିତ ହୁଏ, ସେଠି ସେ ଦରଦୀ, ବିବେକୀ ଓ ସମ୍ବେଦନଶୀଳ ହୁଏ । ଜଣେ ବିଚାରଶୀଳ ଓ ମାନବବାଦୀ ବ୍ୟକ୍ତି ନିଜର ସାମର୍ଥ୍ୟ ଭିତରେ ଅନ୍ୟର ଦୁଃଖରେ ସମବେଦନାର ହାତ ବଢ଼ାଇଥାଏ । ଅନ୍ୟର ଦୁଃଖରେ ବିଗଳିତ ହେବା ଓ ଅନ୍ୟର ଯନ୍ତ୍ରଣାକୁ ଅନୁଭବ କରିବାର ହୃଦୟବତ୍ତା ଏକ ଉତ୍ତମ ଜୀବନର ସ୍ୱାକ୍ଷର ବହନ କରେ ।

ଯେଉଁ ସମାଜରେ ଅନ୍ୟର ଦୁଃଖ ଦୁର୍ଦ୍ଦଶା ପ୍ରତି ସାମାଜିକ ସଚେତନତା ଅଧିକ ତାହା ପ୍ରଗତିଶୀଳ, ଯେଉଁ ପରିବେଶରେ ଲୋକମାନେ ଏଥିରେ ସ୍ପର୍ଶକାତରଶୂନ୍ୟ ତାହା କ୍ଷୟଶୀଳ ମନେହୁଏ । ଏକ ପ୍ରଗତିଶୀଳ ସମାଜରେ ନାଗରିକ ଶୃଂଖଳାବୋଧ ଓ ଜନଗଣଙ୍କର କର୍ମସଂସ୍କୃତି ଉଚ୍ଚସ୍ତରର ହୋଇଥିବା ବେଳେ ଏକ କ୍ଷୟଶୀଳ ସମାଜରେ ଏହାର ବିପରୀତ ପରିବେଶ ଅଧିକ ରହିଥାଏ ।

(୧୩.୦୨.୨୦୧୩)



# ଦୁଃଖ : ଏକ ଦାର୍ଶନିକ ଦୃଷ୍ଟି (୨)

ମଣିଷ ଜୀବନ ସହ ସୁଖ-ଦୁଃଖ ଅଙ୍ଗାଙ୍ଗୀ ଭାବେ ଜଡିତ । ଜୀବନ ସୁଖ-ଦୁଃଖର ଚକ ଭିତରେ ଘୂରିବା ଏକ ସାଧାରଣ ଅନୁଭବ । ଚକଟିଏ ଯେପରି ତଳ-ଉପର ହୋଇ ଘୂରୁଥାଏ ଓ ଏକ ବେଗମାନ ଗାଡିକୁ ଆଗକୁ ନେଉଥାଏ ସେହିପରି ଜୀବନ ସୁଖ-ଦୁଃଖର କେତେ ପରିସ୍ଥିତି ଓ ଅନୁଭୂତି ଭିତରେ ଆଗକୁ ଚାଲିଥାଏ । କାହା ପାଇଁ ଜୀବନରେ ସୁଖର ମୁହୂର୍ତ୍ତ ଅଧିକ ହୋଇପାରେ ତ କାହା ପାଇଁ ଜୀବନ ଅଧିକ ଦୁଃଖପୂର୍ଣ୍ଣ ହୋଇଥାଏ । ଜୀବନର ନାନା ଘଟଣା ପ୍ରବାହ ସୁଖର ବା ଦୁଃଖର ଅନୁଭବ ଆଣିଥାଏ । କେହି ଜୀବନରେ ନ ଚାହିଁଲେ ବି ଦୁଃଖକର ପରିବେଶ ଆସେ । ସେଥିପାଇଁ ଜୀବନର ଦୁଃଖକୁ ନେଇ କେତେ କେତେ ତାତ୍ତ୍ୱିକ ଆଲୋଚନା ସାହିତ୍ୟ, ଧର୍ମ ଓ ଦର୍ଶନ ପରିସରରେ ହେବା ଦେଖାଯାଏ । ଦୁଃଖର ସ୍ଥିତି, କାରଣ, ପ୍ରକାରଭେଦ ପ୍ରସଙ୍ଗକୁ ନେଇ ରାଶି ରାଶି ଆଲୋଚନା ଦର୍ଶନରେ ଦେଖିବାକୁ ମିଳେ । 'ଜୀବନ ଦୁଃଖପୂର୍ଣ୍ଣ' ଗୋଟିଏ ସାଧାରଣ ଅନୁଭବ ଉପରେ ଗମ୍ଭୀର ସମୀକ୍ଷା ଓ ଚିନ୍ତନରୁ ଗୌତମ ବୁଦ୍ଧରେ ପରିଣତ ହେଲେ । ପ୍ରାଣୀଙ୍କ ଆରତ ପ୍ରତି ହୃଦୟର ସମବେଦନା ଜଣାଇ ଭୀମ ଭୋଇ ଏକ ଦରଦୀ କବିର ସ୍ୱୀକୃତି ଲାଭ କଲେ । ଆଲବର୍ଟ ସ୍ୱାଏତଜର ଓ ମଦର ଟେରେସା ଦୁଃସ୍ଥ ମଣିଷର ସେବାରେ ଜୀବନକୁ ଉତ୍ସର୍ଗ କରି ଆଜି ବିଶ୍ୱବିଖ୍ୟାତ ହୋଇଛନ୍ତି । କୃଷ୍ଠ ରୋଗୀଙ୍କର ଯନ୍ତ୍ରଣା ଜର୍ଜରିତ ଦୁଃଖ ଦୂର କରିବାକୁ ବ୍ରତ ଭାବରେ ନେଇ ଡାକ୍ତର ଜେରହାର୍ଡ ହାନସନ କୃଷ୍ଠରୋଗର ନିଦାନ ବାହାର କରି ଆଧୁନିକ ଚିକିତ୍ସା ବିଜ୍ଞାନରେ ଅମର ହୋଇଛନ୍ତି । ଏହିପରି ଉଦାହରଣ ଖୋଜିଲେ ଇତିହାସରେ ଅନେକ ବ୍ୟକ୍ତିଙ୍କର ନାମ ଆସିବ, ଯେଉଁମାନେ ସମାଜରୁ ଦୁଃଖ ଦୂର କରିବାକୁ ନିଜର ଗମ୍ଭୀର ସଂପୃକ୍ତି ପ୍ରକାଶ କରିଛନ୍ତି । ସେମାନେ ଯେଉଁ ସଭ୍ୟତା, ସଂସ୍କୃତି ଓ ଜାତୀୟତାର ବ୍ୟକ୍ତି ହୁଅନ୍ତୁ ନା କାହିଁକି ସେମାନେ ମଣିଷ ଜାତିର ଆଦର୍ଶ, ନମସ୍ୟ ହୋଇ ରହିଛନ୍ତି । ସେମାନେ ବିଶ୍ୱମାନବିକତାର ପ୍ରତିଭୂ ଓ ପ୍ରତିନିଧି କହିଲେ ଅତ୍ୟୁକ୍ତି ହେବନାହିଁ ।

ଆମ ସଂସାରରେ ଯେତେ ଦୁଃଖ ଦୁର୍ଦ୍ଦଶା ରହିଛି ତାହାର ଉତ୍ସ ପ୍ରାକୃତିକ ହୋଇପାରେ କିମ୍ବା ମାନବିକ ହୋଇପାରେ । ମଣିଷ ପ୍ରାକୃତିକ ପରିବେଶରୁ ଜୀବନର ସକଳ ଆବଶ୍ୟକତା ପାଇଥାଏ । ପ୍ରକୃତି ଜୀବଜଗତର ଜନନୀ, ତେବେ ସେହି ପ୍ରକୃତି ମଣିଷ ପାଇଁ ବେଳକେ ଦୁଃଖର କାରଣ ହୋଇଥାଏ । ବାତ୍ୟା, ଭୂକମ୍ପ, ସୁନାମି, ରୋଗ, ମହାମାରୀ ମଣିଷର ସୁନାର ସଂସାରକୁ ନଷ୍ଟ କରିଦିଏ, ଦୁଃଖର ଝଂଜା ବୁହାଇଦିଏ । ପ୍ରାକୃତିକ ଦୁର୍ବିପାକ କେବେ କିପରି ସୃଷ୍ଟି ହେବ ତାହା ପ୍ରାୟତଃ ମାନବିକ ନିୟନ୍ତ୍ରଣର ବହିର୍ଭୂତ । ତେବେ ସଭ୍ୟତାର ଅଗ୍ରଗତି ସହ ମଣିଷର ପ୍ରକୃତି ସଂପର୍କିତ ଜ୍ଞାନ ବିଜ୍ଞାନର ଅଭିବୃଦ୍ଧି ଯୋଗୁ ପ୍ରତିକୂଳ ପ୍ରାକୃତିକ ସ୍ଥିତିକୁ ନିୟନ୍ତ୍ରଣ କରିବାରେ ସେ କେତେକାଂଶରେ ସମର୍ଥ ହେଲାଣି । ଖାଦ୍ୟାଭାବ, ଅନାହାର, ଦୁର୍ଭିକ୍ଷ, ମହାମାରୀ ଜନିତ ପ୍ରତିକୂଳ ପରିବେଶକୁ ଦୂର କରିବାକୁ ମଣିଷ ଆବଶ୍ୟକ ଜ୍ଞାନ ଓ ପ୍ରଯୁକ୍ତିର ବିକାଶ ଘଟାଇଲାଣି । କେଉଁଠି କିଛି ପ୍ରାକୃତିକ ବିପର୍ଯ୍ୟୟ ହେଲେ ସେହି ପରିସ୍ଥିତିରୁ ଆକ୍ରାନ୍ତ ଜନଗଣଙ୍କୁ ଉଦ୍ଧାର କରିବାକୁ ଓ ସାହଯ୍ୟର ହାତ ବଢ଼ାଇବାକୁ ସାରା ପୃଥିବୀରେ ସଚେତନତା ସୃଷ୍ଟି ହେଲାଣି । ସାରା ବିଶ୍ୱର ମଙ୍ଗଳ ପାଇଁ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ଯଥେଷ୍ଟ ଅଭ୍ୟୁଦୟ ଘଟିଲାଣି । ସଭ୍ୟତାର କ୍ରମ ବିକାଶ ଧାରାରେ ଏସବୁ ନିଶ୍ଚିତ ଉଲ୍ଲେଖନୀୟ ଉତରଣ ।

ଅନୁଶୋଚନାର ବିଷୟ ଆମ ସଂସାରରେ ଯେତେ ଦୁଃଖ ଯନ୍ତ୍ରଣା ରହିଛି ତାହାର ମୁଖ୍ୟ କାରଣ ମନୁଷ୍ୟକୃତ । ମଣିଷ ହିଁ ମଣିଷର ଦୁଃଖର କାରଣ, ଏହା ହିଁ ବିଡମ୍ବନା । ଯୁଦ୍ଧ, ସନ୍ତ୍ରାସବାଦ, ଗୋଷ୍ଠୀଗତ ବିଦ୍ୱେଷ, ସାଂପ୍ରଦାୟିକ ତିକ୍ତତା, ରାଜନୈତିକ ହିଂସା-ପ୍ରତିହିଂସା, ଅର୍ଥନୈତିକ ଶୋଷଣ ଇତ୍ୟାଦି କାରଣରୁ ସଂସାରରେ ବହୁ ଦୁଃଖର ପରିବେଶ ରହିଆସିଛି । ସମାଜରେ ନାନା ଭେଦଭାବ ଜନିତ ବିଦ୍ୱେଷ ରହିଛି । ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ଇତ୍ୟାଦି କାରଣରୁ ସମାଜରେ ବହୁ ବୈଷମ୍ୟ ଓ ଶୋଷଣ ବଦ୍ଧମୂଳ ହୋଇ ରହିଛି । ଏସବୁ ଭେଦଭାବ ପଶ୍ଚାତରେ ନାନା ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ କାରଣ ରହିଛି । ଅଜ୍ଞତା ଯୋଗୁଁ ସମାଜରେ ଦୁଃଖର ପରିବେଶ ସୃଷ୍ଟି ହୋଇଥାଏ । ଅତୀତରେ ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ଅନେକ ମହିଳାଙ୍କୁ ଡାହାଣୀ ଭାବି ହତ୍ୟା କରାଯାଇଛି । କେତେକ କୁତ୍ସିତ ପରଂପରା ଯୋଗୁ କେତେ ମଣିଷ ଦୁଃଖରେ ଜର୍ଜରିତ ହୋଇଛନ୍ତି । ଧାର୍ମିକ ବିଶ୍ୱାସ ଆଳରେ ବହୁ ଚିନ୍ତାଶୀଳ ଓ ପ୍ରଗତିଶୀଳ ବୁଦ୍ଧିଜୀବୀଙ୍କୁ ନାନା ନିର୍ଯ୍ୟାତନା ଦିଆଯାଇଛି । ନାନା ସାମାଜିକ, ଆର୍ଥିକ ଓ ପରଂପରାଗତ କାରଣରୁ ବହୁ ନାରୀ ବାରନାରୀ ହୋଇ ଜୀବନରେ ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି । ବହୁ ଶିଶୁ ପରିସ୍ଥିତିର ତାଡନାରେ ପେଟ ପୋଷିବାକୁ କଅଁଳ ବୟସରୁ ଜୀବନର ଭାର ମୁଣ୍ଡାଇବାକୁ ସଂଗ୍ରାମ କରିଛନ୍ତି ଓ

ଜୀବନର ସମସ୍ତ ସ୍ୱପ୍ନ ହରାଇଛନ୍ତି । ଏହିପରି ନାନା ମାନବକୃତ ଘଟଣାରୁ ସମାଜରେ ବହୁ ଦୁଃଖ, ଦୁର୍ଦ୍ଦଶା ରହି ଆସିଛି ।

ମଣିଷ ଭିତରର ସୃଜନଶୀଳତା ଓ ବିଚାରଶୀଳତା ଯୋଗୁ ସଭ୍ୟତାର ବିକାଶ ଯାତ୍ରା ନିରବଚ୍ଛିନ୍ନ ଭାବେ ଆଗକୁ ଯାଇଛି । ଶହେ, ଦୁଇ ଶହ ବର୍ଷ ତଳେ ଯେଉଁ ସାମାଜିକ ପରିବେଶ ଥିଲା ତହିଁରେ ଅନେକ ପରିବର୍ତ୍ତନ ଏହା ଭିତରେ ହୋଇଯାଇଛି । ଆଧୁନିକ ଜ୍ଞାନ ବିଜ୍ଞାନ, ପ୍ରଯୁକ୍ତି ଓ ସୁଦୃଢ଼ ସାମାଜିକ ସଂଗଠନ ମଣିଷର ଜୀବନଯାତ୍ରାକୁ ସହଜ ଓ ନିରାପଦ କରିପାରିଛି ଯାହା ଶହେ, ଦୁଇଶହ ବର୍ଷ ତଳେ ସମାଜରେ ଅଚିନ୍ତନୀୟ ଥିଲା । ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ତହିଁରୁ ସୃଷ୍ଟ ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ସାମାଜିକ ନ୍ୟାୟ ପରି ଆଦର୍ଶଚୟ ଧୀରେ ଧୀରେ ସାର୍ବଜନୀନ ହେବାରେ ଲାଗିଛି । ରାଜତନ୍ତ୍ର, ସାମନ୍ତବାଦ, ସାମ୍ରାଜ୍ୟବାଦ ସଭ୍ୟ ଜୀବନଧାରାର ଯେ ପରିପନ୍ଥୀ ଏହା ବିଶ୍ୱ ସ୍ତରରେ ସ୍ୱୀକୃତ ହୋଇପାରିଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଧର୍ମନିରପେକ୍ଷ ଜୀବନଦୃଷ୍ଟି ଓ ମାନବବାଦ ସାର୍ବଜନୀନ ଆଦର୍ଶ ଭାବେ ବୌଦ୍ଧିକ ଜଗତରେ କ୍ରାନ୍ତିକାରୀ ପରିବର୍ତ୍ତନ ସୃଷ୍ଟି କରିବାକୁ ଅଭିନିବେଶ ଯୋଗାଇଛି । ଏସବୁ ସଭ୍ୟତାର ଉତ୍ତରଣ ନିଶ୍ଚୟ । ଏସବୁ ସତ୍ତ୍ୱେ ତଥାପି ସଂସାରରେ ବହୁ ଦୁର୍ବୁଦ୍ଧି, ଶୋଷଣ, ଅନ୍ୟାୟ ଓ ଅତ୍ୟାଚାର ରହିଛି ।

ଏକଥା ଅନୁଭୂତିରୁ ଜ୍ଞାତ ଯେ ମଣିଷ ସ୍ୱଭାବରେ ଯେପରି ମହତ୍ତର ଆବେଗ ରହିଛି ସେହିପରି ପଶୁତ୍ୱର ସ୍ୱଭାବ ରହିଛି । ମଣିଷ ଭିତରେ ଦେବତ୍ୱ ଯେପରି ରହିଛି ସେହିପରି ସ୍ୱାର୍ଥପରତା ମଧ ରହିଛି । ମଣିଷ ଯେପରି ହୃଦୟବାନ ହୋଇପାରେ ସେହିପରି କ୍ରୂର ଓ ଅବିବେକୀ ମଧ ହୋଇପାରେ । ତେବେ ବ୍ୟକ୍ତି ସ୍ୱଭାବକୁ ଉନ୍ନତ, ଅଧିକ ମାନବିକ, ଶୃଂଖଳିତ କରିବାରେ ସାମାଜିକ ଜୀବନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଯେଉଁ ଭୂଖଣ୍ଡରେ ବା ରାଷ୍ଟ୍ରରେ ସାମାଜିକ ଚେତନାର ସ୍ତର ଉନ୍ନତ ହୋଇଛି, ଅର୍ଥନୈତିକ ବ୍ୟବସ୍ଥା ଅଧିକ ନ୍ୟାୟଯୁକ୍ତ ହେବାର ପରିବେଶ ଆସିଛି ସେଠାରେ ଜନଜୀବନର ଗୁଣାତ୍ମକ ସ୍ଥିତିରେ ଯଥେଷ୍ଟ ଉନ୍ନତି ହୋଇ ଚାଲିଛି । ଅଥଚ ଯେଉଁଠି ନାଗରିକ ସଚେତନତାର ସ୍ତର ଉନ୍ନତ ହୋଇନାହିଁ, ସମାଜରେ ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ଦୃଢ଼ ହୋଇ ରହିଛି, ଶିକ୍ଷାର ଓ ଗୁଣାତ୍ମକ ଜୀବନଦୃଷ୍ଟିର ବିକାଶ ନିମ୍ନସ୍ତରରେ ରହିଛି ସେଠାରେ ଜନଜୀବନରେ ଦୁଃଖର ପରିବେଶ ଅଧିକ ରହିବା ସ୍ୱାଭାବିକ ମନେହୁଏ । ନାଗରିକ ବିଶୃଂଖଳା, ଅର୍ଥନୈତିକ ଶୋଷଣ ଓ ବୈଷମ୍ୟ, ସାଂସ୍କୃତିକ କ୍ଷୟଶୀଳତା ସମାଜରେ ବ୍ୟାପକ ହୋଇ ରହିଲେ ଜନ ଜୀବନରେ ଦୁଃଖ, ହତାଶା, ନୈରାଶ୍ୟର ପରିବେଶ ଅଧିକ ରହିବା ଅନୁଭୂତିରୁ ଜଣାଯାଏ । ବ୍ୟକ୍ତିର ସୁଖକର ସ୍ଥିତି ସାମାଜିକ ପରିବେଶଦ୍ୱାରା ଅନେକାଂଶରେ ପ୍ରଭାବିତ ଓ ନିୟନ୍ତ୍ରିତ ହୋଇଥାଏ । ପ୍ରତ୍ୟେକ ବ୍ୟକ୍ତି ଶିକ୍ଷା, କର୍ମସଂସ୍ଥାନ, ସାମାଜିକ

ନିରାପତ୍ତା, ଆବଶ୍ୟକ ସମୟରେ ଚିକିତ୍ସା ଓ ସମ୍ମାନଜନକ ଜୀବନ ପାଇଁ ବୃହତ୍ତର ସମାଜ ଉପରେ ନିର୍ଭର କରିଥାଏ । ଏହି ପରିବେଶ ସମାଜରେ ଉପଲବ୍ଧ ହେଉଥିଲେ ବ୍ୟକ୍ତି ଜୀବନରେ ସୁଖକର ପରିବେଶ ରହିବାର ଅବକାଶ ରହିଥାଏ । ପରନ୍ତୁ ଏକ ଅନଗ୍ରସର ପରିବେଶରେ ଜନଜୀବନରେ ଅଶାନ୍ତି ଓ ନୈରାଶ୍ୟବୋଧ ଅଧିକ ରହିବା ମନେହୁଏ । ମୋଟ ଉପରେ ବ୍ୟକ୍ତି ଭିତରେ ଉତ୍ତମ ଜୀବନର ପ୍ରେରଣା ସୃଷ୍ଟି କରିବାକୁ ସାମାଜିକ ପରିବେଶର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଜୀବନର ଦୁଃଖ, ହତାଶାଭାବ, ନୈରାଶ୍ୟକୁ ହ୍ରାସ କରିବାରେ ସାମାଜିକ ପରିବେଶର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ ଏହା ନିଃସନ୍ଦେହ ମନେହୁଏ ।

ପ୍ରାକୃତିକ ପରିବେଶରୁ ମଣିଷ ପାଇଁ ଯେଉଁ ଆହ୍ୱାନ ଆସୁଛି ତାହାର ମୁକାବିଲା ପାଇଁ ବିଶ୍ୱସ୍ତରରେ ନାନା ପ୍ରୟାସ ହେଉଛି । ବହୁ କ୍ଷେତ୍ରରେ ଜ୍ଞାନ ବିଜ୍ଞାନର ବିକାଶ ଯୋଗୁ ବହୁ ଜଟିଳ ସଂକଟକୁ ପ୍ରତିହତ କରାଯାଇ ପାରୁଛି । କିନ୍ତୁ ସାମାଜିକ ଜୀବନ ପ୍ରବାହ ସବୁ ଭୂଖଣ୍ଡରେ ଉନ୍ନତ ହୋଇ ନାହିଁ । ରାଜନୈତିକ ଅସ୍ଥିରତା, ଜାତିଗତ ଭେଦଭାବ, ଗୋଷ୍ଠୀ ବିଦ୍ୱେଷ, ସାଂପ୍ରଦାୟିକ ତିକ୍ତତା, ଅର୍ଥନୈତିକ ବୈଷମ୍ୟ ବିଭିନ୍ନ ସମାଜରେ ଭରପୁର ହୋଇ ରହିଛି । ଏସବୁକୁ ପରିବର୍ତ୍ତନ କରି ମାନବିକ ସଂପ୍ରୀତି, ଭାତୃତ୍ୱଭାବ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ବ୍ୟାପକ ପ୍ରସାର ଦ୍ୱାରା ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇପାରିବ । ଜୀବନର ଗୁଣାତ୍ମକ ମାନ ଉନ୍ନତ ହେଲେ ଜୀବନରୁ ଅନେକ ଦୁଃଖ, ନୈରାଶ୍ୟ ଓ ହତାଶା ଦୂର ହୋଇପାରିବ ।

ବ୍ୟକ୍ତି ମରଣଶୀଳ, ମୃତ୍ୟୁ ଜୀବନର ଅବଶ୍ୟମ୍ଭାବୀ ପରିଣତି । ସମାଜ କିନ୍ତୁ ଚିରସ୍ଥାୟୀ । ସମାଜ ଯେତେ ଅଧିକ ପ୍ରଗତିଶୀଳ, ମାନବିକ ଓ ଶୃଙ୍ଖଳିତ ହେବ ତାହାର ପ୍ରଭାବରେ ଜନଜୀବନ ଉନ୍ନତ ହେବା ସହ ଜୀବନରୁ ଦୁଃଖ, ଯନ୍ତ୍ରଣା ହ୍ରାସ ପାଇପାରିବ । ଆମକୁ ମନେ ରଖିବାକୁ ହେବ ଯେ କୌଣସି କଳ୍ପିତ ଦିଅଁ ଦେବତା ବା ଈଶ୍ୱର ସମାଜକୁ ଉନ୍ନତ କରିଦେବେ ନାହିଁ ବା ଅତୀତରେ କେବେ କରିନାହାନ୍ତି । ମଣିଷର ଉଦ୍ୟମରେ ହିଁ ସାମାଜିକ ବିକାଶ ଓ ସଭ୍ୟତାର କ୍ରମୋନ୍ନତି ହୋଇଛି । ସୁତରାଂ ଏକ ଉନ୍ନତ ସମାଜ ଓ ପ୍ରୀତିପୂର୍ଣ୍ଣ ଜୀବନ ମଣିଷଦ୍ୱାରା ସମ୍ଭବ । ସବୁ ଯୁଗରେ ଓ ସଭ୍ୟତାରେ ମାନବବାଦୀ ମାନେ ଏହି ବାର୍ତ୍ତା ଦେଇଛନ୍ତି ଓ ଏକ ଦୁଃଖରହିତ ପରିବେଶ ପାଇଁ ଗଭୀର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି ।

(୨୦.୨.୨୦୧୩)



# ଦୁଃଖ ଓ ଈଶ୍ୱରୀୟ ନ୍ୟାୟ: ତିନୋଟି ଧର୍ମର କାହାଣୀ

ଆମ ସଂସାରରେ ଅନେକ ଦୁଃଖ, ଯନ୍ତ୍ରଣା, କ୍ରୂରତା, ମନ୍ଦ ଓ ଅଶୁଭ ରହିଛି । ଇତିହାସର କୌଣସି କାଳଖଣ୍ଡରେ ଏକ ଦୁଃଖରହିତ ବିଶ୍ୱର ଚିତ୍ର ଦେଖିବାକୁ ମିଳେ ନାହିଁ । ସଭ୍ୟତା ଯେତେ ଆଗକୁ ଗଲେ ମଧ୍ୟ ପୃଥିବୀରୁ ଦୁଃଖ ଦୁର୍ଦ୍ଦଶା ଲୋପ ହେଉ ନାହିଁ । ଅବଶ୍ୟ ମଣିଷର ଭୌତିକ ସୁଖ, ଶାନ୍ତି ବଢ଼ିବାରେ ଲାଗିଛି । ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇଚାଲିଛି ଓ ସାମାଜିକ ସଂପର୍କ ଆନ୍ତର୍ଜାତିକ ହେବାରେ ଲାଗିଛି; ଏ ସତ୍ତ୍ୱେ ଆମ ସଂସାରରୁ ଦୁଃଖ ଦୁର୍ଦ୍ଦଶା ଦୂର ହୋଇ ପାରୁନାହିଁ । ରାଜତନ୍ତ୍ର ଯୁଗରେ ସାରା ପୃଥିବୀରେ ଯୁଦ୍ଧ, ବିଭୀଷିକା, ଅତ୍ୟାଚାର ସମାଜରେ ପ୍ରବଳ ରହିଥିଲା । ଆଧୁନିକ ବିଜ୍ଞାନର ବିକାଶ ପୂର୍ବରୁ ବିଭିନ୍ନ ମହାମାରୀ ଯୋଗୁ ଗଣ-ମୃତ୍ୟୁର ପରିବେଶ ସୃଷ୍ଟି ହୋଇଥିଲା । ମଧ୍ୟଯୁଗୀୟ ମାନସିକତାରେ ନାନା ଭେଦଭାବ ଯୋଗୁ ମଣିଷ ଉପରେ ମଣିଷର ଅତ୍ୟାଚାର କଳ୍ପନାତୀତ ଥିଲା । ଗଣତାନ୍ତ୍ରିକ ବିଚାରବୋଧର ବିକାଶ, ବିଜ୍ଞାନର ଅଭ୍ୟୁଦୟ ଓ ମାନବବାଦୀ ମୂଲ୍ୟବୋଧର ପ୍ରସାର ଯୋଗୁ ଅତୀତର ପରିବେଶରେ ଅନେକ ପରିବର୍ତ୍ତନର ସୂତ୍ରପାତ ହୋଇଛି । ତଥାପି ଆମ ସଂସାରରେ ଅନେକ ଦୁଃଖ, ଯନ୍ତ୍ରଣା, କ୍ରୂରତା ଓ ଅମାନବିକତା ରହିଛି । ପ୍ରାକୃତିକ ଦୁର୍ବିପାକ ଜନିତ କାରଣରୁ ହେଉ କିମ୍ବା ମାନବକୃତ କ୍ରୂରତା, ହିଂସା ଓ ଅନ୍ୟାୟ ଯୋଗୁ ହେଉ ଆମ ସଂସାରରେ ଅନେକ ଦୁଃଖ, ଯନ୍ତ୍ରଣା ରହିଛି ।

ଦୁଃଖ ଓ ମନ୍ଦ ସହିତ ଈଶ୍ୱରୀୟ ବ୍ୟବସ୍ଥାଟି କିପରି ସମତାଳ? ବୌଦ୍ଧଧର୍ମ ଓ ଜୈନଧର୍ମକୁ ବାଦ୍ ଦେଲେ ଅନ୍ୟ ସମସ୍ତ ଧର୍ମରେ 'ଈଶ୍ୱର' ଏକ ପ୍ରମୁଖ ଭାବନା । ଧାର୍ମିକ ପରିଭାଷାରେ ଗ୍ରହଣ କରାଯାଏ ଯେ ଈଶ୍ୱର ସବୁର ସ୍ରଷ୍ଟା । ସେ କେବଳ ସ୍ରଷ୍ଟା

ନୁହନ୍ତି ସେ ସର୍ବଶକ୍ତିମାନ ଓ କରୁଣାମୟ । ବିଶ୍ୱରେ ଯାହା କିଛି ଘଟେ ସବୁ ଈଶ୍ୱରଙ୍କ ନିର୍ଦ୍ଦେଶରେ ହୁଏ । ଏହି ଭାବନାକୁ ଅନେକ ଲୋକ ଅତି ନିଷ୍ଠାର ସହ ବିଶ୍ୱାସ କରନ୍ତି । ଏହି ପରିପ୍ରେକ୍ଷୀରେ ଈଶ୍ୱରଙ୍କ ସଂପର୍କରେ ପ୍ରଶ୍ନ ଉଠେ: ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ କାହିଁକି ପ୍ରାକୃତିକ ଦୁର୍ବିପାକ ପରି ଘଟଣାମାନଙ୍କୁ ନିୟନ୍ତ୍ରଣ କରନ୍ତି ନାହିଁ ? ସେହିପରି ପ୍ରଶ୍ନ ଉଠେ: ଯଦି ଈଶ୍ୱର କରୁଣାମୟ, ତେବେ ମଣିଷର ଅପ୍ରମିତ ଦୁଃଖ ଦୁର୍ଦ୍ଦଶାରେ ଈଶ୍ୱର କାହିଁକି ସେହି ଦୁଃଖକୁ ଦୂର କରନ୍ତି ନାହିଁ ? ଯେହେତୁ ସବୁ କାଳଖଣ୍ଡରେ ସଂସାରରେ ଅପ୍ରମିତ ଦୁଃଖ ଯନ୍ତ୍ରଣା ରହିଛି ତେଣୁ ଈଶ୍ୱର ହୁଏତ ସର୍ବଶକ୍ତିମାନ ନୁହନ୍ତି କିମ୍ୱା ସେ କରୁଣାମୟ ନୁହନ୍ତି ।

ଧର୍ମରେ ଗ୍ରହଣ କରାଯାଏ ଯେ ଈଶ୍ୱର ସର୍ବଶକ୍ତିମାନ ଓ କରୁଣାମୟ । ସେପରି ସ୍ଥଳେ ପ୍ରାକୃତିକ ଦୁର୍ବିପାକ, ମଣିଷର ଅପ୍ରମିତ ଦୁଃଖ, ଯନ୍ତ୍ରଣା ଓ କ୍ରୂରତା ସହ ଈଶ୍ୱରୀୟ ବ୍ୟବସ୍ଥା ବା ନ୍ୟାୟକୁ କିପରି ସମନ୍ୱିତ କରାଯାଇ ପାରିବ ? ଏହି ପରିପ୍ରେକ୍ଷୀରେ ମଣିଷର ଦୁଃଖକୁ ଈଶ୍ୱରୀୟ ନ୍ୟାୟ ଆଧାରରେ ଧର୍ମରେ କିପରି ବ୍ୟାଖ୍ୟା କରାଯାଇଛି ତାହାର କିଂଚିତ ଆଲୋଚନା କରାଯାଉ । ଏଠାରେ ଖ୍ରୀଷ୍ଟଧର୍ମ, ଇଶଲାମ ଧର୍ମ ଓ ହିନ୍ଦୁ ଧର୍ମ ପରି ପୃଥିବୀର ତିନୋଟି ପ୍ରମୁଖ ମତକୁ ସୂଚାଇବା ଆମର ଲକ୍ଷ୍ୟ ।

ଖ୍ରୀଷ୍ଟଧର୍ମ ଏକ ଏକେଶ୍ୱରବାଦୀ ଧର୍ମ । ଏହି ଧର୍ମର ମତାନୁଯାୟୀ ଈଶ୍ୱର ସ୍ରଷ୍ଟା ଏବଂ ସେ ସର୍ବଶକ୍ତିମାନ, ସର୍ବଦ୍ରଷ୍ଟା ଓ କରୁଣାମୟ । ଈଶ୍ୱର ନିତ୍ୟ, ଅସୀମ ଓ ତାଙ୍କର ବ୍ୟକ୍ତିସତ୍ତା ରହିଛି । ସେ ବିଶ୍ୱକୁ ଶୂନ୍ୟରୁ ସୃଷ୍ଟି କରି ସାରିବା ପରେ ପ୍ରଥମେ ପୁରୁଷକୁ ଓ ପରେ ପୁରୁଷ ଦେହରୁ ହାଡ଼ ଖଣ୍ଡିଏ ନେଇ ନାରୀକୁ ସୃଷ୍ଟି କଲେ । ଖ୍ରୀଷ୍ଟଧର୍ମରେ ସ୍ୱର୍ଗ, ନରକ ଓ ବିଚାର ଦିବସର କଥା ରହିଛି; ଜନ୍ମାନ୍ତରବାଦର ଭାବନା ଏଥିରେ ନାହିଁ । ମୃତ୍ୟୁ ପରେ ବ୍ୟକ୍ତିର ଆତ୍ମା ରହେ, ବିଶ୍ୱର ଅନ୍ତିମ ଦିବସରେ ଆତ୍ମାମାନେ ଶରୀର ଧରି କବରରୁ ଉଠିବେ ଓ ସେମାନଙ୍କ ପାପ-ପୁଣ୍ୟର ବିଚାର କରାଯିବ । ଅଧିକ ପୁଣ୍ୟ କରିଥିବା ଆତ୍ମାମାନଙ୍କୁ ଅନନ୍ତ କାଳ ପାଇଁ ସ୍ୱର୍ଗକୁ ପଠାଯିବ ଓ ଅଧିକ ପାପ କରିଥିବା ଆତ୍ମାମାନଙ୍କୁ ସବୁଦିନ ପାଇଁ ନରକକୁ ପଠାଯିବ । ତେବେ ପ୍ରଶ୍ନ ହେଉଛି: ଆମ ସଂସାରରେ ଏତେ ଦୁଃଖ, ଯନ୍ତ୍ରଣା କାହିଁକି ରହିଛି ? ଖ୍ରୀଷ୍ଟଧର୍ମର ବିଶ୍ୱାସାନୁଯାୟୀ ଆଦି ମଣିଷର ମୂଳ ପାପ ଯୋଗୁ ଏହା ରହିଛି । ଈଶ୍ୱର ପ୍ରଥମ ପୁରୁଷ ଆଦାମ୍ ଓ ପ୍ରଥମ ନାରୀ ଇଭ୍‌କୁ ସ୍ୱର୍ଗର ଉଦ୍ୟାନରେ ବିଚରଣ କରିବାକୁ କହିଲେ । ଗୋଟିଏ ବୃକ୍ଷର ଫଳ ନଖାଇବାକୁ ସେମାନଙ୍କୁ ବାରଣ କରିଥିଲେ । ଉଦ୍ୟାନରେ ବୁଲୁ ବୁଲୁ ସତାନ ନାମକ ଆଞ୍ଜେଲ ନିଷିଦ୍ଧ ବୃକ୍ଷର ଫଳ ଖାଇବାକୁ ଇଭ୍‌କୁ ପ୍ରଲୁବ୍ଧ କଲେ । ଇଭ୍ ନିଷିଦ୍ଧ ବୃକ୍ଷର ଫଳ ତୋଳି ଖାଇଲେ ଓ

ଏହା ଖାଇବାକୁ ଆଦାମକୁ ପ୍ରରୋଚିତ କଲେ । ସେମାନେ ଏହା ଖାଇବା ପରେ ସେମାନଙ୍କ ପାଖରେ ମାନବିକ ପ୍ରବୃତ୍ତି ଦେଖାଦେଲା । ଈଶ୍ୱରଙ୍କ ବାଣୀକୁ ଅବମାନନା କରିଥିବା ଯୋଗୁ ସେମାନେ ଦୁଃଖପୂର୍ଣ୍ଣ ଜୀବନ ଅତିବାହିତ କରିବାକୁ ଅଭିଶପ୍ତ ହେଲେ । ଆଦିପୁରୁଷ ଓ ଆଦିନାରୀ କରିଥିବା ମୂଳ ପାପ ଯୋଗୁଁ ସମାଜରେ ଏତେ ଦୁଃଖ ଦୁର୍ଦ୍ଦଶା ରହିଛି । ପ୍ରତ୍ୟେକ ମଣିଷ ପାପୀ ଓ କିଛି ମନ୍ଦ ଗୁଣର ଅଧିକାରୀ, ତେବେ ଈଶ୍ୱରଙ୍କୁ ପ୍ରେମ କରି ମନୁଷ୍ୟ ସମାଜର ସେବା କଲେ ଅନ୍ତିମ ଦିବସର ବିଚାର ପରେ ମଣିଷ ଅନନ୍ତ କାଳ ପାଇଁ ସ୍ୱର୍ଗ ସୁଖ ଭୋଗ କରିପାରିବ ।

ଇଶଲାମ ବି ଏକ ଏକେଶ୍ୱରବାଦୀ ଧର୍ମ । ଇଶଲାମର ଅର୍ଥ ହେଲା ଈଶ୍ୱର ବା ଆଲ୍ଲାଙ୍କ ପାଖରେ ପୂର୍ଣ୍ଣ ଶରଣାଗତ ହେବା । ଏହି ଧର୍ମର ବିଶ୍ୱାସ ଅନୁଯାୟୀ ପ୍ରତ୍ୟେକ ମନୁଷ୍ୟର ଆତ୍ମା ରହିଛି ଯାହା ବ୍ୟକ୍ତିର ମୃତ୍ୟୁ ପରେ ରହେ । ଏହି ଧର୍ମରେ ଜନ୍ମାନ୍ତରବାଦ ନାହିଁ, ମଣିଷର ମାତ୍ର ଗୋଟିଏ ଜନ୍ମ ରହିଛି । ଇଶଲାମରେ ସ୍ୱର୍ଗ-ନରକର ଭାବନା ରହିଛି । ଅନ୍ତିମ ଦିବସ ପରେ ବିଚାର ଦିବସ ଆସିବ । କବର ମାନଙ୍କରୁ ଶବମାନେ ଉଠିବେ, ସେମାନଙ୍କର ଆତ୍ମାମାନେ ସେମାନଙ୍କ ସହ ମିଳିତ ହେବେ । ଦେବଦୂତମାନେ ପୁନର୍ମିଳିତ ମନୁଷ୍ୟମାନଙ୍କୁ ନେଇ ଆଲ୍ଲାଙ୍କ ପାଖରେ ଉପସ୍ଥିତ କରାଇବେ । ଆଲ୍ଲା ସେମାନଙ୍କର ବିଚାର କରି ସେମାନଙ୍କୁ ସ୍ୱର୍ଗ ବା ନରକକୁ ପଠାଇବେ । ତେବେ ପ୍ରଶ୍ନ ହେଉଛି- ସଂସାରରେ ଏତେ ଦୁଃଖ, ଯନ୍ତ୍ରଣା, କ୍ରୂରତା କାହିଁକି ରହିଛି ? ଇଶଲାମର ବିଶ୍ୱାସ ଅନୁଯାୟୀ ଇବ୍ଲିସ ନାମକ ଏକ ମନ୍ଦ ଦେବଦୂତ ବା ଡେଭିଲ ରହିଛି, ଯିଏ ମନୁଷ୍ୟ ମାନଙ୍କୁ ମନ୍ଦ କାର୍ଯ୍ୟ କରିବାକୁ ବା ଖରାପ ବାଟରେ ଯିବାକୁ ପ୍ରେରଣା ଦେଉଛି । ଇସଲାମର ବିଶ୍ୱାସରେ ସଂସାରରେ ସବୁ କିଛି ଆଲ୍ଲାଙ୍କ ଦିବ୍ୟ ଯୋଜନାନୁଯାୟୀ ହୁଏ । ଆଲ୍ଲାଙ୍କ ପାଖରେ ବ୍ୟକ୍ତିର ବିଶ୍ୱାସକୁ ପରୀକ୍ଷା କରିବାକୁ ସେ ଦୁଃଖ ଦେଇଥାନ୍ତି । ଈଶ୍ୱରୀୟ ବିଧାନ ରହସ୍ୟମୟ, ତାକୁ ପ୍ରଶ୍ନ କରିବା କିମ୍ବା ସନ୍ଦେହ କରିବା ଅଧାର୍ମିକ କାର୍ଯ୍ୟ ।

ଖ୍ରୀଷ୍ଟଧର୍ମ ବା ଇଶଲାମ ଧର୍ମରେ ପୁନର୍ଜନ୍ମବାଦ ଭାବନା ନଥିବାରୁ ଜନ୍ମରୁ ମଣିଷ ଭିତରେ କାହିଁକି ଏତେ ବୈଷମ୍ୟ ରହିଛି, କିଏ ଭଲ ପରିବାରରେ ଜନ୍ମ ହୋଇ ଜୀବନ ସାରା ଭଲ ପରିବେଶରେ ଥାଇ ଉନ୍ନତ ଜୀବନ ଯାପନ କରୁଛି, କିଏ ମନ୍ଦ ପରିବେଶରେ ଜନ୍ମ ହୋଇ ଜୀବନ ସାରା ଦୁଃଖ କଷ୍ଟ ଭିତରେ ରହିଛି, କିଏ ସୁସ୍ଥ ହୋଇ ଜନ୍ମ ହେଉଛି ତ କିଏ ବିକଳାଙ୍ଗ ହୋଇ ଜନ୍ମ ହେଉଛି । ଏହି ପ୍ରଶ୍ନର କୌଣସି ସନ୍ତୋଷ ଜନକ ଉତ୍ତର ନାହିଁ । ଈଶ୍ୱର କାହାକୁ କେଉଁ ସ୍ଥିତିରେ ଜନ୍ମ ଦେଇ ତାର ପରୀକ୍ଷା ନିଅନ୍ତି ତାହା ମଣିଷ ଚିନ୍ତାର ବହିର୍ଭୂତ । ଏହି ଦୁଇ ଧର୍ମର ବିଶ୍ୱାସରେ ଜଗତରେ ସବୁ ଯୋଜନା ଈଶ୍ୱରକୃତ, ସବୁ ଦୁଃଖ ଯନ୍ତ୍ରଣା ଆମର ପରୀକ୍ଷା ମାତ୍ର; ଏସବୁକୁ ପ୍ରଶ୍ନ କରିବା ଅଧାର୍ମିକ ଓ ଈଶ୍ୱରବିରୋଧୀ କାର୍ଯ୍ୟ ।

ହିନ୍ଦୁ ଧର୍ମରେ ଏକ ନିର୍ଦ୍ଦିଷ୍ଟ ମାର୍ଗ ବା ବିଶ୍ୱାସ ନାହିଁ । ଏହା ବହୁ ବିଶ୍ୱାସ ଓ ସାଂସ୍କୃତିକ ଧାରାର ଏକ ଧର୍ମ । ଶୈବବାଦ, ଶାକ୍ତବାଦ, ପିତୃଳାପୂଜକ, ଅପୌତଳିକତା, ବହୁ ଈଶ୍ୱରବାଦ, ଏକେଶ୍ୱରବାଦ ପରି ବହୁ ପରସ୍ପରବିରୋଧୀ ଭାବଧାରା ହିନ୍ଦୁଧର୍ମରେ ରହିଛି । ତେବେ ଜନ୍ମାନ୍ତରବାଦ ଓ କର୍ମସିଦ୍ଧାନ୍ତ ହିନ୍ଦୁଧର୍ମର ଦୁଇଟି ପ୍ରଧାନ ବିଶ୍ୱାସ । ଏହି ବିଶ୍ୱାସ ଅନୁସାରେ ପ୍ରତ୍ୟେକ ପ୍ରାଣୀର ଏକ ଆତ୍ମା ରହିଛି, ଆତ୍ମା ଅମର ଓ ଜନ୍ମ-ମୃତ୍ୟୁର ଚକ୍ରରେ ଏହା ମୁକ୍ତି ପାଇବା ପର୍ଯ୍ୟନ୍ତ ଘୂରିବାକୁ ବାଧ । ତେବେ ଆତ୍ମାର ସ୍ୱରୂପ କ'ଣ ଓ ମୁକ୍ତି କେବେ ଓ କିପରି ମିଳେ ତାହାର ସର୍ବସମ୍ମତ ଉତ୍ତର ପରିବର୍ତ୍ତେ ଭିନ୍ନ ଭିନ୍ନ ମତ ଓ ବିଶ୍ୱାସର ଅବତାରଣା ହିନ୍ଦୁଧର୍ମରେ ଦେଖିବାକୁ ମିଳେ । ସାଧାରଣରେ ବିଶ୍ୱାସ କରାଯାଏ ଯେ ବ୍ୟକ୍ତିର ସୁଖ, ଦୁଃଖ ତାର ପୂର୍ବକର୍ମର ଫଳ । କର୍ମର ଫଳ ସଂଚିତ ହୋଇ ରହେ ଓ ପରେ କର୍ତ୍ତାକୁ ମିଳେ ଯାହାକୁ ପ୍ରାରବ୍ଧ କୁହାଯାଏ । ସମାଜରେ ଯାହା ଦୁଃଖ, ବୈଷମ୍ୟ ଓ ଭିନ୍ନତା ରହିଛି ତାହା ପୂର୍ବ ଜନ୍ମର ଫଳ । ମଣିଷମାନଙ୍କର ଦୁଃଖ ଯଦି ପୂର୍ବ ଜନ୍ମର କର୍ମଫଳ, ତେବେ ସେ ଜନ୍ମରେ ବ୍ୟକ୍ତିମାନେ ଏପରି କର୍ମ କାହିଁକି କଲେ ତାହାର ଉତ୍ତର ହେବ ତାହା ତା ପୂର୍ବଜନ୍ମର ଫଳ । ଏହି ଧାରାରେ ଆମେ ଅନନ୍ତ ଜନ୍ମ ଆଡକୁ ଯିବା ଓ ଏହାର କିଛି ଅର୍ଥପୂର୍ଣ୍ଣ ସମାଧାନ ପାଇବା ନାହିଁ । କୁହାଯାଏ ଯେ ସବୁ ଆତ୍ମା ପ୍ରଥମରୁ ସମାନ ଥିଲେ, ଯିଏ ଯେପରି କର୍ମ କରିଛି ସେ ସେପରି ଫଳ ପାଇଛି, ପରିଣାମତଃ ଏତେ ଦୁଃଖ ବୈଷମ୍ୟ ସୃଷ୍ଟି ହୋଇଛି । ସମାନ ଆତ୍ମାମାନେ ଭିନ୍ନ ଭିନ୍ନ କର୍ମ କଲେ କାହିଁକି ? ଯେଉଁମାନେ ଭଲ କାମ କରିଛନ୍ତି ସେମାନଙ୍କୁ ଈଶ୍ୱରୀୟ କରୁଣା ମିଳିଛି ଓ ଯେଉଁମାନେ ମନ୍ଦ କାମ କରି ଚାଲିଛନ୍ତି ସେମାନଙ୍କୁ ଈଶ୍ୱରୀୟ କରୁଣା ମିଳିନାହିଁ ବା କମ୍ ମିଳିଛି । ସିଦ୍ଧାନ୍ତ ଆସିବ ଆତ୍ମାମାନଙ୍କୁ ହୁଏତ ଈଶ୍ୱର ସମାନ ଭାବେ ସୃଷ୍ଟି କରି ନାହାନ୍ତି ବା ତାଙ୍କ କରୁଣା ପ୍ରଦାନରେ ବୈଷମ୍ୟ କରିଛନ୍ତି । ସେହି ସ୍ଥିତିରେ ଆତ୍ମା ମାନଙ୍କର ଅନ୍ତର୍ନିହିତ ଭିନ୍ନତାକୁ ସ୍ୱୀକାର କରିବାକୁ ହେବ କିମ୍ବା ଈଶ୍ୱରୀୟ ବିଧାନଟି ଯେ ଭେଦଭାବମୂଳକ ଏହା ଗ୍ରହଣୀୟ ହେବ ।

ମୋଟ ଉପରେ ପ୍ରାକୃତିକ ଦୁର୍ବିପାକ, ମାନବିକ ଦୁଃଖ ଦୁର୍ଦ୍ଦଶା ଓ କ୍ରୁରତାକୁ ବ୍ୟାଖ୍ୟା କରିବା ପାଇଁ ଧର୍ମୀୟ ବିଶ୍ୱାସରେ ଯେଉଁ 'ଈଶ୍ୱରୀୟ ନ୍ୟାୟ'ର ପରିକଳ୍ପନା କରାଯାଇଛି ତାହା ଯେ ସଂପୂର୍ଣ୍ଣ କାଳ୍ପନିକ ଓ ଅଯୌକ୍ତିକ ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

(୬.୩.୨୦୧୩)



# ଦୁଃଖ ଓ ଈଶ୍ୱରୀୟ ନ୍ୟାୟ: ଦୁଇଟି ଦାର୍ଶନିକ ସିଦ୍ଧାନ୍ତ

ଆମ ସଂସାରରେ ଅନେକ ଦୁଃଖ, ମନ୍ଦ ଓ ଅଶୁଭ ବା ଇଭିଲ ରହିଛି । ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ହେଉ କିମ୍ବା ମାନବିକ କ୍ରୁରତା ଓ ଅବିଚାର ଯୋଗୁ ହେଉ ସମାଜରେ ସବୁ ସମୟରେ ଅପ୍ରମିତ ଦୁଃଖ ଦୁର୍ଦ୍ଦଶା ସୃଷ୍ଟି ହେଉଛି । ଈଶ୍ୱରୀୟ ବ୍ୟବସ୍ଥାରେ ଏହି ଦୁଃଖ ଓ ମନ୍ଦକୁ କିପରି ବ୍ୟାଖ୍ୟା କରାଯିବ ? ଅନେକ ବ୍ୟକ୍ତି ଧାର୍ମିକ ବିଶ୍ୱାସର ପ୍ରଭାବରୁ ଈଶ୍ୱର ସର୍ବଶକ୍ତିମାନ ଓ ପରମ ଦୟାଳୁ ବୋଲି ବିଶ୍ୱାସ କରନ୍ତି । ସର୍ବଶକ୍ତିମାନ ଓ କରୁଣାମୟ ଈଶ୍ୱର ସଂସାରରେ ଏତେ ଦୁଃଖର ପରିବେଶ କାହିଁକି ଦେଇଛନ୍ତି ! ଦାର୍ଶନିକ ଅନୁସନ୍ଧିତ୍ସାରେ ଏହି ପ୍ରଶ୍ନ ଉଠିଛି- ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ ମଣିଷର ଅବାଞ୍ଛିତ ଦୁଃଖକୁ ନିୟନ୍ତ୍ରଣ କରିପାରନ୍ତେ । ଯଦି ଈଶ୍ୱର କରୁଣାମୟ, ତେବେ ସେ ପ୍ରାଣୀଙ୍କ ଦୁଃଖକୁ ଲାଘବ କରିପାରନ୍ତେ । କିନ୍ତୁ ସଂସାରରେ ଅପ୍ରମିତ ଦୁଃଖ ଘଟି ଆସିଛି । ସୁତରାଂ ଈଶ୍ୱର ସର୍ବଶକ୍ତିମାନ ନୁହନ୍ତି କିମ୍ବା କରୁଣାମୟ ନୁହନ୍ତି ।

ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରି ତାଙ୍କ ସର୍ବଶକ୍ତିମାନ ଓ କରୁଣାମୟ ସ୍ୱରୂପକୁ ବିଶ୍ୱାସ କଲେ ଏହି ପ୍ରଶ୍ନର କ'ଣ ଉତ୍ତର ଦିଆଯିବ ? ମଣିଷର ଦୁଃଖ, ଦୁର୍ଦ୍ଦଶା ଓ କ୍ରୁରତା ସହ ଈଶ୍ୱରୀୟ ବ୍ୟବସ୍ଥାକୁ କିପରି ସଂଯୋଜିତ କରାଯାଇ ପାରିବ ? ଦାର୍ଶନିକ ମାନେ ଯେହେତୁ ଚିନ୍ତା ରାଜ୍ୟର ବିପ୍ଳବୀ, ସେମାନେ ଏହି ପ୍ରସଙ୍ଗ ଉଠାଇବା ସହ ଏହା ଉପରେ ଗମ୍ଭୀର ଆଲୋଚନା କରିଥିବା ମନେହୁଏ । ଏଠାରେ ଦୁଇଟି ଦାର୍ଶନିକ ମତର କିଂଚିତ ଆଲୋଚନା ଆମର ଲକ୍ଷ୍ୟ ।

ଗୋଟିଏ ଦାର୍ଶନିକ ମତରେ ଈଶ୍ୱର ମହତ ଉଦ୍ଦେଶ୍ୟରେ ସବୁ କିଛି ସୃଷ୍ଟି କରିଛନ୍ତି । ସବୁ ସ୍ତରରେ ସଂଗତି ଓ ଶୃଙ୍ଖଳା ରଖିଛନ୍ତି, ତେବେ ବସ୍ତୁମାନଙ୍କର ମହତ୍ତ୍ୱ ଓ ମୂଲ୍ୟରେ

# ଦୁଃଖ ଓ ଈଶ୍ୱରୀୟ ନ୍ୟାୟ: ଦୁଇଟି ଦାର୍ଶନିକ ସିଦ୍ଧାନ୍ତ

ଆମ ସଂସାରରେ ଅନେକ ଦୁଃଖ, ମନ୍ଦ ଓ ଅଶୁଭ ବା ଇଭିଲ ରହିଛି । ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ହେଉ କିମ୍ବା ମାନବିକ କ୍ରୂରତା ଓ ଅବିଚାର ଯୋଗୁ ହେଉ ସମାଜରେ ସବୁ ସମୟରେ ଅପ୍ରମିତ ଦୁଃଖ ଦୁର୍ଦ୍ଦଶା ସୃଷ୍ଟି ହେଉଛି । ଈଶ୍ୱରୀୟ ବ୍ୟବସ୍ଥାରେ ଏହି ଦୁଃଖ ଓ ମନ୍ଦକୁ କିପରି ବ୍ୟାଖ୍ୟା କରାଯିବ ? ଅନେକ ବ୍ୟକ୍ତି ଧାର୍ମିକ ବିଶ୍ୱାସର ପ୍ରଭାବରୁ ଈଶ୍ୱର ସର୍ବଶକ୍ତିମାନ ଓ ପରମ ଦୟାଳୁ ବୋଲି ବିଶ୍ୱାସ କରନ୍ତି । ସର୍ବଶକ୍ତିମାନ ଓ କରୁଣାମୟ ଈଶ୍ୱର ସଂସାରରେ ଏତେ ଦୁଃଖର ପରିବେଶ କାହିଁକି ଦେଇଛନ୍ତି ।  ଦାର୍ଶନିକ ଅନୁସନ୍ଧିତ୍ସାରେ ଏହି ପ୍ରଶ୍ନ ଉଠିଛି- ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ ମଣିଷର ଅବାଞ୍ଛିତ ଦୁଃଖକୁ ନିୟନ୍ତ୍ରଣ କରିପାରନ୍ତେ । ଯଦି ଈଶ୍ୱର କରୁଣାମୟ, ତେବେ ସେ ପ୍ରାଣୀଙ୍କ ଦୁଃଖକୁ ଲାଘବ କରିପାରନ୍ତେ । କିନ୍ତୁ ସଂସାରରେ ଅପ୍ରମିତ ଦୁଃଖ ଘଟି ଆସିଛି । ସୁତରାଂ ଈଶ୍ୱର ସର୍ବଶକ୍ତିମାନ ନୁହନ୍ତି କିମ୍ବା କରୁଣାମୟ ନୁହନ୍ତି ।

ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରି ତାଙ୍କ ସର୍ବଶକ୍ତିମାନ ଓ କରୁଣାମୟ ସ୍ୱରୂପକୁ ବିଶ୍ୱାସ କଲେ ଏହି ପ୍ରଶ୍ନର କ'ଣ ଉତ୍ତର ଦିଆଯିବ ? ମଣିଷର ଦୁଃଖ, ଦୁର୍ଦ୍ଦଶା ଓ କ୍ରୂରତା ସହ ଈଶ୍ୱରୀୟ ବ୍ୟବସ୍ଥାକୁ କିପରି ସଂଯୋଜିତ କରାଯାଇ ପାରିବ ? ଦାର୍ଶନିକ ମାନେ ଯେହେତୁ ଚିନ୍ତା ରାଜ୍ୟର ବିପ୍ଳବୀ, ସେମାନେ ଏହି ପ୍ରସଙ୍ଗ ଉଠାଇବା ସହ ଏହା ଉପରେ ଗମ୍ଭୀର ଆଲୋଚନା କରିଥିବା ମନେହୁଏ । ଏଠାରେ ଦୁଇଟି ଦାର୍ଶନିକ ମତର କିଂଚିତ ଆଲୋଚନା ଆମର ଲକ୍ଷ୍ୟ ।

ଗୋଟିଏ ଦାର୍ଶନିକ ମତରେ ଈଶ୍ୱର ମହତ ଉଦ୍ଦେଶ୍ୟରେ ସବୁ କିଛି ସୃଷ୍ଟି କରିଛନ୍ତି । ସବୁ ସ୍ତରରେ ସଂଗତି ଓ ଶୃଙ୍ଖଳା ରଖିଛନ୍ତି, ତେବେ ବସ୍ତୁମାନଙ୍କର ମହତ୍ତ୍ୱ ଓ ମୂଲ୍ୟରେ

ଗୁଣାତ୍ମକ ଓ ପରିମାଣାତ୍ମକ ପ୍ରଭେଦ ରହିଛି । ଫଳତଃ କାଳକ୍ରମେ ବସ୍ତୁ ଭିତରେ ଅପରିପୂର୍ଣ୍ଣତା ଯୋଗୁ ଧୀରେ ଧୀରେ ମନ୍ଦର ଉତ୍ପତ୍ତି ହୋଇଛି । ଈଶ୍ୱର ପ୍ରାଣୀକୁ ଦେଖିବାକୁ ଚକ୍ଷୁ ଦେଇଛନ୍ତି । ଚକ୍ଷୁର ଧୀରେ ଧୀରେ ଅବକ୍ଷୟ ହେବା ଯେପରି ସମ୍ଭବ, ସେହିପରି କାଳକ୍ରମେ ମନ୍ଦର ଉତ୍ପତ୍ତି ହେବା ସମ୍ଭବ । ପୁନଶ୍ଚ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେଇଛନ୍ତି । ସେହି ସ୍ୱାଧୀନତାର ଅପପ୍ରୟୋଗ ଦ୍ୱାରା ମଣିଷ ସମାଜରେ ଦୁଃଖ ଯନ୍ତ୍ରଣାର ପରିସ୍ଥିତି ସୃଷ୍ଟି କରିଛି । ତେଣୁ ସଂସାରରେ ଯଦି ଦୁଃଖ, ମନ୍ଦ ରହିଛି ସେଥିପାଇଁ ଈଶ୍ୱର ଦାୟୀ ନୁହନ୍ତି, ମଣିଷ ହିଁ ଦାୟୀ । ମନ୍ଦ କାର୍ଯ୍ୟଦ୍ୱାରା ମଣିଷ ଯେଉଁ ପାପ ସୃଷ୍ଟି କରୁଛି, ସେହି ପାପର ପ୍ରାୟଶ୍ଚିତ ସ୍ୱରୂପ ପ୍ରାକୃତିକ ବିପର୍ଯ୍ୟୟ ସୃଷ୍ଟି ହେଉଛି । ତେବେ ଶେଷରେ ପୁଣ୍ୟାତ୍ମାମାନେ ଶାଶ୍ୱତ ଜୀବନର ଅଧିକାରୀ ହେବା ଓ ପାପାତ୍ମାମାନେ ନରକଗାମୀ ହେବା ଦ୍ୱାରା ସଂସାରରେ ନୈତିକ ପରିପୂର୍ଣ୍ଣତା ଆସିପାରିବ । ଏହି ପ୍ରକାରର ବିଚାରବୋଧ ବିଭିନ୍ନ ଧାର୍ମିକ ଓ ସାଂସ୍କୃତିକ ଅସ୍ମିତା ଥିବା ଜନଗୋଷ୍ଠୀରେ ଭିନ୍ନ ଭିନ୍ନ ପରିଭାଷାରେ ବ୍ୟକ୍ତ ହୋଇଛି । କେଉଁଠି ବିଶ୍ୱାସ କରାଯାଇଛି ଯେ ସମାଜରେ ପାପ ଭାର ଅଧିକ ହେଲେ ଈଶ୍ୱର ଅବତାର ନେଇ ପାପୀମାନଙ୍କୁ ସଂହାର କରିବେ ଓ ସତ୍ୟ, ନ୍ୟାୟର ପରିବେଶ ସ୍ଥାପନ କରିବେ । ଅନ୍ୟାୟର ପରିବେଶ ଆସିଲେ ଈଶ୍ୱର ଧରାପୃଷ୍ଠକୁ ଆସି ବା ନିଜର ଦୂତ ବା ପୁତ୍ରକୁ ପଠାଇ ଅନ୍ୟାୟକୁ ନଷ୍ଟ କରି ନ୍ୟାୟ ପ୍ରତିଷ୍ଠା କରିବେ ।

ଏହି ଯୁକ୍ତିର ଅନେକ ଅନ୍ତର୍ନିହିତ ଦୁର୍ବଳତା ରହିଥିବା ମନେହୁଏ । ଯଦି ପ୍ରଥମରୁ ସବୁ ବିଷୟ ସୁସଂହତ ଓ ଶୃଂଖଳିତ ଥିଲା, ସେହି ସ୍ଥିତିରେ ମନ୍ଦ ବା ଇଭିଲ ସୃଷ୍ଟି ହେବା ଅର୍ଥ ମନ୍ଦ ଯେ ସ୍ୱସୃଷ୍ଟ ଏହା ସ୍ୱୀକାର କରିବାକୁ ହେବ । ସ୍ୱସୃଷ୍ଟ ମନ୍ଦ ଈଶ୍ୱରୀୟ ବିଧାନକୁ ଆହ୍ୱାନ ଦେଉ ନାହିଁ କି ? ଏକ ସୁସଂହତ ବ୍ୟବସ୍ଥା ଯଦି କାଳକ୍ରମେ ନଷ୍ଟ ଦିଗରେ ଯାଉଛି ଏହାର ନୈତିକ ଉତ୍ତରଦାୟିତ୍ୱ ସ୍ରଷ୍ଟା ଈଶ୍ୱରଙ୍କୁ ଦିଆଯିବ କି ନାହିଁ ? ଯଦି କୁହାଯାଏ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେବା ଦ୍ୱାରା ଏପରି ପରିସ୍ଥିତି ଆସିଛି ତେବେ ଈଶ୍ୱର ଏପରି ମଣିଷ ସମାଜ ସୃଷ୍ଟି କରିଥାନ୍ତେ ଯେଉଁମାନେ ସ୍ୱାଧୀନତା ଉପଭୋଗ କରିବେ, ଅଥଚ ସ୍ୱାଧୀନତାର ଅପପ୍ରୟୋଗ କରିବେ ନାହିଁ । ପୁନଶ୍ଚ ଯୁକ୍ତିରେ ଯାହା କୁହାଯାଉଛି ଯେ ଏକ ସୁସଂହତ ଓ ସୁବ୍ୟବସ୍ଥିତ ପରିସ୍ଥିତିରୁ କାଳକ୍ରମେ ମନ୍ଦର ଉଦ୍ଭବ ହେଉଛି ତାହା ଆମର ବାସ୍ତବ ଅନୁଭୂତିରେ ମିଥ୍ୟା ବୋଲି ଜଣାପଡେ । ସଭ୍ୟତାର କ୍ରମ ବିକାଶକୁ ଯଦି ଲକ୍ଷ୍ୟ କରାଯାଏ, ତେବେ ମଣିଷ ଜାତି ଯେ ଏକ ଅସଭ୍ୟ ଓ ଅସଂସ୍କୃତ ସ୍ଥିତିରୁ ସଭ୍ୟ ଓ ସଂସ୍କୃତିସଂପନ୍ନ ଜୀବନ ଆଡକୁ ଅଗ୍ରସର ହୋଇଛି ଏହା ନିଃସନ୍ଦେହ ମନେହୁଏ । ମଣିଷର ନୈତିକ ଦୃଷ୍ଟି ଧୀରେ ଧୀରେ କ୍ଷୁଦ୍ର ଗୋଷ୍ଠୀରୁ ବୃହତ୍ତର ସମାଜ ଓ ସମଗ୍ର ମାନବଜାତି ପ୍ରତି

ପ୍ରସାରିତ ହେବାରେ ଲାଗିଛି । ମଣିଷର ପ୍ରାରମ୍ଭିକ ଜୀବନ ମହତ୍ତର ଥିଲା ଓ ଧୀରେ ଧୀରେ ମନ୍ଦ ହୋଇ ଚାଲିଲା ବାସ୍ତବ ଅନୁଭୂତିରେ ଭ୍ରମାତ୍ମକ ମନେହୁଏ ।

ଅନ୍ୟ ଏକ ଦାର୍ଶନିକ ମତାନୁସାରେ ଈଶ୍ୱର ମଣିଷ ସମାଜ ପାଇଁ ଏକ ଦୁଃଖରହିତ ସ୍ୱର୍ଗ କରିନାହାନ୍ତି, ତାହା ହୋଇଥିଲେ ମଣିଷ ପ୍ରୟାସର କିଛି ଅର୍ଥ ରହିନଥାନ୍ତା । ଈଶ୍ୱର ମଣିଷକୁ ବିଚାର ବୁଦ୍ଧି ଓ ଅନେକ ନୈତିକ ସମ୍ଭାବନା ଦେଇ ସୃଷ୍ଟି କରିଛନ୍ତି । ବଡ଼ ହୋଇ ଜନ୍ମ ହେବା ଓ ସ୍ୱ ପ୍ରୟାସରେ ମହନୀୟ ହେବା ମଧ୍ୟରେ ପାର୍ଥକ୍ୟ ରହିଛି । ମଣିଷ ପ୍ରତିବନ୍ଧକ ଭିତରେ ନିଜସ୍ୱ ପ୍ରୟାସରେ ଆତ୍ମଶୁଦ୍ଧି ଲାଭ କରିପାରିବ । ଏହି ଯୁକ୍ତିର ଅନ୍ୟ ଏକ ତାତ୍ପର୍ଯ୍ୟ ହେଉଛି ଯେ ଆମର ବାସ୍ତବ ପୃଥିବୀଟି ସମ୍ଭବତଃ ସବୁଠାରୁ ଅଧିକ ଅର୍ଥପୂର୍ଣ୍ଣ । ଏକ ଦୁଃଖରହିତ ପୃଥିବୀର ପରିକଳ୍ପନା ଭିତରେ ପ୍ରାକୃତିକ ନିୟମ କାର୍ଯ୍ୟକାରୀ ହୋଇପାରିବ ନାହିଁ, ଫଳତଃ ତାହା ଅର୍ଥଶୂନ୍ୟ ହୋଇ ପଡିବ । ମନେ କରାଯାଉ ଈଶ୍ୱର ଦୁଃଖରହିତ ଓ ଜରାବିହୀନ ଏକ ପୃଥିବୀ ନିର୍ମାଣ କରି ମନୁଷ୍ୟକୁ ଏକ ସୁଖକର ସ୍ଥିତି ଭିତରେ ରଖିଥାନ୍ତେ । ସେହି ପୃଥିବୀଟି ସମ୍ଭବତଃ ଅବୋଧଗମ୍ୟ ମନେହେବ । ଅଗ୍ନିର ସ୍ପର୍ଶ ପୀଡାଦାୟକ, ଦୁଃଖ ଯଦି ରହିବ ନାହିଁ ତେବେ ଅଗ୍ନିର ସ୍ପର୍ଶ କାହାକୁ ଯନ୍ତ୍ରଣା ଦେବ ନାହିଁ । ବାର୍ଦ୍ଧକ୍ୟ ଆସିଲେ ରୋଗ ଆସେ, କେହି କଷ୍ଟ ପାଇବ ନାହିଁ ଅର୍ଥ କେହି ବାର୍ଦ୍ଧକ୍ୟକୁ ଯିବ ନାହିଁ ବା ମୃତ୍ୟୁ ମୁଖରେ ପଡିବ ନାହିଁ । ସେହି ପୃଥିବୀଟି ଅର୍ଥପୂର୍ଣ୍ଣ ନ ହୋଇ ଅର୍ଥଶୂନ୍ୟ ହୋଇପଡିବ । ଏତଦ୍‌ବ୍ୟତୀତ ଜୀବନରେ ଦୁଃଖ କଷ୍ଟ, ଶୋକ, ବିଫଳତା ରହିଛି ବୋଲି ତ ସୁଖ, ସଫଳତା, ହସର ଅନୁଭବ ଆନନ୍ଦଦାୟକ ହୋଇଥାଏ । ଦୁଃଖ, ବିଫଳତା ନଥିଲେ ସୁଖ ଓ ସଫଳତାର ମୂଲ୍ୟ ରହିବ ନାହିଁ । ସୁତରାଂ ଆମ ସଂସାରରେ ଦୁଃଖ ଯନ୍ତ୍ରଣା ରହିଥିଲେ ମଧ୍ୟ ଏହାଠାରୁ ଏକ ମହତ୍ତର ବିଶ୍ୱର ପରିକଳ୍ପନା କରାଯାଇ ନପାରେ । ପୁନଶ୍ଚ ମୃତ୍ୟୁ ପରେ ମୁକ୍ତି ବା ଅନନ୍ତ ସୁଖର ଯେଉଁ ସମ୍ଭାବନାର ବିଷୟ ଧର୍ମରେ କଳ୍ପନା କରାଯାଇଛି ତାହା ତୁଳନାରେ ଆମର ଦୁଃଖ କଷ୍ଟ ସାମାନ୍ୟ ମନେହୁଏ ।

ମଣିଷର ଦୁଃଖ ଯନ୍ତ୍ରଣାକୁ ଈଶ୍ୱରଙ୍କ ଅସ୍ତିତ୍ୱ ସହ ସଂଗତ କରିବାକୁ ଯେଉଁ ଯୁକ୍ତିଶୀଳ ବିଚାର ଦିଆଯାଇଛି, ତାହା ସଂପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ମନେହୁଏ । ଆମ ସଂସାରର ପରିବେଶକୁ ଏକ କାଳ୍ପନିକ ସ୍ୱର୍ଗ କରିବା ଈଶ୍ୱରଙ୍କ ପାଖରୁ ଆଶା କରାଯାଉ ନାହିଁ । ତେବେ ଯଦି ଈଶ୍ୱରଙ୍କୁ ସର୍ବଶକ୍ତିମାନ ଓ କରୁଣାମୟ ବୋଲି କଳ୍ପନା କରାଯିବ, ତେବେ ଈଶ୍ୱର ପ୍ରାକୃତିକ ଦୁର୍ବିପାକକୁ ନିୟନ୍ତ୍ରଣ କରିବା ବା ମଣିଷ ଭିତରର କ୍ରୂରତାକୁ ଦୂର କରିବା ତାଙ୍କଠାରୁ କାହିଁକି ଆଶା କରାନଯିବ ? ଯୁଦ୍ଧ, ବିଭୀଷିକା, ଭୂକମ୍ପ ଇତ୍ୟାଦି ବିପର୍ଯ୍ୟୟ ଯଦି ପୃଥିବୀରେ କେବେ ଘଟିନଥାନ୍ତା, ତେବେ ସଭ୍ୟତାର ଇତିହାସ ଭିନ୍ନ

ହୋଇଥାନ୍ତା । ଅଗଣିତ ନିଷ୍ପାପ ଶିଶୁ ଦୁରାରୋଗ୍ୟ ବ୍ୟାଧିରେ ଜର୍ଜରିତ ହେବା, ସତ୍ୟ-ନ୍ୟାୟ ପଥରେ ଥାଇ ଯନ୍ତ୍ରଣାର ଜୀବନ ବଂଚିବା, ଜଣେ ଜଣେ ହିଟଲରଙ୍କ ପାଇଁ ପୃଥିବୀ ବକ୍ଷ ରକ୍ତରଂଜିତ ହେବା କେଉଁ ଈଶ୍ୱରୀୟ ବିଧାନର ପ୍ରମାଣ ଦିଏ ? ସୁଖ, ସଫଳତା ଅର୍ଥପୂର୍ଣ୍ଣ ହେବା ପାଇଁ ଦୁଃଖ, ବିଫଳତା ରହିବା ଅବଶ୍ୟମ୍ଭାବୀ ବୋଲି କହିବା ଅଯୌକ୍ତିକ ମନେହୁଏ । ସେହିପରି ମୁକ୍ତିରେ ଅନନ୍ତ ସୁଖ ମିଳିବ ବୋଲି କଳ୍ପନା କରି ସଂସାରର ଦୁଃଖ ଦୁର୍ଦ୍ଦଶା ଓ ମାନବିକ କ୍ରୂରତା ଯେ ଈଶ୍ୱରୀୟ ନ୍ୟାୟ ଏହା କହିବା ଭ୍ରମାତ୍ମକ ଅଟେ । ଶରୀରରେ ଏକ ଆରାମପ୍ରଦ ପ୍ରଲେପ ଦେବାକୁ ପ୍ରଥମେ ଶରୀରକୁ କ୍ଷତ-ବିକ୍ଷତ କରିବା କାର୍ଯ୍ୟକୁ ଯଥାର୍ଥ କୁହାଯାଇ ପାରିବ କି ? ଭୋକ ଉପାସରେ ବଂଚୁଥିବା ନିୟୁତ ନିୟୁତ ମଣିଷ, ଅପରିସୀମ ଦୁର୍ଦ୍ଦଶା ଓ ସଂକଟ ଭିତରେ ଜୀବନ ଅତିବାହିତ କରୁଥିବା ଅଗଣିତ ମଣିଷ, କେତେକ ବ୍ୟକ୍ତିଙ୍କର ରାକ୍ଷସୀ ପ୍ରକୃତି ଯୋଗୁ ଧର୍ଷଣର ଶିକାର ହେଉଥିବା ନିରୀହ ଅନୂଢ଼ା କିଶୋରୀ ଜୀବନସାରା ଯେଉଁ ଦୁଃଖର ଅନୁଭବ ଭିତରେ ଜୀବନ ନିର୍ବାହ କରନ୍ତି ତାହା ଈଶ୍ୱରୀୟ ବ୍ୟବସ୍ଥାକୁ ନ୍ୟାୟପୂର୍ଣ୍ଣ ଓ ବୋଧଗମ୍ୟ ବୋଲି ସାବ୍ୟସ୍ତ କରୁଛି କି ?

ଏହି ପରିପ୍ରେକ୍ଷୀରେ ମାନବବାଦୀ ଜୀବନଦର୍ଶନ ଅଧିକ ସଂଗତ ଓ ଯୁକ୍ତିଶୀଳ ମନେହୁଏ । ଏହାନୁଯାୟୀ ମଣିଷ ସମାଜରେ ଯାହା ଦୁଃଖ ଦୁର୍ଦ୍ଦଶା ରହିଛି ତାହାକୁ କେଉଁ କଳ୍ପିତ ଈଶ୍ୱର ବା ଦୈବୀଶକ୍ତି ସମାଧାନ କରିଦେବେ ନାହିଁ । ବରଂ ମଣିଷର ପ୍ରୟାସରେ ସଂସାରରୁ ଦୁଃଖ ଦୁର୍ଦ୍ଦଶା ଅନେକାଂଶରେ ଦୂରୀଭୂତ ହୋଇ ପାରିବ । ସଭ୍ୟତାରେ ଯାହା କିଛି ବିକାଶ ହୋଇଛି ତାହା ମଣିଷର ପ୍ରୟାସରେ ହିଁ ସମ୍ଭବ ହୋଇଛି । ମାନବିକ ପ୍ରୟାସ ଓ ପ୍ରଚେଷ୍ଟା ଯୋଗୁ ଏକ ଆଦିମ ସ୍ତରରୁ ମଣିଷ ଆଜି ଏହି ସ୍ତରକୁ ଆସିବାକୁ ସମର୍ଥ ହୋଇଛି । ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଘଟାଇଛି ଓ ସାର୍ବଜନୀନ ମୂଲ୍ୟବୋଧର ପ୍ରସାର ଦିଗରେ ଚିନ୍ତା ପ୍ରକଟ କରାଇଛି । ଜ୍ଞାନ ବିଜ୍ଞାନର ବିକାଶ ଦ୍ୱାରା ପ୍ରାକୃତିକ ଦୁର୍ବିପାକକୁ ଦୂର କରିବାକୁ ମଣିଷର ପ୍ରୟାସ ଅବ୍ୟାହତ ରହିଛି, ଫଳରେ କେତେକ ସଫଳତା ମିଳିଛି । ତେବେ ମାନବିକ ଦୁର୍ବୁଦ୍ଧି ଓ କ୍ରୂରତାରୁ ଉଦ୍ଭବ ଦୁଃଖ ଦୁର୍ଦ୍ଦଶା ସମାଜରେ ଅବ୍ୟାହତ ରହିଛି । ତେବେ ଯାହା କିଛି ସମ୍ଭବ ହୋଇଛି ବା ଏକ ମହତ୍ତର ଜୀବନ ପାଇଁ ଯେଉଁ ସ୍ୱପ୍ନ ରହିଛି ସେ ସବୁ ମଣିଷର ବିଚାରଶୀଳତାରୁ ହିଁ ଆସିଛି ।

(୧୩.୩.୨୦୧୩)



# ଧର୍ମ, ଧର୍ମନିରପେକ୍ଷତା ଓ ସାଂପ୍ରଦାୟିକତା

ସାଂପ୍ରଦାୟିକତା ଓ ଧର୍ମନିରପେକ୍ଷତା ଦୁଇଟି ପୃଥକ୍ ଓ ପରସ୍ପର ବିରୋଧୀ ବିଚାରଧାରା । ପ୍ରତ୍ୟେକଟି ଏକ ସମାଜତତ୍ତ୍ୱ ଉପରେ ଆଧାରିତ । ଏ ଦୁଇଟି ବିଚାରବୋଧ ଧାର୍ମିକ ଭାବନାରୁ ନିଷ୍ପନ୍ନ ଯଦିବା ସେମାନଙ୍କର ପ୍ରତ୍ୟୟଗତ ପରିସର ପରସ୍ପରଠାରୁ ସଂପୂର୍ଣ୍ଣ ଭିନ୍ନ । ଧାର୍ମିକ ଭାବନାରୁ ନିଷ୍ପନ୍ନ ଅନ୍ୟ ଏକ ବିଚାରବୋଧ ହେଲା ମୌଳବାଦ । କେତେକ ମୌଳବାଦ ଓ ସାଂପ୍ରଦାୟିକତାକୁ ସମାନ ବୋଲି ବି ଭାବିଥାନ୍ତି, କିନ୍ତୁ ସେମାନଙ୍କ ମଧ୍ୟରେ ପ୍ରତ୍ୟୟଗତ ଓ ବ୍ୟାବହାରିକ ପାର୍ଥକ୍ୟ ରହିଥିବା ମନେହୁଏ । ଏହି ପୃଷ୍ଠଭୂମିରେ ଧର୍ମ, ଧର୍ମନିରପେକ୍ଷତା, ସାଂପ୍ରଦାୟିକତା ଓ ମୌଳବାଦ ପ୍ରତ୍ୟୟମାନଙ୍କର ସଂକ୍ଷିପ୍ତ ଅନୁଶୀଳନ ଏଠାରେ ଆମର ଲକ୍ଷ୍ୟ । ଅବଶ୍ୟ ପ୍ରତ୍ୟେକଟି ପ୍ରସଙ୍ଗ ବେଶ୍ ବ୍ୟାପକ ଓ ପ୍ରତ୍ୟେକର ଏକ ବିସ୍ତୀର୍ଣ୍ଣ ବ୍ୟାଖ୍ୟା ଦେବା ଏଠାରେ ସମ୍ଭବ ନୁହେଁ । ତେବେ ସାଧାରଣ ଭାବରେ ସେମାନଙ୍କର ଏକ ସଂକ୍ଷିପ୍ତ ଅନୁଶୀଳନ କରିବା ଆମର ଉଦ୍ଦେଶ୍ୟ ।

ମଣିଷ ଜାତିର ଇତିହାସରେ ଯେପରି ଅନେକ ସଭ୍ୟତାର ବିକାଶ ହୋଇଛି, ସେହିପରି ଅନେକ ଧର୍ମର ମଧ୍ୟ ଅଭ୍ୟୁଦୟ ହୋଇଛି । ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଏକ ସାଂସ୍କୃତିକ ଧାରା । ସଭ୍ୟତାର ବିକାଶଧାରାରେ ବିଭିନ୍ନ ଧର୍ମ ଏକ ଏକ ସାଂସ୍କୃତିକ ଓ ବୌଦ୍ଧିକ ଆଲୋଡନ ଭାବେ ବିଭିନ୍ନ ଭୂଖଣ୍ଡରେ ଉଦ୍‌ଭବ ହୋଇଛି । ସମାଜର କେହି କ୍ରାନ୍ତିକାରୀ ବ୍ୟକ୍ତି ଜୀବନ ଓ ଜଗତ ନେଇ ଯେଉଁ ମାନବିକ ଓ ବୌଦ୍ଧିକ ଅବବୋଧ ନିଜ ସମାଜରେ ବ୍ୟକ୍ତ କରିଛନ୍ତି ତାହା କାଳକ୍ରମେ ଗୋଟିଏ ଭୌଗୋଳିକ ଭୂଖଣ୍ଡରେ ଏକ ଏକ ସାଂସ୍କୃତିକ ଆଲୋଡନ ଓ ସାମାଜିକ ସଂହତି ପାଇଁ ପଥ ପ୍ରଦର୍ଶକ ହୋଇଛି । ଖ୍ରୀ.ପୂ. ଏକ ହଜାର ପରଠାରୁ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଧାର୍ମିକ ସୃଜନଶୀଳତାର ପରିବେଶ ଆସିଛି । ଭାରତବର୍ଷରେ ଉପନିଷଦ ମାନଙ୍କର ରଚନା, ଗୌତମ ବୁଦ୍ଧ ଓ ମହାବୀରଙ୍କ ଆବିର୍ଭାବ ଭାରତୀୟ ଚିନ୍ତାମାନସକୁ ଧର୍ମୀୟ ଆଦର୍ଶରେ ଅନୁପ୍ରାଣିତ କରିଛି । ଅନ୍ୟ ଏକ ସଭ୍ୟତାରେ ହିବ୍ରୁ ସନ୍ଥମାନଙ୍କର ଆବିର୍ଭାବ ଯୋଗୁ

ଇସ୍ରାଏଲରେ ପବିତ୍ର ଜୀବନର ଚେତନା ସୃଷ୍ଟି ହୋଇଛି । ଏକ ଭିନ୍ନ ଭୂଖଣ୍ଡରେ ଜୋରାଷ୍ଟରଙ୍କର ଆବିର୍ଭାବ ଯୋଗୁଁ ଏକ ପୃଥକ୍ ଧାର୍ମିକ ଆଲୋଡନର ପରିବେଶ ଆସିଛି । ଚୀନରେ କନ୍‌ଫୁସିଅସଙ୍କ କ୍ରାନ୍ତିକାରୀ ଭାବନାକୁ ନେଇ ଟାଓବାଦର ଉଦ୍‌ଭବ ହୋଇଛି । ହିବ୍ରୁ ଧର୍ମଧାରା ଭିତରୁ ଆଉ ଦୁଇଟି ବଡ଼ ସାଂସ୍କୃତିକ ଆଲୋଡନ ସୃଷ୍ଟି ହୋଇଛି ଯାହା ଖ୍ରୀଷ୍ଟଧର୍ମ ଓ ଇସଲାମଧର୍ମ ଭାବରେ ପରେ ବିସ୍ତାରଲାଭ କରିଛି । ବୌଦ୍ଧଧର୍ମର ପ୍ରଭାବରେ ବୈଦିକ ହିନ୍ଦୁଧର୍ମର ଯେଉଁ ଅବକ୍ଷୟ ସୃଷ୍ଟି ହୋଇଥିଲା, ଶଙ୍କରଙ୍କ ଆବିର୍ଭାବ ପରେ ହିନ୍ଦୁଧର୍ମର ପୁନରୁତ୍ଥାନ ସହ ବୌଦ୍ଧଧର୍ମ ଭାରତ ଭୂଖଣ୍ଡରୁ ବିଲୁପ୍ତ ହୋଇଛି । ରାଜତନ୍ତ୍ର ଯୁଗରେ ଗୋଟିଏ ଭୂଖଣ୍ଡରେ ସୃଷ୍ଟ ଏକ ସାଂସ୍କୃତିକ ଆଲୋଡନ ଶାସନତନ୍ତ୍ରର ସମର୍ଥନ ପାଇ କାଳକ୍ରମେ ଏକ ବୃହତ୍ତର ଅଞ୍ଚଳକୁ ପ୍ରସାରିତ ହୋଇଛି ଓ ଜନମାନସରେ ଏକ ସାଂସ୍କୃତିକ ସଂହତିର ପରିବେଶ ଆଣିଛି । କାଳକ୍ରମେ ଧର୍ମମାନ ଆନୁଷ୍ଠାନିକ ରୂପ ନେଇ ବିଭିନ୍ନ ଭୌଗୋଳିକ ଭୂଖଣ୍ଡର ସାଂସ୍କୃତିକ ଜୀବନ ପ୍ରବାହର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ଉଠିଛନ୍ତି । ତେବେ ଊନବିଂଶ ଶତାବ୍ଦୀରେ ଧର୍ମମାନଙ୍କର ଅଧ୍ୟୟନ ଓ ତୁଳନାତ୍ମକ ଅନୁଶୀଳନରୁ ପ୍ରତ୍ୟେକ ଧର୍ମର ବୌଦ୍ଧିକ, ସାଂସ୍କୃତିକ ଓ ଐତିହାସିକ ଭିତ୍ତିଟିକୁ ନିର୍ଦ୍ଦିଷ୍ଟ କରାଯାଇଛି । ପ୍ରତ୍ୟେକ ଧର୍ମର ଏକ ତାତ୍ତ୍ୱିକ ଆଧାର ରହିଛି । ଈଶ୍ୱରଙ୍କ ସ୍ୱରୂପ, ସୃଷ୍ଟିତତ୍ତ୍ୱ, ଜୀବନର ଅନ୍ତିମ ଲକ୍ଷ୍ୟ, ଆତ୍ମାର ସ୍ୱରୂପ ଇତ୍ୟାଦି ପ୍ରସଙ୍ଗ ଉପରେ ପ୍ରତ୍ୟେକ ଧର୍ମ ନିଜସ୍ୱ କାଳ୍ପନିକ ଭାବନା ସୃଷ୍ଟି କରିଛି । ପ୍ରତ୍ୟେକ ଧର୍ମ ସହ କର୍ମକାଣ୍ଡ ସଂଶ୍ଳିଷ୍ଟ ହୋଇ ଧର୍ମଗୋଷ୍ଠୀ ଭିତରେ ସାଂସ୍କୃତିକ ସଂହତିର ଭାବନା ସୃଷ୍ଟି କରିଛି । ନୀତି, ନୈତିକତା, ମହତ୍ତର ଜୀବନବୋଧ ନେଇ ପ୍ରତ୍ୟେକ ଧର୍ମରେ କିଛି ଭାବନା ସଂଶ୍ଳିଷ୍ଟ ହୋଇଛି । ପ୍ରତ୍ୟେକ ଧର୍ମ ନିଜର ଧର୍ମଗ୍ରନ୍ଥ ବା ପଥପ୍ରଦର୍ଶକଙ୍କ ବାଣୀକୁ ଶାଶ୍ୱତ ଓ ପବିତ୍ର ମନେ କରିଆସିଛି । ଯେଉଁ ଯୁଗରେ ଜ୍ଞାନ, ବିଜ୍ଞାନର ବିକାଶ ହୋଇନଥିଲା, ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନର ଅବକାଶ ସୃଷ୍ଟି ହୋଇନଥିଲା, ଗଣତାନ୍ତ୍ରିକ ଜୀବନଧାରାର କଳ୍ପନା ଉଦ୍‌ଭବ ହୋଇନଥିଲା, ସେହି ଐତିହାସିକ କାଳଖଣ୍ଡରେ ଧର୍ମ ହିଁ ସବୁ କ୍ଷେତ୍ରରେ ନିର୍ଣ୍ଣାୟକ ଭୂମିକା ନେଇଥିଲା । ସମାଜ-ବ୍ୟବସ୍ଥା, ରାଷ୍ଟ୍ର, ନୀତିବୋଧ, ଶିକ୍ଷା ଇତ୍ୟାଦି ସକଳ ସ୍ତରକୁ ଧର୍ମ ପ୍ରଭାବିତ କରି ରଖିଥିଲା ଓ ସାମାଜିକ ଓ ସାଂସ୍କୃତିକ ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ହୋଇ ରହିଥିଲା ।

କାଳକ୍ରମେ ୟୁରୋପୀୟ ଚିନ୍ତାମାନସରେ ଯେଉଁ ନବଜାଗରଣର ପରିବେଶ ଆସିଲା, ତାହା ନାନା କ୍ଷେତ୍ରରେ ଏକ ବୈପ୍ଳବାତ୍ମକ ପରିବେଶ ସୃଷ୍ଟି କଲା । ସପ୍ତଦଶ ଶତାବ୍ଦୀରୁ ଆଧୁନିକ ବିଜ୍ଞାନର ଯୁଗ ଆରମ୍ଭ ହେଲା । ଶିଳ୍ପ ବିପ୍ଳବର ପ୍ରଭାବରୁ ସାମ୍ରାଜ୍ୟବାଦର ବିସ୍ତାର ହେଲା । ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନର ପରିବେଶ ଆସିଲା ଓ ରାଜତନ୍ତ୍ର ବିରୁଦ୍ଧରେ ବିପ୍ଳବ ସଂଘଟିତ ହେଲା । ବିଜ୍ଞାନର ବିକାଶ ଯୋଗୁ ଧାର୍ମିକ ବିଶ୍ୱାସ

ଗୁଡିକ ଅସତ୍ୟ ପ୍ରତିପାଦିତ ହେବାକୁ ଲାଗିଲା ଓ ମାନବବାଦର ଅଭ୍ୟୁଦୟ ନେଇ ସାମାଜିକ ଚେତନାରେ ତୃମୁଳ ପରିବର୍ତ୍ତନର ସୂତ୍ରପାତ ହେଲା । ଏହି ପୃଷ୍ଠଭୂମିରେ ଧର୍ମ ବ୍ୟକ୍ତିର ବ୍ୟକ୍ତିଗତ ବିଶ୍ୱାସର ପ୍ରଶ୍ନ ହେଲା, ଅଥଚ ଧର୍ମନିରପେକ୍ଷ ଜୀବନଧାରା ସଭ୍ୟ ଜୀବନଦୃଷ୍ଟିର ମାନଦଣ୍ଡ ହେବାକୁ ଲାଗିଲା । ଧର୍ମନିରପେକ୍ଷତାର ତାତ୍ପର୍ଯ୍ୟ ନେଇ ଭିନ୍ନ ମତ ପ୍ରକାଶ ପାଇଥାଏ । ଏହାକୁ ଧର୍ମ ସମନ୍ୱୟ, ଧାର୍ମିକ ସହନଶୀଳତା ଭାବେ ବ୍ୟାଖ୍ୟା କରାଯାଉଥିଲେ ମଧ ଏହାର ଏକ ସାର୍ବଜନୀନ ପରିଭାଷା ଥିବା ମନେହୁଏ । ବିଶ୍ୱ ପରିଭାଷାରେ ଧର୍ମନିରପେକ୍ଷତାର ଅର୍ଥ ହେଲା ଯେ ରାଷ୍ଟ୍ର, ରାଜନୈତିକ ବ୍ୟବସ୍ଥା ଓ ଅନୁଷ୍ଠାନ ଏବଂ ଜୀବନର ଅଣଧାର୍ମିକ କ୍ଷେତ୍ର ଗୁଡିକ ଧର୍ମଠାରୁ ପୃଥକ୍ ରହିବ । ରାଷ୍ଟ୍ର ଧାର୍ମିକ କାର୍ଯ୍ୟକୁ ସେପର୍ଯ୍ୟନ୍ତ ସୁଯୋଗ ଦେବ, ଯେପର୍ଯ୍ୟନ୍ତ ଧର୍ମଗୋଷ୍ଠୀ ଭିତରେ ଦ୍ୱନ୍ଦ୍ୱ ବା କଳହ ସୃଷ୍ଟି ହେଉନାହିଁ ।

ସାଂପ୍ରଦାୟିକତା ଧର୍ମନିରପେକ୍ଷତାର ପରିପନ୍ଥୀ, କାରଣ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଜନଗଣଙ୍କୁ ଧାର୍ମିକ ବିଶ୍ୱାସ ବା ଧାର୍ମିକ ପରିଚୟ ଆଧାରରେ ବିଭାଜିତ କରେ ନାହିଁ । ଧାର୍ମିକ ବିଶ୍ୱାସ ବା ପରିଚୟ ନିର୍ବିଶେଷରେ ସବୁ ନାଗରିକ ସମାନ ଭାବେ ବିବେଚିତ ହୁଅନ୍ତି ଓ ସମାନ ସୁବିଧା ସୁଯୋଗ ଉପଭୋଗ କରନ୍ତି । ଅପରପକ୍ଷରେ ସାଂପ୍ରଦାୟିକତା ଧର୍ମଗୋଷ୍ଠୀ ମାନଙ୍କ ଭିତରେ ପ୍ରାଚୀର ସୃଷ୍ଟିକରେ, ବିଦ୍ୱେଷର ମାନସିକତାକୁ ତୀବ୍ର କରାଏ ଓ ଘୃଣାର ପରିବେଶ ଆଣେ । ସାଂପ୍ରଦାୟିକ ମାନସିକତା ଅନ୍ୟ ଧର୍ମଗୋଷ୍ଠୀ ବା ସାଂସ୍କୃତିକ ଭାବନାକୁ ଘୃଣା ଦୃଷ୍ଟିରେ ଦେଖିଥାଏ । ଏହି ଦୃଷ୍ଟିରୁ ସାଂପ୍ରଦାୟିକତା ଏକ ଅସହିଷ୍ଣୁ ଦୃଷ୍ଟିଭଙ୍ଗୀର ପ୍ରତୀକ ହୋଇଥାଏ । ସାଂପ୍ରଦାୟିକ ବ୍ୟକ୍ତିମାନେ ଧର୍ମର ମାନବିକ ମୂଲ୍ୟ ପ୍ରତି ଉଦାସୀନ ରହନ୍ତି ଓ ଏପରିକି ନିଜ ଧର୍ମର ଉଦାରବାଦୀ ଦୃଷ୍ଟିକୁ ପ୍ରତ୍ୟାଖ୍ୟାନ କରନ୍ତି । ଅନ୍ୟ ଧର୍ମାବଲମ୍ବୀ ମାନଙ୍କ ପ୍ରତି ଅସହିଷ୍ଣୁତା ଓ ହିଂସା ଆଚରଣ କରିବାରେ ସେମାନେ କୌଣସି ବିବେକର ଦଂଶନ ଲାଭକରନ୍ତି ନାହିଁ । ସାଧାରଣ ଜନଗଣଙ୍କର ଧର୍ମଗତ ଆବେଗକୁ ପୁଂଜିକରି ପୃଥକ୍ ଧର୍ମଗୋଷ୍ଠୀ ଭିତରେ ଦଙ୍ଗା ବି ସୃଷ୍ଟି କରନ୍ତି । ସେଥିପାଇଁ ନାନା ମିଥ୍ୟା ପ୍ରଚାରର ଆଶ୍ରୟ ନିଅନ୍ତି । ନିଜ ରାଷ୍ଟ୍ର ବିପଦରେ, ନିଜ ଧର୍ମଗୋଷ୍ଠୀ ସଂଖ୍ୟାଗରିଷ୍ଠ ହେଲେ ମଧ ତାହା ସଂକଟରେ କହି ଏଥିପାଇଁ ଅନ୍ୟ ଧର୍ମଗୋଷ୍ଠୀକୁ ଦାୟୀ କରିଥାନ୍ତି । ସାଂପ୍ରଦାୟିକତା ଯେତେବେଳେ ରାଜନୈତିକ ବ୍ୟବସ୍ଥାର ଅଙ୍ଗ ହୁଏ, ସେତେବେଳେ ଏହା ଫାସିବାଦରେ ରୂପାନ୍ତରିତ ହୁଏ । ତେବେ ସାଂପ୍ରଦାୟିକତାବାଦୀ ମାନେ ଯେହେତୁ ନିଜକୁ ଫାସିବାଦୀ କହି ନିଜକୁ ପରିଚିତ କରାନ୍ତି ନାହିଁ ସେମାନେ ନିଜକୁ ରାଷ୍ଟ୍ରବାଦୀ କୁହନ୍ତି । ରାଷ୍ଟ୍ରବାଦର ଦ୍ୱାହି ଦେବା ସାଧାରଣତଃ ସାଂପ୍ରଦାୟିକ ଶକ୍ତିର ଯେ ଚରିତ୍ର ଏହା ଏକ ଐତିହାସିକ ସତ୍ୟ ଅଟେ । ଏପରିକି ସାଂପ୍ରଦାୟିକ୍ ଶକ୍ତିମାନେ ଧର୍ମନିରପେକ୍ଷବାଦୀମାନଙ୍କୁ ସଂଖ୍ୟାଲଘୁ ତୁଷ୍ଟିକାରୀ ବା ଛଦ୍ମ-ଧର୍ମନିରପେକ୍ଷବାଦୀ ବୋଲି ଆଖ୍ୟାୟିତ କରିବା ଦେଖାଯାଏ । କେତେକ ଆଧୁନିକ ସମାଜବିଜ୍ଞାନୀଙ୍କ ମତରେ ଧର୍ମ

ସାଂପ୍ରଦାୟିକତାର କାରଣ ନୁହେଁ, କିନ୍ତୁ ଏହା ସାଂପ୍ରଦାୟିକତାର ବାହାକ ହୋଇପାରିବ । ସଂଖ୍ୟାଗରିଷ୍ଠ ଲୋକଙ୍କ ଭିତରେ ସଂଖ୍ୟାଲଘୁ ଗୋଷ୍ଠୀ ପ୍ରତି ଅସହିଷ୍ଣୁତା ଓ ବିଦ୍ୱେଷର ଭାବନା ଆଣି ରାଜନୈତିକ ଲକ୍ଷ୍ୟ ହାସଲ କରିବା ସାଂପ୍ରଦାୟିକତାର ଲକ୍ଷ୍ୟ ହୋଇଥାଏ । କିନ୍ତୁ ଏହା ଇତିହାସରୁ ଏକ ଅନୁଭବ ଯେ ସାଂପ୍ରଦାୟିକତା ରାଷ୍ଟ୍ରକୁ ଭାଗ କରିବାରେ, ଦେଶର ଶାନ୍ତି ସ୍ଥିରତା ବ୍ୟାହତ କରିବାରେ, ସନ୍ତ୍ରାସବାଦର ପ୍ରସାର କରିବାରେ (ତାହା ସଂଖ୍ୟାଲଘୁ ଗୋଷ୍ଠୀର ହୋଇପାରେ ବା ସଂଖ୍ୟାଗରିଷ୍ଠ ଗୋଷ୍ଠୀର ହୋଇପାରେ) ଓ ସମାଜରେ ହିଂସା ଓ ଘୃଣାର ପରିବେଶ ସୃଷ୍ଟି କରିବାରେ ଆୟୁଧ ହୋଇଥାଏ ।

ମୌଳବାଦ କେତେକ ବିଶ୍ୱାସକୁ ଶାଶ୍ୱତ, ଚିରନ୍ତନ ଓ ଅଲଂଘ୍ୟ ମନେ କରିଥାଏ । ମୌଳବାଦୀମାନେ ପ୍ରଗତିଶୀଳ ମୂଲ୍ୟବୋଧ ଓ ସାମାଜିକ ପରିବର୍ତ୍ତନର ପରିପନ୍ଥୀ । ଧର୍ମଗ୍ରନ୍ଥର ବାଣୀ ଯେତେ ଅହେତୁକ ଓ ମାନବିକ ମର୍ଯ୍ୟାଦାର ପ୍ରତିକୂଳ ହେଲେ ମଧ୍ୟ ସେମାନେ ତାହାର ପରିବର୍ତ୍ତନର ପରିପନ୍ଥୀ । ଯେଉଁମାନେ ନିଜ ଧର୍ମଗ୍ରନ୍ଥରେ ଲିଖିତ ଭାବନାକୁ ଈଶ୍ୱରୀୟ ଅନୁଜ୍ଞା ମନେକରନ୍ତି ଓ ତାହା ଅପରିବର୍ତ୍ତନୀୟ ବୋଲି ଭାବନ୍ତି ସେମାନେ ହିଁ ମୌଳବାଦୀ । ଏହି ମୌଳବାଦୀ ଦୃଷ୍ଟିଭଙ୍ଗୀରୁ ପାଶ୍ଚାତ୍ୟ ଭୂଖଣ୍ଡରେ ବିଜ୍ଞାନର ଆଦିପର୍ବରେ ଧର୍ମ ଓ ବିଜ୍ଞାନ ଭିତରେ ସଂଘର୍ଷ ହୋଇଛି ଓ ବହୁ ପ୍ରତିଭାଧର ବୈଜ୍ଞାନିକଙ୍କୁ ନାନା ନିର୍ଯ୍ୟାତନାର ଶରବ୍ୟ ହେବାକୁ ପଡିଛି । ପ୍ରାଚ୍ୟ ଭୂଖଣ୍ଡରେ ମୌଳବାଦୀ ମାନସିକତାରୁ ଧର୍ମ ଓ ସମାଜ ସଂସ୍କାର ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଛି ଓ ମାନବିକ ଅଧିକାରର ପ୍ରବକ୍ତାମାନଙ୍କୁ କାଠଗଡାରେ ଛିଡା ହେବାକୁ ହୋଇଛି ।

ଉପସଂହାରରେ ଏହା କହିବା ଯଥାର୍ଥ ହେବ ଯେ ଧର୍ମନିରପେକ୍ଷତା ମାନବବାଦ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ବିଶ୍ୱଭ୍ରାତୃତ୍ୱର ଭାବନା ସହ ସମତାଳ; ଅଥଚ ସାଂପ୍ରଦାୟିକତା ଓ ମୌଳବାଦ ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ । ସାଂପ୍ରଦାୟିକତା ଓ ମୌଳବାଦ ମଧ୍ୟରେ ପାର୍ଥକ୍ୟ ରହିଥିଲେ ବି ଉଭୟ ମାନସିକ ସଂକୀର୍ଣ୍ଣତା, ଧର୍ମାନ୍ଧତା ଓ ବିଜ୍ଞାନ-ବିରୋଧୀ ଦୃଷ୍ଟିଭଙ୍ଗୀର ପ୍ରତୀକ । ତେବେ ପ୍ରତ୍ୟେକ ଧର୍ମ ପରଂପରାରେ ଏପରି ଅନେକ ଉଦାରବାଦୀ ଧାର୍ମିକ ମଣିଷ ରହିଛନ୍ତି ଯେଉଁମାନେ ଧର୍ମର ମାନବିକ ଦିଗଟିକୁ ପ୍ରାଧାନ୍ୟ ଦିଅନ୍ତି ଓ ବିଶ୍ୱ ଭ୍ରାତୃତ୍ୱର ବାର୍ତ୍ତାବହ ହୋଇଛନ୍ତି । ସେମାନେ ଧର୍ମରୁ ଏକ ମହତ୍ତର ଜୀବନବୋଧର ପ୍ରେରଣା ପାଆନ୍ତି ଓ ଏକ ଭେଦଭାବରହିତ ମାନବସମାଜର ସ୍ୱପ୍ନ ଦେଖନ୍ତି । ସାଂପ୍ରଦାୟିକ ବ୍ୟକ୍ତିଙ୍କ ପାଇଁ ଧର୍ମ ଧର୍ମାନ୍ଧତାରେ ରୂପାନ୍ତରିତ ହେବା ବେଳେ ଧର୍ମନିରପେକ୍ଷ ବ୍ୟକ୍ତିଙ୍କ ପାଇଁ ଧର୍ମ ମାନବବାଦୀ ଦୃଷ୍ଟିରେ ରୂପାନ୍ତରିତ ହୋଇଥାଏ ଓ ବ୍ୟକ୍ତିଗତ ବିଶ୍ୱାସର ପ୍ରଶ୍ନ ହୋଇଥାଏ ।

(୨୬.୦୩.୧୪)



# ଧର୍ମର ଆଦିପର୍ବ

ମାନବ ସଭ୍ୟତା ବହୁ ସ୍ତର ଦେଇ ଆଜିର ସ୍ଥିତିକୁ ଆସିଛି । ଆଜିର ସ୍ଥିତିକୁ ଆସିବା ପଶ୍ଚାତରେ ଏକ ସୁଦୀର୍ଘ କାହାଣୀ ରହିଛି । ଆଦିମାନବର ଗୋଷ୍ଠୀ ଜୀବନ ନାନା ବିକାଶ ଓ ପରିବର୍ତ୍ତନ ମଧ୍ୟ ଦେଇ ସୁଦୃଢ଼ ରାଷ୍ଟ୍ରୀୟ ନିରାପଦ ସ୍ତରକୁ ଆସିପାରିଛି । ଏହି ସୁଦୀର୍ଘ ଯାତ୍ରା ପଶ୍ଚାତରେ କେତେ ଗୁଡ଼ିଏ ବୌଦ୍ଧିକ ଆଲୋଡ଼ନ ସୃଷ୍ଟି ହୋଇଛି ଯାହା ସଭ୍ୟତା ମାନଙ୍କର ସାଂସ୍କୃତିକ ବିକାଶକୁ ନିର୍ଣ୍ଣାୟକ ମୋଡ଼ ଦେଇଛି । ଆଦି ମାନବର ଦୁନିଆ ଓ ସଭ୍ୟ ମାନବର ଦୁନିଆ ଭିତରେ ଆକାଶ-ପାତାଳ ଫରକ ରହିଛି । ଆଦିମାନବର ଜ୍ଞାନ, ପ୍ରଯୁକ୍ତି, ବୁଦ୍ଧି, ନୀତିବୋଧ, ସାମାଜିକ ସ୍ଥିତି ଓ ଜୀବନଦୃଷ୍ଟି ଯେଉଁ ସ୍ତରରେ ରହିଥିଲା ସେଥିରେ ନାନା ଗୁଣାତ୍ମକ ପରିବର୍ତ୍ତନ ସଭ୍ୟତାର ବିକାଶଧାରାରେ ସୃଷ୍ଟି ହୋଇଛି । ଗୋଟିଏ ସମୟରେ ବ୍ୟକ୍ତିମାନଙ୍କର ଜୀବନ, ନୀତିବୋଧ ଓ ଆଦାନପ୍ରଦାନ ଏକ କ୍ଷୁଦ୍ର ଗୋଷ୍ଠୀଭିତରେ ଆବଦ୍ଧ ହୋଇ ରହିଥିଲା । ନିଜ ଗୋଷ୍ଠୀ ବାହାରର ପରିବେଶ ଓ ପରିସ୍ଥିତି ବିଷୟରେ ଜାଣିବାର ଅବକାଶ ନଥିଲା । ପୃଥିବୀ ନଦୀ, ପାହାଡ଼, ପର୍ବତ, ସମୁଦ୍ର, ହ୍ରଦ ଇତ୍ୟାଦି ଯୋଗୁ ଭାଗ ଭାଗ ହୋଇ ରହିଥିଲା ଓ ଗୋଟିଏ ଭୂଖଣ୍ଡର ଲୋକମାନେ ବାହାର ଜଗତ ବିଷୟରେ ଅଜ୍ଞ ରହିଥିଲେ । ପ୍ରତ୍ୟେକ ଜନଗୋଷ୍ଠୀର ଭାଷା ଭିନ୍ନ ଥିଲା, ସମଗ୍ର ପୃଥିବୀରେ ପାଞ୍ଚ ହଜାରରୁ ଅଧିକ ଭାଷା ସୃଷ୍ଟି ହୋଇ ଯାଇଥିଲା । କ୍ଷୁଦ୍ର ଜନଗୋଷ୍ଠୀ ଶହ ଶହ ବର୍ଷର ବ୍ୟବଧାନରେ ବିସ୍ତାର ଲାଭ କରି ରାଜ୍ୟର ରୂପ ନେଲା ଓ ଧୀରେ ଧୀରେ ରାଜତନ୍ତ୍ରର ବିକାଶ ହେଲା । ରାଜତନ୍ତ୍ର ଯୁଗରେ ରାଜ୍ୟ ବିସ୍ତାର ଲାଭ କଲା ଓ ଏହା ଏକ ରାଜନୈତିକ ବ୍ୟବସ୍ଥା ମାଧ୍ୟମରେ ସମାଜକୁ ଦୃଢ଼ ଭିତ୍ତି ଦେଲା । ସେହିପରି ସାମାଜିକ ଜୀବନ ଧାରାରେ ଧର୍ମମାନଙ୍କର ବିକାଶ ଏକ ବଡ଼ ସାଂସ୍କୃତିକ ଆଲୋଡ଼ନ ଥିଲା । ପ୍ରତ୍ୟେକ ଧର୍ମ ଏକ ସାଂସ୍କୃତିକ ପ୍ରବାହ ଭାବେ ଜନଜୀବନକୁ ନାନା ଭାବରେ ବ୍ୟବସ୍ଥିତ କରିବାରେ କିଛିଟା ସହାୟକ ହୋଇଥିଲା । ସଂପ୍ରତି ଯାହାକୁ ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ, ମୁସଲମାନ ଧର୍ମ ଇତ୍ୟାଦି କୁହାଯାଉଛି ଏହି ପ୍ରତ୍ୟେକଟି ଧର୍ମ

ଏକ ଭୌଗୋଳିକ ଭୂଖଣ୍ଡର ଏକ ବଡ଼ ସାଂସ୍କୃତିକ ପ୍ରବାହ ଭାବେ ଉଦ୍ଭବ ହୋଇଥିଲା । କୌଣସି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ବିଚାରବୋଧକୁ ଆଧାରକରି ଯେଉଁ ସାଂସ୍କୃତିକ ଆଲୋଡନ ଆସିଥିଲା ତାହା କାଳକ୍ରମେ ଏକ ବୌଦ୍ଧିକ ଜାଗରଣ ଭାବେ ଏକ ଆନୁଷ୍ଠାନିକ ରୂପ ନେଲା । ଏହା ଆନୁଷ୍ଠାନିକ ରୂପରେଖ ନେବା ପରେ ସାମାଜିକ ବ୍ୟବସ୍ଥା ଦୃଢ଼ ସାଂସ୍କୃତିକ ଭିତ୍ତି ନେଲା ।

ଧର୍ମମାନଙ୍କର ଅଭ୍ୟୁଦୟ ପୂର୍ବରୁ ସମାଜରେ ଲୋକମାନଙ୍କର ବିଶ୍ୱାସ କିପ୍ରକାର ଥିଲା ତାହା ଉପରେ ବିଭିନ୍ନ ଅନୁଶୀଳନ ହୋଇଛି । ପ୍ରାଗ୍‌ଧର୍ମୀୟ ସମାଜରେ ଯେଉଁଠି ରାଜନୈତିକ ଦୃଶ୍ୟପଟ ଦୃଢ଼ ଭିତ୍ତି ନେଇ ସାରିଥିଲା, ସେଠାରେ ଲୋକବିଶ୍ୱାସ ନେଇ କେତେକ ଚିତ୍ର ମିଳିଥାଏ । ଧର୍ମମାନଙ୍କର ଉତ୍ପତ୍ତି ପୂର୍ବରୁ ବିଭିନ୍ନ ଭୂଖଣ୍ଡରେ କେତେକ ସଭ୍ୟତା ବିକଶିତ ହୋଇଥିଲା । ଅନୁମାନ ପ୍ରାଗ୍‌ଐତିହାସିକ ଯୁଗ ଓ ପ୍ରାଗ୍‌ଧର୍ମୀୟ ଯୁଗ ଭିତରେ ଏକ ବଡ଼ ବ୍ୟବଧାନ ହୁଏତ ନଥିଲା । ତେବେ ସେହି ସମୟରେ ବଣ ଜଂଗଲଭରା ପରିବେଶ, ହିଂସ୍ର ଜୀବଜନ୍ତୁଙ୍କ ଆକ୍ରମଣ ଓ ବିଭିନ୍ନ ରୋଗବୈରାଗ ଜନିତ କାରଣରୁ ଜୀବନ ବହୁ ବିପଦସଂକୁଳ ଥିଲା । ଦିନ, ରାତି, ବର୍ଷା, ବତାସ, ଋତୁ ପରିବର୍ତ୍ତନ, ବିଜୁଳି, ଘଡ଼ଘଡି, ଜନ୍ମ, ମୃତ୍ୟୁ ଇତ୍ୟାଦି ଘଟଣାମାନଙ୍କର କାରଣ ଜାଣିବା ମଣିଷ ସାମର୍ଥ୍ୟର ବହିର୍ଭୂତ ଥିଲା । ପ୍ରାକୃତିକ ଦୁର୍ବିପାକ ବେଳେ ମଣିଷ ଅତ୍ୟନ୍ତ ଅସହାୟ ହୋଇ ପଡୁଥିଲା । ଅସହାୟବୋଧ ଓ ଭୟ ପ୍ରାଗ୍‌ଧର୍ମୀୟ ସମାଜରେ ବ୍ୟାପକ ଭାବେ ରହିଥିଲା । ସେହି ଯୁଗରେ ସୂର୍ଯ୍ୟ, ଚନ୍ଦ୍ର, ପୃଥିବୀ, ଅଗ୍ନି, ଜଳ, ବାୟୁ ଇତ୍ୟାଦି ସବୁ କିଛି ଯେ ଦୈବୀଶକ୍ତି ଏହି ଭାବନା ସୃଷ୍ଟି ହୋଇଥିଲା । ଏପରିକି ଗଛ, ପାହାଡ, ପର୍ବତ, ନଦୀ, ଝରଣା ଇତ୍ୟାଦିକୁ ଦେବତା ବୋଲି ବିଚାର କରାଯାଉଥିଲା । ପ୍ରାକୃତିକ ଦୁର୍ବିପାକ ଦେବତାର କ୍ରୋଧ ବୋଲି ବିଶ୍ୱାସ ଥିଲା । ବିଭିନ୍ନ ସଭ୍ୟତାରେ ପ୍ରାୟତଃ ବିଶ୍ୱାସ ଥିଲା ଯେ ନଦୀ, ପାହାଡ଼, ପର୍ବତ, ବୃକ୍ଷ, ଝରଣା ଏକ ଏକ ଦୈବୀ ସତ୍ତା । ବିଚାରର ବିକାଶ ଧାରାରେ ସାମଗ୍ରିକ ଭାବେ ଜଳ ପାଇଁ ଜଣେ ଜଳଦେବତା, ବଣଜଂଗଲ ପାଇଁ ଜଣେ ବନ୍ୟଦେବତା, ନଭମଣ୍ଡଳପାଇଁ ଆକାଶ ଦେବତା, ନିଆଁ ପାଇଁ ଅଗ୍ନିଦେବତା ଇତ୍ୟାଦି ଭାବନା ସୃଷ୍ଟି ହେଲା । ପ୍ରାକୃତିକ ଦେବତା ମାନେ ପ୍ରାକୃତିକ ବସ୍ତୁମାନଙ୍କୁ ନିୟନ୍ତ୍ରଣ କଲା ପରି ଜୀବନର ବିଭିନ୍ନ କ୍ଷେତ୍ରକୁ କେତେକ ଦେବତା ନିୟନ୍ତ୍ରଣ କରନ୍ତି ବୋଲି ଭାବନାର ବିକାଶ ହେଲା । ସୁସ୍ଥ ଜୀବନ ପାଇଁ, ରୋଗରୁ ପରିତ୍ରାଣ ପାଇଁ, ଜନ୍ମ ପାଇଁ, ମୃତ୍ୟୁ ପାଇଁ ବିଭିନ୍ନ ଦେବତାଙ୍କୁ ପରିକଳ୍ପନା କରାଗଲା । ସେହିପରି ଧନ, ବିଦ୍ୟା, କାରିଗରୀ କୌଶଳ, ସୁଖମୟ ବୈବାହିକ ଜୀବନ ଇତ୍ୟାଦି ଲାଭ ପାଇଁ ବିଭିନ୍ନ ଦେବତାଙ୍କର ଭାବନା ଆସିଲା । କେଉଁ ଦେବତାଙ୍କୁ ଆରାଧନା

କଲେ ଧନ ମିଳିବ, କିଏ ସନ୍ତୁଷ୍ଟ ହେଲେ ବିଦ୍ୟା ଦେବେ, କାହାର ଆଶୀର୍ବାଦରୁ କାରିଗରୀ କଳା ଲାଭ ହୋଇପାରିବ ଏହି ଭାବନା ସମାଜରେ ବିସ୍ତାର ଲାଭ କଲା । ପ୍ରାକୃତିକ ଘଟଣାମାନ ହେଉ ବା ଜୀବନର ଘଟଣାବଳି ହେଉ ପ୍ରତ୍ୟେକ କ୍ଷେତ୍ର ପାଇଁ ଜଣେ ଦେବତାର କଳ୍ପନା କରାଯାଇ ତାହାଙ୍କ ନିୟନ୍ତ୍ରଣରେ ଏହାକୁ ରଖାଗଲା । ପୁରୁଷ-କୈନ୍ଦ୍ରିକ ସମାଜରେ ବହୁ ଦେବତାର ଭାବନା ସୃଷ୍ଟି ହେଲା । ଯେଉଁଠି ନାରୀ-କୈନ୍ଦ୍ରିକ ସମାଜ ରହିଥିଲା, ସେଠାରେ ବିଭିନ୍ନ ଦେବୀଙ୍କର ପରିକଳ୍ପନା ଭିତରୁ ଦେବତାର ଭାବନା ଉଦ୍‌ଭବ ହୋଇଥିଲା । ଚିନ୍ତା ଚେତନାରେ ଆଉ ଟିକିଏ ଅଗ୍ରଗତି ପରେ ମଣିଷ ଯେତେବେଳେ ନିଜ ବିଷୟରେ ଭାବିଲା ସେତେବେଳେ ସେ ନିଜକୁ ଏକ ଜୀବାତ୍ମା ବୋଲି ଅନୁମାନ କଲା । ଏହି ଭାବନା ଅଧିକ ବିକଶିତ ହୋଇ ମୃତ୍ୟୁପରେ ବ୍ୟକ୍ତିର ଚେତନ-ସତ୍ତା ବା ଜୀବାତ୍ମା ବଞ୍ଚି ରହିବାର କଳ୍ପନା ବିଚାର ସ୍ତରକୁ ଆସିଲା । ମୃତ ବ୍ୟକ୍ତିକୁ ସ୍ୱପ୍ନରେ ଦେଖିବା, ସ୍ମୃତି ଭିତରେ ରଖିବା ଇତ୍ୟାଦିରୁ ବ୍ୟକ୍ତିର ମୃତ୍ୟୁ ପରେ ତାର ଆତ୍ମା ଯେ ରହେ ଏହି ବିଶ୍ୱାସ ଦୃଢ଼ ଭିତ୍ତି ନେଲା । ପ୍ରତ୍ୟେକ ବ୍ୟକ୍ତିର ଯେପରି ଏକ ବ୍ୟକ୍ତି-ସତ୍ତା ରହିଛି ସେହିପରି ସବୁ ଦେବୀ ଦେବତାମାନଙ୍କର ବ୍ୟକ୍ତି-ସତ୍ତା ଯେ ରହିଛି ଏହା ବିଶ୍ୱାସ କରାଗଲା । ପ୍ରତ୍ୟେକ ଦେବୀ ଦେବତାଙ୍କୁ ବ୍ୟକ୍ତି-ସତ୍ତା ଆରୋପ କରାଯାଇ ସେମାନଙ୍କୁ ସନ୍ତୁଷ୍ଟ କରାଯିବାର ମାନସିକତା ଆସିଲା । ରୋଗ ବୈରାଗ, ମହାମାରୀ, ପ୍ରାକୃତିକ ବିପର୍ଯ୍ୟୟ ଇତ୍ୟାଦି ଦେବତାର ଅସନ୍ତୋଷରୁ ଯେ ସୃଷ୍ଟି ହୁଏ ଏହି ବିଶ୍ୱାସ ସମାଜରେ ଦୃଢ଼ ହେବାକୁ ଲାଗିଲା । ସୁତରାଂ ଏ ସବୁରୁ ନିଷ୍କୃତି ପାଇଁ ଦେବୀଦେବତାଙ୍କୁ ଯେ ସନ୍ତୁଷ୍ଟ କରିବାକୁ ହେବ ଏହା ବିଶ୍ୱାସ କରାଗଲା । ଏଥି ପାଇଁ ବିଭିନ୍ନ ପୂଜା, ଆରାଧନା, ପ୍ରାର୍ଥନା, ଆଳତିର ବ୍ୟବସ୍ଥା ହେଲା ଓ ଏସବୁ ଧୀରେ ଧୀରେ ଜନଗୋଷ୍ଠୀରେ ପରଂପରାର ରୂପ ନେଲା । ଦେବୀଦେବତାଙ୍କୁ ନେଇ କେତେ କେତେ କାଳ୍ପନିକ କାହାଣୀ, ସ୍ୱପ୍ନାଦେଶ, ଚମତ୍କାରିତାର ଭାବନା ସୃଷ୍ଟି କରାଗଲା । କାଳକ୍ରମେ ଦେବୀ ଦେବତାଙ୍କର ରୂପ କଳ୍ପନା କରାଯାଇ ସେମାନଙ୍କୁ ପୌତଳିକ ରୂପ ଦିଆଗଲା । ବିଭିନ୍ନ ସଭ୍ୟତାରେ ପୌତଳିକ ମୂର୍ତ୍ତିକୁ ଜୀବନ୍ତ ଦେବତା ଭଳି ପୂଜା କରାଗଲା । ମଣିଷ ହାତରେ ନିର୍ମିତ ପିତୁଳାଟି ଦେବତା ପାଲଟି ଗଲା ପରେ କେତେ କେତେ ପୂଜା, ଆରାଧନାର ପରଂପରା ସୃଷ୍ଟି କରାଯାଇ ସେ ଦିଗରେ ବିଭିନ୍ନ କାବ୍ୟ, କାହାଣୀ ସୃଷ୍ଟି ହେଲା । ବହୁ କର୍ମକାଣ୍ଡକୁ ଦେବୀ-ଦେବତାଙ୍କ ସହ ସଂଶ୍ଲିଷ୍ଟ କରାଗଲା । କାଳକ୍ରମେ ଏହି ସବୁ ବିଶ୍ୱାସକୁ ଆଧାର କରି କେତେ କେତେ ସାହିତ୍ୟର ରଚନା ହେଲା । ଧୀରେ ଧୀରେ ଏସବୁ ଜୀବନ ପ୍ରବାହର ଅଙ୍ଗ ହୋଇ ଉଠିଲା ଓ ବିଭିନ୍ନ ଭୂଖଣ୍ଡର ସାଂସ୍କୃତିକ ଜୀବନଧାରାକୁ ଗଭୀରଭାବେ ପ୍ରଭାବିତ କଲା ।

ଆନୁଷ୍ଠାନିକ ଧର୍ମ ଓ ଦାର୍ଶନିକ ଚିନ୍ତନର ଯୁଗ ଆସିବା ପୂର୍ବରୁ ବହୁ ଦେବବାଦର ଭାବନା ସବୁ ସଭ୍ୟତାରେ ବିକଶିତ ହୋଇଥିଲା । ବହୁ ଈଶ୍ୱରବାଦରୁ ପରେ ଏକେଶ୍ୱରବାଦର କଳ୍ପନା ଆସିବା ଦେଖାଯାଏ । ତେବେ ବହୁ ଈଶ୍ୱରବାଦ ଓ ଏକେଶ୍ୱରବାଦ ମଝିରେ ଆଉ ଏକ ଭାବନାର ଉଦ୍‌ଭବ ହୋଇଥିଲା ଯାହାକୁ ଏକୈକାଧିଦେବବାଦ ବା ହିନୋଥେଇଜିମ୍ କୁହାଯାଏ । ଏହାନୁଯାୟୀ ବହୁ ଦେବତା ଅଛନ୍ତି, ତେବେ ପ୍ରତ୍ୟେକ ବଂଶଗୋଷ୍ଠୀ ଏକ ନିର୍ଦ୍ଦିଷ୍ଟ ଦେବତାଙ୍କ ପାଖରୁ ସୃଷ୍ଟି ହୋଇଛନ୍ତି । ଜଣେ ବ୍ୟକ୍ତି କେବଳ ନିଜ ବଂଶର ଆଦି ଦେବତାଙ୍କୁ ପ୍ରାର୍ଥନା କଲେ ସେ ହିଁ ବିପଦରେ ସହାୟକ ହେବେ ଓ ଫଳ ଦେବେ । ଅନ୍ୟ ଦେବତାଙ୍କୁ ଆରାଧନା କଲେ କୌଣସି ଫଳ ମିଳିବ ନାହିଁ । ପ୍ରତ୍ୟେକ ଆଦିବାସୀ ଗୋଷ୍ଠୀ ନିଜ ଗୋଷ୍ଠୀର ଆଦି ଦେବଙ୍କୁ କଳ୍ପନା କରି ତାଙ୍କୁ ହିଁ ଭକ୍ତି-ଅର୍ଘ୍ୟ ଅର୍ପଣ କରିବା ଯଥାର୍ଥ ବୋଲି ବିଶ୍ୱାସ କରନ୍ତି ।

ବିଚାରଶୀଳତା ଓ ତର୍କଶୀଳ ଦାର୍ଶନିକ ଚିନ୍ତନ ପୂର୍ବରୁ ବିଭିନ୍ନ ସାମାଜିକ ଜନଗୋଷ୍ଠୀର ଧର୍ମଭାବନା ଏହିପରି ବିକଶିତ ହୋଇଥିବା ଦେଖାଯାଏ । ପ୍ରାଗ୍‌ଧର୍ମୀୟ ସମାଜ ମାନଙ୍କରେ ବୁଦ୍ଧିର ଯେତିକି ବିକାଶ ହୋଇଥିଲା, ସେ କ୍ଷେତ୍ରରେ ପ୍ରାକୃତିକ ସତ୍ତାଭିତ୍ତିକ ଈଶ୍ୱର, ବହୁ ଦେବବାଦ, ଏକୈକାଧିଦେବବାଦ ଈଶ୍ୱର ସମ୍ବନ୍ଧୀୟ ଆଦିଭାବନା ଥିଲା । ଏସବୁରୁ କାଳକ୍ରମେ ଏକେଶ୍ୱରବାଦର ଭାବନା ଉଦ୍‌ଭବ ହେଲା, ଯାହା ବିଚାର କ୍ଷେତ୍ରରେ ବେଶ୍ କ୍ରାନ୍ତିକାରୀ ଥିଲା । ଏକେଶ୍ୱର ବାଦର ଭାବନା ଧର୍ମଭିତ୍ତିକ ଜୀବନଦୃଷ୍ଟିର ଏକ ପ୍ରମୁଖ ବିଷୟ ହେଲା । ଏହା ବି ଦାର୍ଶନିକ ଚିନ୍ତନ ଆଧାରରେ କେତେକ ତର୍କଭିତ୍ତିକ ସମର୍ଥନ ଲାଭକଲା । ତେବେ ଏକେଶ୍ୱରବାଦ ଭାବନାର ପୂର୍ବବର୍ତ୍ତୀ ବିଚାରର ପୃଷ୍ଠଭୂମି ଥିଲା ବହୁ ଦେବବାଦ ବା ପଲିଥେଇଜିମ୍ ଓ ଏକୈକାଧିଦେବବାଦ ବା ହିନୋଥେଇଜିମ୍ । ସଭ୍ୟତାର ଆଦିପର୍ବରେ ଯେଉଁ ବିଶ୍ୱାସ ସୃଷ୍ଟି ହୋଇଥିଲା ତାହା କାଳକ୍ରମେ ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ପାଇଁ ପଥ ଦେଖାଇଥିଲା ।

(୧୨.୧୧.୨୦୧୪)



# ବୌଦ୍ଧିକ ବିକାଶଧାରାରେ ଧର୍ମ

ପୃଥିବୀର ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ଯେପରି ଗଢ଼ି ଉଠିଛି, ସେହିପରି ବିଭିନ୍ନ ସଭ୍ୟତାରେ ଧର୍ମମାନ ମଧ୍ୟ ସୃଷ୍ଟି ହୋଇଛି । ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଖ୍ରୀଷ୍ଟଧର୍ମ, ଇସଲାମ ଧର୍ମ, ପାର୍ଶୀଧର୍ମ ଇତ୍ୟାଦି କହିଲା ବେଳେ ଧର୍ମର ଯେଉଁ ଅର୍ଥଟି ପ୍ରକାଶ ପାଏ ସେହି ଅର୍ଥରେ ପ୍ରତ୍ୟେକଟି ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଏକ ବଡ଼ ସାଂସ୍କୃତିକ ଆଲୋଡନ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାଗ୍‌ଧର୍ମୀୟ ସମାଜରୁ ଧର୍ମଭିତିକ ସମାଜର ପରିବର୍ତ୍ତନ ଏକ ବଡ଼ ସାଂସ୍କୃତିକ ଉତରଣର ସୂଚନା ଦେଇଥାଏ । ପ୍ରାଗ୍‌ଧର୍ମୀୟ ସମାଜରେ ବହୁ ଦେବ-ଦେବୀ ପୂଜା, ପଶୁ ବଳି, ନାନା ଅହେତୁକ କର୍ମକାଣ୍ଡର ପ୍ରାବଲ୍ୟ ଥିବା ଦେଖାଯାଏ । ଏହି ସ୍ଥିତିରେ ଖ୍ରୀ.ପୂ. ଏକ ହଜାର ବର୍ଷଠାରୁ ବିଭିନ୍ନ ସଭ୍ୟତାରେ ଧୀରେ ଧୀରେ କିଛି ସାଂସ୍କୃତିକ ଆଲୋଡନ ଆସିଥିବା ଜଣାଯାଏ । ଖ୍ରୀ.ପୂ. ଏକ ହଜାର ବର୍ଷ ବେଳକୁ ଗ୍ରାମୀଣ ପରିବେଶ, କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଓ ରାଜତନ୍ତ୍ର ତଥା ସୁଦୃଢ଼ ପାରିବାରିକ ଜୀବନ ବିଭିନ୍ନ ଭୂଖଣ୍ଡରେ ଗଢ଼ିଉଠିଥାଏ । ଏହି ପରିବେଶରେ ସେ ଯୁଗର ମାନଦଣ୍ଡରେ କେତେକ ଜ୍ଞାନଦୀପ୍ତ ବ୍ୟକ୍ତିଙ୍କର ଆବିର୍ଭାବ ଜନଜୀବନକୁ ଏକ ଅର୍ଥପୂର୍ଣ୍ଣ ମୋଡ ଦେବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିବା ଜଣାଯାଏ । ଭାରତ ଭୂଖଣ୍ଡରେ ଉପନିଷଦ ଓ ବିଭିନ୍ନ ସଂହିତା ମାନଙ୍କର ରଚନାରୁ ହିନ୍ଦୁଧର୍ମର ଭିତି ସୁଦୃଢ଼ ହୋଇଥିଲା । ସେହିପରି ଗୌତମ ବୁଦ୍ଧ ଓ ମହାବୀରଙ୍କ ଆବିର୍ଭାବରୁ ବୌଦ୍ଧଧର୍ମ ଓ ଜୈନଧର୍ମ ଦୁଇଟି ପୃଥକ୍ ସାଂସ୍କୃତିକ ପ୍ରବାହ ମୁଣ୍ଡ ଟେକିଥିଲା । ସେହି ସମୟରେ ମଧ୍ୟ--ପ୍ରାଚ୍ୟରେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଜୋରାଷ୍ଟରଙ୍କ ଆବିର୍ଭାବରୁ ପାର୍ଶୀଧର୍ମ ବିକଶିତ ହୋଇଥିଲା । ହିବ୍ରୁ ସଭ୍ୟତାରେ ଜୁଡାଇଜିମ୍ ମୋଜେସ୍‌ଙ୍କ ଭାବଧାରା ଉପରେ ବିକଶିତ ହୋଇ ଇହୁଦୀମାନଙ୍କର ଧର୍ମ ହେଲା । ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ଚୀନ୍‌ରେ କନ୍‌ଫୁସିଅସଙ୍କର ଆବିର୍ଭାବ ଓ ତାଙ୍କର ମାନବବାଦୀ ଜୀବନଦର୍ଶନରୁ ଏକ ବଡ଼ ସାଂସ୍କୃତିକ ଆଲୋଡନ ଚୀନରେ ମୁଣ୍ଡ ଟେକିଥିଲା । ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ଯୀଶୁଖ୍ରୀଷ୍ଟଙ୍କ ଆବିର୍ଭାବ ପରେ ସେ ଈଶ୍ୱର-

କୈନ୍ଦ୍ରିକ ମାନବଦରଦୀ ଜୀବନ-ବୋଧର ଯେଉଁ ବିଚାର ବ୍ୟକ୍ତ କରିଥିଲେ, ତାହା ଏକ ବଡ ସାଂସ୍କୃତିକ ଆଲୋଡନର ରୂପ ନେଇ ପରେ ଏକ ବିଶାଳ ଭୂଖଣ୍ଡରେ ପରିବ୍ୟାପ୍ତ ହେଲା । ଷଷ୍ଠ ଶତାବ୍ଦୀରେ ଆରବ ଭୂଖଣ୍ଡରେ ମହମ୍ମଦଙ୍କୁ ନେଇ ଅନ୍ୟ ଏକ ସାଂସ୍କୃତିକ ପ୍ରବାହ ସୃଷ୍ଟି ହେଲା ।

ବସ୍ତୁତଃ ସଂପ୍ରତି ଯାହାକୁ ଧର୍ମ କୁହାଯାଉଛି ତାହା ବହୁ ଅତୀତରେ ଗୋଟିଏ ଗୋଟିଏ ସାଂସ୍କୃତିକ ଜାଗରଣ ଥିଲା । ପ୍ରତ୍ୟେକ ଧର୍ମ ଏକ ଭୌଗୋଳିକ ଭୂଖଣ୍ଡରେ ଏକ ସାଂସ୍କୃତିକ ଓ ନୈତିକ ଜୀବନଦୃଷ୍ଟି ଭାବେ ଉଦ୍‌ଭବ ହୋଇ କାଳକ୍ରମେ ରାଜତନ୍ତ୍ରର ସମର୍ଥନରେ ବୃହତ୍ତର ଅଞ୍ଚଳକୁ ପ୍ରସାରଲାଭ କରିଥିଲା । ଏହାର ପରିଣାମ ସ୍ୱରୂପ ଏକ ବୃହତ୍ତର ଜନଗୋଷ୍ଠୀରେ ସାମାଜିକ ସଂହତି ସୃଷ୍ଟି ହୋଇଥିଲା । ଯେଉଁ ସମୟରେ ଏକ ଅଂଚଳର ଜନଗଣ ଅନ୍ୟ ଭୂଖଣ୍ଡ ବିଷୟରେ ଜାଣିବାର ଅବକାଶ ନଥିଲା, ସେହି ସମୟରେ ଧର୍ମ ଏକ ବୃହତ୍ତର ଜନଗୋଷ୍ଠୀ ଭିତରେ ଏକ ସାଂସ୍କୃତିକ ପ୍ରବାହ ଭାବେ ଉଦ୍‌ଭବ ହୋଇ ଗୋଟିଏ ଭୌଗୋଳିକ ଭୂଖଣ୍ଡରେ ସାମାଜିକ ଐକ୍ୟ ସ୍ଥାପନ କରିବାରେ ସହାୟକ ହୋଇଥିଲା । ପ୍ରାଗ୍‌ଐତିହାସିକ ଓ ପ୍ରାଗ୍‌ଧର୍ମୀୟ ଯୁଗର କାଳ୍ପନିକ ବିଶ୍ୱାସ, ପୂଜା, ଆରାଧନା, କର୍ମକାଣ୍ଡ ଏହି ନୂତନ ସାଂସ୍କୃତିକ ପ୍ରବାହର ପ୍ରଭାବରେ ଏକ ଶୃଂଖଳିତ ଜୀବନଧାରାରେ ରୂପାନ୍ତରିତ ହେଲା । କେତେକ ଧର୍ମଧାରା ଭିତରେ ଏକେଶ୍ୱରବାଦର ଭାବନା ଏତେ ସୁଦୃଢ଼ ଥିଲା ଯେ ତାହାର ପ୍ରଭାବରେ ବହୁ ଦେବ-ଦେବୀ ପୂଜା ବା ବହୁ ଈଶ୍ୱରବାଦର ଭାବନା ସେହି ଭୂଖଣ୍ଡରୁ ଲୋପ ପାଇଲା । ବଳି ପ୍ରଥା ଓ ନାନା ଅହେତୁକ କର୍ମକାଣ୍ଡକୁ ପରିତ୍ୟାଗ କରାଗଲା ଓ ଜନଜୀବନର ସାଂସ୍କୃତିକ ଜୀବନବୋଧରେ ଏକ ବଡ ଉତ୍ତରଣ ଘଟିଲା ।

ଊନବିଂଶ ଶତାବ୍ଦୀ ବେଳକୁ ବିଭିନ୍ନ ବିଶ୍ୱବିଦ୍ୟାଳୟ ମାନଙ୍କରେ ସମାଜ ବିଜ୍ଞାନର ଗମ୍ଭୀର ଅଧ୍ୟୟନ କରାଗଲା । ରାଜନୀତି, ଅର୍ଥନୀତି, ନୃତତ୍ତ୍ୱ, ଇତିହାସ ଯେପରି ଅଧ୍ୟୟନର ପରିସରକୁ ଆସିଲା, ସେହିପରି ଧର୍ମମାନଙ୍କର ଅଧ୍ୟୟନ ଓ ତୁଳନାତ୍ମକ ଅନୁଶୀଳନ ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିସରକୁ ଆସିଲା । ଏହି ଅନୁଶୀଳନରୁ ପ୍ରତ୍ୟେକ ଧର୍ମର ବୌଦ୍ଧିକ ପରିସରଟିକୁ ସୁନିର୍ଦ୍ଦିଷ୍ଟ କରାଗଲା । ପ୍ରତ୍ୟେକ ଧର୍ମର ଐତିହାସିକ ବିକାଶ, ପ୍ରବର୍ତ୍ତକ, ଧର୍ମଗ୍ରନ୍ଥ, ସଂପ୍ରଦାୟ, ତାତ୍ତ୍ୱିକ ବିଚାର, କର୍ମକାଣ୍ଡ ଓ ନୈତିକ ଭାବନା ସକଳକୁ ପ୍ରକାଶ କରାଗଲା । ପ୍ରତ୍ୟେକ ଧର୍ମଧାରା ପଶ୍ଚାତରେ ରହିଥିବା କୌଣସି କ୍ରାନ୍ତିକାରୀ ବ୍ୟକ୍ତିଙ୍କର ବିଚାର, କୌଣସି ଶାସ୍ତ୍ର ବା ଉଭୟ ସଂଶ୍ଳିଷ୍ଟ ଥିବା ବିଷୟ ଲୋକଲୋଚନକୁ ଆସିଲା । ବିଶ୍ୱର ସୃଷ୍ଟି କିପରି ହେଲା, ଈଶ୍ୱରଙ୍କ ସ୍ୱରୂପ କ'ଣ, ମୃତ୍ୟୁ ପରେ କୌଣସି ଆତ୍ମା ରହେ

କି, ଯଦି ରହେ କେଉଁ ସ୍ୱରୂପରେ ରହେ, ମଣିଷର ଆତ୍ମା ତଥା ଇତରପ୍ରାଣୀଙ୍କ ଆତ୍ମା ଭିତରେ କ'ଣ ପ୍ରଭେଦ ରହିଛି, ଜୀବନର ଅନ୍ତିମ ଲକ୍ଷ୍ୟ କ'ଣ, ପୃଥିବୀରେ ଏତେ ମନ୍ଦ କାହିଁକି ରହିଛି ଇତ୍ୟାଦି ପ୍ରସଙ୍ଗ ଗୁଡିକ ଉପରେ ବିଭିନ୍ନ ଧର୍ମର ମତକୁ ସ୍ପଷ୍ଟ ଭାବରେ ବ୍ୟକ୍ତ କରାଗଲା । ଧର୍ମମାନଙ୍କର ତୁଳନାତ୍ମକ ବ୍ୟାଖ୍ୟାନରୁ ଏହା ଜଣାପଡିଲା ଯେ ଧର୍ମର ଭାବନାମାନ ସମତାଳଯୁକ୍ତ ନୁହନ୍ତି ଓ ସେଗୁଡିକ ପରସ୍ପର ବିରୋଧୀ ମତପୋଷଣ କରୁଛନ୍ତି । କେତେକ ଧର୍ମରେ ଅବତାରବାଦ ରହିଛି ଅଥଚ ଅନ୍ୟ ଧର୍ମରେ ଏହାକୁ ପ୍ରତ୍ୟାଖ୍ୟାନ କରାଯାଇଛି । କେତେକ ଧର୍ମରେ ଜନ୍ମାନ୍ତରବାଦ ରହିଛି ଅନ୍ୟ କେତେକ ଧର୍ମରେ ଏହାକୁ ସ୍ୱୀକାର କରାଯାଇ ନାହିଁ । ଆତ୍ମାର ସ୍ୱରୂପ ନେଇ ଧର୍ମମାନଙ୍କ ଭିତରେ ପରସ୍ପରବିରୋଧୀ କଳ୍ପନା ଜଳ୍ପନା ବ୍ୟକ୍ତ ହୋଇଛି । ପୃଥିବୀର ଉତ୍ପତ୍ତି ଓ ମଣିଷର ସ୍ଥିତି ନେଇ ବିଭିନ୍ନ ଧର୍ମମାନ ଅବାନ୍ତର ଓ ଅବୈଜ୍ଞାନିକ ଭାବନା ବ୍ୟକ୍ତ କରିଛନ୍ତି । ବିଜ୍ଞାନର ବିକାଶ ସହ ଏହା ଅଧିକରୁ ଅଧିକ ସ୍ପଷ୍ଟ ହେବାକୁ ଲାଗିଲା ଯେ ବିଭିନ୍ନ ଧାର୍ମିକ ବିଶ୍ୱାସ ଗୁଡିକ କେବଳ ପ୍ରାଚୀନ ଯୁଗର କଳ୍ପନା ଓ ସେ ଯୁଗରେ ଜୀବନର ଘଟଣା ପ୍ରବାହକୁ ଅବବୋଧ କରିବାର ଏକ ବୌଦ୍ଧିକ ପ୍ରୟାସ ମାତ୍ର । ପୃଥିବୀର ସୃଷ୍ଟି କିପରି ହେଲା, ମଣିଷର ଉତ୍ପତ୍ତି କିପରି ହୋଇଛି, ବିପଦବେଳେ ମଣିଷକୁ କିଏ ସୁରକ୍ଷା ଦିଏ, ଭଲ-ମନ୍ଦର ବିଚାରକ କିଏ- ଏ ସକଳ ପ୍ରଶ୍ନର ଉତ୍ତର ଈଶ୍ୱର ବୋଲି କେତେକ ଧର୍ମ ପରିକଳ୍ପନା କରିଥିବା ଦେଖାଯାଏ । ମଣିଷର ବୌଦ୍ଧିକ ଦିଗନ୍ତ ଯେତେବେଳେ ବିସ୍ତାରିତ ହୋଇ ନଥିଲା ଓ ବିଜ୍ଞାନ ଆଦୌ ଭିତ୍ତି ନେଇ ନଥିଲା ସେ ଯୁଗରେ ପାରଲୌକିକ ଶକ୍ତିରେ ବିଶ୍ୱାସ ଓ ସକଳ ଘଟଣା ପ୍ରବାହକୁ ଦୈବୀ ବିଧାନ ଆଧାରରେ ବୁଝିବା ଅତି ସାଧାରଣ ବିଷୟ ଥିଲା । ଧର୍ମ ଚେତନାର ମୂଳ ଆଧାର ବିଶ୍ୱାସ ଉପରେ ଗଢ଼ି ଉଠିଥିଲା । ତେବେ ଚେତନାର ପରିସର ଓ ବୈଜ୍ଞାନିକ ଭାବଧାରାର ପ୍ରସାର ସହ ଧାର୍ମିକ ବିଶ୍ୱାସ ଗୁଡିକ ସଙ୍କୁଚିତ ହୋଇ ଆସିଲା ।

ପ୍ରତ୍ୟେକ ଧର୍ମରେ ନୀତିବୋଧର ଯେଉଁ ବିଚାର ବ୍ୟକ୍ତ ହୋଇଥିଲା ତାହା କେତେକ ବ୍ୟକ୍ତିଙ୍କୁ ମହତ୍ତର ଜୀବନବୋଧର ବାର୍ତ୍ତା ଦେବା ବିଷୟକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ସୁତରାଂ ଧର୍ମ ଓ ନୈତିକତା ଭିତରେ ଯେ ଏକ ସୁଦୃଢ଼ ସଂପର୍କ ରହିଛି ଏହା ଅନେକ ବିଶ୍ୱାସ କରନ୍ତି । ତେବେ ଦର୍ଶନ ପରିସରରେ ନୈତିକ ମୂଲ୍ୟଚୟର ଯେଉଁ ବିଶ୍ଳେଷଣ କରାଯାଇଛି ସେଥିରୁ ଏହା ପ୍ରତୀୟମାନ ହୁଏ ଯେ ଧର୍ମରେ ନୈତିକ ମୂଲ୍ୟଚୟ ଏକ ପାରଲୌକିକ ଲକ୍ଷ୍ୟ ପାଇଁ ଅଭିପ୍ରେତ । ଏକ ନୀତିପୂର୍ଣ୍ଣ ଜୀବନ ଯାପନ ଦ୍ୱାରା ବ୍ୟକ୍ତି ଈଶ୍ୱର ଉପଲବ୍ଧ କରିପାରିବ, ମୁକ୍ତି ପାଇବ ବା ସ୍ୱର୍ଗ ପ୍ରାପ୍ତ ହେବ । ଅନେକ ଧର୍ମରେ

ଜୀବନର ମହତ୍ତର ପ୍ରାପ୍ତି ପାଇଁ ନୈତିକ ଆଚରଣକୁ ଗୁରୁତ୍ୱ ଦିଆଯାଇଛି । ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତି ପରି ପାରଲୌକିକ ପ୍ରାପ୍ତି ଗୁଡ଼ିକ କେବଳ କଳ୍ପନାର ବିଷୟ ଓ ଏହା ସହିତ ନୈତିକତାର ସଂଯୋଗ ଦ୍ୱାରା ନୈତିକତାର ଭିତ୍ତି ସୁଦୃଢ଼ ହୋଇପାରିବ ନାହିଁ । ନୈତିକତାକୁ ଏକ ସାମାଜିକ କର୍ତ୍ତବ୍ୟ ବୋଲି ଗ୍ରହଣ କଲେ ଏହା ନୀତିପୂର୍ଣ୍ଣ ଜୀବନ ପାଇଁ ଅଭିନିବେଶ ଯୋଗାଇପାରିବ । 'ମୁଁ ମୋ ପ୍ରତି ଯେଉଁ ବ୍ୟବହାର ଆଶା କରେ ସେହି ପ୍ରକାରର ଆଚରଣ ଅନ୍ୟ ପ୍ରତି ଦେଖାଇବା ମୋର କର୍ତ୍ତବ୍ୟ' ଏହା ହିଁ ନୈତିକ ଜୀବନର ମୂଳ ଆଭିମୁଖ୍ୟ ଅଟେ । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ଏହାର ଅଭିବ୍ୟକ୍ତି ସମାଜରେ ଯେତେ ଅଧିକ ହେବ, ସମାଜରେ ଜୀବନର ଗୁଣାତ୍ମକ ମାନ ସେତେ ଉନ୍ନତ ହୋଇପାରିବ । ନୈତିକ ଆଚରଣ ବ୍ୟକ୍ତିକୁ ଶୃଙ୍ଖଳିତ କରିବା ସହ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ସାମାଜିକ ଅସ୍ମିତାକୁ ସ୍ୱୀକାର କରିଥାଏ । ତେବେ ଧାର୍ମିକ ବିଶ୍ୱାସ ପରିସରରେ ବ୍ୟକ୍ତିମର୍ଯ୍ୟାଦାର ପ୍ରଶ୍ନକୁ ପ୍ରାଧାନ୍ୟ ଦିଆଯାଏ ନାହିଁ । ସୁତରାଂ ଧର୍ମର ପରିସରରେ ନୈତିକ ପ୍ରସଙ୍ଗ ଆସିଥିଲେ ବି, ଧର୍ମ ଓ ନୈତିକତାର ପ୍ରତ୍ୟୟଗତ ପରିମଣ୍ଡଳ ପରସ୍ପରଠାରୁ ପୃଥକ୍ ଅଟେ ।

ଇତିହାସର ଯେଉଁ ସନ୍ଧିକ୍ଷଣରେ ଧର୍ମମାନଙ୍କର ବିକାଶ ହୋଇଥିଲା ତାହା ସେହି ଯୁଗର ବୌଦ୍ଧିକ ଓ ସାଂସ୍କୃତିକ ସ୍ଥିତିରେ ଯୁଗାନ୍ତକାରୀ ଥିଲା । ଶହ ଶହ ବର୍ଷ ଧରି କଳା, ସାହିତ୍ୟ, ସଂସ୍କୃତି, ସଂହତି ସୃଷ୍ଟି କରିବାରେ ଏହାର ଅବଦାନ ଅନସ୍ୱୀକାର୍ଯ୍ୟ । ପ୍ରାଗ୍‌ଧର୍ମୀୟ ସମାଜ ଧର୍ମୀୟ ସମାଜରେ ରୂପାନ୍ତରିତ ହେବା ପଶ୍ଚାତରେ ଏକ ସାଂସ୍କୃତିକ ଉତ୍ତରଣର ପରିବେଶ ଅସିଥିଲା । ତେବେ ସମାଜର ବିକାଶ ଏକ ନିରନ୍ତର ପ୍ରକ୍ରିୟା । ଧର୍ମୀୟ ସମାଜଠାରୁ ମାନବ ସଭ୍ୟତା ଆହୁରି ମହତ୍ତର ମୂଲ୍ୟବୋଧ ସ୍ତରକୁ ଉତ୍ତରିତ ହେବା ଆଜିର ଉପଲବ୍ଧି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ଏ ଯୁଗର ସାର୍ବଜନୀନ ଆଦର୍ଶ । ଏହି ଦୁଇ ଆଦର୍ଶ ସହ ପ୍ରାଚୀନ ଧର୍ମଧାରଣା ସମତାଳଯୁକ୍ତ ନୁହେଁ । ବରଂ ଧର୍ମନିରପେକ୍ଷତା ଏ ଯୁଗର ଏକ ସାର୍ବଜନୀନ ମୂଲ୍ୟବୋଧ ଯାହା ବିଜ୍ଞାନ, ମାନବବାଦ ଓ ଗଣତାନ୍ତ୍ରିକ ଚେତନା ସହ ସୁସଂହତ ।

(୧୯.୧୧.୨୦୧୪)



# ଧର୍ମଚେତନାରେ ଈଶ୍ୱର

ପ୍ରତ୍ୟେକ ଧର୍ମ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଏକ ସାଂସ୍କୃତିକ ପ୍ରବାହ ଭାବେ କୌଣସି କ୍ରାନ୍ତିକାରୀ ଚିନ୍ତାନାୟକଙ୍କର ବିଚାରରୁ ଉଦ୍‌ଭବ ହୋଇଥିଲା । ଯେଉଁ ଯୁଗରେ ଧର୍ମମାନଙ୍କର ଉଦ୍‌ଭବ ହୋଇଥିଲା, ତାହା ସେହି ଯୁଗର ଚିନ୍ତା ଚେତନାରେ ଯୁଗାନ୍ତକାରୀ ଥିଲା । ପ୍ରାଗ୍‌ଧର୍ମୀୟ ସମାଜରେ ବହୁ ଉଦ୍‌ଭଟ ବିଶ୍ୱାସ, ନାନା ଦେବ-ଦେବୀ ଆରାଧନା, ପଶୁ ବଳି, ନରବଳି ବ୍ୟାପକ ଭାବେ ରହିଥିଲା । ସେହି ପରିବେଶରେ ମହତ୍ତର ଜୀବନବୋଧର କେତେକ ବିଚାର କେତେକ ମନୀଷୀ ମାନଙ୍କର ଚିନ୍ତନ ନେଇ ବିକଶିତ ହୋଇଥିଲା । ଏହି ପ୍ରକ୍ରିୟାରେ ହିନ୍ଦୁଧର୍ମ, ବୌଦ୍ଧଧର୍ମ, ଜୈନଧର୍ମ, ଖ୍ରୀଷ୍ଟଧର୍ମ, ପାର୍ଶୀଧର୍ମ, ଇସଲାମ  ଇତ୍ୟାଦି ବିକଶିତ ହୋଇଥିଲା । ପ୍ରତ୍ୟେକ ଧର୍ମର ଐତିହାସିକ ଭିତ୍ତି, ଧର୍ମଗ୍ରନ୍ଥ, କେତେକ ତାତ୍ତ୍ୱିକ ବିଚାର, କର୍ମକାଣ୍ଡ, ନୀତିବୋଧ, ସଂପ୍ରଦାୟ ଇତ୍ୟାଦିକୁ ନେଇ ତାହାର ବୌଦ୍ଧିକ ଦିଗନ୍ତ ବିକଶିତ ହେବା ଦେଖାଯାଏ ।

ଧର୍ମମାନ ସୁଦୃଢ଼ ଭିତ୍ତି ନେବା ପୂର୍ବରୁ ବିଭିନ୍ନ ସଭ୍ୟତାରେ ନାନା ଦେବ-ଦେବୀ ପୂଜା ଜନିତ ବହୁ ଈଶ୍ୱରବାଦର ଭାବନା ରହିଥିଲା । ଗୋଟିଏ ସମୟରେ ପ୍ରାକୃତିକ ସତ୍ତାମାନଙ୍କୁ ଦେବତାର ଭୂମିକା ଦିଆଯାଇ ପୂଜା କରାଯାଉଥିଲା । ବିଶ୍ୱାସ କରାଯାଉଥିଲା ଯେ ଦେବୀ ଦେବତାମାନଙ୍କର ବ୍ୟକ୍ତି-ସତ୍ତା ରହିଛି । ପ୍ରତ୍ୟେକ ଗୋଷ୍ଠୀ ନିଜ ଗୋଷ୍ଠୀର ଆଦି ଦେବଙ୍କୁ କଳ୍ପନା କରି ତାହାଙ୍କୁ ନିଜର ଭକ୍ତି-ନୈବେଦ୍ୟ ଅର୍ପଣ କରୁଥିଲେ । ବହୁ ଦେବବାଦରୁ ଏକୈକାଧିଦେବବାଦ ଓ ପରେ ଏକେଶ୍ୱରବାଦ ଭାବନାର ବିକାଶ ବୌଦ୍ଧିକ ଚିନ୍ତନ ସ୍ତରରେ ଏକ ବଡ ଉତ୍ତରଣ ଥିଲା । ଧର୍ମମାନଙ୍କର ବିକାଶ ସହ ଏକେଶ୍ୱରବାଦର ଭାବନା ସୃଷ୍ଟି ହୋଇଥିଲା । ବୌଦ୍ଧଧର୍ମ ଓ ଜୈନଧର୍ମରେ ଈଶ୍ୱର ଭାବନାର ଅବତାରଣା ଦେଖିବାକୁ ମିଳେ ନାହିଁ । ଏହି ଦୁଇ ଧର୍ମକୁ ବାଦ୍ ଦେଲେ ଅନ୍ୟ ସମସ୍ତ ଧର୍ମ ଗୁଡ଼ିକରେ ଈଶ୍ୱର ଭାବନା ଏକ ପ୍ରମୁଖ  ସ୍ଥାନ ନେଇଥିବା ଦେଖାଯାଏ ।

ବିଭିନ୍ନ ଧର୍ମମାନଙ୍କର ଈଶ୍ୱର ଭାବନାକୁ ତୁଳନା କଲା ବେଳେ ଅନେକ ସାମଂଜସ୍ୟ ଦେଖିବାକୁ ମିଳେ । ଅବଶ୍ୟ ସ୍ଥଳ ବିଶେଷରେ କେତେକ ପାର୍ଥକ୍ୟ ମଧ

ପରିଲକ୍ଷିତ ହୁଏ । ଗୋଟିଏ ଧର୍ମର ବିଶ୍ୱାସ ଅନୁଯାୟୀ ଈଶ୍ୱର ତାଙ୍କର ଏକ ମାତ୍ର ପୁତ୍ରକୁ ପୃଥିବୀକୁ ପଠାଇ ମଣିଷ ସମାଜର ପରିତ୍ରାଣ ପାଇଁ ଉଦ୍ୟମ କରିଛନ୍ତି । ଅନ୍ୟ ଏକ ଧର୍ମର ବିଶ୍ୱାସ ଅନୁସାରେ ଈଶ୍ୱର ତାଙ୍କର ଏକ ଦୂତଙ୍କୁ ପଠାଇ ଆଧ୍ୟାତ୍ମିକ ଜୀବନର ବାର୍ତ୍ତା ମଣିଷ ସମାଜକୁ ଦେଇଛନ୍ତି । ଆଉ ଏକ ଧର୍ମର ବିଶ୍ୱାସ ହେଉଛି ଯେ ପୃଥିବୀରେ ଯେତେବେଳେ ହିଂସା, ଅନ୍ୟାୟ, ଅଧର୍ମ ବ୍ୟାପକ ହୋଇଯାଏ ସେତେବେଳେ ଈଶ୍ୱର ନିଜେ ଅବତାର ନେଇ ଦୁଷ୍ଟ ମାନଙ୍କର ନିବାରଣ କରି ନ୍ୟାୟ ପ୍ରତିଷ୍ଠା କରନ୍ତି । ଗୋଟିଏ ଧର୍ମ ଅବତାରବାଦରେ ବିଶ୍ୱାସ କଲା ବେଳେ ଅନ୍ୟ କେତେକ ଧର୍ମ ଅବତାରବାଦକୁ ପ୍ରତ୍ୟାଖ୍ୟାନ କରିଥାନ୍ତି । ଗୋଟିଏ ଧର୍ମରେ ତ୍ରିମୂର୍ତ୍ତିର ଭାବନା ରହିଛି । ଜଣେ ସୃଷ୍ଟିକର୍ତ୍ତା, ଜଣେ ପାଳନକର୍ତ୍ତା ଓ ଅନ୍ୟ ଜଣେ ସଂହାରକର୍ତ୍ତା ବା ସଂହର୍ତ୍ତା । ସୃଷ୍ଟିକର୍ତ୍ତା, ପାଳନକର୍ତ୍ତା ଓ ସଂହର୍ତ୍ତା ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ଅସ୍ତିତ୍ୱ ଓ ବ୍ୟକ୍ତିସତ୍ତା ରହିଛି । ଅନ୍ୟ ଈଶ୍ୱରବାଦୀ ଧର୍ମଗୁଡିକ ତ୍ରିମୂର୍ତ୍ତି ଭାବନାରେ ବିଶ୍ୱାସ କରନ୍ତି ନାହିଁ ବରଂ ଜଣେ ମାତ୍ର ଈଶ୍ୱର ହିଁ ସବୁ କଥା କରନ୍ତି ।

ସମସ୍ତ ଈଶ୍ୱରବାଦୀ ଧର୍ମମାନ ବିଶ୍ୱାସ କରନ୍ତି ଯେ ଈଶ୍ୱର ଏହି ଜଗତର ସ୍ରଷ୍ଟା । ତେବେ ଈଶ୍ୱର ଜଗତକୁ କେବେ ସୃଷ୍ଟି କଲେ, କିପରି ସୃଷ୍ଟି କଲେ ଓ ସୃଷ୍ଟି କରିସାରିବା ପରେ ଜଗତ ସହ ଈଶ୍ୱରଙ୍କର କ'ଣ ସମ୍ବନ୍ଧ ରହିଛି ଏହି ପ୍ରଶ୍ନମାନଙ୍କ ଉପରେ ସବୁ ଈଶ୍ୱରବାଦୀ ଧର୍ମ ଏକା ମତପୋଷଣ କରନ୍ତି ନାହିଁ । ଗୋଟିଏ ଧର୍ମର ମତାନୁସାରେ ଈଶ୍ୱର ସବୁ କିଛି ଶୂନ୍ୟରୁ ସୃଷ୍ଟି କରିଛନ୍ତି । ଈଶ୍ୱର ଏକ ନିର୍ଦ୍ଦିଷ୍ଟ ସମୟରେ ସବୁ କିଛି ଶୂନ୍ୟରୁ ସୃଷ୍ଟି କଲେ । ସୃଷ୍ଟି ପ୍ରକ୍ରିୟା ଛ' ଦିନ ଭିତରେ ଈଶ୍ୱର ସଂପନ୍ନ କଲେ । ଈଶ୍ୱର ଯାହା ଚାହିଁଲେ ତାହା ତତ୍‌କ୍ଷଣାତ ଶୂନ୍ୟରୁ ସୃଷ୍ଟି ହୋଇଗଲା । ଅନ୍ୟ ଏକ ଧର୍ମରେ ବିଶ୍ୱାସ କରାଯାଏ ଯେ ଈଶ୍ୱର ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ତାରା, ନଦୀ, ସମୁଦ୍ର, ବୃକ୍ଷଲତା, ପାହାଡ, ପର୍ବତ, କୀଟପତଙ୍ଗ, ପଶୁପକ୍ଷୀ, ମନୁଷ୍ୟ, ଗ୍ରହମଣ୍ଡଳ ସବୁକିଛି ସୃଷ୍ଟି କରିଛନ୍ତି । ଯାହା ଜଗତରେ ଅଛି ସବୁ ଈଶ୍ୱର-ସୃଷ୍ଟ । ତେବେ ଏହା କିପରି, କେଉଁ ପ୍ରଣାଳୀରେ ଓ କେବେ ସୃଷ୍ଟି ହେଲା ତାହା ରହସ୍ୟାବୃତ । ଅନ୍ୟ ଏକ ଧର୍ମର ବିଶ୍ୱାସାନୁଯାୟୀ ଈଶ୍ୱର ଶୂନ୍ୟରୁ ସୃଷ୍ଟି କରିନାହାନ୍ତି । ସେ ପ୍ରାକୃତିକ ଉପାଦାନରୁ ସବୁ ସୃଷ୍ଟି କରିଛନ୍ତି । ପ୍ରାକୃତିକ ଉପାଦାନ ପ୍ରଥମରୁ ରହିଛି । ଈଶ୍ୱର ଜଗତର ନିମିତ୍ତ କାରଣ, ଉପାଦାନ କାରଣ ନୁହନ୍ତି । ଏକ କଳସୀ ନିର୍ମାଣରେ କୁମ୍ଭକାର ହେଉଛି ନିମିତ୍ତ କାରଣ, କିନ୍ତୁ ମାଟି ହେଉଛି ଉପାଦାନ କାରଣ । ଅର୍ଥାତ୍ ଈଶ୍ୱର ଯେପରି ନିତ୍ୟ, ପ୍ରକୃତି ମଧ୍ୟ ସେହିପରି ନିତ୍ୟ । ଈଶ୍ୱର ଓ ପ୍ରକୃତି ସହ ନିତ୍ୟ । ଗୋଟିଏ ଧର୍ମଦର୍ଶନରେ ଜଗତକୁ ସତ୍ୟ ବୋଲି ସ୍ୱୀକାର କରାଯାଏ ନାହିଁ । ଏକମାତ୍ର ଈଶ୍ୱର ସତ୍ୟ, ପ୍ରକୃତି ବା ଜଗତ ମିଥ୍ୟା ଓ ଭ୍ରାନ୍ତି ପ୍ରସୂତ । ଅନ୍ୟ ଧର୍ମଦର୍ଶନର ବିଶ୍ୱାସ ଅନୁଯାୟୀ ଜଗତ ସତ୍ୟ । କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ପ୍ରକୃତି ଈଶ୍ୱରଙ୍କ

ପରି ସହ ନିତ୍ୟ ନୁହେଁ । ବରଂ ଏକ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଜଗତକୁ ଈଶ୍ୱର ସୃଷ୍ଟି କରିଛନ୍ତି, ଅର୍ଥାତ୍ ଜଗତର ଜନ୍ମ-ଲଗ୍ନ ରହିଛି । ଜଗତରେ ଯାହା କିଛି ହେଉଛି ସେ ସବୁ ଈଶ୍ୱରଙ୍କର ନିର୍ଦ୍ଦେଶରେ ହେଉଛି । ଈଶ୍ୱର ଚାହିଁଲେ ଜଗତକୁ ଧ୍ୱଂସ କରିଦେଇ ପାରିବେ ।

ଅଧିକାଂଶ ଧର୍ମରେ ବିଶ୍ୱାସ ରହିଛି ଯେ ଈଶ୍ୱର ଜଗତର ସ୍ରଷ୍ଟା ଓ ଆଦିକରଣ । ସେହିପରି ଧର୍ମମାନଙ୍କର ବିଶ୍ୱାସ ହେଉଛି ଈଶ୍ୱରଙ୍କର ବ୍ୟକ୍ତିସତ୍ତା ରହିଛି । ପ୍ରତ୍ୟେକ ବ୍ୟକ୍ତିର ଯେପରି ବ୍ୟକ୍ତି ସତ୍ତା ରହିଛି, ଈଶ୍ୱରଙ୍କର ମଧ୍ୟ ବ୍ୟକ୍ତି ସତ୍ତା ରହିଛି । କେତେକ ଧର୍ମର ବିଶ୍ୱାସାନୁଯାୟୀ ଈଶ୍ୱରଙ୍କର ବ୍ୟକ୍ତିସତ୍ତା ନାହିଁ, ସେ ଜଣେ ବ୍ୟକ୍ତି ନୁହନ୍ତି ସେ ଅବ୍ୟକ୍ତିକ । ତେବେ ଧର୍ମମାନଙ୍କର ମତରେ ଈଶ୍ୱରଙ୍କର ବ୍ୟକ୍ତିସତ୍ତା ଥାଉ ବା ସେ ଅବ୍ୟକ୍ତିକ ହୁଅନ୍ତୁ ସେ କିନ୍ତୁ ସର୍ବଜ୍ଞ ଓ ସର୍ବଶକ୍ତିମାନ । କେତେକ ଧର୍ମର ବିଶ୍ୱାସ ଅନୁସାରେ ଈଶ୍ୱର ସର୍ବବିଦ୍ୟମାନ, ଅନ୍ୟ ଧର୍ମର ବିଶ୍ୱାସ ଅନୁଯାୟୀ ଈଶ୍ୱର କେବଳ ସ୍ୱର୍ଗରେ ରହନ୍ତି । କେତେକ ଧର୍ମରେ ସ୍ୱର୍ଗ-ନରକର ଭାବନା ରହିଛି । ଧର୍ମମାନଙ୍କରେ ବିଶ୍ୱାସ ରହିଛି ଯେ ଈଶ୍ୱର ପ୍ରେମମୟ ଓ କରୁଣାମୟ । ଈଶ୍ୱର କରୁଣାମୟ ହୋଇଥିବାରୁ ସେ ସମସ୍ତଙ୍କୁ ପ୍ରେମ କରନ୍ତି । ଏଠାରେ ପ୍ରେମ କରିବାର ତାତ୍ପର୍ଯ୍ୟ ହେଲା ଯେ ଈଶ୍ୱର ସମସ୍ତଙ୍କର ମଙ୍ଗଳକାରୀ, ସେ ସମସ୍ତଙ୍କର ମଙ୍ଗଳକାରୀ ହୋଇଥିବାରୁ ସେ ପ୍ରେମମୟ । ଯେଉଁମାନେ ଈଶ୍ୱରଙ୍କୁ ପ୍ରେମମୟ, ମଙ୍ଗଳକାରୀ, କରୁଣାମୟ ବୋଲି ଭାବନ୍ତି ସେମାନେ ଈଶ୍ୱରଙ୍କର ବ୍ୟକ୍ତିସତ୍ତାରେ ବିଶ୍ୱାସ କରନ୍ତି । ଅନ୍ୟ ଭାବନାରେ ଈଶ୍ୱରଙ୍କର ବର୍ଣ୍ଣନା ଦେଇ ହେବ ନାହିଁ । ଈଶ୍ୱରଙ୍କର ବ୍ୟକ୍ତିସତ୍ତା ନାହିଁ, ସେ ଅବ୍ୟକ୍ତ ଓ ଅନିର୍ବଚନୀୟ । ଈଶ୍ୱରଙ୍କୁ ଆଧାର କରି ଧର୍ମୀୟ ପରଂପରାରେ ନାନା ବିଶ୍ୱାସ ଓ ଭାବନା ସୃଷ୍ଟି ହୋଇଥିବା ଦେଖାଯାଏ ।

ଯେଉଁ ଯୁଗରେ ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ଧର୍ମ, ଈଶ୍ୱର ଭାବନା ଦୃଢ଼ ଭିତ୍ତି ନେଇଥିଲା, ସେହି ସମୟରୁ ଦାର୍ଶନିକ ଚିନ୍ତନର ବି ଉତ୍ପତ୍ତି ହୋଇଥିଲା । ଦର୍ଶନ ଏକ ବୌଦ୍ଧିକ ଜିଜ୍ଞାସା, ତେବେ ଏହାର ପରିସର ଓ ବିଷୟବସ୍ତୁ ସମୟକୁ ସମୟ ବଦଳି ଚାଲିଛି । ଯେଉଁ ଯୁଗରେ ଯେଉଁ ପ୍ରକାରର ବିଚାରରାଜି ଚିନ୍ତାରାଜ୍ୟରେ ପ୍ରମୁଖ ସ୍ଥାନ ନେଇଛି, ସେହି ସମୟର ଦାର୍ଶନିକ ବିଚାରବୋଧ ସେହି ଅନୁସାରେ ରୂପରେଖ ନେଇଛି । ସମାଜର ପ୍ରଚଳିତ ଭାବନା, ଜଗଦ୍‌ଦୃଷ୍ଟି, ଜୀବନବୋଧକୁ ଏକ ତର୍କଶୀଳ ଭିତ୍ତି ଦେବାକୁ ଦର୍ଶନରେ ପ୍ରୟାସ ହୋଇଛି । ଆଧୁନିକ ଯୁଗ ବା ବିଜ୍ଞାନର ବିକାଶ ପୂର୍ବରୁ ସବୁ ସ୍ତରରେ ଧର୍ମର ଅଖଣ୍ଡ ପ୍ରଭାବ ରହିଥିଲା । ଧର୍ମ-ବିଶ୍ୱାସ ଗୁଡ଼ିକ ଯେ ଅଭ୍ରାନ୍ତ ଓ ଧ୍ରୁବ ସତ୍ୟ ଏହି ଭାବନା ସବୁ ଧର୍ମଗୋଷ୍ଠୀରେ ରହିଥିଲା । ପ୍ରତ୍ୟେକ ଧର୍ମ ନିଜ ଧର୍ମଗ୍ରନ୍ଥର ବାଣୀକୁ ଅଭ୍ରାନ୍ତ ଓ ଚିରନ୍ତନ ବୋଲି ମନେ କରୁଥିଲା । ଯେହେତୁ ଧର୍ମ-ଧର୍ମ ଭିତରେ ଆଦାନ ପ୍ରଦାନ ନ ଥିଲା ବା ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନ ହୋଇନଥିଲା, ସେ ଦୃଷ୍ଟିରୁ ପ୍ରତ୍ୟେକ

ଧର୍ମଗୋଷ୍ଠୀ ନିଜର ବିଶ୍ୱାସ ଓ ଧର୍ମଗ୍ରନ୍ଥର ବାଣୀକୁ ଈଶ୍ୱରଦତ୍ତ ଆପ୍ତବଚନ ବୋଲି ମନେ କରୁଥିଲା । ସେହି ଅନୁଯାୟୀ ସେହି ସମୟର ଦାର୍ଶନିକ ବିଚାର ଧର୍ମପ୍ରେରିତ ହୋଇ ରହିଥିଲା । ଧର୍ମର ବିଶ୍ୱାସମାନଙ୍କୁ ଏକ ତର୍କସମ୍ମତ ଆଧାର ଦେବାକୁ ଦର୍ଶନ ପରିସରରେ ପ୍ରୟାସ ହୋଇଥିଲା ।

ଯେହେତୁ ଧର୍ମ ଧାରଣାରେ ଈଶ୍ୱର ଏକ ମୁଖ୍ୟ ପ୍ରସଙ୍ଗ ଥିଲା, ତେଣୁ ଈଶ୍ୱରଙ୍କ ଅସ୍ତିତ୍ୱକୁ ଯୁକ୍ତିସଂଗତ ଭାବେ ପ୍ରତିଷ୍ଠା କରିବାକୁ ଦର୍ଶନଶାସ୍ତ୍ରରେ ପ୍ରୟାସ ହୋଇଥିଲା । ଏହି ପ୍ରୟାସ ମଧ୍ୟରୁ କେତେକ ସୁନ୍ଦର ଯୁକ୍ତିର ଉଦ୍‌ଭବ ହେଲା । ସେହି ଯୁଗରେ ଏହି ଯୁକ୍ତି ଗୁଡିକ ଏତେ ଭାବଗର୍ଭକ ଓ ଆକର୍ଷଣୀୟ ମନେ ହେଉଥିଲା ଯେ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱତଃସିଦ୍ଧ ବୋଲି ମନେ କରାଯାଉଥିଲା । ଗୋଟିଏ ଯୁକ୍ତିରେ କୁହାଗଲା ଯେ ପ୍ରତ୍ୟେକ କାର୍ଯ୍ୟର ଏକ କାରଣ ରହିଛି । ସେହି ସାଦୃଶ୍ୟରେ ଏ ବିଶ୍ୱର ନିଶ୍ଚୟ କିଛି କାରଣ ଥିବ । ସୁତରାଂ ଈଶ୍ୱର ସମଗ୍ର ବିଶ୍ୱର ଆଦିକାରଣ ବା ମୂଳକାରଣ ଓ ଈଶ୍ୱର କାରଣରହିତ । ଅନ୍ୟ ଏକ ଯୁକ୍ତିରେ କୁହାଗଲା ଯେ ସମଗ୍ର ପ୍ରକୃତିରେ ଶୃଂଖଳା ଓ ଏକରୂପତା ବିଦ୍ୟମାନ । ଗୋଟିଏ ଗୃହର ସାଜସଜା ପଶ୍ଚାତରେ କାହାର ହାତ ନିଶ୍ଚୟ ରହିଛି, ଗୋଟିଏ ଉଦ୍ୟାନ ସୁସଜ୍ଜିତ ହେବାରେ କୌଣସି କର୍ତ୍ତାର ପ୍ରୟାସ ରହିଛି, ସେହିପରି ଏ ବିଶାଳ ବିଶ୍ୱ ଶୃଂଖଳିତ ହୋଇ ରହିବା ପଶ୍ଚାତରେ ଜଣେ ଅଦ୍ୱିତୀୟ ଶିଳ୍ପୀର କରାମତି ରହିଛି । ସେହି ଅଦ୍ୱିତୀୟ ନିୟମ ସଂସ୍ଥାପକ ହେଲେ ଈଶ୍ୱର । ଏକ ଭିନ୍ନ ଯୁକ୍ତିରେ ବିଚାର ଆସିଲା ଯେ ସମାଜରେ ଭଲ ଲୋକ ଅଛନ୍ତି, ମନ୍ଦ ଲୋକ ବି ଅଛନ୍ତି । ଯେଉଁମାନେ ଭଲ କାର୍ଯ୍ୟ କରୁଛନ୍ତି ସେମାନେ ପୁରସ୍କୃତ ହେବା ଦରକାର ଓ ଯେଉଁ ବ୍ୟକ୍ତିମାନେ ମନ୍ଦ କାର୍ଯ୍ୟରେ ଲିପ୍ତ ସେମାନେ ଦଣ୍ଡ ପାଇବା ଉଚିତ । ସମାଜରେ ନୀତି ଓ ମହତ୍‌ଭାବର ସଂସ୍ଥାପନା ପାଇଁ ଈଶ୍ୱରଙ୍କର ଅସ୍ତିତ୍ୱ ଅପରିହାର୍ଯ୍ୟ । ବିନା ଈଶ୍ୱରରେ ଜଗତରେ ନୈତିକ ଶୃଂଖଳା ଓ ଭାରସାମ୍ୟତା ରହିପାରିବ ନାହିଁ । ଏହିପରି ନାନା ଯୁକ୍ତିର ଅବତାରଣା କରାଯାଇ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣ କରିବାକୁ ଦର୍ଶନଶାସ୍ତ୍ରରେ ପ୍ରୟାସ କରାଯାଇଛି । ତେବେ ମଣିଷର ବିଚାରଶୀଳତାର ଅଗ୍ରଗତି ସହ ଏହି ଯୁକ୍ତି ଗୁଡିକ ଯେ ଅସାର ଓ ଅବୈଧ ଏହା କାଳକ୍ରମେ ବିଚାର ପରିସରକୁ ଆସିଛି । ଧୀରେ ଧୀରେ ଦର୍ଶନରେ ଏହା ଗୃହୀତ ହୋଇଛି ଯେ ଈଶ୍ୱରଙ୍କ ଅସ୍ତିତ୍ୱ ଯୁକ୍ତିଶୀଳ ଆଧାରରେ ପ୍ରମାଣ କରିହେବ ନାହିଁ । ଈଶ୍ୱର ଯୁକ୍ତିରହିତ । ଈଶ୍ୱର କେବଳ ଏକ ବିଶ୍ୱାସ ଓ ଧର୍ମର ପରିସରରେ ଏକ ବଳିଷ୍ଠ ଭାବନା ।

(୧୦.୧୨.୧୪)



# ଧର୍ମ, ଈଶ୍ୱର ଓ ଦର୍ଶନ

ପ୍ରତ୍ୟେକ ଧର୍ମର ଐତିହାସିକ ବିକାଶ ପଶ୍ଚାତରେ କେତେକ ତାତ୍ତ୍ୱିକ ଭାବନା, କର୍ମକାଣ୍ଡ, ନୀତିବୋଧ, ନାନା କାହାଣୀ, କିମ୍ବଦନ୍ତୀ, ଜନଶ୍ରୁତି ଇତ୍ୟାଦି ରହିବା ଦେଖାଯାଏ । ଧର୍ମମାନଙ୍କର ତାତ୍ତ୍ୱିକ ବିଚାର ପରିପ୍ରେକ୍ଷୀରେ ଜୀବନର ଅନ୍ତିମ ଲକ୍ଷ୍ୟ, ଆତ୍ମାର ସ୍ୱରୂପ, ପାରଲୌକିକ ବିଶ୍ୱାସ, ଈଶ୍ୱରୀୟ ବିଧାନ ଇତ୍ୟାଦି ମୁଖ୍ୟ ପ୍ରସଙ୍ଗ ମନେହୁଏ । ସମସ୍ତ ଈଶ୍ୱରବାଦୀ ଧର୍ମମାନଙ୍କରେ ଈଶ୍ୱର ବିଶ୍ୱାସ ଏକ ମୌଳିକ ପ୍ରଶ୍ନ । ଯେଉଁ ଯୁଗରେ ଧର୍ମମାନଙ୍କର ଉଦ୍‌ଭବ ହୋଇଥିଲା ସେହି ଯୁଗରେ ଜଗତ ଓ ଜୀବନ ନେଇ ମନୁଷ୍ୟର ବୌଦ୍ଧିକ ଅବବୋଧ ଅତି ସୀମିତ ଥିଲା । ତେବେ ଧର୍ମ ମଧ୍ୟ ଦେଇ ସମାଜର ଗୋଟିଏ ବଡ଼ ସାଂସ୍କୃତିକ ଉତ୍ତରଣ ଘଟିଥିଲା । ସାମାଜିକ ସଂହତି, ରାଜତନ୍ତ୍ର ଜନିତ ଏକ ଶାସନ ବ୍ୟବସ୍ଥା, ନୀତି ନୈତିକତା ନେଇ କେତେକ ମାନବିକ ବିଚାର, ଈଶ୍ୱରୀୟ ଅବବୋଧ ମାଧ୍ୟମରେ ପ୍ରାକୃତିକ ଘଟଣାକୁ ବୁଝିବାର ସାମର୍ଥ୍ୟ ଧର୍ମଚେତନା ଭିତରୁ ଉଦ୍‌ଭବ ହୋଇଥିଲା । ଏସବୁ ସହିତ ନାନା ଅହେତୁକ ଓ କାଳ୍ପନିକ ବିଶ୍ୱାସ ସଂଶ୍ଳିଷ୍ଟ ହୋଇଥିଲେ ମଧ୍ୟ ସେ ସମୟର ବୌଦ୍ଧିକ ଦୃଶ୍ୟପଟରେ ଏସବୁ ବେଶ୍ ଭାବଗର୍ଭକ ଥିଲା । ଧର୍ମଚେତନା ଧୀରେ ଧୀରେ ଦୃଢ଼ ଭିତ୍ତି ନେବା ସହ ସାମାଜିକ ସଂହତି ସ୍ଥାପନରେ ଏକ ପ୍ରମୁଖ ଭୂମିକା ନେଇଥିଲା । ବିଭିନ୍ନ ଭୂଖଣ୍ଡରେ ଗଢ଼ି ଉଠିଥିବା ନାନା ସଭ୍ୟତାରେ ଧର୍ମଚେତନା ଏକ ସାଂସ୍କୃତିକ ପ୍ରବାହ ଭାବେ ଜନଜୀବନକୁ ଗଭୀର ଭାବେ ପ୍ରଭାବିତ କରିଥିଲା ।

ଭାରତ ଭୂଖଣ୍ଡରେ ସୃଷ୍ଟି ହୋଇଥିବା ଦୁଇଟି ଧର୍ମକୁ ଛାଡିଦେଲେ ସବୁ ଧର୍ମରେ 'ଈଶ୍ୱର' ଏକ ମୌଳିକ ଭାବନା ଓ ପ୍ରତୀତି ଭାବେ ଆଲୋଚିତ ହୋଇଥିବା ଦେଖାଯାଏ । ବହୁ ଈଶ୍ୱରବାଦ ଭାବନାରୁ ଏକେଶ୍ୱରବାଦର ଭାବନା ଧର୍ମମାନଙ୍କର ଏକ ମୌଳିକ ନିର୍ଯ୍ୟାସ ଭାବେ ଚିନ୍ତାରାଜ୍ୟରେ ଆଲୋଡନ ଆଣିଥିଲା । ଈଶ୍ୱର ଏକ ଚେତନସତ୍ତା, ସବୁ କିଛିର ଆଦିକାରଣ, ଏହି ବିଶ୍ୱର ସ୍ରଷ୍ଟା, ସକଳ ପ୍ରକୃତିର ନିୟନ୍ତକ, ପାପ-ପୁଣ୍ୟର

ବିଚାରକ, ସର୍ବଜ୍ଞ ଓ ସର୍ବଶକ୍ତିମାନ ଭାବନାମାନ ଈଶ୍ୱର ପ୍ରତୀତି ସହ ସଂଶ୍ଳିଷ୍ଟ କରାଗଲା । ଈଶ୍ୱରୀୟ ବିଶ୍ୱାସ ଆଧାରରେ ପ୍ରାକୃତିକ ଘଟଣା ପ୍ରବାହ ଓ ଜୀବନର ଘନଘଟାକୁ ଅବବୋଧ କରିବା ମନୁଷ୍ୟ ପାଇଁ ବେଶ୍ ସହଜସାଧ ଥିଲା । ଈଶ୍ୱରଙ୍କ ସ୍ୱରୂପ ନେଇ ମଣିଷର ଚନ୍ତା, କଳ୍ପନା ଓ ସୃଜନ ସାମର୍ଥ୍ୟ ନାନା ଦିଗରେ ବିସ୍ତାରିତ ହୋଇ ଚାଲିଲା ।

ଜଗତ ସହିତ ଈଶ୍ୱରଙ୍କର ସମ୍ବନ୍ଧକୁ ନାନା ଭାବରେ କଳ୍ପନା କରାଗଲା । କେତେକ ଈଶ୍ୱରଙ୍କୁ ଜଗତ ସହିତ ଅଭିନ୍ନ କଲେ । ଆମ ସଂସାରରେ ଯାହା କିଛି ଅଛି ସବୁଥିରେ ଈଶ୍ୱରଙ୍କ ସ୍ୱରୂପ ପ୍ରତିଫଳିତ । ଜଗତ ଓ ଈଶ୍ୱର ଅଭିନ୍ନ ବୋଲି ବିଚାରରୁ ସର୍ବେଶ୍ୱରବାଦର ପରିକଳ୍ପନା ସୃଷ୍ଟି ହେଲା । ଅନ୍ୟ କେତେକ କଳ୍ପନା କଲେ ଯେ ଈଶ୍ୱର ଜଗତକୁ  ସୃଷ୍ଟି କରିଛନ୍ତି, ତେବେ ଏତେ ନିଖୁଣ ଭାବରେ ଏହା କରିଛନ୍ତି ଯେ ଜଗତର ସୃଷ୍ଟିପରେ ଈଶ୍ୱର ଏଥିରେ ହସ୍ତକ୍ଷେପ କରନ୍ତି ନାହିଁ । ଈଶ୍ୱର ଜଗତର ଉର୍ଦ୍ଧ୍ୱରେ ଅବସ୍ଥାନ କରନ୍ତି ଓ ଜଗତ ସହ ତାଙ୍କର ସମ୍ବନ୍ଧ ହିଁ ନାହିଁ । ଏହି ମତରେ ଈଶ୍ୱର ବିଶ୍ୱାତୀତ ଏବଂ ଅନୁଭବାତୀତ । ପୁନଶ୍ଚ ଅନ୍ୟ କଳ୍ପନାରେ ଈଶ୍ୱର ଜଗତର ଅନ୍ତର୍ବର୍ତ୍ତୀ ଏବଂ ବହିର୍ବର୍ତ୍ତୀ । କିଏ ଈଶ୍ୱରଙ୍କୁ ଜଗତର ଅନ୍ତର୍ବର୍ତ୍ତୀ ଭାବିଛନ୍ତି, କିଏ ବହିର୍ବର୍ତ୍ତୀ ଭାବିଛନ୍ତି, ଅନ୍ୟ କେହି ଉଭୟକୁ ମିଶାଇ ଅନ୍ତର୍ବର୍ତ୍ତୀ ଓ ବହିର୍ବର୍ତ୍ତୀ ଭାବିଛନ୍ତି ।

ଈଶ୍ୱରଙ୍କୁ କେହି ସଗୁଣ ମନେ କରି ତାଙ୍କ ପ୍ରତି ସବୁ ମହତ୍ ଗୁଣ ଆରୋପ କରିଛନ୍ତି । ସେ ସର୍ବଜ୍ଞ, ସର୍ବଶକ୍ତିମାନ, ଦୟାମୟ, କରୁଣାକର ବୋଲି ତାଙ୍କର ବର୍ଣ୍ଣନା ଦିଆଯାଇଛି । ତାଙ୍କୁ ମାନବତା ବି ଆରୋପ କରାଯାଇ ପରିକଳ୍ପନା କରାଯାଇଛି । ସେ ଜଣେ ବ୍ୟକ୍ତି, ତାଙ୍କର ବ୍ୟକ୍ତି ସତ୍ତା ରହିଛି; ତେବେ ମଣିଷ ଅଳ୍ପଜ୍ଞ, ଈଶ୍ୱର ସର୍ବଜ୍ଞ । ଅନ୍ୟ ଭାବନାନୁଯାୟୀ ଈଶ୍ୱରଙ୍କର ବ୍ୟକ୍ତି ସତ୍ତା ନାହିଁ । ତାଙ୍କ ରୂପର କଳ୍ପନା କରାଯାଇ ପାରିବ ନାହିଁ । ସେ ସ୍ଥାନାତୀତ, କାଳାତୀତ, ଅରୂପ ଓ ନିର୍ଗୁଣ । ତାଙ୍କର ରୂପ, ଗୁଣର ବର୍ଣ୍ଣନା କରିବା ସମ୍ଭବ ନୁହେଁ । ସେ ଶାଶ୍ୱତ ଓ ସନାତନ । ଈଶ୍ୱରଙ୍କୁ ଭାଷାରେ ବ୍ୟକ୍ତ କରିହେବ ନାହିଁ, ସେ ଅନିର୍ବଚନୀୟ ।

ଈଶ୍ୱରଙ୍କ ସ୍ୱରୂପ ଓ ଗୁଣ ବର୍ଣ୍ଣନା କରିବାରେ ଏହିପରି ବହୁବିଧ କଳ୍ପନା ଜନିତ ଅଭିବ୍ୟକ୍ତି ଦୃଷ୍ଟିଗୋଚର ହୁଏ । ଈଶ୍ୱରଭିତ୍ତିକ ଧର୍ମମାନ ଈଶ୍ୱରଙ୍କ ଶକ୍ତି, ବିଭୂତି ଓ ପ୍ରକୃତି ବର୍ଣ୍ଣନା କରିବାରେ ଶତମୁଖ ହେବା ଦେଖାଯାଏ । ଈଶ୍ୱରଙ୍କୁ ଆଧାର କରି ବହୁ ପୁରାଣ, ଶାସ୍ତ୍ର ଅତୀତରେ ବିଭିନ୍ନ ଭାଷାରେ ରଚିତ ହୋଇଥିବା ଦୃଷ୍ଟିଗୋଚର ହୁଏ । ପ୍ରାଚୀନ ଯୁଗର ସାହିତ୍ୟରେ ଈଶ୍ୱରଙ୍କୁ କେନ୍ଦ୍ର କରି ନାନା କାହାଣୀ, କିମ୍ବଦନ୍ତୀ ସହ କେତେ

କେତେ ପୂଜା, ଆରାଧନା, ପ୍ରାର୍ଥନାର ସାହିତ୍ୟ ପ୍ରାଚୀନ ସାହିତ୍ୟରେ ଉପଲବ୍ଧ ହେବା ସାଧାରଣ ଅନୁଭବ ଅଟେ । ମୋଟ ଉପରେ ବିଜ୍ଞାନର ଯୁଗ ଆସିବା ପୂର୍ବରୁ ଧର୍ମ, ସାହିତ୍ୟ, କଳା, ସାମାଜିକ ବ୍ୟବସ୍ଥା ସବୁ ସ୍ତରରେ ଈଶ୍ୱର-ଭାବନା ପ୍ରାଧାନ୍ୟ ନେଇଥିବା ଦେଖାଯାଏ । ପ୍ରାକୃତିକ ପରିବେଶ ଓ ସାମାଜିକ ଘଟଣା ପ୍ରବାହକୁ ଐଶ୍ୱରୀୟ ମାନଦଣ୍ଡରେ ମଣିଷ ଅତୀତରେ ବୁଝିବାକୁ ପ୍ରଯତ୍ନ କରିଛି । ସବୁ କିଛିକୁ ଦିବ୍ୟ ବା ଈଶ୍ୱରୀୟ ଉଦ୍ଦେଶ୍ୟର ଅଭିବ୍ୟକ୍ତି ଭାବେ ମଣିଷ ଗ୍ରହଣ କରିବାଦ୍ୱାରା ଈଶ୍ୱର ବ୍ୟକ୍ତି ସ୍ତରରେ ହେଉ ବା ଗୋଷ୍ଠୀ ସ୍ତରରେ ହେଉ ଜୀବନ ପ୍ରବାହର ଅଭିନ୍ନ ଅଙ୍ଗ ହୋଇଯାଇଛନ୍ତି । ବ୍ୟକ୍ତିଗତ ଜୀବନର ସଫଳତା, ବିଫଳତା, ଉତ୍‌ଥାନ-ପତନ, ରୋଗ,ଅଶାନ୍ତି, ସମସ୍ୟା, ସଂଘାତ ସବୁ କିଛିକୁ ଈଶ୍ୱରୀୟ ଇଚ୍ଛା, ଭାଗ୍ୟ, କପାଳ ଲିଖନ ଇତ୍ୟାଦି ପରିଭାଷାରେ ମଣିଷ ବ୍ୟକ୍ତ କରିଛି । ଧର୍ମମାନଙ୍କରେ ଈଶ୍ୱର ଭାବନାକୁ ମୁଖ୍ୟ ଭାବେ ନେଇ ଜଗତ ଓ ଜୀବନ ସମ୍ବନ୍ଧୀୟ ସକଳ ଅବବୋଧ ଗଢ଼ି ଉଠିଛି । ଥରେ ଗୋଟିଏ ବିଶ୍ୱାସକୁ ସ୍ୱତଃସିଦ୍ଧ ଭାବେ ସ୍ୱୀକାର କରିନେବା ପରେ ଜୀବନର ସମସ୍ତ ଘଟଣା ପ୍ରବାହକୁ ତାହା ସହ ସଂଶ୍ଳିଷ୍ଟ କରିବାର ମନସ୍ତତ୍ତ୍ୱ ସୃଷ୍ଟି ହୋଇଯାଏ । ଏହାକୁ ଯଥାର୍ଥ ବୋଲି ପ୍ରତିପାଦନ କରିବାକୁ ନାନା ସାଦୃଶ୍ୟ ଯୁକ୍ତିର ଆଶ୍ରୟ ନିଆଯାଏ ଓ ବୁଦ୍ଧିକୁ ମଧ ପ୍ରୟୋଗ କରାଯାଏ । ମୋଟ ଉପରେ ଧର୍ମଭିତ୍ତିକ ଜଗଦ୍‌ଦୃଷ୍ଟିରେ ସକଳ ପ୍ରାକୃତିକ, ଐତିହାସିକ, ବ୍ୟକ୍ତିଗତ ଓ ସାମାଜିକ ଘଟଣା ପ୍ରବାହକୁ ଈଶ୍ୱରୀୟ ଉଦ୍ଦେଶ୍ୟ ଜରିଆରେ ବ୍ୟାଖ୍ୟା କରାଯାଏ । ଏ କ୍ଷେତ୍ରରେ କୌଣସି ବସ୍ତୁନିଷ୍ଠ ମାନଦଣ୍ଡ ନଥିବାରୁ ଭିନ୍ନ ଭିନ୍ନ ଧର୍ମ ପରଂପରାରେ ନାନାବିଧ ମତର ଅବତାରଣା ଦେଖିବାକୁ ମିଳେ । ନିଜର ଧର୍ମ ଓ ଧର୍ମଭିତ୍ତିକ ବିଶ୍ୱାସ ଭିତରେ ଆବଦ୍ଧ ହୋଇ ରହିଥିବା ପର୍ଯ୍ୟନ୍ତ ଜଣେ ଧର୍ମାନୁରାଗୀ ବ୍ୟକ୍ତି ନିଜ ଧର୍ମର ବିଶ୍ୱାସମାନଙ୍କୁ ଅଲଂଘ୍ୟ ଓ ପବିତ୍ର ବୋଲି ଗ୍ରହଣ କରିଥାଏ । ଧର୍ମ ମାନଙ୍କର ଭିନ୍ନତା ସମ୍ବନ୍ଧରେ ଅବଗତ ହେଲା ପରେ ଧର୍ମାନୁଗତ ବ୍ୟକ୍ତି ଧର୍ମୀୟ ବିଶ୍ୱାସମାନଙ୍କୁ କଳ୍ପନା ଭାବରେ ଗ୍ରହଣ ନକରି ସେସବୁକୁ ଏକ ଏକ ଜୀବନଦୃଷ୍ଟି ବୋଲି ଗ୍ରହଣ କରିବା ଦେଖାଯାଏ । ଆଧୁନିକ ଜ୍ଞାନବିଜ୍ଞାନ ପୃଷ୍ଠଭୂମିରେ ଧର୍ମୀୟ-ବିଶ୍ୱାସ ଗୁଡିକ ଅବାନ୍ତର ମନେ ହେଲେ ବି ନାନା ମନସ୍ତାତ୍ତ୍ୱିକ କାରଣ ଯୋଗୁ ଧର୍ମାନୁରାଗୀ ବ୍ୟକ୍ତି ଈଶ୍ୱରୀୟ ଦୈବୀ ଭାବନାରୁ ମୁକ୍ତ ହୋଇ ପାରେ ନାହିଁ । ବରଂ ସେ ସବୁକୁ କେତେ କେତେ ସ୍ୱନିର୍ମିତ କଳ୍ପନା ଭିତରେ ଗ୍ରହଣ କରିଥାଏ ।

ଧର୍ମ ସହିତ ସମାଜର ସାଂସ୍କୃତିକ ଭାବନାର ନିବିଡ ସମ୍ବନ୍ଧ ଯୋଗୁ ଧର୍ମ, ଈଶ୍ୱର ଓ ନୈତିକତା ଭିତରେ ଗମ୍ଭୀର ସମ୍ବନ୍ଧ ଥିବା ବିଶ୍ୱାସ କରାଯାଉଥିଲା । ଧର୍ମ ବିଶ୍ୱାସୀ ହେବା ଅର୍ଥ ଈଶ୍ୱର ବିଶ୍ୱାସୀ ହେବା ଓ ଈଶ୍ୱର ବିଶ୍ୱାସୀ ହେବା ଅର୍ଥ ନୀତିପୂର୍ଣ୍ଣ ଜୀବନ

ଯାପନ କରିବା, ଏକ ସାଧାରଣ ଧାରଣା ସମାଜରେ ରହିଥିଲା । ତେବେ ବାସ୍ତବ ଅନୁଭବରେ ଓ ଦାର୍ଶନିକ ବିଶ୍ଳେଷଣରେ ଧର୍ମ, ଈଶ୍ୱର ଓ ନୈତିକତାର ବୌଦ୍ଧିକ ପରିସର ପରସ୍ପରଠାରୁ ପୃଥକ୍ ଅଟେ । ପ୍ରତ୍ୟେକ ନୀତିପୂର୍ଣ୍ଣ କାର୍ଯ୍ୟ ପଶ୍ଚାତରେ ଈଶ୍ୱରୀୟ ଅଭିପ୍ରେରଣା ନଥାଏ ଓ ପ୍ରତ୍ୟେକ ଈଶ୍ୱର ବିଶ୍ୱାସୀ ବ୍ୟକ୍ତି ସର୍ବଦା ନୀତିପୂର୍ଣ୍ଣ କାର୍ଯ୍ୟ କରନ୍ତି ନାହିଁ । ସମାଜରେ ଅନେକ ଈଶ୍ୱର ବିଶ୍ୱାସୀ ବ୍ୟକ୍ତି ରହିଛନ୍ତି ଯେଉଁମାନେ ନାନା ଅନ୍ୟାୟ, ଅନୀତି, ଦୁର୍ନୀତି, ହିଂସା, ପ୍ରତିହିଂସାରେ ସଂପୃକ୍ତ ହେବା ଦେଖାଯାଏ । ସେହିପରି କେତେକ ଧର୍ମବିଶ୍ୱାସୀ ବ୍ୟକ୍ତି କଟ୍ଟରପନ୍ଥୀ ହେବା, ସାଂପ୍ରଦାୟିକତାରେ ବିଶ୍ୱାସ କରିବା, ନିଜ ଈଶ୍ୱରଙ୍କ ପୂଜାସ୍ଥଳୀ ପାଇଁ ଅନ୍ୟ ପୂଜାସ୍ଥଳୀକୁ ଭାଙ୍ଗିବା, ଧର୍ମର ଈଶ୍ୱରମାନଙ୍କ ଭିତରେ ପ୍ରାଚୀର ସୃଷ୍ଟି କରିବା ମଧ୍ୟ ସମ୍ଭବ । ଏପରି କେତେକ ଧର୍ମ ଅଛି ଯେଉଁଥିରେ ଈଶ୍ୱର ଭାବନା ମଧ୍ୟ ନାହିଁ । ନୀତି ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ଏହା ସହିତ ଜଣଙ୍କର ଧର୍ମ, ଈଶ୍ୱର ବିଶ୍ୱାସର ସମ୍ବନ୍ଧ ତର୍କସମ୍ମତ ନୁହେଁ । ହୁଏତ ସ୍ଥଳ ବିଶେଷରେ ଏହି ଭାବନା ଗୁଡିକ ଭିତରେ କେତେକ ମନସ୍ତାତ୍ତ୍ୱିକ ସମ୍ବନ୍ଧ ରହିବା ଦେଖାଯାଏ । ସୁତରାଂ ଧର୍ମ, ଈଶ୍ୱର ଓ ନୈତିକତାର ବୌଦ୍ଧିକ ପରିସର ପରସ୍ପରଠାରୁ ଭିନ୍ନ, ଯଦିବା ବହୁ ଅତୀତରୁ ଗୋଟିଏ ପ୍ରସଙ୍ଗ ଉପରେ ଆଲୋଚନା ବେଳେ ଅନ୍ୟ ବିଷୟମାନ ସ୍ୱତଃ ଆଲୋଚନା ସ୍ତରକୁ ଆସିଥାଏ ।

ଆଧୁନିକ ଦର୍ଶନର ବିକାଶ ପର୍ଯ୍ୟନ୍ତ ଦର୍ଶନ ପରିସରରେ ଧର୍ମ, ଈଶ୍ୱର ଓ ପାରଲୌକିକ ବିଶ୍ୱାସମାନ ଏକ ପ୍ରମୁଖ ସ୍ଥାନ ନେଇଥିଲା । ଧର୍ମର ତାତ୍ତ୍ୱିକ ଭାବନାମାନଙ୍କୁ ତର୍କଶୀଳ ଆଧାରରେ ଯେ ପ୍ରମାଣ କରିବା ସମ୍ଭବ ଏହା ସାଧାରଣ ଭାବନା ରହିଥିଲା । ଦର୍ଶନ ଶାସ୍ତ୍ରରେ ବି ଏଥି ପାଇଁ ନାନା ଯୁକ୍ତିର ଅବତାରଣା କରାଯାଇଥିଲା । ତେବେ ଦର୍ଶନ ପରିସରରେ ଗମ୍ଭୀର ଚିନ୍ତନର ପରିଣାମ ସ୍ୱରୂପ ପ୍ରଦତ୍ତ ପ୍ରମାଣ ଗୁଡିକ ଯେ ତ୍ରୁଟିପୂର୍ଣ୍ଣ, ଅସାର ଓ ଅବୈଧ ଏହା ଜଣାପଡିଲା । ପରିଣାମତଃ ଯେତେବେଳେ ଏହା ବିଚାର ସ୍ତରରେ ଗୃହୀତ ହେଲା ଯେ କୌଣସି ବସ୍ତୁନିଷ୍ଠ ଭିତ୍ତି ବା ତଥ୍ୟ ଅଭାବରେ ଅତୀନ୍ଦ୍ରିୟ ସତ୍ତା ବିଷୟରେ ନିର୍ଭରଯୋଗ୍ୟ ଭାବେ କହିବା ସମ୍ଭବ ନୁହେଁ, ସେତେବେଳେ ଈଶ୍ୱର ଆଉ ପ୍ରମାଣର ପରିସରରେ ରହିଲେ ନାହିଁ । ବରଂ କୁହାଗଲା ଈଶ୍ୱର ଅନୁଭବର ବସ୍ତୁ, ତର୍କର ବିଷୟ ନୁହନ୍ତି । ବ୍ୟକ୍ତିର ଅନୁଭବ ଏକ ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ପରିଣାମ । କାହାର ବ୍ୟକ୍ତିନିଷ୍ଠ ଅନୁଭବକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଜଣଙ୍କର ମନ ଯେଉଁ ଆବେଗ, କଳ୍ପନା, ଅବବୋଧ ଇତ୍ୟାଦି ଦ୍ୱାରା ଯେପରି ସର୍ତ୍ତବଦ୍ଧ ହୋଇଥାଏ ଜଣଙ୍କର ବ୍ୟକ୍ତିନିଷ୍ଠ ଅନୁଭବ ସେହି ଆଧାରରେ ରୂପ ନେଇଥାଏ । ତେବେ ଏକ ବ୍ୟକ୍ତିନିଷ୍ଠ ଅନୁଭବରୁ ଏକ

ସିଦ୍ଧାନ୍ତରେ ଉପନୀତ ହେବା ସତ୍ୟ ନ ହୋଇପାରେ । ଈଶ୍ୱର, ଅତୀନ୍ଦ୍ରିୟ ସତ୍ତା, ପାରଲୌକିକ ଶକ୍ତି ଇତ୍ୟାଦି ଭାବନା ମାନ ବିଶ୍ୱାସ ସ୍ତରର ପ୍ରସଙ୍ଗ । କେତେକ ବିଶ୍ୱାସର ସ୍ଥଳ ବିଶେଷରେ ଉପଯୋଗିତା ଥାଇପାରେ, ତେବେ ସେହି ଆଧାରରେ ତାହା ସତ୍ୟ ହୋଇ ନପାରେ । ଧର୍ମର ଅନେକ ତାତ୍ତ୍ୱିକ ଭାବନା ମଣିଷ ମନର କଳ୍ପନା ଓ ବିଶ୍ୱାସ ମାତ୍ର । ସେହି ପୃଷ୍ଠଭୂମିରେ ଈଶ୍ୱର ମଧ୍ୟ ମଣିଷ ମନର ଏକ ଗମ୍ଭୀର ଭାବନା । ଏହି କ୍ଷେତ୍ରରେ ଜଣେ ମୁକ୍ତ ଚିନ୍ତକ ଦୁଇଟି ପ୍ରଶ୍ନର ଅବତାରଣା କରିଥାନ୍ତି । ଆମର ଜ୍ଞାନ ଉପାର୍ଜନ କ୍ଷେତ୍ରରେ ଏପରି କିଛି ବୈଧ ପ୍ରଣାଳୀ ରହିଛି କି ଯାହା ସାହାଯ୍ୟରେ ଈଶ୍ୱରଙ୍କ ଅସ୍ତିତ୍ୱ ଜାଣିହେବ ? ଈଶ୍ୱର ଯେ ଏକ ଚେତନଶୀଳ ଆଦିସତ୍ତା ଏହା ଗ୍ରହଣ କରିବା ନେଇ ସେପରି କିଛି ଯୁକ୍ତିନିଷ୍ଠ ଆଧାର ରହିଛି କି ? ଦର୍ଶନ ପରିସରରେ ରହି ଉଭୟ ପ୍ରଶ୍ନର ଉତ୍ତର ନାସ୍ତିସୂଚକ ଅଟେ ।

(୧୭.୧୨.୨୦୧୪)



# ଈଶ୍ୱର ଓ ଦୁଃଖ

ଈଶ୍ୱରବାଦୀ ଧର୍ମମାନଙ୍କରେ ଈଶ୍ୱର ଏକ ପ୍ରମୁଖ ଭାବନା । ଧର୍ମର ପରିଭାଷାରେ ବିଶ୍ୱାସ କରାଯାଏ ଯେ ଈଶ୍ୱର ସବୁର ସ୍ରଷ୍ଟା । ସେ କେବଳ ସ୍ରଷ୍ଟା ନୁହନ୍ତି, ସେ ସର୍ବଶକ୍ତିମାନ ଓ କରୁଣାମୟ । ସଂସାରରେ ଯାହା କିଛି ଘଟେ, ସବୁ ଈଶ୍ୱରଙ୍କ ନିର୍ଦ୍ଦେଶରେ ହିଁ ସମାହିତ ହୁଏ । ଈଶ୍ୱରଙ୍କ ଅସ୍ତିତ୍ୱ ଯେ ସ୍ୱତଃସିଦ୍ଧ ଏହା ହିଁ ଅଧିକାଂଶ ଧର୍ମର ପ୍ରତିପାଦ୍ୟ ସିଦ୍ଧାନ୍ତ ଅଟେ । ଧର୍ମମାନଙ୍କର ଯେତେବେଳେ ଗଭୀର ପ୍ରଭାବ ସମାଜରେ ରହିଥିଲା ସେତେବେଳେ ଈଶ୍ୱରଙ୍କୁ ଆଧାର କରି ନାନା କାହାଣୀ, ପୁରାଣ, କାବ୍ୟ ଲେଖା ଯାଉଥିଲା । ଈଶ୍ୱରଙ୍କ ପ୍ରତି ଭକ୍ତି, ନୈବେଦ୍ୟ ଅର୍ପଣ କରିବା ସହ ପ୍ରାର୍ଥନା ଓ ପୂଜା ଜୀବନଧାରାର ଅବିଚ୍ଛେଦ୍ୟ ଅଙ୍ଗ ଥିଲା । କୌଣସି ପ୍ରତିକୂଳ ପରିସ୍ଥିତିରେ ଈଶ୍ୱରଙ୍କ କରୁଣା ପାଇଁ ପ୍ରାର୍ଥନା କରିବା ଅତ୍ୟନ୍ତ ସ୍ୱାଭାବିକ କାର୍ଯ୍ୟ ଥିଲା, ଏବେ ମଧ୍ୟ ଗଭୀର ଈଶ୍ୱର ବିଶ୍ୱାସୀଙ୍କ ପାଖରେ ଏହି ଭାବନା ରହିଛି । ବ୍ୟକ୍ତି ସ୍ତରରେ ହେଉ ବା ଗୋଷ୍ଠୀ ସ୍ତରରେ ହେଉ ଈଶ୍ୱର ବିଶ୍ୱାସ ଜୀବନ ପ୍ରବାହ ସହ ଅଭିନ୍ନ ହୋଇଥିବା ଦେଖାଯାଏ । ଧର୍ମ ସ୍ତରର ବିଶ୍ୱାସମାନଙ୍କୁ ଏକ ଯୁକ୍ତିନିଷ୍ଠ ଆଧାର ଦେବା ପାଇଁ ଦର୍ଶନ ପରିସରରେ ମଧ୍ୟ ଉଦ୍ୟମ ହୋଇ ଓ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ବିଭିନ୍ନ ଯୁକ୍ତି ମାନଙ୍କର ଅବତାରଣା କରାଯାଇଛି । ତେବେ ଦାର୍ଶନିକ ଚିନ୍ତନର ଗଭୀରତା ମଧ୍ୟ ଦେଇ ଏହି ଯୁକ୍ତି ଗୁଡିକ କିପରି ଅସାର, ଅବୈଧ ଓ ଦୋଷଯୁକ୍ତ ତାହା ପରେ ଚିନ୍ତାସ୍ତରକୁ ଆସିଛି । ଏହା ସହ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ପ୍ରଶ୍ନ ବି ଉଠିଛି ।

ଏହା ଏକ ସାଧାରଣ ଅନୁଭବ ଯେ ଆମ ସଂସାରରେ ଅନେକ ଦୁଃଖ, ଯନ୍ତ୍ରଣା, ଅଶୁଭ ଓ ମନ୍ଦର ପରିସ୍ଥିତି ରହିଛି । ସଭ୍ୟତା ଯେତେବେଳେ ଆଦିମ ସ୍ତରରେ ଥିଲା କିମ୍ବା ସଂପ୍ରତି ସଭ୍ୟତାରେ ଏତେ ଅଗ୍ରଗତି ସତ୍ତ୍ୱେ ମଣିଷ ସମାଜରୁ ଦୁଃଖ, ଯନ୍ତ୍ରଣା ବା ଅଶୁଭର ପରିବେଶ ଦୂର ହୋଇନାହିଁ । ଜୀବନ ସହ ଦୁଃଖକର ଅନୁଭବ ସର୍ବଦା ରହିଛି । ସୁଖ, ଦୁଃଖ ପ୍ରତ୍ୟେକ ବ୍ୟକ୍ତିର ବାସ୍ତବ ଅନୁଭବ ହୋଇ ରହିଛି । ଏକ ସୁଖକର

ଅନୁଭବ ମୁହଁରେ ହସ, ଆନନ୍ଦ ଆଣିବା ବେଳେ ଏକ ଦୁଃଖକର ଅନୁଭବ ମନକୁ ଭାରାକ୍ରାନ୍ତ ଓ ଆଖିକୁ ଲୋତକ ପୂର୍ଣ୍ଣ କରିଥାଏ । ପ୍ରତ୍ୟେକ ଦୁଃଖକର ଅନୁଭବ ଅପ୍ରୀତିକର ମାନସିକ ଅବସ୍ଥାର ସୂଚନା ଦିଏ । ଦୁଃଖ ଯେହେତୁ ଏକ ମାନସିକ ଅନୁଭବ, ସେ ଦୃଷ୍ଟିରୁ ସମସ୍ତ ଦୁଃଖ ଯନ୍ତ୍ରଣା ସ୍ୱରୂପତଃ ମାନସିକ । ତେବେ ପ୍ରତ୍ୟେକ ଦୁଃଖର କାରଣ ଶାରୀରିକ, ମାନସିକ ବା ଉଭୟ କାରଣରୁ ଆସିଥାଏ ।

ବ୍ୟକ୍ତି ହେଉ ବା ଗୋଷ୍ଠୀ ହେଉ ଦୁଃଖର ପରିବେଶ କେତେକ କାରଣରୁ ଉତ୍ପନ୍ନ ହୋଇଥାଏ । ଜଣେ ବ୍ୟକ୍ତିର ଦୁଃଖ ତାର ଭ୍ରମାତ୍ମକ କାର୍ଯ୍ୟ ବା ତ୍ରୁଟିପୂର୍ଣ୍ଣ ନିଷ୍ପତ୍ତି ଯୋଗୁ ହୋଇଥାଏ । ଜଣେ ବ୍ୟକ୍ତିର ଦୁଃଖ ପାଇଁ ସେ ହୁଏତ କେତେକାଂଶରେ ଦାୟୀ । ତେବେ ଏପରି କେତେକ ଦୁଃଖ ଆସେ ଯେଉଁଥିରେ ବ୍ୟକ୍ତିର କୌଣସି ଭୂମିକା ନଥାଏ । ଦୁଃଖର କାରଣ ପ୍ରାକୃତିକ ଘଟଣା ଯୋଗୁ ବେଳକେ ଆସିଥାଏ । ବାତ୍ୟା, ଭୂକଂପ, ମହାମାରୀ, ସୁନାମି ଇତ୍ୟାଦି ପ୍ରାକୃତିକ କାରଣରୁ ବେଳକେ ମଣିଷର ସଂସାର ଉଜୁଡ଼ିଯାଏ । ସେହିପରି ସାଂପ୍ରଦାୟିକ ଦଙ୍ଗା, ଯୁଦ୍ଧ,  ବିଭୀଷିକା, ସନ୍ତ୍ରାସବାଦୀ ଘଟଣାରୁ ବେଳେବେଳେ କେତେକ ନିରୀହ ବ୍ୟକ୍ତିଙ୍କର ଜୀବନ ଦୁଃଖରେ ଜର୍ଜରିତ ହୋଇଥାଏ । ନିକଟରେ ତାଲିବାନ ଆତଙ୍କବାଦୀମାନେ ପେଶଓ୍ୱାରସ୍ଥିତ ଆର୍ମି ପବ୍ଲିକ ସ୍କୁଲରେ ପ୍ରବେଶ କରି ଯେଉଁପରି ସ୍କୁଲଛାତ୍ରଙ୍କୁ ହତ୍ୟା କଲେ ସେଥିରେ ନିଜର ଏକମାତ୍ର ସନ୍ତାନକୁ ହରାଇ ଅନେକ ବାପା ମା କିପରି ମ୍ରିୟମାଣ ହୋଇଥିବେ ତାହା ଅନୁମେୟ । ଅନେକ ସମୟରେ ମଣିଷ ହିଁ ମଣିଷର ଦୁଃଖର କାରଣ ହୋଇଆସିଛି ।

ଏହି ପରିପ୍ରେକ୍ଷୀରେ ସର୍ବଶକ୍ତିମାନ ଓ କରୁଣାମୟ ଈଶ୍ୱରଙ୍କର ଅସ୍ତିତ୍ୱ ନେଇ ଦର୍ଶନ ପରିସରରେ କେତେକ ଗମ୍ଭୀର ପ୍ରଶ୍ନ ଉଠିଥାଏ । ଯଦି ଈଶ୍ୱର ସର୍ବଶକ୍ତିମାନ, ତେବେ ସେ କାହିଁକି ଦୁର୍ବିପାକ ପରି ଘଟଣାମାନଙ୍କୁ ନିୟନ୍ତ୍ରଣ କରନ୍ତି ନାହିଁ ? ସେହିପରି ଯଦି ଈଶ୍ୱର କରୁଣାମୟ, ତେବେ ମଣିଷର ଅପ୍ରମିତ ଦୁଃଖ ଦୁର୍ଦ୍ଦଶାରେ ଈଶ୍ୱର କାହିଁକି ସେହି ଦୁଃଖକୁ ଦୂର କରନ୍ତି ନାହିଁ ? ଯେହେତୁ ସବୁ ସମୟରେ ସଂସାରରେ ଅପରିସୀମ ଦୁଃଖ ଯାତନା ରହିଛି ତେଣୁ ଈଶ୍ୱର ହୁଏତ ସର୍ବଶକ୍ତିମାନ ନୁହନ୍ତି ବା କରୁଣାମୟ ନୁହନ୍ତି । ଏକ ସର୍ବଶକ୍ତିମାନ ଓ କରୁଣାମୟ ଈଶ୍ୱର ଜୀବ ଜଗତର ଅବାଂଛିତ ଦୁଃଖ ଦୁର୍ଦ୍ଦଶାକୁ ନିଷ୍ଚୟ ଦୂର କରନ୍ତେ । ଯେହେତୁ ଜୀବ ଜଗତର ଓ ମଣିଷ ସମାଜର ଅପ୍ରମିତ ଓ ଅବାଂଛିତ ଦୁଃଖ ଦୁର୍ଦ୍ଦଶା ଲାଗି ରହିଛି ସେ ହେତୁ ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରାଗଲେ ଈଶ୍ୱର ଯେ ସର୍ବଶକ୍ତିମାନ ନୁହନ୍ତି କିମ୍ବା କରୁଣାମୟ ନୁହନ୍ତି ଏହିପରି ଏକ ସିଦ୍ଧାନ୍ତ ନିଷ୍ପନ୍ନ ହେବ । ଦାର୍ଶନିକ ଜିଜ୍ଞାସା କ୍ଷେତ୍ରରେ ଏହି ପ୍ରଶ୍ନକୁ ନେଇ ନାନା ଚର୍ଚ୍ଚା ହୋଇଛି । ଈଶ୍ୱରଙ୍କ ଅସ୍ତିତ୍ୱ

ନେଇ ଦାର୍ଶନିକମାନେ ଅନେକ ପ୍ରମାଣର ଅବତାରଣା କରିଛନ୍ତି, ସେହିପରି ଈଶ୍ୱରଙ୍କ ସ୍ୱରୂପ ନେଇ ପ୍ରଦତ୍ତ ଯୁକ୍ତି ପରିପ୍ରେକ୍ଷୀରେ ଈଶ୍ୱରଙ୍କ ସର୍ବଜ୍ଞତା ଓ କରୁଣାମୟତା ପ୍ରତିଷ୍ଠା କରିବାକୁ ମଧ୍ୟ କେତେ କେତେ ଯୁକ୍ତିର ସୂତ୍ରପାତ କରାଯାଇଛି । ଈଶ୍ୱର ନିୟନ୍ତ୍ରିତ ଏକ ବ୍ୟବସ୍ଥା ଭିତରେ ମଣିଷ ସମାଜର ଦୁଃଖ, ଯନ୍ତ୍ରଣା, କ୍ରୁରତାକୁ କିପରି ସଂଯୋଜିତ କରାଯାଇପାରିବ ? ବିଭିନ୍ନ ଈଶ୍ୱରବାଦୀ ଧର୍ମମାନଙ୍କରେ ଏହି ପ୍ରସଙ୍ଗଟିକୁ ଆଲୋଚନା କରାଯାଇଛି, ତେବେ ଏହାର ଏକ ଯୁକ୍ତିଶୀଳ ଆଧାର ଦିଆଯାଇ ନାହିଁ । ହୁଏତ ଈଶ୍ୱରଙ୍କ ବିଧାନ ମଣିଷ ପ୍ରଜ୍ଞାର ବହିର୍ଭୂତ କହି ପ୍ରଶ୍ନଟିକୁ ଏଡାଇ ଦିଆଯାଇଛି କିମ୍ବା ଯାହା ଯୁକ୍ତି ଦିଆଯାଇଛି ତାହା ଅତ୍ୟନ୍ତ ଅବୈଧ ବା ଦୁର୍ବଳ । ତେବେ ଦର୍ଶନ ପରିସରରେ କିଛି ଯୁକ୍ତି ରହିଛି ଯାହା ଏହି ଗୋଲକଧନ୍ଦା ଭିତରେ କିଛିଟା ଅର୍ଥପୂର୍ଣ୍ଣ ମନେହୁଏ ।

ଏକ ଦାର୍ଶନିକ ମତାନୁଯାୟୀ ଈଶ୍ୱର ମହତ୍ ଉଦ୍ଦେଶ୍ୟରେ ସବୁକିଛି ସୃଷ୍ଟି କରିଛନ୍ତି । ପ୍ରକୃତିରେ ଯାହା କିଛି ଅଛି ସବୁର ମହତ୍ତ୍ୱ ଓ ମୂଲ୍ୟ ରହିଛି । ତେବେ ବିଭିନ୍ନ ବସ୍ତୁମାନଙ୍କର ମହତ୍ତ୍ୱ ଓ ମୂଲ୍ୟରେ ଗୁଣାତ୍ମକ ଓ ପରିମାଣାତ୍ମକ ପ୍ରଭେଦ ରହିଛି । ସବୁ ସ୍ତରରେ ସଂଗତି ଓ ଶୃଂଖଳାର ସହ ଈଶ୍ୱର ସବୁ ସୃଷ୍ଟି କରିଥିଲେ । କିନ୍ତୁ କାଳକ୍ରମେ ସୃଷ୍ଟି ଭିତରେ ଅପରିପୂର୍ଣ୍ଣତା ସୃଷ୍ଟି ହେଲା ଓ ତା'ର ପରିଣାମରୁ ଧୀରେ ଧୀରେ ମନ୍ଦର ଉତ୍ପତ୍ତି ହେଲା । ଈଶ୍ୱର ପ୍ରାଣୀକୁ ସବୁକଥା ଦେଖିବାକୁ ଦୃଷ୍ଟିଶକ୍ତି ଦେଇଛନ୍ତି । ତେବେ ଚକ୍ଷୁର ଅବକ୍ଷୟ ହେବା ଯେପରି ସମ୍ଭବ, ସେହିପରି ସଂହତିପୂର୍ଣ୍ଣ ସ୍ଥିତିରୁ ମନ୍ଦର ଉତ୍ପତ୍ତି ହେବା ସମ୍ଭବ । ଏହା ଛଡା ଈଶ୍ୱର ମଣିଷକୁ ସ୍ୱାଧୀନତା ଦେଇଛନ୍ତି, ମଣିଷକୁ ତାଙ୍କ ହାତର ଖେଳନା କରିନାହାନ୍ତି, କିନ୍ତୁ ଈଶ୍ୱର ଦତ୍ତ ସ୍ୱାଧୀନତାର ଅପପ୍ରୟୋଗ ମଣିଷ କରିଛି, ଫଳରେ ଦୁଃଖ ଯନ୍ତ୍ରଣାର ପରିବେଶ ଆସିଛି । ତେଣୁ ସଂସାରରେ ଯଦି ଦୁଃଖ, ମନ୍ଦ ରହିଛି ସେଥିପାଇଁ ଈଶ୍ୱର ଦାୟୀ ନୁହନ୍ତି, ବରଂ ମଣିଷ ହିଁ ଦାୟୀ । ମନ୍ଦ କାର୍ଯ୍ୟ ଦ୍ୱାରା ମଣିଷ ଯେଉଁ ପାପ ସୃଷ୍ଟି କରୁଛି, ସେହି ପାପର ପ୍ରାୟଶ୍ଚିତ ସ୍ୱରୂପ ପ୍ରାକୃତିକ ବିପତ୍ତି ସୃଷ୍ଟି ହେଉଛି । ତେବେ ସୃଷ୍ଟିର ଅନ୍ତିମ କାଳରେ ଈଶ୍ୱରୀୟ ବିଚାରଦ୍ୱାରା ପୁଣ୍ୟବାନ ମାନେ ଶାଶ୍ୱତ ଜୀବନର ଅଧିକାରୀ ହେବେ ଓ ପାପୀମାନେ ଅନନ୍ତକାଳ ପାଇଁ ଯନ୍ତ୍ରଣା ପାଇବେ । ଏହାଦ୍ୱାରା ସଂସାରରେ ନୈତିକ ପରିପୂର୍ଣ୍ଣତା ଆସିପାରିବ ।

ଅନ୍ୟ ଏକ ଦାର୍ଶନିକ ଯୁକ୍ତିରେ କୁହାଯାଇଛି ଯେ ଈଶ୍ୱର ମଣିଷ ପାଇଁ ଦୁଃଖରହିତ ସ୍ୱର୍ଗ କରିନାହାନ୍ତି, ସେପରି କରିଥିଲେ ମଣିଷ ପ୍ରୟାସର କିଛି ଅର୍ଥ ରହିନଥାନ୍ତା । ବରଂ ଈଶ୍ୱର ମନୁଷ୍ୟକୁ ବିବେକ ବୁଦ୍ଧି ଦେଇଛନ୍ତି, ଯାହାର ପ୍ରୟୋଗ କରି ସେ ନିଜର ନୈତିକ ଓ ଆଧାତ୍ମିକ ବିକାଶ ଘଟାଇ ପାରିବ । ବଡ଼ ହୋଇ ଜନ୍ମ ହେବା ଓ ସାଧନା ପଥରେ

ସଂଗ୍ରାମ କରି ମହନୀୟ ହେବା ଭିତରେ ଗୁଣାତ୍ମକ ପାର୍ଥକ ରହିଛି । ଈଶ୍ୱର ମଣିଷକୁ ନାନା ସମ୍ଭାବନା ଭିତରେ ଜନ୍ମ ଦେଇଛନ୍ତି । ପ୍ରତିକୂଳ ସ୍ଥିତିରେ ବ୍ୟକ୍ତି ଆତ୍ମପରୀକ୍ଷା କରି ସେ ଆତ୍ମଶୁଦ୍ଧି ଲାଭ କରିପାରିବ । ପୁନଶ୍ଚ ଜୀବନରେ ଦୁଃଖ, କଷ୍ଟ, ବିଫଳତା ରହିଛି ବୋଲି ତ ସୁଖ, ଆନନ୍ଦ, ସଫଳତାର ପ୍ରାତିପଦ ଅନୁଭବ ରହିଛି । ମୃତ୍ୟୁପରେ ମୁକ୍ତି ଜନିତ ଅନନ୍ତ ସୁଖର ଯେଉଁ ସମ୍ଭାବନା ରହିଛି ତାହା ତୁଳନାରେ ଆମର ଦୁଃଖ, କଷ୍ଟ ଅତି ନଗଣ୍ୟ ମନେହୁଏ ।

ଏହି ସବୁ ଯୁକ୍ତିରେ ମାନବୀୟ ଦୁଃଖ ଦୁର୍ଦ୍ଦଶା ସହ ଈଶ୍ୱରଙ୍କ ବ୍ୟବସ୍ଥାକୁ ସମତାଳ କରିବାକୁ କିଛି ଉଦ୍ୟମ କରାଯାଇଥିଲେ ମଧ ଏହି ଯୁକ୍ତିଗୁଡିକର ଅନେକ ଦୁର୍ବଳତା ରହିଛି । ଯଦି ପ୍ରଥମରୁ ସବୁ କିଛି ସୁସଂହତ ଓ ଶୃଂଖଳିତ ଥିଲା, ସେଥିରେ ମନ୍ଦ କିପରି ଓ କାହିଁକି ସୃଷ୍ଟି ହେଲା ? ମନ୍ଦ, ଦୁଃଖ, ଅଶୁଭ କ'ଣ ସ୍ୱସୃଷ୍ଟ କି ? ଈଶ୍ୱର ସୃଷ୍ଟ ଏକ ବ୍ୟବସ୍ଥା ଯଦି କାଳକ୍ରମେ ନଷ୍ଟ ଦିଗରେ ଯାଉଛି, ଏହାର ଉତ୍ତରଦାୟିତ୍ୱ ଈଶ୍ୱରଙ୍କର କି ନାହିଁ ? ଯଦି କୁହାଯାଏ ଯେ ଈଶ୍ୱର ମଣିଷକୁ ସ୍ୱାଧୀନତା ଦେବାଦ୍ୱାରା ଏପରି ପରିସ୍ଥିତି ଆସିଛି, ତେବେ ଈଶ୍ୱର ଏପରି ମଣିଷ ସୃଷ୍ଟି କରିଥାନ୍ତେ ଯେଉଁମାନେ ସ୍ୱାଧୀନତା ଉପଭୋଗ କରିବେ, ଅଥଚ ସ୍ୱାଧୀନତାର ଅପପ୍ରୟୋଗ କରିବେ ନାହିଁ । ପ୍ରାକୃତିକ ଦୁର୍ବିପାକକୁ ନିୟନ୍ତ୍ରଣ କରିବା ଈଶ୍ୱରଙ୍କଠାରୁ କାହିଁକି ଆଶା କରାନଯିବ ? ଯୁଦ୍ଧ, ବିଭୀଷିକା, ମାନବିକ କ୍ରୂରତା ଓ ପ୍ରାକୃତିକ ବିପର୍ଯ୍ୟୟ ଯଦି ପୃଥିବୀରେ ଘଟୁ ନଥାନ୍ତା, ତେବେ ପୃଥିବୀର ଇତିହାସ ଭିନ୍ନ ରୂପ ନେଇଥାନ୍ତା । ଅଗଣିତ ନିଷ୍ପାପ ଶିଶୁ ଦୁରାରୋଗ୍ୟ ବ୍ୟାଧିରେ ଜର୍ଜରିତ ହେବା, ସତ୍ୟ-ନ୍ୟାୟ ପଥରେ ଥାଇ ଯନ୍ତ୍ରଣାର ଜୀବନ ବଂଚିବା, ସ୍ୱପ୍ନ ବିଭୋର କିଶୋର ଛାତ୍ରମାନେ ଆତଙ୍କବାଦୀଙ୍କ ଗୁଳିର ଶିକାର ହେବା କେଉଁ ଈଶ୍ୱରୀୟ ନ୍ୟାୟ ପ୍ରତିଷ୍ଠା କରୁଛି ? ଈଶ୍ୱରଙ୍କୁ ଯଦି ସତ୍ୟ, ନ୍ୟାୟର ପ୍ରତୀକ ଭାବେ ନିଆଯିବ ତେବେ ତାଙ୍କ ସୃଷ୍ଟି ଯେ ନ୍ୟାୟଠାରୁ ଯୋଜନ ଦୂରରେ ରହିଛି ଏହା ହିଁ କୁହାଯିବ । ବରଂ ସଭ୍ୟତାର ବିକାଶଧାରାରେ ଜୀବନକୁ ଅଧିକ ନିରାପଦ, ସାମାଜିକ ବ୍ୟବସ୍ଥାକୁ ଅଧିକ ନ୍ୟାୟସଙ୍ଗତ ଓ ହେତୁବାଦୀ ପ୍ରଜ୍ଞା ଆଧାରରେ ବିଶ୍ୱକୁ ଅଧିକ ଭାତୃତ୍ୱପୂର୍ଣ୍ଣ କରିବାକୁ ମଣିଷ ହିଁ ବିଚାରବୁଦ୍ଧି ଖଟାଇ ଉଦ୍ୟମ କରିଛି । ଏକ ଆଦିମ ଓ ଅସଭ୍ୟ ସ୍ଥିତିରୁ ଆଜିର ଆଧୁନିକ ଜୀବନ ସ୍ତରକୁ ଉତ୍ତରଣ ପଶ୍ଚାତରେ ମଣିଷର ସତତ ଚେଷ୍ଟା ଓ ପ୍ରୟାସ ରହିଛି ।

(୩୧.୧୨.୨୦୧୪)



# ସାମାଜିକ ବିକାଶଧାରାରେ ଧର୍ମ

ସଭ୍ୟତାରେ ଯେପରି କ୍ରମବିକାଶ ଘଟିଚାଲିଛି, ମଣିଷର ଚିନ୍ତା ଚେତନାରେ ମଧ୍ୟ ସେପରି କ୍ରମୋନ୍ନତି ହୋଇଚାଲିଛି । ସଭ୍ୟତାର ଆରମ୍ଭ ପର୍ବରୁ ଆଜିର ସ୍ତରକୁ ଆସିବାରେ ଏକ ସୁଦୀର୍ଘ କାହାଣୀ ରହିଛି । ରାଜନୈତିକ ସ୍ଥିତିରେ ବହୁ ପରିବର୍ତ୍ତନ ଆସିଛି, ଆର୍ଥନୀତିକ ବିକାଶ କେତେ ସ୍ତର ଦେଇ ଆଗକୁ ଯାଇଛି, ସମାଜର ନୀତି, ନିୟମ, ପରଂପରା, ଚଳଣି, ସଂସ୍କୃତି ନାନା ପ୍ରବାହ ଦେଇ ବିକଶିତ ହୋଇଛି ଓ ଧର୍ମ, ଦର୍ଶନ, ବୌଦ୍ଧିକ ଦିଗନ୍ତରେ ମଧ୍ୟ କେତେ କେତେ ପରିବର୍ତ୍ତନର ପ୍ରବାହ ଆସିଛି । ସେହିପରି ମଣିଷର ବୌଦ୍ଧିକ ଦିଗନ୍ତ ବି ବିସ୍ତାରିତ ହୋଇଚାଲିଛି । ନୂଆ ନୂଆ ଆବିଷ୍କାର ଓ ଉଦ୍‌ଭାବନକୁ ଭିତ୍ତି କରି କେତେ କେତେ ପ୍ରଯୁକ୍ତିର କୌଶଳ ମନୁଷ୍ୟ ହାସଲ କରିଛି ଓ ଜୀବନର ମାନରେ କ୍ରମବର୍ଦ୍ଧିଷ୍ଣୁ ଭାବେ ଉନ୍ନତି କରିଚାଲିଛି । ଗୋଟିଏ ସମୟରେ ସାମାଜିକ ପରିବର୍ତ୍ତନ ଅତି ଶିଥିଳ ହୋଇ ରହିଥିଲା, ତେବେ ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ଆଶାତୀତ ବିକାଶ ଯୋଗୁଁ ସାମାଜିକ ପରିବର୍ତ୍ତନ ସଂପ୍ରତି କ୍ଷିପ୍ର ଗତିରେ ସଂଘଟିତ ହେଉଛି ।

ସବୁ ସ୍ତରରେ ଯେପରି ପରିବର୍ତ୍ତନ ଆସିଛି, ସେହିପରି ମଣିଷର ଧର୍ମ ଭାବନା କ୍ଷେତ୍ରରେ ମଧ୍ୟ ସଭ୍ୟତାରେ ନାନା ଉତ୍ତରଣ ଘଟିଛି । ପୃଥିବୀର ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସଭ୍ୟତା ମାନ ଅତୀତରେ ଗଢ଼ିଉଠିବା ସହ କିଛି କିଛି ପାରଲୌକିକ ବିଶ୍ୱାସ ସୃଷ୍ଟି ହୋଇଛି । ପ୍ରାଚୀନ ସଭ୍ୟତା ମାନଙ୍କରେ ପାରଲୌକିକ ଦୈବୀସତ୍ତାରେ ବିଶ୍ୱାସ, ନାନା ଦେବ-ଦେବୀର କଳ୍ପନା, ବିଭିନ୍ନ ପ୍ରକାରର କର୍ମକାଣ୍ଡ ଓ କେତେ କେତେ କିମ୍ବଦନ୍ତୀ ଓ ଲୋକବିଶ୍ୱାସ ସୃଷ୍ଟି ହୋଇଛି । ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ପୂର୍ବରୁ ପ୍ରାଗଧର୍ମୀୟ ସମାଜରେ ରହିଥିବା ଲୋକବିଶ୍ୱାସ, ପୂଜା ଆରାଧନା ସଂପର୍କରେ ହୋଇଥିବା ଅନୁଶୀଳନରୁ ସେହି ସମୟର ଧର୍ମବିଶ୍ୱାସ ବିଷୟରେ କେତେକ କଥା ଜାଣିହୁଏ । ବହୁ ଦେବ-ଦେବୀ ଆରାଧନା, ପଶୁବଳି, ନାନା ଉଦ୍ଦଣ୍ଡ ନାଚ, ଗୀତ ଇତ୍ୟାଦି ସେ ଯୁଗର ସାଂସ୍କୃତିକ ପରଂପରା ରହିଥିଲା । କାଳକ୍ରମେ ବିଭିନ୍ନ ସଭ୍ୟତାରେ କିଛି କ୍ରାନ୍ତିକାରୀ ବ୍ୟକ୍ତିଙ୍କର

ଆବିର୍ଭାବକୁ ଆଧାର କରି ଧର୍ମଚେତନାର ବିକାଶ ହେଲା । ପ୍ରତ୍ୟେକ ଧର୍ମ ଏକ ନିର୍ଦ୍ଦିଷ୍ଟ ଭୂଖଣ୍ଡର ଏକ ସାଂସ୍କୃତିକ ଜାଗରଣ ଭାବେ ବିକଶିତ ହୋଇଥିଲା । କାଳକ୍ରମେ ଏହାର ବୌଦ୍ଧିକ, ନୈତିକ ଓ ସାଂସ୍କୃତିକ ଆବେଦନ ଜନମାନସକୁ ଆକୃଷ୍ଟ କଲା । ଏହା ସହିତ କେଉଁ କେଉଁ ଧର୍ମ ରାଜନୈତିକ ସମର୍ଥନ ଲାଭ କରି ବୃହତ୍ତର ଭୂଖଣ୍ଡକୁ ପ୍ରସାରିତ ହେଲା ଓ ଜନଗଣଙ୍କ ଭିତରେ ଏକ ସାଂସ୍କୃତିକ ସଂହତି ସୃଷ୍ଟି କଲା । ସମୟର ଅତିକ୍ରାନ୍ତ ସହ ଧର୍ମ ଏକ ବିସ୍ତୃତ ଭୂଖଣ୍ଡରେ ବିସ୍ତାର ଲାଭ କରି ଏକ ଜନଗଣଙ୍କର ଅସ୍ମିତାର ପ୍ରସଙ୍ଗ ହେଲା । ପ୍ରତ୍ୟେକ ଧର୍ମ ସହ କେତେକ ତାତ୍ତ୍ୱିକ ଭାବନା, କର୍ମକାଣ୍ଡ, ନୀତିବୋଧ, ନାନା କାହାଣୀ, କିମ୍ବଦନ୍ତୀ, ସଂପ୍ରଦାୟ, କେତେକ ଶାସ୍ତ୍ର ବା ଧର୍ମଗ୍ରନ୍ଥ, କେହି କେହି ପ୍ରବର୍ତ୍ତକଙ୍କର ନାମ ସଂଶ୍ଳିଷ୍ଟ କରାଗଲା । ଧାର୍ମିକ ଭାବନାର ବିକାଶ ସହ ଏହା ରାଜନୈତିକ ଦୃଶ୍ୟପଟ ସହ ଅଙ୍ଗାଙ୍ଗୀ ଭାବେ ଜଡିତ ହେଲା । ଧୀରେ ଧୀରେ ସମାଜ ସୁବ୍ୟବସ୍ଥିତ ହେବାକୁ ଲାଗିଲା, ରାଜତନ୍ତ୍ର ଦୃଢ଼ ଭିତ୍ତି ନେଲା, ଦାର୍ଶନିକ ଚିନ୍ତନର ସୂତ୍ରପାତ ହେଲା, ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟର ଭାବନା ସମାଜରେ ବିକଶିତ ହେଲା ଓ ଜୀବନର ମହତ୍ତ୍ୱ ଓ ଅନ୍ତିମ ଲକ୍ଷ୍ୟ ନେଇ କେତେ କେତେ ବିଚାର ପ୍ରତ୍ୟେକ ଧର୍ମ ପରଂପରା ଭିତରେ ଉଦ୍‌ଭବ ହେଲା । ଧର୍ମ-କେନ୍ଦ୍ରିକ ସମାଜରେ ନୀତି, ନୈତିକତା, ବୌଦ୍ଧିକ ଜିଜ୍ଞାସା, ରାଜନୀତି ସବୁ ସ୍ତରରେ ଧର୍ମର ପ୍ରଭାବ ରହିଲା ବା ସବୁ କିଛି ଧର୍ମଧାରାରେ ପରିଚାଳିତ ହେଲା । ପ୍ରତ୍ୟେକ ଧର୍ମର ପୂଜକ ଗୋଷ୍ଠୀ ସବୁଠାରୁ ପ୍ରଭାବଶାଳୀ ବ୍ୟକ୍ତି ହେଲେ ଓ ସେମାନଙ୍କ ନିର୍ଦ୍ଦେଶରେ ସମାଜ ଅନେକାଂଶରେ ନିୟନ୍ତ୍ରିତ ହେଲା । ପ୍ରତ୍ୟେକ ଧର୍ମଗୋଷ୍ଠୀ ନିଜର ଧର୍ମଗ୍ରନ୍ଥକୁ ପବିତ୍ର, ଈଶ୍ୱରଦତ୍ତ ଜ୍ଞାନ ଓ ନିଜ ଧର୍ମର ବାଣୀ ଶାଶ୍ୱତ ଓ ଚିରନ୍ତନ ବୋଲି ବିଶ୍ୱାସ କଲେ । ବିଜ୍ଞାନର ଯୁଗ ଆସିବା ପର୍ଯ୍ୟନ୍ତ ବା ସାଂସ୍କୃତିକ ଆଦାନ ପ୍ରଦାନର ପରିବେଶ ସୃଷ୍ଟି ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ଧର୍ମ ନିଜ ଭୌଗୋଳିକ ଭୂଖଣ୍ଡର ବୌଦ୍ଧିକ ଓ ସାଂସ୍କୃତିକ ଜୀବନଦୃଷ୍ଟିର ପ୍ରାଣକେନ୍ଦ୍ର ହୋଇ ରହିଥିଲା ।

କାଳକ୍ରମେ ପାଶ୍ଚାତ୍ୟ ଭୂଖଣ୍ଡରେ ଏକ ବଡ ସାଂସ୍କୃତିକ ଆଲୋଡନ ନବଜାଗରଣ ମଧ୍ୟ ଦେଇ ରୂପ ନେଲା । ଏହି ସମୟରେ ଚିନ୍ତାରାଜ୍ୟରେ ଯେଉଁ ବୌଦ୍ଧିକ କ୍ରାନ୍ତିର ସୂତ୍ରପାତ ହେଲା, ତାହା ଆଧୁନିକ ବିଜ୍ଞାନର ବିକାଶ ପାଇଁ ପଥ ଦେଖାଇଲା । ବିଶାଳ ପ୍ରକୃତିକୁ ଜାଣିବା ପାଇଁ ଧର୍ମଗ୍ରନ୍ଥ ଉପରେ ନିର୍ଭର ନ କରି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଜ୍ଞାନର ଆଧାର ହେଲା । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣକୁ ନେଇ ପ୍ରକୃତିର କେତେ କେତେ ରହସ୍ୟ ବିଜ୍ଞାନ ଆବିଷ୍କାର କରିବାକୁ ଲାଗିଲା । ବିଜ୍ଞାନର ଆଦିପର୍ବ ଥିଲା ଏକ ସଂଘର୍ଷର ସମୟ । ଧର୍ମର କେତେକ ବିଶ୍ୱସାକୁ ବିଜ୍ଞାନ ଅସତ୍ୟ ପ୍ରମାଣ କରିବାରୁ ବହୁ ସତ୍ୟସନ୍ଧାନୀ ବୈଜ୍ଞାନିକଙ୍କୁ ଧର୍ମଯାଜକଙ୍କ କ୍ରୋଧର ଶିକାର ହେବାକୁ ପଡିଲା । ଜ୍ଞାନର ବିକାଶ କ୍ଷେତ୍ରରେ

ମୌଳିକ ଅବଦାନ ଦେଇଥିବା କିଛି ପ୍ରବୀଣ ବୈଜ୍ଞାନିକଙ୍କୁ ଅତୀତରେ ନାନା ନିର୍ଯ୍ୟାତନା ସହିବାକୁ ହୋଇଛି, ବନ୍ଦୀ ଜୀବନ ଅତିବାହିତ କରିବାକୁ ପଡିଛି ଓ ଏପରିକି କେତେକ ଶହୀଦ ହୋଇଛନ୍ତି । ତେବେ ଧୀରେ ଧୀରେ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇ ଚାଲିଛି ଓ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପରୀକ୍ଷିତ, ସତ୍ୟାଧାରିତ ଓ ସାର୍ବଜନୀନ ବୋଲି ସ୍ୱୀକୃତ ହୋଇଛି । ବିଜ୍ଞାନର ବିକାଶରୁ ଏକ ନୂତନ ସଂସ୍କୃତିର ଉଦ୍‌ଭବ ହେଲା । କାଳକ୍ରମେ ରାଜତନ୍ତ୍ର ବିରୁଦ୍ଧରେ ସ୍ୱର ଉଠିଲା ଓ ଗଣତାନ୍ତ୍ରିକ ଚେତନାର ବିକାଶ ହେଲା । ଗଣତନ୍ତ୍ର ଏକ ରାଜନୈତିକ ସଂସ୍କୃତି ଭାବେ ଗୃହୀତ ହେବା ଦ୍ୱାରା ଧର୍ମକେନ୍ଦ୍ରିକ ସମାଜ ଧର୍ମନିରପେକ୍ଷ ସମାଜରେ ରୂପାନ୍ତରିତ ହେବାକୁ ଲାଗିଲା । ଧର୍ମନିରପେକ୍ଷତା ଏକ ବିଚାରବୋଧ ଭାବେ ସଭ୍ୟ ଜୀବନଦୃଷ୍ଟିର ଆଦର୍ଶ ହେଲା । ଧର୍ମ, ଈଶ୍ୱର ବ୍ୟକ୍ତିଗତ ବିଶ୍ୱାସର ପ୍ରସଙ୍ଗ ହେଲା । ରାଷ୍ଟ୍ରର ଶାସନ ବ୍ୟବସ୍ଥା, ଶିକ୍ଷା କ୍ଷେତ୍ର ଧର୍ମର ପ୍ରଭାବରୁ ମୁକ୍ତ ରହିଲା । ଧର୍ମମାନଙ୍କର ତୁଳନାତ୍ମକ ଅଧ୍ୟୟନରୁ ସେମାନଙ୍କର ତାତ୍ତ୍ୱିକ ବିଚାର ଗୁଡିକ କିପରି ପରସ୍ପର ବିରୋଧୀ ଏହା ଜଣାପଡିଲା । ଧର୍ମ ପରିବର୍ତ୍ତେ ମାନବବାଦ ଏକ ଆଦର୍ଶ ଭାବେ ସ୍ୱୀକୃତ ହେଲା । ଧର୍ମର ପାରଲୌକିକ ଜୀବନଦୃଷ୍ଟି ଯେ କେବଳ କଳ୍ପନା ଏହା ବିଚାର ସ୍ତରରେ ଜଣାପଡିବା ପରେ ଏହି ଜୀବନକୁ ଅଧିକ ପ୍ରୀତିପୂର୍ଣ୍ଣ ଓ ଦୁଃଖରହିତ କରିବାକୁ ବିଚାର ଆସିଲା । ଶିକ୍ଷା ବିଭିନ୍ନ ଦେଶରେ ସାର୍ବଜନୀନ ହେଲା । ବ୍ୟକ୍ତି ମର୍ଯ୍ୟାଦାବୋଧର ସ୍ୱର ଉଠିଲା । ସାମାଜିକ ଭେଦଭାବ ଦୂରକରି ସମତା, ସାମାଜିକ ନ୍ୟାୟ ଓ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନର ଭାବନା ମାନବବାଦୀ ଆଦର୍ଶ ଭାବେ ଅଧିକରୁ ଅଧିକ ଆନ୍ତର୍ଜାତିକ ସ୍ତରରେ ଗୃହୀତ ହେବାକୁ ଲାଗିଲା । ବିଭିନ୍ନ ସଭ୍ୟତାରେ ରହିଥିବା ଜାତିଭେଦ, ରଙ୍ଗଭେଦ, ଲିଙ୍ଗଭେଦ ଇତ୍ୟାଦି ଭେଦଭାବମୂଳକ ପରଂପରାର ବିଲୋପ କରି ମାନବବାଦୀ ବିଚାରବୋଧର ଆଦର୍ଶ ଚିନ୍ତାସ୍ତରରେ ସ୍ୱୀକୃତ ହେଲା । ଏପରିକି ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା ବିଶ୍ୱ ସ୍ତରରେ ମାନବଜାତିର ଏକତା, ସମତାର ବାର୍ତ୍ତାକୁ ସ୍ୱୀକାର କଲା । ବିଜ୍ଞାନର ଯୁଗ ଆସିବା ପରେ ଧର୍ମନିରପେକ୍ଷ ବିଚାରବୋଧ ସଭ୍ୟତାର ଉତ୍ତରଣ ଧାରାରେ ଏକ ବଳିଷ୍ଠ ଭାବନା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବସ୍ତୁତଃ ଧାର୍ମିକ ଭାବନା ପୃଷ୍ଠଭୂମିରେ ସଭ୍ୟତାର ବିକାଶଧାରାକୁ ତିନୋଟି ସ୍ତରରେ ବିଚାର କରାଯାଉଛି । ପ୍ରାଗ୍‌ଧର୍ମୀୟ ସମାଜ, ଧର୍ମଭିତ୍ତିକ ସମାଜ ଓ ଧର୍ମନିରପେକ୍ଷୀୟ ସମାଜ । ତେବେ କେତେକ ସମାଜ ବିଜ୍ଞାନୀଙ୍କ ମତରେ ଧର୍ମନିରପେକ୍ଷୀୟ ସମାଜର ପରବର୍ତ୍ତୀ ଉତ୍ତରଣ ହେବ ଧର୍ମୋତ୍ତର ସମାଜ ଯାହାକୁ ପୋଷ୍ଟରିଲିଜିୟସ ସୋସାଇଟି କୁହାଯାଇଛି । ଏବେ ବି କେତେକ ସମାଜରେ ଧର୍ମର ବଳିଷ୍ଠ ପ୍ରଭାବ ରହିଛି । ଧାର୍ମିକ ବିଶ୍ୱାସକୁ ଆଧାର କରି ସାଂପ୍ରଦାୟିକତା ଓ ମୌଳବାଦ ଏବେ ବି କେତେକ ସମାଜରେ

ଜନମାନସକୁ ଗଭୀର ପ୍ରଭାବିତ କରିରଖିଛି । ଶହ ଶହ ବର୍ଷ ଧରି ମାନବୀୟ ଚିନ୍ତା ଚେତନା ଓ ସାମାଜିକ ବିକାଶଧାରାକୁ ଧର୍ମ ପ୍ରଭାବିତ କରିଥିବାରୁ ଧର୍ମର ପ୍ରଭାବ ଅନେକ ସମାଜରେ ରହିଛି । ତେବେ ଧର୍ମନିରପେକ୍ଷତା ମାଧ୍ୟମରେ ଧର୍ମୀୟ ସହିଷ୍ଣୁତାର ଯେଉଁ ଭାବନା ସୃଷ୍ଟି ହୋଇଛି ତାହା ଧୀରେ ଧୀରେ ପ୍ରସାରିତ ହେବାରେ ଲାଗିଛି । ତେବେ ପ୍ରତ୍ୟେକ ଧର୍ମ ପରଂପରାରେ ମହତ୍ତର ଜୀବନବୋଧର କିଛି ସନ୍ଦେଶ ରହିଛି । ତାହାରି ଆଧାରରେ ଏକ ବିଶ୍ୱଦୃଷ୍ଟିର ସଂସ୍କୃତି ଯେ ଭବିଷ୍ୟତରେ ରୂପରେଖ ନେବ ଏହା କେତେକ ମାନବବାଦୀ ଦାର୍ଶନିକ ଓ ହେତୁବାଦୀ ଚିନ୍ତାନାୟକ ଆଶା ପୋଷଣ କରୁଛନ୍ତି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସମଗ୍ର ବିଶ୍ୱକୁ ଏକତ୍ୱ ବଂଧନରେ ଯୋଡିବାକୁ ସମର୍ଥ ହେଲାଣି । ଯେକୌଣସି ଅଂଚଳର ଲୋକ ଅନ୍ୟ ଅଂଚଳର ଲୋକଙ୍କ ସହ ଅକ୍ଳେଶରେ ସମ୍ବନ୍ଧ ସ୍ଥାପନ କରିପାରୁଛି । ପୃଥିବୀର ଦୂରତ୍ୱ କମିଯିବାରେ ଲାଗିଛି । ଅନ୍ତରାଷ୍ଟ୍ରୀୟ ଚେତନାର ବିକାଶ ସାରା ବିଶ୍ୱରେ ଆଗକୁ ଯିବାରେ ଲାଗିଛି । ପୃଥିବୀର କେଉଁ କୋଣରେ କିଛି ଦୁର୍ବିପାକ ହେଲେ ସମଗ୍ର ବିଶ୍ୱରୁ ସହାନୁଭୂତିର ହାତ ପ୍ରସାରିତ ହେବାରେ ଲାଗିଛି । କେତେକ ଦାର୍ଶନିକ ସମଗ୍ର ପୃଥିବୀରୁ ରାଷ୍ଟ୍ରବାଦର ଭାବନା ଯେ ବିଲୋପ ହେବାକୁ ଯାଉଛି ଏହି ପ୍ରକାରର ଏକ ଆଶା ବ୍ୟକ୍ତ କରୁଛନ୍ତି । ଗୋଟିଏ ସମୟରେ ରାଜତନ୍ତ୍ର, ସାମ୍ରାଜ୍ୟବାଦ ପୃଥିବୀରୁ ଯେ ଦିନେ ଲୋପ ପାଇବ ଏହା କଳ୍ପନା ବହିର୍ଭୂତ ଥିଲା, କିନ୍ତୁ ଆଜି ତାହା ବାସ୍ତବତାରେ ପରିଣତ ହୋଇଛି । ସାଂପ୍ରତିକ ଅନ୍ୱେଷାରେ ଧର୍ମ, ରାଷ୍ଟ୍ରବାଦ ଯେତେ ଅବଶ୍ୟମ୍ଭାବୀ ମନେ ହେଉଥିଲେ ବି ଆଗାମୀ ବିଶ୍ୱ ଯେ ଏଥିରୁ ମୁକ୍ତ ହେବ ଓ ସମଗ୍ର ପୃଥିବୀ ଏକ ଶାସନାଧୀନ ହେବ ଏହା କଳ୍ପନା କରାଯାଉଛି । ମାନବବାଦ, ଆନ୍ତରାଷ୍ଟ୍ରୀୟ ବ୍ୟବସ୍ଥା ଓ ବିଜ୍ଞାନ ସମଗ୍ର ପୃଥିବୀରେ ଏକ ନୂତନ ସଂସ୍କୃତିର ବିକାଶ ଦିଗରେ ପଥ ପ୍ରଦର୍ଶକ ହେବେ । ସମଗ୍ର ପୃଥିବୀରୁ ଯୁଦ୍ଧ, ସନ୍ତ୍ରାସବାଦ, ଆଣବିକ ଅସ୍ତ୍ର ନିର୍ମାଣର ପ୍ରତିଯୋଗିତା ପରି ଧ୍ୱଂସକାରୀ ବ୍ୟବସ୍ଥାର ବିଲୋପ ହୋଇପାରିବ । ଏକ ବିଶ୍ୱ, ଏକ ମାନବଜାତି ଓ ଭାତୃତ୍ୱଭାବ ବିଚାରର ଧାରାକୁ ଅବ୍ୟାହତ ରଖିଲେ ସଭ୍ୟତାର ଇତିହାସରେ ଏକ ନୂତନ ସୂର୍ଯ୍ୟୋଦୟ ହେବ । ଜାତି, ଧର୍ମ, ଜାତୀୟତା ଇତ୍ୟାଦି ଆବେଗରୁ ମଣିଷ ମଣିଷ ଭିତରେ ଯେଉଁ ଭେଦଭାବର ପ୍ରାଚୀର ଛିଡା ହୋଇଛି ତାହାର ବିଲୋପ ହୋଇ ଭାତୃତ୍ୱଭାବ, ନ୍ୟାୟବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟି ଆଗାମୀ ବିଶ୍ୱର ଆଦର୍ଶହେବ । ତାହା ହିଁ ଧର୍ମୋତ୍ତର ସମାଜର ମୂଳମନ୍ତ୍ର ହେବ ।

(୭.୧.୨୦୧୫)



# ଧର୍ମବିଶ୍ୱାସରେ ଆତ୍ମା

ପ୍ରତ୍ୟେକ ଧର୍ମର କେତେକ ତାତ୍ତ୍ୱିକ ସିଦ୍ଧାନ୍ତ ରହିବା ଦେଖାଯାଏ । ପ୍ରତ୍ୟେକ ଧର୍ମର ଇତିହାସ, ଧର୍ମଗ୍ରନ୍ଥ, କର୍ମକାଣ୍ଡ, ନୈତିକ ଶୃଙ୍ଖଳା, ସଂପ୍ରଦାୟ ସହ ତାତ୍ତ୍ୱିକ ବିଶ୍ୱାସ ଧର୍ମର ପରିସର ସହ ସଂଶ୍ଳିଷ୍ଟ । ତାତ୍ତ୍ୱିକ ବିଶ୍ୱାସ ସକଳ ଭିତରେ "ଆତ୍ମା" ଭାବନାଟି ପ୍ରାୟତଃ ସାର୍ବଜନୀନ ଭାବେ ଧର୍ମ ସହ ସଂପୃକ୍ତ । ପ୍ରତ୍ୟେକ ଧର୍ମ ବିଶ୍ୱାସ କରେ ଯେ ଆତ୍ମା ବ୍ୟକ୍ତି ଭିତରର ଚେତନ ସତ୍ତା ଓ ଏହା ମୃତ୍ୟୁପରେ ମଧ୍ୟ ରହେ । ଅନେକ ସମୟରେ ଏହି ପ୍ରଶ୍ନ ଉଠିଛି- କେବଳ ମଣିଷର ଆତ୍ମା ରହିଛି ନା ପ୍ରତ୍ୟେକ ପ୍ରାଣୀର ଆତ୍ମା ରହିଛି । କେତେକ ଧର୍ମର ବିଶ୍ୱାସ ଅନୁଯାୟୀ କେବଳ ମଣିଷର ଆତ୍ମା ରହିଛି । ମଣିଷ ବିଚାରଶୀଳ, ସେ ବୁଦ୍ଧି ପ୍ରୟୋଗ କରିପାରେ, ନୀତି-ଅନୀତିର ଭାବନା ପୋଷଣ କରେ, ସଭ୍ୟତା ସଂସ୍କୃତି ନିର୍ମାଣ କରିବାରେ ସମର୍ଥ । ଏହି ସବୁ ମନୁଷ୍ୟେତର ପ୍ରାଣୀମାନେ କରିବା ସମ୍ଭବ ନୁହେଁ । ସୁତରାଂ କେତେକ ଧର୍ମର ବିଶ୍ୱାସ ହେଉଛି ଯେ ମଣିଷର ଆତ୍ମା ଥାଏ, ଅନ୍ୟ ଇତର ପ୍ରାଣୀମାନେ ଆତ୍ମରହିତ । ଆମ ଚତୁର୍ପାର୍ଶ୍ୱରେ ଥିବା ଅନ୍ୟ ଜୀବମାନଙ୍କର ଆତ୍ମା ନାହିଁ । ଅନ୍ୟ କେତେକ ଧର୍ମର ବିଶ୍ୱାସ ଅନୁଯାୟୀ ମଣିଷ ଓ ପ୍ରାଣୀମାନଙ୍କ ଭିତରେ ବହୁ ସାମଂଜସ୍ୟ ରହିଛି । ଆହାର, ନିଦ୍ରା, ଭୟ, ବଂଶବୃଦ୍ଧି ପ୍ରତ୍ୟେକ ପ୍ରାଣୀ କରିଥାଏ । ମନୁଷ୍ୟମାନେ ହୁଅନ୍ତୁ ବା ମନୁଷ୍ୟେତର ପ୍ରାଣୀମାନେ ହୁଅନ୍ତୁ ସେମାନେ ସନ୍ତାନ ସୃଷ୍ଟି କରି ବଂଶବୃଦ୍ଧି କରାନ୍ତି, ଜୀବନର ଆବଶ୍ୟକତା ପୂରଣ ପାଇଁ ପ୍ରକୃତି ଓ ପରିବେଶ ଉପରେ ନିର୍ଭରଶୀଳ ହୁଅନ୍ତି; ତେଣୁ ଯଦି ମଣିଷର ଆତ୍ମା ଥାଏ ତେବେ ସବୁ ଇତର ପ୍ରାଣୀମାନଙ୍କର ବି ଆତ୍ମା ରହିଥିବ । ଆତ୍ମା ଯେହେତୁ ପର୍ଯ୍ୟବେକ୍ଷଣୀୟ ବସ୍ତୁ ନୁହେଁ ତେଣୁ ଆତ୍ମା ସଂପର୍କରେ ନାନା କଳ୍ପନା ଧର୍ମମାନଙ୍କରେ ହୋଇଥିବା ଦେଖାଯାଏ ।

ନୃତାତ୍ତ୍ୱିକ ଅନୁଶୀଳନରୁ ଜଣାଯାଏ ଯେ ଆନୁଷ୍ଠାନିକ ଧର୍ମମାନଙ୍କର ଉତ୍ପତ୍ତି ଓ ବିକାଶ ପୂର୍ବରୁ ପ୍ରାଗ୍‌ଧର୍ମୀୟ ସମାଜରେ ଜୀବ, ଆତ୍ମା ଇତ୍ୟାଦି ଭାବନାକୁ ନେଇ ନାନା ବିଶ୍ୱାସ ସୃଷ୍ଟି ହୋଇଥିଲା । ନିଜର ପ୍ରତିବିମ୍ବ ଦେଖିବା, ସ୍ୱପ୍ନରେ ମୃତ ଲୋକଙ୍କ ସହ ଆଳାପ କରିବା ଭାବନା ଗୁଡିକୁ ମଣିଷ ବ୍ୟାଖ୍ୟା କରିବା ସମ୍ଭବ ନ ଥିଲା । ଫଳତଃ ଏହି

ବିଶ୍ୱାସ ସୃଷ୍ଟି ହୋଇଥିଲା ଯେ ବ୍ୟକ୍ତିର ମୃତ୍ୟୁରେ ତାର ପ୍ରାଣସତ୍ତା ଆତ୍ମା ହୋଇ ରହେ । ଧର୍ମମାନଙ୍କର ବିକାଶ ପରେ ପ୍ରତ୍ୟେକ ଧର୍ମ-ଚେତନାରେ ଆତ୍ମାର ସ୍ଥିତି, ସ୍ୱରୂପ, ଅନ୍ତିମ ପରିଣତି ନେଇ ନାନା କାଳ୍ପନିକ କାହାଣୀ ସଂଶ୍ଳିଷ୍ଟ ହେଲା । ପୁନଶ୍ଚ ମୁକ୍ତି, ମୋକ୍ଷ, ସ୍ୱର୍ଗ, ନରକ, ପୁନର୍ଜନ୍ମ, ବିଚାର ଦିବସ, ଈଶ୍ୱରୀୟ ବିଧାନ ଇତ୍ୟାଦି ବହୁ ଭାବନା ଆତ୍ମା ସହ ଧୀରେ ଧୀରେ ସଂଯୋଜିତ ହେବାକୁ ଲାଗିଲା । ଏହି ସବୁ ବିଶ୍ୱାସକୁ ନେଇ ଊନବିଂଶ ଶତାବ୍ଦୀରେ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଆତ୍ମା ସଂପର୍କରେ ବିଭିନ୍ନ ପରସ୍ପର ବିରୋଧୀ ଭାବନା କିପରି ରହିଛି ତାହା ଜଣାପଡିଲା ।

ପ୍ରତ୍ୟେକ ଧର୍ମରେ ଆତ୍ମାର ଅସ୍ତିତ୍ୱ ନେଇ ଯେଉଁ ସବୁ ଭାବନା ମାନ ରହିଛି ସେ ସବୁର ଅନୁଶୀଳନରୁ ଜଣାଯାଏ ଯେ କେତେକ ଧର୍ମ ପୁନର୍ଜନ୍ମବାଦରେ ବିଶ୍ୱାସ କରୁଥିବା ବେଳେ ଅନ୍ୟ କେତେକ ଧର୍ମ ପୁନର୍ଜନ୍ମବାଦରେ ବିଶ୍ୱାସ କରନ୍ତି ନାହିଁ । ଉଦାହରଣ ସ୍ୱରୂପ ପାର୍ଶୀଧର୍ମ, ଇହୁଦୀ ଧର୍ମ, ଖ୍ରୀଷ୍ଟଧର୍ମ ଓ ଇଶ୍‌ଲାମ୍ ଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ନାହିଁ । ଅପର ପକ୍ଷରେ ହିନ୍ଦୁଧର୍ମ, ଜୈନଧର୍ମ ଓ ଶିଖଧର୍ମରେ ପୁନର୍ଜନ୍ମବାଦର ବିଶ୍ୱାସ ରହିଛି । ବୌଦ୍ଧଧର୍ମରେ ପୁନର୍ଜନ୍ମବାଦର ଭାବନା ଥିଲେ ବି ଅନାତ୍ମବାଦ ଏହି ଧର୍ମର ଏକ ମୌଳିକ ଭାବନା । ଯେଉଁ ଧର୍ମମାନଙ୍କରେ ପୁନର୍ଜନ୍ମବାଦର ବିଶ୍ୱାସ ନାହିଁ, ସେ ସବୁ ଧର୍ମରେ ସ୍ୱର୍ଗବାସର କଳ୍ପନା ରହିଛି । ସ୍ୱର୍ଗ ଓ ନରକର ଭାବନା ଅନେକ ଧର୍ମରେ ସ୍ଥାନ ପାଇଛି ।

ପାର୍ଶୀଧର୍ମ ଜୋରାଷ୍ଟରଙ୍କ ବିଚାରକୁ ଆଧାର କରି ପୁରାତନ ପର୍ଶିଆରେ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା । ଏହି ଧର୍ମ ଅନୁଯାୟୀ ଶରୀରର ମୃତ୍ୟୁରେ ଆତ୍ମାର ମୃତ୍ୟୁ ହୁଏ ନାହିଁ । ବ୍ୟକ୍ତିର ମୃତ୍ୟୁପରେ ଆତ୍ମା ତଥାପି କିଛି ଦିନ ମରଶରୀରରେ ରହେ । ଏହାପରେ ଆତ୍ମା ଈଶ୍ୱରଙ୍କ ନ୍ୟାୟାଳୟକୁ (ପାର୍ଶୀଧର୍ମରେ ଈଶ୍ୱରଙ୍କୁ ଅହୁର-ମଜଦା କୁହାଯାଏ) ଯାଇଥାଏ । ଯିଏ ଅଧିକ ସୁକର୍ମ କରିଥାଏ ତାର ଆତ୍ମାକୁ ଈଶ୍ୱର ସ୍ୱର୍ଗକୁ ପଠାନ୍ତି । ଯେଉଁମାନେ ଅଧିକ କୁକର୍ମ କରିଥାନ୍ତି ସେମାନଙ୍କର ଆତ୍ମା ନରକକୁ ଯାଏ । ଅହୁର-ମଜଦାଙ୍କ ନ୍ୟାୟାଳୟରୁ ବିଚାର ପରେ ସବୁ ଆତ୍ମାମାନେ ଏକ ସେତୁ ପାରହୁଅନ୍ତି । ସେତୁ ପାର ହେବା ବେଳେ ପୁଣ୍ୟବାନ ଆତ୍ମାମାନଙ୍କୁ ସୁନ୍ଦରୀ ଅପ୍ସରାମାନେ ସ୍ୱର୍ଗକୁ ପାଛୋଟି ନିଅନ୍ତି । ଅପର ପକ୍ଷରେ ପାପାତ୍ମାମାନଙ୍କୁ ସେତୁ ପାର ହେବା ବେଳେ ଦୁଷ୍ଟ ବରାହ ଆକ୍ରମଣ କରି ନରକର ଗହ୍ୱରକୁ  ଠେଲି ଦେଇଥାଏ । ପାର୍ଶୀଧର୍ମରେ ଆତ୍ମା ମାନଙ୍କର ସ୍ୱର୍ଗବାସ ବା ନରକବାସ ଚିରନ୍ତନ ନୁହେଁ ।

ଇହୁଦୀ ଧର୍ମ ମୋଜେଶଙ୍କ ଆବିର୍ଭାବ ପରେ ଖ୍ରୀ.ପୂ. ଚତୁର୍ଦ୍ଦଶ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା ଓ ଏହା ଜିଉମାନଙ୍କର ଧର୍ମ । ଏହି ଧର୍ମର ବିଶ୍ୱାସ ଅନୁଯାୟୀ ବ୍ୟକ୍ତିର ମୃତ୍ୟୁ ପରେ ଆତ୍ମା କବରରେ ଅବସ୍ଥାନ କରେ । ଏହି ଧର୍ମରେ ଏକ ଅନ୍ତିମ

ବିଚାର ଦିବସ ଭାବନା ରହିଛି । ଅନ୍ତିମ ବିଚାର ଦିବସରେ ସବୁ ଆତ୍ମାମାନେ ଈଶ୍ୱରଙ୍କ ସମ୍ମୁଖକୁ ଆସିବେ ଈଶ୍ୱର ପୁଣ୍ୟାତ୍ମାମାନଙ୍କୁ ନିଜ ପାଖରେ ସବୁଦିନ ପାଇଁ ଆନନ୍ଦରେ ରଖିବେ, ପାପାତ୍ମାମାନଙ୍କୁ ଧ୍ୱଂସ କରିଦେବେ । ଏହି ଧର୍ମରେ ନରକର ଭାବନା ନାହିଁ ।

ଖ୍ରୀଷ୍ଟଧର୍ମ ଇହୁଦୀ ଧର୍ମାବଲମ୍ବୀ ମହାନ୍ କାରୁଣିକ ଓ ସଂସ୍କାରକ ଯୀଶୁ ଖ୍ରୀଷ୍ଟଙ୍କର ବିଚାରକୁ ନେଇ ପ୍ରଥମ ଶତାବ୍ଦୀରେ ପ୍ରଚାରିତ ହୋଇଥିଲା । ଏହି ଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମା ଅମର । ମୃତ୍ୟୁ ପରେ ଆତ୍ମା ରହେ । ଅନ୍ତିମ ବିଚାର ଦିବସରେ ଯୀଶୁ ଆସିବେ ଓ ପ୍ରତି ମନୁଷ୍ୟର ପାପ-ପୁଣ୍ୟର ବିଚାର କରିବେ । ଆତ୍ମାମାନେ ସଶରୀରରେ କବରରୁ ଆସି ଯୀଶୁଙ୍କ ବିଚାର ପାଇଁ ଉପସ୍ଥିତ ହେବେ । ପୁଣ୍ୟବନ୍ତ ଆତ୍ମାମାନଙ୍କୁ ସ୍ୱର୍ଗକୁ ପଠାଯିବ ଓ ପାପାତ୍ମାମାନଙ୍କୁ ନରକକୁ ପଠାଯିବ । ପୁଣ୍ୟବାନ ମାନେ ଚିରଦିନ ପାଇଁ ସ୍ୱର୍ଗରେ ରହିବେ ଓ ପାପୀମାନେ ଚିରଦିନ ପାଇଁ ନରକ ଯନ୍ତ୍ରଣାରେ କଷ୍ଟ ପାଇବେ । ଏହି ଧର୍ମ ବିଶ୍ୱାସ ଅନୁଯାୟୀ ମୃତ୍ୟୁପରେ ସବୁ ମଣିଷର ଆତ୍ମାମାନେ ବିଚାର ଦିବସ ପର୍ଯ୍ୟନ୍ତ ନିଜ କବର ଭିତରେ ମୃତ ଶରୀର ସହ ରହନ୍ତି ।

ଇଶଲାମ୍ ଧର୍ମ ଆଲ୍ଲାଙ୍କର ଦୂତ ପୈଗମ୍ବର ମହମ୍ମଦଙ୍କ ଦ୍ୱାରା ସପ୍ତମ ଶତାବ୍ଦୀରେ ପ୍ରଚାରିତ ହୋଇଥଲା । ଏହି ଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମାର ମୃତ୍ୟୁ ହୁଏ ନାହିଁ । ତେବେ ବ୍ୟକ୍ତିର ମୃତ୍ୟୁ ପରେ ଆତ୍ମା ଶରୀରରୁ ଯାଇ ଅନ୍ୟ ସ୍ଥାନରେ ରହେ । ଜଗତର ଅନ୍ତିମ ଦିବସ ପରେ ବିଚାର ଦିବସ ଆସିବ । ବିଚାର ଦିବସରେ କବରମାନଙ୍କରୁ ଶବମାନେ ଆସିବେ ଓ ସେମାନଙ୍କ ସହ ଜୀବାତ୍ମାର ପୁନର୍ମିଳନ ହେବ । ସମସ୍ତଙ୍କୁ ଦେବଦୂତମାନେ ଆଲ୍ଲାଙ୍କ ସମ୍ମୁଖକୁ ଆଣିବେ ଓ ସେଠାରେ ସେମାନଙ୍କର ବିଚାର ହେବ । ଯାହାର ପୁଣ୍ୟ ବେଶି ସିଏ ସ୍ୱର୍ଗକୁ ଯିବ, ଯାହାର ପାପ ବେଶି ସିଏ ନରକକୁ ଯିବ । କୋରାନରେ ସପ୍ତବିଧ ସ୍ୱର୍ଗ ଓ ସପ୍ତବିଧ ନରକର ସୁନ୍ଦର ବର୍ଣ୍ଣନା ରହିଛି । ଆତ୍ମାମାନଙ୍କର ସ୍ୱର୍ଗବାସ ବା ନରକବାସ ନିତ୍ୟ ।

ପାର୍ଶୀଧର୍ମ, ଇହୁଦୀଧର୍ମ, ଖ୍ରୀଷ୍ଟଧର୍ମ ଓ ଇଶଲାମ ଧର୍ମରେ ଜନ୍ମାନ୍ତର ଭାବନା ନାହିଁ । ପ୍ରତ୍ୟେକ ବ୍ୟକ୍ତି ମାତ୍ର ଥରଟିଏ ଜନ୍ମ ନିଏ, ମୃତ୍ୟୁପରେ ତାର ଜନ୍ମ ନାହିଁ । ତାର ଆତ୍ମା ବିଚାର ଦିବସ ପରେ ସ୍ୱର୍ଗବାସୀ ହୁଏ ବା ନରକାବାସୀ ହୁଏ କିମ୍ବା ମନ୍ଦ ଆତ୍ମାମାନେ ବିଲୁପ୍ତ ହୋଇଯାନ୍ତି । ପୁନଶ୍ଚ ଏହି ସବୁ ଧର୍ମମାନଙ୍କରେ କେବଳ ମନୁଷ୍ୟର ଆତ୍ମା ଥାଏ, ଇତର ପ୍ରାଣୀମାନଙ୍କର ଆତ୍ମା ନଥାଏ ବୋଲି ବିଶ୍ୱାସ କରାଯାଏ ।

ଭାରତ ଭୂଖଣ୍ଡରେ ଉଦ୍‌ଭବ ହୋଇଥିବା ଜୈନଧର୍ମ, ବୌଦ୍ଧଧର୍ମ, ଶିଖଧର୍ମ ଓ ହିନ୍ଦୁଧର୍ମ ପୁନର୍ଜନ୍ମବାଦରେ ବିଶ୍ୱାସ କରନ୍ତି । ଏହି ଧର୍ମମାନଙ୍କର ବିଶ୍ୱାସ ଅନୁଯାୟୀ ଆତ୍ମା ଅମର ହେଲେ ବି ମୋକ୍ଷ ବା ନିର୍ବାଣ ପାଇବା ପର୍ଯ୍ୟନ୍ତ ଏହା ଜନ୍ମ-ମୃତ୍ୟୁ ଚକ୍ରରେ ଘୂରି ବୁଲୁଥାଏ । ଜନ୍ମ, ଜନ୍ମପରେ ମୃତ୍ୟୁ, ମୃତ୍ୟୁ ପରେ ଜନ୍ମ ଏହିପରି ଏହା ଗତି କରୁଥାଏ

ଯେ ପର୍ଯ୍ୟନ୍ତ ଏହା ମୋକ୍ଷ ପ୍ରାପ୍ତ ହୋଇ ନାହିଁ । ତେବେ ଆତ୍ମାର ସ୍ୱରୂପ କ'ଣ, ମୋକ୍ଷ ମିଳିବା ପରେ ଆତ୍ମାର କ'ଣ ହୁଏ, ଏହାର ଅସ୍ତିତ୍ୱ ରହେ ନା ନାହିଁ ଏସବୁ ପ୍ରସଙ୍ଗ ଉପରେ କୌଣସି ସହମତି ନାହିଁ ।

ଜୈନଧର୍ମର ବିଶ୍ୱାସ ଅନୁଯାୟୀ ଆତ୍ମା ଏକ ସତ୍ତା । କୀଟଠାରୁ ମଣିଷ ପର୍ଯ୍ୟନ୍ତ ପ୍ରତ୍ୟେକ ଜୀବର ଆତ୍ମ-ସତ୍ତା ରହିଛି ଓ ଦୁଇଟି ଆତ୍ମ-ସତ୍ତା ଭିତରେ ଗୁଣଗତ ପାର୍ଥକ୍ୟ ନାହିଁ । ତେବେ ଜୈନଧର୍ମରେ ଈଶ୍ୱର ବିଶ୍ୱାସ ନାହିଁ । ଆତ୍ମା ମୋକ୍ଷ ପ୍ରାପ୍ତି ହେବା ଅର୍ଥ ଏହା ଅନନ୍ତ ଶକ୍ତି, ଅନନ୍ତ ଜ୍ଞାନ, ଅନନ୍ତ ଶ୍ରଦ୍ଧା ଓ ଅନନ୍ତ ଆନନ୍ଦ ପ୍ରାପ୍ତ ହେବା । ବୌଦ୍ଧଧର୍ମରେ ଆତ୍ମା ହେଉଛି ଚେତନାର ପ୍ରବାହ । ଏକ ନଦୀର ଜଳଧାରା ଯେପରି ଅବିରତ ପ୍ରବାହିତ, ବ୍ୟକ୍ତିର ଚେତନା ସହିପରି ସତ୍ତାବିହୀନ ଏକ ପ୍ରବାହ । ବୌଦ୍ଧଧର୍ମରେ ଆତ୍ମା ଏକ ଶାଶ୍ୱତ ସତ୍ତା ନୁହଁ, ଏହା କେବଳ ଏକ ପ୍ରବାହ । ଏଥିପାଇଁ ଏହାକୁ ଅନାତ୍ମବାଦ କୁହାଯାଏ ଓ ବୌଦ୍ଧଧର୍ମରେ ନିର୍ବାଣ ଏକ ଅବର୍ଣ୍ଣନୀୟ ଅବସ୍ଥା । ଜୈନଧର୍ମ ପରି ବୌଦ୍ଧଧର୍ମରେ ଈଶ୍ୱର ବିଶ୍ୱାସ ନାହିଁ । ଶିଖ୍ ଧର୍ମର ବିଶ୍ୱାସ ଅନୁଯାୟୀ ପ୍ରତ୍ୟେକ ପ୍ରାଣୀ ପାଖରେ ଚୈତନ୍ୟ ରହିଛି, ତେବେ ମନୁଷ୍ୟ ପାଖରେ ଚୈତନ୍ୟ ସହ ବିବେକ ରହିଛି । ଆତ୍ମା ଈଶ୍ୱରୀୟ ଚେତନାର ଅଙ୍ଗବିଶେଷ । ମୃତ୍ୟୁ ପରେ ଧର୍ମରାଜ ଈଶ୍ୱରଙ୍କ ଉପସ୍ଥିତିରେ ଜୀବର କର୍ମଫଳକୁ ମୂଲ୍ୟାୟନ କରି ତାର ମୁକ୍ତି ବା ପୁନର୍ଜନ୍ମର ସ୍ଥାନ ଓ ସ୍ଥିତି ବିଷୟରେ ନିଷ୍ପତ୍ତି ନିଅନ୍ତି । ହିନ୍ଦୁଧର୍ମରେ ଜନ୍ମାନ୍ତରବାଦ ଏକ ପ୍ରମୁଖ ଭାବନା । ତେବେ ଆତ୍ମାର ସ୍ୱରୂପ ନେଇ ଭାରତୀୟ ଦର୍ଶନଧାରାରେ ପରସ୍ପର-ବିରୋଧୀ ମତ ରହିଛି । ଗୋଟିଏ ଦର୍ଶନର ମତରେ ଆତ୍ମା ବହୁବିଧ ଓ ପ୍ରତ୍ୟେକ ବ୍ୟକ୍ତିର ଆତ୍ମା ଅନ୍ୟଠାରୁ ଭିନ୍ନ । ଆତ୍ମା ସ୍ୱରୂପରେ ଚେତନଶୀଳ ନୁହେଁ, ଏହା ସ୍ୱରୂପରେ ଜଡ । ମନର ସଂଯୋଗରେ ଆସିଲେ ଆତ୍ମା ଚେତନଶୀଳ ହୋଇଥାଏ । ଅର୍ଥାତ୍ ଚେତନଶୀଳତା ଆତ୍ମାର ଏକ ଆକସ୍ମିକ ଘଟଣା । ଅନ୍ୟ ଏକ ଭାରତୀୟ ଦର୍ଶନ ଅନୁଯାୟୀ ଚେତନା ଆତ୍ମାର ମୌଳିକ ଗୁଣ ଓ ଆତ୍ମା ସ୍ୱରୂପରେ ଆନନ୍ଦମୟ । ଆତ୍ମାମାନେ ସୃଷ୍ଟି ସମୟରେ ଈଶ୍ୱରଙ୍କଠାରୁ ପୃଥକ୍ ହୁଅନ୍ତି ଓ ପ୍ରଳୟ ସମୟରେ ଈଶ୍ୱରଙ୍କଠାରେ ବିଲୀନ ହୁଅନ୍ତି । ଅନ୍ୟଏକ ଦାର୍ଶନିକ ମତରେ ଆତ୍ମା ସ୍ୱରୂପରେ ବ୍ରହ୍ମ ଯାହା ବିଶୁଦ୍ଧ ଚୈତନ୍ୟ ଓ ଗୁଣରହିତ । ଅବିଦ୍ୟା ଯୋଗୁ ଆତ୍ମା ନିଜର ସ୍ୱରୂପକୁ ଜାଣିପାରେ ନାହିଁ, ଅବିଦ୍ୟା ଚାଲିଗଲେ ଆତ୍ମା ବ୍ରହ୍ମସହ ଅଭିନ୍ନ ହୋଇଯାଏ । ସବୁ ଆତ୍ମା ଏକ ଓ ଅଭିନ୍ନ ।

ବସ୍ତୁତଃ ଆତ୍ମା ଭାବନାକୁ ନେଇ ବିଭିନ୍ନ ଧର୍ମଧାରାରେ ନାନା କଳ୍ପନା ସ୍ଥାନ ପାଇଛି । ଯେହେତୁ ଏ ସବୁ କଳ୍ପନା, ଏହାର କୌଣସି ସତ୍ୟତା ବା ବସ୍ତୁନିଷ୍ଠତା ନାହିଁ । ଧର୍ମ ଭାବନା ସହ ଏହି କଳ୍ପନା ମାନ ସଂଶ୍ଳିଷ୍ଟ ହୋଇ ରହିଛି ।

(୨୯.୧.୨୦୧୫)



# ଦାର୍ଶନିକ ଚିନ୍ତନରେ ଆତ୍ମା

ଦର୍ଶନ ଏକ ବୌଦ୍ଧିକ ଜିଜ୍ଞାସା । ତେବେ ଦର୍ଶନର ସଂଜ୍ଞା, ବିଷୟବସ୍ତୁ ଓ ପରିସର ସମୟକୁ ସମୟ ବଦଳି ଚାଲିଛି । ଯେଉଁ ସମୟରେ ଚିନ୍ତାରାଜ୍ୟରେ ଯେଉଁ ବିଚାରରାଜିର ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଥାଏ, ସେହି ଭାବନା ସକଳର ତାର୍କିକ ମୂଲ୍ୟାୟନ ଦର୍ଶନ ପରିସରରେ ହୋଇଥାଏ । ବିଜ୍ଞାନ ଓ ଆଧୁନିକ ଦର୍ଶନର ଯୁଗ ଆସିବା ପୂର୍ବରୁ ଧର୍ମର ଗଭୀର ପ୍ରଭାବ ସବୁ ସଭ୍ୟତାରେ ରହିଥିଲା । ବୌଦ୍ଧିକ ଓ ସାମାଜିକ ସ୍ତରକୁ ଧର୍ମଚେତନା ନିୟନ୍ତ୍ରିତ କରିରଖିବା ଯୁଗରେ ଧର୍ମୀୟ ବିଶ୍ୱାସ ମାନଙ୍କୁ ଦର୍ଶନ ସ୍ତରରେ ତର୍କ ସମ୍ମତ ଭିତ୍ତି ଦେବାକୁ ପ୍ରୟାସ ହୋଇଥିଲା । ଧର୍ମର ତାତ୍ତ୍ୱିକ ସିଦ୍ଧାନ୍ତ ମାନଙ୍କୁ କିପରି ତର୍କଶୀଳ ଭାବେ ପ୍ରତିଷ୍ଠା କରାଯିବ ସେ ପାଇଁ ଦର୍ଶନ ବିଚାର ବ୍ୟକ୍ତ କରିଥିଲା । ଏହି ପରିପ୍ରେକ୍ଷୀରେ ଧର୍ମ ଓ ଦର୍ଶନର ସମ୍ବନ୍ଧ ଆଧୁନିକ ଦର୍ଶନର ବିକାଶ ପର୍ଯ୍ୟନ୍ତ ଅତି ନିବିଡ଼ ଥିଲା । ଅଧିକାଂଶ ଧର୍ମରେ ଈଶ୍ୱର ଭାବନା ଏକ ପ୍ରମୁଖ ବିଶ୍ୱାସ ହେବା ମନେହୁଏ । ବସ୍ତୁତଃ ଈଶ୍ୱରଙ୍କ ଅସ୍ତିତ୍ୱକୁ ତର୍କଶୀଳ ଆଧାରରେ ପ୍ରମାଣ କରିବାକୁ ଗମ୍ଭୀର ପ୍ରୟାସ ହୋଇଥିଲା । ଏଥି ପାଇଁ ମଧ୍ୟଯୁଗୀୟ ଦାର୍ଶନିକମାନେ କେତେ କେତେ ଭାବଗର୍ଭକ ଯୁକ୍ତିର ଅବତାରଣା କରିଥିଲେ । ତେବେ ବିଚାରବୋଧର ବିକାଶ ଓ ଦାର୍ଶନିକ ଚିନ୍ତନର ଗଭୀରତାରୁ ପରେ ଏହି ଯୁକ୍ତିଗୁଡିକ କିପରି ତ୍ରୁଟିଯୁକ୍ତ ଓ ଅବୈଧ ତାହା ସେହି ଦର୍ଶନ ପରିସରରେ ବେଶ୍ ଚର୍ଚ୍ଚା ହେଲା । ଈଶ୍ୱରଙ୍କ ଅସ୍ତିତ୍ୱକୁ ଯୁକ୍ତିଶୀଳ ଆଧାରରେ ଯେ ପ୍ରମାଣ କରିହେବ ନାହିଁ ଏହା ଦର୍ଶନରେ ସାର୍ବଜନୀନ ଭାବେ ଗୃହୀତ ହେବାକୁ ଲାଗିଲା । ଈଶ୍ୱର ପରି ଆତ୍ମା ଯେ ଏକ ସତ୍ତା ଭାବେ ସଚେତନ ସ୍ଥିତିରେ ରହେ ଏହା ବି ଧର୍ମର ଏକ ମୌଳିକ ବିଶ୍ୱାସ ଅଟେ । ଅବଶ୍ୟ ଆତ୍ମାର ସ୍ୱରୂପ, ନିର୍ଦ୍ଧାରିତ ଭବିଷ୍ୟ ଓ ପ୍ରକୃତି ଧର୍ମମାନଙ୍କରେ ପୃଥକ୍ ହେଲେ ମଧ୍ୟ ଧର୍ମମାନଙ୍କରେ ଆତ୍ମାର ସତ୍ତା ଓ ଅସ୍ତିତ୍ୱକୁ ନେଇ ବିଶ୍ୱାସ ରହିବା ଦେଖାଯାଏ । ଧର୍ମର ଏହି ବିଶ୍ୱାସକୁ ଏକ ଯୁକ୍ତି ସଂଗତ ଆଧାର ଦେବାକୁ ଦର୍ଶନ ପରିସରରେ ଏକଦା ପ୍ରୟାସ ହୋଇଥିଲା । ଏହି ପ୍ରୟାସ କିପରି ଅଯୌକ୍ତିକ ଓ ଅସଂଗତ ତାହାର ସାମାନ୍ୟ ଆଲୋଚନା ଆମର ଏଠାରେ ଲକ୍ଷ୍ୟ ।

ଧର୍ମର ବିଶ୍ୱାସକୁ ଆଧାରକରି ଦର୍ଶନରେ ଏହି ବିଚାର ବ୍ୟକ୍ତ ହେଲା ଯେ

ପ୍ରତ୍ୟେକ ବ୍ୟକ୍ତି ଦୁଇଟି ସତ୍ତାର ସଂଯୋଗ । ବ୍ୟକ୍ତିର ଶରୀର ଗୋଟିଏ ସତ୍ତା ଓ ଆତ୍ମା ଆଉ ଗୋଟିଏ ସତ୍ତା । ଶରୀର ଅବୟବ ଯୁକ୍ତ, ଯାହା ଅବୟବ ଯୁକ୍ତ ତାହା ବିଭାଜ୍ୟ ଓ ଧ୍ୱଂସ ସାପେକ୍ଷ । ଆତ୍ମା ଅବୟବରହିତ, ସରଳ ଓ ଅଣୁବିଶିଷ୍ଟ ସୁତରାଂ ଏହା ଶାଶ୍ୱତ ଓ ଅମର । ଶରୀର ଆତ୍ମାର ଅଧିଷ୍ଠାନ ମାତ୍ର । ଶରୀର ଓ ଆତ୍ମା ଦୁଇଟି ପୃଥକ୍ ସତ୍ତା ଓ ତତ୍ତ୍ୱ । ଶରୀର ହେଉଛି ଜଡ ଓ ଏହାର ମୌଳିକ ଲକ୍ଷଣ ହେଉଛି ବିସ୍ତୃତି ବା ସ୍ଥିତି । ଆତ୍ମା ଯଦିବି ଏକ ସତ୍ତା ଏହାର ମୌଳିକ ଲକ୍ଷଣ ହେଉଛି ଚେତନା । ଯାହା ଚେତନଯୁକ୍ତ ତାହାର ବିସ୍ତୃତି ନାହିଁ, ଯାହାର ବିସ୍ତୃତି ଅଛି ତାହା ଚେତନା ରହିତ ବା ଅଚେତନ । ପ୍ରତ୍ୟେକ ବ୍ୟକ୍ତି ଦୁଇଟି ପୃଥକ୍ ଓ ବିପରୀତ ସତ୍ତାର ସଂଯୋଗ । କେତେକ ଧର୍ମଗ୍ରନ୍ଥରେ ନାନା ଆଳଙ୍କାରିକ ଭାଷାରେ କୁହାଗଲା ଯେ ଆତ୍ମାକୁ ଅଗ୍ନି ଦାହ କରିପାରିବ ନାହିଁ, ଅସ୍ତ୍ର କାଟିପାରିବ ନାହିଁ, ଜଳ ଭିଜାଇ ପାରିବ ନାହିଁ, ବାୟୁ ଶୁଖାଇ ପାରିବ ନାହିଁ, କାରଣ ଏହା ନିତ୍ୟ ଓ ସନାତନ ।

ଧର୍ମ ପରିସରରେ 'ଆତ୍ମା' ଶବ୍ଦର ପ୍ରୟୋଗ ହେବା ବେଳେ ଦର୍ଶନ, ମନୋବିଜ୍ଞାନ, ଚିକିତ୍ସା ବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ 'ମନ' ଶବ୍ଦର ପ୍ରୟୋଗ ହେବା ଦେଖାଯାଏ । କେତେକ ଧର୍ମରେ ଆତ୍ମା ଓ ମନ ଭିତରେ ପାର୍ଥକ୍ୟ କରାଗଲେ ମଧ୍ୟ ବୈଜ୍ଞାନିକ ବିଶ୍ଳେଷଣ ପୃଷ୍ଠଭୂମିରେ ଚେତନାର ବାହାକ ଭାବେ ମନକୁ ନିଆଯାଏ ଓ ସେହି ଦୃଷ୍ଟିରୁ ଆତ୍ମା ଓ ମନକୁ ସମାର୍ଥ ଭାବେ ଗ୍ରହଣ କରାଯାଏ । ଦର୍ଶନ ପରିସରରେ ଏକ ଗମ୍ଭୀର ପ୍ରଶ୍ନ ଉଠିଛି ଯେ ମନ ଚେତନାଯୁକ୍ତ ଓ ଶରୀର ଚେତନାରହିତ ହୋଇଥିବାରୁ ଶରୀର ଓ ମନ ଭିତରେ କିପରି ସମ୍ବନ୍ଧ ସ୍ଥାପିତ ହୁଏ ? ଶରୀର ଓ ମନ କିପରି ସମ୍ବନ୍ଧିତ ? ଏହି ପ୍ରଶ୍ନକୁ ଆଧାର କରି ନାନା କାଳ୍ପନିକ ପ୍ରକଳ୍ପର ଅବତାରଣା ଦେଖିବାକୁ ମିଳେ । ଏହା ଏକ ସାଧାରଣ ଅନୁଭବ ଯେ ମାନସିକ ଅବସ୍ଥା ଶରୀରକୁ ପ୍ରଭାବିତ କରିଥାଏ ଓ ଶାରୀରିକ ଘଟଣା ମନକୁ ଆକ୍ରାନ୍ତ କରିଥାଏ । ମନ ଓ ଶରୀର ଯଦି ଦୁଇଟି ପୃଥକ୍ ଓ ବିପରୀତ ସତ୍ତା, ତେବେ ଉଭୟଙ୍କ ଭିତରେ ସଂପର୍କ ନାନା ଜଟିଳ ସମସ୍ୟା ଉଦ୍ରେକ କରାଇବ । ମନକୁ ଯଦି ମଣିଷ ମୁଣ୍ଡ ଭିତରର ଏକ ଗୋପନୀୟ ସତ୍ତା ବୋଲି ଗ୍ରହଣ କରାଯିବ ଓ ଭାବିବା, ଚିନ୍ତାକରିବା, କଳ୍ପନା କରିବା ଇତ୍ୟାଦି ମାନସିକ କାର୍ଯ୍ୟକୁ ମୁଣ୍ଡ ଭିତରର ନିଭୃତ କାର୍ଯ୍ୟ ବୋଲି ଧରାଯିବ ତେବେ ଏଥିରୁ ବହୁ ଜଟିଳ ସମସ୍ୟା ସୃଷ୍ଟି ହେବ । କାରଣ ସେପରି ହେଉଥିଲେ କେହି କାହାର ଭାବନାକୁ ଜାଣିବା ସମ୍ଭବ ହେବ ନାହିଁ ଏହି ଦୃଷ୍ଟିରୁ ଯେ ଜଣଙ୍କ ମସ୍ତିଷ୍କରେ ପ୍ରବାହିତ ଗୋପନୀୟ କାର୍ଯ୍ୟକୁ ଅନ୍ୟ ଜଣେ ନିରୀକ୍ଷଣ କରିବା ସମ୍ଭବ ନୁହେଁ । ଶରୀର ପରି ମନକୁ ଏକ ସତ୍ତା ଭାବରେ ଗ୍ରହଣ କରିବା ଏକ ଗଭୀର ତାର୍କିକ ଦୋଷର ପରିଣତି ଯାହାକୁ ଦର୍ଶନ ପରିଭାଷାରେ 'ବର୍ଗ-ମିଶ୍ରଣ ଦୋଷ' ବା କାଟେଗୋରି ମିଷ୍ଟେକ କୁହାଯାଏ । ଶରୀର ଯେଉଁପରି ଏକ ସତ୍ତା ମନ ବା ଆତ୍ମାକୁ ସେହିପରି ଏକ ଅଶରୀର ସତ୍ତା ବୋଲି କଳ୍ପନା କରିବା ଦ୍ୱାରା ବହୁ ଜଟିଳ

ସମସ୍ୟା ବୌଦ୍ଧିକ ସ୍ତରରେ ମୁଣ୍ଡ ଟେକିବ । ମନ ଓ ଶରୀରକୁ ସତ୍ତା ବୋଲି ସ୍ୱୀକାର କଲେ ଉଭୟ ଏକ-ଶ୍ରେଣୀୟ ଭାବନା ହୋଇଯିବେ । ଏକ ଶ୍ରେଣୀୟ ଭାବନା ମାନଙ୍କ ବିଷୟରେ ଏକା ପ୍ରକାରର ପ୍ରଶ୍ନ ପଚରା ଯାଇପାରିବ, କିନ୍ତୁ ପୃଥକ୍ ଶ୍ରେଣୀର ପ୍ରତ୍ୟୟମାନଙ୍କ ବିଷୟରେ ଏହା କରାଯାଇପାରିବ ନାହିଁ । ତାଙ୍କ ଶରୀରର ଉଚ୍ଚତା କେତେ ବା ରଙ୍ଗ କ'ଣ ପଚରାଯାଇ ପାରିବ, କିନ୍ତୁ ତାଙ୍କ ମନ ବା ଆତ୍ମାର ରଙ୍ଗ କ'ଣ ଓ ଉଚ୍ଚତା କେତେ ଅତ୍ୟନ୍ତ ଅବାନ୍ତର ପ୍ରଶ୍ନ ହେବ । ବସ୍ତୁତଃ ଶରୀର ଓ ମନ ଏକ-ଶ୍ରେଣୀୟ ପ୍ରତ୍ୟୟ ନୁହନ୍ତି । ଶରୀର ଓ ମନକୁ ଦୁଇଟି ପୃଥକ୍ ସତ୍ତା ବୋଲି ଗ୍ରହଣ କରିବା ଯୋଗୁଁ କେତେ ଜଟିଳ ସମସ୍ୟା ମାନ ଚିନ୍ତା ସ୍ତରରେ ଆସେ ତାହା ଦାର୍ଶନିକ ଅନୁଶୀଳନରେ ଦର୍ଶାଯାଇଛି ।

ଯଦି ବି ଧର୍ମ ଦୃଷ୍ଟିରୁ ଆତ୍ମାର ଅସ୍ତିତ୍ୱକୁ ସ୍ୱୀକାର କରାଯାଏ ଓ ଏହା ମଧ୍ୟ ବିଶ୍ୱାସ କରାଯାଏ ଯେ ମୃତ୍ୟୁ ପରେ ଆତ୍ମାର ଅସ୍ତିତ୍ୱ ରହେ, ତେବେ ପ୍ରଶ୍ନ ହେବ ଯେ ଆତ୍ମାର ତାଦାତ୍ମ୍ୟ ବା ବ୍ୟକ୍ତିସତ୍ତାକୁ କିପରି ଚିହ୍ନିତ କରାଯିବ ? ଜଣେ ବ୍ୟକ୍ତିକୁ ସେହି ବ୍ୟକ୍ତି ବୋଲି ଚିହ୍ନିତ କରିବାର ଏକ ମାତ୍ର ମୁଖ୍ୟ ମାନଦଣ୍ଡ ହେଉଛି ତାଙ୍କର ଅବିଚ୍ଛିନ୍ନ ଶାରୀରିକ ସ୍ଥିତି । ପ୍ରତ୍ୟେକ ବ୍ୟକ୍ତି ଅନ୍ୟମାନଙ୍କଠାରୁ ପୃଥକ୍, କାରଣ ପ୍ରତ୍ୟେକ ବ୍ୟକ୍ତିର ଏକ ସ୍ୱତନ୍ତ୍ର ଶାରୀରିକ ବିସ୍ତୃତି ରହିଛି । ପ୍ରତ୍ୟେକ ବ୍ୟକ୍ତି ଜନ୍ମ ପରଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯାହା ସବୁ ମାନସିକ ସାମର୍ଥ୍ୟ, କ୍ରିୟା ଓ ଆବେଗ ପ୍ରକାଶ କରିଥାଏ ଏହା ତାର ଶାରୀରିକ ସ୍ଥିତି ଦେଇ ଅଭିବ୍ୟକ୍ତ ହେଉଥାଏ । ଶାରୀରିକ ବା ସେପରି କିଛି ବିସ୍ତୃତି ଅଭାବରେ ଆତ୍ମାମାନଙ୍କର ଅବସ୍ଥିତିକୁ ପରସ୍ପରଠାରୁ ପୃଥକ କରାଯିବାର ମାନଦଣ୍ଡ କ'ଣ ହେବ ? କ, ଖ, ଗ....ବ୍ୟକ୍ତି ବିଶେଷ ହେଲେ ଶାରୀରିକ ବା ବିସ୍ତୃତିଗତ ସ୍ଥିତି ଅଭାବରେ ସେମାନଙ୍କର ଆତ୍ମାମାନଙ୍କୁ କିପରି ଚିହ୍ନିତ କରାଯିବ ? ଜଣେ ବ୍ୟକ୍ତିର ମୃତ୍ୟୁ ପରେ ତାର ଯେ ଆତ୍ମା ରହୁଛି ତାହା କୌଣସି ପର୍ଯ୍ୟବେକ୍ଷଣୀୟ ଆଧାର ଉପରେ ପ୍ରତିଷ୍ଠିତ ନୁହେଁ, ବରଂ କେବଳ ଧର୍ମୀୟ ବିଶ୍ୱାସ ଆଧାରରେ ସ୍ୱୀକାର କରାଯାଉଛି । 'ଆତ୍ମା ଏକ ଚେତନ ସତ୍ତା ଓ ଏହାର ବିସ୍ତୃତିବିହୀନ ସ୍ଥିତି ରହିଛି' କେବଳ କଳ୍ପନା ମାତ୍ର । ଏହା ପଛରେ ନା ରହିଛି ପର୍ଯ୍ୟବେକ୍ଷଣୀୟ ଆଧାର ନା ରହିଛି ଯୁକ୍ତିଶୀଳ ଭିତ୍ତି । ଯାହାର ସ୍ଥିତିଶୀଳତା ନାହିଁ ତାହାର ଗତିଶୀଳତା କୁଆଡୁ ଆସିବ ? ଆତ୍ମା ଏକ ଶରୀରରୁ ଯାଇ ଅନ୍ୟ ଶରୀର ଭିତରେ ପ୍ରବେଶ କରିବ, ସ୍ୱର୍ଗକୁ ଯିବ ନା ନରକଗାମୀ ହେବ ଭାବନାକୁ ଏକ ବିସ୍ତୃତିହୀନ ଓ ସ୍ଥିତିହୀନ ସତ୍ତା ପାଖରେ କିପରି ବୁଝାଯାଇ ପାରିବ ? ଏକ ବିସ୍ତୃତିହୀନ ସତ୍ତାର ଗତିଶୀଳତା ଯେ ଅବାନ୍ତର ଏହା ଦାର୍ଶନିକ ବିଶ୍ଳେଷଣରୁ ସ୍ପଷ୍ଟ ହୋଇଥାଏ ।

ବିଜ୍ଞାନ ମତରେ କୋଟି କୋଟି ବର୍ଷ ତଳେ ପ୍ରକୃତିରେ ଏକ କୋଷୀ ସଜୀବ ପ୍ରାଣୀର ଉଦ୍ଭବ ହୋଇଛି । ଏକ କୋଷୀ ଜୀବମାନଙ୍କଠାରୁ ଲକ୍ଷ ଲକ୍ଷ ବର୍ଷର ବିବର୍ତ୍ତନ ପ୍ରକ୍ରିୟା ଓ ପ୍ରାକୃତିକ ସନ୍ତୁଳନ ମଧ୍ୟ ଦେଇ ଆଜିର ଜୀବଜଗତ ସମ୍ଭବ ହୋଇଛି । ପ୍ରତ୍ୟେକ

# ଜୀବନ ଅନ୍ୱେଷା

ପ୍ରାଣୀର ଶରୀରରେ ଅସଂଖ୍ୟ ଜୀବକୋଷ ରହିଛି । ଜୀବକୋଷ ମଧ୍ୟରେ ସଂପନ୍ନ ହେଉଥିବା ଅକ୍ସିଡେସନ, ଶ୍ୱାସକ୍ରିୟା ଓ ରକ୍ତସଞ୍ଚାଳନ ଯୋଗୁଁ ଏକ ପ୍ରାଣୀ ଜୀବିତ ରହିଛି । ଏକ ପ୍ରାଣୀ ପରାଙ୍ଗପୁଷ୍ଟ ଭାବେ ମାତୃଗର୍ଭରେ ଜୀବନ ଆରମ୍ଭ କରେ । ଜନ୍ମପରଠାରୁ ଏକ ପ୍ରାଣୀର ଜୀବକୋଷ ନଷ୍ଟ ହେଉଥାଏ ଓ ନୂତନ କୋଷର ସୃଷ୍ଟିରେ ତାହାର ବୃଦ୍ଧି ହେଉଥାଏ । ଯୁବକ ଅବସ୍ଥାରେ କୋଷର ମୃତ୍ୟୁ ତୁଳନାରେ କୋଷର ସୃଷ୍ଟି ଅଧିକ ହେଉଥାଏ, ଆସ୍ତେ ଆସ୍ତେ ଏହା ସମାନ ସ୍ତରକୁ ଆସି ପରେ କୋଷର ମୃତ୍ୟୁହାର ଅଧିକ ହୋଇଚାଲେ । ଯେତେବେଳେ ଶରୀର କୌଣସି ନୂତନ କୋଷ ସୃଷ୍ଟି କରିବାକୁ ସକ୍ଷମ ହୁଏ ନାହିଁ ବା କୋଷ ଜୀବିତ ରହେ ନାହିଁ, ସେତେବେଳେ ବ୍ୟକ୍ତି ଭିତରେ ଚାଲୁଥିବା ରାସାୟନିକ କ୍ରିୟା ଓ ମସ୍ତିଷ୍କର କାର୍ଯ୍ୟ ଅଚଳ ସ୍ତରକୁ ଚାଲିଆସେ ଓ ଏହାକୁ ମୃତ୍ୟୁ କୁହାଯାଏ । ଏପରିକି ମୃତ୍ୟୁ ପରେ ଶରୀରର କୌଣସି ଅଙ୍ଗ ଅନ୍ୟ ବ୍ୟକ୍ତିର ଶରୀରରେ ରୋପଣ କରାଯାଇ ପାରିଲେ ସେଠାରେ ତାହା ଅନ୍ୟ ଶରୀରର କୋଷଦ୍ୱାରା ପୁଷ୍ଟ ହୋଇ କାର୍ଯ୍ୟକରେ । ଜୀବନକୁ ଅଗ୍ନି ସାଦୃଶ୍ୟରେ ବୁଝାଯାଇପାରେ । କୌଣସି ଇନ୍ଧନ ବା ମହମବତି ଜଳିଲେ ନିଆଁ ସୃଷ୍ଟି ହୁଏ, ଇନ୍ଧନ ଅଭାବରେ ନିଆଁର ଉତ୍ପତ୍ତି ସମ୍ଭବ ନୁହେଁ । ଅମ୍ଳଜାନ, ଉତାପ ଓ ହାଇଡ୍ରୋକାର୍ବନ ମଧ୍ୟରେ ରାସାୟନିକ କ୍ରିୟା ଯୋଗୁ ଇନ୍ଧନର ଦହନ ସମ୍ଭବ ହୋଇଥାଏ । ଏହି ପ୍ରକ୍ରିୟା ବନ୍ଦ ହେଲେ ଇନ୍ଧନ ଜଳେ ନାହିଁ ଓ ପୁନଶ୍ଚ ଆରମ୍ଭ ହେଲେ ଏହା ଜଳିଥାଏ । ଠିକ୍ ସେହିପରି ଶରୀର ଭିତରେ ସଂଘଟିତ ହେଉଥିବା ଅକ୍ସିଡେସନ, ରକ୍ତ ସଞ୍ଚାଳନ, ଶ୍ୱାସକ୍ରିୟାଦ୍ୱାରା ଜୀବନ ରହିଥାଏ, ଏହାର ଅଭାବରେ ମୃତ୍ୟୁ ହୁଏ । ଜୀବନ ଓ ମୃତ୍ୟୁ ଶରୀରର ରାସାୟନିକ ପ୍ରକ୍ରିୟାର ପରିଣାମ । ଜୀବନ ଶରୀର ଓ ଆତ୍ମାର ସଂଯୋଗ ନୁହଁ ଓ ମୃତ୍ୟୁ ଶରୀର ଓ କାଳ୍ପନିକ ଆତ୍ମାର ପୃଥକୀକରଣ ନୁହଁ ।

ଏକ ବୃକ୍ଷ, କୀଟ ବା ମଣିଷ ସମସ୍ତଙ୍କ ପାଖରେ ଜୀବନ ରହିଛି, କାରଣ ସମସ୍ତଙ୍କ ପାଖରେ ଜୀବକୋଷ ରହିଛି । ତେବେ ମଣିଷ ପାଖରେ ମସ୍ତିଷ୍କ ଓ ସ୍ନାୟବିକ କ୍ରିୟା ଯୋଗୁ ସେ ବିଚାର ବୁଦ୍ଧି ସଂପନ୍ନ ହୋଇପାରିଛି । ଏହା ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଧାରାରେ ସମ୍ଭବ ହୋଇଛି, କୌଣସି ଆତ୍ମାର ଉପସ୍ଥିତି ଯୋଗୁ ନୁହେଁ । ଜୀବନ, ମନ ବା ଆତ୍ମା କୌଣସି ସ୍ୱତନ୍ତ୍ର ସତ୍ତାକୁ ବୁଝାଏ ନାହିଁ, ଏସବୁ ଏକ ପ୍ରକ୍ରିୟାକୁ ବୁଝାଏ । ମୋଟ ଉପରେ ଅବିନାଶୀ ଆତ୍ମାର ଭାବନା ଏକ ଧାର୍ମିକ ବିଶ୍ୱାସ, ଏହା ପାଖାତରେ କୌଣସି ଯୁକ୍ତିଶୀଳ, ତଥ୍ୟଭିତ୍ତିକ ବା ବୈଜ୍ଞାନିକ ଆଧାର ନାହିଁ । ପୁନଶ୍ଚ ଧର୍ମମାନଙ୍କ ଭିତରେ ଥିବା ବିଶ୍ୱାସ ସମାନ ନୁହଁ ବରଂ ପରସ୍ପର-ବିରୋଧୀ ।

(୪.୨.୨୦୧୫)



# ମାନବବାଦୀ ଘୋଷଣାପତ୍ର

ଆନ୍ତର୍ଜାତିକ ସଙ୍ଗଠନ "ଇଣ୍ଟରନେସନାଲ ହ୍ୟୁମାନିଷ୍ଟ ଏଣ୍ଡ ଏଥିକାଲ ୟୁନିଅନ" (ଆଇ.ଏଚ.ଇୟୁ.) ର ପ୍ରମୁଖ ସଭ୍ୟ ପଲ କର୍ଜ (୧୯୨୫-୨୦୧୨) କେତେକ ସହଯୋଗୀଙ୍କ ସହ ମାନବବାଦୀ ଘୋଷଣା (ହ୍ୟୁମାନିଷ୍ଟ ମାନିଫେଷ୍ଟୋ) ନାମରେ ଏକ ଦଲିଲ ପ୍ରସ୍ତୁତ କରିଥିଲେ । 'ମାନବବାଦ'ର ବିଭିନ୍ନ ଦିଗର ଉପରେ ଏହା ଏକ ଚିନ୍ତାମୂଳକ ଆଦର୍ଶ ଘୋଷଣାନାମା କହିଲେ ଅତ୍ୟୁକ୍ତି ହେବନାହିଁ । ଏକ ଉନ୍ନତ ଓ ପ୍ରୀତିପୂର୍ଣ୍ଣ ବିଶ୍ୱର ସ୍ୱପ୍ନ ଏହି ଘୋଷଣାନାମାରେ ପ୍ରତିଫଳିତ । ମାନବିକ ଅଧିକାର ଉପରେ ଯେପରି ୟୁନିଭର୍ସାଲ ଡିକ୍ଲାରେସନ ଅଫ ହ୍ୟୁମାନ ରାଇଟ' ଏକ ସୁନ୍ଦର ଦଲିଲ, ସେହିପରି ମାନବବାଦର ପ୍ରସାର ପାଇଁ ହ୍ୟୁମାନିଷ୍ଟ ମାନିଫେଷ୍ଟୋ ଏକ ଚିନ୍ତାଦ୍ୟୋତକ ଘୋଷଣାନାମା । ଏହି ଦୁଇଟି ଘୋଷଣାନାମାରେ ଯେଉଁ ସଭ୍ୟ, ମାନବିକ ଓ ସାର୍ବଜନୀନ ଆଦର୍ଶର ପ୍ରତିଫଳନ ଦେଖିବାକୁ ମିଳେ ତାହା ମାନବଜାତିର ବୌଦ୍ଧିକ ଉତ୍କର୍ଷର ସ୍ୱାକ୍ଷର ବହନ କରେ । ଚିନ୍ତାରାଜ୍ୟରେ ଏହି ଆଦର୍ଶ ଗୁଡିକ ଆମର ଲକ୍ଷ୍ୟ ହୋଇପାରିଛି । ହୁଏତ ଲକ୍ଷ୍ୟ ଗୁଡିକ ଆମ ପୃଥିବୀରେ ବାସ୍ତବରେ ପ୍ରତିଫଳିତ ହୋଇ ପାରିନାହିଁ । ତେବେ ଆମେ ଯେ ଚିନ୍ତାରାଜ୍ୟରେ ସେହି ଲକ୍ଷ୍ୟକୁ ଆମର ସୁଚିନ୍ତିତ ଆଦର୍ଶ ଭାବରେ ସ୍ୱୀକାର କରିଛେ ଓ ସେହି ଲକ୍ଷ୍ୟ ସାଧନ ଦିଗରେ ଅଗ୍ରସର ହେବାକୁ ଅନ୍ତରାଷ୍ଟ୍ରୀୟ, ରାଷ୍ଟ୍ରୀୟ ଓ ବିଭିନ୍ନ ସଙ୍ଗଠନ ମାଧ୍ୟମରେ ପ୍ରୟାସ ପାଇଁ ପାଦ ବଢ଼ାଇଛେ ଏହା ମାନବ ସଭ୍ୟତାର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ବିଶ୍ୱ ଜାତିସଂଘ ମାନବିକ ଅଧିକାରର ବିଶ୍ୱ ଘୋଷଣାକୁ ୧୯୪୮ ରୁ ଆନ୍ତର୍ଜାତିକ ସ୍ୱୀକୃତି ଦେଇଥିଲେ ବି ଏବେ ବି ମାନବିକ ଅଧିକାରର ଉଲ୍ଲଙ୍ଘନ ବିଭିନ୍ନ ସମାଜରେ ହେଉଛି । ସେହିପରି ବିଶ୍ୱ ସ୍ତରରେ ଆଇ.ଏଚ.ଇୟୁ. ଯେଉଁ ଦଲିଲଟି ପ୍ରସ୍ତୁତ କରିଛି ତାହା ବି ଏକ ସୁନ୍ଦର, ନ୍ୟାୟପୂର୍ଣ୍ଣ ଓ ପ୍ରୀତିପୂର୍ଣ୍ଣ ବିଶ୍ୱର ସ୍ୱପ୍ନ ମଣିଷ ସମାଜ ପାଖରେ ଉପସ୍ଥାପନ କରିଛି ।

ମାନବିକ ଅଧିକାରର ବିଶ୍ୱଘୋଷଣାନାମା ହେଉ ବା ମାନବବାଦୀ ଘୋଷଣାପତ୍ର ହେଉ, ପ୍ରତ୍ୟେକର ପ୍ରଥମ ଧାରାଟିରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ସବୁ ମଣିଷ ସେମାନଙ୍କର ସ୍ୱାଭିମାନ, ଆତ୍ମମର୍ଯ୍ୟାଦା ଓ ଅଧିକାର ଦୃଷ୍ଟିରୁ ସମାନ ଓ ମଣିଷ ମଣିଷ ଭିତରେ ଭେଦଭାବ ସ୍ୱୀକାର କରିବା ଏକ ଅମାନବିକ ଓ ଏପରିକି ଅନୈତିକ ଘଟଣା । ପ୍ରତ୍ୟେକ ମଣିଷର ଆତ୍ମମର୍ଯ୍ୟାଦା ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ଶିକ୍ଷା ଲାଭ କରିବା, ସମ୍ମାନର ସହ ବଞ୍ଚିବା ଓ ମାନବିକ ଅଧିକାର ଉପଭୋଗ କରିବା ତାହାର ଏକ ପ୍ରାକୃତିକ ଅଧିକାର । ଏହି ବିଚାରବୋଧ ସଭ୍ୟତାର କ୍ରମବିକାଶର ଇତିହାସରେ ବହୁ ପରେ ସୃଷ୍ଟି ହୋଇଛି । ବିଶେଷକରି ୟୁରୋପୀୟ ନବ ଜାଗରଣ ଯୁଗ ପରେ ଯେଉଁ 'ମାନବ-କୈନ୍ଦ୍ରିକ' ଓ ଇହଲୋକଭିତ୍ତିକ ଜୀବନ ଦର୍ଶନର ବିଚାର ଆରମ୍ଭ ହେଲା, ତାହାର ଏକ ଅପରିହାର୍ଯ୍ୟ ସିଦ୍ଧାନ୍ତ ଭାବେ ଏହି ମୂଲ୍ୟବୋଧର ସୂତ୍ରପାତ ହେଲା । ଧାର୍ମିକ ଆବେଗ ଥିବା ସମାଜରେ ଏବେ ବି ମଣିଷର ମୂଲ୍ୟକୁ ପ୍ରାଧାନ୍ୟ ଦିଆଯାଏ ନାହିଁ । ଲିଙ୍ଗଭେଦ, ଜାତିଭେଦକୁ ସାମାଜିକ ସ୍ତରରେ ସ୍ୱୀକୃତି ଦେବାର ଧାର୍ମିକ ଆବେଗ କେତେକ ସମାଜରେ ଏବେ ବି ବଳବତ୍ତର ରହିଛି । ଜନ୍ମ ଆଧାରିତ ଭେଦଭାବମୂଳକ ଜାତି ବ୍ୟବସ୍ଥା ଓ ଲିଙ୍ଗଭେଦ ଜନିତ ନାରୀ-ପୁରୁଷ ବୈଷମ୍ୟ ଏବେ ବି କେତେକ ରାଷ୍ଟ୍ରରେ ଜନମାନସରେ ଦୃଢ଼ ରହିଛି । ଧାର୍ମିକ ବିଚାରବୋଧର ପ୍ରଭାବ ଥିବା ସାମାଜିକ ବ୍ୟବସ୍ଥା ବ୍ୟକ୍ତି ମର୍ଯ୍ୟାଦାବୋଧ, ସମତା ଓ ମୈତ୍ରୀଭାବନା ଜନିତ ଆଦର୍ଶଠାରୁ ବହୁ ଦୂରରେ ରହିଛି ।

ମାନବବାଦୀ ବିଚାରବୋଧରେ ପ୍ରଶ୍ନ ଉଠିଥାଏ- ଜୀବନର ଗୁଣାତ୍ମକ ମୂଲ୍ୟ କେଉଁଥିରେ ନିହିତ ? ଜୀବନର ଅର୍ଥ ଓ ଲକ୍ଷ୍ୟ କିପରି ରୂପ ନିଏ ? ବିଭିନ୍ନ ଧର୍ମ ଓ ତାତ୍ତ୍ୱିକ ଅବବୋଧରେ ଜୀବନର ଲକ୍ଷ୍ୟ ନେଇ କେତେ କେତେ ପାରଲୌକିକ ସ୍ୱପ୍ନର ଚିତ୍ର ରହିଛି । ମୁକ୍ତି, ମୋକ୍ଷ, ନିର୍ବାଣ, ଈଶ୍ୱର ଉପଲବ୍ଧି, ସ୍ୱର୍ଗ ପ୍ରାପ୍ତି ଭାବନାର କେତେ କାଳ୍ପନିକ ସ୍ୱପ୍ନ ଧର୍ମଗ୍ରନ୍ଥ ମାନଙ୍କର ପୃଷ୍ଠାରେ ବର୍ଣ୍ଣିତ ହୋଇଛି । ଏକ ପାରଲୌକିକ ଜଗତର ସ୍ୱପ୍ନ ପାଇଁ କେତେ ପୂଜା, କର୍ମକାଣ୍ଡ, ପ୍ରାର୍ଥନା, ସମର୍ପଣର କଥା କୁହାଯାଇଛି । ତେବେ ଏଗୁଡିକର ମନସ୍ତାତ୍ତ୍ୱିକ ପ୍ରଭାବ ରହିଥିଲେ ବି ଏଗୁଡିକ ପ୍ରାଚୀନ ଯୁଗର ଗୁଡିଏ କାଳ୍ପନିକ ଭାବନା । ବିଭିନ୍ନ ସଭ୍ୟତାରେ ଓ ଧର୍ମଧାରାରେ ଏହି ପ୍ରକାର ନାନା କାଳ୍ପନିକ ସ୍ୱପ୍ନ ରହିଛି । ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନ ଦ୍ୱାରା ଏହି ଲକ୍ଷ୍ୟ ଗୁଡିକ କିପରି ପରସ୍ପର ବିରୋଧୀ ତାହା ଲକ୍ଷ୍ୟ କରାଯାଏ । ଏଗୁଡିକ ଯେ ଭୟ, ଅଜ୍ଞତା ଓ ସ୍ଥଳବିଶେଷରେ ଜନଗଣଙ୍କୁ ସ୍ୱପ୍ନର ଜାଲ ଭିତରେ ଛନ୍ଦି ରଖିବାକୁ କଳ୍ପନା କରାଯାଇଛି ତାହା ନିଃସନ୍ଦେହ ମନେହୁଏ । ଧର୍ମ, ଈଶ୍ୱର ଭାବନାର ଯାହା କିଛି ମନସ୍ତାତ୍ତ୍ୱିକ ପ୍ରଭାବ ରହିଥିଲେ ବି ଏକ ଉନ୍ନତ, ମାନବିକ ଓ ନୀତିପୂର୍ଣ୍ଣ ଜୀବନ ଧାରଣ ପାଇଁ ଏସବୁ ଭାବନା ପରିବର୍ତ୍ତେ "ମାନବବାଦୀ ଓ ବିଚାରଶୀଳ ଚେତନା"ର ବିକାଶର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି

ଏହା ନିଃସନ୍ଦେହ ମନେହୁଏ । ଧାର୍ମିକ ସ୍ୱପ୍ନ ଓ ମେସିଆ ବା କେଉଁ ଅବତାରଙ୍କ ଗାରିମା ଦ୍ୱାରା ସଭ୍ୟତାର ବିକାଶ ହୋଇନାହିଁ । ସଭ୍ୟତାର ବିକାଶ ଓ ସଭ୍ୟ ଜୀବନଦୃଷ୍ଟିର ଅଭ୍ୟୁଦୟ ମଣିଷର ଅନୁଭୂତି, ବିଚାରଶୀଳ ଦୃଷ୍ଟି ଓ ବୈଜ୍ଞାନିକ ଅବବୋଧରୁ ସମ୍ଭବ ହୋଇଛି । ଆଜି ଜ୍ଞାନ ବିଜ୍ଞାନର ଯେଉଁ ବିକାଶ ହୋଇଛି ଓ ଜୀବନର ଭୌତିକ ମାନ ଯେପରି ବୃଦ୍ଧି ପାଇଛି ତାହା ପଛରେ ରହିଛି ମଣିଷର ବୌଦ୍ଧିକ କୌତୂହଳତା, ବିଚାରବୁଦ୍ଧି ଓ ପ୍ରକୃତିକୁ ପର୍ଯ୍ୟବେକ୍ଷଣ ଜନିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ । କେଉଁ ଦିଅଁ, ଦେବତା ସଭ୍ୟତାର ବିକାଶ ଘଟାଇ ନାହାନ୍ତି ବା ଜୀବନରୁ ଅନ୍ୟାୟ, ଶୋଷଣ ଦୂର କରି ନାହାନ୍ତି । ସଭ୍ୟତାରେ ଯେଉଁ ଅଗ୍ରଗତି ହୋଇଛି ବା ସଭ୍ୟ ଜୀବନଦୃଷ୍ଟିର ଯେଉଁ ଆଦର୍ଶ ସୃଷ୍ଟି ହୋଇଛି ତାହା ମଣିଷର ପ୍ରୟାସ ଓ ବିଚାରବୋଧରୁ ହିଁ ଆସିଛି ।

ଧାର୍ମିକ ଆବେଗ ଭିତରେ ବିଶ୍ୱାସ, ଭୟ, ନିର୍ଭରଶୀଳତା, ଦୈବୀ ଆଶୀର୍ବାଦରେ ଆସ୍ଥା, ପ୍ରାର୍ଥନାର ପ୍ରାଧାନ୍ୟ ରହିବା ଦେଖାଯାଏ । ଅଥଚ ମାନବବାଦୀ ଜୀବନଦୃଷ୍ଟିରେ ଆତ୍ମବିଶ୍ୱାସ, ନିର୍ଭୟତା, ସ୍ୱାବଲମ୍ବନଶୀଳତା, ମାନବିକ ପ୍ରୟାସ, ସମ୍ବେଦନଶୀଳତା ଓ ବିଚାରଶୀଳତା ଉପରେ ଗୁରୁତ୍ୱ ଦିଆଯାଏ । ଏପରିକି ଧାର୍ମିକ ଆବେଗ ଜ୍ଞାନର ବିକାଶ ଓ ସାମାଜିକ ନ୍ୟାୟର ଅଭିବୃଦ୍ଧିରେ ପ୍ରତିବନ୍ଧକ ହେବା ଦେଖାଯାଏ ।

ସାମାଜିକ ଜୀବନ ପ୍ରବାହରେ ନୀତିବୋଧ, ନୈତିକତାର ଆଧାର ଭାବରେ ଧର୍ମକୁ ପ୍ରାଧାନ୍ୟ ଦିଆଯାଏ । କିନ୍ତୁ ବାସ୍ତବରେ ମଣିଷର ଅନୁଭୂତି, ବିଚାରବୋଧ ଓ ମାନବବାଦୀ ଆଦର୍ଶରୁ ଏହା ସବୁ ବିକଶିତ ହେବା ଏକ ଐତିହାସିକ ସତ୍ୟ ଅଟେ । ଜୀବନର ଅର୍ଥ, ମୂଲ୍ୟ ଓ ଲକ୍ଷ୍ୟ ଆମର ବିଚାରବୋଧ ଦେଇ ବିକଶିତ ହେବା ଦେଖାଯାଏ । ଜୀବନର ବାସ୍ତବତା, ସାମାଜିକ ସମ୍ବନ୍ଧ, ପାରିବେଶିକ ପରିସ୍ଥିତି ଓ ଗୁଣାତ୍ମକ ଜୀବନ ନେଇ ଗଭୀର ଅନୁଶୀଳନରୁ ମହତ୍ତର ମୂଲ୍ୟବୋଧ ଗୁଡିକର ଅଭ୍ୟୁଦୟ ହେବା ଜଣାଯାଏ । ସେହିପରି ବିଭିନ୍ନ ସଭ୍ୟତାରେ ଧର୍ମର ପ୍ରାଧାନ୍ୟ ଥିବା ବେଳେ ଗୋଟିଏ କ୍ଷୁଦ୍ର ସାମନ୍ତବାଦୀ ଗୋଷ୍ଠୀ ଜ୍ଞାନ, କ୍ଷମତା ଉପରେ ନିଜର ଅଧିକାରକୁ ଏକଚାଟିଆ କରି ରଖିଥିଲେ । ସମାଜର ଅଗଣିତ ମଣିଷଙ୍କୁ ଶିକ୍ଷା ଓ ଜ୍ଞାନାର୍ଜନ ସ୍ତରରୁ ବଞ୍ଚିତ କରାଯାଇଥିଲା । ଅଥଚ ମାନବବାଦୀ ଜୀବନ-ଦର୍ଶନର ବିକାଶ ଦ୍ୱାରା ଶିକ୍ଷାଲାଭ କରିବା ଯେ ପ୍ରତ୍ୟେକ ବ୍ୟକ୍ତିର ଏକ ପ୍ରାକୃତିକ ଅଧିକାର ଏହି ଭାବନାର ଅଭ୍ୟୁଦୟ ହେଲା । ପ୍ରତ୍ୟେକ ରାଷ୍ଟ୍ର ସାର୍ବଜନୀନ ଶିକ୍ଷା ବ୍ୟବସ୍ଥାକୁ ଗୁରୁତ୍ୱ ଦେବାକୁ ବସିଲା । ରକ୍ଷଣଶୀଳ ମୌଳବାଦୀମାନେ ଏବେ ବି କେତେକ ସମାଜରେ ସାର୍ବଜନୀନ ଶିକ୍ଷା ବ୍ୟବସ୍ଥାକୁ ବିରୋଧ କରିବା ଦେଖାଯାଏ ।

ମାନବବାଦୀ ଦର୍ଶନରେ ପ୍ରତ୍ୟେକ ବ୍ୟକ୍ତିର ମହତ୍ତ୍ୱ, ମର୍ଯ୍ୟାଦା ଓ ଜୀବନର ମୂଲ୍ୟକୁ ପ୍ରାଧାନ୍ୟ ଦିଆଯାଏ । ଯାହା ମଣିଷର ମୂଲ୍ୟ ଓ ମର୍ଯ୍ୟାଦା ପ୍ରତି ଅସମ୍ମାନ ଜନକ ଓ ମାନବିକ ଅଧିକାରର ପରିପନ୍ଥୀ ତାହାକୁ ଆଦର୍ଶର ମୂଲ୍ୟ ଦିଆଯାଇ ନପାରେ । ଏକ

ଗଣତାନ୍ତ୍ରିକ ଜୀବନଶୈଳୀର ବିକାଶ ଘଟାଇବା ମାନବବାଦର ସାଂସ୍କୃତିକ ଆଦର୍ଶ ଅଟେ । ନାଗରିକ ସ୍ୱାଧୀନତା (ସିଭିଲ ଲିବର୍ଟି), ବାକ୍ ସ୍ୱାଧୀନତା, ଗଣମାଧ୍ୟମର ସ୍ୱାଧୀନତାକୁ ମାନବବାଦରେ ପ୍ରାଧାନ୍ୟ ଦିଆଯାଏ । ବ୍ୟକ୍ତିର ସ୍ୱାଧୀନତା ସହ ବ୍ୟକ୍ତିର ନାଗରିକ ଶୃଙ୍ଖଳାବୋଧ ଓ ଦାୟିତ୍ୱବୋଧ ପ୍ରଶ୍ନଟି ଆସେ । ଯେଉଁ ସମାଜରେ ନାଗରିକ ଶୃଙ୍ଖଳାବୋଧ ଓ ସାମାଜିକ ସ୍ତରରେ ସମତା ଭାବ ଯେତେ ଅଧିକ ସେହି ସମାଜ ସେତିକି ଉନ୍ନତ ଓ ପ୍ରଗତିଶୀଳ ଅଥଚ ଯେଉଁଠି ନାଗରିକ ସଚେତନତାର ସ୍ତର ଯେତେ କମ୍ ତାହା ସେତିକି ଅନୁନ୍ନତ ଓ କ୍ଷୟଶୀଳ । ପୁନଶ୍ଚ ଜାତି, ଧର୍ମ, ଲିଙ୍ଗ, ଭାଷାକୁ ନେଇ ଯେଉଁ ରାଷ୍ଟ୍ର ବା ସମାଜରେ ଭେଦଭାବ ଓ ବିଦ୍ୱେଷର ପରିଣାମ ଯେତେ ଅଧିକ ତାହା ସେତିକି ଅନୁନ୍ନତ । ଅଥଚ ଯେଉଁ ସମାଜରେ ସମତା, ଭ୍ରାତୃତ୍ୱ ଭାବ ନାଗରିକ ସଚେତନତାର ସ୍ତର ଯେତେ ଅଧିକ ସେହି ସମାଜ ସେତେ ଉନ୍ନତ ଓ ପ୍ରଗତିଶୀଳ ।

ମାନବବାଦୀ ବିଚାରବୋଧରେ ମଣିଷ ସମାଜକୁ ଯେଉଁ ଆଦର୍ଶ ବା ବିଶ୍ୱାସରେ ଭାଗ କରାଯାଏ ତାହା ଯଥାର୍ଥ ମନେହୁଏ ନାହିଁ । ଜାତି, ଧର୍ମ, ଜାତୀୟତା, ବିଶ୍ୱାସ, ଆଞ୍ଚଳିକତା ଭିତରେ ମଣିଷ ମଣିଷ ଭିତରେ ଭେଦଭାବ ସୃଷ୍ଟି କରିବା ମାନବବାଦୀ ଆଦର୍ଶର ପ୍ରତିକୂଳ । ସମସ୍ତ ଭେଦଭାବର ଊର୍ଦ୍ଧ୍ୱକୁ ଯାଇ ସବୁ ମଣିଷଙ୍କୁ ଏକ ବୋଲି ବିଚାର କରିବା ଓ ପ୍ରତ୍ୟେକ ବ୍ୟକ୍ତିର ଆତ୍ମମର୍ଯ୍ୟାଦା ଓ ସମ୍ମାନକୁ ସ୍ୱୀକୃତି ଦେବା ମାନବବାଦର ଆଦର୍ଶ ଅଟେ । ଅଥଚ ଏହି ଆଦର୍ଶରୁ ଦୂରେଇ ଯିବା, ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି କରିବା, ଭେଦଭାବର ମନୋଭାବ ରଖିବା ମାନବବାଦର ବିରୋଧ ଅଟେ । ରାଜନୀତିଠାରୁ ସାମ୍ପ୍ରଦାୟିକ ଧର୍ମକୁ ପୃଥକ୍ କରିବାର ପରିବେଶରୁ ଧର୍ମନିରପେକ୍ଷ ମାନବବାଦୀ ଆଦର୍ଶ ପାଶ୍ଚାତ୍ୟ ଦେଶରେ ସମ୍ଭବ ହୋଇଛି । ଅପରପକ୍ଷରେ ଧାର୍ମିକ ଆବେଗର ପ୍ରଭାବ ଥିବା ରାଷ୍ଟ୍ରମାନଙ୍କରେ ରାଜତନ୍ତ୍ର, ଧର୍ମତନ୍ତ୍ର (ଥିଓକ୍ରାସି), ସାମନ୍ତବାଦ ରହିଛି । ଧର୍ମନିରପେକ୍ଷ ମୂଲ୍ୟବୋଧ ଯେପରି ଏକ ରାଜନୈତିକ ଆଦର୍ଶ, ସେହିପରି ଏକ ସାମାଜିକ ମୂଲ୍ୟବୋଧ । ଯେଉଁ ଦେଶର ସାମାଜିକ ପରିବେଶ ବା ରାଜନୈତିକ ସଂସ୍କୃତି ଏହି ମୂଲ୍ୟବୋଧଠାରୁ ଦୂରରେ ରହିଛି, ସେସବୁ ଯେ କ୍ଷୟଶୀଳ ବା ଅନୁନ୍ନତ ଏହା ମନେହୁଏ ।

ମାନବବାଦୀ ଜୀବନ ଦର୍ଶନରେ ସମାଜରେ ପ୍ରତ୍ୟେକ ସ୍ତରରେ ମାନବିକ ସ୍ପର୍ଶକୁ ପ୍ରାଧାନ୍ୟ ଦିଆଯାଏ । ଶିକ୍ଷା, କର୍ମ ସଂସ୍କୃତି, ଧାର୍ମିକ ଆବେଗ ଓ ସାଂସ୍କୃତିକ ପରିବେଶରେ କୌଣସି ପ୍ରକାରର ଭେଦଭାବ ବା ଉଚ୍ଚନୀଚ ଭାବନାକୁ ସ୍ଥାନ ଦିଆଯାଏ ନାହିଁ । ପ୍ରତ୍ୟେକ ବ୍ୟକ୍ତି ସମାଜରେ ମର୍ଯ୍ୟାଦାର ସହ ବଞ୍ଚିବା, କାମ କରିବା ବା ନିଜସ୍ୱ ସାଂସ୍କୃତିକ ମୂଲ୍ୟବୋଧ ଦ୍ୱାରା ପରିଚାଳିତ ହେବାରେ କୌଣସି ହୀନମନ୍ୟତାର ଶିକାର ହୁଏ ନାହିଁ । ତାର ସାମାଜିକ ପରିଚୟଟି ତା ପାଇଁ ଅମର୍ଯ୍ୟାଦାଜନକ ହୁଏ ନାହିଁ ।

ମାନବବାଦ ମଣିଷର ସ୍ୱାଭିମାନ, ଆତ୍ମମର୍ଯ୍ୟାଦା ଓ ସମ୍ମାନର ସହ ନାଗରିକ ଜୀବନକୁ ଗୁରୁତ୍ୱ ଦିଏ ।

ମାନବବାଦୀ ଜୀବନ ଦର୍ଶନରେ 'ବିଶ୍ୱ ସମୁଦାୟ'ର ଭାବନା ବ୍ୟକ୍ତ ରହିଥାଏ । ଯେଉଁ ଯୁଗରେ ରାଷ୍ଟ୍ରଭାବନାର ବିକାଶ ହୋଇଥିଲା ତାର ପରିଣତିରୁ ବ୍ୟକ୍ତିର ରାଷ୍ଟ୍ରୀୟ ଅସ୍ମିତାକୁ ପ୍ରାଧାନ୍ୟ ଦିଆଗଲା । ରାଷ୍ଟ୍ରୀୟ ସାର୍ବଭୌମ ଭାବନାରୁ ସାରା ବିଶ୍ୱରେ ବହୁ ଯୁଦ୍ଧ, ବିଭୀଷିକା ଅତୀତରେ ହୋଇଛି ଓ ପୃଥିବୀ ରକ୍ତ ରଞ୍ଜିତ ହୋଇଛି । ସମ୍ପ୍ରତି ସଭ୍ୟତାର ବିକାଶ ପୃଷ୍ଠଭୂମିରେ ଏକ ଅନ୍ତାରାଷ୍ଟ୍ରୀୟ ଚେତନାର ବିକାଶକୁ ମାନବବାଦରେ ପ୍ରାଧାନ୍ୟ ଦିଆଯାଇଛି । 'ମଣିଷ ସମୁଦାୟ' ଏକ ପୃଥିବୀର ଅଧିବାସୀ ଓ ଯେ କୌଣସି ଅଞ୍ଚଳର ଦୁଃଖ, ଦୁର୍ଦ୍ଦଶା, ଦୁର୍ବିପାକ ମଣିଷ ଜାତିର ସମସ୍ୟା । ଅନ୍ତାରାଷ୍ଟ୍ରୀୟ ଭାବନାର ବିକାଶ ଦ୍ୱାରା ହୁଏତ ଭବିଷ୍ୟତରେ ଏକ 'ବିଶ୍ୱ-ସରକାର' ସମଗ୍ର ବିଶ୍ୱ ପାଇଁ ସମ୍ଭବ ହେବ । ତାହା ହେଲେ ପୃଥିବୀରୁ ରାଷ୍ଟ୍ର-ରାଷ୍ଟ୍ର ଭିତରର କଳହ, ଅବିଶ୍ୱାସ ଓ ଅଣୁ ଅସ୍ତ୍ର ନିର୍ମାଣ କରିବାର ପ୍ରତିଯୋଗିତାର ମନୋଭାବ ଦୂର ହୋଇପାରିବ । ସାରା ପୃଥିବୀରୁ ହିଂସା, ସନ୍ତ୍ରାସବାଦ ଓ ଅବିଶ୍ୱାସର ବାତାବରଣ ଲୋପ ପାଇପାରିବ ଓ ପରସ୍ପରର ସହଯୋଗରେ ଆମେ ଏକ ନୂତନ ଓ ପ୍ରୀତିପୂର୍ଣ୍ଣ ବିଶ୍ୱର ନାଗରିକ ହୋଇପାରିବା । ସାରା ପୃଥିବୀରୁ ଅସ୍ତ୍ର ନିର୍ମାଣର ପ୍ରତିଯୋଗିତା ଦୂର ହେଲେ ପୃଥିବୀରୁ ସକଳ ଦାରିଦ୍ର୍ୟ, ନିରକ୍ଷରତାର ବିଲୋପ ହୋଇପାରିବ । ପୃଥିବୀରେ ରହିଥିବା ପୃଥକ୍ ଅର୍ଥନୈତିକ ବା ରାଜନୈତିକ ଆଦର୍ଶ ଜନିତ ଭେଦଭାବ ଦୂର ହେଲେ ବିଶ୍ୱରେ ଏକ ନୂତନ ଯୁଗର ଆରମ୍ଭ ହୋଇପାରିବେ । ପୃଥିବୀର ଚିନ୍ତାଶୀଳ, ମାନବ ଦରଦୀ ଓ ପ୍ରାଜ୍ଞ ବ୍ୟକ୍ତିଗଣ ଏକ ବୈଷମ୍ୟହୀନ, ଅହିଂସ, ପ୍ରୀତିପୂର୍ଣ୍ଣ ଓ ମାନବିକ ବିଶ୍ୱଗଠନ ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିପାରିବ । ମୋଟଉପରେ ମାନବବାଦୀ ଘୋଷଣାନାମାରେ ଏକ ନ୍ୟାୟପୂର୍ଣ୍ଣ, ପ୍ରୀତିପୂର୍ଣ୍ଣ, ସମତାଭିତ୍ତିକ, ବ୍ୟକ୍ତିମର୍ଯ୍ୟାଦା ଆଧାରିତ ଓ ହିଂସାରହିତ ବିଶ୍ୱର ଯେଉଁ ଚିତ୍ର ରହିଛି-ତାହା ଯଦି ବାସ୍ତବରେ ରୂପନିଏ, ତେବେ ତାହା ହେବ ମାନବ ଜାତିର ଏକ ନୂତନ-ଜନ୍ମ ।

(୨୮.୧୧.୨୦୧୨)



# ମାନବବାଦ: ଏକ ମହତ୍ତର ଜୀବନବୋଧ

ମାନବବାଦ ଏକ ଜୀବନ-ଦର୍ଶନ । ଏହି ଜୀବନ-ଦର୍ଶନର ଅନ୍ତର୍ନିହିତ ଆଦର୍ଶ ହେଉଛି ଏକ ମହତ୍ତର ଜୀବନବୋଧ । ସୁଖର କଥା ଏହି ଆଦର୍ଶ ଆଧାରରେ ପ୍ରତ୍ୟେକ ବର୍ଷ ଜୁନ ମାସ ୨୧ ତାରିଖକୁ ଆନ୍ତର୍ଜାତିକ ସ୍ତରରେ ବିଶ୍ୱ ମାନବବାଦୀ ଦିବସ (ୱାର୍ଲଡ ହ୍ୟୁମାନିଷ୍ଟ ଡେ) ଭାବେ ପାଳନ କରାଯାଏ । ୧୯୮୦ ମସିହାରୁ ଏହା ପାଳିତ ହୋଇ ଆସୁଛି । ଆନ୍ତର୍ଜାତିକ ସଂଗଠନ "ଇଣ୍ଟରନେସନାଲ ହିଉମାନିଷ୍ଟ ଏଣ୍ଡ ଏଥିକାଲ ୟୁନିୟନ" ବା ଆନ୍ତର୍ଜାତିକ ମାନବବାଦୀ ଓ ନୀତିବାଦୀ ସଙ୍ଘ ଓ "ଆମେରିକାନ ହ୍ୟୁମାନିଷ୍ଟ ଆସୋସିଏସନ" ବା ଆମେରିକୀୟ ମାନବବାଦୀ ସମାଜର ମିଳିତ ଆହ୍ୱାନ କ୍ରମେ ଏହା ପାଳିତ ହୋଇଆସୁଛି । ବିଭିନ୍ନ ରାଷ୍ଟ୍ରର ମାନବବାଦୀ, ହେତୁବାଦୀ, ନିରୀଶ୍ୱରବାଦୀ, ମୁକ୍ତ ଚିନ୍ତକ ମାନବିକ ଅଧିକାର ସଙ୍ଗଠନ ମାନ ବିଭିନ୍ନ କାର୍ଯ୍ୟକ୍ରମ ଜରିଆରେ ଏହା ପାଳନ କରି ଆସୁଛନ୍ତି ।

ବିଂଶ ଶତାବ୍ଦୀ ଆରମ୍ଭରୁ ସାରା ପୃଥିବୀରେ ବିଭିନ୍ନ ଆନ୍ତର୍ଜାତିକ ସଙ୍ଗଠନମାନ ବିଭିନ୍ନ ମାନବିକ ସମସ୍ୟା ସମାଧାନ ଦିଗରେ କାର୍ଯ୍ୟ କରି ଆସୁଛନ୍ତି । ଶାନ୍ତିପୂର୍ଣ୍ଣ ବିଶ୍ୱ, ରାଜନୈତିକ ଏକତା, ଅର୍ଥନୈତିକ ସମୃଦ୍ଧି, ସାଂସ୍କୃତିକ ସହଯୋଗ ଇତ୍ୟାଦି ମାନବିକ ଉତ୍କର୍ଷ ପାଇଁ ଆନ୍ତର୍ଜାତିକ ସ୍ତରରେ ବହୁ ସଙ୍ଘ, ସଙ୍ଗଠନ ନିଜ ନିଜ ଲକ୍ଷ୍ୟ ସାଧନ ଦିଗରେ ସମ୍ମିଳିତ ଭାବେ କାର୍ଯ୍ୟ କରୁଛନ୍ତି । ମିଳିତ ଜାତିସଙ୍ଘ ଏ କ୍ଷେତ୍ରରେ ସବୁଠାରୁ ବଡ ଆନ୍ତର୍ଜାତିକ ଅନୁଷ୍ଠାନ । ଜାତିସଙ୍ଘର ଛତା ତଳେ ବହୁ ଅନୁଷ୍ଠାନ ଗଠିତ ହୋଇ ପୃଥିବୀରେ ଶାନ୍ତି, ସ୍ଥିରତା ଓ ବିଭିନ୍ନ ମାନବିକ ସମସ୍ୟାର ସମାଧାନ ପାଇଁ କାର୍ଯ୍ୟ କରୁଛନ୍ତି । ଜାତିସଙ୍ଘ ବାହାରେ ବହୁ ଆନ୍ତର୍ଜାତିକ ସଙ୍ଗଠନ ଏକ ଉନ୍ନତ ବିଶ୍ୱ ପାଇଁ ବିଭିନ୍ନ ଆଭିମୁଖ୍ୟ ନେଇ ଜନମାନସରେ ଆନ୍ତର୍ଜାତିକ ଚେତନାର ବିକାଶ ପାଇଁ ମଧ୍ୟ ପ୍ରୟାସ କରୁଛନ୍ତି । ପୃଥିବୀକୁ ଯୁଦ୍ଧ ରହିତ କରି ସବୁ ମଣିଷଙ୍କ ଭିତରେ ଭ୍ରାତୃତ୍ୱଭାବ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ

ପାଇଁ ଚେତନା ସୃଷ୍ଟି କରିବାରେ ଏସବୁ ଅନୁଷ୍ଠାନ ମାନଙ୍କର ପ୍ରଭାବ ରହିଛି । ଆର୍ଥ ଫେଡରେସନ ବା ବିଶ୍ୱସଙ୍ଘ, ରେଡକ୍ରସ, ଆମ୍ନେଷ୍ଟି ଇଣ୍ଟରନେସନାଲ ପରି ସଙ୍ଗଠନମାନ ଯଥାକ୍ରମେ ବିଶ୍ୱ ସରକାର, ସ୍ୱାସ୍ଥ୍ୟ ସେବା ଓ ମାନବିକ ଅଧିକାର ଲକ୍ଷ୍ୟନେଇ କାର୍ଯ୍ୟ କରୁଛନ୍ତି । ଏସବୁ ଓ ଏହିଭଳି ବହୁ ସଙ୍ଗଠନ ଆନ୍ତର୍ଜାତିକ ସ୍ତରରେ ଏକ ଉନ୍ନତ ଓ ଗୁଣାତ୍ମକ ଜୀବନର ବିକାଶ ପାଇଁ ନିଜର ସମ୍ପୃକ୍ତି ପ୍ରକାଶ କରି ଆସୁଛନ୍ତି । ଏହି ପୃଷ୍ଠଭୂମିରେ ଆନ୍ତର୍ଜାତିକ ମାନବବାଦୀ ଓ ନୀତିବାଦୀ ସଙ୍ଘ ପୃଥିବୀର ଏକ ପ୍ରମୁଖ ଆନ୍ତର୍ଜାତିକ ସଙ୍ଗଠନ ଭାବେ ମଧ୍ୟ ମାନବବାଦର ପ୍ରସାର ଦିଗରେ କାର୍ଯ୍ୟ କରିଆସୁଛି । ମାନବବାଦର ବିକାଶ ଦ୍ୱାରା ଆମ ସଂସାରରୁ ବହୁ ମାନବକୃତ ମନ୍ଦ, ଶୋଷଣ, ହିଂସା-ପ୍ରତିହିଂସା, ବିଦ୍ୱେଷ ଓ ଭେଦଭାବ ଦୂର ହୋଇ ପାରିବ । ଏସବୁ ଦୂର ନ ହେଲେ ସଭ୍ୟତାର ଯେତେ ଭୌତିକ ବିକାଶ ହେଲେ ମଧ୍ୟ ସମାଜରେ ଓ ବୃହତ୍ତର ପରିବେଶରେ ଶାନ୍ତି, ସ୍ଥିରତା, ନ୍ୟାୟର ପରିବେଶ ଆସିପାରିବ ନାହିଁ । ସଭ୍ୟତାର ଉତ୍ତରଣ କେବଳ ଭୌତିକ ବିକାଶ ଦ୍ୱାରା ସମ୍ଭବ ନୁହେଁ, ମାନବବାଦୀ ଚେତନାର ବିକାଶ ଅଭାବରେ ସଭ୍ୟତା ଧ୍ୱଂସମୁଖୀ ହେବ । ସୁତରାଂ ଭୌତିକ ବିକାଶ ସହ ମାନବବାଦୀ ଜୀବନ ଦର୍ଶନର ସମନ୍ୱୟ ହେଲେ ଆମ ସଂସାର ଅଧିକ ପ୍ରୀତିପୂର୍ଣ୍ଣ ଓ ନ୍ୟାୟପୂର୍ଣ୍ଣ ହୋଇ ପାରିବ । ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ଓ ମହତ୍ତର ଜୀବନର ପରିବେଶ ପାଇଁ ମାନବବାଦ ଏକ ମହନୀୟ ଆବେଦନ ବିଶ୍ୱ ସମ୍ମୁଖରେ ରଖିଥିବା ମନେହୁଏ ।

ମାନବବାଦର ସର୍ବଶ୍ରେଷ୍ଠ ଆବେଦନଟି ହେଉଛି ମାନବିକ ସମ୍ବେଦନଶୀଳତା ଓ ଏକ ନୀତିପୂର୍ଣ୍ଣ ଜୀବନଧାରାର ବିକାଶ କରାଇବା । ଏକଥା ସତ ଯେ ମଣିଷ ଭିତରେ ଯେପରି ପାଶବିକ ପ୍ରବୃତ୍ତି ରହିଛି ସେହିପରି ରହିଛି ନୀତିବୋଧ ପ୍ରତି ଏକ ସହଜାତ ଆକର୍ଷଣ । ମଣିଷ ଭିତରେ ଠିକ୍ ଯେପରି ରହିଛି ନାନା ଅହେତୁକ ବିଶ୍ୱାସ, ସେହିପରି ମଧ୍ୟ ରହିଛି ଏକ ବିଚାରଶୀଳ ଓ ତର୍କଶୀଳ ଦୃଷ୍ଟି । ମଣିଷ ଭିତରର ଅନୁସନ୍ଧିତ୍ସା ଓ ବିଚାରଶୀଳତା ହିଁ ସଭ୍ୟତାର କ୍ରମବିକାଶରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଥିବା ମନେହୁଏ । ତେବେ ମଣିଷର ବିଚାର ଓ ବୁଦ୍ଧି ମହତ୍ତର ଲକ୍ଷ୍ୟ ଦିଗରେ ବା ଅନୈତିକ କାର୍ଯ୍ୟରେ ବିନିଯୋଗ ହୋଇପାରେ । ବୁଦ୍ଧି ଏକ ସାଧନ ଭାବେ ଭଲ ପାଇଁ ବା ମନ୍ଦ ପାଇଁ ପ୍ରୟୋଗ ହୋଇପାରେ । ସୁତରାଂ ମାନବିକ ସମ୍ବେଦନଶୀଳତା ଓ ନୀତିବୋଧକୁ ଶ୍ରେୟ ଭାବରେ ସ୍ୱୀକାର କଲେ ଓ ସେହି ଲକ୍ଷ୍ୟ ହାସଲ ଦିଗରେ ଆମର ବିଚାରବୋଧ ଏବଂ ବୁଦ୍ଧିକୁ ପ୍ରୟୋଗ କଲେ ଜୀବନର ମହତ୍ତମ ଲକ୍ଷ୍ୟ ସାଧିତ ହୋଇପାରେ । ସୁତରାଂ ମାନବବାଦୀ ଜୀବନ ଦୃଷ୍ଟି ମାନବିକ ସମ୍ବେଦନଶୀଳତା ଓ ପ୍ରୀତିପୂର୍ଣ୍ଣ ସହାବସ୍ଥାନକୁ ପ୍ରାଧାନ୍ୟ ଦେଇ ସେହି ଲକ୍ଷ୍ୟ ହାସଲ ଦିଗରେ ଆମର ବୁଦ୍ଧି ଓ ବିଚାରବୋଧକୁ ପ୍ରୟୋଗ କରିଥାଏ ।

ମାନବବାଦୀ ଦୃଷ୍ଟିର ଅନ୍ୟ ଏକ ତାତ୍ପର୍ଯ୍ୟ ହେଉଛି ଯେ ଏହା ଏକ ମାନବକୈନ୍ଦ୍ରିକ ଜୀବନ ଦର୍ଶନକୁ ପ୍ରାଧାନ୍ୟ ଦିଏ, ଅର୍ଥାତ୍ ମଣିଷର ପ୍ରୟାସରେ ହିଁ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇପାରିବ । ସଭ୍ୟତାର କ୍ରମବିକାଶର ଇତିହାସକୁ ଦେଖିଲେ ଏହା ଅନସ୍ୱୀକାର୍ଯ୍ୟ ଯେ ଯାହା କିଛି ସଭ୍ୟତାରେ ସମ୍ଭବ ହୋଇଛି, ତାହା ମଣିଷର ନିଷ୍ଠାପର ଉଦ୍ୟମ, ବୌଦ୍ଧିକ ଅନୁସନ୍ଧିତ୍ସା ଓ ବିଚାରଶୀଳ ବିଶ୍ଳେଷଣ ଯୋଗୁ ସମ୍ଭବ ହୋଇଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ, ସଭ୍ୟତାର କ୍ରମ ଉତ୍ତରଣ, ସାମାଜିକ ବ୍ୟବସ୍ଥାକୁ ଉନ୍ନତ କରିବା ଓ ଜୀବନର ଗୁଣାତ୍ମକ ମାନ ବୃଦ୍ଧି ପାଇଁ ମଣିଷ ହିଁ ପ୍ରୟାସ କରିଛି । ସକଳ ବିକାଶ, ଆମର ନୀତିବୋଧ, ରାଜନୈତିକ ଓ ସାମାଜିକ ସଂହତି ସବୁକିଛି ମଣିଷର ଚିନ୍ତା, ଚେତନାରୁ ଉଦ୍ଭବ ହୋଇଛି । ତେଣୁ ସବୁ କ୍ଷେତ୍ରରେ ମଣିଷର ଭୂମିକା ନିର୍ଣ୍ଣାୟକ ମନେହୁଏ । ଏକ ସୁସଂହତ ସାମାଜିକ ଜୀବନ, ଗଣତାନ୍ତ୍ରିକ ମୂଲ୍ୟବୋଧ, ଆର୍ଥିକ ବିକାଶ, ଜୀବନର କ୍ରମୋନ୍ନତି ଏହା କେଉଁ ସ୍ୱର୍ଗରୁ ଆସିନାହିଁ ବା କେଉଁ କଳ୍ପିତ ଦିଅଁ ଦେବତା ଆମକୁ ଦେଇ ନାହାନ୍ତି । ଏହା ଧୀରେ ଧୀରେ ମାନବିକ ପ୍ରୟାସରୁ ସଭ୍ୟତାରେ ସମ୍ଭବ ହୋଇଛି ।

ସେହିପରି ମାନବବାଦ ଏହି ଜୀବନକୁ ଗୁରୁତ୍ୱ ଦିଏ । କୌଣସି ପାରଲୌକିକ ଅବସ୍ଥିତି, ସ୍ୱର୍ଗ, ନରକ, ମୁକ୍ତି, ମୋକ୍ଷ, ନିର୍ବାଣ ଏସବୁ କେବଳ ଧାର୍ମିକ କଳ୍ପନା ମାତ୍ର । ବହୁ ଅତୀତରେ ଭୟ ଓ ଜୀବନର ଘନଘଟାକୁ ବ୍ୟାଖ୍ୟା କରିବାକୁ ଏସବୁକୁ କେବଳ କଳ୍ପନା କରାଯାଇଥିଲା । ଭୟ, ଅଜ୍ଞତା ଓ ଜୀବନରେ କେତେକ ଶୃଙ୍ଖଳା ପାଇଁ ଏସବୁ ଭାବନାକୁ ବହୁ ଅତୀତରେ ବିଭିନ୍ନ ସଭ୍ୟତାରେ ନାନା ଭାବରେ କଳ୍ପନା କରାଯାଇଥିଲା । ତେବେ ମାନବବାଦ ଏହି କାଳ୍ପନିକ ବିଚାର ସକଳକୁ ପ୍ରାଧାନ୍ୟ ନ ଦେଇ ଜୀବନର ବାସ୍ତବତାକୁ ଗୁରୁତ୍ୱ ଦେଇଥାଏ । ଯେଉଁ ଯୁଗରେ ଧାର୍ମିକ ବିଚାର ଧାରାର ପ୍ରାଧାନ୍ୟ ସମାଜରେ ବ୍ୟାପକ ଭାବେ ଥିଲା, ସେହି ଯୁଗରେ ସାରା ପୃଥିବୀରେ ରାଜତନ୍ତ୍ର ହିଁ ରହିଥିଲା । ରାଜତନ୍ତ୍ର ଯୁଗରେ ବ୍ୟକ୍ତି ମର୍ଯ୍ୟାଦାବୋଧର କୌଣସି କଳ୍ପନା ହିଁ ଆସି ନଥିଲା । ରଙ୍ଗ ଭେଦ ଲିଙ୍ଗ ଭେଦ, ପରି ବୈଷମ୍ୟପୂର୍ଣ୍ଣ ମାନସିକତା ସମାଜରେ ପ୍ରବଳ ଭାବରେ ରହିଥିଲା । ବିଭିନ୍ନ ଧର୍ମ ପରମ୍ପରାରେ ମହିଳାମାନଙ୍କୁ ନ୍ୟୂନ କରି ରଖିବା ସାଧାରଣ ଘଟଣା ଥିଲା । ତେବେ ମାନବବାଦର ଆଦର୍ଶ ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାରର ଭାବନା କ୍ଷେତ୍ରରେ ଯୁଗାନ୍ତକାରୀ ବିଚାରର ଅବତାରଣା କରିବା ଦେଖାଯାଏ ।

ଏହି ପୃଷ୍ଠଭୂମିରେ ଏହା ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ ଯେ ମାନବବାଦୀ ଦୃଷ୍ଟିଭଙ୍ଗୀର ଏକ ଯଥାର୍ଥ ପ୍ରତିଫଳନ ଜାତିସଙ୍ଘରେ ଗୃହୀତ "ମାନବିକ

ଅଧିକାରର ବିଶ୍ୱଘୋଷଣାନାମା"ରେ ପ୍ରତିଫଳିତ । ପ୍ରତ୍ୟେକ ବ୍ୟକ୍ତି ନିରାପଦ ଭାବେ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବା ତାର ଏକ ଜନ୍ମଗତ ଅଧିକାର । ଶିକ୍ଷା ପାଇବା, ନାଗରିକ ଅଧିକାର ଉପଭୋଗ କରିବା, ଆଇନ ଦୃଷ୍ଟିରେ ସମାନ ବିବେଚିତ ହେବା, ନିଜର ବୌଦ୍ଧିକ ଓ ମାନସିକ ବିକାଶ ଘଟାଇବା, ମତବ୍ୟକ୍ତ କରିବାର ଅଧିକାର ପାଇବା ମାନବବାଦୀ ଦୃଷ୍ଟିର ପ୍ରତିଫଳନ । ଆନ୍ତର୍ଜାତିକ ସ୍ତରରେ ମାନବିକ ଅଧିକାରକୁ ସ୍ୱୀକୃତି ଦିଆଯାଇଥିଲେ ମଧ୍ୟ ବାସ୍ତବପକ୍ଷେ ଏହି ଆଦର୍ଶ ଓ ମୂଲ୍ୟବୋଧ ସବୁ ସ୍ତରରେ ଗୃହୀତ ହୋଇନାହିଁ । ମାନବିକ ଅଧିକାରର ଉଲ୍ଲଙ୍ଘନ ବହୁ ସମାଜରେ ସାଧାରଣ ଘଟଣା ହୋଇ ରହିଛି । ତେବେ ମାନବବାଦ ମାନବିକ ଅଧିକାରକୁ ପ୍ରାଧାନ୍ୟ ଦେବା ସହିତ ସବୁସ୍ତରରେ ସମତା ଓ ସାମାଜିକ ନ୍ୟାୟକୁ ଗୁରୁତ୍ୱ ଦେଇଆସିଛି । ଏହି ଦୃଷ୍ଟିରୁ ଏକ ଗଣତାନ୍ତ୍ରିକ ଜୀବନଶୈଳୀ ଏହାର ଅନ୍ତର୍ନିହିତ ଆଦର୍ଶ ଅଟେ । ନାଜିବାଦ, ଫାସିବାଦ, ସାମ୍ପ୍ରଦାୟିକତାବାଦ, ଏକଛତ୍ରବାଦ ଓ ମନୁବାଦ ମାନବବାଦୀ ଦୃଷ୍ଟିର ପ୍ରତିକୂଳ ଅଟେ । ଯେଉଁ ଭାବଧାରା ମଣିଷକୁ ନ୍ୟୂନ କରେ, ବ୍ୟକ୍ତି ମର୍ଯ୍ୟାଦାକୁ ଅସ୍ୱୀକାର କରେ ତାହା ମାନବବାଦର ପରିପନ୍ଥୀ କହିଲେ ଅତ୍ୟୁକ୍ତି ହେବନାହିଁ ।

ବ୍ୟକ୍ତି ସ୍ୱାଧୀନତା ସହ ସାମାଜିକ ଦାୟିତ୍ୱବୋଧର ସମନ୍ୱୟ ଉପରେ ମାନବବାଦ ଗୁରୁତ୍ୱ ଦିଏ । ବ୍ୟକ୍ତିର ଉତ୍ତରଦାୟିତ୍ୱ ପରିବାର, ସମାଜ, ମାନବଜାତି ଓ ଏପରିକି ପରିବେଶ ପ୍ରତି ପ୍ରସାରିତ ହେବା ମାନବବାଦର ଆଦର୍ଶ ଅଟେ । ଆମର ଦୃଷ୍ଟି ଓ ଦାୟିତ୍ୱବୋଧ ଯେତେ ସଂକୀର୍ଣ୍ଣ ପରିସରରୁ ବୃହତ୍ତର ସମାଜ ଓ ପ୍ରକୃତି ପ୍ରତି ପ୍ରସାରିତ ହେବ, ଜୀବନର ମାନ ସେତେ ଉନ୍ନତ ହୋଇପାରିବ । ଏହା ସହିତ କଳାତ୍ମକ ଅଭିବ୍ୟକ୍ତି, ସଙ୍ଗୀତ, ସାହିତ୍ୟ ଇତ୍ୟାଦି ସୃଜନଶୀଳତାକୁ ଜୀବନଧାରାର ଅଙ୍ଗ କରିବା ଏକ ମାନବିକ ଅଭିବ୍ୟକ୍ତି ମନେହୁଏ ।

ସମଗ୍ର ବିଶ୍ୱ ଏକ ପରିବାର, ସମସ୍ତେ ସୁଖରେ ଜୀବନ ନିର୍ବାହ କରନ୍ତୁ ଓ କେହି ଦୁଃଖରେ ନ ରୁହନ୍ତୁ, ମୁଁ ପଛେ ନରକକୁ ଯାଏ ସଂସାର ଦୁଃଖରହିତ ହେଉ ଇତ୍ୟାଦି ଭାବନା ଭିତରେ ମାନବବାଦୀ ଚେତନା ନିହିତ । ଯେଉଁମାନେ ମଣିଷର ଦୁଃଖକୁ ଅନୁଭବ କରି ଏହାକୁ ଦୂର କରିବାକୁ ଗବେଷଣାରେ ସମ୍ପୃକ୍ତ ହୋଇଛନ୍ତି ବା ମହତ୍ତର ହୃଦୟର ପରିଚୟ ଦେଇଛନ୍ତି ସେମାନେ ହିଁ ବିଶ୍ୱମାନବର ସ୍ୱୀକୃତି ପାଇଛନ୍ତି । କୁଷ୍ଠରୋଗର ଚିକିତ୍ସା ଉଦ୍ଭାବନ କରିଥିବା ଡାକ୍ତର, ନିଷେଧକ ଉଦ୍ଭାବନ କରି ସ୍ୱାସ୍ଥ୍ୟ ସେବାଦ୍ୱାରା ସମାଜରୁ ବହୁ ଦୁଃଖ ଦୂର କରିଥିବା ବୈଜ୍ଞାନିକ, ମହାମାରୀ ରୋଗମାନଙ୍କର ନିଦାନ ବାହାର କରିଥିବା ଗବେଷକ ବା ବିଶ୍ୱଭ୍ରାତୃତ୍ୱର ଭାବନା ପ୍ରସାର କରିଥିବା ଚିନ୍ତାଶୀଳ ଦାର୍ଶନିକମାନେ ହିଁ ସଭ୍ୟତାର ପଥ ପ୍ରଦର୍ଶକ ଓ ମାନବବାଦ ବିକାଶର ବଡ଼ ସମର୍ଥକ ।

ବ୍ୟକ୍ତି ମରଣଶୀଳ, କିନ୍ତୁ ମଣିଷ ସମାଜ ଚିରସ୍ଥାୟୀ । ମଣିଷ ସମାଜ କିପରି ଅଧିକରୁ ଅଧିକ ପ୍ରୀତିପୂର୍ଣ୍ଣ, ନ୍ୟାୟପୂର୍ଣ୍ଣ ଓ ସମତାଭିତ୍ତିକ ପରିବେଶ ସୃଷ୍ଟି କରିପାରିବ ତାହା ଉପରେ ମାନବବାଦ ସର୍ବଦା ଗୁରୁତ୍ୱ ଦେଇ ଆସିଛି । ସମାଜରେ ଯାହା କିଛି ଅନ୍ୟାୟ, ବୈଷମ୍ୟ ବା ଭେଦଭାବ ରହିଛି ତାହା ସୁଚିନ୍ତିତ ଓ ବିଚାରଶୀଳ ପଦକ୍ଷେପଦ୍ୱାରା ଦୂର ହୋଇପାରିବ । ଭାଷା, ଧର୍ମ, ଜାତୀୟତା, ଜୀବନଶୈଳୀ, ସାଂସ୍କୃତିକ ପରିବେଶ ଇତ୍ୟାଦି କ୍ଷେତ୍ରରେ ଭିନ୍ନତା ମଣିଷ ସମାଜରେ ରହିଛି । ଆମର ଏହି ଭିନ୍ନତା ଭୌଗୋଳିକ ଓ ପରିସ୍ଥିତି ଗତ, କିନ୍ତୁ ଆମେ ସ୍ୱରୂପରେ ମଣିଷ । ସାମାଜିକ ଚଳଣି କ୍ଷେତ୍ରରେ ଯାହା ବିଭିନ୍ନତା ରହିଛି ତାର ଊର୍ଦ୍ଧ୍ୱକୁ ଯାଇ ଆମେ ଭ୍ରାତୃତ୍ୱର ବନ୍ଧନରେ ଯୋଡି ହୋଇପାରିବା । ଅନ୍ୟର ଦୁଃଖକୁ ଅନୁଭବ କରି ସହାନୁଭୂତିର ହାତ ବଢ଼ାଇବା ଓ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ପୋଷଣ କରିବା ମାନବବାଦର ମୂଳ ଲକ୍ଷ୍ୟ । ମାନବବାଦର ବିକାଶ ହିଁ ସଭ୍ୟ ଦୃଷ୍ଟିଭଙ୍ଗୀର ବିକାଶ । ମାନବିକତାର ଅବକ୍ଷୟ ହିଁ ସଭ୍ୟତାର ଅବକ୍ଷୟ । ମାନବବାଦ ଯେ ଏକ ମହତ୍ତର ଜୀବନବୋଧର ସାରମର୍ମ ଏହା କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ଏହା ବ୍ୟକ୍ତିକୁ ଓ ସମାଜକୁ ସମ୍ବେଦନଶୀଳ, ସୃଜନଶୀଳ ଓ ନୈତିକ କରିବାକୁ ପ୍ରୟାସ କରିଥାଏ ।

(୧୦.୭.୨୦୧୩)



# ମାନବବାଦ ବନାମ ଅସ୍ମିତା

ଆଧୁନିକ ଜୀବନଧାରାରେ ପ୍ରତ୍ୟେକ ବ୍ୟକ୍ତି କିଛି ପରିଚୟ ବହନ କରେ । ସାମାଜିକ ଓ ରାଷ୍ଟ୍ରୀୟ ବ୍ୟବସ୍ଥାର ଦୃଢ଼ୀକରଣ ସହ ବ୍ୟକ୍ତି ଅସ୍ମିତାର ପ୍ରଶ୍ନଟି ଆସିଥିବା ମନେହୁଏ । ତେବେ ବ୍ୟକ୍ତିର ଏକକ ପରିଚୟ ନ ଥାଇ ବହୁବିଧ ପରିଚୟ ରହିପାରେ । ଏହି ପରିଚୟର ଏକ ଐତିହାସିକ ବା ଭୌଗୋଳିକ ଭିତ୍ତି ବି ରହିଥିବା ମନେହୁଏ । ଏହି ଦୃଷ୍ଟିରୁ ଦେଖିଲେ ସାମାଜିକ ବିକାଶଧାରାରେ 'ରାଜନୈତିକ ଅସ୍ମିତା'ର ଭାବନା ରାଜ୍ୟ ଓ ରାଜତନ୍ତ୍ର ଯୋଗୁଁ ଆସିଥିଲା । ତାହାପରେ "ରାଷ୍ଟ୍ର" ର ଭାବନା ଆସିବା ସହ ପ୍ରତ୍ୟେକ ରାଷ୍ଟ୍ରର ସାର୍ବଭୌମତ୍ୱ ତାହାର ମୁଖ୍ୟ ଲକ୍ଷଣ ହେଲା, ରାଷ୍ଟ୍ରର କଳେବର କ୍ଷୁଦ୍ର ହେଉ ବା ବୃହତ୍ ହେଉ, ତାହା ଜନଗଣଙ୍କ ମଧ୍ୟରେ ଏକ ଭାବଗତ ଅସ୍ମିତା ସୃଷ୍ଟି ଦିଗରେ ଅତୀତରେ ସହାୟକ ହୋଇଥିଲା । ସେହିପରି ଭାଷାଗତ ଅସ୍ମିତା ଗୋଟିଏ ସମୟରେ ବେଶ୍ ପ୍ରଭାବଶାଳୀ ଥିଲା । ଭାଷା ବିକଶିତ ହେଉ ବା ନ ହେଉ ଆଞ୍ଚଳିକ ହେଉ ବା ଏକ ବୃହତ୍ତର ଅଞ୍ଚଳରେ ପରିବ୍ୟାପ୍ତ ହେଉ ଭାଷାକୁ ନେଇ ଜନଗୋଷ୍ଠୀରେ ଭାବଗତ ସଂହତି ଆସିଥିବା ମନେହୁଏ । ସେହିପରି ଧାର୍ମିକ ବିଶ୍ୱାସ ବି ସାମାଜିକ ସଂହତି କ୍ଷେତ୍ରରେ ଅନ୍ୟ ଏକ ବଳିଷ୍ଠ ଉପାଦାନ ହେବା ଜଣାଯାଏ । ଧର୍ମ ସ୍ଥଳ ବିଶେଷରେ ଏକ ସ୍ପର୍ଶକାତର ଓ ଆବେଗିକ ପ୍ରଶ୍ନ ହୋଇଥିବାରୁ ଧର୍ମକୁ ଆଧାର କରି ଏକ ସାଂସ୍କୃତିକ ଅସ୍ମିତାର ଚିତ୍ର ଆସିଥାଏ । ବସ୍ତୁତଃ ଜଣେ ବ୍ୟକ୍ତି ସମାଜରେ ନାନା ଅସ୍ମିତାକୁ ନେଇ ନାନା ପରିଚୟରେ ପରିଚିତ ହୋଇଥାଏ । ଜାତୀୟତା, ଭାଷା, ଧର୍ମ ବ୍ୟତୀତ ଆଞ୍ଚଳିକ, ବୃତ୍ତିଗତ, ଜାତିଗତ ବା ଅନ୍ୟାନ୍ୟ ପରିଚୟ ବି ବ୍ୟକ୍ତି ପାଖରେ ରହିପାରେ । ବୃତ୍ତି ଦୃଷ୍ଟିରୁ ଜଣେ ବ୍ୟବସାୟୀ, ଅଧ୍ୟାପକ, ଓକିଲ, ରାଜନେତା, ଚାଷୀ ବା ଆଉକିଛି ହୋଇପାରେ । ଆଞ୍ଚଳିକତା ଦୃଷ୍ଟିକୋଣରୁ ଜଣେ ରହୁଥିବା ଗୋଟିଏ ଅଞ୍ଚଳର ପରିଚୟ ବହନ କରିଥାଏ । ଭାଷା ଦୃଷ୍ଟିରୁ ଜଣେ ଓଡିଆ, ତେଲୁଗୁ, ପଞ୍ଜାବୀ, ବଙ୍ଗାଳି ଇତ୍ୟାଦି ଯାହା କିଛି ହୋଇପାରେ । ସେହିପରି ଧାର୍ମିକ ଅସ୍ମିତା ଦୃଷ୍ଟିରୁ ଜଣେ ହିନ୍ଦୁ, ଖ୍ରୀଷ୍ଟିଆନ, ମୁସଲିମ, ବୌଦ୍ଧ ଧର୍ମାବଲମ୍ବୀ

ବା ଅନ୍ୟ କିଛି ହୋଇପାରେ । ଜାତୀୟତା ଦୃଷ୍ଟିରୁ ଜଣେ ଭାରତୀୟ, ପାକିସ୍ଥାନୀ, ବଙ୍ଗଳାଦେଶୀ, ଆମେରିକୀୟ ବା ଆଉ କିଛି ହୋଇପାରେ । ସେହିପରି ବୌଦ୍ଧିକ ଆଦର୍ଶ ଓ ଆତ୍ମପ୍ରତ୍ୟୟ ଦୃଷ୍ଟିରୁ ଜଣେ ବ୍ୟକ୍ତି ମାନବବାଦୀ, ହେତୁବାଦୀ, ଅସ୍ତିତ୍ୱବାଦୀ, ବିଶ୍ୱବାଦୀ ବା ଆଉ ଯାହା ହୋଇପାରନ୍ତି । ଏହିପରି ଦେଖିଲେ ଜଣେ ବ୍ୟକ୍ତି ନାନାବିଧ ଅସ୍ମିତାର ପରିଚୟ ବହନ କରି ସମାଜରେ ଜୀବନ ଧାରଣ କରେ ।

ଜଣେ ବ୍ୟକ୍ତିର ଏହି ପରିଚୟ ବହୁ ସମୟରେ ଆକସ୍ମିକ ଓ ପରିସ୍ଥିତିଗତ । ଜଣେ ଭାରତରେ ଜନ୍ମ ହୋଇଥିବାରୁ ସେ ଭାରତୀୟ, ସେ ଇଟାଲୀରେ ଜନ୍ମ ହୋଇଥିଲେ ଇଟାଲୀୟ, ଆମେରିକାରେ ଜନ୍ମ ହୋଇଥିଲେ ଆମେରିକୀୟ ବା ପାକିସ୍ତାନରେ ଜନ୍ମ ହୋଇଥିଲେ ପାକିସ୍ତାନୀ ବୋଲି ପରିଚିତ ହୋଇଥାନ୍ତେ । ରାଷ୍ଟ୍ରୀୟ ଅସ୍ମିତା ବ୍ୟକ୍ତିର ଏକ ଆକସ୍ମିକ ପରିଚୟ ଯାହା ଉପରେ ବ୍ୟକ୍ତିର କୌଣସି କର୍ତ୍ତୃତ୍ୱ ନଥାଏ । ତେବେ ଏହି ରାଷ୍ଟ୍ରୀୟ ଅସ୍ମିତାକୁ ନେଇ ବ୍ୟକ୍ତି ବ୍ୟକ୍ତି ଭିତରେ ବା ରାଷ୍ଟ୍ର ରାଷ୍ଟ୍ର ଭିତରେ ବିଦ୍ୱେଷର ମନୋଭାବ ଆଣିବା ଏକ ଅହେତୁକ ଓ ଅମାନବିକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ ।

ରାଷ୍ଟ୍ରୀୟତା ସମ୍ପର୍କରେ ଯାହା କୁହାଗଲା ତାହା ଧର୍ମ, ଭାଷା ଇତ୍ୟାଦି ବିଷୟରେ ବି କୁହାଯାଇପାରେ । ଜଣେ ଭାରତରେ ଏକ ହିନ୍ଦୁ ପରିବାରରେ ଜନ୍ମ ହୋଇଥିବା ହେତୁ ସେ ହିନ୍ଦୁ, ଇରାକରେ ଜନ୍ମ ହୋଇଥିଲେ ମୁସଲମାନ, ଫ୍ରାନ୍ସରେ ଜନ୍ମ ହୋଇଥିଲେ ଖ୍ରୀଷ୍ଟିଆନ ବା ଶ୍ରୀଲଙ୍କାରେ ଜନ୍ମ ହୋଇଥିଲେ ବୌଦ୍ଧଧର୍ମାବଲମ୍ବୀ ଭାବେ ପରିଚୟ ବହନ କରିଥାନ୍ତେ । ଧର୍ମଗତ ଅସ୍ମିତା ବି ବ୍ୟକ୍ତିର ଏକ ଆକସ୍ମିକ ପରିଚୟ ମାତ୍ର । ଧର୍ମକୁ ଆଧାର କରି ମୌଳବାଦ, ସାମ୍ପ୍ରଦାୟିକତାବାଦ ଓ ଧର୍ମାନ୍ଧତା ଆମ ସଂସାରରେ ନାନା ଭାବରେ ରହିବା ଜଣାଯାଏ । ମୋ ଧର୍ମ ବିଶ୍ୱାସ ହିଁ ଶ୍ରେୟ, ମୋ ଧର୍ମର ଈଶ୍ୱର ହିଁ ପୂଜାଯୋଗ୍ୟ, ମୋ ଧର୍ମର ପୂଜାସ୍ଥଳ ପବିତ୍ର, ମୋ ଧର୍ମର ଧର୍ମଗ୍ରନ୍ଥ ହିଁ ଈଶ୍ୱର-ପ୍ରଦତ୍ତ ଜ୍ଞାନ ବୋଲି କେ ଅନ୍ୟ ଧର୍ମାବଲମ୍ବୀ ଓ ସେମାନଙ୍କର ବିଶ୍ୱାସ, ପୂଜାସ୍ଥଳ, ଜୀବନଧାରା ପ୍ରତି ଅସୂୟା ବା ଘୃଣାଭାବ ପୋଷଣ କରିବା ବା ଅନ୍ୟ ଧର୍ମ ସଂସ୍କୃତିର ଲୋକମାନଙ୍କ ପ୍ରତି ବିଦ୍ୱେଷ ମନୋଭାବ ନେଇ ହିଂସାରେ ବ୍ୟାପୃତ ହେବା ସାମ୍ପ୍ରଦାୟିକ ମନୋଭାବର ପରିଚୟ ଦେଇଥାଏ ।

ପରିତାପର ବିଷୟ ଆମ ସଂସାରରେ ରାଷ୍ଟ୍ର ଭାବନାରୁ ଉଗ୍ରଜାତୀୟତା, ଧର୍ମଚେତନାରୁ ଧର୍ମାନ୍ଧତା ଜନିତ ସାମ୍ପ୍ରଦାୟିକତା, ଶାରୀରିକ ରଙ୍ଗକୁ ନେଇ ବର୍ଣ୍ଣ ବିଦ୍ୱେଷ ଦୀର୍ଘଦିନ ଧରି ରହିଆସିଛି । ଏସବୁ ମଣିଷ ସମାଜକୁ ଭାଗ ଭାଗ କରି ଦେଇଛି । ଏହି ବିଭାଜନ ଯେତେ ପରିସ୍ଥିତି ଗତ ନୁହେଁ, ତା'ଠାରୁ ଅଧିକ ମନୋଗତ ବା ବିଚାରଗତ ।

ଏହି ପାର୍ଥକ୍ୟରୁ ନାନା ହିଂସା ଓ ବର୍ବରତା ମଣିଷ ସମାଜରେ ରହି ଆସିଛି । ମଣିଷ ଅନ୍ୟ ମଣିଷକୁ ଦାସତ୍ୱର ବେଡି ପିନ୍ଧାଇଛି । ରାଜତନ୍ତ୍ର ଯୁଗରେ ଯୁଦ୍ଧରେ ଏକ ବିଜିତ ଗୋଷ୍ଠୀ ପରାଜିତ ଗୋଷ୍ଠୀ ଉପରେ ବର୍ବରୋଚିତ ବ୍ୟବହାର କରିଛି, ସାମ୍ପ୍ରଦାୟିକ ଦଙ୍ଗାରେ ଏକ ସଂଖ୍ୟାଗରିଷ୍ଠ ଗୋଷ୍ଠୀ ସଂଖ୍ୟାଲଘୁ ଗୋଷ୍ଠୀର ସଂସାରକୁ ଉଜାଡି ଦେଇଛି । ଆମ ସଂସାରରେ ଏ ସବୁ ଭାବନାକୁ ଆଧାର କରି ଦ୍ୱୈତବୋଧ କେତେକଙ୍କ ମାନସିକତାକୁ ଆକ୍ରାନ୍ତ କରି ରଖିଛି । ଯେଉଁଠି ଭେଦଭାବ, ଘୃଣା ବା ବିଭେଦତା ଜୀବନକୁ ଆକ୍ରାନ୍ତ କରିଦିଏ, ତାହା ମଣିଷ ଭିତର ମନୁଷ୍ୟତ୍ୱକୁ ନଷ୍ଟ କରି ଦେଇଥାଏ । ଇତିହାସରେ ମାନବୀୟ ବର୍ବରତାର ବହୁ ଦୁଃଖଦ ଚିତ୍ର ରହିଛି ।

ଧାର୍ମିକ, ରାଜନୈତିକ, ଓ ସାଂସ୍କୃତିକ ପାର୍ଥକ୍ୟକୁ ନେଇ ସମାଜ ବିଭାଜିତ ହୋଇରହିଛି ଓ ପରିଣାମତଃ ସଂସାରରେ ଅସହିଷ୍ଣୁତାର ମନୋଭାବ ରହିଛି । ଏହି ଭେଦଭାବକୁ ଦୂର କରିବା କ୍ଷେତ୍ରରେ ମାନବବାଦ ଏକ ନୂତନ ଆଦର୍ଶ ଭାବେ ଚିନ୍ତାରାଜ୍ୟରେ ଏକ କ୍ରାନ୍ତିକାରୀ ବିଚାର ଆଣିଛି । ଏହି ପୃଷ୍ଠଭୂମିରେ ମାନବବାଦ ଏକ ମହତ୍ତର ଜୀବନବୋଧ ଭାବେ ଆଧୁନିକ ଜୀବନପ୍ରବାହର ଆଦର୍ଶ ହୋଇଛି । ସବୁ ମଣିଷଙ୍କ ଭିତରେ ଏକ ଐକ୍ୟର ବନ୍ଧନ ସୃଷ୍ଟି କରିବାରେ ମାନବବାଦ ହିଁ ସର୍ବଶ୍ରେଷ୍ଠ ଆଦର୍ଶ ମନେହୁଏ । ମାନବବାଦରୁ ଅନ୍ତାରାଷ୍ଟ୍ରୀୟ ଚେତନା ଓ ଧର୍ମନିରପେକ୍ଷ ମୂଲ୍ୟବୋଧର ଉଦ୍ଭବ ହୋଇଛି ।

ସେହିପରି ନାନା ଭୌଗୋଳିକ ଓ ଅର୍ଥନୈତିକ କାରଣରୁ ମଣିଷମାନେ ଶ୍ରେଣୀ-ବିଭକ୍ତ ସମାଜରେ ବିଭାଜିତ ହୋଇ ଆସିଛନ୍ତି । ମାର୍କସବାଦୀମାନେ ସାମାଜିକ ବିକାଶଧାରାକୁ ଶ୍ରେଣୀ ବିଭକ୍ତ ସମାଜରେ ବ୍ୟାଖ୍ୟା କରିଥାନ୍ତି । ମଣିଷ ସମାଜର ଉତ୍ପାଦନ ପ୍ରଣାଳୀ ଓ ଭୌତିକ ସାଧନ ଆଧାରରେ ମଣିଷମାନେ କିପରି ଶ୍ରେଣୀଭିତ୍ତିକ ସମାଜରେ ବିଭାଜିତ ହୋଇଛନ୍ତି ତାହାର ଏକ ବୈଜ୍ଞାନିକ ବିଶ୍ଳେଷଣ ମାର୍କସବାଦରେ ଦେଖିବାକୁ ମିଳେ । ତେବେ ସମାଜର ବିକାଶଧାରା ଅର୍ଥନୈତିକ ପରିବେଶଦ୍ୱାରା ଯେ ସମ୍ପୂର୍ଣ୍ଣ ନିୟନ୍ତ୍ରିତ ଏହା ହୁଏତ ଏକ ଯଥାର୍ଥ ବିଶ୍ଳେଷଣ ନ ହୋଇପାରେ, ତେବେ ଆମ ସଂସାରରେ ଯେ ନାନା ସ୍ତରରେ ଶ୍ରେଣୀ- ବିଭାଜନ ରହିଛି ଏହା ଅସ୍ୱୀକାର କରିହେବ ନାହିଁ ।

ସାମ୍ପ୍ରତିକ ପରିବେଶରେ ସମାଜରେ ନାନା ସ୍ଖଳନ ବିଭିନ୍ନ ସ୍ତରରେ ରହିଛି, ଯାହା ଅନସ୍ୱୀକାର୍ଯ୍ୟ । ଏ ସତ୍ତ୍ୱେ ମାନବବାଦୀ ବିଚାରବୋଧର ଯେଉଁ ଆଲୋକର ଧାରାଟି ସାରା ବିଶ୍ୱରେ ବହୁ ଦାର୍ଶନିକ, ହେତୁବାଦୀ, ମାନବହିତୈଷୀ ରାଷ୍ଟ୍ରନୀତିଜ୍ଞଙ୍କ ବିଚାରବୋଧ ଦେଇ ବିକଶିତ ହୋଇଛି, ତାହାର ଯେ ଏକ ସୁଦୂରପ୍ରସାରୀ ସକାରାତ୍ମକ ପ୍ରଭାବ ରହିଛି

ଏହା ଆଶା କରାଯାଏ । ସମଗ୍ର ପୃଥିବୀରେ ବିକଶିତ ହୋଇଥିବା ନାନା ଆନ୍ତର୍ଜାତିକ ସଙ୍ଗଠନ, ମିଳିତ ଜାତିସଙ୍ଘ, ଆର୍ଥ ଫେଡେରେସନ ମାନବବାଦର ବାର୍ତ୍ତାକୁ ନାନା ଦିଗରେ ପ୍ରସାର କରି ଚାଲିଛନ୍ତି । ବହୁ କ୍ଷେତ୍ରରେ ବିଫଳତା ରହିଛି, ଏହାକୁ ଅସ୍ୱୀକାର କରିହେବ ନାହିଁ, ଏ ସତ୍ତ୍ୱେ ଏକ ଯୁଦ୍ଧ ରହିତ ପୃଥିବୀ, ପ୍ରୀତିପୂର୍ଣ୍ଣ ବିଶ୍ୱ, ମାନବିକ ଏକତ୍ୱ ଓ ମହତ୍ତ୍ୱ ନେଇ ସାରା ସଂସାରରେ ଅନ୍ତତଃ ଅର୍ଦ୍ଧଶତାବ୍ଦୀ ଭିତରେ ଯେଉଁ ନୂତନ ଆଲୋଡନ ଆସିଛି ତାହାର ସୁଦୂରପ୍ରସାରୀ ପ୍ରଭାବ ଯେ ଶୁଭଙ୍କର ହେବ ଏହା ଆଶା କରାଯାଏ । ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ନେଇ ଆନ୍ତର୍ଜାତିକ ଘୋଷଣା, ଧରିତ୍ରୀର ପରିବେଶ ସୁରକ୍ଷା ନେଇ ବିଶ୍ୱସ୍ତରରେ ସମ୍ପୃକ୍ତି, ବିଶ୍ୱସରକାର ଗଠନର ସମ୍ଭାବନା ନେଇ ବିଶ୍ୱସ୍ତରରେ ଚିନ୍ତନ ଏ କ୍ଷେତ୍ରରେ ପ୍ରୟାସର ଆରମ୍ଭ ମାତ୍ର । ଏହି ପ୍ରୟାସକୁ ଚରିତାର୍ଥ କରିବା ନେଇ ସମ୍ଭାବନାକୁ ସାମ୍ପ୍ରତିକ ସ୍ଥିତିରେ ବିକଶିତ ଜ୍ଞାନ ବିଜ୍ଞାନ ଶକ୍ତିଶାଳୀ କରୁଥିବା ମନେହୁଏ । ଆଧୁନିକ ବିଜ୍ଞାନ ଯୋଗୁ ସାମାଜିକ ଗତିଶୀଳତାରେ ଅଭିବୃଦ୍ଧି, ସାଂସ୍କୃତିକ ଆଦାନପ୍ରଦାନର ପରିବେଶ ଧୀରେ ଧୀରେ ବୃଦ୍ଧି ପାଉଛି । ଫଳତଃ ରୁଦ୍ଧ ମାନସିକତାରୁ ଏକ ବିଶ୍ୱାୟନର ମନୋଭାବ ବୃଦ୍ଧି ପାଇବାରେ ଲାଗିଛି । ସମଗ୍ର ପୃଥିବୀରେ ଗଣତାନ୍ତ୍ରିକ ମୂଲ୍ୟବୋଧ, ସମ୍ବେଦନଶୀଳ ହୃଦୟବତ୍ତା ଓ ବିଶ୍ୱ ଭ୍ରାତୃତ୍ୱର ମନୋଭାବକୁ ପ୍ରସାର କରି ପାରିଲେ ଏକ ନୂତନ ସଂସ୍କୃତିର ଅଭ୍ୟୁଦୟ ହୋଇପାରିବ । ଧର୍ମ, ଜାତୀୟତା, ମାତୃଭାଷା ପରି ସେପରି କିଛି ଅସ୍ମିତା ଭାବ ମଣିଷର ସତ୍ତାକୁ ଏକ କ୍ଷୁଦ୍ର ବେଷ୍ଟନୀ ଭିତରେ ଆବଦ୍ଧ କରିଥିବା ମନେହୁଏ । ଏକ ସଙ୍କୁଚିତ ଅସ୍ମିତା ଭିତରେ ନିଜର ମାନସିକତାକୁ ରୁଦ୍ଧ କରିବାର ପରିଣାମରୁ ସମାଜରେ ହିଂସା, ଅସହିଷ୍ଣୁତା ଓ ଅମାନବିକତାର ପରିବେଶ ଆସିଥାଏ । ନିଜର କ୍ଷୁଦ୍ର ବେଷ୍ଟନୀର ଗବାକ୍ଷମାନଙ୍କୁ ଖୋଲିଦେଲେ ମଣିଷ ପ୍ରସାରିତ ହୁଏ ଓ ବ୍ୟକ୍ତି ତଥା ଗୋଷ୍ଠୀ ଭିତରେ ମାନବୋଚିତ ଚେତନାର ବିକାଶ ହୋଇଥାଏ । ରାଜନୀତି, ଅର୍ଥନୀତି, ସଂସ୍କୃତି, ଶିକ୍ଷା, ଧର୍ମ ଆଦି ସକଳ ସାମାଜିକ ବ୍ୟବସ୍ଥାର ମୂଳ ଆଧାର ମାନବବାଦ ବା ମାନବୋଚିତ ଆଦର୍ଶବୋଧକୁ ସ୍ପର୍ଶ କରିବା ଦ୍ୱାରା ହିଁ ଏକ ମହତ୍ତର ଓ ସୁନ୍ଦରତର ବିଶ୍ୱସମାଜ ଭବିଷ୍ୟତରେ ସମ୍ଭବ ହୋଇପାରିବ ।

(୨୪.୭.୨୦୧୩)



# ସଭ୍ୟତାର ବିକାଶ ଓ ଜୀବନର ଉତ୍କର୍ଷ

ଏହା ଅନସ୍ୱୀକାର୍ଯ୍ୟ ଯେ ଆମ ସଂସାରରେ ଓ ମଣିଷ ସମାଜରେ ଭିନ୍ନତା ଓ ବିବିଧତା ରହିଛି । ଏହି ବିବିଧତା ପଶ୍ଚାତରେ ବିଭିନ୍ନ କାରଣ ରହିଛି । ଏକ ଆଦିମ ସ୍ଥିତିରୁ ଧରିତ୍ରୀ ବକ୍ଷରେ ବିଭିନ୍ନ ଭୂଖଣ୍ଡରେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀ ଜୀବନରୁ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହୋଇଥିଲା । ନୃତାତ୍ତ୍ୱିକ ଅନୁଶୀଳନରୁ ଜଣାଯାଏ ଯେ କୃଷିର ଜ୍ଞାନ ପରେ ଆଦିମ ସମାଜମାନ ଯାଯାବର ଜୀବନକୁ ପରିତ୍ୟାଗ କରି ଧୀରେ ଧୀରେ ବସତି ସ୍ଥାପନ କରି ସ୍ଥାୟୀ ଭାବେ ବିଭିନ୍ନ ଭୂଖଣ୍ଡରେ ରହିବାକୁ ପ୍ରୟାସ କରିଛନ୍ତି । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଏହିପରି ଗୋଷ୍ଠୀ ଜୀବନ ଆରମ୍ଭ ହୋଇଛି । ସ୍ଥାୟୀ ଭାବେ ବଞ୍ଚିବା ପରେ ଜୀବନର ଆବଶ୍ୟକତା ଓ ପରିବେଶରେ ଉପଲବ୍ଧ ବସ୍ତୁକୁ ନେଇ ଧୀରେ ଧୀରେ ବିଭିନ୍ନ କୁଟୀର ଶିଳ୍ପର ବିକାଶ ହୋଇଛି । ଭାଷାମାନଙ୍କର ଉତ୍ପତ୍ତି ପ୍ରାକୃତିକ ଧାରାରେ ଭାବ ବିନିମୟ ପାଇଁ ସୃଷ୍ଟି ହୋଇଛି । ସେହି ପ୍ରକ୍ରିୟାରେ ପୃଥିବୀରେ ପ୍ରାୟ ପାଞ୍ଚହଜାର ଭାଷାର ଉଦ୍ଭବ ହୋଇଛି । ଭାଷା ବିଜ୍ଞାନୀମାନେ ବୁଦ୍ଧିର ବିକାଶରେ ଭାଷାର ପ୍ରୟୋଗ ନେଇ ବିଭିନ୍ନ ତଥ୍ୟ ଦେଇଛନ୍ତି । କ୍ଷୁଦ୍ର ଗୋଷ୍ଠୀ ଜୀବନର ବିକାଶ ଓ ବ୍ୟାପ୍ତିରୁ ସଭ୍ୟତା, ସଂସ୍କୃତି, ନୀତିବୋଧ, ଧର୍ମର ଭାବନା ବିକଶିତ ହୋଇଛି । କାଳକ୍ରମେ ଗ୍ରାମୀଣ ପରିବେଶରୁ ଗ୍ରାମମାନଙ୍କୁ ନେଇ ଏକ ରାଜନୈତିକ ବ୍ୟବସ୍ଥାର ପରିବେଶ ଆସିଛି । ରାଜ୍ୟ, ରାଜତନ୍ତ୍ର, ସାମାଜିକ ନିୟନ୍ତ୍ରଣ ପ୍ରକ୍ରିୟାକୁ ସୁଦୃଢ଼ ଭିତ୍ତି ଯୋଗାଇଛି । କାଳକ୍ରମେ ରାଜତନ୍ତ୍ରରେ କେତେକ ରାଜା ଶକ୍ତିଶାଳୀ ହୋଇ ରାଜ୍ୟ ବିସ୍ତାର କରିଛନ୍ତି ଓ ପରେ ରାଷ୍ଟ୍ର ଭାବନାର ବିକାଶ ହୋଇଛି । ଏହି ଧାରାରେ ରାଷ୍ଟ୍ର ଏକ ସାର୍ବଭୌମ ଅନୁଷ୍ଠାନ ହୋଇଛି ଓ ପୃଥିବୀରେ ପ୍ରାୟ ୧୯୭ ରାଷ୍ଟ୍ର ରହିଛନ୍ତି । ପୃଥିବୀରେ ବହୁ ସଭ୍ୟତା ବିଭିନ୍ନ ଭୌଗୋଳିକ ପରିବେଶରେ ମୁଣ୍ଡ ଟେକିଛି । ଏପରିକି କେତେକ ସଭ୍ୟତାର ପତନ ଘଟିଛି ଓ ନୂଆ ଭୂ-ଖଣ୍ଡର ଆବିଷ୍କାର ଯୋଗୁ ହେଉ ବା ସ୍ଥାନାନ୍ତର ପ୍ରକ୍ରିୟାରେ ହେଉ ନୂଆ ସଭ୍ୟତା ଗଢ଼ି ଉଠିଛି । ବସ୍ତୁତଃ ସଭ୍ୟତାର ବିକାଶଧାରାରେ ବହୁ ଭାଷା, ଜାତୀୟତା, ଧର୍ମ, ସଂସ୍କୃତି ଇତ୍ୟାଦି ସ୍ୱାଭାବିକ ଭାବେ ଗଢ଼ି ଉଠିଛି । ପ୍ରତ୍ୟେକ ସଭ୍ୟତାର କ୍ରମବିକାଶ, ରାଜନୈତିକ ବ୍ୟବସ୍ଥା, ସାମାଜିକ

ଜୀବନ ପ୍ରବାହ, ଧର୍ମ ଧାରଣା, କଳା, ସାହିତ୍ୟ, ସଂସ୍କୃତିର ଚିତ୍ର ଐତିହାସିକ ଓ ସମାଜ ବିଜ୍ଞାନ ଅନୁଶୀଳନରୁ ଜଣାପଡେ । ସୁତରାଂ ସାମାଜିକ ସ୍ତରରେ, ଭିନ୍ନତା ବା ବିବିଧତା ଏକ ପ୍ରାକୃତିକ ପ୍ରକ୍ରିୟା ଭାବେ ଗଢ଼ି ଉଠିଛି । ଧର୍ମ, ଦର୍ଶନ, ବିଚାରବୋଧ କ୍ଷେତ୍ରରେ ଅନେକାନ୍ତବାଦ ସୃଷ୍ଟି ହୋଇଛି ।

ତେବେ କାଳକ୍ରମେ କେତେକ ସମାଜରେ ବିଭିନ୍ନ କାରଣରୁ ସାମାଜିକ ଦାସତ୍ୱର ପରିବେଶ ଆସିଛି । ସମାଜର ଯେଉଁ ଗୋଷ୍ଠୀ ଶକ୍ତିଶାଳୀ ବା ବିତ୍ତଶାଳୀ ହୋଇଛନ୍ତି ସେମାନେ ନିଜର ସେବା ପାଇଁ ଦାସତ୍ୱ ବ୍ୟବସ୍ଥାକୁ କୌଶଳକ୍ରମେ ସୃଷ୍ଟି କରିଛନ୍ତି । ଭାରତୀୟ ସମାଜରେ ସାମାଜିକ ଦାସତ୍ୱ ବର୍ଣ୍ଣବ୍ୟବସ୍ଥା ଜନିତ ଜାତିବାଦର ରୂପ ନେଇଛି । ଶୂଦ୍ର ଓ ଅତିଶୂଦ୍ର ବା ଦଳିତମାନେ ସାମାଜିକ ବ୍ୟବସ୍ଥାରେ ଦାସତ୍ୱର ଶିକାର ହୋଇଛନ୍ତି । ଜ୍ଞାନ, କ୍ଷମତା ଓ ଅର୍ଥହାସଲରୁ ସେମାନଙ୍କୁ ବଞ୍ଚିତ କରାଯାଇଛି । ଶ୍ରମ ଓ ଜ୍ଞାନର ସଂଯୋଗକୁ ଛିନ୍ନ କରାଯାଇ ତଥାକଥିତ ଉଚ୍ଚଜାତିର ଲୋକମାନେ ଶ୍ରମଠାରୁ ଦୂରରେ ରହିଛନ୍ତି ଓ ଶୂଦ୍ର ଓ ଦଳିତମାନେ ବିଦ୍ୟାର୍ଜ୍ଜନ ଠାରୁ ନିବୃତ୍ତ ହୋଇଛନ୍ତି । ସାମାଜିକ ଦାସତ୍ୱରୁ ଅର୍ଥନୈତିକ ଦାସତ୍ୱର ପରିବେଶ ଆସିଛି । ରାଜତନ୍ତ୍ର ଯୁଗରେ ପ୍ରଜାଗଣ ନ୍ୟୂନ ହୋଇ ରହିଛନ୍ତି ଓ ଅର୍ଥନୈତିକ ଦାସତ୍ୱର ଶିକାର ହୋଇଛନ୍ତି । ସାମାଜିକ ଦାସତ୍ୱ ଓ ଅର୍ଥନୈତିକ ଶୋଷଣ ପ୍ରକ୍ରିୟାରେ ସମାଜ ଭାଗ ହୋଇ ଯାଇଛି । ସବୁ ସମାଜରେ ଶାସକ ଗୋଷ୍ଠୀ ଓ ପୂଜକ ଗୋଷ୍ଠୀ ବିତ୍ତଶାଳୀ ଓ ବଳଶାଳୀ ହୋଇଛନ୍ତି, ସାଧାରଣ ଜନତା ଶ୍ରମଜୀବୀ ହୋଇ ରହିଛନ୍ତି । ସମାଜରେ ଶାସକ ଶ୍ରେଣୀ ସମ୍ଭ୍ରାନ୍ତ ହୋଇ ଧନ, କ୍ଷମତା ଉପଭୋଗ କରିଛନ୍ତି । ପୂଜକ ଶ୍ରେଣୀ ଈଶ୍ୱର ଓ ଜନତା ମଧ୍ୟରେ ମଧ୍ୟସ୍ଥ ହୋଇ ବେଶ୍ ପ୍ରଭାବଶାଳୀ ହୋଇଛନ୍ତି । ସେମାନେ ଧର୍ମର ପ୍ରବକ୍ତା ହୋଇ ସମାଜର ନୀତି, ନିୟମ ନିର୍ଦ୍ଧାରଣରେ ମୁଖ୍ୟ ଭୂମିକା ନେଇଛନ୍ତି ।

ୟୁରୋପରେ ଓ ବିଶେଷତଃ ଇଟାଲୀରେ ଯେଉଁ ନବଜାଗରଣ ବା ରିନାସାଁର ଯୁଗ ଆସିଛି ସେଥିରୁ ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ଯୁଗ ଆରମ୍ଭ ହୋଇଛି । ବିଜ୍ଞାନର ଆଦି ପର୍ବଟି ଅତ୍ୟନ୍ତ ସଂଘର୍ଷମୟ ହୋଇଛି କାରଣ ବିଜ୍ଞାନର ଆବିଷ୍କୃତ ତଥ୍ୟମାନ ଧାର୍ମିକ ବିଶ୍ୱାସର ବିରୁଦ୍ଧାଚରଣ କରିଛି । ତେବେ ବିଜ୍ଞାନ ସତ୍ୟ ଉପରେ ଆଧାରିତ ଥିବାରୁ ବିଜ୍ଞାନର ଅଗ୍ରଗତିକୁ ଧର୍ମ ପ୍ରତିରୋଧ କରିପାରିନାହିଁ । ବିଜ୍ଞାନର ବିକାଶରୁ ୟୁରୋପରେ ଏକ ଶିଳ୍ପ ବିପ୍ଳବର ଯୁଗ ଆସିଛି ଓ ସେଥିରେ ଇଂଲଣ୍ଡ ପୁରୋଭାଗରେ ରହିଛି । ନୂତନ ପ୍ରଯୁକ୍ତି ଓ କଳ କାରଖାନାମାନ ଗଢ଼ି ଉଠିଛି ଓ ନୂଆ ନୂଆ ଆବିଷ୍କାର ଓ ଉଦ୍ଭାବନ ସଭ୍ୟତାର ରୂପରେଖ ବଦଳାଇ ଦେଇଛି । କୃଷିଭିତ୍ତିକ ଗ୍ରାମୀଣ ଜୀବନଧାରରୁ ଏକ ସହର ଭିତ୍ତିକ ଶିଳ୍ପ ଓ କଳକାରଖାନାର ପରିବେଶ ଆସିଛି । କୃଷିର ଉନ୍ନତିକରଣ ଓ

କଳକାରଖାନାର ପ୍ରତିଷ୍ଠା ପରେ ୟୁରୋପର କେତେକ ଦେଶ ବେଶ୍ ବିତ୍ତଶାଳୀ ହୋଇଛନ୍ତି । ଏହି ଧାରାରେ ସାମ୍ରାଜ୍ୟବାଦ ବିସ୍ତାରଲାଭ କରିଛି ଓ ଇଂଲଣ୍ଡ ଓ ୟୁରୋପର କେତେକ ରାଷ୍ଟ୍ର ଏସିଆ ଓ ଆଫ୍ରିକାର ବହୁ ରାଷ୍ଟ୍ରକୁ ନିଜର ଉପନିବେଶ କରିଛନ୍ତି । ଉପନିବେଶବାଦର ବିକାଶ ଯୋଗୁ ସଭ୍ୟତା-ସଭ୍ୟତା, ଧର୍ମ-ଧର୍ମ, ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରଦାନ ସମ୍ଭବ ହୋଇଛି । ଭାଷାମାନଙ୍କର ବି ଉନ୍ନତି ହୋଇଛି ଓ ଅଧିକାଂଶ ଭାଷା ଜ୍ଞାନ-ବିଜ୍ଞାନର ବିକାଶ ପାଇଁ ନିଜକୁ ସମର୍ଥ କରିବାକୁ ପ୍ରୟାସ କରିଛନ୍ତି ।

ୟୁରୋପୀୟ ରାଷ୍ଟ୍ରମାନଙ୍କରେ ନବଜାଗରଣର ପରିବେଶ ଓ ଶିଳ୍ପ ବିପ୍ଳବ ଯୋଗୁଁ ରାଜନୈତିକ ଦୃଶ୍ୟପଟରେ ବିରାଟ ଆଲୋଡନ ଆସିଛି । ରାଜତନ୍ତ୍ରର ଅବସାନ କରି ଏକ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରଚଳନ ପାଇଁ କେତେକ ଦେଶରେ ବିପ୍ଳବର ସୂତ୍ରପାତ ହୋଇଛି । ଫରାସୀ ରାଷ୍ଟ୍ର ବିପ୍ଳବ ଓ ଆମେରିକାର ସ୍ୱାଧୀନତା ସଂଗ୍ରାମ ଅଷ୍ଟାଦଶ ଶତାବ୍ଦୀର ଦୁଇଟି ପ୍ରମୁଖ ଘଟଣା ଭାବେ ଇତିହାସର ମୋଡ ବଦଳାଇବାରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ନେଇଛନ୍ତି । ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରସାର ଓ ରାଜତନ୍ତ୍ରର ବିଲୋପ ପାଇଁ ସାରା ବିଶ୍ୱର ଚିନ୍ତାମାନସକୁ ଏ ଦୁଇଟି ଘଟଣା ବହୁ ଭାବରେ ପ୍ରଭାବିତ କରିବା ମନେହୁଏ ।

କାଳକ୍ରମେ ବିଂଶ ଶତାବ୍ଦୀ ଆରମ୍ଭରୁ ଉପନିବେଶବାଦୀ ଦାସତ୍ୱ ଓ ସାମ୍ରାଜ୍ୟବାଦ କବଳରୁ ମୁକ୍ତିପାଇଁ କେତେକ ରାଷ୍ଟ୍ରରେ ଆଲୋଡନ ଆସିଛି । ଉପନିବେଶ ହୋଇ ରହିଥିବା ରାଷ୍ଟ୍ରମାନଙ୍କରେ ଗଣଶିକ୍ଷାର ପ୍ରସାର ଓ ୟୁରୋପୀୟ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥାର ପ୍ରଭାବରୁ ସ୍ୱାଧୀନତା ସଂଗ୍ରାମ ମୁଣ୍ଡ ଟେକିଛି । ଏହି ଅବସରରେ ଦୁଇଟି ବିଶ୍ୱଯୁଦ୍ଧ ପୃଥିବୀରେ ଏକ ଭୟାନକ ସ୍ଥିତି ସୃଷ୍ଟି କରିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ଓ ଅନ୍ୟାନ୍ୟ କାରଣରୁ ସାମ୍ରାଜ୍ୟବାଦୀ ଶୋଷଣରୁ ଉପନିବେଶ ଥିବା ରାଷ୍ଟ୍ରମାନ ରାଜନୈତିକ ସ୍ୱାଧୀନତା ହାସଲ କରିବାକୁ ଧୀରେ ଧୀରେ ସମର୍ଥ ହୋଇଛନ୍ତି । ସେହିପରି ଅର୍ଥନୈତିକ ଶୋଷଣରୁ ମୁକ୍ତ ହୋଇ ଏକ ସମାଜବାଦୀ ରାଷ୍ଟ୍ର ହେବାକୁ ରୁଷ, ଚୀନ ପରି କେତେକ ଦେଶରେ ଯେଉଁ କମ୍ୟୁନିଷ୍ଟ ବିପ୍ଳବ ଆସିଛି ତାର ପରିଣାମ ସ୍ୱରୂପ ବିଶ୍ୱ ଦୃଶ୍ୟପଟରେ ଏକ ନୂତନ ଜାଗରଣ ଆସିଛି । ମୋଟ ଉପରେ ସାରା ପୃଥିବୀରେ ସାମାଜିକ ଦାସତ୍ୱ, ଅର୍ଥନୈତିକ ଶୋଷଣ ଓ ରାଜନୈତିକ ସାମ୍ରାଜ୍ୟବାଦ ବା ରାଜତନ୍ତ୍ର ଜନିତ ଏକଛତ୍ରବାଦ ବିରୁଦ୍ଧରେ ବିପ୍ଳବମାନ ନାନା ଧାରାରେ ସୃଷ୍ଟିହୋଇ ଏକ ନୂତନ ସନ୍ଦେଶର ଓ ସମ୍ଭାବନାର ପରିବେଶ ସୃଷ୍ଟି କରିଛି ।

ଗତ ତିନିଶହ ବର୍ଷ ଭିତରେ ବିଶ୍ୱ ଦୃଶ୍ୟପଟରେ ଯେଉଁ ପରିବର୍ତ୍ତନର ସୂତ୍ରପାତ ହୋଇଛି ତାହା ପଛାତରେ ଦୁଇଟି ବୌଦ୍ଧିକ ଆଲୋଡନର ପ୍ରମୁଖ ପ୍ରଭାବ ରହିଥିବା ମନେହୁଏ । ସେହି ଦୁଇଟି ପ୍ରମୁଖ ବୌଦ୍ଧିକ ଆଲୋଡନ ହେଲା- ବୈଜ୍ଞାନିକ

ବିଚାରବୋଧର ବିକାଶ ଓ ମାନବବାଦୀ ଜୀବନଦୃଷ୍ଟିର ଅଭ୍ୟୁଦୟ । ଏହି ଦୁଇଟି ବୌଦ୍ଧିକ କ୍ରାନ୍ତି ସଭ୍ୟତାକୁ ନୂତନ ମୋଡ ଦେବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛି ।

ବୈଜ୍ଞାନିକ ବିଚାରବୋଧର ବିକାଶରୁ ଜ୍ଞାନ ବିଜ୍ଞାନର ଧାରା ଆଶାତୀତ ଭାବେ ଅଭିବୃଦ୍ଧି ହୋଇ ଚାଲିଛି । ମଣିଷ ବୈଜ୍ଞାନିକ ଧାରାରେ ତାର ପରିବେଶ, ପ୍ରକୃତି ଓ ବିଶ୍ୱବ୍ରହ୍ମାଣ୍ଡକୁ ଅନୁଧ୍ୟାନ କରି ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚନ କରିବାରେ ସଫଳ ହୋଇଛି । ପ୍ରକୃତିର ଅନୁଶୀଳନ ସହ ସାମାଜିକ ଜୀବନ ପ୍ରବାହ, ଭାଷା, ସଂସ୍କୃତି, ସଭ୍ୟତା, ରାଜନୈତିକ ବ୍ୟବସ୍ଥା, ଅର୍ଥନୈତିକ ବିକାଶ ଇତ୍ୟାଦି ସକଳ ବିଷୟକୁ ବୈଜ୍ଞାନିକ ଧାରାରେ ଅନୁଶୀଳନ କରିବାକୁ ପ୍ରୟାସ କରିଛି । ମୁକ୍ତମନ, ସାର୍ବଜନୀନ ବୈଜ୍ଞାନିକ ପ୍ରଣାଳୀ, ସତ୍ୟ ପ୍ରତି ପ୍ରତିବଦ୍ଧତା ବୈଜ୍ଞାନିକ ବିଚାରବୋଧର ସାରମର୍ମ କହିଲେ ଅତ୍ୟୁକ୍ତି ହେବନାହିଁ । ସେହିପରି ମାନବବାଦୀ ଜୀବନ ଦୃଷ୍ଟିରୁ ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ମାନବିକ ହୃଦୟବତ୍ତା, ଗଣତାନ୍ତ୍ରିକ ଜୀବନଧାରା ଓ ସମତାର ଭାବନା ଦୃଢ଼ ଭିତ୍ତି ନେଇ ପାରିଛି । ଏତଦ୍‌ବ୍ୟତୀତ ଆନ୍ତର୍ଜାତିକ ମନୋଭାବ, ବିଶ୍ୱ ଦୃଷ୍ଟି, ବିଶ୍ୱ ସରକାର ଭାବନାମାନ କାଳକ୍ରମେ ବ୍ୟାପକ ହେବାରେ ଲାଗିଛି । "ଦାସତ୍ୱବୋଧ, ଜାତିଭେଦ, ଭେଦଭାବମୂଳକ ମାନସିକତା, ଶୋଷଣ, ବୈଷମ୍ୟ, ସାମ୍ପ୍ରଦାୟିକତା ଇତ୍ୟାଦି ଭାବନା ଯେ ସଭ୍ୟ ଜୀବନଧାରାର ପରିପନ୍ଥୀ" - ଏହା ବିଶ୍ୱସ୍ତରରେ କ୍ରମବର୍ଦ୍ଧିଷ୍ଣୁ ଭାବେ ସ୍ୱୀକୃତ ହେବାରେ ଲାଗିଛି ।

ଏକ ଆଦିମ ଅବସ୍ଥାରୁ ନାନା ପରିସ୍ଥିତି ଦେଇ ମଣିଷ ସମାଜ ଆଜିର ସ୍ଥିତିକୁ ଆସିଛି ଯାହା ପଶ୍ଚାତରେ ଏକ ସୁଦୀର୍ଘ ଇତିହାସ ରହିଛି । ତେବେ ସବୁ ଯୁଗରେ ମଣିଷ ନାନା ସ୍ଥିତିବାଦୀ ଆହ୍ୱାନର ସମ୍ମୁଖୀନ ହୋଇଛି ଓ ଆଜି ବି ହେଉଛି । ଏହି ସ୍ଥିତିବାଦୀ ଆହ୍ୱାନରୁ ହିଂସା, ସ୍ୱାର୍ଥପରତା ନିଃସଙ୍ଗତା, ଅତିନ୍ଦ୍ରୀୟ ଶକ୍ତିରେ ବିଶ୍ୱାସ, କୁସଂସ୍କାର ନାନା ଢଙ୍ଗରେ ଓ ନାନା ଭାବରେ ଜୀବନ ସହ ସଂଶ୍ଳିଷ୍ଟ ହୋଇ ରହିଛି । ତେବେ ଆମର ସକଳ ପ୍ରଗତି ବା ସଭ୍ୟ ଜୀବନଦୃଷ୍ଟି ମଣିଷର ପ୍ରୟାସରେ ସମ୍ଭବ ହୋଇଛି, କେଉଁ ଦିଅଁ ଦେବତାର ଆଶୀର୍ବାଦରୁ ଆସିନାହିଁ ବା ସ୍ୱର୍ଗରୁ ଖସି ନାହିଁ । ବୈଜ୍ଞାନିକ ବିଚାରବୋଧ ଓ ମାନବିକ ଦୃଷ୍ଟିଭଙ୍ଗୀ ଏକ ନୂତନ ସଂସ୍କୃତିର ଯେଉଁ ବାର୍ତ୍ତା ଆଣିଛନ୍ତି ତାହା ସଭ୍ୟତାର ରୂପରେଖ ବଦଳାଇବା ସହ ଜୀବନର ଉତ୍କର୍ଷ ସାଧନରେ ଓ ମହତ୍ତର ଜୀବନବୋଧ ସୃଷ୍ଟି କରିବାରେ ଯେ ସହାୟକ ହେବ, ଏହା ଆଶା କରାଯାଏ ।

(୩୧.୭.୨୦୧୩)



# ମାନବିକ ପ୍ରୟାସ ଓ ଭବିଷ୍ୟତ

'ଜୈବିକ ବିବର୍ତ୍ତନବାଦ' ବୈଜ୍ଞାନିକ ସିଦ୍ଧାନ୍ତଟିର ପ୍ରସାର ପର୍ଯ୍ୟନ୍ତ ଏହା ସାଧାରଣରେ ବିଶ୍ୱାସ ଥିଲା ଯେ ମଣିଷକୁ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିଛନ୍ତି । ଅଧିକାଂଶ ଧର୍ମଗ୍ରନ୍ଥରେ ଏହି ବିଶ୍ୱାସ ବ୍ୟକ୍ତ ହୋଇଛି ଯେ ମଣିଷ ଓ ବିଶ୍ୱ ଈଶ୍ୱରସୃଷ୍ଟ । ତେବେ ଈଶ୍ୱର କାହିଁକି ସୃଷ୍ଟି କଲେ, କିପରି ଓ କେବେ ସୃଷ୍ଟିକଲେ ସେହି ପ୍ରସଙ୍ଗ ଉପରେ ଧର୍ମମାନେ ନାନା କଳ୍ପନା ବ୍ୟକ୍ତ କରିଛନ୍ତି । ପୁନଶ୍ଚ ଈଶ୍ୱର-ଭାବନା ସତ୍ୟ ନା ଏକ କଳ୍ପନା ? ଈଶ୍ୱର ଭାବନାର ନାନା କ୍ରମବିକାଶ ହୋଇଥିବା ଦେଖାଯାଏ । ଈଶ୍ୱର ଏକ ବ୍ୟକ୍ତିସତ୍ତା ନା ଅବ୍ୟକ୍ତିକ, ଈଶ୍ୱରଙ୍କର ଜନ୍ମ ବା ଅବତାର ରହିଛି ନା ସେ ଏସବୁର ଊର୍ଦ୍ଧ୍ୱରେ, ଈଶ୍ୱର ସଗୁଣ ବା ନିର୍ଗୁଣ, ସଭ୍ୟତାର ବିକାଶରେ ଈଶ୍ୱରଙ୍କର ଅବଦାନ ରହିଛି ନା ଏସବୁ ମଣିଷର ପ୍ରୟାସରେ ହୋଇଛି ପରି ନାନା ପ୍ରଶ୍ନର ଉତ୍ତର ଧର୍ମମାନଙ୍କରେ ଭିନ୍ନ ଭିନ୍ନ ଥିବା ଦେଖାଯାଏ । ଏସବୁ ପ୍ରସଙ୍ଗର ଆଲୋଚନା ଓ ଧର୍ମମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଦର୍ଶନଶାସ୍ତ୍ରରେ ଏହା ଏକ ପ୍ରତିପାଦ୍ୟ ସତ୍ୟ ଯେ ଈଶ୍ୱର ଏକ ଭାବନା ଓ ମଣିଷ ମନର ଏକ କଳ୍ପନା । ଏହା ସହିତ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଦିଆ ଯାଉଥିବା ଯୁକ୍ତିଗୁଡିକର ତାର୍କିକ ବିଶ୍ଳେଷଣରୁ ଜଣାଯାଏ ଯେ ସେହି ଯୁକ୍ତିଗୁଡିକ ଦୋଷଯୁକ୍ତ ଓ ଅବୈଧ । ବିଜ୍ଞାନ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ନିରବ, କାରଣ ବୈଜ୍ଞାନିକ ଜ୍ଞାନ ତଥ୍ୟ ଆଧାରିତ ଓ ପରୀକ୍ଷା ସାପେକ୍ଷ । ଯେଉଁ ଜ୍ଞାନ ପ୍ରଣାଳିବଦ୍ଧ ନୁହେଁ ବା ତଥ୍ୟ-ଆଧାରିତ ନୁହେଁ ତାହା କେବଳ ବିଶ୍ୱାସ ଓ କଳ୍ପନା । ଏହି ଦୃଷ୍ଟିରୁ ଈଶ୍ୱରଙ୍କ ବିଷୟରେ ବିଜ୍ଞାନ କିଛି ଜ୍ଞାନ ଦେବାକୁ ଅସମର୍ଥ । ଜ୍ଞାନ ହାସଲ କ୍ଷେତ୍ରରେ ଯେତେ ସବୁ ବୌଦ୍ଧିକ ପଦ୍ଧତିମାନ ରହିଛି, କୌଣସି ପଦ୍ଧତି ମାଧ୍ୟମରେ ଈଶ୍ୱରଙ୍କ ସଂପର୍କରେ ଜ୍ଞାନଲାଭ ସମ୍ଭବ ନୁହେଁ । ଏହି ସବୁ ଭାବନା ପୃଷ୍ଠଭୂମିରେ "ମଣିଷ ଯେ ଈଶ୍ୱର ସୃଷ୍ଟ" ଏହା ଏକ ଯୁକ୍ତିଶୀଳ ସିଦ୍ଧାନ୍ତ ନୁହେଁ, ବରଂ ଈଶ୍ୱର ଯେ ମଣିଷ ମନର ଏକ କଳ୍ପନା ଏହା ମନେହୁଏ ।

ଆମ ଚତୁର୍ପାର୍ଶ୍ୱରେ ଥିବା ବିଶାଳ ପ୍ରକୃତିର ଅଂଶବିଶେଷ ହେଉଛି ମଣିଷ । ବିଜ୍ଞାନ ମତରେ ଆଜକୁ ପ୍ରାୟ ଚାରି ଶହ ପଚାଶ କୋଟି ବର୍ଷ ତଳେ ଉଦ୍‌ଭବ ହୋଇଥିବା

## ଜୀବନ ଅନ୍ୱେଷା

ଆମ ପୃଥିବୀରେ କୋଟି କୋଟି ବର୍ଷର ଜୈବିକ ଓ ନାନା ରାସାୟନିକ ପରିବର୍ତ୍ତନ ମଧ୍ୟ ଦେଇ ମଣିଷ ଓ ପ୍ରାଣୀ ଜଗତର ବିବର୍ତ୍ତନ ହୋଇଛି । ଆମ ଚତୁର୍ପାର୍ଶ୍ୱରେ ଥିବା ବିଶାଳ ବିଶ୍ୱ, ପ୍ରକୃତି ଓ ଜୀବଜଗତ ବାହାରେ ଅନ୍ୟ କିଛି ସତ୍ତା ଥିବା ଆମ ଜ୍ଞାନର ବହିର୍ଭୂତ । ତେବେ ପ୍ରକୃତିର ସର୍ବ ଶ୍ରେଷ୍ଠ ପ୍ରାଣୀ ହେଉଛି ମଣିଷ । ମଣିଷ ପ୍ରାକୃତିକ ପରିବେଶକୁ କେତେକାଂଶରେ ଏକ ପରିସରରେ ପରିବର୍ତ୍ତିତ କରିପାରେ । କୃଷି ଜନିତ ଜ୍ଞାନ ପୂର୍ବରୁ ପୃଥିବୀର ପରିବେଶ ଯାହା ଥିଲା, କୃଷିର ଜ୍ଞାନ ପରେ ସେହି ପରିବେଶରେ କେତେକ ପରିବର୍ତ୍ତନ ଆସିଥିବା ମନେହୁଏ । ସେହିପରି ଶିଳ୍ପ ସଭ୍ୟତାର ବିକାଶ ପୂର୍ବରୁ ଯେଉଁ ପ୍ରାକୃତିକ ପରିବେଶ ଥିଲା, ଶିଳ୍ପ ବିପ୍ଳବର ଯୁଗ ଆସିବା ପରେ ସେହି ସ୍ଥିତିରେ ଅନେକ ପରିବର୍ତ୍ତନ ଆସିଥିବା ଜଣାଯାଏ । ପୃଥିବୀରେ ପରିବେଶ ବଦଳିବାରେ ଲାଗିଛି, ପୃଥିବୀ ପୃଷ୍ଠର କେତେକ ପ୍ରାଣୀ, ଉଦ୍ଭିଦ ଲୋପ ପାଉଛନ୍ତି ଓ ନୂଆ ନୂଆ ଲକ୍ଷଣ ଜୀବମାନଙ୍କ ପାଖରେ ପ୍ରକାଶ ପାଉଛି ଇତ୍ୟାଦି ତଥ୍ୟ ବୈଜ୍ଞାନିକ ପଦ୍ଧତି ପ୍ରୟୋଗ କରି ମଣିଷ ଜାଣିବାକୁ ସମର୍ଥ ହୋଇପାରୁଛି । ପାରିବେଶିକ ପରିବର୍ତ୍ତନ ପ୍ରାକୃତିକ କାରଣ ଯୋଗୁ କିମ୍ବା ମାନବିକ କାରଣରୁ ସଂଘଟିତ ହୋଇଥାଏ ।

ମଣିଷ ଯେ କେବଳ ପରିବେଶକୁ ବଦଳାଉଛି ତା ନୁହେଁ, ସେ ମଧ୍ୟ ତାର ସମାଜ, ସାମାଜିକ ବ୍ୟବସ୍ଥା, ସଭ୍ୟତା, ସଂସ୍କୃତିକୁ ନିଜ ବିଚାର ଅନୁଯାୟୀ ରୂପରେଖ ଦେଇଛି । ପ୍ରକୃତି ମଣିଷ ପାଖରେ ସ୍ୱରପେଟିକା ଦେଇ ମଣିଷକୁ ଭାଷା କହିବାର ସାମର୍ଥ୍ୟ ଦେଇଛି । ତେବେ ମଣିଷ ତାର ଗୋଷ୍ଠୀଗତ ଜୀବନ ମଧ୍ୟ ଦେଇ ହଜାର ହଜାର ଭାଷା ସୃଷ୍ଟି କରିଛି । ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ କେତେ କେତେ ସାଂସ୍କୃତିକ ପ୍ରବାହ, ଧାର୍ମିକ ଆଲୋଡନ, ରାଜନୈତିକ ବ୍ୟବସ୍ଥା ସାମାଜିକ ଜୀବନଧାରାରୁ ସୃଷ୍ଟି ହୋଇଛି । କେଉଁ କେଉଁ ଭୂଖଣ୍ଡରେ ସଭ୍ୟତା ଓ ଜୀବନ ଧାରଣର ମାନ ଉନ୍ନତ ହୋଇଛି, ଜ୍ଞାନ ବିଜ୍ଞାନର ଯଥେଷ୍ଟ ବିକାଶ ହୋଇଛି, ସଭ୍ୟ ମୂଲ୍ୟବୋଧ ମାନ ଜୀବନଧାରାର ଅଙ୍ଗ ହୋଇଛି । ଅନ୍ୟ କେତେକ ଭୂଖଣ୍ଡରେ ସାମାଜିକ ଅନଗ୍ରସରତା ରହିଛି ଓ କେତେକ ଜନଗୋଷ୍ଠୀ ଉନ୍ନତିର ଶିଡିରେ ଆଗକୁ ଯାଇପାରି ନାହାନ୍ତି । ଯେପରି କେତେକ ଭାଷା ବିକଶିତ ହୋଇଥିବା ବେଳେ ଅନ୍ୟ କେତେକ ଭାଷା ସୀମିତ ହୋଇ ଯାଇଛନ୍ତି, ଠିକ୍ ସେହିପରି କେତେକ ଜନଗୋଷ୍ଠୀ ବିକାଶର ଧାରାରେ ବହୁ ଆଗକୁ ଯାଇଥିବା ବେଳେ ଅନ୍ୟ କେତେକ ଜନଗୋଷ୍ଠୀ ଅବହେଳିତ ହୋଇ ରହିଛନ୍ତି । କୌଣସି ଜନସମୂହର ବିକାଶ ପଶ୍ଚାତରେ ନାନା ରାଜନୈତିକ, ଅର୍ଥନୈତିକ ଓ ଐତିହାସିକ କାରଣମାନ ରହିଛି, ସେହିପରି ଯେଉଁ ଗୋଷ୍ଠୀମାନ ଅନଗ୍ରସର ରହିଛନ୍ତି ତାହା ମଧ୍ୟ ନାନା ଘଟଣା ଜନିତ କାରଣରୁ ହୋଇଛି ।

ବିକାଶ, ପ୍ରଗତି ଯେ କେବଳ ଅର୍ଥନୈତିକ ଅବଧାରଣା ତାହା ନୁହଁ, ଏହାକୁ ବୃହତ୍ତର ଜୀବନ ପ୍ରବାହ ସହ ସଂଲଗ୍ନ କରି ଦେଖିଲେ ଏହା ସହିତ ବୌଦ୍ଧିକ, ସାଂସ୍କୃତିକ ଓ ନୈତିକ ପ୍ରସଙ୍ଗ ମଧ୍ୟ ସଂଶ୍ଳିଷ୍ଟ ହେବା ମନେହୁଏ । ଜୀବନର ଭୌତିକ ଆବଶ୍ୟକତା ପୂରଣ ହେଉଥିଲେ ବା ଏକ ସାମାଜିକ ଗୋଷ୍ଠୀରେ ସ୍ୱାବଲମ୍ବନଶୀଳତା ରହିଥିଲେ ସେହି ଜନଗୋଷ୍ଠୀଟି ଯେ ବିକଶିତ ଏହା ସଂପୂର୍ଣ୍ଣ କୁହାଯାଇ ପାରିବ ନାହିଁ । ଜୀବନ ଧାରଣ ପାଇଁ ଭୌତିକ ଆବଶ୍ୟକତା ମାନ ଅବଶ୍ୟମ୍ଭାବୀ ନିଶ୍ଚୟ, ତେବେ ତା ବାହାରେ ମଣିଷ ତାର ଚେତନା ସ୍ତରରେ ବା ବାସ୍ତବ ଜୀବନ କ୍ଷେତ୍ରରେ ଅଧିକ କିଛି ବିକାଶ ଘଟାଇବାରେ ସମର୍ଥ ହୋଇଛି । ବୌଦ୍ଧିକ ସ୍ତରରେ ସ୍ୱାଧୀନ ଚିନ୍ତା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଅନୁସନ୍ଧିତ୍ସୁ ମାନସିକତାର ପ୍ରସାର ଘଟାଇଥିବା ପରିବେଶ ଉନ୍ନତ ମନେହୁଏ । ଅଥଚ ଯେଉଁ ସାମାଜିକ ଦୃଶ୍ୟପଟରେ କୁସଂସ୍କାର, ଆଧାରହୀନ ବିଶ୍ୱାସ, ଅହେତୁକ ଭାବଧାରା, ପାରଲୌକିକ ଜୀବନଦୃଷ୍ଟି, ଧାର୍ମିକ ଆବେଗର ପ୍ରାବଲ୍ୟ ବ୍ୟାପକ ଭାବେ ଦୃଷ୍ଟିଗୋଚର ହୁଏ ସେହି ସମାଜ ଏକ ଅନଗ୍ରସର ପରିବେଶର ଚିତ୍ର ଦେଇଥାଏ । ସେହିପରି ନୀତିବୋଧ, ସାମାଜିକ ଜୀବନଧାରାରେ ସାଧୁତା, କର୍ତ୍ତବ୍ୟନିଷ୍ଠା, ନାଗରିକ ଶୃଂଖଳାବୋଧ, ସମ୍ବେଦନଶୀଳ ଜୀବନଦୃଷ୍ଟି, ସମତାର ଭାବ ବ୍ୟାପକ ଭାବେ ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ପ୍ରତିଫଳିତ ହେଉଥିଲେ ସାମାଜିକ ଜୀବନ ଉନ୍ନତ ଥିବା ମନେହୁଏ । ଅପରପକ୍ଷରେ ନୀତି ନୈତିକତାର ଉଲଘଂନ, ଯେକୌଣସି ପନ୍ଥା ଅବଲମ୍ବନ କରି ଲକ୍ଷ୍ୟ ହାସଲ କରିବାର ମାନସିକତା, ଦୁର୍ନୀତି, ଭ୍ରଷ୍ଟାଚାର, ଭେଦଭାବମୂଳକ ପରିବେଶ ସାମାଜିକ ଜୀବନ ପ୍ରବାହରେ ବ୍ୟତିକ୍ରମ ନ ହୋଇ ଏକ ଧାରାରେ ପରିଣତ ହୋଇଥିଲେ ସେହି ସାମାଜିକ ଦୃଶ୍ୟପଟଟି ଏକ କ୍ଷୟଶୀଳ ସ୍ଥିତିର ଚିତ୍ର ଦେଇଥାଏ । ସେହିପରି ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ଉଦାରତା, ସହନଶୀଳତା, ଧର୍ମନିରପେକ୍ଷୀୟ ମାନସିକତା ସଭ୍ୟ ଜୀବନଦୃଷ୍ଟିର ସ୍ୱାକ୍ଷର ବହନ କରିଥିବା ବେଳେ ଧାର୍ମିକ ବିଶ୍ୱାସ କ୍ଷେତ୍ରରେ ଅସହିଷ୍ଣୁତା, ସାଂପ୍ରଦାୟିକତା, ମୌଳବାଦୀ ମନୋଭାବ ସଭ୍ୟ ମୂଲ୍ୟବୋଧର ପରିପନ୍ଥୀ ମନେହୁଏ । ଆଜି ଯେଉଁ ମୂଲ୍ୟବୋଧ, ନୈତିକ ଆଦର୍ଶଚୟ, ମାନବିକ ଦୃଷ୍ଟିକୁ ସଭ୍ୟ ଜୀବନବୋଧର ଅଂଗ ଭାବରେ ନିଆଯାଉଛି ତାହା ହଜାର ହଜାର ବର୍ଷର ସାମାଜିକ ସଂପର୍କ ମଧ୍ୟରେ ବିଚାରଶୀଳ ଚିନ୍ତନ ମଧ୍ୟ ଦେଇ ବିକଶିତ ହୋଇଛି ।

ମାନବ ସଭ୍ୟତାର ଇତିହାସରେ କେତେ ଯୁଦ୍ଧ, ବିଭୀଷିକା, ଶୋଷଣ, ଅତ୍ୟାଚାର, ବିପର୍ଯ୍ୟୟର ଚିତ୍ର ମିଳିଥାଏ । ସେହିପରି ମଣିଷ ହିଁ ମଣିଷର ଦୁଃଖ ଦୁର୍ଦ୍ଦଶାର କାରଣ ହୋଇ ଆସିଛି । କେତେ ପ୍ରକାରର ଭେଦଭାବ ଓ କଷଣ ଜନଜୀବନକୁ ଭାରାକ୍ରାନ୍ତ କରି ଆସିଛି । ହିଂସା, ପ୍ରତିହିଂସା, ଗଣସଂହାର, ସଭ୍ୟତା ଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣ କରିବା ନେଇ ବିଶ୍ୱ ସ୍ତରରେ ପ୍ରତିଯୋଗିତା, ଅନ୍ୟ ସଭ୍ୟତା, ସଂସ୍କୃତି, ଭାଷା, ଧର୍ମ,

ଜାତି, ରାଷ୍ଟ୍ର ପ୍ରତି ବିଦ୍ୱେଷମୂଳକ ମନୋଭାବ ମଣିଷର ମାନସିକତାରେ ରହିଛି । ଏସବୁ ସଭ୍ୟତା ଓ ମାନବିକ ଚେତନାର ନକାରାତ୍ମକ ଦିଗର ସୂଚନା ଦେଇଥାଏ । ଏ ସବୁ ସତ୍ତ୍ୱେ ମଣିଷ ଭିତରେ ସମାଜକୁ ମହତ୍ତର କରି ଗଢ଼ିବାର ମନୋଭାବ ବି ସ୍ଥାନ ପାଇଛି । ପ୍ରତ୍ୟେକ ସଭ୍ୟତାରେ କିଛି ଚିନ୍ତାଶୀଳ ବ୍ୟକ୍ତି ମହତ୍ତର ଜୀବନବୋଧର ଭାବନା ଦେଇଛନ୍ତି, ଜୀବନକୁ ଉନ୍ନତ କରିବାର ବିଚାର ସୃଷ୍ଟି କରିଛନ୍ତି ଓ ସାମାଜିକ ସମ୍ବନ୍ଧକୁ ନୀତିପୂର୍ଣ୍ଣ ଓ ଆଦର୍ଶମୟ କରିବାର ପଥ ଦେଖାଇଛନ୍ତି । ସାମୂହିକ ହିତ ଦିଗରେ ଜୀବନକୁ ଉତ୍ସର୍ଗ କରିଥିବା ଲୋକମାନେ ହିଁ ସମାଜ ପାଇଁ ଆଦର୍ଶ ପାଲଟିଛନ୍ତି, କେତେକ ବ୍ୟକ୍ତି ସ୍ୱକୀୟ ପ୍ରତିଭା ଓ ନିଜର ସାଧନ ବଳରେ ପ୍ରାଜ୍ଞ, ଯଶସ୍ୱୀ ବିଦ୍ୱାନ, ସୁଲେଖକ, ଦାର୍ଶନିକ ବା ଆଉ କିଛି ହେବାର ଗୌରବ ହାସଲ କରିଛନ୍ତି । ତେବେ ସଭ୍ୟତାର ଇତିହାସରେ ଅନ୍ୟ କିଛି ବ୍ୟକ୍ତି ଦେଖାଯାନ୍ତି ଯେଉଁମାନେ କୌଣସି ପ୍ରତିଷ୍ଠା ବା ଗୌରବ ପ୍ରତି ଲାଳାୟିତ ନୁହଁନ୍ତି ବରଂ ସମାଜର କଲ୍ୟାଣ ଓ ସର୍ବାଧିକ ଲୋକଙ୍କୁ ସୁଖ, ଶାନ୍ତିରେ ରଖିବାକୁ ନିଜେ କଷ୍ଟକର ସ୍ଥିତିରେ ରହିବାକୁ ଶ୍ରେୟ ମଣିଛନ୍ତି । ଏହିମାନେ ହିଁ ସମାଜ ପାଇଁ ଆଦର୍ଶ ପାଲଟିଛନ୍ତି । ଯେଉଁମାନଙ୍କର ତ୍ୟାଗ, ହିତକର ଭାବନା ଓ ନୀତିବୋଧ ଯୋଗୁ ସମାଜ ଉନ୍ନତ ହୋଇଛି, ମହତ୍ତର ଭାବନାର ବିଚାର ସୃଷ୍ଟି ହୋଇଛି, ଜୀବନର ଗୁଣାତ୍ମକ ମାନରେ ସକାରାତ୍ମକ ପରିବର୍ତ୍ତନ ଆସିଛି ସେହିମାନେ ହିଁ ମଣିଷ ସମାଜର ଅଗ୍ରଗତିରେ ପଥ ପ୍ରଦର୍ଶକ ହୋଇଛନ୍ତି । ଏକ ଆଦିମ ଓ ବହୁଧା ବିଭକ୍ତ ସାମାଜିକ ସ୍ଥିତିରୁ ହଜାର ହଜାର ବର୍ଷର ମାନବିକ ପ୍ରୟାସ, ସୃଜନଶୀଳ ବ୍ୟକ୍ତିମାନଙ୍କର ଅବଦାନ, ମାନବଦରଦୀ ବ୍ୟକ୍ତିମାନଙ୍କର ସାର୍ବଜନୀନ ଦୃଷ୍ଟି ଓ ହେତୁବାଦୀ ବିଚାରଶୀଳତାର ମନୋଭାବର ସମ୍ମିଳିତ ପ୍ରଭାବରୁ ସଭ୍ୟତା ଆଜିର ଉନ୍ନତ ସ୍ଥିତିକୁ ଆସିପାରିଛି । ଆମ ସଂସାରରେ ଯାହା ସବୁ ମାନବିକତା ବିରୋଧୀ ପରିବେଶ ରହିଛି ସେ ସବୁକୁ ପରିବର୍ତ୍ତନ କରିବା ପାଇଁ ସାଂପ୍ରତିକ ସ୍ଥିତି ଯଥେଷ୍ଟ ଅନୁକୂଳ ମନେହୁଏ । ଶିକ୍ଷାର ପରିବେଶ, ଗଣମାଧ୍ୟମର ବ୍ୟାପକତା, ଆନ୍ତର୍ଜାତିକ ମାନସିକତା ଓ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଏକ ମହତ୍ତର ମାନବ ସମାଜ ଗଠନ ପାଇଁ ଯେ ଫଳପ୍ରଦ ଭୂମିକା ନେଇପାରିବ ଏହା ଆଶା କରାଯାଏ । ଏହାର ଅଭାବରେ ମାନବ ସଭ୍ୟତାର ବିୟୋଗାନ୍ତକ ଭବିଷ୍ୟତ ବି ସୃଷ୍ଟି ହୋଇପାରେ ।

(୮.୪.୨୦୧୫)



# ମାନବିକତାର ମନ୍ତ୍ର

ମାନବ ସଭ୍ୟତାର ଏକ ବଡ ବିଡମ୍ବନା ହେଉଛି ଯେ ସବୁ ଭୂଖଣ୍ଡରେ ଓ ସବୁ ସମୟରେ ସମାଜରେ ଶୋଷଣ, ଉତ୍ପୀଡନ, ନିଷ୍ଠୁରତା ଓ ବୈଷମ୍ୟ ରହିଆସିଛି । ରାଜତନ୍ତ୍ର ଯୁଗରେ ଯୁଦ୍ଧ, ବିଭୀଷିକା ଏକ ସାଧାରଣ ଘଟଣା ହୋଇ ରହିଥିଲା । ଶହେ ବର୍ଷ ତଳେ ଆମ ପୃଥିବୀରେ ପ୍ରଥମ ବିଶ୍ୱଯୁଦ୍ଧ ପରି ଏକ ରାଜନୈତିକ ପରିବେଶ ସଭ୍ୟତାର ଇତିହାସରେ ଏକ ଜଘନ୍ୟ ଘଟଣା ଥିଲା । ପ୍ରଥମ ବିଶ୍ୱଯୁଦ୍ଧର ମାତ୍ର କେତୋଟି ଦଶନ୍ଧି ପରେ ଆଉ ଏକ ଭୟାନକ ବିଶ୍ୱଯୁଦ୍ଧ ହିଂସା, ବର୍ବରତା ଓ ବିଦ୍ୱେଷର ବାତାବରଣ ସୃଷ୍ଟି କରିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାନକ ପରିଣତି ପରେ ଚିନ୍ତାରାଜ୍ୟରେ ଏକ ବଡ ପରିବର୍ତ୍ତନ ଆସିଲା । ପୃଥିବୀର ବହୁ ଶାନ୍ତିକାମୀ ମାନବହିତୈଷୀ ବ୍ୟକ୍ତି ଏକ ଯୁଦ୍ଧରହିତ ବିଶ୍ୱର ବାର୍ତ୍ତା ପ୍ରସାର କରିଥିଲେ । ଆଶଙ୍କା ବ୍ୟକ୍ତ ହୋଇଥିଲା ଯେ ଯଦି ଏକ ତୃତୀୟ ବିଶ୍ୱଯୁଦ୍ଧର ପରିସ୍ଥିତି ସୃଷ୍ଟି ହୁଏ ତେବେ ପୃଥିବୀପୃଷ୍ଠରୁ ମାନବ ସଭ୍ୟତା ଧ୍ୱଂସ ପାଇଯିବ, ପରିବେଶ ସଂପୂର୍ଣ୍ଣ ପ୍ରଦୂଷିତ ହୋଇଯିବ ଓ ମାନବଜାତି ବିକଳାଙ୍ଗ ପାଲଟିଯିବ । ଏହିପରି ଆଶା ଆଶଙ୍କାରୁ ଏକ ଶାନ୍ତିପୂର୍ଣ୍ଣ ଓ ଅହିଂସ ମାନବ ସମାଜର ପ୍ରକଳ୍ପ ବିଶ୍ୱ ବିବେକରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ଯେଉଁ ସମସ୍ୟାର ଶାନ୍ତିପୂର୍ଣ୍ଣ ଓ ବିବେକାନୁମୋଦିତ ସମାଧାନ ହୋଇପାରିବ ନାହିଁ, ତାହାର ସମାଧାନ ହିଂସାତ୍ମକ ପଦ୍ଧତିରେ ହେବା ସମ୍ଭବ ନୁହେଁ । ବିଦ୍ୱେଷ, ହିଂସା, ଯୁଦ୍ଧ, ପ୍ରତିହିଂସା ବର୍ବରତାର ପରିବେଶ ଆଣେ, ଏଥିରୁ କୌଣସି ସମାଧାନ ବାହାରେ ନାହିଁ । ଏହି ବିବେକବୋଧରୁ ସାରା ବିଶ୍ୱରେ ନାନା ଆନ୍ତର୍ଜାତିକ ସଂଗଠନ ଓ ଜାତିସଂଘ ପରି ଅନୁଷ୍ଠାନ ମାନଙ୍କର ଉଦ୍‌ଭବ ହେଲା । ଜାତି, ଧର୍ମ, ବର୍ଣ୍ଣ ଜାତୀୟତା ନିର୍ବିଶେଷରେ ସବୁ ଦେଶର ସବୁ ବ୍ୟକ୍ତି କିପରି ଗୁଣାତ୍ମକ ଜୀବନ ବଞ୍ଚିବାର ସୁଯୋଗ ପାଇବେ ସେଥିପାଇଁ ଆନ୍ତର୍ଜାତିକ ସ୍ତରରେ ସଚେତନତା ବ୍ୟକ୍ତ ହେଲା । ବିଭିନ୍ନ ସମାଜରେ ରହିଥିବା ନାନା ଭେଦଭାବମୂଳକ ମନୋଭାବର କିପରି ବିଲୋପ ହେବ

ସେ ନେଇ ଚିନ୍ତାସ୍ତରରେ କିଛି ଆଲୋଡ଼ନ ଆସିଲା । ବିଶେଷକରି "ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା" ଥିଲା ଏକ ଯୁଗାନ୍ତକାରୀ ଦଲିଲ । ଏଥିରେ ମାନବ ସମାଜରୁ ସକଳ ଭେଦଭାବ, ଶୋଷଣ ଓ ଦାସତ୍ୱକୁ ଦୂର କରିବାକୁ ନିବେଦନ କରାଗଲା । ପ୍ରତ୍ୟେକ ବ୍ୟକ୍ତିର ବଞ୍ଚିବା, ସ୍ୱାଧୀନତା ଉପଭୋଗ କରିବା ଓ ନିରାପତ୍ତା ପାଇବା ତାର ପ୍ରାକୃତିକ ଅଧିକାର ବୋଲି ଗ୍ରହଣ କରାଗଲା । ଆଇନ ଦୃଷ୍ଟିରେ ବିଶ୍ୱର ସମସ୍ତ ନାଗରିକଙ୍କୁ ସମାନ ଅଧିକାର ଦିଆଗଲା । ଏହାର ପ୍ରଥମ ଧାରାଟିରେ କୁହାଗଲା ଯେ 'ସବୁ ମଣିଷ ମର୍ଯ୍ୟାଦା ଓ ଅଧିକାର ଦୃଷ୍ଟିରୁ ମୁକ୍ତ ଓ ସମାନ ହୋଇ ଜନ୍ମଲାଭ କରିଛନ୍ତି । ପ୍ରତ୍ୟେକ ବ୍ୟକ୍ତି ଭିତରେ ବିଚାରବୋଧ ଓ ବିବେକ ରହିଛି । ସମସ୍ତେ ଅନ୍ୟ ସହ ସମ୍ବନ୍ଧ କ୍ଷେତ୍ରରେ ଭାତୃତ୍ୱଭାବ ବ୍ୟକ୍ତ କରିବା ଆବଶ୍ୟକ ।' ମାନବିକ ଅଧିକାର ନେଇ ଏହି ଘୋଷଣାନାମା ଏକ ମହାମାନବିକ ଭାବର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାଚୀନ ସଭ୍ୟତାରେ କେହି କେହି ମାନବବାଦୀ ଦାର୍ଶନିକ ଏକ ବିଶ୍ୱଭାବର ବିଚାର ନିଜର ଲେଖାରେ ବ୍ୟକ୍ତ କରିଛନ୍ତି । ଏଠାରେ କେତୋଟି ଉଦାହରଣ ଦିଆଯାଇପାରେ । ପଞ୍ଚତନ୍ତ୍ରରେ ସମଗ୍ର ବିଶ୍ୱ ଗୋଟିଏ ପରିବାର, ଏକ ପ୍ରାଚୀନ ଭାରତୀୟ ଶାସ୍ତ୍ରରେ ସର୍ବେ ଭବନ୍ତୁ ସୁଖୀନ, ସର୍ବେସନ୍ତୁ ନିରାମୟାର ବାର୍ତ୍ତା, ବୃହଦାରଣ୍ୟକ ଉପନିଷଦ୍‌ରେ ଅସତ୍ୟରୁ ସତ୍ୟ ଆଡକୁ, ଅନ୍ଧକାରରୁ ଆଲୋକ ଆଡକୁ ଓ ମୃତ୍ୟୁରୁ ଅମୃତତ୍ୱ ଆଡକୁ ଆମକୁ ନେବା ପାଇଁ ପ୍ରକାଶିତ ପ୍ରାର୍ଥନା ଓ ସର୍ବତ୍ର ଶାନ୍ତି ବିରାଜମାନ କରୁର ଭାବନା ଏକ ମହାମାନବିକ ଦୃଷ୍ଟିର ପ୍ରତିଫଳନ । ବାଇବେଲ୍‌ର କେତେକ ଉକ୍ତି-ନିଜର ପ୍ରତିବେଶୀକୁ ନିଜଭଳି ଭଲପାଅ, ଶତ୍ରୁକୁ କ୍ଷମାକର, ସମ୍ବେଦନଶୀଳ ଲୋକମାନେ ହିଁ ଈଶ୍ୱରଙ୍କ କରୁଣା ଲାଭ କରିବେ, ପବିତ୍ର ହୃଦୟର ଲୋକମାନେ ହିଁ ଈଶ୍ୱରଙ୍କୁ ଦର୍ଶନ କରିବେ ଇତ୍ୟାଦି ମହତ୍ ଭାବର ସୂଚନା ଦିଏ । ପ୍ରତ୍ୟେକ ଧର୍ମଗ୍ରନ୍ଥରେ କିଛି ନୈତିକ ଆଦର୍ଶ ଓ ମାନବବାଦୀ ଭାବର ବର୍ଣ୍ଣନା ରହିଥିବା ଦେଖାଯାଏ । ଧର୍ମର ନୈତିକ ଭାବଧାରା ଏକ ମହତ୍ତର ଜୀବନ ପାଇଁ ନିଶ୍ଚୟ ପ୍ରେରଣା ଦାୟକ । କିନ୍ତୁ ପରିତାପର ବିଷୟ ଧର୍ମଗୋଷ୍ଠୀ ମାନଙ୍କ ଭିତରେ ନାନା ବିଦ୍ୱେଷ, ଅସହିଷ୍ଣୁ ଭାବ ଓ ସାଂପ୍ରଦାୟିକ ତିକ୍ତତା ପରିଲକ୍ଷିତ ହୁଏ । ଧର୍ମକୁ ଆଧାର କରି ନାନା ଯୁଦ୍ଧ, ବିଭୀଷିକା, ସାଂପ୍ରଦାୟିକ ଦଙ୍ଗା ଓ ସନ୍ତ୍ରାସବାଦୀ ଆକ୍ରମଣ ଜନିତ ହିଂସାର କାହାଣୀ ଇତିହାସକୁ ରକ୍ତରଂଜିତ କରିଛି । ଧାର୍ମିକ ଆବେଗ ମାନବିକତାର ଆବେଦନ ସୃଷ୍ଟି କଲେ ତାହା ସ୍ୱାଗତ ଯୋଗ୍ୟ । କିନ୍ତୁ ବାସ୍ତବରେ ଧାର୍ମିକ ଆବେଗ ମାନବ ଜାତିକୁ ଭାଗ ଭାଗ କରିଛି । ସାଂପ୍ରଦାୟିକ ତିକ୍ତତା ସୃଷ୍ଟି କରିଛି ଓ ଜ୍ଞାନବିଜ୍ଞାନର ବିକାଶରେ ପ୍ରତିବଂଧକ

ହୋଇଛି । ଧର୍ମ ମଣିଷକୁ ମନୁଷ୍ୟୋଚିତ ନକରି ମଣିଷକୁ ଐଶ୍ୱରିକ କରିବାକୁ ପ୍ରୟାସ କରିଛି । ମୁକ୍ତି, ମୋକ୍ଷ, ନିର୍ବାଣ, ସ୍ୱର୍ଗପ୍ରାପ୍ତି ଯେତେ କାଳ୍ପନିକ ହେଲେ ବି ତାକୁ ହିଁ ଜୀବନର ପରମ ଶ୍ରେୟ ବୋଲି ଗ୍ରହଣ କରିଛି । ମଣିଷ ସମାଜର ଉତ୍କର୍ଷ ସାଧନ ପରିବର୍ତ୍ତେ ଈଶ୍ୱରଙ୍କ ସହ ମିଳିତ ହେବା ପାଇଁ ଅବାସ୍ତବ ଲକ୍ଷ୍ୟକୁ ଜୀବନର ଚରମ ଲକ୍ଷ୍ୟ ବୋଲି ଭାବନା ବ୍ୟକ୍ତ କରିଛି । ସମାଜ, ମାନବ ଜାତି ପ୍ରତି ଉଦାସୀନ ରହି ପାରଲୌକିକ ଓ ଅତିପ୍ରାକୃତିକ ଭାବନା ଭିତରେ ମଣିଷ ଅମାନବିକ ହୋଇଛି । ବାସ୍ତବରେ କହିବାକୁ ଗଲେ ମଣିଷ ମଣିଷ ଭିତରେ ସଂପର୍କ ଭିତରୁ ମାନବିକତା ପ୍ରକାଶ ପାଇଥାଏ । ଏହି ସାମାଜିକ ସଂପର୍କର ସମାହାର ଯେତେ ପ୍ରୀତିପଦ, ବନ୍ଧୁତ୍ୱପୂର୍ଣ୍ଣ, ଆନ୍ତରିକ ଓ ଭାତୃତ୍ୱପୂର୍ଣ୍ଣ ହୁଏ ସାମାଜିକ ଜୀବନ ସେତେ ଉନ୍ନତ ଓ ଗୁଣାତ୍ମକ ହୋଇଥାଏ । ପୁନଶ୍ଚ ଧାର୍ମିକ ଆବେଗରୁ ଅନ୍ୟ ଏକ ବାର୍ତ୍ତା ଆସିଥାଏ ଯେ ବିଶ୍ୱରେ ସବୁକିଛି ଈଶ୍ୱର ନିୟନ୍ତ୍ରିତ ଓ ଈଶ୍ୱର-ସୃଷ୍ଟ । ଈଶ୍ୱର ପାଞ୍ଚ ଆଂଗୁଠିକୁ ସମାନ କରି ନାହାନ୍ତି । ସେ କାହାକୁ ଅଧିକ ଶକ୍ତି, ସାଧନ, ଧନ ଓ ବିଦ୍ୟା ଦେଇଛନ୍ତି । ସେ ଚାରିବର୍ଣ୍ଣ ସୃଷ୍ଟି କରି ପ୍ରତ୍ୟେକ ବର୍ଣ୍ଣର କାର୍ଯ୍ୟ ଓ ସ୍ଥିତିକୁ ସୁନିର୍ଦ୍ଦିଷ୍ଟ କରିଛନ୍ତି । ଯିଏ ଯେଉଁ ସ୍ଥିତିରେ ରହିଛି ତାହାକୁ ନିଜର ଭାଗ୍ୟ ବୋଲି ଗ୍ରହଣ କରିବା ଦରକାର । ଏହି ମାନସିକତା ସାମାଜିକ ବୈଷମ୍ୟକୁ ଦୃଢ଼ କରିବା ସହ ମାନବିକ ପ୍ରୟାସକୁ ନଷ୍ଟ କରିଦେଇଛି । ଆଧୁନିକ ଜୀବନବୋଧରେ ସମତା ହିଁ ଏକ ପରମ ମୂଲ୍ୟବୋଧ । ସାନ-ବଡ଼, ଉଚ୍ଚ-ନୀଚ ଭେଦଭାବ ଏକ ଐଶ୍ୱରିକ ବିଧାନ ନୁହେଁ, ଏହା ଗୋଟିଏ ସାମାଜିକ, ରାଜନୈତିକ ପରିସ୍ଥିତିର ପରିଣାମ । ସାମ୍ରାଜ୍ୟବାଦ ବିସ୍ତାର ଯୁଗରେ ଯେଉଁ ଦାସତ୍ୱର ବେଡିକୁ ଲକ୍ଷ ଲକ୍ଷ ଲୋକଙ୍କ ଉପରେ ଲଦି ଦିଆଯାଇଥିଲା ତାହା ଥିଲା ଏକ ଅମାନବିକ କାର୍ଯ୍ୟ । ସେହିପରି ଆମ ଦେଶରେ ଅସ୍ପୃଶ୍ୟତା ଓ ଜାତିଗତ ଭେଦଭାବ ଇତିହାସର କୌଣସି କାଳଖଣ୍ଡରେ ଏକ ଶକ୍ତିଶାଳୀ ଗୋଷ୍ଠୀ ଏକ ଦୁର୍ବଳ ଗୋଷ୍ଠୀକୁ ନିୟନ୍ତ୍ରଣରେ ରଖି ସେମାନଙ୍କର ସେବା ନେବା ପାଇଁ ସୃଷ୍ଟି କରିଥିବେ । ଥରେ ଏକ ବ୍ୟବସ୍ଥାକୁ ଏକ ଅସହାୟ ଗୋଷ୍ଠୀ ଉପରେ ଲଦି ଦେବା ପରେ ତାହା ବିରୁଦ୍ଧରେ ପ୍ରତିବାଦ ନ ହେବାକୁ ଏହାକୁ ଧର୍ମର ଛାପ ଦିଆଯିବା ସଙ୍ଗତ ମନେହୁଏ । ଧାର୍ମିକ ବିଶ୍ୱାସର ଦ୍ୱାହି ଦେଇ କେତେକ ଅନ୍ୟାୟମୂଳକ କାର୍ଯ୍ୟ ସମାଜରେ ପ୍ରସାର କରିବାର ବହୁ କାହାଣୀ ରହିଛି । ବହୁ ସାମାଜିକ କୁସଂସ୍କାର ଧର୍ମ ଓ ପରଂପରାର ଆବରଣ ଭିତରେ ପ୍ରଚଳିତ ରହିଆସିଛି । ପ୍ରଗତିଶୀଳ ଚିନ୍ତା ଚେତନାର ବିକାଶ ଯୋଗୁ ଧାର୍ମିକ କୁସଂସ୍କାର ବିରୋଧରେ ଜନଚେତନା ସୃଷ୍ଟି ହୋଇଛି ଓ ସେସବୁରେ ପରିବର୍ତ୍ତନର ସୂତ୍ରପାତ ହୋଇଛି ।

ସମାଜର ବିକାଶ ଓ ବୌଦ୍ଧିକ ଉତ୍ତରଣ କ୍ଷେତ୍ରରେ ଧର୍ମମାନଙ୍କର ବିଶେଷ ଭୂମିକା ନାହିଁ । ପରନ୍ତୁ ମାନବବାଦୀ ବିଚାର ଓ ବିଚାରଶୀଳ ଦୃଷ୍ଟିର ବିକାଶ ଯୋଗୁ ଧାର୍ମିକ କୁସଂସ୍କାର ଦୂର ହୋଇଛି ।

ସମାଜରେ ଯେତେ ପ୍ରକାରର ଭେଦଭାବ, ଉତ୍ପୀଡନ ଓ ବୈଷମ୍ୟ ରହିଛି, ତାକୁ ଦୂର କରିବାକୁ ବିଭିନ୍ନ ଭୂଖଣ୍ଡରେ ବା ରାଷ୍ଟ୍ରରେ ପ୍ରଗତିଶୀଳ ଆଲୋଡନମାନ ଆସିଛି । ଭେଦଭାବ ଓ ଉତ୍ପୀଡନ ମାନବିକ ଓ ସାଂସ୍କୃତିକ ଚେତନାର ପରିପନ୍ଥୀ ବୋଲି ଭାବନା ସମାଜରେ ଧୀରେ ଧୀରେ ସୃଷ୍ଟି ହେବାରେ ଲାଗିଛି । ଆମର ସାମାଜିକ ଜୀବନକୁ ଉନ୍ନତ ଓ ନ୍ୟାୟପୂର୍ଣ୍ଣ କରିବାର ମନୋଭାବ ସମାଜରେ ଦୃଢ଼ ଭିତ୍ତି ନେବାରେ ଲାଗିଛି । ମଣିଷ ସ୍ୱରୂପରେ ଏକ ସାମାଜିକ ପ୍ରାଣୀ । ତେବେ ସମାଜ କହିଲେ ବ୍ୟକ୍ତିମାନଙ୍କର ଏକତ୍ର ଜୀବନ ଧାରଣକୁ କେବଳ ବୁଝାଏ ନାହିଁ, ବରଂ ମୂଲ୍ୟବୋଧ ଭିତ୍ତିକ ଚେତନାର ବିକାଶ ଓ ପାରସ୍ପରିକତାକୁ ବୁଝାଏ । ଏକ ସମାଜ ସମତା ଦିଗରେ ଯେତେ ଅଧିକ ଅଗ୍ରସର ହୁଏ ଓ ଏହି ମୂଲ୍ୟବୋଧକୁ ଜନଜୀବନରେ ପ୍ରତିଫଳିତ କରେ ତାହା ସେତିକି ସଭ୍ୟ ହୋଇଥାଏ । ଶ୍ରେଣୀ ବିଭକ୍ତ ସମାଜରୁ ଶ୍ରେଣୀହୀନ ସମାଜର ଅଗ୍ରଗତି ଏକ ସୁଦୀର୍ଘ ଯାତ୍ରା ଓ ମାନବିକ ଉତ୍ତରଣର ସୂଚନା ଦିଏ । ଏକ ଶ୍ରେଣୀ ବିଭକ୍ତ ସମାଜରେ ଜାତିଗତ, ବର୍ଣ୍ଣଗତ, ଲିଙ୍ଗଗତ ଓ ସର୍ବୋପରି ଅର୍ଥନୈତିକ ବୈଷମ୍ୟ ସୁସ୍ପଷ୍ଟ ଭାବେ ଦୃଷ୍ଟିଗୋଚର ହୁଏ । ଏକ ଶ୍ରେଣୀ ବିଭକ୍ତ ସମାଜରେ ବୈଷମ୍ୟ, ଉତ୍ପୀଡନ ଓ ଶୋଷଣ ଥାଏ । ହୁଏତ ସେଠାରେ ଧର୍ମ, ସଂସ୍କୃତି, କଳା, ସାହିତ୍ୟ, ଦର୍ଶନର ବେଶ୍ ବିକାଶ ହୋଇଥାଇପାରେ, କିନ୍ତୁ ସେଠାରେ ସାମ୍ୟ, ମୈତ୍ରୀର ପରିବେଶ ନଥାଏ । ସମତା, ଭାତୃତ୍ୱଭାବ, ନ୍ୟାୟବୋଧ ପରି ମୂଲ୍ୟଚୟକୁ ଆଦର୍ଶ ଭାବେ ଗ୍ରହଣ କରି ସାମାଜିକ ବିକାଶଧାରାକୁ ସେହି ଦିଗରେ ପରିଚାଳିତ କରିବା ମାନବବାଦୀ ଆଭିମୁଖ୍ୟର ସୂଚନା ଦେଇଥାଏ ।

ସାଂପ୍ରତିକ ବିଶ୍ୱରେ ଜ୍ଞାନ, ବିଜ୍ଞାନ, ପ୍ରଯୁକ୍ତି ଯଥେଷ୍ଟ ବିକାଶ ଲାଭ କଲାଣି । ସେହିପରି ବୌଦ୍ଧିକ ବିଚାରବୋଧରେ ଗଣତାନ୍ତ୍ରିକ ଭାବନା, ସମାଜବାଦୀ ପରିକଳ୍ପନା ଓ ମାନବବାଦୀ ଜୀବନଦୃଷ୍ଟିର ବହୁ ପ୍ରସାର ଘଟିଲାଣି । ନ୍ୟାୟ, ସମତା ଓ ମୈତ୍ରୀ ଭାବ ସବୁ ରାଷ୍ଟ୍ରରେ ଊଣା ଅଧିକେ ଜାତୀୟ ଜୀବନର ଲକ୍ଷ୍ୟ ହେଲାଣି । ଜନମଙ୍ଗଳକାରୀ ରାଷ୍ଟ୍ରୀୟ ଚେତନା ସହ ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନକୁ ସ୍ୱୀକୃତି ମିଳିଲାଣି । ଯେକୌଣସି ଭେଦଭାବ ମୂଳକ ଦୃଷ୍ଟିଭଙ୍ଗୀ ଯେ ଅମାନବିକ ଏହା ଚିନ୍ତାରାଜ୍ୟରେ ଭିତ୍ତି ନେଲାଣି । ସାର୍ବଜନୀନ ଶିକ୍ଷା, କ୍ଷୁଧାମୁକ୍ତ ସମାଜ, ଆଧୁନିକ ଜ୍ଞାନ ଆଧାରରେ ଉନ୍ନତ ସ୍ୱାସ୍ଥ୍ୟସେବା

ସମସ୍ତ ନାଗରିକଙ୍କୁ ଯୋଗାଇବା ପାଇଁ ପ୍ରତ୍ୟେକ ରାଷ୍ଟ୍ରରେ ସଚେତନତା ସୃଷ୍ଟି ହେଲାଣି । ଏସବୁ ମାନବ ଜାତିର ଇତିହାସରେ ଅଗ୍ରଗାମୀ ଚେତନାର ପ୍ରତୀକ ନିଶ୍ଚୟ । ଏସବୁ ଯେ ଆଗାମୀ ବିଶ୍ୱର ସାର୍ବଜନୀନ ଆଦର୍ଶ ହେବ ଏହା ମନେ ହୁଏ । ଏହି ଉତ୍ତରଣ ପଶ୍ଚାତରେ ରହିଛି ବିଜ୍ଞାନ, ମାନବବାଦ ଓ ହେତୁବାଦୀ ଜିଜ୍ଞାସା । ଏସବୁ ମଣିଷର ପ୍ରଚେଷ୍ଟାର ପରିଣାମ । ଏକ ଆଦିମ ଅବସ୍ଥାରୁ ଏହି ଆନ୍ତର୍ଜାତିକ ଭାବଧାରାର ବିକାଶ ଭିତରେ ଏକ ସୁଦୀର୍ଘ ଇତିହାସ ରହିଛି । କେତେ କେତେ ବର୍ବରତା, ଶୋଷଣ, ଉତ୍ପୀଡନ, ବିଭୀଷିକା ମଧ୍ୟ ଦେଇ ମଣିଷ ସମାଜ ବିଶ୍ୱଭାବ, ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ସାମ୍ୟ-ମୈତ୍ରୀ-ପ୍ରୀତିର ଚେତନା ସୃଷ୍ଟି କରିଛି । ଏହାହିଁ ବିଶ୍ୱ-ବିବେକ ଓ ବିଚାରଶୀଳ ଚେତନାର କ୍ରମବିକାଶ କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୬.୫.୨୦୧୫)



# ମହାମାନବିକ ଦୃଷ୍ଟି

ଏହା ଏକ ସାଧାରଣ ଅନୁଭବ ଯେ ମଣିଷ ସମାଜ ବିକାଶର ଧାରାରେ ସର୍ବଦା ଆଗକୁ ଚାଲିଛି । ସମାଜର ବିକାଶ ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ବିକାଶର ଧାରାକୁ ଉଭୟ ଭୌତିକ ଓ ମାନବିକ ମାନଦଣ୍ଡରୁ ମୂଲ୍ୟାୟନ କରାଯାଇପାରେ । ଭୌତିକ ବିକାଶର ଆଧାର ରାଷ୍ଟ୍ରୀୟ ଯୋଜନା, ବିଜ୍ଞାନ, ପ୍ରଯୁକ୍ତି, କୃଷି ଜନିତ ଉତ୍ପାଦନ, ଶିଳ୍ପ କାରଖାନା, ଗମନାଗମନ, ଶିକ୍ଷାର ବିକାଶ ଇତ୍ୟାଦି ଘଟଣା ଉପରେ ନିର୍ଭର କରେ । ମଣିଷ ସମାଜ ଜାତୀୟତା ଆଧାରରେ ବିଭିନ୍ନ ରାଷ୍ଟ୍ରରେ ବିଭାଜିତ ହୋଇରହିଛି । ସମସ୍ତ ରାଷ୍ଟ୍ର ସମାନ ଭାବରେ ବିକଶିତ ହୋଇନାହାନ୍ତି । କେତେକ ରାଷ୍ଟ୍ର ବିକଶିତ ହୋଇଥିବା ବେଳେ ଅନ୍ୟ କେତେକ ରାଷ୍ଟ୍ର ବିକାଶଶୀଳ ବା ଅବିକଶିତ ହୋଇ ରହିଛନ୍ତି । ଜୀବନର ଭୌତିକ ମାନ ସବୁ ରାଷ୍ଟ୍ରରେ ସମାନ ନୁହେଁ । ପୃଥିବୀର ଜନଗଣଙ୍କ ଭିତରେ ନାନା କାରଣ ନେଇ ନାନା ବୈଷମ୍ୟ ରହିଛି । ପୁନଶ୍ଚ ଏକ ବିକାଶଶୀଳ ରାଷ୍ଟ୍ରରେ କିଛି ବ୍ୟକ୍ତି ବିକଶିତ ରାଷ୍ଟ୍ରର ଜନଗଣଙ୍କ ସଦୃଶ ସ୍ୱଚ୍ଛନ୍ଦ ଜୀବନ ଯାପନ କରୁଥିବା ବେଳେ ଅନ୍ୟମାନେ ଅତ୍ୟନ୍ତ ଦାରିଦ୍ର୍ୟ ଓ ପ୍ରତିକୂଳ ସ୍ଥିତିରେ ଜୀବନ ନିର୍ବାହ କରୁଛନ୍ତି । ବିକଶିତ ରାଷ୍ଟ୍ରମାନଙ୍କରେ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି, ଭିକ୍ଷାବୃତ୍ତି ଇତ୍ୟାଦି ସମସ୍ୟା ମାନ ନାହିଁ ଯାହା ବିକାଶଶୀଳ ରାଷ୍ଟ୍ରମାନଙ୍କରେ ରହିଛି । କେତେକ ରାଷ୍ଟ୍ର ବିକଶିତ ହେବା ବା ବିକାଶଶୀଳ ରହିବା ପଶ୍ଚାତରେ ନାନା ରାଜନୈତିକ, ଆର୍ଥନୀତିକ, ସାଂସ୍କୃତିକ, ସାମାଜିକ କାରଣମାନ ନିହିତ ରହିଥିବା ମନେହୁଏ । ଯେଉଁ ରାଷ୍ଟ୍ରମାନ ବିକଶିତ ବା ଯେଉଁ ସମାଜରେ ଲୋକମାନେ ଉନ୍ନତ ସ୍ଥିତିରେ ରହିଛନ୍ତି ସେମାନଙ୍କୁ ଦୈବୀ କରୁଣା ମିଳି ନାହିଁ ଓ ଯେଉଁ ଲୋକମାନେ ଦୟନୀୟ ସ୍ଥିତିରେ ରହିଛନ୍ତି ସେମାନଙ୍କୁ ଅଭିଶାପ ମିଳିନାହିଁ । ବିକାଶ, ଉନ୍ନତ ଜୀବନଶୈଳୀ, ସାମାଜିକ ଶୃଂଖଳା ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ଯେଉଁ ସାମାଜିକ ଜୀବନ ପ୍ରବାହରେ ବିଚାରଶୀଳତା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବିକ ସମ୍ବେଦନଶୀଳତାର ଭିତ୍ତି ଯେତେ ସୁଦୃଢ଼ ହୋଇଛି ସେଠି ଜୀବନର ଗୁଣାତ୍ମକ ମାନରେ ସେତେ ଉନ୍ନତି ହୋଇଛି ।

ବଞ୍ଚିବା ଓ ସୁଖରେ ବଞ୍ଚିବାର ଅଭିପ୍ରାୟ ମଣିଷର ଏକ ସହଜାତ ଆକାଂକ୍ଷା । ଇତର ପ୍ରାଣୀଠାରୁ ମଣିଷ ପର୍ଯ୍ୟନ୍ତ ସମସ୍ତ ଜୀବଙ୍କ ଭିତରେ ବଞ୍ଚି ରହିବାର ପ୍ରବୃତ୍ତି ରହିଛି । ପ୍ରକୃତିରୁ ଖାଦ୍ୟ ଆହରଣ କରି ପ୍ରାଣୀମାନେ ଜୀବନ ବଞ୍ଚନ୍ତି । କିନ୍ତୁ ମଣିଷ ନିଜର ବୁଦ୍ଧି ଖଟାଇ ଖାଦ୍ୟ ଉତ୍ପାଦନ କରିବାକୁ ଆଦିମ ଅବସ୍ଥାରୁ ପ୍ରୟାସ କରିଛି । ଖାଦ୍ୟ ଉତ୍ପାଦନ, ଗୃହ ନିର୍ମାଣ, କଳ କାରଖାନା ସ୍ଥାପନ ଓ ନାନା ଉପକରଣ ପ୍ରସ୍ତୁତ କରିବା ପାଇଁ ମଣିଷ ନିଜର ବୁଦ୍ଧି ଖଟାଇଛି । ଏହା ପଛରେ ଉଦ୍ଦେଶ୍ୟ ହେଉଛି ସୁଖରେ ଓ ଯେତେ ଦୂର ସମ୍ଭବ ନିରାପଦରେ ଜୀବନ ବଞ୍ଚିବା । ଏହି ଧାରାରେ ମଣିଷ ତାର ପରିବେଶ ଓ ପ୍ରକୃତିକୁ ପରିବର୍ତ୍ତନ କରିଛି । ସଭ୍ୟତା ଯେତେ ଆଗକୁ ଯାଉଛି ପରିବେଶ ସେତିକି ବଦଳି ଚାଲିଛି । ଏକ ଶତାବ୍ଦୀ ତଳର ପରିବେଶ ଓ ଆଜିର ପରିବେଶ ଭିତରେ ବହୁ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । କୃଷିର ଜ୍ଞାନ ହାସଲ ପରେ ପରିବେଶରେ ଏକ ବଡ ପରିବର୍ତ୍ତନ ଆସିଥିବ । ସେହିପରି ଶିଳ୍ପ ବିପ୍ଳବ ପରେ ବିଭିନ୍ନ ଦେଶରେ ପାରିବେଶିକ ପରିବର୍ତ୍ତନ ଦ୍ରୁତ ଗତିରେ ହୋଇଛି । ଏପରିକି ଏକ ଶତାବ୍ଦୀ ତଳେ ପୃଥିବୀରେ ଯେଉଁ ପରିବେଶ ରହିଥିଲା, ସେହି ପରିବେଶରେ ସଂପ୍ରତି ଅନେକ ପରିବର୍ତ୍ତନ ହୋଇଯାଇଛି । ପାରିବେଶିକ ପ୍ରଦୂଷଣ ମାନବ ସମାଜ ପାଇଁ ଏକ ବଡ ଆହ୍ୱାନ ଭାବେ ଦେଖାଦେଇଛି ଓ ଏଥିରୁ ଆଗାମୀ ପିଢ଼ିର ମାନବ ସମାଜକୁ ରକ୍ଷା କରିବାକୁ ଆନ୍ତର୍ଜାତିକ ସ୍ତରରେ ସଚେତନତା ପ୍ରକାଶ ପାଉଛି ।

ସବୁ ମଣିଷ ବିଶ୍ୱ ପ୍ରକୃତି ଭିତରେ ଜାତ ଓ ପ୍ରତିପାଳିତ ହୋଇ ଆସିଛନ୍ତି । ନିଜର ପରିବେଶ ଓ ପ୍ରକୃତି ଆଧାରରେ ମଣିଷର ବିଚାର, ଜ୍ଞାନ ଧୀର ମନ୍ଥର ଗତିରେ ବିକଶିତ ହୋଇଚାଲିଛି । ତେବେ ସ୍ଥାନ, କାଳ ଓ ପରିସ୍ଥିତି ଜନିତ ଘଟଣା ପ୍ରବାହ ଗୋଷ୍ଠୀ ଜୀବନ ଭିତରେ ପାର୍ଥକ୍ୟ ସୃଷ୍ଟି କରିଆସିଛି । ଏହି ପାର୍ଥକ୍ୟ ଭୌତିକ, ବୌଦ୍ଧିକ ଓ ନୈତିକ ସ୍ତରରେ ବି ପ୍ରତିଫଳିତ ହୋଇ ଆସିଛି । ବଞ୍ଚି ରହିବା ପାଇଁ ଜୀବନର ଭୌତିକ ଆବଶ୍ୟକତା ଅବଶ୍ୟମ୍ଭାବୀ । ଜୀବନରେ ସର୍ବନିମ୍ନ ଭୌତିକ ଆବଶ୍ୟକତାର ଅଭାବ ହେଲେ ଜୀବନ ଧାରଣ ଦୁର୍ବିସହ ହୋଇଥାଏ । ପ୍ରକୃତି ଭିତରେ ଯଥେଷ୍ଟ ସମ୍ବଳ ରହିଛି । ହେଲେ କିଛି ବ୍ୟକ୍ତି ବହୁ ସମ୍ବଳର ଅଧିକାରୀ ହୋଇଛନ୍ତି ଓ କିଛି ବ୍ୟକ୍ତି ସବୁ ସମୟରେ ସମ୍ବଳହୀନ ହୋଇ ନାନା ସଂଗ୍ରାମ ଭିତରେ ଜୀବନ ଅତିବାହିତ କରିଛନ୍ତି । ସଭ୍ୟତାର ଆରମ୍ଭ ପର୍ବରେ ହେଉ ବା ଆଜିର ଅତ୍ୟାଧୁନିକ ପରିବେଶରେ ହେଉ ପ୍ରାକୃତିକ ସମ୍ବଳ ସବୁ ମଣିଷ ପାଇଁ ଆବଶ୍ୟକତା ଅନୁଯାୟୀ ଉପଲବ୍ଧ ହୋଇ ପାରି ନାହିଁ । କିଛି ବ୍ୟକ୍ତି ସମ୍ବଳଶୂନ୍ୟ ହୋଇ ରହିବା ଦ୍ୱାରା ଜୀବନର ସମସ୍ତ ସରସତା ହରାଇ ବସିଛନ୍ତି । ସେହିପରି ବୌଦ୍ଧିକ ସ୍ତରରେ ମଧ୍ୟ ମଣିଷ ସମାଜରେ ନାନା ବିଭେଦ ଓ ପାର୍ଥକ୍ୟ ରହିଛି । ମୁଷ୍ଟିମେୟ ବ୍ୟକ୍ତି ଜ୍ଞାନ ବିଜ୍ଞାନର ବିକାଶ କ୍ଷେତ୍ରରେ ବେଶ୍ ପଥପ୍ରଦର୍ଶକ ହୋଇଛନ୍ତି ।

ଜ୍ଞାନ, ବିଜ୍ଞାନ, ସାହିତ୍ୟ, କଳା ଇତ୍ୟାଦି କ୍ଷେତ୍ରରେ କିଛି ବ୍ୟକ୍ତି ଗଭୀର ସୃଜନଶୀଳ ପ୍ରତିଭାର ପରିଚୟ ଦେଇଛନ୍ତି । ସବୁ ସଭ୍ୟତାରେ ସୃଜନଶୀଳ ଓ ପ୍ରତିଭାବାନ ବ୍ୟକ୍ତିଗଣ ସେମାନଙ୍କର ଅବଦାନ ଯୋଗୁ କେବଳ ସେମାନଙ୍କ ସମାଜର ବିକାଶ ଯେ କରିଛନ୍ତି ତାହା ନୁହଁ, ସେମାନେ ମଣିଷ ସମାଜର ପ୍ରଭୂତ ମଙ୍ଗଳ ସାଧନ କରିଛନ୍ତି । ଜ୍ଞାନ ବିଜ୍ଞାନ କ୍ଷେତ୍ରରେ, ନୂଆ ନୂଆ ପ୍ରଯୁକ୍ତି ଉଦ୍‌ଭାବନ କରିବାରେ, କଳାତ୍ମକ ନାନ୍ଦନିକତା ବିକାଶ କ୍ଷେତ୍ରରେ, ଉଚ୍ଚମାନର ସାହିତ୍ୟ ସୃଜନରେ, ଗମ୍ଭୀର ଦାର୍ଶନିକ ଜିଜ୍ଞାସା ଅନୁଶୀଳନ ସ୍ତରରେ ମୁଷ୍ଟିମେୟ ଲୋକ ସ୍ୱକୀୟ ପ୍ରତିଭାର ପରିଚୟ ଦେଇଛନ୍ତି । ମୁଷ୍ଟିମେୟ ସୃଜନଶୀଳ ବ୍ୟକ୍ତିଙ୍କର ଅବଦାନ ଯୋଗୁ ସଭ୍ୟତା ଆଗକୁ ଯାଇଛି, ଦେଶ ଦୁନିଆରେ ପରିବର୍ତ୍ତନର ପରିବେଶ ଆସିଛି ଓ ଜୀବନର ମାନରେ ଉତ୍ତରଣ ଘଟିଛି । ତେବେ ବିଡମ୍ବନାର ବିଷୟ ଜ୍ଞାନ ବିଜ୍ଞାନର ଚକ ବହୁ ଆଗକୁ ଯାଇଥିଲେ ସୁଦ୍ଧା ସମାଜର କିଛି ବ୍ୟକ୍ତି ଏବେ ବି ଅନ୍ଧକାର ଭିତରେ ରହିଛନ୍ତି ଓ ବୌଦ୍ଧିକ ସ୍ତରରେ ବିଶେଷ ବିକଶିତ ହୋଇ ନାହାନ୍ତି । ଏପରିକି ଶିକ୍ଷିତ ବ୍ୟକ୍ତିମାନେ ମଧ୍ୟ ଅନ୍ଧ-ସଂସ୍କାର ଭିତରେ ପଙ୍ଗୁ ହୋଇ ରହିଛନ୍ତି । ବିଚାରଶୀଳତା, ବୈଜ୍ଞାନିକ ମାନସିକତା, ମୁକ୍ତ ଅନୁସନ୍ଧିତ୍ସା ଜନିତ ଦୃଷ୍ଟିଭଙ୍ଗୀ ସେମାନଙ୍କ ଜୀବନଧାରାରେ ପ୍ରତିଫଳିତ ହୋଇପାରୁ ନାହିଁ । କୁସଂସ୍କାର, ଅହେତୁକ ବିଶ୍ୱାସ, ପାରଲୌକିକ ଜୀବନଦୃଷ୍ଟି ଓ ଅଜ୍ଞତା ସେମାନଙ୍କ ଜୀବନଧାରାକୁ କବଳିତ କରିରଖିଛି । ନୀତି, ନୈତିକତା କ୍ଷେତ୍ରରେ ମଧ୍ୟ ସାମାଜିକ ଜୀବନ ପ୍ରବାହରେ ବେଶ୍ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । ସମାଜରେ କିଛି ବ୍ୟକ୍ତି ବେଶ୍ ନୀତିବାନ, କର୍ତ୍ତବ୍ୟ ପରାୟଣ ଓ ସମ୍ବେଦନଶୀଳ । ସେମାନେ ଅନ୍ୟର ଦୁଃଖ, ଦୁର୍ଦ୍ଦଶାରେ ବିଗଳିତ ହୁଅନ୍ତି ଓ କେବେ କାହାର ଅନିଷ୍ଟ ସାଧନ କରନ୍ତି ନାହିଁ । ସମାଜରେ ଏପରି କିଛି ବ୍ୟକ୍ତି ଦେଖାଯାନ୍ତି ଯେଉଁମାନେ ଅତ୍ୟନ୍ତ କୁଟିଳ, ସମ୍ବେଦନହୀନ ଓ ସ୍ୱାର୍ଥପର । ନିଜର ସ୍ୱାର୍ଥସାଧନ ପାଇଁ ସେମାନେ ଯେକୌଣସି ପନ୍ଥା ଅବଲମ୍ବନ କରିପାରନ୍ତି ଓ ନାଗରିକ ଶୃଂଖଳା ପ୍ରତି ସର୍ଶକାତରହୀନ ମନୋଭାବ ପ୍ରଦର୍ଶନ କରନ୍ତି । ଏହି ମାନସିକତାର ପ୍ରସାରିତ ଦିଗଟି ହେଉଛି ସାଂପ୍ରଦାୟିକ ମନୋଭାବ । ଯେଉଁମାନେ ମୋ ଗୋଷ୍ଠୀର ଲୋକ ନୁହନ୍ତି, ମୋ ସାମାଜିକ ଅସ୍ମିତାଠାରୁ ଯେଉଁମାନେ ପୃଥକ୍ ସେମାନେ ମୋର ବିରୋଧୀ ଓ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ମୋ ପାଇଁ ଆନନ୍ଦର ବିଷୟ । ଧର୍ମ, ଜାତି, ଜାତୀୟତା, ଏପରିକି ଭାଷା, ଆଞ୍ଚଳିକତା ଇତ୍ୟାଦି ପରିଚୟକୁ ନେଇ ମଣିଷ ସମାଜ ଭିତରେ ନାନା ଭେଦଭାବ ଓ ବିଦ୍ୱେଷ ରହି ଆସିଛି । ଏହି ଭେଦଭାବରୁ ସୃଷ୍ଟି ହୋଇଛି ନାନା ପାଶବିକତା । ହିଂସା, ଅସହିଷ୍ଣୁତା, ଘୃଣା, ବିଦ୍ୱେଷ ବିଭିନ୍ନ ଜନଗୋଷ୍ଠୀ ଭିତରେ ଇତିହାସରେ ସୃଷ୍ଟି ହୋଇଛି । ଯେତେବେଳେ ଯେଉଁଠି ଏହା ହିଂସାତ୍ମକ ରୂପ ନେଇଛି, ସେତେବେଳେ ଅନେକ ମଣିଷଙ୍କର ସଂସାର ଉଚ୍ଛନ୍ନ ହୋଇଯାଇଛି ।

ସାଂପ୍ରଦାୟିକତା ଓ ସନ୍ତ୍ରାସବାଦ ମାନବିକତାର ପରିପନ୍ଥୀ । ମାନବ ସଭ୍ୟତାର ଏହା ଏକ ବିଡମ୍ବନା ଯେ କିଛି ବ୍ୟକ୍ତି ମାନବିକତାର ଜୟଗାନ କରିଥିବାବେଳେ କିଛି ବ୍ୟକ୍ତି ପାଶବିକତାର ପ୍ରସାର କରିଛନ୍ତି । ସେହିପରି କିଛି ବ୍ୟକ୍ତି ସମସ୍ତ ଭେଦଭାବକୁ ପରିହାର କରି ମହାମାନବିକ ଚେତନାର ବାର୍ତ୍ତାବହ ହୋଇଥିବା ବେଳେ କିଛି ପ୍ରଭାବଶାଳୀ ବ୍ୟକ୍ତି ସନ୍ତ୍ରାସବାଦ ଓ ସାଂପ୍ରଦାୟିକତାବାଦର ଜୟଗାନ କରୁଛନ୍ତି । ମହାମାନବିକ ଭାବନା ହେଉଛି ଏକ ବିଶ୍ୱଦୃଷ୍ଟି । ସମତା, ମୈତ୍ରୀଭାବ ଓ ପ୍ରୀତିପୂର୍ଣ୍ଣ ସମ୍ବନ୍ଧ ଏକ ବିଶ୍ୱଦୃଷ୍ଟିର ପ୍ରତିଫଳନ । ବିଶ୍ୱଦୃଷ୍ଟି ହିଁ ହେଉଛି ଏକ ମହତ୍ତର ଜୀବନବୋଧ । ମହାମାନବିକ ଚେତନା, ବିଶ୍ୱଦୃଷ୍ଟି ଭିତରେ ମହତ୍ତର ଜୀବନବୋଧର ଯେଉଁ ବାର୍ତ୍ତା ରହିଛି ତାହା ହିଁ ବିଶ୍ୱ-ବିବେକର ପ୍ରତୀକ । ସଭ୍ୟତାର ଉତ୍ତରଣ ପାଇଁ ଏହି ମୂଲ୍ୟବୋଧର ସାର୍ବଜନୀନ ପ୍ରସାର ହେବା ଅବଶ୍ୟମ୍ଭାବୀ । ସଭ୍ୟତାର ବିକାଶଧାରାରେ ସଂସାରରେ କେତେ ସଂସ୍କୃତି, ଜୀବନଧାରା, ଧାର୍ମିକ ଜୀବନଦୃଷ୍ଟି, ନୈତିକ ଜୀବନବୋଧ ତଥା ରାଜନୈତିକ, ଅର୍ଥନୈତିକ ଓ ଶୈକ୍ଷିକ ଆଦର୍ଶମାନ ସୃଷ୍ଟି ହୋଇଛି । ଯେଉଁ ଯୁଗରେ ପୃଥିବୀ ପ୍ରାକୃତିକ କାରଣ ଯୋଗୁ ନଦୀ, ସମୁଦ୍ର, ପାହାଡ, ପର୍ବତ ପାଇଁ ଭାଗ ଭାଗ ହୋଇ ରହିଥିଲା, ସେହି ସ୍ଥିତିରେ ନାନାବିଧ ସାଂସ୍କୃତିକ, ଧାର୍ମିକ ଓ ନୈତିକ ଧାରା ଉଦ୍‌ଭବ ହେବା ବେଶ୍ ସ୍ୱାଭାବିକ ଥିଲା । ସେହି ସ୍ଥିତିରୁ ମାନବ ଜାତି ବହୁ ଆଗକୁ ଯିବାରେ ସମର୍ଥ ହେଲାଣି । ଜ୍ଞାନବିଜ୍ଞାନ, ପ୍ରଯୁକ୍ତି ମଣିଷ ସମୁଦାୟକୁ ଓ ସମଗ୍ର ବିଶ୍ୱକୁ ଏକ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ କରିବାର ପରିବେଶ ସୃଷ୍ଟି କଲାଣି । ଏହି ସ୍ଥିତିରେ ଯଦି ଏକ ମହାମାନବିକ ଚେତନାର ପ୍ରସାର ସାର୍ବଜନୀନ ଭାବେ ସମ୍ଭବ ହୋଇପାରନ୍ତା, ତେବେ ଆଗାମୀ ବିଶ୍ୱ ମଧୁମୟ ହେବାର ପରିବେଶ ଆସନ୍ତା । ଆମ ସଂସାରରୁ ସକଳ ଦାରିଦ୍ର୍ୟ ଆଧୁନିକ ଜ୍ଞାନକୌଶଳ ସାହାଯ୍ୟରେ ଦୂର ହେବା ସହ ସବୁ ମଣିଷ ମର୍ଯ୍ୟାଦାର ସହ ଜୀବନ ବଞ୍ଚିବାର ଅବକାଶ ପାଇପାରନ୍ତେ । ସମଗ୍ର ମଣିଷ ଜାତିର ଜ୍ଞାନକୁ ପ୍ରୟୋଗ କରାଯାଇ ସଂସାରରୁ ସମସ୍ତ ସଂକଟ ଓ ମନ୍ଦକୁ ଦୂର କରାଯାଇ ପାରନ୍ତା । ଯେଉଁ ସବୁ ଭାବନା, ପରଂପରା, ବିଶ୍ୱାସ ବ୍ୟକ୍ତି ଓ ଗୋଷ୍ଠୀ ଭିତରେ ଭେଦଭାବ ସୃଷ୍ଟି କରୁଛି ତାହାକୁ ଦୂର କରି ଏକ ମହା ମାନବିକ ବିଶ୍ୱ ଦୃଷ୍ଟିର ବିକାଶ ହୋଇପାରନ୍ତା । ଏହା ସମ୍ଭବ ହେଲେ ମଣିଷ ଜାତିର ଏକ ନୈତିକ ଓ ସାଂସ୍କୃତିକ ଉତ୍ତରଣ ହୁଅନ୍ତା । କେତେକ ହେତୁବାଦୀ ଦାର୍ଶନିକ, ମାନବହିତୈଷୀ ବୈଜ୍ଞାନିକ ଓ ରାଷ୍ଟ୍ରନୀତିଜ୍ଞ ଏହିପରି ଏକ ଭବିଷ୍ୟତର ଚିତ୍ର ଆଙ୍କିବାରେ ଲାଗିଛନ୍ତି ।

(୧୩.୫.୨୦୧୫)



# ମୃତ୍ୟୁ ଅଧିକାର

ଜଣେ ବ୍ୟକ୍ତିର ମରିବାର ଅଧିକାର ରହିଛି କି ? ଉତ୍ତମ ମୃତ୍ୟୁ, ଇଚ୍ଛା ମୃତ୍ୟୁ, ସମ୍ମାନଜନକ ମୃତ୍ୟୁ ବା କରୁଣାମୃତ୍ୟୁ ଦ୍ୱାରା ଜୀବନର ଯବନିକା ଆଣିହେବ କି ? ସମ୍ଭବତଃ ମରିବାର ଅଧିକାର ପୃଥିବୀର କୌଣସି ଦେଶର ସମ୍ବିଧାନଦ୍ୱାରା ସ୍ୱୀକୃତ ନୁହେଁ । ସ୍ୱଇଚ୍ଛାରେ ଓ ଅପ୍ରାକୃତିକ ଧାରାରେ ମୃତ୍ୟୁ ବରଣ କରିବାକୁ ଆତ୍ମହତ୍ୟା କୁହାଯାଏ । ଆମ ଦେଶର ଆଇନ ପରିସରରେ ଆତ୍ମହତ୍ୟା ଏକ ଧର୍ତ୍ତବ୍ୟ ଅପରାଧ । କୌଣସି ବ୍ୟକ୍ତି ଆତ୍ମହତ୍ୟା କରିବାକୁ ଯାଇ ବିଫଳ ହେଲେ ଆଇନଦ୍ୱାରା ଦଣ୍ଡିତ ହେବେ । ଜୀବନର ପବିତ୍ରତାକୁ ଆତ୍ମହତ୍ୟା ଦ୍ୱାରା ଜଣେ ଶେଷ କରିଦେବା ଅନୈତିକ ଭାବନାରୁ ଆତ୍ମହତ୍ୟାକୁ ଆଇନ ଦୃଷ୍ଟିରୁ ବାରଣ କରାଯାଇଛି । ତେବେ ଜୀବନର ମୂଲ୍ୟ ଓ ମହତ୍ତ୍ୱ ନେଇ ସଭ୍ୟତାର ବିକାଶଧାରାରେ ଚିନ୍ତାଧାରାରେ ପରିବର୍ତ୍ତନ ଆସିଛି । କେବଳ ବଞ୍ଚିବା ଓ ଗୁଣାତ୍ମକ ଭାବରେ ବଞ୍ଚିବା ଭାବନା ଭିତରେ ପାର୍ଥକ୍ୟ କରାଯାଏ । ଆଧୁନିକ ଜୀବନବୋଧ ଓ ମାନବବାଦୀ ମୂଲ୍ୟବୋଧର ବିକାଶ ପୃଷ୍ଠଭୂମିରେ ଆନ୍ତର୍ଜାତିକ ସ୍ତରରେ ପ୍ରତ୍ୟେକ ବ୍ୟକ୍ତିର ଜୀବନକୁ ମହତ୍ତ୍ୱ ପ୍ରଦାନ କରାଯାଇଛି । ପ୍ରତ୍ୟେକ ବ୍ୟକ୍ତିକୁ ସମ୍ମାନର ସହ ବଞ୍ଚିବାକୁ ଅବକାଶ ଦେବା, କୌଣସି ଭେଦଭାବଦ୍ୱାରା ତାକୁ ନ୍ୟୂନ ନକରିବା, ଜୀବନର ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ ପାଇଁ ପରିବେଶ ଯୋଗାଇବା ରାଷ୍ଟ୍ରର କର୍ତ୍ତବ୍ୟ ବୋଲି ଆନ୍ତର୍ଜାତିକ ଘୋଷଣାନାମା ରହିଛି । ଭାରତୀୟ ସମ୍ବିଧାନରେ 'ବ୍ୟକ୍ତିଗତ ଅଧିକାର ଓ ଜୀବନ ସୁରକ୍ଷା' ସମ୍ବନ୍ଧରେ ଧାରା ୨୧ ରେ ସୂଚନା ଦିଆଯାଇଛି । ଜଣେ ବ୍ୟକ୍ତିକୁ ବଞ୍ଚିବାର ଅଧିକାରରୁ ନିବୃତ୍ତ କରାଯାଇ ପାରିବ ନାହିଁ ଓ ଆଇନର ପରିସର ମଧ୍ୟରେ ସେ ନିଜର ଅଧିକାର ଉପଭୋଗ କରିପାରିବ । ଆମ ଦେଶର ସମ୍ବିଧାନ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନକୁ ସ୍ୱୀକୃତି ଦେଇଛି ଓ ପ୍ରାୟତଃ ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରରେ ପ୍ରତ୍ୟେକ ନାଗରିକର ସମ୍ମାନଜନକ ଜୀବନ ଧାରଣକୁ ଗ୍ରହଣ କରାଯାଇଛି ।

ସମ୍ମାନର ସହ ବଞ୍ଚିବା ଯଦି ବ୍ୟକ୍ତିର ଅଧିକାର ହୁଏ, ତାର ଏକ ପରିଣତି ହେବ- ସମ୍ମାନର ସହ ମୃତ୍ୟୁବରଣ କରିବା ବି ବ୍ୟକ୍ତିର ଅଧିକାର । ସମ୍ମାନର ସହ

ମରିବାର ଅଧିକାର ଆଇନ ଗତ ଦୃଷ୍ଟିରୁ ସର୍ବତ୍ର ସ୍ୱୀକୃତ ହୋଇ ନାହିଁ । କାରଣ ଏଠାରେ ନୈତିକତାର ପ୍ରସଙ୍ଗ ଆସେ । ତେବେ ବ୍ୟକ୍ତି କେଉଁ କ୍ଷେତ୍ରରେ ମୃତ୍ୟୁବରଣ କରିବାର ନିଷ୍ପତ୍ତି ନିଏ ତାକୁ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରାଯାଇପାରେ ।

ଯଦି ଜଣେ ବ୍ୟକ୍ତି ଅନୁଭବ କରେ ଯେ ସେ ନିଜ ପ୍ରତି, ନିଜର ପରିବାର, ସମାଜ ଓ ଦେଶ ପ୍ରତି ନିଜର କର୍ତ୍ତବ୍ୟ ସମାପନ କରିଛି ଓ ସେ ଆଉ ବଞ୍ଚିବାକୁ ଚାହୁଁ ନାହିଁ ସେତେବେଳେ ସେ କିପରି ଓ କେତେବେଳେ ମୃତ୍ୟୁବରଣ କରିବ ସେ ଅଧିକାର ତାର ରହିବା ଦରକାର । ଆମ ଦେଶର ପୃଷ୍ଠଭୂମିରେ ଆମର କେତେକ ପୌରାଣିକ ଚରିତ୍ର ଏହା କରିଥିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ମହାଭାରତ ଚରିତ୍ରମାନଙ୍କ ମଧ୍ୟରେ କୁନ୍ତି, ଗାନ୍ଧାରୀ, ଧୃତରାଷ୍ଟ୍ର, ଭୀଷ୍ମ ଇତ୍ୟାଦି ଚରିତ୍ରମାନେ ସ୍ୱଇଚ୍ଛାରେ ମୃତ୍ୟୁକୁ ଆହ୍ୱାନ କରିଥିବା କୁହାଯାଏ । ଏପରିକି ବିଂଶ ଶତାବ୍ଦୀର କେତେକ ବିଶିଷ୍ଟ ବ୍ୟକ୍ତି ଯଥା ବୀର ସଭରକର, ବିନୋବା ଭାବେ, ଶାନ୍ତିଲାଲ ସାହାଙ୍କ ପରି ସମାଜର ସମ୍ମାନିତ ଓ ବୁଦ୍ଧିଜୀବୀ ମାନେ ସ୍ୱଇଚ୍ଛାରେ ମୃତ୍ୟୁବରଣ କରିଥିବାର ଦୃଷ୍ଟାନ୍ତ ରହିଛି । ସେହିପରି ଜୈନଧର୍ମ ପରଂପରାରେ ଏକ ବ୍ରତଦ୍ୱାରା ଜୀବନର ପରିସମାପ୍ତି ଘଟାଇବାର ଭାବନା ରହିବା ଦେଖାଯାଏ ।

ଏହା ଏକ ସାଧାରଣ ଉପଲବ୍ଧି ଯେ ପ୍ରତ୍ୟେକ ବ୍ୟକ୍ତି ବଞ୍ଚିବାକୁ ଚାହେଁ, ମରିବାକୁ କେହି ଭଲ ପାଆନ୍ତି ନାହିଁ । ତେବେ ଜୀବନଧାରାରେ ଏପରି କେତେକ ପରିସ୍ଥିତି ଆସେ ଯେତେବେଳେ ଜୀବନ ଅପେକ୍ଷା ମୃତ୍ୟୁ ଅଧିକ ଶ୍ରେୟସ୍କର ମନେହୁଏ । ଏହା ଏକ ଧ୍ରୁବ ସତ୍ୟ ଯେ ମୃତ୍ୟୁ ହିଁ ଜୀବନର ଅନ୍ତିମ ପରିଣତି । ଅର୍ଥାତ୍ ପ୍ରାକୃତିକ ଉପାୟରେ ମୃତ୍ୟୁ ଅପରିହାର୍ଯ୍ୟ । ତେବେ ପ୍ରାକୃତିକ ମୃତ୍ୟୁ ଆସିବା ପୂର୍ବରୁ ଯେତେବେଳେ ଜୀବନର ସରସତା ସବୁଦିନ ପାଇଁ ଚାଲିଯାଏ, ଜୀବନ ଯନ୍ତ୍ରଣା ଜର୍ଜରିତ ହୋଇପଡେ, ବଞ୍ଚିବା ଅର୍ଥ ଯନ୍ତ୍ରଣାରେ ଘାଣ୍ଟି ହେବା ସାର ହୁଏ ବା ସେପରି କିଛି ପରିସ୍ଥିତି ଆସେ ସେତେବେଳେ ଜଣେ ସମ୍ବେଦ୍ୟ ବ୍ୟକ୍ତି ହୁଏତ ମୃତ୍ୟୁ ଆଶା କରିବା ଦେଖାଯାଏ । ଏହି ସ୍ଥିତିରେ ଇଚ୍ଛାମୃତ୍ୟୁକୁ ସ୍ୱୀକୃତି ଦିଆଯିବା ଯଥାର୍ଥ ହେବ କି ? ଜଣେ ସ୍ୱଇଚ୍ଛାରେ ମରିପାରିବ କି ?

ଜୀବନର ଅନୁଶୀଳନରୁ ଏହା ଜଣାଯାଏ ଯେ ପ୍ରତ୍ୟେକ ବ୍ୟକ୍ତିର ଜୈବିକ ସ୍ଥିତି ଓ ଏକ ମାନସିକ ସ୍ଥିତି ରହିଛି । ଜଣେ ବ୍ୟକ୍ତି ଯେତେବେଳ ପର୍ଯ୍ୟନ୍ତ ତା ନିଜର ଶାରୀରିକ, ବୌଦ୍ଧିକ ଓ ନୈତିକ ସାମର୍ଥ୍ୟ ନେଇ ଜୀବନ ଅତିବାହିତ କରୁଛି, ଅନ୍ୟ ସହିତ ଅର୍ଥପୂର୍ଣ୍ଣ ଭାବେ ଭାବର ଆଦାନ ପ୍ରଦାନ କରୁଛି ଓ ଅନ୍ୟମାନଙ୍କର କଥା ବା କାର୍ଯ୍ୟକୁ ଜାଣିପାରୁଛି ସେ ପର୍ଯ୍ୟନ୍ତ ତାର ଏକ ମାନସିକ ସ୍ଥିତି ରହିଛି । କୌଣସି କାରଣରୁ ଯଦି ବ୍ୟକ୍ତିର ମାନସିକ ଅସ୍ତିତ୍ୱ ବା ସାମର୍ଥ୍ୟ ନଷ୍ଟ ହୋଇଯାଏ ଓ ବ୍ୟକ୍ତି ସଂପୂର୍ଣ୍ଣ ଭାବେ ସମ୍ବେଦନଶୂନ୍ୟ ହୋଇ ଜୀବନ ନିର୍ବାହ କରେ ସେତେବେଳେ ଜୀବନ ଶାରୀରିକ ସ୍ଥିତି

ଭିତରେ ସୀମିତ ହୋଇଯାଏ । ମାନସିକ ଅସ୍ତିତ୍ୱ ଅଭାବରେ ଜୀବନ କେବଳ ଶାରୀରିକ ଅସ୍ତିତ୍ୱ ଭିତରେ ସୀମିତ ହୋଇଗଲେ ଜୀବନର ମହତ୍ତ୍ୱ ନଷ୍ଟ ହୋଇଗଲା ପରି ମନେହୁଏ । ଏହି ସ୍ଥିତି ନାନା କାରଣ ଯୋଗୁ ଆସିପାରେ । କେତେକ ଦୁରାରୋଗ୍ୟ ବ୍ୟାଧି ରହିଛି ଯାହା ଆକ୍ରମଣ କଲେ ବ୍ୟକ୍ତିର ଜୀବନ ଯନ୍ତ୍ରଣା ଜର୍ଜରିତ ହୋଇ ଉଠେ । ଯେତେବେଳେ ଏକ ରୋଗର ଚିକିତ୍ସା ନାହିଁ ବା ଚିକିତ୍ସା ଉପଲବ୍ଧ ହେବା ସମ୍ଭବ ନୁହେଁ, ଅସହ୍ୟ ଯନ୍ତ୍ରଣା ହିଁ ଜୀବନ ସହ ଅଙ୍ଗାଙ୍ଗୀ ହୋଇଯାଏ ସେହି ସ୍ଥିତିରେ ଜୀବନର ମୂଲ୍ୟ କ'ଣ ରହେ ? କେତେ ବର୍ଷ ବଞ୍ଚିବା ଓ କେଉଁ ସ୍ଥିତିରେ ବଞ୍ଚିବା ଦୁଇଟି ପୃଥକ୍ ପ୍ରଶ୍ନ । ଜୀବନ ପ୍ରତି ମମତା ଓ ସମ୍ମାନବୋଧର ଅର୍ଥ ନୁହେଁ କେବଳ ଏକ ଶାରୀରିକ ସ୍ଥିତିକୁ ନେଇ ବଞ୍ଚିବା । ଜୀବନ ସହ ବ୍ୟକ୍ତିର ଶାରୀରିକ ସ୍ଥିତି ଓ ମାନସିକ ସ୍ଥିତି ବି ସଂଶ୍ଳିଷ୍ଟ । ମାନସିକ ସ୍ଥିତି ଧ୍ୱଂସ ପାଇଗଲା ପରେ କେବଳ ଶାରୀରିକ ସ୍ଥିତି ଭିତରେ ଅନ୍ୟର ସାହାଯ୍ୟରେ ଓ ଚିକିତ୍ସା ବିଜ୍ଞାନର ସହାୟତାରେ ଜୀବନ ଧାରଣ ଅର୍ଥଶୂନ୍ୟ ହୁଏ ନାହିଁ କି ? ଏହିପରି ଏକ ସ୍ଥିତିରେ ବଞ୍ଚିବା ଅପେକ୍ଷା ଇଚ୍ଛା ମୃତ୍ୟୁ ଜୀବନ ପାଇଁ ଅଧିକ ନୀତିସଂଗତ କି ନୁହଁ ?

ନିର୍ବୋଧ ଭାବରେ ବଞ୍ଚି ରହିବା ବା ମାନସିକ ସାମର୍ଥ୍ୟ ହରାଇ ବଞ୍ଚିବାର ଅର୍ଥ ଥାଏ କି ? ଯଦି ଜୀବନରେ ଏହିପରି ଏକ ସ୍ଥିତି ବାର୍ଦ୍ଧକ୍ୟ ଜନିତ କାରଣରୁ ବା ରୋଗ ଆକ୍ରମଣରୁ ଆସେ ତେବେ ମୃତବତ୍ ବଞ୍ଚିବାଠାରୁ ମୃତ୍ୟୁ ଚାହିଁବା ଜଣେ ସଚେତନ ବ୍ୟକ୍ତି ପାଇଁ ଆବଶ୍ୟକ କି ନୁହେଁ ? ପ୍ରତିକାରବିହୀନ ରୋଗରେ ଆକ୍ରାନ୍ତ ହୋଇ ସାଂଘାତିକ ଭାବେ ଯନ୍ତ୍ରଣା ଜର୍ଜରିତ ହେବା ଓ ନିଜ ପାଇଁ, ନିଜ ପରିବାରର ଅନ୍ୟମାନଙ୍କର ଜୀବନକୁ ଯନ୍ତ୍ରଣାସିକ୍ତ କରିବା ସ୍ଥିତି କ୍ଷେତ୍ରରେ ଜଣେ ମୃତ୍ୟୁ ଚାହିଁବା ଦରକାର କି ନୁହଁ ? ଏହିପରି ଯଦି ସ୍ଥିତି ଜୀବନ କ୍ଷେତ୍ରରେ ସୃଷ୍ଟି ହୁଏ ସେତେବେଳେ ଜୀବନ ଅପେକ୍ଷା ମୃତ୍ୟୁ ଅଧିକ ଶ୍ରେୟସ୍କର ମନେ ହୋଇଥାଏ । ବ୍ୟକ୍ତିର ଜୀବନ ପ୍ରତି ସମ୍ମାନ ରହେ ଯେତେବେଳ ପର୍ଯ୍ୟନ୍ତ ଜୀବନ ସ୍ୱାଭାବିକ ଥାଏ ଓ ବ୍ୟକ୍ତିର ମାନସିକ ସ୍ଥିତି ଅକ୍ଷୁର୍ଣ୍ଣ ରହିଥାଏ । ମାନସିକ ସ୍ଥିତି ଯଦି ଲୋପ ପାଇଯାଏ ଓ ବ୍ୟକ୍ତି ମୃତବତ୍ ସ୍ଥିତି ବା ଭେଜିଟେଟିଭ୍ ସ୍ଥିତିକୁ ଚାଲିଯାଏ ଓ ଏହି ସ୍ଥିତି ବର୍ଷ ବର୍ଷ ଲାଗି ରହେ, ସେ କ୍ଷେତ୍ରରେ ଇଚ୍ଛା ମୃତ୍ୟୁ ପ୍ରାସଙ୍ଗିକ ହୋଇଥାଏ କି ନାହିଁ !

ମାନବବାଦୀ ଜୀବନ-ଦର୍ଶନର ବିକାଶ ପରଠାରୁ ବ୍ୟକ୍ତି ସ୍ୱାଧୀନତା, ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ଭାବନାମାନ ଚିନ୍ତାରାଜ୍ୟରେ ଆଲୋଡନ ଆଣିଥିବା ମନେହୁଏ । ପ୍ରତ୍ୟକ ବ୍ୟକ୍ତି ଆଇନ ପରିସର ଭିତରେ ସ୍ୱାଧୀନତା ଉପଭୋଗ କରିପାରିବ ଓ ତାହାର ଅଧିକାର କ୍ଷୁର୍ଣ୍ଣ ହେଲେ ଆଇନର ସହାୟତା ନେବ, ଏକ ସଭ୍ୟ ଜୀବନଦୃଷ୍ଟିର ପ୍ରତୀକ । ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରରେ ମାନବିକ ଅଧିକାର ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନକୁ ପ୍ରାୟତଃ ସ୍ୱୀକୃତି ମିଳିପାରିଛି । ଏହି ସବୁ ବିଚାରବୋଧ ଓ ମାନବିକ ମହତ୍ତ୍ୱର ଭାବନା ଦ୍ୱିତୀୟ

ବିଶ୍ୱଯୁଦ୍ଧ ପରେ ପୃଥିବୀର ଚିନ୍ତାରାଜ୍ୟରେ ଆସିଥିବା ମନେହୁଏ । ଏକ ସମ୍ବେଦନଶୀଳ ଜୀବନଦୃଷ୍ଟି ବିଚାରଶୀଳତାର ପ୍ରାଧାନ୍ୟରୁ ଉଦ୍‌ଭବ ହୋଇଛି । ବିଚାରଶୀଳତା ଓ ସମ୍ବେଦନଶୀଳତାର ପରିଣାମରୁ ମର୍ଯାଦାପୂର୍ଣ୍ଣ ଜୀବନଦୃଷ୍ଟି ଓ ମାନବିକ ମହତ୍ତ୍ୱ ଗୁରୁତ୍ୱପୂର୍ଣ୍ଣ ମନେହୋଇଛି । ଏହିପରି ଜ୍ଞାନଦୀପ୍ତ ଚେତନାରୁ ସମ୍ମାନର ସହ ଜୀବନ ପ୍ରାଧାନ୍ୟ ପାଇଛି । ସମ୍ମାନର ସହ ଜୀବନ ବଞ୍ଚିବାର ସଚେତନତାରୁ ସମ୍ମାନର ସହ ମୃତ୍ୟୁବରଣ କରିବା ପ୍ରସଙ୍ଗ ଚିନ୍ତାରାଜ୍ୟରେ କିଛି ଆଲୋଡନ ସୃଷ୍ଟି କରିଛି । ଜଣେ କାହିଁକି ମୃତବତ୍ ବଞ୍ଚିବ, ମାନସିକ ସ୍ଥିତି ହରାଇ ବଞ୍ଚିରହିବ, ଯନ୍ତ୍ରଣାଶିକ୍ତ ଭାବେ ନିଜେ କଷ୍ଟ ପାଇବା ସହ ଅନ୍ୟମାନଙ୍କର ସ୍ୱାଭାବିକ ଜୀବନଧାରାରେ ସମସ୍ୟା ସୃଷ୍ଟି କରିବ ଏହି ସବୁ ପରିସ୍ଥିତିରୁ ସମ୍ମାନର ସହ ଇଚ୍ଛା ମୃତ୍ୟୁକୁ କାହିଁକି ସ୍ୱୀକାର କରାଯିବ ନାହିଁ ?

ଇଚ୍ଛା ମୃତ୍ୟୁ ବା ଇଉଥାନେସିଆ ସାଂପ୍ରତିକ ବିଚାରବୋଧରେ ଏକ ଅନୈତିକ ବା ବେଆଇନ କାର୍ଯ୍ୟ ନୁହେଁ । ବରଂ ଅନ୍ୟକୁ ଦୁଃଖ ଯନ୍ତ୍ରଣାରୁ ମୁକ୍ତି ଦେବାକୁ ଓ ଜଣଙ୍କର ମୃତବତ୍ ସ୍ଥିତିରୁ ନିଷ୍କୃତି ପାଇଁ ଇଉଥାନେସିଆକୁ ପୃଥିବୀର କେତେକ ରାଷ୍ଟ୍ର ସ୍ୱୀକାର କରିଛନ୍ତି । ତେବେ ଭେଜିଟେଟିଭ ସ୍ଥିତିକୁ ଚାଲି ଯାଇଥିବା କିମ୍ବା ପ୍ରତିକାରବିହୀନ ରୋଗରେ ଯନ୍ତ୍ରଣା ଜର୍ଜରିତ ହେଉଥିବା ଜଣେ ବ୍ୟକ୍ତିଙ୍କୁ ଅଭିଜ୍ଞ ଡାକ୍ତରଙ୍କ ସହାୟତାରେ ବ୍ୟକ୍ତିର ସ୍ୱାର୍ଥରେ ମୃତ୍ୟୁ ଦିଆଯାଇପାରେ, ଯାହା ହିଁ ହେଉଛି ଇଉଥାନେସିଆର ତାତ୍ପର୍ଯ୍ୟ । ଆଧୁନିକ ଚିକିତ୍ସା ବିଜ୍ଞାନ ଏପରି ଉନ୍ନତ ସ୍ଥିତିକୁ ଯାଇଛି ଯାହାଦ୍ୱାରା ଜଣଙ୍କର ମାନସିକ ସ୍ଥିତି ଧ୍ୱଂସ ପାଇଗଲା ପରେ ତାକୁ 'ଲାଇଫ-ସପୋଟ' ଦେଇ ଭେଜିଟେଟିଭ ସ୍ଥିତିରେ ବଞ୍ଚାଇ ରଖାଯାଇ ପାରୁଛି । ଚଳଶକ୍ତିଶୂନ୍ୟ ଓ ମାନସିକ ସାମର୍ଥ୍ୟହୀନ ବ୍ୟକ୍ତି କୃତ୍ରିମ ଉପାୟରେ ବର୍ଷ ବର୍ଷ ଧରି ଚିକିତ୍ସା ବିଜ୍ଞାନ ସହାୟତାରେ ବଞ୍ଚି ରହିପାରୁଛି । ଅରୁଣା ଶାନବାଗଙ୍କୁ ଏହି ସ୍ଥିତିରେ ୪୨ ବର୍ଷ ଧରି ବଞ୍ଚାଇ ରଖିବା ଚିକିତ୍ସା ବିଜ୍ଞାନର ବିସ୍ମୟ । ତେବେ ଏହି ପରି ଭେଜିଟେଟିଭ ସ୍ଥିତିରେ ରହିବା ଅପେକ୍ଷା ମୃତ୍ୟୁ କାହିଁକି ଶ୍ରେୟସ୍କର ନ ହେବ। ପୃଥିବୀର କେତେକ ରାଷ୍ଟ୍ର ଯଥା ନେଦରଲାଣ୍ଡ, ସ୍ୱିଜରଲାଣ୍ଡ, ଜାପାନ, ଜର୍ମାନ, ବେଲଜିୟମ, ଆମେରିକାର କେତେକ ରାଜ୍ୟ, ଇଂଲଣ୍ଡ, କାନାଡା ପରି ଉନ୍ନତ ଦେଶମାନ ଇଉଥାନେସିଆକୁ ଆଇନଗତ ସ୍ୱୀକୃତି ଦେଇଛନ୍ତି । ଆମ ଦେଶ ପୃଷ୍ଠଭୂମିରେ ସୁପ୍ରିମ କୋଟ୍ ମଧ୍ୟ ପାସିଭ ଇଉଥାନେସିଆକୁ ଆଇନଗତ ସ୍ୱୀକୃତି ଦେଇଛନ୍ତି । ତେବେ ଏଥିପାଇଁ କେତେକ ଆଇନଗତ ସର୍ତ୍ତ ରଖିଛନ୍ତି । ଏହାର ଅପପ୍ରୟୋଗକୁ ନିୟନ୍ତ୍ରଣ କରିବା ପାଇଁ ଓ ବ୍ୟବସ୍ଥାକୁ ନ୍ୟାୟପୂର୍ଣ୍ଣ ସୁରକ୍ଷା ଦେବାକୁ ଏହା କରାଯାଇଛି । ସମ୍ମାନର ସହ ବଞ୍ଚିବାର ଅଧିକାର ସହ ସମ୍ମାନର ସହ ମରିବାର ଅଧିକାର ମାନବବାଦୀ ଆଦର୍ଶର ପ୍ରତିଫଳନ ।

(୩.୬.୨୦୧୫)



# ଉତ୍ତମ ଜୀବନ, ଉତ୍ତମ ମରଣ

ମାନବବାଦୀ ଜୀବନ-ଦର୍ଶନରୁ ମାନବିକ ଅଧିକାର, ମର୍ଯ୍ୟାଦାପୂର୍ଣ୍ଣ ଜୀବନ, ଭେଦଭାବରହିତ ସାମାଜିକ ବ୍ୟବସ୍ଥା, ବ୍ୟକ୍ତି ସାମର୍ଥ୍ୟର ବିକାଶ ପାଇଁ ଅନୁକୂଳ ପରିବେଶ ଇତ୍ୟାଦି ଭାବନା ମାନ ବିକଶିତ ହୋଇଛି । ମର୍ଯ୍ୟାଦାର ସହ ବଞ୍ଚିବା ବ୍ୟକ୍ତିର ଯେପରି ଏକ ଅଧିକାର, ମର୍ଯ୍ୟାଦାର ସହ ମୃତ୍ୟୁ ବରଣ କରିବା ବି ବ୍ୟକ୍ତିର ଅଧିକାର । ମରିବାର ଅଧିକାରକୁ ଇଚ୍ଛାମୃତ୍ୟୁ ବା ଉତ୍ତମ ମୃତ୍ୟୁ ବା ଇଂରାଜୀରେ ଇଉଥାନେସିଆ କୁହାଯାଉଛି । ଯେଉଁ ସମାଜରେ ଜୀବନର ମହତ୍ତ୍ୱ ଓ ମାନବିକ ଅଧିକାର ନେଇ ସାମାଜିକ ସଚେତନତାର ସ୍ତର ଯେତେ ଉନ୍ନତ, ସେଠାରେ ମରିବାର ଅଧିକାର ବି ସେତିକି ସ୍ୱୀକୃତ । ଏପରିକି "ମରିବାର ଅଧିକାର ମହାସଂଘ" ବା "ଦି ୱାର୍ଲଡ ଫେଡେରେସନ୍ ଅଫ ରାଇଟ ଟୁ ଡାଏ" ନାମକ ଏକ ଆନ୍ତର୍ଜାତିକ ସଂଗଠନ ରହିଛି । ପୃଥିବୀର ବିଭିନ୍ନ ଦେଶରେ ଥିବା ଉତ୍ତମ ମରଣ ବା ଇଉଥାନେସିଆ ସଂଗଠନ ମାନଙ୍କର ମିଳିତ ସହଯୋଗରେ ବିଶ୍ୱ ସଂଘ ସୃଷ୍ଟି ହୋଇଛି । ବିଭିନ୍ନ ଦେଶର ସାମାଜିକ ପରଂପରା, ପୁରାଣ ଇତ୍ୟାଦିରେ ଇଚ୍ଛା ମୃତ୍ୟୁର ଭାବନା ରହିଛି । ତେବେ ସାଂପ୍ରତିକ ଜୀବନବୋଧରେ ଯେତେବେଳେ ବ୍ୟକ୍ତିର ମାନସିକ ସ୍ଥିତି ଧ୍ୱଂସ ହୋଇଯାଏ, ବ୍ୟକ୍ତି ଇଚ୍ଛାକୃତ ଭାବେ କିଛି କରିବାର ସାମର୍ଥ୍ୟ ହରାଇବସେ, ଅନ୍ୟ ସହ ମାନସିକ ଆଦାନ ପ୍ରଦାନ ରହେ ନାହିଁ କିମ୍ୱା ଯନ୍ତ୍ରଣାରେ ଜର୍ଜରିତ ହୁଏ ଯାହାର ଉପସମ ସମ୍ଭବ ନୁହେଁ ସେପରି ସ୍ଥିତିରେ ଅଧିକ କଷ୍ଟ ନ ପାଇ ମୃତ୍ୟୁକୁ ଆଲିଙ୍ଗନ କରିବା ଯଥାର୍ଥ ମନେହୁଏ । ମୃତବତ୍ ସ୍ଥିତି ବା ଭେଜିଟେଟିଭ ଅବସ୍ଥାରେ ଥିବା ବ୍ୟକ୍ତିଠାରୁ ଲାଇଫ ସପୋଟକୁ ପ୍ରତ୍ୟାହାର କରିନେବା ଦ୍ୱାରା ବ୍ୟକ୍ତିର ମୃତ୍ୟୁ ତ୍ୱରାନ୍ୱିତ ହୋଇଥାଏ । ତେବେ ବ୍ୟକ୍ତି ଏହି ସ୍ଥିତିକୁ ଆସିଗଲେ ସେ ନିଜେ ମରିପାରେ ନାହିଁ, ବରଂ ଚିକିତ୍ସା ବିଜ୍ଞାନର ସହାୟତାରେ ତାକୁ ନିଶ୍ଚେତକ ବା ନିଦ୍ରାଜନିତ ଇଂଜେକସନ ଦେଇ ବିନା ଯନ୍ତ୍ରଣାରେ ଚିରନିଦ୍ରାରେ ଶୁଆଇ ଦିଆଯାଏ । ପୃଥିବୀର କେତେକ ଦେଶ ଇଉଥାନେସିଆକୁ ଆଇନଗତ ସ୍ୱୀକୃତି ଦେଇଛନ୍ତି । ଆମ ଦେଶରେ ମଧ୍ୟ ଅରୁଣା ଶାନବାଗଙ୍କ ଘଟଣା ପରଠାରୁ

ପାସିଭ୍ ଇଉଥାନେସିଆକୁ ଆଇନଗତ ସ୍ୱୀକୃତି ଦିଆଯାଇଛି । ତେବେ ଏ କ୍ଷେତ୍ରରେ ଥିବା କେତେକ ନିୟମକୁ ମାନିବାକୁ ହେବ । ପ୍ରଥମରେ ମୃତବତ୍ ସ୍ଥିତିରେ ଥିବା ବ୍ୟକ୍ତିର ବାପା, ମା, ପୁଅ-ଝିଅ, ସ୍ୱାମୀ ବା ସ୍ତ୍ରୀ, ବଂଧୁ, ନିକଟ ଆତ୍ମୀୟ ବା ଚିକିତ୍ସା କରୁଥିବା ଡାକ୍ତର ରୋଗୀ ବ୍ୟକ୍ତିଟିର ମୃତ୍ୟୁ ପାଇଁ ରାଜ୍ୟର ହାଇକୋଟକୁ ନିବେଦନ କରିବେ । ହାଇକୋଟ୍ ଏପରି ଦରଖାସ୍ତ ପାଇଲେ ଦୁଇ ଜଣ ବିଚାରପତିଙ୍କୁ ଏହା ବିଚାର କରିବାକୁ ଦାୟିତ୍ୱ ଦେବେ । ତିନି ଜଣ ବିଶିଷ୍ଟ ଡାକ୍ତର ଘଟଣାଟିର ଅନୁସନ୍ଧାନ କରି ଏକ ବିବରଣୀ କୋଟ୍‌କୁ ଦେବେ । କୋଟ୍ ସେହି ବ୍ୟକ୍ତିଙ୍କର ପରିବାର ଓ ସରକାରଙ୍କ ମତ ନେବେ । ଏହି ସବୁ ବିଧି ପାଳନ ପରେ କୋଟ୍ ନିଷ୍ପତ୍ତି ଦେବେ । କୋଟ୍ ଯଦି ଅନୁମତି ଦିଅନ୍ତି ତେବେ ଡାକ୍ତରଙ୍କ ସହାୟତାରେ ତାଙ୍କଠାରୁ ଲାଇଫ୍ ସପୋଟକୁ ପ୍ରତ୍ୟାହାର କରି ନିଆଯିବ କିମ୍ବା ତାଙ୍କୁ କୌଣସି ଇଂଜେକ୍‌ସନ ଦେଇ ଚିରନିଦ୍ରାରେ ଶୁଆଇ ଦିଆଯିବ ।

ଉତ୍ତମ ମରଣ ବା ଇଉଥାନେସିଆରେ ବିଶ୍ୱାସ ସ୍ଥାପନ କରୁଥିବା ବ୍ୟକ୍ତି ନିଜର ମୃତ୍ୟୁ ପାଇଁ କେତେକ ଦେଶରେ ସ୍ୱୀକାରୋକ୍ତି ଦେବାକୁ ହୁଏ । ଯେତେବେଳେ ବ୍ୟକ୍ତିର ଜୀବନ ଦୁର୍ବିସହ, ଅକର୍ମଣ୍ୟ, ଆଶାହୀନ, ଯନ୍ତ୍ରଣା ଜର୍ଜରିତ ହେବା ଆରମ୍ଭ କରେ ସେତେବେଳେ ବ୍ୟକ୍ତିର ଜୀବନକୁ ପରିସମାପ୍ତି ଘଟାଇବାକୁ ସେ ଉଦ୍ୟମ କରିଥାଏ । କିମ୍ବା ତାର ଏହି ସ୍ଥିତି ଆସିଲେ ତାର ପରିବାର ଲୋକେ ତାହା ଆଶାକରନ୍ତି । ସେପରି ସ୍ଥଳେ ବ୍ୟକ୍ତିର ଇଚ୍ଛାକୁ ସମ୍ମାନ ଦେଖାଇ ତାଙ୍କର ମୃତ୍ୟୁ ବ୍ୟବସ୍ଥା ହସ୍ପିଟାଲରେ କରାଯାଏ । ଏହାକୁ ଇଚ୍ଛାକୃତ ଉତ୍ତମ ମରଣ ବା ଭଲୁଣ୍ଟାରୀ ଇଉଥାନେସିଆ କୁହାଯାଏ । ତେବେ ଯେଉଁ ସ୍ଥଳରେ ବ୍ୟକ୍ତି କିଛି ଜଣାଇବା ସ୍ଥିତିରେ ନଥାଏ ପରିସ୍ଥିତିର ଆକଳନ କରି ବ୍ୟକ୍ତିର ସଂପର୍କୀୟ ମାନଙ୍କ ନିବେଦନ, କୋଟ୍‌ର ନିର୍ଦ୍ଦେଶ ବା ସ୍ଥଳ ବିଶେଷରେ ଡାକ୍ତରମାନଙ୍କ ନିଷ୍ପତ୍ତି ଉପରେ ଜଣକୁ ଉତ୍ତମ ମରଣ ଦିଆଯାଏ ଯାହାକୁ ଇନଭଲୁଣ୍ଟାରୀ ଇଉଥାନେସିଆ କୁହାଯାଏ । ଜୀବନ ବଞ୍ଚାଉଥିବା ଲାଇଫ ସପୋଟ ଯଥା ଖାଦ୍ୟନଳୀ, ଶ୍ୱାସନଳୀ ଇତ୍ୟାଦିକୁ ବ୍ୟକ୍ତିଠାରୁ ପ୍ରତ୍ୟାହାର କରିନେବା ଦ୍ୱାରା ବ୍ୟକ୍ତିର ମୃତ୍ୟୁ ନିକଟତର ହୋଇ ଆସେ । ଏହାକୁ ନିଷ୍କ୍ରିୟ ଉତ୍ତମ ମରଣ ବା ପାସିଭ ଇଉଥାନେସିଆ କୁହାଯାଏ । କୌଣସି ବ୍ୟକ୍ତିକୁ ଯେତେବେଳେ ଇଂଜେକସନ ବା ମୃତ୍ୟୁ ଔଷଧ ଦେଇ ମୃତ୍ୟୁକୁ ତ୍ୱରାନ୍ୱିତ କରାଯାଏ, ଏହାକୁ କ୍ରିୟାଶୀଳ ବା ଆକ୍ଟିଭ ଇଉଥାନେସିଆ କୁହାଯାଏ । ଏକ ଉତ୍ତମ ଜୀବନ ବଞ୍ଚିବା ବ୍ୟକ୍ତିର ଯେପରି ଅଧିକାର, ଉତ୍ତମ ମୃତ୍ୟୁବରଣ କରିବା ବି ବ୍ୟକ୍ତିର ଏକ ଅଧିକାର । ଚିକିତ୍ସା ବିଜ୍ଞାନରେ ଆଶାତୀତ ଉନ୍ନତି ଯୋଗୁ ଲୋକମାନେ ପୂର୍ବ ଅପେକ୍ଷା ଏବେ ବହୁ ବର୍ଷ ବଞ୍ଚିପାରୁଛନ୍ତି । ପ୍ରତ୍ୟେକ ଦେଶରେ ବରିଷ୍ଠ ନାଗରିକ ମାନଙ୍କର ସଂଖ୍ୟା

ବଢ଼ି ବଢ଼ି ଚାଲିଛି । ବୟସ୍କ ଲୋକମାନଙ୍କ ପାଇଁ ବିଭିନ୍ନ ସମସ୍ୟା ଧୀରେ ଧୀରେ ମୁଣ୍ଡ ଟେକୁଛି । ନୂତନ ପରିସ୍ଥିତି ଓ ବିଚାରଧାରାରେ ପରିବର୍ତ୍ତନ ଯୋଗୁ ବ୍ୟକ୍ତିର ମୃତ୍ୟୁ କିପରି ଯନ୍ତ୍ରଣାରହିତ ହେବ ସେଥିପାଇଁ ସାମାଜିକ ସଚେତନତା ପ୍ରକାଶ ପାଉଛି । ପରିଣାମତଃ ଉତ୍ତମ ମୃତ୍ୟୁ ବା ଇଉଥାନେସିଆକୁ ବହୁ ଦେଶରେ ଆଇନଗତ ସ୍ୱୀକୃତି ଦିଆଯାଇଛି । ଏହାକୁ ଅଧିକ ବ୍ୟାପକ କରିବାକୁ ସଂଗଠନ ମାନ ପ୍ରୟାସ କରୁଛନ୍ତି ।

ତେବେ ଗୋଟିଏ ପ୍ରଗତିଶୀଳ କାର୍ଯ୍ୟ ସମାଜରେ ତତ୍କ୍ଷଣାତ ଗୃହୀତ ହୋଇଯାଏ ନାହିଁ । ଏହା ଧାର୍ମିକ ରକ୍ଷଣଶୀଳ ଲୋକଙ୍କଠାରୁ ବିରୋଧର ସମ୍ମୁଖୀନ ହୁଏ । ସେହି ଧାର୍ମିକ ବିଶ୍ୱାସ ଓ ଆବେଗରୁ ଉତ୍ତମ ମରଣ ଭାବନାକୁ ବିଭିନ୍ନ ସ୍ତରରେ ବିରୋଧ କରାଯାଉଛି । ଗୋଟିଏ ଭାବନା ହେଉଛି ଯେ ଜୀବନ ଏକ ପବିତ୍ର ସତ୍ତା, ସୁତରାଂ ଜନ୍ମ ମୃତ୍ୟୁ ଏକ ଈଶ୍ୱରୀୟ ବ୍ୟବସ୍ଥା । ଏହାକୁ ମାନବିକ ପ୍ରୟାସରେ ପରିଚାଳନା କରିବା ଈଶ୍ୱରୀୟ ନିୟମର ପରିପନ୍ଥୀ । ସେହିପରି କୁହାଯାଇଥାଏ ଯେ ବୈଜ୍ଞାନିକ ଜ୍ଞାନ ସୀମିତ । ଈଶ୍ୱରଙ୍କ ସୃଷ୍ଟିରେ କେତେବେଳେ କ'ଣ ଚମତ୍କାରିତା ଘଟିବ ତାହା ମାନବିକ ଆକଳନର ଊର୍ଦ୍ଧ୍ୱରେ । ଚିକିତ୍ସା ବିଜ୍ଞାନର ଲକ୍ଷ୍ୟ ହେଉଛି ସ୍ୱାସ୍ଥ୍ୟ ସେବା ଯୋଗାଇବା, ମୃତ୍ୟୁ ମୁଖରୁ ବ୍ୟକ୍ତିକୁ ଜୀବନ ଦେବା । ଚିକିତ୍ସା ବିଜ୍ଞାନ ବ୍ୟକ୍ତିକୁ ମାରିବାକୁ ଉଦ୍ଦିଷ୍ଟ ନୁହେଁ । ଇଉଥାନେସିଆକୁ ବିରୋଧ କରୁଥିବା କିଛି ବ୍ୟକ୍ତି ଏହି ସବୁ ପ୍ରସଙ୍ଗ ଉଠାଇବା ଜଣାଯାଏ ।

ସଭ୍ୟତାର ବିକାଶଧାରାରେ ପରିଲକ୍ଷିତ ହୁଏ ଯେ ରକ୍ଷଣଶୀଳ ମନୋଭାବ ସର୍ବଦା ବିଜ୍ଞାନର ଜୟଯାତ୍ରାକୁ ବିରୋଧ କରିଆସିଛି । ଯେତେବେଳେ ନିଶ୍ଚେତକ ବା ଆନାସ୍ଥେସିଆର ଉଦ୍ଭାବନ ହେଲା ତାକୁ ବି ବିରୋଧ କରାଯାଉଥିଲା । ଈଶ୍ୱର ମଣିଷକୁ କେତେକ କଷ୍ଟ ଦେଇଛନ୍ତି । ମାନବୀୟ ଜ୍ଞାନରେ ସେହି କଷ୍ଟକୁ ଲାଘବ କରିବା ଈଶ୍ୱରୀୟ ବିଧାନର ପରିପନ୍ଥୀ । ତେବେ ସଂପ୍ରତି ଯେକୌଣସି ଅସ୍ତ୍ରୋପଚାର ପାଇଁ ନିଶ୍ଚେତକ ଦେବା ଅତ୍ୟନ୍ତ ଆବଶ୍ୟକ, କାରଣ ଏହା ବ୍ୟକ୍ତିର ଯନ୍ତ୍ରଣାକୁ ଲାଘବ କରିଥାଏ । ଗୋଟିଏ ସମୟରେ ଜୀବନକୁ ଈଶ୍ୱରଦତ୍ତ ପବିତ୍ର ବସ୍ତୁ ବୋଲି ମନେ କରାଯାଉଥିଲା, କାରଣ ସେ ସମୟରେ ଜୀବନ, ମୃତ୍ୟୁ ନେଇ ମଣିଷର ବିଶେଷ ଜ୍ଞାନ ନଥିଲା । ସାଂପ୍ରତିକ ସ୍ଥିତିରେ ଜ୍ଞାନ ବିଜ୍ଞାନରେ ନାନା ବିକାଶ ମଣିଷର ବୌଦ୍ଧିକ ଦିଗ୍‌ବଳୟକୁ ବିସ୍ତାରିତ କରିପାରିଛି । ସରୋଗେଟ ମାତୃତ୍ୱ, ଜେନେଟିକ ପ୍ରଯୁକ୍ତି ଜ୍ଞାନ, ଗର୍ଭସ୍ଥ ଶିଶୁର ଲିଙ୍ଗ ନିରୂପଣ, ଟେଷ୍ଟ ଟିଉବ ପ୍ରଜନନ ଚିକିତ୍ସା ବିଜ୍ଞାନର ଚମତ୍କାରିତା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସ୍ଥିତିରେ ଜୀବନକୁ କିପରି ଅଧିକ ନିରାପଦ, ଯନ୍ତ୍ରଣାରହିତ ଓ ମାନବିକ କରାଯାଇ ପାରିବ ସେଥିପାଇଁ ବହୁ ସ୍ତରରେ ଗବେଷଣା କରାଯାଉଛି । ଜୀବନ ଏକ ଈଶ୍ୱର ଦତ୍ତ ସତ୍ତା ନୁହଁ

ବା କେଉଁ ଈଶ୍ୱର ବ୍ୟକ୍ତିର ଜନ୍ମ-ମୃତ୍ୟୁକୁ ନିୟନ୍ତ୍ରଣ କରନ୍ତି ନାହିଁ । ଅନେକ ବିଷୟ ସଂପ୍ରତି ମଣିଷର ନିୟନ୍ତ୍ରଣାଧୀନ । ସେହିପରି ଚିକିତ୍ସା ବିଜ୍ଞାନର ଲକ୍ଷ୍ୟ ନୁହେଁ ବ୍ୟକ୍ତିକୁ ମାରିବା । ଚିକିତ୍ସା ବିଜ୍ଞାନରେ ଗୋଟିଏ ଶତାବ୍ଦୀ ଭିତରେ ଯେଉଁ ଅଭୂତପୂର୍ବ ବିକାଶ ହୋଇଛି ସେଥିପାଇଁ ମଣିଷ ଉନ୍ନତ ସ୍ୱାସ୍ଥ୍ୟ ସେବା ପାଇପାରୁଛି, ପୃଥିବୀରେ ମହାମାରୀ ନାହିଁ, ମଣିଷର ଆୟୁ ବୃଦ୍ଧି ପାଇବାରେ ଲାଗିଛି ଓ ଶାରୀରିକ ବିକଳାଙ୍ଗ ଥିବା ବ୍ୟକ୍ତିକୁ ଏକ ସୁଖମୟ ଜୀବନ ଦେବା ସମ୍ଭବ ହୋଇଛି । ଯେଉଁଠି ଜୀବନ ଯନ୍ତ୍ରଣାଶିକ୍ତ ଓ ଦୁର୍ବିସହ ସେଠାରେ ସଢ଼ି ସଢ଼ି ମରିବା ଅପେକ୍ଷା ଯନ୍ତ୍ରଣାମୁକ୍ତ ହୋଇ ମରିବା ଅଧିକ ମାନବିକ ମନେହୁଏ । ଯେଉଁ କ୍ଷେତ୍ରରେ ଚିକିତ୍ସା ବିଜ୍ଞାନ ଅସହାୟ, ବଞ୍ଚିବା ଅର୍ଥ ଯନ୍ତ୍ରଣା ଜର୍ଜରିତ ହେବା ତଥା ରୋଗୀର କଷ୍ଟ ପାଇଁ ସମଗ୍ର ପରିବାର ଆର୍ଥିକ ଓ ମାନସିକ ଦୁର୍ଦ୍ଦଶାଗ୍ରସ୍ତ, ସେ କ୍ଷେତ୍ରରେ ଇଉଥାନେସିଆ ଯେ ଉତ୍ତମ ପ୍ରତିକାର ଏହା ମନେ କରାଯାଏ । ଉତ୍ତମ ମରଣ ବିପକ୍ଷରେ ଓ ସପକ୍ଷରେ ଏହିପରି ଅନେକ ଯୁକ୍ତିର ଅବତାରଣା ହେବା ଦେଖାଯାଏ ।

ଇଉଥାନେସିଆକୁ କେତେକ ଏକ ହିଂସାତ୍ମକ କାର୍ଯ୍ୟ ବୋଲି ଦର୍ଶାଇଥାନ୍ତି । ଯାହା ହିଂସାତ୍ମକ ତାହା ମାନବିକତା ବିରୋଧୀ । ଏହି ପୃଷ୍ଠଭୂମିରେ ଅହିଂସାର ମହାନ ସମର୍ଥକ ଓ ପ୍ରବକ୍ତା ଗାନ୍ଧୀଙ୍କ ଜୀବନର ଏକ ଘଟଣା ଏଠାରେ ଉଲ୍ଲେଖ କରୁଛି । ଗାନ୍ଧୀ ଦକ୍ଷିଣ ଆଫ୍ରିକାରେ ଥାନ୍ତି । ଡାକ୍ତର ହାରୋଲଡ ବ୍ଲେଜର ଥାନ୍ତି ଜଣେ ଗ୍ରାମୀଣ ଡାକ୍ତର । ତାଙ୍କର ଏକ ଝିଅ ଥାଏ, ଝିଅଟି ଶାରୀରିକ ସ୍ତରରେ ପଙ୍ଗୁ ଓ ମାନସିକ ସ୍ତରରେ ଅନଗ୍ରସର । ବ୍ଲେଜରଙ୍କ ପତ୍ନୀ ମରିଯିବା ପରେ ଡାକ୍ତର ଯୁଙ୍ଗୁ ଝିଅର ସବୁ କାର୍ଯ୍ୟ କରନ୍ତି । ଝିଅର ବୟସ ଥାଏ ୩୧, ଡାକ୍ତରଙ୍କ ବୟସ ଥାଏ ୬୨ । ଡାକ୍ତରଙ୍କ ଅନୁଭବ ହେଲା ଯେ ସେ ନିଜେ ରୋଗାକ୍ରାନ୍ତ ଓ ତାଙ୍କର ମୃତ୍ୟୁ ନିକଟତର ହୋଇ ଆସୁଛି । ସେ ମରିଗଲା ପରେ ଝିଅର ଯତ୍ନ କରିବାକୁ କେହି ନାହାନ୍ତି । ସେ ଝିଅକୁ କ୍ଲୋରୋଫର୍ମ ଦେଇ ମାରିଦେଲେ । ନିଜେ ମଧ୍ୟ ଏହା କରିଥିବା ପ୍ରକାଶ କଲେ । ଆଇନ ଅନୁଯାୟୀ ଗିରଫ ହେଲେ ଓ କୋର୍ଟରେ ବୟାନ ଦେଲେ ଯେ ବାପା ହୋଇ ସେ ଝିଅର ସବୁ ଯତ୍ନ କରିଛନ୍ତି କାରଣ ଝିଅଟି ଅନଗ୍ରସର ଓ ପଙ୍ଗୁ । ସେ ନିଜେ ଯେତେବେଳେ ଅସହାୟ ତାଙ୍କ ପାଖରେ ଆଉ କୌଣସି ପନ୍ଥା ନଥିଲା । ଏହି ବିଷୟରେ ଗାନ୍ଧୀଙ୍କର ମତ ନିଆଗଲା, ସେ ଏହାକୁ ହିଂସା କହିବେ କି ନାହିଁ, ଡାକ୍ତର ବ୍ଲେଜରଙ୍କୁ ଦଣ୍ଡିତ କରାଯିବ କି ନାହିଁ ? ଗାନ୍ଧୀଙ୍କର ମତ ଥିଲା ସେ ଏହି କାର୍ଯ୍ୟକୁ ହିଂସା ମନେ କରୁନାହାନ୍ତି କାରଣ ଡାକ୍ତର ବ୍ଲେଜରଙ୍କର କିଛି ମନ୍ଦ ଉଦ୍ଦେଶ୍ୟ ନଥିଲା । ତେବେ ଡାକ୍ତର ବ୍ଲେଜର ଏହିପରି ଏକ ପଦକ୍ଷେପ ନେବା ପୂର୍ବରୁ ଏହି ସମସ୍ୟାଟିକୁ ବୃହତ୍ତର ସମାଜ ସମ୍ମୁଖକୁ ଆଣିଥିଲେ ହୁଏତ ଭଲ ହୋଇଥାନ୍ତା ।

ଏହା କରିନଥିବାରୁ ସେ ମାନବ ସମାଜ ଉପରେ ଆସ୍ଥା ରଖିନାହାନ୍ତି, ତେବେ ସେ କୌଣସି ଦଣ୍ଡ ପାଇବା ଠିକ୍ ନୁହେଁ । ହିଂସା ଅହିଂସା କାର୍ଯ୍ୟର ମୂଲ୍ୟାୟନ କଲା ବେଳେ କର୍ତ୍ତାର ଉଦ୍ଦେଶ୍ୟ ହିଁ ନିର୍ଣ୍ଣାୟକ ମାନଦଣ୍ଡ ଏହା ଥିଲା ଗାନ୍ଧୀଙ୍କର ବକ୍ତବ୍ୟ ।

ବିଜ୍ଞାନ ସଭ୍ୟତାର ବିକାଶ ଘଟାଇବାରେ ଓ ମାନବବାଦ ଗୁଣାତ୍ମକ ଜୀବନର ବାର୍ତ୍ତା ପ୍ରସାର କରିବାରେ ମୁଖ୍ୟ ଅବଦାନ ଦେଇଛନ୍ତି । ସେହିପରି ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ଉତ୍ତମ ମରଣ ପାଇଁ ବିଜ୍ଞାନ ଓ ମାନବବାଦକୁ ଆଧାର କରି ଯେଉଁ ନୈତିକ ଆଲୋଡନଟି ବିଶ୍ୱ ଦୃଶ୍ୟପଟରେ ଉଦ୍ଭବ ହୋଇଛି ତାହାକୁ ସ୍ୱାଗତ କରାଯିବା ଆବଶ୍ୟକ ।

(୧୦.୬.୨୦୧୫)



# ନୈତିକତା ଓ ସାମାଜିକ ଶୃଙ୍ଖଳା

ମଣିଷ ସମାଜରେ ରହେ, ଏକୁଟିଆ ବଞ୍ଚେ ନାହିଁ ବା ନିଃସଙ୍ଗ ହୋଇ ବଞ୍ଚେନାହିଁ । ସେ ବୃହତ୍ତର ସମାଜ ଉପରେ ନିର୍ଭର କରେ । ଜଣେ ବ୍ୟକ୍ତି ଯେତେ ବୁଦ୍ଧିମାନ ବା ବଳଶାଳୀ ହେଲେ ମଧ୍ୟ ସେ ନିଜ ଜୀବନର ଆବଶ୍ୟକତାକୁ ପୂରଣ କରିପାରିବ ନାହିଁ । ପୁନଶ୍ଚ ବ୍ୟକ୍ତି ଭିତରର ସାମର୍ଥ୍ୟ ଓ ସୃଜନଶୀଳତା ସମାଜରେ ବିକଶିତ ହେବାର ସୁଯୋଗ ଆଣିଥାଏ । ଏକ ସମାଜ, ଜନଗୋଷ୍ଠୀ ବା ବୃହତ୍ତର ଜନ ସମୁଦାୟ ବ୍ୟତୀତ ଜୀବନର ମାନ ଉନ୍ନତ ହେବା ସମ୍ଭବ ନୁହେଁ । ସୁତରାଂ କୁହାଯାଇଛି ଯେ ମଣିଷ ଏକ ସାମାଜିକ ପ୍ରାଣୀ, ସମାଜ ବ୍ୟତୀତ ମଣିଷ ଦେବତା ବା ପଶୁ । ସାମାଜିକ ଜୀବନ ପୃଷ୍ଠଭୂମିରେ ନୀତି, ନୈତିକତା ଅର୍ଥପୂର୍ଣ୍ଣ । ବ୍ୟକ୍ତି, ପରିବାର, ଜନଗୋଷ୍ଠୀ, ସମାଜ ଭିତରେ ପରସ୍ପରର ସମ୍ବନ୍ଧ ଓ ଆଦାନ ପ୍ରଦାନ ଭିତରୁ ନୈତିକତାର ଉଦ୍ଭବ । ସାମାଜିକ ସମ୍ବନ୍ଧକୁ ପ୍ରୀତିପୂର୍ଣ୍ଣ ଓ ନ୍ୟାୟଯୁକ୍ତ କରିବାର ଆବଶ୍ୟକତାରୁ ନୈତିକତାର ପ୍ରଶ୍ନ ଆସିଥାଏ । ନୀତି, ନ୍ୟାୟ, ନୈତିକତା, ଆଦର୍ଶବୋଧ ପ୍ରସଙ୍ଗ ଜୀବନର ଗୁଣାତ୍ମକ ମାନ କ୍ଷେତ୍ରରେ ବି ନିର୍ଣ୍ଣାୟକ ମନେହୁଏ । ନୈତିକତା ଓ ନ୍ୟାୟ ଆଧାରରେ ସମାଜ ଉନ୍ନତ ଓ ପ୍ରଗତିଶୀଳ ହୋଇଥାଏ, ସାମାଜିକ ସମ୍ବନ୍ଧରେ ଏହାର ଅଭାବ ସମାଜକୁ କ୍ଷୟଶୀଳ କରିଥାଏ । ବସ୍ତୁତଃ ନୈତିକ ଆଚରଣ ସଭ୍ୟ ଜୀବନଧାରାର ଏକ ଅପରିହାର୍ଯ୍ୟ ଅଙ୍ଗ । ଅପର ପକ୍ଷରେ ଅନୈତିକତା ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ।

ତେବେ ପ୍ରଶ୍ନ ଉଠେ: ନୀତି, ନୈତିକତା କହିଲେ କ'ଣ ବୁଝାଏ ? ଆମର ସାଧାରଣ ଅବବୋଧରେ 'ସେ ଜଣେ ନୀତିବାନ ବ୍ୟକ୍ତି' କହିଲେ ଭାବନା ଆସେ ସେ ଜଣେ ଭଲ ମଣିଷ; ଓ 'ସେ ଜଣେ ଅନୈତିକ ବ୍ୟକ୍ତି' କହିବାର ତାତ୍ପର୍ଯ୍ୟ ହୁଏ " ସେ ଜଣେ ମନ୍ଦ ବ୍ୟକ୍ତି" । ସାଧାରଣତଃ ଏହା ଗ୍ରହଣ କରାଯାଏ ଯେ ଯାହା ନୈତିକ ତାହା

ଉତ୍ତମ ଓ ଯଥାର୍ଥ, ଓ ଯାହା ଅନୈତିକ ତାହା କ୍ଷତିକାରକ ଓ ଅମଙ୍ଗଳକର । ତେବେ ସାମାଜିକ ସମ୍ବନ୍ଧରେ ପ୍ରତ୍ୟେକ କ୍ଷେତ୍ରରେ ନ୍ୟାୟ ଓ ନୈତିକତାର ଯେ ପରିପ୍ରକାଶ ହେଉଥାଏ ତାହା କୁହାଯାଇନପାରେ । ବରଂ ସମାଜରେ ବହୁ ଅନ୍ୟାୟ, ଅନୀତି, ଭ୍ରଷ୍ଟାଚାର ରହିବା ଦେଖାଯାଏ । ଏହା ମଧ୍ୟ ଅନୁଭବରୁ ଦେଖାଯାଏ ଯେ ସମାଜରେ ନ୍ୟାୟ ଓ ଆଦର୍ଶ ପଥରେ ରହିଥିବା ବ୍ୟକ୍ତିମାନେ ଜୀବନ ପ୍ରବାହରେ ଅନେକ ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି ଓ ଏପରିକି ଦୁଃଖ କଷ୍ଟ ଭିତରେ ଜୀବନ ନିର୍ବାହ କରନ୍ତି, ଅଥଚ ଅନ୍ୟାୟ ପନ୍ଥାରେ ଯାଇ କେତେକ ଲୋକ ସମାଜରେ ବେଶ୍ ଭଲରେ ରହନ୍ତି ଓ ଏପରିକି ସାମାଜିକ ପ୍ରତିଷ୍ଠାର ଅଧିକାରୀ ହୁଅନ୍ତି । ଅନ୍ୟାୟ ପନ୍ଥାରେ ଯାଇ ସୁଖ, ଶାନ୍ତିରେ ରହିବା ଅଥଚ ନ୍ୟାୟ ପଥରେ ଯାଇ ଦୁଃଖକଷ୍ଟରେ ଜୀବନ ବଞ୍ଚିବାର ଦୃଷ୍ଟାନ୍ତ ସମାଜରେ ବିରଳ ଘଟଣା ନୁହେଁ । ଏହି ପରିପ୍ରେକ୍ଷୀରେ ନ୍ୟାୟ, ନୈତିକତା ନେଇ ମଣିଷ ଭିତରେ ନାନା ପ୍ରଶ୍ନ ଉଠିଥାଏ । ନୈତିକତାର ପ୍ରକୃତ ଅର୍ଥ କ'ଣ, ନୈତିକତାର ଉତ୍ସକୁ ନିରୂପଣ କରିବା ସହଜ କି ? କୌଣସି କାର୍ଯ୍ୟକୁ ନୈତିକ ବା ଅନ୍ୟ ଏକ କାର୍ଯ୍ୟକୁ ଅନୈତିକ କହିବାର ମାନଦଣ୍ଡକୁ କିପରି ସ୍ଥିର କରାଯିବ ? ପ୍ରତ୍ୟେକ ବ୍ୟକ୍ତି ତାର ସାମାଜିକ ସମ୍ବନ୍ଧ କ୍ଷେତ୍ରରେ ନୈତିକ ହେବା କାହିଁକି ଆବଶ୍ୟକ ? ଜଣେ ବ୍ୟକ୍ତି କାହିଁକି ନୈତିକ ପନ୍ଥାକୁ ଅନୁସରଣ କରିବା ଦରକାର ? ଯଦି ସମାଜରେ କିଛି ବ୍ୟକ୍ତି ଅସାଧୁ ଓ ଅନୈତିକ ହୋଇ ସୁଖ, ଶାନ୍ତିରେ ରହୁଛନ୍ତି ତେବେ ନୈତିକ ପନ୍ଥାକୁ ସାର୍ବଜନୀନ ଭିତ୍ତି ଦିଆଯାଇ ପାରିବ କି ? ଏସବୁ ପ୍ରଶ୍ନ ଗୁଡିକ ବେଶ୍ ଜଟିଳ ଓ ଦର୍ଶନଶାସ୍ତ୍ରରେ ଏହା ଉପରେ ବହୁ ଆଲୋଚନା, ସିଦ୍ଧାନ୍ତ ଓ ମତ ରହିଥିବା ଦେଖାଯାଏ । ତେବେ ପ୍ରତ୍ୟେକ ସମାଜରେ ଅନ୍ୟାୟ, ଅସାଧୁତା ଓ ଅନୀତି କେତେ ସ୍ତରରେ ରହୁଥିଲେ ମଧ୍ୟ ଏସବୁକୁ କୌଣସି ରାଷ୍ଟ୍ର ବା ସମାଜ ପ୍ରୋତ୍ସାହନ ଦେଇନଥାଏ । କାରଣ ବୌଦ୍ଧିକ ସ୍ତରରେ ଏହା ଗୃହୀତ ଯେ ସାମାଜିକ ଜୀବନ ପ୍ରବାହରେ ଅସାଧୁତା ଓ ଅନୈତିକତା ଯଦି ବ୍ୟତିକ୍ରମ ନ ହୋଇ ଏକ ଧାରାରେ ପରିଣତ ହୋଇଯାଏ, ତେବେ ସମାଜ କ୍ଷୟଶୀଳ ହୋଇପଡେ । ସମାଜ ଯେତେ ଅଧିକ କ୍ଷୟଶୀଳ ହୁଏ, ଜୀବନର ଗୁଣାତ୍ମକମାନ ସେତେ ନ୍ୟୂନ ହୋଇଚାଲେ । ପରିଣାମ ସ୍ୱରୂପ ସମାଜରେ ବୈଷମ୍ୟ, ଭେଦଭାବ, ଦୁଃଖ ଦୁର୍ଦ୍ଦଶା ଓ ମନ୍ଦର ପ୍ରସାର ହୁଏ ।

ବ୍ୟକ୍ତି, ପରିବାର, ଗୋଷ୍ଠୀ ଓ ସମାଜର ପାରସ୍ପରିକ ସମ୍ବନ୍ଧର ଆବଶ୍ୟକତାରୁ ନୀତି, ନୈତିକତାର ପ୍ରଶ୍ନ ଆସିଥାଏ । ଜଣେ ବ୍ୟକ୍ତି ସମାଜରେ ଯାହା କରିଥାଏ, ତାହାର ସ୍ୱେଚ୍ଛାକୃତ କର୍ମ ହିଁ ଭଲ-ମନ୍ଦର ମାନଦଣ୍ଡରେ ବିଚାର୍ଯ୍ୟ ହୋଇଥାଏ । ଅର୍ଥାତ୍ ବ୍ୟକ୍ତିର

ସ୍ୱେଚ୍ଛାକୃତ କାର୍ଯ୍ୟକୁ ନୈତିକ ମାନଦଣ୍ଡରେ ମୂଲ୍ୟାୟନ କରାଯାଏ । କୌଣସି ଇତର ପ୍ରାଣୀର କାର୍ଯ୍ୟର ମୂଲ୍ୟାୟନ କରାଯାଇ ନଥାଏ । ମଶା, ମାଛି, ଗାଈ, କୁକୁର, କାଉ, ସାପ ଇତ୍ୟାଦି ଇତର ଜୀବମାନଙ୍କର କାର୍ଯ୍ୟ ନୀତି-ଅନୀତି ମାନଦଣ୍ଡରେ ମୂଲ୍ୟାୟନ କରାଯାଏ ନାହିଁ । ସେମାନେ ଯେହେତୁ ପ୍ରାକୃତିକ ପ୍ରବୃତ୍ତି ଦ୍ୱାରା ପରିଚାଳିତ ଓ ବିଚାରଶୀଳତା ସେମାନଙ୍କ ପାଖରେ ନ ଥାଏ, ସେମାନଙ୍କ କାର୍ଯ୍ୟ ଭଲ-ମନ୍ଦ ପରିସର ବହିର୍ଭୂତ ଅଟେ । ଏପରିକି ମନୁଷ୍ୟର ସମସ୍ତ କାର୍ଯ୍ୟ ନୈତିକ ମାନଦଣ୍ଡ ସ୍ତରକୁ ଆସିନଥାଏ । ଶିଶୁ, ନର୍ବୋଧ, ଅସୁସ୍ଥ ମାନସିକତାରେ ଆକ୍ରାନ୍ତ ବ୍ୟକ୍ତିର କାର୍ଯ୍ୟ ନୈତିକ ମୂଲ୍ୟାୟନ ସ୍ତରକୁ ଆଣାଯାଏ ନାହିଁ । ସେହିପରି ସାମାଜିକ ସମ୍ବନ୍ଧ ବାହାରେ ବ୍ୟକ୍ତି ଆଚରଣର ମୂଲ୍ୟାୟନର ପ୍ରଶ୍ନ ଉଠି ନଥାଏ । ଏକ ନିର୍ଜନ ଦ୍ୱିପରେ ନିର୍ବାସିତ ଜଣେ ବ୍ୟକ୍ତିର କାର୍ଯ୍ୟର ମୂଲ୍ୟାୟନ ପ୍ରସଙ୍ଗ ଉଠି ନ ଥାଏ । କେବଳ ସାମାଜିକ ଜୀବନ ପ୍ରବାହ କ୍ଷେତ୍ରରେ ସ୍ୱେଚ୍ଛାକୃତଭାବେ ବା ନିଜ ଇଚ୍ଛାରେ ଜଣେ ବ୍ୟକ୍ତି ଯାହା କରେ ତାହା ହିଁ ଭଲ-ମନ୍ଦର ମୂଲ୍ୟାୟନ ପରିସରକୁ ଆସିଥାଏ । କୌଣସି କାର୍ଯ୍ୟକୁ ନୀତିପୂର୍ଣ୍ଣ ବା ଯଥାର୍ଥ ଓ ଅନ୍ୟ ଏକ କାର୍ଯ୍ୟକୁ ଅନୈତିକ ବା ମନ୍ଦ କହିଲା ବେଳେ କୌଣସି ମାନଦଣ୍ଡକୁ ସ୍ୱୀକାର କରାଯାଏ । କୌଣସି ମାନଦଣ୍ଡକୁ ସ୍ୱୀକାର କଲାପରେ ତାହାର ଆଧାର ଉପରେ କୌଣସି କାର୍ଯ୍ୟକୁ ଯଥାର୍ଥ ବା ମନ୍ଦ ବୋଲି ସ୍ଥିର କରାଯାଏ । ମାନଦଣ୍ଡ ଯଦି ପୃଥକ୍ ହୁଏ, ତେବେ କୌଣସି କାର୍ଯ୍ୟକୁ କେତେକ ଭଲ ବୋଲି ବିଚାର କଲାବେଳେ ସେହି କାର୍ଯ୍ୟକୁ ଅନ୍ୟମାନେ ମନ୍ଦ ବୋଲି ବିବେଚନା କରିପାରନ୍ତି । ଏକ ସରକାରୀ ନିଷ୍ପତ୍ତିକୁ ସରକାରୀ ଦଳର ଲୋକମାନେ ଯଥାର୍ଥ ବୋଲି କହିବା ବେଳେ ଏକ ବିରୋଧୀ ଦଳ ଏହାକୁ ଜନ ଅହିତକାରୀ ବୋଲି କହିବା ସାଧାରଣ ଘଟଣା ଅଟେ । କୌଣସି କିଛିକୁ ମୂଲ୍ୟାୟନ କରିବା ବେଳେ ଯଦି ମାନଦଣ୍ଡ ପୃଥକ୍ ହୁଏ, ତେବେ ଏକା କାର୍ଯ୍ୟ କେତେକଙ୍କ ପାଇଁ ଭଲ ହେଲା ବେଳେ ସେହି କାର୍ଯ୍ୟ ଅନ୍ୟପାଇଁ ମନ୍ଦ ପରିଗଣିତ ହୋଇଥାଏ । ଭଲ-ମନ୍ଦ ମୂଲ୍ୟାୟନ କ୍ଷେତ୍ରରେ ମାନଦଣ୍ଡ କ'ଣ ହେବ, ମାନଦଣ୍ଡ ସାର୍ବଜନୀନ ହେବା ସମ୍ଭବ କି, ମାନଦଣ୍ଡର କିଛି ବ୍ୟତିକ୍ରମ ରହିବ କି ନାହିଁ ପ୍ରସଙ୍ଗ ଗୁଡ଼ିକର ବିଶ୍ଳେଷଣ ବେଶ୍ ଜଟିଳ ମନେହୁଏ ।

ପୁନଶ୍ଚ ପ୍ରଶ୍ନ ଆସେ ନୀତି, ନୈତିକତା ବ୍ୟକ୍ତିର ସହଜାତ ନା ଏହା ବ୍ୟକ୍ତି ସାମାଜିକ ଜୀବନ ପ୍ରବାହରୁ ଶିକ୍ଷା ଲାଭ କରେ ? କେତେକ ବିଶ୍ୱାସ କରନ୍ତି ଯେ ଭଲ-ମନ୍ଦର ଭାବନା ବ୍ୟକ୍ତି ସ୍ୱଭାବରେ ଅନ୍ତର୍ନିହିତ । ଅର୍ଥାତ୍ କ'ଣ ଭଲ, କଣ ମନ୍ଦ; କେଉଁ

କାର୍ଯ୍ୟ ନୀତିପୂର୍ଣ୍ଣ ବା କରଣୀୟ ଓ କେଉଁ କାର୍ଯ୍ୟ ଅନୈତିକ ବା କରଣୀୟ ନୁହେଁ ତାହା ବ୍ୟକ୍ତି ସ୍ୱତଃ ଜାଣିଥାଏ । ଏହା ପ୍ରାୟତଃ ପ୍ରବୃତ୍ତିଗତ । ତେବେ ଏହି ମତକୁ ଏକ ଯଥାର୍ଥ ମତ ବୋଲି ଅନେକ ଗ୍ରହଣ କରନ୍ତି ନାହିଁ । ବ୍ୟକ୍ତି ଭିତରେ କେତେକ ପ୍ରବୃତ୍ତି ରହିଛି । ଭୋକ, ଶୋଷ, ନିଦ୍ରା, କାମଭାବ, ଭୟଭାବ ଇତ୍ୟାଦି ବ୍ୟକ୍ତି ସ୍ୱଭାବରେ ଅନ୍ତର୍ନିହିତ ଓ ଏସବୁ ପ୍ରବୃତ୍ତିଗତ । ଏସବୁ ଯେପରି ପ୍ରବୃତ୍ତିଗତ, ନୈତିକ ଆଚରଣ ସମ୍ଭବତଃ ସେପରି ପ୍ରବୃତ୍ତିଗତ ଆବେଗ ନୁହେଁ । ବରଂ ନୀତି, ନୈତିକତା, ସାଧୁତା, କର୍ତ୍ତବ୍ୟ ପରାୟଣତା, ମାନବିକତା ଓ ବିଚାରଶୀଳତା ସାମାଜିକ ମୂଲ୍ୟବୋଧ ଭାବେ ସମାଜର କ୍ରମବିକାଶ ଧାରାରେ ଆସିଥିବା ମନେହୁଏ । ଜଣେ ବ୍ୟକ୍ତିର ଶିକ୍ଷା, ପାରିବାରିକ ଜୀବନର ପ୍ରଭାବ, ସାମାଜିକ ପରିବେଶ, ଆର୍ଥିକ ସ୍ଥିତି, ସାଂସ୍କୃତିକ ଘଟଣାବଳୀ ଇତ୍ୟାଦି ତାହାର ନୈତିକ ବିଚାରବୋଧକୁ ପ୍ରଭାବିତ କରିଥାଏ । ଜଣେ ବ୍ୟକ୍ତିର ନୈତିକ ଆଚରଣ ଓ ଜୀବନଦୃଷ୍ଟି ଜଟିଳ ସାମାଜିକ ସମ୍ବନ୍ଧ ମଧ୍ୟଦେଇ ବିକଶିତ ହୋଇଥାଏ । ନ୍ୟାୟ-ଅନ୍ୟାୟ, ଭଲ-ମନ୍ଦ, ନୀତି-ଅନୀତି ଇତ୍ୟାଦି ଭାବନା କ୍ଷେତ୍ରରେ ପାର୍ଥକ୍ୟ କରିବାର ସାମର୍ଥ୍ୟ ବ୍ୟକ୍ତି ତାହାର ସାମାଜିକ ଜୀବନ ପ୍ରବାହ, ଶିକ୍ଷା ଇତ୍ୟାଦିରୁ ପ୍ରାପ୍ତ ହୋଇଥାଏ । ଭଲ-ମନ୍ଦ ନେଇ ଅବବୋଧ ବ୍ୟକ୍ତିର ବିଚାରଶୀଳତା ଓ ଜୀବନଦୃଷ୍ଟି ଦେଇ ଧୀରେ ଧୀରେ ଦୃଢ଼ ହୋଇଥାଏ ।

ପ୍ରତ୍ୟେକ ବ୍ୟକ୍ତି ଭିତରେ ବୌଦ୍ଧିକ ଓ ଆବେଗିକ ଦୁଇଟି ସ୍ତର ରହିଥିବା ମନେହୁଏ । ବ୍ୟକ୍ତିର ବୁଦ୍ଧି, ବିଚାରଶୀଳତା, ଚିନ୍ତନ ତାହାର ବୌଦ୍ଧିକ ସ୍ତର ସହ ସଂଶ୍ଳିଷ୍ଟ । ସେହିପରି କାମନା, ବାସନା, ଅଭିଳାଷ, ଇଚ୍ଛା, ଆଶା, ଅନୁଭବ ଇତ୍ୟାଦି ବ୍ୟକ୍ତିର ଆବେଗିକ ସ୍ତର ସହ ସଂଶ୍ଳିଷ୍ଟ । ବାସ୍ତବ ଜୀବନରେ ଆମର ଇଚ୍ଛା ବା ଲକ୍ଷ୍ୟ ଆମର ଆବେଗିକ ସ୍ତରରୁ ଆସିଥାଏ । ଆମର ଲକ୍ଷ୍ୟ ବା ଅଭିଳାଷକୁ ପୂରଣ କରିବା ପାଇଁ ଆମର ବୁଦ୍ଧି ବା ଜ୍ଞାନ ସାଧନ ଭାବେ ବ୍ୟବହୃତ ହୋଇଥାଏ । ଜଣକର ଆବେଗିକ ସ୍ତରର ଅନୁଭବ ବା ଅଭିଳାଷ ଉନ୍ନତ, ରୁଚିସମ୍ପନ୍ନ ଓ ନୀତିପୂର୍ଣ୍ଣ ହୋଇପାରେ କିମ୍ବା ଅସାମାଜିକ ବା ଅନୈତିକ ହୋଇପାରେ । ଜଣେ ବୁଦ୍ଧିମାନ ବ୍ୟକ୍ତି ଅନୈତିକ ବା ଅସାମାଜିକ ହୋଇପାରେ ଓ ଜଣେ ସାଧାରଣ ମଣିଷ ଅତ୍ୟନ୍ତ ଶିଷ୍ଟ, ନିଷ୍କପଟ ଭାବରେ ଜୀବନ ନିର୍ବାହ କରିପାରେ । ତେବେ ଜୀବନର ଜଟିଳତା ଭିତରେ ଜଣେ ବ୍ୟକ୍ତି ନାନା ପରିସ୍ଥିତି ଓ ଘଟଣା ପ୍ରବାହର ସମ୍ମୁଖୀନ ହୁଏ । କେତେକ କାର୍ଯ୍ୟରେ ବ୍ୟକ୍ତି ଅତ୍ୟନ୍ତ ନୈତିକ ପରାକାଷ୍ଠାର ଦୃଷ୍ଟାନ୍ତ ଦେଖାଇପାରେ ଅଥଚ ସେହି ବ୍ୟକ୍ତି ଅନ୍ୟ ପରିସ୍ଥିତିରେ

ଅତ୍ୟନ୍ତ ସ୍ୱାର୍ଥପର ବା ଅନୈତିକ କାର୍ଯ୍ୟରେ ଲିପ୍ତ ହେବାର ସମ୍ଭାବନା ମଧ୍ୟ ରହିପାରେ । ତେବେ ଜଣେ ବ୍ୟକ୍ତିର ଜୀବନର ଘଟଣା ପ୍ରବାହ, ପରିସ୍ଥିତି ଓ ସାମାଜିକ ସମ୍ବନ୍ଧ ବ୍ୟକ୍ତିର ନୀତିବୋଧ ଓ ଆଦର୍ଶକୁ ପ୍ରଭାବିତ କରିଥାଏ । ଜୀବନର ବିଭିନ୍ନ ପରିସ୍ଥିତିରେ ନୀତି, ଆଦର୍ଶକୁ ପ୍ରାଧାନ୍ୟ ଦେଉଥିବା ବ୍ୟକ୍ତିକୁ ଭଲ-ମଣିଷ କୁହାଯିବା ସଙ୍ଗତ ମନେହୁଏ । ଏହି ଦୃଷ୍ଟିରୁ ନୀତି, ନୈତିକତା ହେଉଛି ଏକ ସାମାଜିକ କର୍ତ୍ତବ୍ୟ ଓ ଏହା ଜୀବନର ଗୁଣାତ୍ମକ ମାନକୁ ଉନ୍ନତ କରିଥାଏ । ଏକ ସମାଜ-ଉତ୍ତରଦାୟୀ ଆଚରଣ ଓ ନାଗରିକ ଶୃଙ୍ଖଳାବୋଧର ଅଭିବ୍ୟକ୍ତି ସମାଜରେ ଯେତେ ଅଧିକ ହୁଏ, ସାମାଜିକ ଜୀବନ ପ୍ରବାହ ସେତେ ଉନ୍ନତ ହୁଏ । ସାମାଜିକ ଜୀବନଧାରାରେ ନାଗରିକ ଶୃଙ୍ଖଳାବୋଧର ଉଲଘଂନ ଯଦି ସାଧାରଣ ଘଟଣା ହୋଇପଡେ ସେଠାରେ ଜୀବନର ଗୁଣାତ୍ମକ ମାନ ନ୍ୟୁନ ବୋଲି ମନେହୁଏ ।

(୨୭.୩.୨୦୧୩)



# ନୈତିକତା ଓ ସାମାଜିକ କର୍ତ୍ତବ୍ୟ

ସାଂପ୍ରତିକ ପରିଭାଷାରେ ନୈତିକତା ମୁଖ୍ୟତଃ ସାମାଜିକ କର୍ତ୍ତବ୍ୟକୁ ବୁଝାଏ । ନୈତିକ ପ୍ରଶ୍ନ ଗୁଡିକ ସାମାଜିକ ସମ୍ବନ୍ଧ ପୃଷ୍ଠଭୂମିରେ ହିଁ ଆସିଥାଏ । ସାମାଜିକ ବିକାଶ ପ୍ରକ୍ରିୟାରେ ନୀତି, ନୈତିକତାର ଭାବନା ସମାଜରେ ବିକଶିତ ହେବା ଏକ ଆନୁଭବିକ ସତ୍ୟ ଅଟେ । ପରିବାର ଓ କ୍ଷୁଦ୍ର ଜନଗୋଷ୍ଠୀଠାରୁ ସାମାଜିକ ବିକାଶଧାରାରେ ରାଷ୍ଟ୍ର ଓ ଆନ୍ତରାଷ୍ଟ୍ରୀୟ ସଂଗଠନ ଉଦ୍‌ଭବ ହୋଇଥିବା ଏକ ଐତିହାସିକ ସତ୍ୟ ଅଟେ । ସାମାଜିକ ସଂଗଠନର ପରିସର ଯେତେ ଅଧିକରୁ ଅଧିକ ବ୍ୟାପକ ହୋଇଛି ସାମାଜିକ କର୍ତ୍ତବ୍ୟବୋଧର ପରିସର ସେତିକି ପ୍ରସାର ଲାଭ କରିଛି । ବ୍ୟକ୍ତିର କର୍ତ୍ତବ୍ୟର ପରିସର ପରିବାରଠାରୁ ବୃହତ୍ତର ସମାଜ ପ୍ରତି ବ୍ୟାପକ ହୋଇଚାଲିଛି । ବ୍ୟକ୍ତିର କର୍ତ୍ତବ୍ୟ ବ୍ୟକ୍ତିର ପରିବାର ବା ଏକ କ୍ଷୁଦ୍ର ପରିଚୟର ପରିସରରେ ସୀମିତ ନାହିଁ । ଅତୀତରେ ଜଣେ ବ୍ୟକ୍ତିର କର୍ତ୍ତବ୍ୟ ତାର ପରିବାର ଓ ସେ ବହନ କରୁଥିବା ଏକ କ୍ଷୁଦ୍ର ସାମାଜିକ ଗୋଷ୍ଠୀ ଭିତରେ ହିଁ ସୀମିତ ରହିଥିଲା । ଧୀରେ ଧୀରେ ସଭ୍ୟତାର କ୍ରମବିକାଶ ଯୋଗୁ ବ୍ୟକ୍ତିର ନାନା ସାମାଜିକ ପରିଚୟ ସୃଷ୍ଟି ହେଲା ଓ ପରିଣାମତଃ ବ୍ୟକ୍ତିର କର୍ତ୍ତବ୍ୟବୋଧର ପରିସର ପରିବ୍ୟାପ୍ତ ହୋଇଚାଲିଲା । ଜଣେ ବ୍ୟକ୍ତିର କର୍ତ୍ତବ୍ୟ ତାର ଅସ୍ମିତା ଥିବା ଜନଗୋଷ୍ଠୀ ଭିତରେ ସୀମାବଦ୍ଧ ରହିନାହିଁ । ଜାତି, ବୃତ୍ତି, ଆଞ୍ଚଳିକତା ଧର୍ମଗତ ପରିଚୟ ଜନିତ ଅସ୍ମିତା ମାନବସତ୍ତାକୁ କ୍ଷୁଦ୍ର ବେଷ୍ଟନୀ ଭିତରେ ସଙ୍କୁଚିତ କରି ରଖିଥାଏ । ଏହାର ଊର୍ଦ୍ଧ୍ୱକୁ ଯାଇ ଏକ ସାର୍ବଜନୀନ ଜୀବନଦୃଷ୍ଟିର ପ୍ରସାରକୁ ସାଂପ୍ରତିକ ବିଚାରବୋଧରେ ପ୍ରାଧାନ୍ୟ ଦିଆଯିବା ଦେଖାଯାଏ । ଆଜିର ମାନବ ସଭ୍ୟତା ବିକାଶର ଯେଉଁ ସ୍ତରକୁ ଯାଇଛି ତାହା ପଶ୍ଚାତରେ ସୃଜନଶୀଳ ବ୍ୟକ୍ତିମାନଙ୍କର ଗଭୀର ଅବଦାନ ଥିବା ମନେହୁଏ । ଜ୍ଞାନର ସାର୍ବଜନୀନ ବିକାଶ ଓ ପ୍ରସାର ହେତୁ ଯେକୌଣସି ନୂତନ ଉଦ୍ଭାବନ, ଆବିଷ୍କାର, ମହତ୍‌ଚିନ୍ତା ଓ ବିଶ୍ୱଦୃଷ୍ଟିର ପ୍ରସାର ଦ୍ୱାରା ସମାଜରେ ବହୁ ସମ୍ଭାବନାର ପରିବେଶ ଆସିଛି । ପୃଥିବୀର ଯେଉଁ କୋଣରେ

କିଛି ନୂତନ ଜ୍ଞାନ, ଉଦ୍ଭାବନ, ପ୍ରଯୁକ୍ତିର ସୂତ୍ରପାତ ହେଉଛି ତାର କିଛି ଦିନ ଭିତରେ ଏହା ସାର୍ବଜନୀନ ହୋଇପାରୁଛି । ଜ୍ଞାନ ଯେ ସର୍ବଦା ମୁକ୍ତ, ସାର୍ବଜନୀନ ଏହି ବାସ୍ତବତାରୁ ସାମାଜିକ ପ୍ରଗତି ତ୍ୱରାନ୍ୱିତ ହେଉଛି । ଆଧୁନିକ ପ୍ରଯୁକ୍ତି ଦ୍ୱାରା ପୃଥିବୀର ଭୌଗୋଳିକ ସ୍ଥିତି ଯେତିକି ସଙ୍କୁଚିତ ହୋଇଚାଲିଛି ବ୍ୟକ୍ତିର ନୈତିକ ଦାୟିତ୍ୱବୋଧ ସେତେ ଅଧିକରୁ ଅଧିକ ବ୍ୟାପକ ହେବାରେ ଲାଗିଛି ।

ଗଣତାନ୍ତ୍ରିକ ବା ସମାଜବାଦୀ ରାଷ୍ଟ୍ରୀୟଭାବନାର ବିକାଶ ପୂର୍ବରୁ ସାରା ପୃଥିବୀରେ ରାଜତନ୍ତ୍ର ଓ ଧର୍ମଭିତ୍ତିକ ଶାସନ ବ୍ୟବସ୍ଥା ବା ଥିଓକ୍ରାସି ରହିଥିଲା । ମଧ୍ୟଯୁଗୀୟ ବ୍ୟବସ୍ଥାରେ ଧର୍ମର ଗଭୀର ପ୍ରଭାବ ଜନଜୀବନର ପ୍ରତ୍ୟେକ ସ୍ତରକୁ ନିୟନ୍ତ୍ରଣ କରିଥିଲା । ସେହି ଯୁଗର ମାନସିକତାରେ ନୀତି, ନୈତିକତା ଧର୍ମଭିତ୍ତିକ ଥିଲା । ସମାଜରେ ଏହି ବିଶ୍ୱାସ ଥିଲା ଯେ ଈଶ୍ୱର ବିଶ୍ୱାସ ଓ ଈଶ୍ୱରୀୟ ଉପାସନା ସହ ନୈତିକତା ଅଭିନ୍ନ । ଧର୍ମଗ୍ରନ୍ଥ, ଧର୍ମ ନିର୍ଦ୍ଦେଶିତ ପନ୍ଥା ଓ ଈଶ୍ୱରୀୟ ବିଶ୍ୱାସ ହିଁ ନୈତିକ ଜୀବନର ମୂଳ ଆଧାର । ଈଶ୍ୱର ବିଶ୍ୱାସରୁ ନୈତିକ ଜୀବନ ପାଇଁ ବ୍ୟକ୍ତିକୁ ଅଭିନିବେଶ ଆସିଥାଏ । ଧର୍ମ ଓ ଈଶ୍ୱରଙ୍କୁ ବାଦ୍ ଦେଇ ନୈତିକତାର କଳ୍ପନା କରାଯିବା ସମ୍ଭବ ନୁହେଁ ବୋଲି ମଧ୍ୟଯୁଗରେ ବିଶ୍ୱାସ ରହିଥିଲା । ତେବେ ମଧ୍ୟ ଯୁଗୀୟ ବ୍ୟବସ୍ଥା ବିରୁଦ୍ଧରେ ଯେଉଁ ବୌଦ୍ଧିକ ଆଲୋଡନ ନବଜାଗରଣ ଯୁଗରେ ସୃଷ୍ଟି ହେଲା ତାହା ସବୁ ସ୍ତରରେ କ୍ରାନ୍ତିକାରୀ ବିଚାର ସୃଷ୍ଟି କଲା । ଈଶ୍ୱର ବିଶ୍ୱାସ ଓ ନୈତିକତା ଭିତରେ ଥିବା ସଂପର୍କ ଉପରେ ନାନା ବିଶ୍ଳେଷଣ ଦର୍ଶନର ପରିସର ଭିତରେ ହେଲା । ନିଜ ଧର୍ମ ଓ ଈଶ୍ୱର ଉପରେ ଗଭୀର ବିଶ୍ୱାସ ରଖିଥିବା ପ୍ରତ୍ୟେକ ବ୍ୟକ୍ତି ଯେ ନୀତିବାଦୀ ନୁହନ୍ତି ଏହା ଅନୁଭବରୁ ସ୍ପଷ୍ଟ । ବରଂ ଧର୍ମବିଶ୍ୱାସକୁ ଆଧାର କରି ଗୋଷ୍ଠୀ ଗୋଷ୍ଠୀ ଭିତରେ ବହୁ ଯୁଦ୍ଧ, ବିଭୀଷିକା ମଧ୍ୟଯୁଗରେ ସାଧାରଣ ଘଟଣା ଥିଲା । 'ଯେଉଁମାନେ ଆମ ଧର୍ମ ଓ ଆମ ଆରାଧ୍ୟ ଈଶ୍ୱରଙ୍କୁ ବିଶ୍ୱାସ କରନ୍ତି ନାହିଁ ସେମାନେ ଆମର ବିରୋଧୀ' ଏହି ବିଚାର ମଧ୍ୟଯୁଗୀୟ ମାନସିକତାରେ ଗଭୀର ଭାବେ ରହିଥିଲା । ପରିଣାମତଃ ଧର୍ମ, ଧାର୍ମିକ ବିଶ୍ୱାସ, ଈଶ୍ୱରଙ୍କୁ ନେଇ ନାନା ଭାବରେ ପୃଥିବୀ ରକ୍ତରଂଜିତ ହେବା ସେ ଯୁଗର ଘଟଣା ଥିଲା । ଏତଦ୍‌ବ୍ୟତୀତ ମଧ୍ୟଯୁଗରେ ବହୁ ପ୍ରତିଭାଶାଳୀ ବୈଜ୍ଞାନିକ, ମୁକ୍ତଚିନ୍ତକ ଓ କ୍ରାନ୍ତିକାରୀ ଦାର୍ଶନିକ ମାନଙ୍କୁ ଧର୍ମବିରୋଧୀ ବୋଲି କହି ନାନା ନିର୍ଯ୍ୟାତନା ଦିଆଯାଇଥିବା ଇତିହାସରୁ ଜଣାପଡେ । ଆଧୁନିକ ବିଜ୍ଞାନର ଆଦିପର୍ବରେ ଧର୍ମମାନ ଜ୍ଞାନର ବିକାଶରେ ଗଭୀର ଅନ୍ତରାୟ ହୋଇଥିବା ଏକ ଐତିହାସିକ ସତ୍ୟ । ତେବେ ବିଜ୍ଞାନର ଯୁଗ ଆସିବା ପରେ "ମାନବବାଦର" ଯେଉଁ ଧାରାଟି ସୃଷ୍ଟି ହେଲା ତାହା ବୌଦ୍ଧିକ ଜଗତରେ ନୂତନ ଆଲୋଡନ ଆଣିଲା । ଏକ

ନୀତିନିଷ୍ଠ ଓ ନୈତିକ ଜୀବନ ପାଇଁ ଈଶ୍ୱର ଓ ଧର୍ମରେ ବିଶ୍ୱାସ ଯେ ଅବଶ୍ୟମ୍ଭାବୀ ନୁହଁ ଏହା ଚିନ୍ତାରାଜ୍ୟରେ ଗୃହୀତ ହେବାକୁ ଲାଗିଲା । ଈଶ୍ୱରୀୟ ସତ୍ତାରେ ବିଶ୍ୱାସରୁ ନୈତିକ ଜୀବନ ପାଇଁ ହୁଏତ କାହାକୁ ପ୍ରେରଣା ମିଳିପାରେ, ତେବେ ଏହା ସଂପୂର୍ଣ୍ଣ ମନସ୍ତାତ୍ତ୍ୱିକ । ନୈତିକ ଜୀବନ ପାଇଁ ବହୁ ସ୍ତରରୁ ବ୍ୟକ୍ତିକୁ ପ୍ରେରଣା ମିଳିପାରେ । ନୈତିକତାକୁ ସାମାଜିକ କର୍ତ୍ତବ୍ୟ ଭାବେ ଗ୍ରହଣ କଲେ, ନୈତିକ ଆଚରଣକୁ ଗୁଣାତ୍ମକ ଜୀବନର ଆଧାର ଭାବେ ନେଲେ କିମ୍ୱା ଏକ ଶୃଂଖଳିତ ସାମାଜିକ ଜୀବନ ପାଇଁ ନୈତିକ ଆଚରଣକୁ ଅବଶ୍ୟମ୍ଭାବୀ ବୋଲି ବିଶ୍ୱାସ କଲେ ନୈତିକତା ପାଇଁ ବ୍ୟକ୍ତିକୁ ପ୍ରେରଣା ମିଳିପାରିବ । ସାମାଜିକ ଜୀବନପ୍ରବାହରେ ପ୍ରତ୍ୟେକ ବ୍ୟକ୍ତି ଯେପରି ସମାଜଠାରୁ ନିରାପତ୍ତାଠାରୁ ଆରମ୍ଭ କରି ଅନେକ କିଛି ଆଶାକରିଥାଏ, ପ୍ରତିବଦଳରେ ପ୍ରତ୍ୟେକ ବ୍ୟକ୍ତି ନିଜର କର୍ତ୍ତବ୍ୟକୁ ସୁଚାରୁରୂପେ ପାଳନ କରିବା ତାହାର ଏକ ସମୁଚିତ କର୍ତ୍ତବ୍ୟ ହୋଇଥାଏ । ସାମାଜିକ ନିର୍ଭରଶୀଳତା ଓ ସମାଜ ପ୍ରତି ଉତ୍ତରଦାୟିତ୍ୱ ଭିତରେ ନୀତି, ନୈତିକତା ଅଧିକ ଜୀବନଧର୍ମୀ ହେବା ଦେଖାଯାଏ । ମାନବବାଦୀ ଜୀବନଦର୍ଶନ ଭିତରେ ଉନ୍ନତ ସମାଜ ଓ ଗୁଣାତ୍ମକ ଜୀବନର ଆଧାର ଭାବେ ନୈତିକ ଆଚରଣକୁ ପ୍ରାଧାନ୍ୟ ଦିଆଯାଏ । "ନିଜ ପ୍ରତି ଯେଉଁ ଆଚରଣ ଜଣେ ଅନ୍ୟଠାରୁ ଆଶା କରେ ନାହିଁ, ସେ ସେହି ପ୍ରକାରର ଆଚରଣ ଅନ୍ୟ ପ୍ରତି ପ୍ରଦର୍ଶନ କରିବ ନାହିଁ"- ମାନବବାଦୀ ନୈତିକତାର ମୂଳ ଆଭିମୁଖ୍ୟ ହେବା ଦେଖାଯାଏ । ଅପର ପକ୍ଷରେ ଧର୍ମଭିତ୍ତିକ ବିଶ୍ୱାସରେ ନୈତିକ ଜୀବନକୁ ଏକ ପାରଲୌକିକ ଲକ୍ଷ୍ୟ ହାସଲ ପାଇଁ ଗୁରୁତ୍ୱ ଦିଆଯାଏ । ଧର୍ମକାର୍ଯ୍ୟରେ ସଂପୃକ୍ତ ହେବା, ଈଶ୍ୱରଙ୍କ ଉପରେ ଆସ୍ଥା ସ୍ଥାପନ କରିବା ଦ୍ୱାରା ମୃତ୍ୟୁ ପରେ ବ୍ୟକ୍ତି ସ୍ୱର୍ଗ ଲାଭ କରେ, ମୁକ୍ତି ପାଏ କିମ୍ୱା ଜନ୍ମ-ମୃତ୍ୟୁ ଚକ୍ରରୁ ରକ୍ଷା ପାଏ ବୋଲି ଧର୍ମମାନଙ୍କରେ ବିଶ୍ୱାସ କରାଯାଏ । ଧାର୍ମିକ ବିଶ୍ୱାସ ନୈତିକତାକୁ ସାମାଜିକ କର୍ତ୍ତବ୍ୟ ଅପେକ୍ଷା ପାରଲୌକିକ ଲକ୍ଷ୍ୟ ପାଇଁ ଅଭିପ୍ରେତ କରିବା ଦେଖାଯାଏ । ମଣିଷ ସହିତ ଈଶ୍ୱରଙ୍କ ସମ୍ବନ୍ଧ ନେଇ ଧର୍ମରେ ନାନା କାଳ୍ପନିକ ଅନୁଶୀଳନରୁ ଜୀବନର ଲକ୍ଷ୍ୟ ବା ଈଶ୍ୱରୀୟ ବ୍ୟବସ୍ଥା ଭିତରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏପରିକି ସାମାଜିକ ଗୁରୁତ୍ୱ ଥିବା କେତେକ ପ୍ରସଙ୍ଗ ଉପରେ ଧର୍ମମାନଙ୍କର ଅନୁଜ୍ଞା ନୀତିପୂର୍ଣ୍ଣ ମନେ ହୁଏ ନାହିଁ । ମାନବିକ ଅଧିକାର, ନାରୀର ମୂଲ୍ୟ, ବିବାହ ବିଚ୍ଛେଦ, ପରିବାର ନିୟୋଜନ ଇତ୍ୟାଦି ସାମାଜିକ ପ୍ରସଙ୍ଗ ଉପରେ ଧର୍ମମାନଙ୍କର ଦୃଷ୍ଟିଭଙ୍ଗୀ ଯେ ନୀତିନିଷ୍ଠ ଏହା କୁହାଯାଇନପାରେ । ନିଜ ଧର୍ମର ବିଶ୍ୱାସରେ ପ୍ରଭାବିତ ହୋଇ ସାମାଜିକ ଭେଦଭାବକୁ ବିଧିନିର୍ଦ୍ଦିଷ୍ଟ ବୋଲି ଭାବିବା, ଅନ୍ୟର ପୂଜାସ୍ଥଳୀକୁ ଧ୍ୱଂସ କରିବାକୁ କର୍ତ୍ତବ୍ୟ ବୋଲି ଗ୍ରହଣ କରିବା, ଅନ୍ୟ ଧର୍ମାବଲମ୍ବୀଙ୍କ ପ୍ରତି ହିଂସା ଆଚରଣ କରିବାକୁ ଯଥାର୍ଥ

କହିବା ଓ ସନ୍ତ୍ରାସବାଦୀ କାର୍ଯ୍ୟରେ ସଂପୃକ୍ତ ହେବାର ଦୃଷ୍ଟାନ୍ତ ସମାଜରେ ବିରଳ ନୁହେଁ । ପ୍ରତ୍ୟେକ ଧର୍ମରେ ନୈତିକତାକୁ କିଛିଟା ପ୍ରାଧାନ୍ୟ ଦିଆଯାଇଥିଲେ ମଧ୍ୟ ଏହି ସବୁ ଅନୁଶୀଳନ ଆଧାରରେ ଈଶ୍ୱର ବିଶ୍ୱାସ ଓ ଧାର୍ମିକ ଅନୁଜ୍ଞା ସହ ନୈତିକତା ସଂପୃକ୍ତ ହେବା ଯୁକ୍ତିସଂଗତ ମନେହୁଏ ନାହିଁ । ନିଜ ଧାର୍ମିକ ବିଶ୍ୱାସରେ ଅନୁପ୍ରାଣିତ ହୋଇ ଅନୈତିକ କାର୍ଯ୍ୟରେ ସଂପୃକ୍ତ ହେବା ଓ ଧାର୍ମିକ ବିଶ୍ୱାସଠାରୁ ଦୂରେଇ ଯାଇ ଏକ ମହାନ ଜୀବନର ଅଧିକାରୀ ହେବାର ଦୃଷ୍ଟାନ୍ତ ଇତିହାସରେ ଓ ସବୁ ଧର୍ମ ପରଂପରାରେ ଦେଖିବାକୁ ମିଳେ । ବସ୍ତୁତଃ ନୈତିକତା ଧର୍ମ ଓ ଈଶ୍ୱର ଭାବନାଠାରୁ ଯେ ପୃଥକ୍ ଏହା ଦର୍ଶନର ଏକ ପ୍ରତିପାଦ୍ୟ ବିଷୟ ଅଟେ ।

ସାମାଜିକ ସମ୍ବନ୍ଧ ପୃଷ୍ଠଭୂମିରେ ମଣିଷ ସହ ମଣିଷର ସଂପର୍କ କ'ଣ ହେବା ଆବଶ୍ୟକ ଏହା ହିଁ ନୈତିକତା ପାଇଁ ବଡ ପ୍ରସଙ୍ଗ ଅଟେ । ମାନବବାଦୀ ଜୀବନଦର୍ଶନର ଅଭ୍ୟୁଦୟ ପରିପ୍ରେକ୍ଷୀରେ ପ୍ରତ୍ୟେକ ବ୍ୟକ୍ତିର ଅଧିକାର ଓ ମର୍ଯ୍ୟାଦାକୁ ଗୁରୁତ୍ୱ ଦିଆଯିବା ସାମାଜିକ ବିକାଶଧାରାରେ ଏକ ବଡ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମହତ୍ତ୍ୱକୁ ସ୍ୱୀକାର କରିବାର ଭାବନା ନୈତିକ ଚେତନାର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ମଣିଷ ମଣିଷ ଭିତରେ କୌଣସି ଭେଦଭାବ ସୃଷ୍ଟି ନ କରିବା, ପ୍ରତ୍ୟେକ ବ୍ୟକ୍ତିର ସମୁଚିତ ବିକାଶ ପାଇଁ ରାଷ୍ଟ୍ର ପରିବେଶ ସୃଷ୍ଟି କରିବା, ଆଇନ ଦୃଷ୍ଟିରେ ସବୁ ମଣିଷକୁ ସମାନ ବୋଲି ବିବେଚନା କରିବା, ପ୍ରତ୍ୟେକ ବ୍ୟକ୍ତିର ଅଧିକାରକୁ ଆଇନଗତ ସ୍ୱୀକୃତି ଦେବା ଓ ସାମାଜିକ ସ୍ତରରେ ସମତାର ଭାବନା ବିକଶିତ କରାଇବା ନୈତିକ ବିଚାରର ନୂଆ ଦିଗନ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଯେଉଁ ସମାଜରେ ଏହି ବିଚାରବୋଧର ପ୍ରତିଫଳନ ଯେତେ ଅଧିକ ତାହା ସେତିକି ସଭ୍ୟ ଓ ପ୍ରଗତିଶୀଳ । ବସ୍ତୁତଃ ମଣିଷ ସହ ମଣିଷର ସମ୍ବନ୍ଧ କେତେ ନ୍ୟାୟସଂଗତ, ମାନବିକ ଓ ନୀତିପୂର୍ଣ୍ଣ ହୋଇପାରିବ ତାହାରି ଆଧାରରେ ନୈତିକତାର ମୂଲ୍ୟାୟନ କରାଯିବା ଯଥାର୍ଥ ମନେହୁଏ । ବ୍ୟକ୍ତି, ଗୋଷ୍ଠୀ, ସମାଜ, ରାଷ୍ଟ୍ର ଓ ମାନବ ଜାତି ଭିତରେ ପାରସ୍ପରିକ ସମ୍ବନ୍ଧ ଯେତେ ଅଧିକ ପ୍ରୀତିପୂର୍ଣ୍ଣ ହେବ, ତାହା ଆମ ନୈତିକ ବିକାଶର ସ୍ୱାକ୍ଷର ବହନ କରିବ । ହିଂସା, ପ୍ରତିହିଂସା, ଶୋଷଣ, ସନ୍ତ୍ରାସବାଦ, ଅସହିଷ୍ଣୁତା, ବୈଷମ୍ୟ, ମାନବିକ କ୍ରୂରତା ନୈତିକ ଓ ମାନବିକ ଆଚରଣର ପ୍ରତିକୂଳ ହେବା ବେଳେ ମାନବିକ ସଂପ୍ରୀତି ଓ ସମ୍ବେଦନଶୀଳ ଜୀବନ ଦୃଷ୍ଟି ନୈତିକତାର ବିଭବ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୁନଶ୍ଚ ବ୍ୟକ୍ତିଗତ ଆଚରଣରେ ପନ୍ଥାର ପବିତ୍ରତା ଓ ନାଗରିକ ଶୃଂଖଳାବୋଧ ନୈତିକ ଆଦର୍ଶର ଗୁରୁତ୍ୱପୂର୍ଣ୍ଣ ଆବେଦନ ମନେହୁଏ । ନିଜର ଲକ୍ଷ୍ୟ ହାସଲ ପାଇଁ ଯେକୌଣସି ପନ୍ଥାର ଆଶ୍ରୟ ନେବା ଯଥାର୍ଥ

ମନେହୁଏ ନାହିଁ । ବରଂ ପତ୍ନୀର ନୈତିକତା ଓ ପବିତ୍ରତା ଉପରେ ଜୀବନର ଗୁଣାତ୍ମକ ମାନ ବହୁଭାବରେ ନିର୍ଭର କରେ । ଏହା ସହିତ ଏକ ସଭ୍ୟ ସମାଜରେ ନାଗରିକ ଶୃଂଖଳାବୋଧକୁ ଗଭୀର ପ୍ରାଧାନ୍ୟ ଦିଆଯାଏ । ଯେଉଁ ସାମାଜିକ ଜୀବନ ପ୍ରବାହରେ ନାଗରିକ ଶୃଂଖଳାବୋଧକୁ ପ୍ରାଧାନ୍ୟ, ଆଇନ ପ୍ରତି ସମ୍ମାନ, ଅନ୍ୟ ବ୍ୟକ୍ତି ପ୍ରତି ମର୍ଯ୍ୟାଦାକୁ ଗୁରୁତ୍ୱ ଦିଆଯାଏ ତାହା ଏକ ସଭ୍ୟ ସମାଜ କହିଲେ ଅତ୍ୟୁକ୍ତି ହେବ ନାହିଁ । ଧାର୍ମିକ ଆବେଗର ପ୍ରାବଲ୍ୟ, ପୂଜା ଆରାଧନାର ପରିବେଶ ସମାଜକୁ ଉନ୍ନତ କରେ ନାହିଁ, ବରଂ ନାଗରିକ ଶୃଂଖଳାବୋଧ ଓ ପତ୍ନୀର ପବିତ୍ରତା ନେଇ ସଚେତନତା ସମାଜକୁ ଉନ୍ନତ କରିଥାଏ । ନୈତିକତା ଓ ସାମାଜିକ କର୍ତ୍ତବ୍ୟ ଅଭିନ୍ନ ଓ ଏହା ସଭ୍ୟ ଜୀବନଧାରାର ଅପରିହାର୍ଯ୍ୟ ଅଙ୍ଗ ତଥା ଗୁଣାତ୍ମକ ଜୀବନର ମାନଦଣ୍ଡ ।

(୩.୪.୧୩)



# ବ୍ୟକ୍ତିମୂଲ୍ୟ: ଏକ ବିଶ୍ଳେଷଣ

ବ୍ୟକ୍ତି ମୂଲ୍ୟ (ଡିଗ୍‌ନିଟି ଅଫ୍ ଦି ଇଣ୍ଡିଭିଜୁଆଲ) ର ଭାବନା ଆମ ସମାଜରେ କେତେ ଭିତ୍ତି ନେଇଛି ? ଆମ ଦେଶରେ ଏକ ଗଣତାନ୍ତ୍ରିକ ଶାସନ ପଦ୍ଧତି ରହିଛି ଓ ଆମ ସମ୍ବିଧାନରେ ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ଓ ମହତ୍ତ୍ୱକୁ ପ୍ରାଧାନ୍ୟ ଦିଆଯାଇଛି । କିନ୍ତୁ ଆମର ସାମାଜିକ ମନସ୍ତତ୍ତ୍ୱ ବ୍ୟକ୍ତିମୂଲ୍ୟକୁ ସ୍ୱୀକାର କରିପାରୁଛି କି ? ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ଅନ୍ୟ ବ୍ୟକ୍ତିଠାରୁ ନ୍ୟୂନ ନୁହେଁ ଏହି ଭାବନା ଆମ ସଂସ୍କୃତିରେ ବା ଜନ ଜୀବନରେ କେତେ ପ୍ରତିଫଳିତ ? ଏହି ପୃଷ୍ଠଭୂମିରେ ନିକଟ ଅତୀତର ଦୁଇଟି ଘଟଣା ଏଠାରେ ଉଲ୍ଲେଖ କରଛି ।

ପ୍ରଥମଟି ହେଉଛି ଓଡିଶାର ଏକ ଘଟଣା, ଯେଉଁଥିରେ ଜଣେ ଅବସର ପ୍ରାପ୍ତ ଡାକ୍ତର ତାଙ୍କ ପତ୍ନୀଙ୍କୁ (ପ୍ରଚାରିତ ସମ୍ବାଦ ଅନୁସାରେ) ହତ୍ୟା କରି ତାଙ୍କ ମୃତ ଶରୀରକୁ ଖଣ୍ଡ ଖଣ୍ଡ କରି କାଟି ତାକୁ କୋଡିଏଟି ଟିଫିନ୍ କେରିଅରରେ ରଖିବା । ଦୀର୍ଘଦିନର ଦାମ୍ପତ୍ୟ ଜୀବନ ଅତିବାହିତ କଲାପରେ ବି ସେ ଯେଉଁ ପଦକ୍ଷେପ ନେଲେ ଏହା ତାଙ୍କ ଦାମ୍ପତ୍ୟ ଜୀବନର ଅସନ୍ତୋଷ ଓ କ୍ରୋଧ ସହ ତାଙ୍କ ସାମାଜିକ ଚେତନାର ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବନାହିଁ । ଏକ ପରିପୂର୍ଣ୍ଣ ଦାମ୍ପତ୍ୟ ଜୀବନ ଅତିବାହିତ କଲାପରେ ପୁଅ, ଝିଅର ସଂସାର ଥାଇ ଜଣେ ବ୍ୟକ୍ତି କେଉଁ ମାନସିକତାରୁ ଏହା କଲେ ତାହା ଏବେ ବି ଅସ୍ପଷ୍ଟ ମନେହୁଏ । ଦାମ୍ପତ୍ୟ ଜୀବନରେ କିଛି କଳହ,ମନାନ୍ତର ବା ଅଶାନ୍ତି ତ ଜୀବନର ଏକ ସାଧାରଣ ଘଟଣା । ତେବେ ସାମୟିକ ଅଶାନ୍ତି ପାରିବାରିକ ବନ୍ଧନ ଓ ପରିସ୍ଥିତିଗତ ଆହ୍ୱାନରେ ଦୂର ହୋଇଯାଏ ଓ ପୁନଶ୍ଚ ସାଂସାରିକ ପ୍ରୀତିବନ୍ଧନ ଅତୁଟ ରହେ । ସ୍ଥଳ ବିଶେଷରେ ଯେଉଁଠି ଦାମ୍ପତ୍ୟ ବନ୍ଧନ ଆଉ ପ୍ରୀତିପଦ ହେବାର ସମ୍ଭାବନା ରହେନାହିଁ, ସେଠାରେ ବିବାହ-ବିଚ୍ଛେଦ ଘଟିଥାଏ । ତେବେ ଆମ ସାମାଜିକ ବ୍ୟବସ୍ଥା ଓ ଆଇନଗତ ପରିସରଟି ବିବାହ-ବିଚ୍ଛେଦ ପାଇଁ ବିଶେଷ ଅନୁକୂଳ ହୋଇ ନଥାଏ । ତଥାପି ମଧ ବିବାହ-ବିଚ୍ଛେଦ ସମାଜରେ ଦ୍ରୁତ ଗତିରେ ବଢୁଥିବା ଜଣାଯାଏ ।

ଦ୍ୱିତୀୟଟି ହେଉଛି ୨୦୧୨ ଡିସେମ୍ବର ମାସରେ ଦିଲ୍ଲୀ ସହରରେ ହୋଇଥିବା ଗଣ-ବଳାତ୍କାର ଘଟଣା । ଏହି ଘଟଣାଟି ସାରା ଦେଶରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା ଓ ଗଣ ମାଧ୍ୟମରେ ବହୁଳ ଭାବେ ପ୍ରଚାରିତ ହୋଇଥିଲା । ସମାଜରେ ଘଟୁଥିବା ଯୌନ ନିର୍ଯ୍ୟାତନା, ମହିଳାମାନଙ୍କ ପ୍ରତି ହିଂସା ଓ ଉତ୍ପୀଡନ ପ୍ରସଙ୍ଗ ଉପରେ ବହୁ ଆଲୋଚନା ଓ ମତ ସେ ସମୟରେ ପ୍ରକାଶ ପାଇଥିଲା । ଦିଲ୍ଲୀର ଘଟଣା ଏକ ଏକକ ଘଟଣା ନୁହେଁ, ଏହି ପ୍ରକାରର ଘଟଣା ବିଭିନ୍ନ ସହରରେ ଓ ଅନେକ ସ୍ଥାନରେ ଘଟୁଛି । ଯେଉଁ ଗୁଡିକ ଗଣମାଧ୍ୟମରେ ପ୍ରସାର ହୁଏ ତାହା ବୃହତ୍ତର ସମାଜର ଦୃଷ୍ଟି ଆକର୍ଷଣ କରିଥାଏ, ଯେଉଁ ଘଟଣାଗୁଡିକ ଗଣମାଧ୍ୟମକୁ ଆସେ ନାହିଁ, ତାହା ବିଷୟରେ ଜାଣିବାର ସୁଯୋଗ ମିଳେ ନାହିଁ ।

କିଛି ବ୍ୟକ୍ତି ବିଶ୍ୱାସ କରନ୍ତି ଯେ ଭାରତୀୟ ଜନଜୀବନ ଅଧ୍ୟାତ୍ମିକ ମୂଲ୍ୟବୋଧ ଉପରେ ଆଧାରିତ ଓ ସମାଜରେ ଯାହା କିଛି ଅବାଞ୍ଛିତ ଓ ମନ୍ଦ ଘଟଣା ଘଟୁଛି ତାହା ସବୁ ପାଶ୍ଚାତ୍ୟ ଶିକ୍ଷା, ସଂସ୍କୃତି ପ୍ରଭାବର ପରିଣାମ । ଦିଲ୍ଲୀ ବଳାତ୍କାର ଘଟଣା ପୃଷ୍ଠଭୂମିରେ ଏକ ସଙ୍ଗଠନର ଜଣେ ବରିଷ୍ଠ ବ୍ୟକ୍ତି ମତ ପୋଷଣ କରିଥିଲେ ଯେ ବଳାତ୍କାର ପରି ଘଟଣା ପାଶ୍ଚାତ୍ୟ ସଂସ୍କୃତିର ପ୍ରଭାବରୁ କେବଳ ସହର ମାନଙ୍କରେ ଘଟେ ଓ ଏସବୁ ଘଟଣା ଗ୍ରାମୀଣ ଜୀବନରେ ଘଟେ ନାହିଁ । ଆଉ ଗୋଟିଏ ଧାର୍ମିକ ସଙ୍ଗଠନର ଜଣେ ପ୍ରବକ୍ତା ମତ ଦେଇଥିଲେ ଯେ ବଳାତ୍କାରର ଶିକାର ହେଉଥିବା ମହିଳା ଯଦି ଈଶ୍ୱରଙ୍କ ନାମ ଜପ କରିଥାନ୍ତେ, ବଳାତ୍କାରୀମାନଙ୍କୁ ନିଜର ଭାଇ ସମ୍ବୋଧନ କରିଥାନ୍ତେ, ତେବେ ବଳାତ୍କାରୀମାନେ ଏହି ଘଟଣାରୁ ନିବୃତ୍ତ ହୋଇଥାନ୍ତେ । ସେ ଏହା କରି ନଥିବାରୁ ସେ ମଧ୍ୟ ଘଟଣାଟି ପାଇଁ କେତେକାଂଶରେ ଦାୟୀ । ପ୍ରଥମ ମତର ଏକ ତାର୍କିକ ପରିଣାମ ହେବ ଯେ ଗାଁ ଗହଳର ମହିଳାମାନେ ଏକ କ୍ଷୁଦ୍ର ପରିବେଶରେ ଘର ଭିତରେ ଆବଦ୍ଧ ରହନ୍ତି, ତେଣୁ ସେମାନେ ବଳାତ୍କାର ପରି ଜଘନ୍ୟ ଅତ୍ୟାଚାରର ଶିକାର ହୁଅନ୍ତି ନାହିଁ । ସୁତରାଂ ମହିଳାମାନଙ୍କୁ ଉଚ୍ଚ ଶିକ୍ଷା, କର୍ମ ସଂସ୍ଥାନ, ବୃହତ୍ତର ସାମାଜିକ ପରିବେଶରୁ ଦୂରେଇ ଦେଇ କେବଳ ପାରିବାରିକ ଦାୟିତ୍ୱ ମଧ୍ୟରେ ଆବଦ୍ଧ କରିବା ଉଚିତ । ଏହି ମତଟି ଯେପରି ଅବାସ୍ତବ ସେପରି ଯୁକ୍ତିବିରୋଧୀ ଓ ମାନବିକତା ବିରୋଧୀ ମନେହୁଏ । ଦ୍ୱିତୀୟ ମତଟି ଅତ୍ୟାଚାରିତ ହେଉଥିବା ବ୍ୟକ୍ତି ଯଦି ଈଶ୍ୱରଙ୍କ ନାମ ନେଇଥାନ୍ତେ, ତେବେ ହୁଏତ ଏପରି ଘଟଣାକୁ ଏଡାଇ ପାରିଥାନ୍ତେ, ସମ୍ପୂର୍ଣ୍ଣ ଉଦ୍ଭଟ ମନେହୁଏ । କୌଣସି ଅତ୍ୟାଚାରିତ ବ୍ୟକ୍ତି ଯଦି ଏତେ ସହଜରେ ଅନ୍ୟର ହୃଦୟକୁ ପରିବର୍ତ୍ତନ କରିପାରୁଥାନ୍ତେ, ତେବେ କେଉଁଠି ହେଲେ ହତ୍ୟା, ଧର୍ଷଣ ବା ସାମ୍ପ୍ରଦାୟିକ ଦଙ୍ଗାପରି ଘଟଣାମାନ ଘଟୁନଥାନ୍ତା ।

ଦିଲ୍ଲୀ ପରି ଘଟଣାରେ ଦୁଃଖ ଅନୁଭବ କରୁଥିବା କିଛି ସମ୍ବେଦନଶୀଳ ବ୍ୟକ୍ତି ବଳାତ୍କାର ପରି ଘଟଣାରେ ଅତ୍ୟାଚାରୀମାନଙ୍କୁ ମୃତ୍ୟୁ ଦଣ୍ଡରେ ଦଣ୍ଡିତ କଲେ ତାହା ସମାଜ ପାଇଁ ଉଦାହରଣ ସୃଷ୍ଟି କରିବ ଓ ଦୁଷ୍ଟ ତଥା ମନ୍ଦ ଲୋକମାନେ ଅନ୍ତତଃ ଭୟରେ ଏପରି ଘଟଣା ଘଟାଇବେ ନାହିଁ ବୋଲି ମତବ୍ୟକ୍ତ କରିଛନ୍ତି । 'ମୃତ୍ୟୁଦଣ୍ଡ' ରାଷ୍ଟ୍ରରେ ରହିବା ଉଚିତ କି ନୁହେଁ- ଏକ ବିତର୍କର ବିଷୟ । ଆମ୍ନେଷ୍ଟି ଇଣ୍ଟରନେସନାଲ ପରି ଆନ୍ତର୍ଜାତିକ ସଙ୍ଗଠନମାନ ମୃତ୍ୟୁଦଣ୍ଡକୁ ସମଗ୍ର ପୃଥିବୀରୁ ଦୂର କରିବା ପାଇଁ ମତପୋଷଣ କରିବା ଦେଖାଯାଏ । ବିଶେଷକରି ମାନବିକ ଅଧିକାରର ଏହା ପରିପନ୍ଥୀ ତଥା ଏକ ରାଷ୍ଟ୍ରୀୟ ହିଂସା ବୋଲି ସେମାନେ ମୃତ୍ୟୁଦଣ୍ଡକୁ ଅଭିହିତ କରିଥାନ୍ତି । ଗୋଟିଏ ଅନ୍ୟାୟ ଓ ମନ୍ଦ ଘଟଣାକୁ (ଯେପରି ବଳାତ୍କାର) ଅନ୍ୟ ଏକ ଅନ୍ୟାୟ ଓ ମନ୍ଦ ଉପାୟରେ (ଯେପରି ମୃତ୍ୟୁଦଣ୍ଡ) ସୁଧାର କରିବା କେତେ ଦୂର ନ୍ୟାୟସଙ୍ଗତ ବୋଲି ସେମାନେ ପ୍ରଶ୍ନ ଉଠାଇଥାନ୍ତି । କୌଣସି ହତ୍ୟା ଘଟଣାରେ, ବଳାତ୍କାର ଜନିତ ହତ୍ୟା ହେଉ ବା କେବଳ ହତ୍ୟା ହେଉ, ମୃତ୍ୟୁଦଣ୍ଡ ଦିଆଯିବା ଆଇନ ସମ୍ମତ ଓ ଆମ ଦେଶପରି କେତେକ ଗଣତାନ୍ତ୍ରିକ ରାଷ୍ଟ୍ରରେ ହତ୍ୟା ପରି ଅପରାଧରେ ଲିପ୍ତ ହତ୍ୟାକାରୀ ମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉଛି । କିନ୍ତୁ ଏହାଦ୍ୱାରା ସମାଜରୁ ନରହତ୍ୟା ପରି ଘଟଣାମାନ ଦୂର ହେଉଛି କି ? ସେହିପରି ବଳାତ୍କାର ପରି ଘଟଣାରେ ମୃତ୍ୟୁଦଣ୍ଡର ବ୍ୟବସ୍ଥା ଆଇନରେ ରଖିଲେ ବଳାତ୍କାର ଘଟଣା ସମାଜରୁ ଲୋପ ପାଇବ କି ? ପରିସଂଖ୍ୟାନରୁ ଜଣାଯାଏ ଯେ ଯେତେ ବଳାତ୍କାର ଘଟଣା ପୁଲିସରେ ପଞ୍ଜୀକୃତ ହୁଏ ସେଥିରୁ ଅଧାରୁ ଅଧିକ ଆମର ନ୍ୟାୟିକ ବ୍ୟବସ୍ଥାରେ ପ୍ରମାଣିତ ହୋଇପାରେ ନାହିଁ । ଏଫ୍.ଆଇ.ଆର.ରେ ତ୍ରୁଟି, ପ୍ରଭାବଶାଳୀ ଲୋକଙ୍କର ପ୍ରଭାବ, ବିଚାରରେ ବିଳମ୍ବ ପରି ନାନା କାରଣରୁ ଅପରାଧୀ ନ୍ୟାୟାଳୟରେ ଦଣ୍ଡିତ ହୋଇପାରେ ନାହିଁ । ଏତଦ୍‌ବ୍ୟତୀତ ଶିଶୁମାନଙ୍କର ଅଧିକାର ଓ ନ୍ୟାୟ ପାଇଁ କାର୍ଯ୍ୟ କରୁଥିବା କେତେକ ସଂସ୍ଥାର ଅଧ୍ୟୟନରୁ ଜଣାଯାଏ ଯେ ଆମ ସମାଜରେ ପ୍ରାୟ ଏକ ଚତୁର୍ଥାଂଶ ପିଲା ସେମାନଙ୍କର ବାଲ୍ୟ ଓ କୈଶୋର ଅବସ୍ଥାରେ ଯୌନ ଉତ୍ପୀଡନର ଶିକାର ହେଉଛନ୍ତି । ଏଥିରେ ପିଲାର ସମ୍ପର୍କୀୟ, ଜଣାଶୁଣା ଲୋକ ଓ ଏପରିକି ଶିକ୍ଷକମାନେ ମଧ୍ୟ ସଂଶ୍ଳିଷ୍ଟ । ମୋଟ ଉପରେ ଯୌନ ଉତ୍ପୀଡନ, ବଳାତ୍କାର ଓ ପାରିବାରିକ ହିଂସାର ସଂଖ୍ୟା ଯେପରି ବୃଦ୍ଧି ପାଇବାରେ ଲାଗିଛି ତାହା ମାନସିକ ଓ ସାମାଜିକ ଅସୁସ୍ଥତାର ଚିତ୍ର ବହନ କରେ ।

ଯୌନ ଉତ୍ପୀଡନ, ବଳାତ୍କାର ଓ ପାରିବାରିକ ହିଂସା ପ୍ରତ୍ୟେକଟି ଘଟଣା ପଛାତରେ ଥିବା ନାନା ସାମାଜିକ, ମନସ୍ତାତ୍ତ୍ୱିକ ଓ ସାଂସ୍କୃତିକ କାରଣର ବିଶ୍ଳେଷଣ

କରାଯାଇପାରେ । ମଣିଷ ପ୍ରବୃତ୍ତିକୁ ଭଲ ଦିଗରେ ବା ମନ୍ଦ ଦିଗରେ ପରିଚାଳିତ କରିବାରେ ପରିବାର, ସାମାଜିକ ପରିବେଶ, ଶିକ୍ଷା ଇତ୍ୟାଦିର ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଥାଏ । ପ୍ରତ୍ୟେକ ବ୍ୟକ୍ତି ଭିତରେ ମହତ୍ତର ଆବେଗ ଯେପରି ରହିଛି, ସେହିପରି ପଶୁତ୍ୱ ମଧ୍ୟ ରହିଛି । ମଣିଷ ଦେବସୁଲଭ ଗୁଣର ଯେପରି ଅଧିକାରୀ ହୋଇପାରେ ସେହିପରି ପଶୁଠାରୁ ଆହୁରି ନିକୃଷ୍ଟ ବି ହୋଇପାରେ । ବ୍ୟକ୍ତି ସ୍ୱଭାବକୁ ଉନ୍ନତ ଓ ଶୃଙ୍ଖଳିତ କରିବାରେ ସାମାଜିକ ପରିବେଶ ମୁଖ୍ୟ ଭୂମିକା ନେଇଥାଏ । ଏହି ପରିପ୍ରେକ୍ଷୀରେ ବ୍ୟକ୍ତି ମୂଲ୍ୟକୁ ପ୍ରାଧାନ୍ୟ ଦେବାକୁ ହେଲେ ସାମାଜିକ ଚେତନାରେ ପରିବର୍ତ୍ତନ ଆବଶ୍ୟକ । ପ୍ରତ୍ୟେକ ବ୍ୟକ୍ତିର ଜୀବନର ମୂଲ୍ୟ ରହିଛି ଓ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଞ୍ଚିବା ତା'ର ଏକ ମୌଳିକ ଅଧିକାର । ମୋ ପ୍ରତି ଯେଉଁ ବ୍ୟବହାର ମୋ ପାଇଁ ପୀଡା ଦାୟକ, ମୁଁ ସେହି ବ୍ୟବହାର ଅନ୍ୟ ପ୍ରତି ପ୍ରଦର୍ଶନ କରିବି ନାହିଁ-ମାନବୀୟ ମୂଲ୍ୟବୋଧର ମୂଳମନ୍ତ୍ର । ଏହି ବିଚାର ଏକ ମହତ୍ତର ଜୀବନବୋଧର ପରିଚୟ ଦିଏ ଓ ଏହା ପାଶ୍ଚାତ୍ୟ ଗଣତାନ୍ତ୍ରିକ ସଂସ୍କୃତିର ଏକ ପରିଣାମ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶେଷକରି ମିଳିତ ଜାତିସଙ୍ଘରେ ମାନବିକ ଅଧିକାରର ଯେଉଁ ଦଲିଲଟିକୁ ୧୯୪୮ ମସିହା ଡିସେମ୍ବର ୧୦ ଦିନ ଆନ୍ତର୍ଜାତିକ ସ୍ୱୀକୃତି ଦିଆଯାଇଛି, ତାହାର ପ୍ରଥମ ଧାରାଟିରେ ହିଁ ବ୍ୟକ୍ତି ମର୍ଯ୍ୟାଦା ଓ ସମତାର ବାର୍ତ୍ତାଟିକୁ ସୁନ୍ଦରଭାବେ ବ୍ୟକ୍ତ କରାଯାଇଛି । ସେହିପରି 'ଇଣ୍ଟରନେସନାଲ ହ୍ୟୁମାନିଷ୍ଟ ଏଣ୍ଡ ଏଥିକାଲ ୟୁନିୟନ ସଙ୍ଗଠନ' "ହ୍ୟୁମାନିଷ୍ଟ ମାନିଫେଷ୍ଟୋ" ବା ମାନବବାଦୀ ଘୋଷଣାନାମାରେ ମାନବିକ ଅଧିକାର, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ନାଗରିକ କର୍ତ୍ତବ୍ୟର ଯେଉଁ ଚିତ୍ର ଦେଇଛି ତାହା ସଭ୍ୟ ଜୀବନଦୃଷ୍ଟିର ଏକ ମହତ୍ତର ଅଭିବ୍ୟକ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହି ପୃଷ୍ଠଭୂମିରେ ଆମ ସଂସ୍କୃତି, ସାମାଜିକ ପରିବେଶ ଓ ଜନଜୀବନର ଗୁଣାତ୍ମକମାନ ଉପରେ ଅନୁଶୀଳନ କଲାବେଳେ ଆମେ ଏକ ନକାରାତ୍ମକ ଚିତ୍ର ପାଇଥାଏ । ଆମ ପୁରାଣରେ ଜଣେ ନାରୀଙ୍କର ସତୀତ୍ୱ ପରୀକ୍ଷା ପାଇଁ ତାଙ୍କୁ ଅଗ୍ନି ପରୀକ୍ଷାର ସମ୍ମୁଖୀନ କରାଇବା, ନିଜ ପତ୍ନୀଙ୍କୁ ବାଜି ଲଗାଇ ଖେଳ ଖେଳିବା, ଖେଳରେ ଜିତି ଜଣେ ସମ୍ମାନିତ ମହିଳାଙ୍କୁ ସର୍ବ ସମ୍ମୁଖରେ ବିବସ୍ତ୍ର କରାଇବାର କାହାଣୀମାନ ରହିଛି । ସେହିପରି ମୃତ ପତିଙ୍କୁ ଯମଙ୍କଠାରୁ ଫେରାଇ ଆଣିବା ପାଇଁ କଠୋର ପରିସ୍ଥିତି ଦେଇ ସଫଳ ହୋଇଥିବା ନାରୀ ଚରିତ୍ର ଆମେ ପୁରାଣରେ ପାଉ, କିନ୍ତୁ ନିଜ ପତ୍ନୀକୁ ଫେରାଇ ଆଣିବାର ଏକ ପୁରୁଷ ଚରିତ୍ର କେଉଁଠି ହେଲେ ଦେଖିବାକୁ ମିଳେ ନାହିଁ । ଏହି ମାନସିକତାରୁ ଏକଦା ସତୀପ୍ରଥା ପରି ନିଷ୍ଠୁର ବ୍ୟବସ୍ଥା ଓ ବିଧବାମାନଙ୍କ ପ୍ରତି ଧାର୍ମିକ କଟକଣା ସମାଜରେ ଦୀର୍ଘଦିନ ଧରି ରହିବା ଦେଖାଯାଏ । ଯୌତୁକ ଜନିତ ହତ୍ୟାକାଣ୍ଡ, ଶିଶୁ କନ୍ୟା ପ୍ରତି

ହତାଦର ଓ କନ୍ୟା ଭ୍ରୂଣହତ୍ୟା ପରି ଘଟଣାରୁ ମାନବିକ ମର୍ଯ୍ୟାଦା ନେଇ ଆମ ବିଚାରବୋଧର କେଉଁ ଚିତ୍ର ମିଳିଥାଏ ? ଏ ତ ଗଲା ମହିଳାମାନଙ୍କ ପ୍ରସଙ୍ଗରେ ଆମର ସାମାଜିକ ଦୃଶ୍ୟପଟ । ଭାରତୀୟ ହିନ୍ଦୁ ସମାଜର ଅସ୍ପୃଶ୍ୟତା, ଜାତିବାଦ ଓ ଉଚ୍ଚନୀଚ ଭେଦଭାବ ଆମ ସାମାଜିକ ଜୀବନର ଏକ ନିଷ୍ଠୁର ବାସ୍ତବତା । ଏହି ବ୍ୟବସ୍ଥାଟି ଯେତେ ଯୁକ୍ତିବିରୋଧୀ, ନୀତିବିରୋଧୀ ଓ ମାନବିକତାବିରୋଧୀ ହୋଇଥିଲେ ମଧ୍ୟ ଏହା ଶହ ଶହ ବର୍ଷ ଧରି ସାମାଜିକ ମନସ୍ତତ୍ତ୍ୱକୁ ଆକ୍ରାନ୍ତ କରି ରଖିବା ଦେଖାଯାଏ । ଖାପ ପଞ୍ଚାୟତ ପରି ମୌଳବାଦୀ ସଂଗଠନ ଏବେ ବି ଜାତିଆଣ ଭାବନା ଆଧାରରେ ବ୍ୟକ୍ତିର ଅଧିକାର ଓ ମର୍ଯ୍ୟାଦାକୁ ଭୂଲୁଣ୍ଠିତ କରିବା ଆମ ଦେଶର ପରିବେଶରେ ସମ୍ଭବ ହୁଏ ।

ବ୍ୟକ୍ତିମୂଲ୍ୟ ଓ ମାନବିକ ଅଧିକାର ପରି ମୂଲ୍ୟବୋଧକୁ ଜନଜୀବନରେ ବ୍ୟାପକ କରିବାକୁ ହେଲେ ଆମର ଶିକ୍ଷା ବ୍ୟବସ୍ଥା, ଗଣମାଧ୍ୟମ ଓ ପ୍ରଶାସନ ମୁଖ୍ୟ ଭୂମିକା ନେବା ଆବଶ୍ୟକ । ଏ କ୍ଷେତ୍ରରେ ଯଥେଷ୍ଟ ଆତ୍ମସମୀକ୍ଷା ସହ ଆମ ସଂସ୍କୃତିର ଭଲ-ମନ୍ଦ ଦିଗ ନେଇ ବିଶ୍ଳେଷଣ କରିବା ଉଚିତ । କେବଳ ଆଇନଗତ ବ୍ୟବସ୍ଥାରେ ପରିବର୍ତ୍ତନ ଦ୍ୱାରା ସେପରି କିଛି ମହତ୍ତର ଲକ୍ଷ୍ୟ ହାସଲ ହେବା ସମ୍ଭବତଃ ଅସମ୍ଭବ ନୁହେଁ । ବରଂ ମାନବିକ ମୂଲ୍ୟବୋଧ ବ୍ୟକ୍ତି ମର୍ଯ୍ୟାଦାବୋଧ ନେଇ ସାମାଜିକ ଚେତନାର ସ୍ତରକୁ ଉନ୍ନତ କରିବା ପାଇଁ ସବୁ ସ୍ତରରୁ ସୁଚିନ୍ତିତ ଧାରାରେ ପ୍ରୟାସ ଆବଶ୍ୟକ ।

(୨୧.୮.୨୦୧୩)



# ଏକାଦଶ ବ୍ରତ : ଏକ ମାନବିକ ଦିଗ

ଭାରତୀୟ ଦର୍ଶନ ଇତିହାସରେ ଥିବା ନ'ଟି ପୃଥକ ଦାର୍ଶନିକ ଧାରାକୁ ମୁଖ୍ୟତଃ ଦୁଇଟି ଭାଗରେ ବିଭକ୍ତ କରାଯାଏ, ଯଥା ଆସ୍ତିକ ଦର୍ଶନ ଓ ନାସ୍ତିକ ଦର୍ଶନ । 'ଆସ୍ତିକ' ଓ 'ନାସ୍ତିକ' ପ୍ରତ୍ୟୟର ପ୍ରଚଳିତ ଅର୍ଥଠାରୁ ପୃଥକ୍ ଏକ ବୈଷୟିକ ଅର୍ଥ କରାଯାଏ ଯେ, ଯେଉଁ ଦାର୍ଶନିକ ବିଚାର ବେଦର ପ୍ରଭୁତ୍ୱକୁ ସ୍ୱୀକାର କରେ ତାହା ଆସ୍ତିକ ଦର୍ଶନ ଓ ଯେଉଁ ଦାର୍ଶନିକ ବିଚାର ବେଦର ପ୍ରଭୁତ୍ୱକୁ ସ୍ୱୀକାର କରେ ନାହିଁ ତାହା ନାସ୍ତିକ ଦର୍ଶନ । ବୌଦ୍ଧିକ ପରମ୍ପରା କ୍ରମେ ଆସ୍ତିକ ଦର୍ଶନ ଭିତରେ ଛ'ଟି ଦାର୍ଶନିକ ଧାରାକୁ ସମ୍ପୃକ୍ତ କରାଯାଏ ଯଥା ନ୍ୟାୟ, ବୈଶେଷିକ, ସାଂଖ୍ୟ, ଯୋଗ, ମୀମାଂସା ଓ ବେଦାନ୍ତ । ଅପରପକ୍ଷରେ ନାସ୍ତିକ ଦର୍ଶନ ଭିତରେ ବୌଦ୍ଧ, ଜୈନ ଓ ଚାର୍ବାକ ଦର୍ଶନଧାରାକୁ ସଂଶ୍ଳିଷ୍ଟ କରାଯାଏ । ତେବେ ନୈତିକ ପ୍ରସଙ୍ଗ ଉପରେ ଆସ୍ତିକ ପରମ୍ପରାର ଓ ନାସ୍ତିକ ପରମ୍ପରାର କେତେକ ଦର୍ଶନଧାରା ଭିତରେ ବହୁ ସାମଞ୍ଜସ୍ୟ ରହିବା ଦେଖାଯାଏ । ଏଠାରେ ଏହିଭଳି ଗୋଟିଏ ପ୍ରସଙ୍ଗ ହେଲା- ଜୀବନର ନୈତିକ ମୂଲ୍ୟବୋଧ । ଜୀବନର ମୂଲ୍ୟବୋଧ କ୍ଷେତ୍ରରେ ପାଞ୍ଚଟି ମହତ୍ତର ଆଦର୍ଶକୁ ଉଭୟ ପରମ୍ପରାରେ ପ୍ରାଧାନ୍ୟ ଦିଆଯାଇଛି- ସେଗୁଡିକ ହେଲା - ସତ୍ୟ, ଅହିଂସା, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ । ଜୈନ ଦର୍ଶନରେ ଏହି ପାଞ୍ଚଟି ମହତ୍ତର ମୂଲ୍ୟଚୟକୁ ପାଞ୍ଚ-ମହାବ୍ରତ କୁହାଯାଏ । ଉପନିଷଦ୍ ପରମ୍ପରାରେ, ବୌଦ୍ଧ ଦର୍ଶନର ପଞ୍ଚଶୀଳ ଭାବନାରେ ଓ ଯୋଗ ଦର୍ଶନର ପ୍ରଥମ ଶୃଙ୍ଖଳା ଯମ କ୍ଷେତ୍ରରେ ଏହି ପାଞ୍ଚଟି ମୂଲ୍ୟଚୟକୁ ସ୍ୱୀକାର କରାଯାଇଛି । ଏସବୁ ମୂଲ୍ୟଚୟର ଏକ ମହତ୍ତର ତାତ୍ତ୍ୱିକ ତାତ୍ପର୍ଯ୍ୟ ତ ରହିଛି, ତେବେ ଏସବୁର ଭିନ୍ନ ଭିନ୍ନ ଅନୁଶୀଳନ ମଧ୍ୟ କରାଯାଇଛି । ପ୍ରତ୍ୟେକଟି ଭାବନାକୁ ନେଇ ନାନା ବିଚାର-ବିମର୍ଶ ଦର୍ଶନ ପରମ୍ପରାରେ ହୋଇଥିବା ମନେହୁଏ । ତେବେ ବାସ୍ତବ ଜୀବନରେ ଏସବୁର ବହୁଳ ପ୍ରୟୋଗ ମହାତ୍ମାଗାନ୍ଧୀଙ୍କ ପାଖରେ ହୋଇଥିବା ଜଣାଯାଏ । ବାପୁଜୀ ତାଙ୍କର 'ଏକାଦଶ ବ୍ରତ' କ୍ଷେତ୍ରରେ ଏହି ପାଞ୍ଚଟି ମୂଲ୍ୟଚୟକୁ ଗ୍ରହଣ କରିବା ସହିତ ସେଥିରେ ଆଉ ଛ'ଟି ଆଦର୍ଶକୁ ସଂଶ୍ଳିଷ୍ଟ

କରିବା ଦେଖାଯାଏ । ସେହି ଛ'ଟି ଆଦର୍ଶ ହେଲା - ଶରୀର ଶ୍ରମ, ଆସ୍ୱାଦ, ଭୟ ବର୍ଜନ, ସର୍ବଧର୍ମ ସମାନତ୍ୱ, ସ୍ୱଦେଶୀ ଓ ସ୍ପର୍ଶଭାବନା । ବାପୁଜୀ ଏହି ପ୍ରତ୍ୟେକ ମୂଲ୍ୟଚୟର ଏକ ବାସ୍ତବବାଦୀ ଓ ବିଚାରଶୀଳ ବ୍ୟାଖ୍ୟା ଦେଲେ ଓ ସମସ୍ତ ଆଦର୍ଶକୁ ଜୀବନର ଶ୍ରେୟ ଭାବରେ ଯେ ବାସ୍ତବରେ ପ୍ରୟୋଗ କରିହେବ ତାହା ନାନା ପରୀକ୍ଷା ମାଧ୍ୟମରେ ଉଦ୍ୟମ କଲେ । ସେ ସବୁର ଏକ ସଂକ୍ଷିପ୍ତ ବିଶ୍ଳେଷଣ ଏଠାରେ କରାଯାଇପାରେ ।

ସତ୍ୟବାଦୀ ହେବା ଓ ସତ୍ୟକୁ ଏକ ମହତ୍ତର ମୂଲ୍ୟବୋଧ ଭାବେ ସ୍ୱୀକାର କରିବା ଗାନ୍ଧୀଙ୍କ ଜୀବନର ଏକ ବଡ ଆଦର୍ଶ ହୋଇ ରହିଥିଲା । ସତ୍ୟର ବିପରୀତ ହେଲା ଅସତ୍ୟ । ଅସତ୍ୟ ପନ୍ଥାରେ ଜୀବନ ବଞ୍ଚିବା ବା ଜୀବନର ବିଭିନ୍ନ କ୍ଷେତ୍ରରେ ମିଥ୍ୟା ଓ ଅସତ୍ୟର ଆଶ୍ରୟ ନେବା ଏକ ଅନୈତିକ ଭାବନା ବୋଲି ସେ ଗ୍ରହଣ କରିଥିଲେ । ଯାହା ବିଚାରସମ୍ମତ ଓ ବିବେକାନୁମୋଦିତ ତାହାକୁ ସେ ସତ୍ୟର ପନ୍ଥା ବୋଲି ନେଉଥିଲେ ଓ ଜ୍ଞାତସାରରେ କେବେହେଲେ ଅସତ୍ୟ ବା ମିଥ୍ୟାର ଆଶ୍ରୟ ନେଉ ନଥିଲେ । ସେଥିପାଇଁ ତାଙ୍କ ଆତ୍ମଜୀବନୀର ନାମ ରଖିଥିଲେ- "ସତ୍ୟର ପ୍ରୟୋଗ" । ଜଣେ ମଣିଷ ଭାବେ କେହି ଦୋଷଶୂନ୍ୟ ନୁହନ୍ତି । ତେବେ ନିଜର ତ୍ରୁଟିକୁ ସ୍ୱୀକାର କରିବା ଓ ସେହି ତ୍ରୁଟି ଭବିଷ୍ୟତରେ ନ କରିବା ପାଇଁ ସଂକଳ୍ପ ନେବା ଏକ ମହତ୍ ସ୍ୱଭାବର ପରିଚୟ ଦିଏ, ଯାହାକି ଗାନ୍ଧୀଙ୍କ ଜୀବନର ବୈଶିଷ୍ଟ୍ୟ ଅଟେ ।

ଅହିଂସା ପ୍ରାୟତଃ ବିଭିନ୍ନ ଧର୍ମ ଧାରଣାରେ ଏକ ସ୍ୱୀକୃତ ମୂଲ୍ୟବୋଧ । ତେବେ ସାମାଜିକ ଲକ୍ଷ୍ୟ ସାଧନ କ୍ଷେତ୍ରରେ ଅହିଂସାକୁ ଏକ ପନ୍ଥା ଭାବରେ ପ୍ରୟୋଗ କରିବା କ୍ଷେତ୍ରରେ ଗାନ୍ଧୀଙ୍କ ବିଚାର ଥିଲା ଅନନ୍ୟ । ଅହିଂସାକୁ ଜନତାର ମୁକ୍ତି ସଂଗ୍ରାମର ଅସ୍ତ୍ର ଭାବେ ଗ୍ରହଣ କରିବା କ୍ଷେତ୍ରରେ ଗାନ୍ଧୀଙ୍କର ବିଚାର ଥିଲା ଯୁଗାନ୍ତକାରୀ । ଅହିଂସା ଓ ଏହାର ପ୍ରୟୋଗାତ୍ମକ ଦିଗ ସତ୍ୟାଗ୍ରହ ବିଶ୍ୱ ଚିନ୍ତାମାନସକୁ ଗାନ୍ଧୀଙ୍କର ଏକ ବଡ ଅବଦାନ କହିଲେ ଅତ୍ୟୁକ୍ତି ହେବନାହିଁ । ସୁଖର କଥା ଗାନ୍ଧୀଙ୍କ ଜନ୍ମଦିବସକୁ ଆନ୍ତର୍ଜାତିକ ସ୍ତରରେ ଅହିଂସ ଦିବସ ଭାବେ ଜାତିସଙ୍ଘ ପାଳନ କରୁଛି ।

'ଅସ୍ତେୟ' ଚୌର୍ଯ୍ୟବୃତ୍ତିର ବିପରୀତ । ଚୋରି କରିବା ଏକ ଅନୈତିକ କାର୍ଯ୍ୟ । ତେବେ ଅସ୍ତେୟର ଏକ ବ୍ୟାପକତର ଅର୍ଥ ଗାନ୍ଧୀ କଲେ । ଅସାଧୁ ଜୀବନ ଯାପନ ଯେପରି ଏକ ଚୋରି ପ୍ରବୃତ୍ତି, ସେହିପରି ଶ୍ରମବିହୀନ ଉପାର୍ଜନ ମଧ୍ୟ ଗାନ୍ଧୀଙ୍କ ମାନଦଣ୍ଡରେ ଏକ ଚୌର୍ଯ୍ୟବୃତ୍ତି । ବିନା ଶ୍ରମରେ ରୋଜଗାର କରିବା ବା ଅନ୍ୟର ଉପାର୍ଜିତ ଅର୍ଥକୁ କୌଶଳ ପୂର୍ବକ ଉପଭୋଗ କରିବା ଅସ୍ତେୟର ବିପରୀତ । ଏହାର ଏକ ତାତ୍ପର୍ଯ୍ୟ ହେବ

ଯେ ପ୍ରତ୍ୟେକ ବ୍ୟକ୍ତି ନିଜର ଶ୍ରମଦ୍ୱାରା ଜୀବନର ଆବଶ୍ୟକତାକୁ ପୂରଣ କରିବା ଦରକାର । ବ୍ରହ୍ମଚର୍ଯ୍ୟ କ୍ଷେତ୍ରରେ ଗାନ୍ଧୀଙ୍କ ବିଚାରରେ କିଛିଟା ଅସ୍ପଷ୍ଟତା ଥିଲେ ମଧ୍ୟ ତାହାର ଏକ ସକାରାତ୍ମକ ଅର୍ଥ କରିବା ସମ୍ଭବ । ଏହାର ତାତ୍ପର୍ଯ୍ୟ ହେବ- କାମାସକ୍ତ ହୋଇ ବଞ୍ଚିବା ଏକ ମନୁଷ୍ୟୋଚିତ କର୍ତ୍ତବ୍ୟ ନୁହେଁ । ବିବାହିତ ଦମ୍ପତିଙ୍କ ସମ୍ବନ୍ଧକୁ ବ୍ରହ୍ମଚର୍ଯ୍ୟର ଉଲ୍ଲଙ୍ଘନ କୁହାଯିବ ନାହିଁ, ବରଂ ଏକ କାମାସକ୍ତ ଆଚରଣ ହିଁ ଯେ ଏକ ଗର୍ହିତ କାର୍ଯ୍ୟ ତାହାହିଁ ଏହାର ଅର୍ଥ ହେବ । ଅପରିଗ୍ରହର ବି ସେ ଏକ ସୁନ୍ଦର ବ୍ୟାଖ୍ୟା ଦେଲେ । କୌଣସି ସନ୍ନ୍ୟାସୀଙ୍କର ବୈରାଗ୍ୟକୁ ସାଧାରଣତଃ ଅପରିଗ୍ରହ କୁହାଯାଏ । ଯେଉଁମାନେ ସମସ୍ତ କାମନା, ବାସନାର ଉର୍ଦ୍ଧ୍ୱରେ ସେମାନେ ଅପରିଗ୍ରହୀ । ତେବେ ବାସ୍ତବ ଜୀବନରେ ଏହାର ଏକ ପ୍ରୟୋଗାତ୍ମକ ତାତ୍ପର୍ଯ୍ୟ ହେବ-ଆବଶ୍ୟକତାଠାରୁ ଅଧିକ ସମ୍ପତ୍ତି ଠୁଳ କରି ତାହାର ଅପପ୍ରୟୋଗ ନ କରିବା । ଏହି ପୃଷ୍ଠଭୂମିରେ ଗାନ୍ଧୀ ଯେଉଁ ନ୍ୟାସ ବା ଟ୍ରଷ୍ଟିସିପ ଭାବନା ଦେଇଥିଲେ ତାହା ଏକ ଅଭିନବ ବିଚାର ଥିଲା । ଆବଶ୍ୟକତାଠାରୁ ଅଧିକ ସମ୍ପତ୍ତି ଯଦି ଜଣେ ବ୍ୟକ୍ତି ପାଖରେ ଗଚ୍ଛିତ ହେଲା, ତେବେ ସାମାଜିକ ଉପକାର ଦିଗରେ ସେହି ସମ୍ପତ୍ତିକୁ ସେ ଇଚ୍ଛା ଅନୁସାରେ ବ୍ୟୟ କରିବ । ସେହିପରି ଶରୀରଶ୍ରମ ବା ଶ୍ରମର ମର୍ଯ୍ୟାଦା ଗାନ୍ଧୀଙ୍କ ବିଚାରରେ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ପ୍ରତ୍ୟେକ ବ୍ୟକ୍ତି ନିଜର ସାମର୍ଥ୍ୟ ଅନୁଯାୟୀ ଶରୀର ଶ୍ରମରେ ବ୍ରତୀ ହେବ ଓ ଶ୍ରମ ମାଧ୍ୟମରେ ଜୀବନର ଆବଶ୍ୟକତା ପୂରଣ କରିବ । ଏହାର ନୈତିକ ତାତ୍ପର୍ଯ୍ୟ ହେବ ସମାଜରେ ପ୍ରତ୍ୟେକ କାର୍ଯ୍ୟର ମହତ୍ତ୍ୱ ରହିଛି ଓ କୌଣସି କାର୍ଯ୍ୟକୁ ହୀନ ଦୃଷ୍ଟିରେ ଦେଖିବା ଅନୈତିକ ଓ ଅମାନବିକ । ସବୁକ୍ଷେତ୍ରରେ ଏକ ସଂଯମୀ ଓ ସରଳ ଜୀବନ ଧାରଣକୁ ସେ ପ୍ରାଧାନ୍ୟ ଦେଇ ଆସିଥିଲେ । ଏହି ଭାବନାରେ ଅନ୍ୟର ସୁଖ-ଦୁଃଖ ପ୍ରତି ସମ୍ବେଦନଶୀଳ ହେବାର ମାନସିକତା ବ୍ୟକ୍ତ ହୋଇଥିଲା । ସର୍ବତ୍ର ଭୟବର୍ଜନ ଗାନ୍ଧୀ ବିଚାରବୋଧରେ ଏକ ନୈତିକ ମୂଲ୍ୟ । ଜଣେ ମଣିଷ ଅନ୍ୟ ମଣିଷକୁ ଭୟ କରିବା ବା ଭୟରେ ମଥା ନତ କରିବା ଅମାନବିକ । ନିର୍ଭୟ ହେବା ଏକ ମହତ୍ତର ଗୁଣ । ଏହାର ସାମାଜିକ ତାତ୍ପର୍ଯ୍ୟ ହେବ ଅନ୍ୟକୁ ଭୟକରି ଅନ୍ୟାୟକୁ ସହିବା ଏକ ଅନୈତିକ କାର୍ଯ୍ୟ । ଅନ୍ୟାୟର ବିରୋଧ ଏକ ନୈତିକ କର୍ତ୍ତବ୍ୟ । ଅବଶ୍ୟ ଏ କ୍ଷେତ୍ରରେ ନାନା ପ୍ରଶ୍ନ ଜଡିତ । ତେବେ ଗାନ୍ଧୀ ସବଳର ଅହିଂସା ଓ ଦୁର୍ବଳର ଅହିଂସା ଭିତରେ କରିଥିବା ପାର୍ଥକ୍ୟ ପୃଷ୍ଠଭୂମିରେ ଭୟଶୂନ୍ୟତାକୁ ବ୍ୟାଖ୍ୟା କରାଯାଇପାରିବ । ଗାନ୍ଧୀ ଥିଲେ ଧର୍ମପ୍ରାଣ ଓ ରାଜନୀତିରେ ସମ୍ପୃକ୍ତ ଜଣେ ସନ୍ଥ । ତେବେ ତାଙ୍କର ଧର୍ମଚେତନା ଏକ ମହତ୍ତର ଜୀବନବୋଧ ପାଇଁ ପ୍ରେରଣାର ଉତ୍ସ ଥିଲା । ସତ୍ୟବାଦିତା, ନ୍ୟାୟବୋଧ, ମାନବିକ ସମ୍ପ୍ରୀତି ଓ ଭ୍ରାତୃତ୍ୱଭାବ ତାଙ୍କ ଦୃଷ୍ଟିରେ ଧର୍ମର ମୂଳାଦର୍ଶ । ପ୍ରତ୍ୟେକ ଧର୍ମ ପ୍ରତି

ତାଙ୍କର ଗଭୀର ସମ୍ମାନ ଥିଲା ଓ ପ୍ରତ୍ୟେକ ଧର୍ମର ଧର୍ମଗ୍ରନ୍ଥ ଓ ବାଣୀକୁ ସେ ପବିତ୍ର ମନେ କରୁଥିଲେ । ଗାନ୍ଧୀଙ୍କ ପାଖରେ କିଛି ଧର୍ମଜନିତ ରକ୍ଷଣଶୀଳତା ଥିଲେ ମଧ୍ୟ ଧର୍ମଗତ ସହନଶୀଳତା ଥିଲା ତାଙ୍କ ଜୀବନର ବଡ ଆଦର୍ଶ । ଧର୍ମାନ୍ଧତା ବା ଧର୍ମଜନିତ ଭେଦଭାବଠାରୁ ସେ ଥିଲେ ବହୁ ଉର୍ଦ୍ଧ୍ୱରେ । ଏହି ଦୃଷ୍ଟିରୁ ସେ ଥିଲେ ସଚ୍ଚା ଧର୍ମନିରପେକ୍ଷ । ସ୍ୱଦେଶୀ ଭାବନାଟିରେ ସ୍ୱାବଲମ୍ବନଶୀଳ ଅର୍ଥନୀତି ଓ ବ୍ୟକ୍ତି ସ୍ୱାଧୀନତାର ପ୍ରଶ୍ନଟି ନିହିତ ଥିବା ଦେଖାଯାଏ । ଉପନିବେଶବାଦୀ ବା ସାମ୍ରାଜ୍ୟବାଦୀ ଶୋଷଣର ସେ ଥିଲେ ବଡ଼ ସମାଲୋଚକ । ସାରା ବିଶ୍ୱରୁ ଉପନିବେଶବାଦୀ ବ୍ୟବସ୍ଥାର ମୂଳୋତ୍ପାଟନ କ୍ଷେତ୍ରରେ ତାଙ୍କର ବିଚାର ଓ ଜନଆନ୍ଦୋଳନ ଥିଲା ପ୍ରକୃତରେ କ୍ରାନ୍ତିକାରୀ । 'ସ୍ପର୍ଶ ଭାବନା' ଭାରତୀୟ ହିନ୍ଦୁ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ଥିଲା ଏକ ବୈପ୍ଳବିକ ଆହ୍ୱାନ । ଅସ୍ପୃଶ୍ୟତାକୁ ସେ ଏକ ଜାତୀୟ କଳଙ୍କ ବୋଲି ବିଚାର କରୁଥିଲେ । ଏହାଠାରୁ ବଳି ଅମାନବିକ ଭାବନା କିଛି ନଥାଇ ପାରେ । ସାମାଜିକ ସ୍ତରର ଭେଦଭାବ ଓ ଜାତିପ୍ରଥା ଜନିତ ଅସ୍ପୃଶ୍ୟତା ନୀତି ବିରୋଧୀ ଓ ମାନବିକତା ବିରୋଧୀ । ଏହାର ଦୂରୀକରଣ ପାଇଁ ସେ ସାରା ଦେଶରେ ପଦଯାତ୍ରା କରି ଜନସଚେତନତା ସୃଷ୍ଟି ପାଇଁ ପ୍ରୟାସ କରିଛନ୍ତି, ଯାହାକୁ ସେ ଧର୍ମଯାତ୍ରା ବୋଲି କହୁଥିଲେ ।

ଗାନ୍ଧୀ ଧର୍ମଗୁରୁ ନ ଥିଲେ ବା ସମାଜଠାରୁ ଦୂରେଇଯାଇ ନିଜର ପାରଲୌକିକ ମୋକ୍ଷ, ମୁକ୍ତି ପାଇଁ ଆଗ୍ରହୀ ନ ଥିଲେ । ବରଂ ଦେଶର ରାଜନୈତିକ ବ୍ୟବସ୍ଥାକୁ ସାମ୍ରାଜ୍ୟବାଦୀ ଶକ୍ତି ହାତରୁ ମୁକ୍ତ କରିବା ଥିଲା ତାଙ୍କର ଲକ୍ଷ୍ୟ । ଏହା ସହିତ ଭାରତୀୟ ସମାଜକୁ ପୁନର୍ଗଠିତ କରି ଏହାକୁ ଅହିଂସା, ସମତା, ଓ ମାନବିକ ମର୍ଯ୍ୟାଦା ଆଧାରରେ ଗଢ଼ି ତୋଳିବାକୁ ସେ ପ୍ରୟାସ କରିଥିଲେ । ତାଙ୍କ କଳ୍ପିତ ସର୍ବୋଦୟ ସମାଜର ମୁଖ୍ୟ ଆଭିମୁଖ୍ୟ ଥିଲା ଏକ ନ୍ୟାୟଯୁକ୍ତ, ସମତା ଆଧାରିତ ଅହିଂସ ସମାଜ । ଏହାରି ପୃଷ୍ଠଭୂମିରେ ସେ ତାଙ୍କର ଏକାଦଶ ବ୍ରତର ପରିକଳ୍ପନା କରିଥିଲେ । ପ୍ରତ୍ୟେକ ବ୍ୟକ୍ତି ପାଇଁ ଏହା ଥିଲା ଏକ ଆଚରଣବିଧି । ଗାନ୍ଧୀ ମାନବିକ ସମସ୍ୟା ପ୍ରତି ଉଦାସୀନ ରହି ସନ୍ନ୍ୟାସୀର ବୈରାଗ୍ୟ ନେଇ ନଥିଲେ । ବରଂ ସେ ଜଣେ ମାନବବାଦୀ ଭାବେ ଲୋକଙ୍କର ସମସ୍ୟା ବିଷୟରେ ଅବଗତ ହେଉଥିଲେ ଓ ସେହି ସମସ୍ୟାର ଏକ ନ୍ୟାୟପୂର୍ଣ୍ଣ ଓ ମାନବିକ ସମାଧାନ ପାଇଁ ଗମ୍ଭୀର ସମ୍ପୃକ୍ତି ବ୍ୟକ୍ତ କରିଥିଲେ । ଏହି ପୃଷ୍ଠଭୂମିରେ ତାଙ୍କର ଏକାଦଶବ୍ରତ ଭାରତୀୟ ଦର୍ଶନଧାରାରେ ଥିବା ପାଞ୍ଚଟି ମହାବ୍ରତର ଏକ ପରିବର୍ଦ୍ଧିତ ଓ ପ୍ରାୟୋଗିକ ଅଭିବ୍ୟକ୍ତି । ତାଙ୍କର ଅଭିନବ ବିଚାରଧାରା, ମୂଲ୍ୟବୋଧ ଗୁଡିକର ବାସ୍ତବବାଦୀ ବ୍ୟାଖ୍ୟାନ ଓ ଜୀବନଧାରାରେ ସେସବୁର ଯଥାର୍ଥ ପ୍ରୟୋଗ ପ୍ରକୃତରେ ଅନନ୍ୟ । ଏହି ବ୍ୟାଖ୍ୟାନରେ

ସଭ୍ୟ ଜୀବନଦୃଷ୍ଟିର ଯେଉଁ ଆବେଦନ ନିହିତ, ତାହା ମାନସିକ ଉତ୍କର୍ଷ ପାଇଁ ଯେ ଅଭିପ୍ରେତ ତାହା ଅନସ୍ୱୀକାର୍ଯ୍ୟ ।

ଗାନ୍ଧୀ କେବଳ ତତ୍ତ୍ୱର ଅବତାରଣା କରିନଥିଲେ, ବରଂ ଜୀବନର ବାସ୍ତବ ପ୍ରୟୋଗ କ୍ଷେତ୍ରରୁ ନୂଆ ନୂଆ ନୈତିକ ଆଦର୍ଶର ମୂଳଦୁଆ ପକାଇଥିଲେ । ଯେତେବେଳେ ଯେଉଁ ଆହ୍ୱାନର ସମ୍ମୁଖୀନ ହୋଇଥିଲେ, ସେହି ସମୟରେ ସେ ଯେଉଁ ନୂଆ ପ୍ରୟୋଗମାନ କରିଥିଲେ ତାହାରି ଭିତରୁ ଏକ ଆଦର୍ଶବାଦୀ ଓ ମୂଲ୍ୟବୋଧ ଭିତ୍ତିକ ରାଜନୈତିକ ସଂସ୍କୃତିର ବିକାଶ ହୋଇଥିଲା । ଭାରତୀୟ ରାଜନୈତିକ କାର୍ଯ୍ୟକଳାପରେ ତାଙ୍କର ସମ୍ପୃକ୍ତି ଭିତରୁ ଯେଉଁ ନୀତିବୋଧର ଭାବନା ଆସିଥିଲା, ତାହାର ଯେ ଏକ ସାର୍ବଜନୀନ ଉପଯୋଗିତା ରହିଛି ତାହା ଅନୁମେୟ ।

(୨୦.୧୧.୨୦୧୩)



# ଉଚ୍ଚାରଣ ଓ ଆଚରଣ

ନୀତି-ଅନୀତି, ନ୍ୟାୟ-ଅନ୍ୟାୟ, ପାପ-ପୁଣ୍ୟ, ଭଲ-ମନ୍ଦ ସାମାଜିକ ଜୀବନ ପ୍ରବାହରେ ହିଁ ବିଚାର୍ଯ୍ୟ । ଯେଉଁ କାର୍ଯ୍ୟ ନୀତିଯୁକ୍ତ ବା ସାମାଜିକ ଜୀବନରେ ଆଦୃତ ତାହା କରଣୀୟ ଓ ଯେଉଁ କାର୍ଯ୍ୟ ଅନୈତିକ ବା ମନ୍ଦ ତାହା ଅକରଣୀୟ । ଅବଶ୍ୟ କୌଣସି ସମାଜ ନୈତିକ ମାନଦଣ୍ଡରୁ ପରିପୂର୍ଣ୍ଣତା ଲାଭ କରିବା ପ୍ରାୟତଃ ଅସମ୍ଭବ । ସାମାଜିକ ଜୀବନଧାରାରେ ଭଲ, ମନ୍ଦ ରହିବା ଏକ ସାଧାରଣ ଅନୁଭବ । ତେବେ ଯେଉଁ କାର୍ଯ୍ୟ ସଦ୍‌ଗୁଣ-ଆଧାରିତ ବା ସଦାଚାରଯୁକ୍ତ ତାହା ନୈତିକ ଓ ଯାହା ଏହାର ବିପରୀତ ତାହା ଅନୈତିକ । ବସ୍ତୁତଃ ନୈତିକତା ମୁଖ୍ୟତଃ ଏକ ସାମାଜିକ କର୍ତ୍ତବ୍ୟ ଓ ଏହାର ପରିସର ସାମାଜିକ ସମ୍ବନ୍ଧ ପୃଷ୍ଠଭୂମିରେ ପ୍ରଣିଧାନ ଯୋଗ୍ୟ ।

ଉତ୍ତମ ଆଚରଣ ଯଦି ବ୍ୟକ୍ତି ବା ଗୋଷ୍ଠୀ ଜୀବନରେ ଏକ ସାଧାରଣ ସ୍ୱଭାବରେ ପରିଣତ ହୋଇଯାଏ, ସମାଜ ନୈତିକ ମାନଦଣ୍ଡରୁ ଉତ୍ତମ ହୁଏ । ଯେଉଁଠି ସାଧୁତା, କର୍ତ୍ତବ୍ୟନିଷ୍ଠା, ଶୃଙ୍ଖଳାଜ୍ଞାନ ଜନଜୀବନର ଧାରାରେ ଅଧିକ ପ୍ରତିଫଳିତ ତାହା ଏକ ଉନ୍ନତ ସମାଜର ଚିତ୍ର ଦିଏ, ଅଥଚ ଯେଉଁଠି ଏ ସବୁର ବ୍ୟତିକ୍ରମ ସାଧାରଣ ଘଟଣା ହୋଇଯାଏ ତାହା ଏକ କ୍ଷୟଶୀଳ ପରିବେଶର ସୂଚନା ପ୍ରଦାନ କରେ । ସମାଜରେ ସବୁ ମଣିଷ ଯେ ସାଧୁ, କର୍ତ୍ତବ୍ୟ ପରାୟଣ ଓ ଶୃଙ୍ଖଳିତ ହୋଇଯିବେ ତାହା ହୁଏତ ସମ୍ଭବ ନ ହୋଇପାରେ । ତେବେ ଅସାଧୁତା ବା ବିଶୃଙ୍ଖଳା ସାମାଜିକ ଜୀବନର ବ୍ୟତିକ୍ରମ ହେବା ଆବଶ୍ୟକ । ଯାହା ବ୍ୟତିକ୍ରମ ହେବା ଆବଶ୍ୟକ, ତାହା ଯଦି ଧାରାରେ ପରିଣତ ହୋଇଯାଏ ଓ ତାହା ପ୍ରତି ଅଧିକ ବ୍ୟକ୍ତି ଆକୃଷ୍ଟ ହୁଅନ୍ତି, ଅଥଚ ସାଧୁତା ଓ କର୍ତ୍ତବ୍ୟନିଷ୍ଠା ସାମାଜିକ ଜୀବନର ଧାରାରୁ ଅପସରି ଯାଏ ତେବେ ସମାଜ ରୁଗ୍‌ଣ ବା କ୍ଷୟଶୀଳ ହୋଇପଡେ । ପୁନଶ୍ଚ ଯଦି ସାମାଜିକ ଜୀବନଧାରାରେ ସାଧୁ ଓ କର୍ତ୍ତବ୍ୟପରାୟଣ ବ୍ୟକ୍ତିମାନେ ସବୁ ସ୍ତରରେ ପ୍ରତିବନ୍ଧକର ସମ୍ମୁଖୀନ ହୁଅନ୍ତି ଅଥଚ ଅସାଧୁ ଓ ଦୁର୍ନୀତିଗ୍ରସ୍ତ ଲୋକମାନେ ଜୀବନରେ

ଉନ୍ନତିକରି ଚାଲନ୍ତି ଓ ସାମାଜିକ ସମ୍ମାନର ଅଧିକାରୀ ହୁଅନ୍ତି ତାହା ଏକ କ୍ଷୟଶୀଳ ସମାଜର ଚିତ୍ର ପ୍ରଦାନ କରେ ।

ନୀତି, ନୈତିକତା, ସାଧୁତା,ମହତ୍ତର ଜୀବନବୋଧ ଭାବେ ଏକ ବିଚାରଶୀଳ ଦୃଷ୍ଟିରୁ ଉଦ୍ଭବ ହେବା ଦେଖାଯାଏ । ମଣିଷ ଯେତେ ଅଧିକ ବିଚାରଶୀଳ ହୁଏ, ଅନ୍ୟ ବ୍ୟକ୍ତି ବା ବୃହତ୍ତର ସମାଜକୁ ଭ୍ରାତୃତ୍ୱର ଦୃଷ୍ଟିରେ ଦେଖେ, ସେ ସେତେ ଉତ୍ତମ ସ୍ୱଭାବର ଅଧିକାରୀ ହୁଏ । ଯେଉଁଠି ବିଚାରଶୀଳତା ପରିବର୍ତ୍ତେ କୌଣସି ଆବେଗ ବ୍ୟକ୍ତି ସ୍ୱଭାବକୁ କବଳିତ କରେ, ଏକ ଭେଦଭାବମୂଳକ ମାନସିକତା ବ୍ୟକ୍ତି ସ୍ୱଭାବର ଅଙ୍ଗ ହୋଇପଡେ ଓ ନିଜର ସ୍ୱାର୍ଥ ହିଁ ସବୁଥିରେ ନିର୍ଣ୍ଣାୟକ ହୋଇଉଠେ ସେ କ୍ଷେତ୍ରରେ ବ୍ୟକ୍ତି ସ୍ୱଭାବ ଉନ୍ନତ ହୋଇପାରେ ନାହିଁ । ବ୍ୟକ୍ତି ସ୍ୱଭାବରେ ଭଲ ରହିଛି, ମନ୍ଦ ବି ରହିଛି, ତ୍ୟାଗର ଭାବନା ରହିଛି, ସ୍ୱାର୍ଥପର ମନୋଭାବ ବି ରହିଛି । ବ୍ୟକ୍ତି ସ୍ୱଭାବତଃ ଭଲ, ସାମାଜିକ ପ୍ରଭାବ ବ୍ୟକ୍ତିକୁ କଳୁଷିତ କରେ; ଅର୍ଥାତ୍ ଭଲଗୁଣ ବ୍ୟକ୍ତିର ସହଜାତ ଅଥଚ ମନ୍ଦ-ସ୍ୱଭାବ ସମାଜରୁ ବ୍ୟକ୍ତି ଅର୍ଜନ କରେ ବୋଲି ଗୋଟିଏ ମତ ରହିଛି । ଠିକ୍ ତାର ବିପରୀତ ଧାରଣାଟି ହେଉଛି ବ୍ୟକ୍ତି ପ୍ରବୃତ୍ତିଗତ ଭାବେ ସ୍ୱାର୍ଥପର, ଆତ୍ମକୈନ୍ଦ୍ରିକ ଓ ମନ୍ଦ; ବରଂ ଶିକ୍ଷା, ସାମାଜିକ ମୂଲ୍ୟବୋଧ, ପାରିବାରିକ ସଂସ୍କାର ବ୍ୟକ୍ତି ସ୍ୱଭାବକୁ ଅଧିକ ନୀତିଯୁକ୍ତ କରିବାରେ ସାହାଯ୍ୟ କରିଥାଏ । ଏ ପ୍ରତ୍ୟେକ ମତ ସପକ୍ଷରେ ଓ ବିପକ୍ଷରେ ଯୁକ୍ତି ଦିଆଯାଇପାରେ । ତେବେ ସେହି ବିବାଦକୁ ଏଠାରେ ନ ଯାଇ ଏହା କୁହାଯାଇପାରେ ଯେ ମଣିଷ ଭିତରେ ସୁପ୍ରବୃତ୍ତି ଯେପରି ରହିଛି, କୁପ୍ରବୃତ୍ତି ମଧ୍ୟ ସେହିପରି ରହିଛି, ବ୍ୟକ୍ତି ଯେପରି ବିଚାରଶୀଳ ହୋଇପାରେ ସେହିପରି କୁସଂସ୍କାରୀ ମଧ୍ୟ ହୋଇପାରେ । ବ୍ୟକ୍ତିର ଆବେଗ ଭଲ ଦିଗରେ ବା ମନ୍ଦ ଦିଗରେ ପରିଚାଳିତ ହୋଇପାରେ, ଆମର ବୁଦ୍ଧି ଏକ ସାଧନ ଭାବରେ ଭଲ ଦିଗରେ ବା ମନ୍ଦ ଦିଗରେ ଆମକୁ ନେଇପାରେ । ବ୍ୟକ୍ତିର ଆବେଗିକ ସ୍ତରରେ ସ୍ନେହ, ଦୟାଭାବ, ମାନବିକ ସମ୍ବେଦନଶୀଳତା ଓ ନ୍ୟାୟଭାବ ରହିବା ଯେପରି ସମ୍ଭବ, ସେହିପରି ଈର୍ଷା, ଘୃଣା, ସ୍ୱାର୍ଥପରତା ରହିବା ମଧ୍ୟ ସମ୍ଭବ । ଆମର ଲକ୍ଷ୍ୟ, ଇଚ୍ଛା, ଆକାଂକ୍ଷାକୁ ଚରିତାର୍ଥ କରିବା ପାଇଁ ଆମର ବିଚାର ବୁଦ୍ଧି ବିନିଯୋଗ ହୋଇଥାଏ । ଏକ ଭଲ ଲକ୍ଷ୍ୟ ପାଇଁ ବୁଦ୍ଧିର ପ୍ରୟୋଗ ଯେପରି ସମ୍ଭବ, ଏକ ମନ୍ଦ ଲକ୍ଷ୍ୟ ପାଇଁ ମଧ୍ୟ ବୁଦ୍ଧିର ପ୍ରୟୋଗ ସେହିଭଳି ସମ୍ଭବ ।

କର୍ତ୍ତବ୍ୟବୋଧ ଓ ନୀତିବୋଧ ସମାନ ନା ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ରହିଛି- ଏକ ଜଟିଳ ପ୍ରଶ୍ନ । କର୍ତ୍ତବ୍ୟବୋଧ ଏକ ନାଗରିକର ସାମାଜିକ ଦାୟିତ୍ୱ । ସାମାଜିକ ଜୀବନରେ କେତେକ କର୍ତ୍ତବ୍ୟ ପାଳନ କରିବା ଜଣେ ନାଗରିକର କର୍ତ୍ତବ୍ୟ । ରାସ୍ତାରେ

ଟ୍ରାଫିକ ନିୟମ ମାନିବା, ଯଥା ସମୟରେ ସରକାରଙ୍କୁ ଆୟକର ପୈଠ କରିବା, ସରକାରୀ ବୃତ୍ତିରେ ଥିଲେ ନିଜର କାର୍ଯ୍ୟକୁ ଯଥାଯଥ ଭାବେ ସମାପନ କରିବା, ସର୍ବସାଧାରଣ ସ୍ଥାନରେ ଶୃଙ୍ଖଳିତ ଆଚରଣ ଦେଖାଇବା ଜଣେ ନାଗରିକର କର୍ତ୍ତବ୍ୟ । ଯେଉଁ ବ୍ୟକ୍ତି ନିଜର କର୍ତ୍ତବ୍ୟ କ୍ଷେତ୍ରରେ ଅବହେଳା ପ୍ରଦର୍ଶନ କରେ, ଆଇନକୁ ଲଘଂନ କରେ, ବିଶୃଙ୍ଖଳିତ ଆଚରଣ ଦେଖାଏ ସେ ରାଷ୍ଟ୍ରର ନିୟମ ଅନୁଯାୟୀ ଦଣ୍ଡନୀୟ ହୋଇଥାଏ । ଅପରପକ୍ଷରେ ନୀତିବୋଧର ପ୍ରଶ୍ନ ଏକ ନୈତିକ ଦାୟିତ୍ୱ ଭାବେ ଆସିଥାଏ । ଜଣେ ବୃଦ୍ଧ ଲୋକଙ୍କୁ ଉତ୍ତମ ବ୍ୟବହାର ଦେଖାଇବା, ରାସ୍ତାରେ ଯିବାବେଳେ ଅସୁବିଧାରେ ପଡିଥିବା ଜଣେ ଦୃଷ୍ଟିହୀନ ବ୍ୟକ୍ତିଙ୍କ ପ୍ରତି ସହାନୁଭୂତିର ହାତ ବଢ଼ାଇବା, ପଡୋଶୀଙ୍କ ବିପଦପୂର୍ଣ୍ଣ ପରିସ୍ଥିତିରେ ତାଙ୍କୁ ସାହାଯ୍ୟ କରିବା ପ୍ରସଙ୍ଗ ନୀତିବୋଧ ପରିସରରେ ଆସିଥାଏ । ଏହି କାର୍ଯ୍ୟ ନ କଲେ ବା ଏହାପ୍ରତି ଉଦାସୀନ ରହିଲେ ଜଣେ ଦଣ୍ଡନୀୟ ହେବନାହିଁ, କିନ୍ତୁ ଏହା କରିବା ଏକ ମାନବୋଚିତ କର୍ତ୍ତବ୍ୟ ହୋଇଥାଏ । ଯେଉଁ ବ୍ୟକ୍ତିଙ୍କର ଆଚରଣ କ୍ଷେତ୍ରରେ ମାନବୋଚିତ ସମ୍ବେଦନର ପ୍ରତିଫଳନ ଦେଖିବାକୁ ମିଳେ ସେ ଯେ ଜଣେ ଉତ୍ତମ ସ୍ୱଭାବର ବ୍ୟକ୍ତି ଏହା କୁହାଯାଇପାରେ । ଏହା ନୈତିକ ଉତ୍କୃଷ୍ଟତାର ପରିଚୟ ଦିଏ । ଜଣଙ୍କର ଚରିତ୍ର ଭିତରେ ଯଦି ସମ୍ବେଦନଶୀଳ ଜୀବନ ଦୃଷ୍ଟି, ପରୋପକାରୀ ମନୋଭାବ ଓ ଭ୍ରାତୃତ୍ୱଭାବର ପରିଚୟ ମିଳେ ତେବେ ସେ ଯେ ଜଣେ ଉତ୍ତମ ସ୍ୱଭାବର ବ୍ୟକ୍ତି ଏହା କୁହାଯାଇପାରେ । ଉତ୍ତମସ୍ୱଭାବ, ଚାରିତ୍ରିକ ଶୃଙ୍ଖଳା, ମାନବୋଚିତ ଆଚରଣ ନୀତିବୋଧ ସହ ଅଙ୍ଗାଙ୍ଗୀ ଭାବେ ଜଡିତ । ଅବଶ୍ୟ ସାଧୁତା ଓ କର୍ତ୍ତବ୍ୟ ଜ୍ଞାନ ଯଦି ବ୍ୟକ୍ତି ସ୍ୱଭାବର ଅବିଚ୍ଛିନ୍ନ ଅଙ୍ଗ ହୋଇଯାଏ ତେବେ ତାହା ବ୍ୟକ୍ତିର ନୈତିକ ଉତ୍ତରଣରେ ସହାୟକ ହୋଇଥାଏ । ଉତ୍ତମ ଚରିତ୍ର ବା ଚାରିତ୍ରିକ ଶୃଙ୍ଖଳା ଯଦି ବ୍ୟକ୍ତି ସ୍ୱଭାବର ଅବିଚ୍ଛିନ୍ନ ଅଙ୍ଗ ହୋଇଥାଏ, ତାହା ବ୍ୟକ୍ତିର ନୈତିକ ଦୃଷ୍ଟିଭଙ୍ଗୀକୁ ଉନ୍ନତ ଓ ମାର୍ଜିତ କରିଥାଏ ।

ବ୍ୟକ୍ତିର କାର୍ଯ୍ୟକୁ ମୂଲ୍ୟାୟନ କରିବା ବେଳେ କୌଣସି ମାନଦଣ୍ଡ ତ ନିଶ୍ଚୟ ରହେ । ଏକ ମାନଦଣ୍ଡ ଆଧାରରେ ଏକ କାର୍ଯ୍ୟକୁ ଯଥାର୍ଥ ବା ଅଯଥାର୍ଥ, ଉଚିତ ବା ଅନୁଚିତ ଭାବେ ନିର୍ଣ୍ଣୟ କରାଯାଇଥାଏ । ପରିସ୍ଥିତି ବା ମାନଦଣ୍ଡ ବଦଳିଗଲେ କାର୍ଯ୍ୟର ନୈତିକ ତାତ୍ପର୍ଯ୍ୟ ମଧ୍ୟ ଭିନ୍ନ ହୋଇଯାଏ । ସତ କହିବା ଏକ ନୀତିପୂର୍ଣ୍ଣ କାର୍ଯ୍ୟ, କିନ୍ତୁ ସତ କହି ଅନ୍ୟକୁ ବିପଦରେ ପକାଇବା ହୁଏତ ସେହି ପରିସ୍ଥିତିରେ ଯଥାର୍ଥ ହୋଇ ନପାରେ । ହିଂସା ଆଚରଣ କରିବା ଅନୈତିକ କିନ୍ତୁ ଏକ ରଣକ୍ଷେତ୍ରରେ ଏହା ଅନୈତିକ ନୁହେଁ । ବାପା, ମା'ଙ୍କ ମନରେ ଆଘାତ ନ ଦେବା ଏକ ନୈତିକ କର୍ତ୍ତବ୍ୟ, କିନ୍ତୁ ଜାତିଆଣ

ଦୃଷ୍ଟିଭଙ୍ଗୀରେ ମଜ୍ଜି ରହିଥିବା ବାପା-ମା'ଙ୍କ କଥାରୁ ଦୂରେଇ ଯାଇ ଜାତିଗତ ଭେଦଭାବକୁ ପ୍ରତ୍ୟାଖ୍ୟାନ କରିବା ଅନୈତିକ ନ ହୋଇପାରେ । ସୁତରାଂ ଏକ କାର୍ଯ୍ୟର ନୈତିକ ମୂଲ୍ୟାୟନ ପୃଷ୍ଠଭୂମିରେ ପ୍ରସଙ୍ଗ ବା ମାନଦଣ୍ଡଟି ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ତେବେ ଏକ କାର୍ଯ୍ୟ ପଶ୍ଚାତରେ ବ୍ୟକ୍ତିର ଉଦ୍ଦେଶ୍ୟ ହିଁ ନୈତିକ ମୂଲ୍ୟାୟନ କ୍ଷେତ୍ରରେ ନିର୍ଣ୍ଣାୟକ ମନେହୁଏ । ଏହି ଦୃଷ୍ଟିରୁ ଏକ କାର୍ଯ୍ୟର ପରିଣତି ଯେତିକି ଗୁରୁତ୍ୱପୂର୍ଣ୍ଣ ତାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ବ୍ୟକ୍ତି କେଉଁ ଉଦ୍ଦେଶ୍ୟ ରଖି ସେହି କାର୍ଯ୍ୟ କରିବାକୁ ଚାହୁଁଛନ୍ତି । ମନ୍ଦ ଉଦ୍ଦେଶ୍ୟ ରଖି ସଫଳତା ପାଇବା ନୈତିକ ମାନଦଣ୍ଡରୁ ଅଗ୍ରହଣୀୟ, ଅଥଚ ସୁଉଦ୍ଦେଶ୍ୟ ରଖି କରୁଥିବା କାର୍ଯ୍ୟରୁ ବିଫଳତା ଆସିଲେ ବି ତାହା ଗ୍ରହଣୀୟ । ସୁଉଦ୍ଦେଶ୍ୟ ରଖି କରାଯାଉଥିବା କାର୍ଯ୍ୟରୁ ଯେ ସବୁବେଳେ ସୁଫଳ ମିଳିବ ଏହା କୁହାଯାଇନପାରେ, ତେବେ ଉଦ୍ଦେଶ୍ୟର ନୈତିକ ତାତ୍ପର୍ଯ୍ୟ ଉପରେ ହିଁ ଏକ କାର୍ଯ୍ୟର ନୈତିକ ମୂଲ୍ୟାୟନ ଅନେକାଂଶରେ ନିର୍ଭର କରେ ।

ପୁନଶ୍ଚ ଉଦ୍ଦେଶ୍ୟ ଓ ସାଧନ କ୍ଷେତ୍ରରେ ବି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ । କେବଳ ଉଦ୍ଦେଶ୍ୟ ମହତ ହେଲେ କାର୍ଯ୍ୟଟି ମହତ ହୁଏ ନାହିଁ । ଉଦ୍ଦେଶ୍ୟ ଚରିତାର୍ଥ ପାଇଁ ପ୍ରୟୋଗ କରୁଥିବା ପନ୍ଥା ବି ମହତ ହେବା ଆବଶ୍ୟକ । ଏକ ସୁଉଦ୍ଦେଶ୍ୟ ନେଇ ମନ୍ଦ ବା ଅନୈତିକ ପନ୍ଥାର ଆଶ୍ରୟ ନେବା ନୈତିକ ମାନଦଣ୍ଡରେ ଯଥାର୍ଥ ମନେହୁଏ ନାହିଁ । ଅସତ୍ ଉପାୟରେ ଅର୍ଥ ଉପାର୍ଜନ କରି, ସେଲସ୍ ଟାକ୍ସ, ଇନ୍‌କମ୍ ଟାକ୍ସ ଫାଙ୍କି ଏକ ପୂଜାସ୍ଥଳ ନିର୍ମାଣ ପାଇଁ ଗଭୀର ସମ୍ପୃକ୍ତି ଦେଖାଇବା ବା ଅର୍ଥଦାନ କରିବା କାର୍ଯ୍ୟକୁ ନୀତିପୂର୍ଣ୍ଣ କୁହାଯିବ କି ? ଏକ କାର୍ଯ୍ୟର ନୈତିକ ଉତ୍କର୍ଷ ଉଦ୍ଦେଶ୍ୟ- ଆଧାରିତ ନା ସାଧନ ଆଧାରିତ ? ନୀତିଶାସ୍ତ୍ରର ପରିସରରେ ଏ ପ୍ରସଙ୍ଗ ଉପରେ ବହୁ ବିତର୍କ ହେବା ଦେଖାଯାଏ । ନୀତି, ନୈତିକତା, ଉତ୍ତମ ସ୍ୱଭାବ ନେଇ ସଚେତନତା ରହିଲେ ବ୍ୟକ୍ତି ନୈତିକ ଜୀବନ ପ୍ରତି ଆଗ୍ରହ ରଖିଥାଏ ବୋଲି ଗୋଟିଏ ମତ ରହିଛି । ବହୁ ସମୟରେ ଅଜ୍ଞତା ଜନିତ କାରଣରୁ ବ୍ୟକ୍ତି ଅନୈତିକ ହୋଇଥାଏ ବୋଲି କୁହାଯାଏ । ଅର୍ଥାତ୍ ନୀତିପୂର୍ଣ୍ଣ ଜୀବନ ବଞ୍ଚିବା ପାଇଁ ନୀତି-ଅନୀତି ସମ୍ପର୍କରେ ବୌଦ୍ଧିକ ସ୍ୱଚ୍ଛତା ରହିବା ଆବଶ୍ୟକ । ନୈତିକତା ସମ୍ପର୍କରେ ଜ୍ଞାନ ନ ରହିଲେ ବ୍ୟକ୍ତି କିପରି ନୀତିପୂର୍ଣ୍ଣ ଜୀବନ ପ୍ରତି ଆଗ୍ରହୀ ହେବ । ଯେଉଁମାନେ ନୀତିପୂର୍ଣ୍ଣ ଜୀବନ ଯାପନ ପ୍ରତି ଆନ୍ତରିକତା ପ୍ରଦର୍ଶନ କରନ୍ତି, ସେମାନେ ନୀତିପୂର୍ଣ୍ଣ ଜୀବନର ମହନୀୟତା ନେଇ ବେଶ୍ ସଚେତନ ବୋଲି ଧାରଣା ଆସେ । ବସ୍ତୁତଃ ମହନୀୟ ସ୍ୱଭାବ ଯେପରି ନୀତି-ଜ୍ଞାନକୁ ବୁଝାଏ ସେହିପରି ଏକ ସୁଅଭ୍ୟାସକୁ ମଧ୍ୟ ବୁଝାଏ । ସତ୍‌କାର୍ଯ୍ୟ ଯଦି ବ୍ୟକ୍ତିର ଅଭ୍ୟାସରେ ରୂପାନ୍ତରିତ ହୁଏ, ତେବେ ବ୍ୟକ୍ତି ସ୍ୱଭାବ ମହନୀୟ ହୋଇଉଠେ ।

ଏହି ମତର ଅନେକ ଆପେକ୍ଷିକ ଉପଯୋଗିତା ବା ମହତ୍ତ୍ୱ ରହିଥିଲେ ମଧ୍ୟ ଏହାର କେତେକ ଦୁର୍ବଳତା ରହିବା ବି ସମ୍ଭବ । ମହତ୍ ସ୍ୱଭାବ ଯଦି ନୈତିକ ଉତ୍କୃଷ୍ଟତା ଜନିତ ଜ୍ଞାନ ଉପରେ ନିର୍ଭର କରେ ଓ ଅନୈତିକ ହେବା ଅଜ୍ଞତାର ପରିଣାମ ହୁଏ, ସେ କ୍ଷେତ୍ରରେ ଅନୈତିକ ବା ଅସାଧୁ କାର୍ଯ୍ୟରେ ସମ୍ପୃକ୍ତ ବ୍ୟକ୍ତିଙ୍କୁ ତାଙ୍କର କାର୍ଯ୍ୟ ପାଇଁ ଉତ୍ତରଦାୟୀ କରିହେବ ନାହିଁ । କାରଣ ଜଣେ ଅଜ୍ଞତା ଯୋଗୁଁ ଅନ୍ୟାୟ କାର୍ଯ୍ୟରେ ସମ୍ପୃକ୍ତ ବୋଲି କୁହାଯିବ । ସେହିପରି ଏହା ମଧ୍ୟ ସମାଜରେ ଦେଖିବାକୁ ମିଳେ ଯେ ଜଣେ ଭଲମନ୍ଦର ପାର୍ଥକ୍ୟ ନେଇ ବେଶ୍ ସଚେତନ, ତେବେ ଭଲ ଜନିତ ତାଙ୍କର ଜ୍ଞାନରୁ ଭଲ କାର୍ଯ୍ୟରେ ସମ୍ପୃକ୍ତ ହେବା ତାଙ୍କ ପାଖରେ ଦେଖାଯାଏ ନାହିଁ । ଭଲ, ନ୍ୟାୟ, ସାଧୁତା ନେଇ ଜ୍ଞାନ ଭଲ ବ୍ୟକ୍ତି ହେବାକୁ ବା ଭଲ କାର୍ଯ୍ୟରେ ସମ୍ପୃକ୍ତ ହେବାକୁ ପ୍ରେରଣା ସବୁବେଳେ ଦିଏ ନାହିଁ । ଜ୍ଞାନରୁ ଯେ ଉତ୍ତମ ସ୍ୱଭାବ ସର୍ବଦା ନିଷ୍ପନ୍ନ ହୁଏ ଏହା କୁହାଯାଇପାରିବ ନାହିଁ । ସମାଜରେ ଏପରି ବ୍ୟକ୍ତି ଦେଖାଯାନ୍ତି ଯେଉଁମାନେ ଧର୍ମ, ନୀତିପୂର୍ଣ୍ଣ ଜୀବନ, ଆଧ୍ୟାତ୍ମିକତା ଉପରେ ସୁନ୍ଦର ପ୍ରବଚନ ଦେଇପାରନ୍ତି, କିନ୍ତୁ ନିଜ ଜୀବନଧାରରେ ନାନା ଅନୈତିକ କାର୍ଯ୍ୟରେ ସମ୍ପୃକ୍ତ ରୁହନ୍ତି । ସୁତରାଂ ନୀତି-ନୈତିକତାର ଜ୍ଞାନ ବା ଉଚ୍ଚାରଣ ଓ ନୀତିପୂର୍ଣ୍ଣ ଆଚରଣ ଭିତରେ ପାର୍ଥକ୍ୟ କରାଯିବା ସମ୍ଭବ । ବିଚାର ବା ଜ୍ଞାନ ଓ ବାସ୍ତବ ଆଚରଣ ଭିତରେ ସମନ୍ୱୟ ରହିଲେ ବ୍ୟକ୍ତି ସ୍ୱଭାବ ମହତ୍ତର ହେବା ସମ୍ଭବ ହୋଇଥାଏ ।

ନୀତି, ନୈତିକତା, କର୍ତ୍ତବ୍ୟ ଜ୍ଞାନ ଜନିତ ବୌଦ୍ଧିକ ସ୍ପଷ୍ଟତା ରହିବା ଆବଶ୍ୟକ, କିନ୍ତୁ ଅଧିକ ମହତ୍ତ୍ୱପୂର୍ଣ୍ଣ ହେଉଛି ଏହାକୁ ସ୍ୱଭାବ ଓ ଅଭ୍ୟାସରେ ରୂପାନ୍ତରିତ କରିବା । ବ୍ୟକ୍ତି ଭିତରେ ଶୃଙ୍ଖଳାବୋଧ, କର୍ତ୍ତବ୍ୟଜ୍ଞାନ, ସମ୍ବେଦନଶୀଳ ଜୀବନ ଦୃଷ୍ଟି ଓ ମାନବିକତାର ଭାବନା ସୃଷ୍ଟି କରିବା କ୍ଷେତ୍ରରେ ଶିକ୍ଷା ବ୍ୟବସ୍ଥା, ଗଣ ମାଧ୍ୟମ, ବୃହତ୍ତର ସାମାଜିକ ପରିବେଶର ପ୍ରଧାନ ଭୂମିକା ରହିବା ଦେଖାଯାଏ । ଯଦି ଏସବୁ ବ୍ୟବସ୍ଥା କଳୁଷିତ ହୋଇଯାଏ ତାହାର ନାନା ନକାରାତ୍ମକ ପ୍ରଭାବ ବ୍ୟକ୍ତି ଉପରେ ପଡେ । ଜଣଙ୍କର ମନୋଭାବ ଭଲ ହେଲେ ମଧ୍ୟ ଏକ କଳୁଷିତ ପରିବେଶରେ ଜଣେ ଅସାଧୁ ଓ ଅନୈତିକ ହେବାର ସମ୍ଭାବନା ଆସେ । ସୁତରାଂ ଗୋଟିଏ ବ୍ୟବସ୍ଥାକୁ ସୁଧାରିବା ପାଇଁ ପ୍ରୟାସ ହେଲେ ତାର ସକାରାତ୍ମକ ପ୍ରଭାବରେ ବ୍ୟକ୍ତି ଚରିତ୍ର ଉନ୍ନତ ହୋଇପାରେ । ଉଚ୍ଚାରଣ ଓ ଆଚରଣ ଭିତରେ ସମନ୍ୱୟ ରହିଲେ ନୈତକ ଉତ୍କୃଷ୍ଟତା କ୍ଷେତ୍ରରେ ବ୍ୟକ୍ତିର ଉତ୍ତରଣ ସମ୍ଭବ ହୁଏ ।

(୨୭.୧୧.୧୩)



# ନୈତିକତା ଓ ସାଂପ୍ରତିକ ସ୍ଥିତି

ସାମାଜିକ ବିକାଶଧାରାରେ ନୀତି, ନୈତିକତାର ବିକାଶ ହେଉଛି ନା ଅବକ୍ଷୟ ହେଉଛି ? ଗୋଟିଏ ଶତାବ୍ଦୀ ଭିତରେ ଜ୍ଞାନ, ବିଜ୍ଞାନର ଯଥେଷ୍ଟ ବିକାଶ ହୋଇଛି, କେତେ କେତେ ନୂଆ ପ୍ରଯୁକ୍ତି ଜୀବନ ପ୍ରବାହକୁ ସୁଖମୟ କରିଛି ଓ ଶିକ୍ଷାର ପ୍ରସାର ଯୋଗୁ ଜୀବନର ଗୁଣାତ୍ମକ ମାନ ବହୁ ଭାବରେ ବୃଦ୍ଧି ପାଇଛି । ସବୁ ଦେଶରେ ସାମାଜିକ ସଚେତନତା ନାନା କାରଣ ଯୋଗୁ ବିକଶିତ ହୋଇଚାଲିଛି । ଗଣ ମାଧ୍ୟମର ବହୁଳ ପ୍ରସାର ଯୋଗୁ ସାମାଜିକ ସ୍ତରରେ ଲୋକମାନେ ନିଜର ଅଧିକାର ନେଇ ଅଧିକରୁ ଅଧିକ ସଚେତନ ହେଉଛନ୍ତି ଓ ଅନେକ କ୍ଷେତ୍ରରେ ନିଜର ସଂପୃକ୍ତି ବ୍ୟକ୍ତ କରୁଛନ୍ତି । ଏସବୁ ସଭ୍ୟତାର ବିକାଶ ଧାରାରେ ସକାରାତ୍ମକ ଉତ୍ତରଣର ସଙ୍କେତ ବହନ କରେ । ତେବେ ପ୍ରଶ୍ନ ହେଉଛି ସମାଜର ଭୌତିକ ବିକାଶ ସହ ନୈତିକ ବିକାଶ ସମତାଳରେ ସଂଘଟିତ ହେଉଛି କି ନାହିଁ ? ଭୌତିକ ବିକାଶର ବା ଦାରିଦ୍ର୍ୟର ମୂଲ୍ୟାୟନ ପାଇଁ ବିଭିନ୍ନ ମାନଦଣ୍ଡ ପ୍ରୟୋଗ କରାଯାଇପାରେ । କେତେ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି, କେତେ ଲୋକ ବେକାର ଅଛନ୍ତି, ନିରକ୍ଷର ଲୋକଙ୍କ ଅନୁପାତ କେତେ, ବାଳଶ୍ରମିକ ଅଛନ୍ତି କି, କେତେ ଲୋକ ସ୍ଲମମାନଙ୍କରେ ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନ ନିର୍ବାହ କରୁଛନ୍ତି, ସ୍କୁଲ ଡ୍ରପ-ଆଉଟ ପିଲାଙ୍କର ସଂଖ୍ୟା କେତେ, ଅପପୁଷ୍ଟିରେ କେତେ ବ୍ୟକ୍ତି ଆକ୍ରାନ୍ତ ହେଉଛନ୍ତି, ସ୍ୱାସ୍ଥ୍ୟ ସେବା କେତେ ଲୋକଙ୍କ ପାଇଁ ଅପହଞ୍ଚ ହୋଇ ରହିଛି, ପରିବାରରେ ସୌଚାଳୟ ରହିଛି କି ନାହିଁ - ଏହିପରି ନାନା ପ୍ରସଙ୍ଗକୁ ନେଇ ସମାଜର ଅନଗ୍ରସରତା ବା ବିକାଶର ମୂଲ୍ୟାୟନ କରାଯାଇପାରେ । ତେବେ ସମାଜର ନୈତିକ ବିକାଶ ପାଇଁ କ'ଣ ମାନଦଣ୍ଡ ନିରୂପଣ କରାଯିବ ତାହା ଏକ ଜଟିଳ ପ୍ରଶ୍ନ । ଏକ ସାଧାରଣ ଧାରଣା ପୋଷଣ କରାଯାଏ ଯେ ନୀତି, ନୈତିକତା ସମାଜରେ

ଧୀରେ ଧୀରେ ହ୍ରାସ ପାଇବାରେ ଲାଗିଛି । ଭୌତିକ ବିକାଶ ଯେତେ ଦ୍ରୁତ ଗତିରେ ହେଉଛି ସମାଜରେ ନୈତିକ ଅବକ୍ଷୟ ସେତେ ଅଧିକ ହେଉଛି । ସମାଜରେ ରହି ଆସିଥିବା ମୂଲ୍ୟବୋଧ ମାନ ଆଧୁନିକ ଜୀବନ ପ୍ରବାହରେ ଭୂଲୁଣ୍ଠିତ ହେଉଛି । ମାନବିକ ସମ୍ବନ୍ଧର ନିବିଡତା ହ୍ରାସ ପାଇବାରେ ଲାଗିଛି ଓ ଏପରିକି ପାରିବାରିକ ବନ୍ଧନ ଶିଥିଳ ହୋଇଯାଉଛି । ସମାଜରେ ଏକ ବିଶ୍ୱାସ ପରିବ୍ୟାପ୍ତ ହେବାରେ ଲାଗିଛି ଯେ ଭୌତିକ ବିକାଶ ଅଗ୍ରଗାମୀ ହେଲେ ବି ନୈତିକ ମୂଲ୍ୟବୋଧ ସ୍ତରରେ ଅବକ୍ଷୟ ହେଉଛି ଓ ଦୁର୍ନୀତି ଯଥା ସ୍ୱାର୍ଥପରତା ବଢ଼ିବାରେ ଲାଗିଛି ।

ଗତ ଶହେ ବର୍ଷର ମାନବ ସଭ୍ୟତାର ଇତିହାସକୁ ପର୍ଯ୍ୟାଲୋଚନା କଲେ ଆମେ ଯେଉଁ ଚିତ୍ରଟି ପାଇଥାଏ, ତାହା ଅପେକ୍ଷା ଆଜିର ସ୍ଥିତି ଅନେକାଂଶରେ ଉନ୍ନତ ମନେହୁଏ । ଶହେ ବର୍ଷ ତଳେ ସମଗ୍ର ପୃଥିବୀରେ ସାମ୍ରାଜ୍ୟବାଦର ପରିବେଶ ରହିଥିଲା । ଶିକ୍ଷୋନ୍ନତ ଓ ବିକଶିତ ରାଷ୍ଟ୍ରମାନେ ପୃଥିବୀର ଅନେକ ଦେଶକୁ କରାୟତ କରି ରଖିବା ସହ ସେମାନଙ୍କୁ ନାନାଭାବେ ଶୋଷଣ କରୁଥିଲେ । ଆଜକୁ ଶହେ ବର୍ଷ ତଳେ ପୃଥିବୀରେ ପ୍ରଥମ ବିଶ୍ୱଯୁଦ୍ଧର ପରିବେଶ ରହିଥିଲା । ବିଶ୍ୱଯୁଦ୍ଧ ଜନିତ ଘଟଣାରୁ ସାରା ପୃଥିବୀରେ ହିଂସା, ପ୍ରତିହିଂସା, ବିଦ୍ୱେଷ ତୀବ୍ର ଭାବରେ ରହିଥିଲା । ଆମ ଦେଶ ପରି ଦେଶମାନ ସାମ୍ରାଜ୍ୟବାଦୀ ଶୋଷଣ ସହ ସାମନ୍ତବାଦୀ ଶୋଷଣର ଶିକାର ହେଉଥିଲେ । ଇଂରେଜ ଶାସନ କାଳରେ ଆମ ଦେଶର ଗଡଜାତ ମାନଙ୍କରେ ଅନ୍ଧାରୀ ଶାସନ ଚାଲିଥିଲା ଓ ରାଜାମାନଙ୍କର ଶୋଷଣ ଓ ଅତ୍ୟାଚାରରେ ଲୋକମାନେ ଅତ୍ୟନ୍ତ ଆଶଙ୍କିତ ହୋଇ ରହିଥିଲେ । ନିରକ୍ଷରତା ବ୍ୟାପକ ଭାବେ ରହିଥିଲା ଓ ନାରୀ ନିର୍ଯ୍ୟାତନା ଅବର୍ଣ୍ଣନୀୟ ଥିଲା ।

ଶହେ ବର୍ଷ ତଳର ପୃଥିବୀରେ ରଙ୍ଗଭେଦ, ବର୍ଣ୍ଣବୈଷମ୍ୟ, ଜାତିଭେଦ ବ୍ୟାପକ ଭାବେ ରହିଥିଲା । ଆମେରିକା ପରି ଉନ୍ନତ ଦେଶରେ ଓ ଆଫ୍ରିକା ଭୂଖଣ୍ଡରେ ବର୍ଣ୍ଣବୈଷମ୍ୟ ଏକ ଗୁରୁତର ମାନବିକ ସମସ୍ୟାର ଚିତ୍ର ଦେଇଥାଏ । ମଣିଷକୁ ମଣିଷର ଶୋଷଣ ଓ ଅତ୍ୟାଚାର ଅତ୍ୟନ୍ତ ଅମାନବୀୟ ଥିଲା । ସଭ୍ୟତାର ଇତିହାସରେ କ୍ରୀତଦାସ ପ୍ରଥାର ଯେଉଁ ଜଘନ୍ୟ କାହାଣୀ ଦେଖିବାକୁ ମିଳେ ତାହା ଅତ୍ୟନ୍ତ ହୃଦୟ ବିଦାରକ । ସେହିପରି ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଜର୍ମାନୀରେ ନାଜି ସରକାର ହିବ୍ରୁ ସଂପ୍ରଦାୟର ଜିଉମାନଙ୍କ ଉପରେ ଯେପରି ଅକଥନୀୟ ଅତ୍ୟାଚାର କରିଛି ତାହା ଅମାନବିକତାର ସକଳ ସୀମାକୁ ଲଂଘି ଯାଇଛି । ଲକ୍ଷ ଲକ୍ଷ ନିରୀହ ମଣିଷ ଯେଉଁ ଶୋଷଣ, ଅତ୍ୟାଚାର ଓ ବର୍ବରତାର ଶିକାର

ହୋଇଛନ୍ତି ତାହାର କାହାଣୀ ଅତ୍ୟନ୍ତ ମର୍ମାନ୍ତିକ । ଆମ ଦେଶରେ ଜାତିଭେଦ ଓ ଅସ୍ପୃଶ୍ୟତା ଜନିତ ସାମାଜିକ ଭେଦଭାବ ମଧ୍ୟ ଅନ୍ୟାୟର ଏକ ନିଚ୍ଛକ ଚିତ୍ର ପ୍ରଦାନ କରିଥାଏ । ସମାଜର ଅଗଣିତ ମଣିଷ ଅସ୍ପୃଶ୍ୟ ହୋଇ ରହିବା ଓ ସର୍ବନିମ୍ନ ମାନବିକ ଅଧିକାରରୁ ବଞ୍ଚିତ ହେବା ଏକ ଅସୁସ୍ଥ ମାନସିକତାର ଛବି ଦେଇଥାଏ । ଭାରତୀୟ ସମାଜ ଶହ ଶହ ବର୍ଷ ଧରି ଜାତିଗତ ବିଭାଜନରେ ରୁଦ୍ଧ ଓ ରୁଗ୍ଣ ହୋଇ ରହିବା ଦେଖାଯାଏ । ଶହେ ବର୍ଷ ତଳେ ଭାରତୀୟ ସମାଜରେ ଦଳିତ ଓ ଶୂଦ୍ରମାନେ କିପରି ସକଳ ଅଧିକାରରୁ ବଞ୍ଚିତ ରହି ଅର୍ଥନୈତିକ ଓ ସାମାଜିକ ଶୋଷଣର ଶିକାର ହୋଇଛନ୍ତି ତାହାର କାହାଣୀ ବି ବେଶ୍ ଯନ୍ତ୍ରଣାଦାୟକ । ଗୋଟିଏ ଶତାବ୍ଦୀ ତଳେ ଆନ୍ତର୍ଜାତିକ ଦୃଶ୍ୟପଟରେ ଯେଉଁ ରାଜନୈତିକ, ଅର୍ଥନୈତିକ ଓ ସାମାଜିକ ପରିବେଶ ରହିଥିଲା ତାହାଠାରୁ ଦେଶ ଦୁନିଆର ସାଂପ୍ରତିକ ସ୍ଥିତି ଯେ ଯଥେଷ୍ଟ ଉନ୍ନତ ଏହା କୁହାଯାଇପାରେ ।

ପୁନଶ୍ଚ ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଅର୍ଥାତ୍ ଆଜକୁ ଶହେ ପନ୍ଦର ବର୍ଷ ତଳେ ପୃଥିବୀର ଲୋକସଂଖ୍ୟା ଥିଲା ୧୬୦ କୋଟି, ଏକ ବିଂଶ ଶତାବ୍ଦୀ ବେଳକୁ ଏହି ଲୋକସଂଖ୍ୟା ବୃଦ୍ଧି ପାଇ ହେଲା ୬୦୦ କୋଟି ଓ ୨୦୧୧ ବେଳକୁ ଏହା ୭୦୦ କୋଟିରୁ ଅଧିକ ହୋଇଛି । ଜନସଂଖ୍ୟାର ଏହି ଆଶାତୀତ ଅଭିବୃଦ୍ଧିର ନାନା କାରଣ ଭିତରୁ ମୁଖ୍ୟ କାରଣ ହେଉଛି ଚିକିତ୍ସା ବିଜ୍ଞାନର ଅଗ୍ରଗତି ଓ ମୃତ୍ୟୁହାରରେ ହ୍ରାସ । ଶହେ ବର୍ଷ ତଳର ପୃଥିବୀରେ ମହାମାରୀ ଯୋଗୁ ଅସଂଖ୍ୟ ଲୋକ ମୃତ୍ୟୁ ମୁଖରେ ପଡୁଥିଲେ । ହଇଜା, ପ୍ଲେଗ ଓ ବସନ୍ତ ରୋଗମାନ ଗଣ ମୃତ୍ୟୁର କାରଣ ହେଉଥିଲା । ଏହା ସହିତ ଗମନା ଗମନର ସୁଯୋଗ ନଥିବାରୁ କୌଣସି ଅଞ୍ଚଳରେ ପ୍ରାକୃତିକ ବିପର୍ଯ୍ୟୟ ହେଲେ କିମ୍ବା ଦୁର୍ଭିକ୍ଷ ପଡିଲେ ଅସହାୟ ହୋଇ ଲୋକମାନେ ମୃତ୍ୟୁ ମୁଖରେ ପଡୁଥିଲେ । ଏହି ସ୍ଥିତିରେ ଜନସଂଖ୍ୟାର ବିଶେଷ ବୃଦ୍ଧି ହେଉନଥିଲା । ଆଜିର ପୃଥିବୀରେ ଗଣମୃତ୍ୟୁର ପରିବେଶ ନାହିଁ, ଆଧୁନିକ ଚିକିତ୍ସାର ସୁଯୋଗ ଯୋଗୁ ସାଧାରଣ ଆୟୁ ବଢ଼ିବାରେ ଲାଗିଛି । ଶହେ ବର୍ଷ ତଳେ ପରିବାର ନିୟନ୍ତ୍ରଣର ଭାବନା ନଥିଲା । ସଂପ୍ରତି ପରିବାର ନିୟନ୍ତ୍ରଣ ଓ କ୍ଷୁଦ୍ର ପରିବାରର ଭାବନା ସତ୍ତ୍ୱେ ଲୋକସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି ।

ବୃତ୍ତିଗତ ଢାଞ୍ଚାରେ ପରିବର୍ତ୍ତନ, ସାମାଜିକ ଗତିଶୀଳତା ବୃଦ୍ଧି, ଲୋକସଂଖ୍ୟାର ଆଶାତୀତ ଅଭିବୃଦ୍ଧି, ଜୀବନର ଆବଶ୍ୟକତା କ୍ରମବର୍ଦ୍ଧିଷ୍ଣୁ ଭାବେ ବଢ଼ିଚାଲିବା ଇତ୍ୟାଦି କାରଣରୁ ସଂପ୍ରତି ସାମାଜିକ ସମ୍ବନ୍ଧ ଜଟିଳ ହୋଉ ଉଠୁଛି । ନୂଆ ନୂଆ ସାଧନ ଓ

ଉପକରଣ ମାନ ନିର୍ମିତ ହେବାରେ ଲାଗିଛି ଓ ଜୀବନର ଆବଶ୍ୟକତା ସେହି ଅନୁଯାୟୀ ବୃଦ୍ଧି ପାଉଛି । ନିରାପଦ କର୍ମସଂସ୍ଥାନ ପାଇଁ ପ୍ରତିଯୋଗିତା ତୀବ୍ର ହେବାରେ ଲାଗିଛି । ପୁରାତନ ବଂଶାନୁଗତ ବୃତ୍ତି ଭିତରେ ଜୀବନର ଆବଶ୍ୟକତା ପୂରଣ କରିବାର ସମ୍ଭାବନା ରହୁନାହିଁ । ଆର୍ଥିକ ସ୍ଥିତିରେ ନାନା କାରଣ ଯୋଗୁ ବୈଷମ୍ୟ ବୃଦ୍ଧି ପାଇବାରେ ଲାଗିଛି । ଏହିପରି ଦେଖିଲେ ସାଂପ୍ରତିକ ପରିବେଶ ଜୀବନ ଧାରଣ କ୍ଷେତ୍ରରେ ନୂଆ ନୂଆ ଆହ୍ୱାନ ସୃଷ୍ଟି କରୁଛି । ଗ୍ରାମୀଣ ପରିବେଶରେ ଓ କୃଷିଭିତ୍ତିକ ସମାଜରେ ଯେଉଁ ସ୍ଥିତି ଥିଲା ତାହା ବଦଳି ଯିବାରେ ଲାଗିଛି । ନୂତନ କର୍ମସଂସ୍ଥାନର ସୁଯୋଗ, ଶିକ୍ଷାର ପରିବେଶ, ଗମନାଗମନର ସୁବିଧା, ଆବଶ୍ୟକ ବେଳେ ଉନ୍ନତ ସ୍ୱାସ୍ଥ୍ୟ ସେବା ଇତ୍ୟାଦି ପାଇଁ ସହରରେ ରହିବାକୁ ଆଗ୍ରହ ବଢ଼ିଚାଲିଛି । ପୁନଶ୍ଚ ଆମ ଦେଶ ଭଳି ସମାଜରେ ଜାତିଗତ ଭେଦଭାବରୁ ଦୂରରେ ରହିବା ପାଇଁ ଅନେକ ବ୍ୟକ୍ତି ସହରର ମୁକ୍ତ ପରିବେଶକୁ ଅଧିକ ପସନ୍ଦ କରୁଛନ୍ତି । ପରିଣାମତଃ ସହରମାନ ସ୍ୱାଧୀନତା ପରେ ସ୍ଫୀତ ହେବାରେ ଲାଗିଛନ୍ତି । ଆମ ଦେଶର ସାମାଜିକ ଜୀବନ ପ୍ରବାହରେ ଏହି ସବୁ ପରିବର୍ତ୍ତନ ପୃଷ୍ଠଭୂମିରେ ସାମାଜିକ ସମ୍ପନ୍ଧ ବେଶ୍ ଜଟିଳ ହେବାରେ ଲାଗିଛି । ସହର ମାନଙ୍କରେ ପାରସ୍ପରିକ ସଂପର୍କ ଓ ଆଦାନ-ପ୍ରଦାନ ମାନବିକ ନ ହୋଇ ଅଧିକ ବ୍ୟାବସାୟିକ ହୋଇଉଠୁଛି । ଏହା ସହିତ ନାନା ମାନସିକ ଚାପ, ନୈରାଶ୍ୟବୋଧ, ପାରିବାରିକ ଅଶାନ୍ତି ଜୀବନଧାରାରେ ଅଧିକରୁ ଅଧିକ ପ୍ରତିଫଳିତ ହେଉଛି । ଗୋଟିଏ ପଟେ ଜୀବନର ଆବଶ୍ୟକତା ବୃଦ୍ଧି ପାଉଛି ଓ ଅନ୍ୟ ଦିଗରେ ସାମାଜିକ ସମ୍ପନ୍ଧ ଶିଥିଳ ହୋଇଚାଲୁଛି, ଏହି ପରିବେଶରେ ବ୍ୟକ୍ତିର ସାମାଜିକ ଉତ୍ତରଦାୟିତ୍ୱ ସଙ୍କୁଚିତ ହୋଇଚାଲିଛି । ଏହା ସହିତ ବିଭିନ୍ନ ପ୍ରକାରର ମନୋରଂଜନ ଏବେ ପରିବାରରେ ଉପଲବ୍ଧ ହୋଇପାରୁଥିବା ଯୋଗୁ ସମୟ-ସ୍ୱଳ୍ପତାର ପରିବେଶ ସୃଷ୍ଟି ହୋଇଛି ।

ସୀମିତ ଆବଶ୍ୟକତା ଓ ଗ୍ରାମୀଣ ଜୀବନଶୈଳୀ ପରିବେଶରେ ଯେତେବେଳେ ମଣିଷମାନେ ରହିଥିଲେ ସେହି ସ୍ଥିତିଠାରୁ ବର୍ତ୍ତମାନର ସ୍ଥିତି ସଂପୂର୍ଣ୍ଣ ଭିନ୍ନ । ଜୀବନର ଆବଶ୍ୟକତା ଆଶାତୀତ ଭାବେ ସଂପ୍ରତି ବୃଦ୍ଧି ପାଇଚାଲିଛି, ସାମାଜିକ ସମ୍ପନ୍ଧ ଅଧିକରୁ ଅଧିକ ଜଟିଳ ହୋଇଉଠୁଛି, ପ୍ରତିଯୋଗିତାମୂଳକ ପରିବେଶରେ ଅଧିକାଂଶ ବ୍ୟକ୍ତିକୁ ଯିବାକୁ ପଡୁଛି ଓ ନାନା କାରଣ ନେଇ ଏକ ଉତ୍ତେଜନାମୂଳକ ପରିବେଶ ବ୍ୟକ୍ତିକୁ ସାମ୍ନା କରିବାକୁ ହେଉଛି । ଏହା ସହ ଅର୍ଥନୈତିକ ବୈଷମ୍ୟ ବଢ଼ିଚାଲିଛି, କର୍ପୋରେଟ ସଂସ୍କୃତିର ବ୍ୟାପକତାରୁ ରାଷ୍ଟ୍ରର ଜନକଲ୍ୟାଣକାରୀ ଆଭିମୁଖ୍ୟରେ ନାନା ପରିବର୍ତ୍ତନ ହେଉଛି ଓ

ରାଜନୈତିକ ତଥା ପ୍ରଶାସନିକ ସ୍ତରରେ ଦୁର୍ନୀତି ବ୍ୟାପକ ହେବାରେ ଲାଗିଛି । ଏହି ସବୁର ସମ୍ମିଳିତ ପ୍ରଭାବରୁ ଜନ ଜୀବନରେ ଅଶାନ୍ତି ବ୍ୟାପକ ହେଉଛି । ସେହିପରି ନାନା କାରଣରୁ ବିଭିନ୍ନ ପ୍ରକାରର ଅପରାଧମୂଳକ ଘଟଣାମାନ ଘଟୁଛି ।

ସମାଜ ଯେ ନୈତିକ ପରିପୂର୍ଣ୍ଣତା ଲାଭ କରିବ, ଏହା କେବେ ସମ୍ଭବ ନୁହେଁ ବା ଅତୀତରେ ଯେ ଏକ ନୀତିପୂର୍ଣ୍ଣ ସମାଜ ଥିଲା ତାହା ମଧ୍ୟ ନୁହେଁ । ସଂପ୍ରତି ସାମାଜିକ ଜୀବନରେ ଘଟୁଥିବା ଅପରାଧମାନ ଗଣମାଧ୍ୟମରେ ପ୍ରଚାରିତ ହୋଇ ବୃହତ୍ତର ସମାଜର ଦୃଷ୍ଟି ଆକର୍ଷଣ କରୁଛି । ସମାଜରେ ନାଗରିକ ଶୃଂଖଳାବୋଧ ଓ ନୈତିକ ଶୃଂଖଳାର ଉତ୍କର୍ଷ ସଂପର୍କରେ ଜନଗଣଙ୍କୁ ସଚେତନ କରାଇବାର ବହୁ ଅନୁକୂଳ ପରିବେଶ ରହିଛି । ଏକ ଶୃଂଖଳିତ ସମାଜ ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ନୈତିକ ଆଚରଣ ଓ ମହତ୍ତର ଜୀବନବୋଧର ବାର୍ତ୍ତା ଶିକ୍ଷା ବ୍ୟବସ୍ଥାରେ ଓ ଗଣମାଧ୍ୟମରେ ପ୍ରାଧାନ୍ୟ ପାଇବା ଆବଶ୍ୟକ । ଭୌତିକ ବିକାଶ ସହ ନାଗରିକମାନଙ୍କର ନୈତିକ ଜୀବନଦୃଷ୍ଟିର ସମନ୍ୱିତ ବିକାଶ ହେଲେ ସମାଜର ଗୁଣାତ୍ମକ ଉତ୍ତରଣ ସମ୍ଭବ ହେବ ।

(୧୧.୨.୧୫)



# ନୈତିକତା ଓ ସାମାଜିକ ବିକାଶ

ମଣିଷ ସମାଜରେ ରହେ, ସେ ଏକ ସାମାଜିକ ପ୍ରାଣୀ । ପ୍ରତ୍ୟେକ ବ୍ୟକ୍ତି ନାନା ସମ୍ବନ୍ଧରେ ଅନ୍ୟ ସହ ସଂପର୍କିତ ହୁଏ । ସେ ତାର ଆବଶ୍ୟକତା ସମାଜ ମାଧ୍ୟମରେ ପୂରଣ କରେ ଓ ନିଜର କର୍ତ୍ତବ୍ୟ ମାଧ୍ୟମରେ ସାମାଜିକ ଜୀବନ-ପ୍ରବାହକୁ କିଛି ଅବଦାନ ଦିଏ । ସାମାଜିକ ପାରସ୍ପରିକତା ଜୀବନର ଅବିଚ୍ଛେଦ୍ୟ ଅଙ୍ଗ । ବ୍ୟକ୍ତିର ବ୍ୟବହାର ଓ କାର୍ଯ୍ୟ ସହ ନୀତି, ନୈତିକତାର ପ୍ରଶ୍ନ ସଂଶ୍ଳିଷ୍ଟ । ବ୍ୟକ୍ତିର କୌଣସି କାର୍ଯ୍ୟ ନୀତିପୂର୍ଣ୍ଣ ହୋଇପାରେ କିମ୍ବା ଅନୈତିକ ହୋଇପାରେ । ଏକ ନୀତିପୂର୍ଣ୍ଣ କାର୍ଯ୍ୟକୁ ସାମାଜିକ ସ୍ୱୀକୃତି ଥାଏ ଓ ଏକ ଅନୈତିକ କାର୍ଯ୍ୟ ସମାଜ ପାଇଁ ଅନିଷ୍ଟକର ହୋଇଥାଏ । ଏହା ଏକ ଆନୁଭବିକ ସତ୍ୟ ଯେ ବ୍ୟକ୍ତିମାନଙ୍କର ଆଚରଣ ଯେତେ ଅଧିକ ନୀତି ସଂଗତ ହୁଏ ତାର ପ୍ରଭାବରେ ସାମାଜିକ ଜୀବନ ସେତେ ଶୃଂଖଳିତ ହୋଇଥାଏ । ଯେଉଁ ସାମାଜିକ ଦୃଶ୍ୟପଟରେ ନୀତିପୂର୍ଣ୍ଣ ଆଚରଣ ପ୍ରତି ଯେତେ ଅଧିକ ଲୋକ ଆକର୍ଷିତ ହୁଅନ୍ତି ଓ ନାଗରିକ ଶୃଂଖଳାବୋଧକୁ ଜୀବନଧାରାରେ ପ୍ରତିଫଳିତ କରନ୍ତି, ସେଠାରେ ସୁଖ ଶାନ୍ତି ଅଧିକ ବିରାଜମାନ କରେ । ଅପର ପକ୍ଷରେ ଯେଉଁ ସାମାଜିକ ଦୃଶ୍ୟପଟରେ ନୀତି-ଅନୀତି ପ୍ରତି ସ୍ପର୍ଶକାତରଶୂନ୍ୟ ମନୋଭାବ ପ୍ରକାଶ ପାଏ ଓ ନାଗରିକ ଶୃଂଖଳାର ଉଲ୍ଲଘଂନ ସାଧାରଣ ଘଟଣା ହୋଇପଡେ, ସେଠାରେ ସାମାଜିକ ଜୀବନ ପ୍ରବାହରେ ଅଧିକ ଅଶାନ୍ତି ଓ ବିଶୃଂଖଳା ଦେଖାଦିଏ । ନୈତିକ ଆଚରଣ ସହ ସାମାଜିକ ସୁଖ, ଶାନ୍ତି ଓ ସ୍ଥିରତାର ପ୍ରଶ୍ନ ସଂଶ୍ଳିଷ୍ଟ ହେବା ଦେଖାଯାଏ । ଅବଶ୍ୟ ଏକ ଜନଗୋଷ୍ଠୀରେ ଅନୈତିକ ପନ୍ଥାରେ ଯାଇ ବା ଅସାଧୁ ଭାବେ ଉପାର୍ଜନ କରୁଥିବା କିଛି ବ୍ୟକ୍ତି ସୁଖ-ଶାନ୍ତିରେ ଜୀବନ ନିର୍ବାହ କରିବାର ଦୃଷ୍ଟାନ୍ତ ଥାଇପାରେ । କିନ୍ତୁ ଯଦି ଅନୈତିକ ପନ୍ଥା ସମାଜରେ ପରିବ୍ୟାପ୍ତ ହୋଇଚାଲେ ତେବେ ସମାଜର ସାଧାରଣ ସ୍ୱାସ୍ଥ୍ୟ ବିପନ୍ନ ହୋଇଥାଏ । ଅନୈତିକ ଆଚରଣ ସାମାଜିକ କ୍ଷୟଶୀଳତା ପାଇଁ ଦାୟୀ ହେଉଥିବା ଯୋଗୁ ପ୍ରତ୍ୟେକ ଜନଗୋଷ୍ଠୀରେ ନୈତିକ ନିୟମମାନଙ୍କୁ ପ୍ରାଧାନ୍ୟ ଦିଆଯାଏ । ଜାତି, ଜାତୀୟତା, ସଂସ୍କୃତି ନିର୍ବିଶେଷରେ ସାଧୁତା, ନିସ୍ୱାର୍ଥପରତା, ସମ୍ବେଦନଶୀଳତା, ନ୍ୟାୟବୋଧ ଇତ୍ୟାଦି ଗୁଣ ଗୁଡିକ ମହତ୍ତର

ଜୀବନବୋଧର ସଙ୍କେତ ବହନ କରୁଥିବା ବେଳେ ଶଠତା, ସ୍ୱାର୍ଥପରତା, ସମ୍ବେଦନହୀନ ମାନସିକତା ଓ ଘୃଣାଭାବ ନୈତିକ ଜୀବନବୋଧର ବିପରୀତ ମନେହୁଏ ।

ନୀତି ଦର୍ଶନ ପରିସରରେ ଗୋଟିଏ ମତ ରହିଛି ଯେ ପ୍ରତ୍ୟେକ ବ୍ୟକ୍ତି ସ୍ୱଭାବରେ ନୀତିବାନ । ସତ୍ୟବାଦୀ ହେବା , ଅନ୍ୟର ଉପକାର ପାଇଁ ପ୍ରବୃତ୍ତ ହେବା, କାହାର ଅମଙ୍ଗଳ ନକରିବା ବ୍ୟକ୍ତି ସ୍ୱଭାବରେ ସହଜାତ ଭାବେ ରହିଛି । ଏହି ମତାନୁଯାୟୀ ଅତି ଅସୁବିଧା ନ ପଡିଲେ କିମ୍ବା ଅନିବାର୍ଯ୍ୟ ଆବଶ୍ୟକତା ନ ଥିଲେ ଜଣେ ସାଧାରଣତଃ ମିଛ କହେ ନାହିଁ, ଅନ୍ୟର କ୍ଷତି ସାଧନ ପାଇଁ ଆଗଭର ହୁଏ ନାହି । ଏହି ଆଦର୍ଶ ବ୍ୟକ୍ତି ସ୍ୱଭାବରେ ଅନ୍ତର୍ନିହିତ, ଅଥଚ ସାମାଜିକ ପରିବେଶର ପ୍ରଭାବ ଯୋଗୁ ବ୍ୟକ୍ତି ସ୍ଥଳ ବିଶେଷରେ ଅନୈତିକ ଆଚରଣ ଦେଖାଇଥାଏ । ନୀତି ଦର୍ଶନରେ ସେହିପରି ଅନ୍ୟ ଏକ ମତ ରହିଛି ଯେ ସ୍ୱାର୍ଥପରତା, ଲୋଭ, ଆତ୍ମକୈନ୍ଦ୍ରିକତା ବ୍ୟକ୍ତିର ସହଜାତ ସ୍ୱଭାବ । ପ୍ରତ୍ୟେକ ବ୍ୟକ୍ତି ପ୍ରଥମେ ନିଜର ସୁଖ ଓ ଉପଭୋଗକୁ ଗୁରୁତ୍ୱ ଦିଏ । ଶିକ୍ଷା, ସାମାଜିକ ସଂସ୍କାର ପ୍ରଭାବରେ ବ୍ୟକ୍ତି ସ୍ୱଭାବରେ ଭଲ ଗୁଣ ପ୍ରକାଶ ପାଇଥାଏ । ତ୍ୟାଗର ଭାବନା, ମାନବିକ ସମ୍ବେଦନଶୀଳତା, ସତ୍ୟବାଦୀତା ଓ ଅନ୍ୟର ସୁଖ ଆନନ୍ଦକୁ ନିଜର ସୁଖ-ଆନନ୍ଦ ବୋଲି ଭାବନା ଇତ୍ୟାଦି ମହତ୍ତର ଜୀବନଦୃଷ୍ଟି ଜଣେ ଶିକ୍ଷା ସ୍ତରରୁ, ପାରିବାରିକ ସଂପର୍କରୁ ଲାଭ କରିଥାଏ । ଏହି ଦୁଇ ମତର ଜଟିଳତା ଭିତରେ ପ୍ରବେଶ ନ କରି ଏହା କୁହାଯାଇପାରେ ଯେ ବ୍ୟକ୍ତିର କେତେକ ଆଚରଣ ନୀତିପୂର୍ଣ୍ଣ ହୋଇଥାଏ ତ ଆଉ କେତେକ ଆଚରଣ ସମାଜ ପାଇଁ ଗ୍ରହଣୀୟ ନୁହେଁ । ଜଣେ ସାଧାରଣ ନାଗରିକ ପାଖରୁ ଏହା ଆଶା କରାଯାଏ ଯେ ସେ ନାଗରିକ ସମାଜର ଶୃଂଖଳାକୁ ମାନିବ, ଅନ୍ୟର ଅନିଷ୍ଟ ହେଲା ପରି କୌଣସି ମନ୍ଦ କାର୍ଯ୍ୟରେ ସଂପୃକ୍ତ ହେବ ନାହିଁ ଓ ନିଜର ସାମାଜିକ କର୍ତ୍ତବ୍ୟକୁ ସୁଚାରୁରୂପେ ସଂପାଦନ କରିବ । ସେହିପରି ଜଣେ ନାଗରିକ ଆଶା କରେ ଯେ ତାର ନ୍ୟାୟପୂର୍ଣ୍ଣ କାର୍ଯ୍ୟଟି ପ୍ରଶାସନିକ ସ୍ତରରେ ବା ବୃହତ୍ତର ସାମାଜିକ ପରିବେଶରେ ଅକ୍ଳେଶରେ ହେଉ ଓ ସେ ସେଥିରେ ଅଯଥା ପ୍ରତିବଂଧକର ସମ୍ମୁଖୀନ ନ ହେଉ । ବାସ୍ତବ ଜୀବନଧାରାରେ ଜଣେ ନାଗରିକର ନ୍ୟାୟ ସଂଗତ କାର୍ଯ୍ୟଟି ଯଦି ହେବାରେ ଅସୁବିଧା ହୁଏ କିମ୍ବା ସେ ବହୁ କ୍ଷେତ୍ରରେ ଅନ୍ୟାୟର ଶିକାର ହୁଏ, ତେବେ ସେ ସେଥିପାଇଁ ପ୍ରତିକ୍ରିୟାଶୀଳ ହୋଇଥାଏ । ଜଣେ ସଚେତନ ନାଗରିକ ଯଦି ସମାଜର ବିଭିନ୍ନ ସ୍ତରରେ ନୀତି, ନୈତିକତାର ସ୍ଖଳନ ଦେଖେ, ରାଜନୀତି ସ୍ତରରେ ଦୁର୍ନୀତି ବ୍ୟାପକ ହେଉଥିବା ଅନୁଭବ କରେ, ପ୍ରଶାସନିକ ସ୍ତରରେ କର୍ତ୍ତବ୍ୟ-ଉଦାସୀନତାକୁ ଅଙ୍ଗେ ଲିଭାଏ ଓ ସାଧାରଣ ଜୀବନ ପ୍ରବାହରେ ଅନ୍ୟାୟ, ଭ୍ରଷ୍ଟାଚାର ବ୍ୟାପୁଥିବା ହୃଦ୍‌ବୋଧ କରେ ତେବେ ସେ ଯଥେଷ୍ଟ ଅସ୍ୱସ୍ତି ଅନୁଭବ କରିଥାଏ । ଜଣେ ସଚେତନ ନାଗରିକ ଏହା ଚାହିଁବା ସ୍ୱାଭାବିକ ଯେ ସମାଜ ଶୃଂଖଳିତ ହେଉ, ପ୍ରଶାସନ ଦୁର୍ନୀତିମୁକ୍ତ ହୋଇ ନ୍ୟାୟ ସଂଗତ ଭାବେ

କାର୍ଯ୍ୟକରୁ, ରାଜନୈତିକ ବ୍ୟବସ୍ଥା ସ୍ୱଚ୍ଛ ଓ ଉତ୍ତରଦାୟୀ ହେଉ ଓ ବୃହତ୍ତର ପରିବେଶରେ ନ୍ୟାୟ, ନୈତିକତା ଓ ସମତାର ପରିବେଶ ଗଢ଼ୁ । ଯେଉଁଠି ଏହାର ବ୍ୟାପକ ବ୍ୟତିକ୍ରମ ପରିଲକ୍ଷିତ ହୁଏ, ସେଠାରେ ସମାଜର ସଚେତନ ବର୍ଗ ନିଜର ଅସ୍ୱସ୍ତିରୁ ବିଦ୍ରୋହୀ ବା ପ୍ରତିକ୍ରିୟାଶୀଳ ହେବା ସ୍ୱାଭାବିକ ହୋଇଥାଏ । ସାଧାରଣ ଜୀବନ ପ୍ରବାହରେ ସମାଜର ସଚେତନ ବର୍ଗର ଲୋକମାନେ ଅନେକ ସମୟରେ ହତାଶା ଅନୁଭବ କରିଥାନ୍ତି । ସମାଜର ମୂଲ୍ୟବୋଧ ଭୁଷୁଡି ପଡୁଛି, ଦୁର୍ନୀତି ବ୍ୟାପକ ହେଉଛି, ଭ୍ରଷ୍ଟାଚାର ବୃଦ୍ଧି ପାଉଛି, ନାଗରିକ ଶୃଂଖଳାର ଉଲଘଂନ ସାଧାରଣ ଧାରା ହୋଇ ଯାଉଛି ଏହି ଅନୁଭବରୁ ସମାଜର ନୀତିନିଷ୍ଠ ଲୋକମାନେ ଅନ୍ତରରେ ବ୍ୟଥା ପାଇଥାନ୍ତି । ନିଜ ପରିସରଟି ଭିତରେ ସେମାନେ ନୀତିନିଷ୍ଠ ହୋଇ ରହିଥିଲେ ବି ସେମାନେ ସେହି ପ୍ରକାରର ଏକ ସ୍ଥିତି ଓ ପରିବେଶ ବୃହତ୍ତର ସମାଜରେ ଆଶା କରନ୍ତି । ତାହାର ବ୍ୟତିକ୍ରମ ଓ ସ୍ଖଳନ ସେମାନଙ୍କ ମନକୁ ଭାରାକ୍ରାନ୍ତ କରେ ଓ ସ୍ଥଳ ବିଶେଷରେ ଏକ ହତାଶାର ମନୋଭାବ ଆଣିଥାଏ । ସମାଜରେ ପରିବର୍ତ୍ତନ ଆଣିବା ପାଇଁ ଆଉ କିଛି ବ୍ୟକ୍ତି ବିଦ୍ରୋହୀ ହୁଅନ୍ତି । ଅନ୍ୟାୟ, ଅନୀତି ଓ ଭ୍ରଷ୍ଟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରନ୍ତି । ସେହି ବିଦ୍ରୋହୀ ମାନସିକତାରୁ ସ୍ଥଳ ବିଶେଷରେ ହିଂସାତ୍ମକ ପରିବେଶ ସୃଷ୍ଟି ହୋଇଥାଏ । ଯେଉଁମାନେ ଶୋଷଣ କରୁଛନ୍ତି, ଅନ୍ୟାୟର ସାମ୍ରାଜ୍ୟ ବିସ୍ତାରକରି ସଂପତ୍ତି, କ୍ଷମତାର ଅଧିକାରୀ ହୋଇଛନ୍ତି, ସମାଜରେ ସମତା, ନ୍ୟାୟ ପ୍ରତିଷ୍ଠା କ୍ଷେତ୍ରରେ ପ୍ରତିବଂଧକ ସାଜୁଛନ୍ତି ସେମାନଙ୍କ ପ୍ରତି ପ୍ରତିହିଂସାର ମନୋଭାବ ପୋଷଣ କରିଥାନ୍ତି । ଯେଉଁଠି ଶାନ୍ତିପୂର୍ଣ୍ଣ ଓ ଅହିଂସାତ୍ମକ ପନ୍ଥାରେ ସମାଜରେ ବାଂଛନୀୟ ପରିବର୍ତ୍ତନ ଆଣିବା ସମ୍ଭବ ହେଉ ନାହିଁ ସେଠାରେ ସାମୟିକ ଭାବେ ହିଂସାତ୍ମକ ପନ୍ଥାକୁ ବାଛିବା ପାଇଁ ସେମାନେ ଯୁକ୍ତି କରିଥାନ୍ତି । ଏକ ମହତ୍ତର ଲକ୍ଷ୍ୟ ହାସଲ ପାଇଁ ଆବଶ୍ୟକ ସ୍ଥଳେ ହିଂସାତ୍ମକ ସାଧନକୁ ଗ୍ରହଣ କରାଯାଇପାରେ ବୋଲି ସାଧାରଣତଃ ସ୍ୱପ୍ନଦ୍ରଷ୍ଟା ବିଦ୍ରୋହୀମାନେ ମତ ଦେଇଥାନ୍ତି ।

ସମାଜରେ ସୁଧାର ଆଣିବା ପାଇଁ ତଥା ଜନଜୀବନକୁ ବିଚାରଶୀଳ ତଥା ନୀତିପୂର୍ଣ୍ଣ ଦିଗରେ ପରିଚାଳିତ କରିବା ପାଇଁ ସବୁ ସଭ୍ୟତାରେ ଓ ସବୁ ସମୟରେ କେତେକ ବ୍ୟକ୍ତି ନିଜର ବୌଦ୍ଧିକ ସଂପୃକ୍ତି ବ୍ୟକ୍ତ କରିଥାନ୍ତି । ବିଶେଷକରି ସଚ୍ଚରିତ୍ର ହେତୁବାଦୀ ମାନେ ନିଜର କଲମ ମୁନରେ ବୌଦ୍ଧିକ ସ୍ତରରେ ପରିବର୍ତ୍ତନ ଓ କ୍ରାନ୍ତି ପାଇଁ ପ୍ରୟାସ କରିବା ଦେଖାଯାଏ । ସେମାନେ ବିଶ୍ୱାସ କରନ୍ତି ଯେ କୌଣସି ପରିବର୍ତ୍ତନ ପଶ୍ଚାତରେ କେତେକ ବିଚାର କାର୍ଯ୍ୟକରେ । ବୈଚାରିକ ସ୍ତରରେ ସ୍ପଷ୍ଟତା ରହିଲେ ସାମାଜିକ କ୍ରାନ୍ତିର ପଥ ଓ ଲକ୍ଷ୍ୟ ଦିଗହରା ହୁଏ ନାହିଁ । ସୁତରାଂ ଆମେ କେଉଁ ପ୍ରକାରର ବ୍ୟବସ୍ଥା ଚାହୁଁ, ଜନ-ଜୀବନର ଦୃଷ୍ଟିଭଙ୍ଗୀ କି ପ୍ରକାର ହେବା ଆବଶ୍ୟକ, ସମାଜରେ ନ୍ୟାୟ, ସମତା ଓ ସମ୍ବେଦନଶୀଳ ପରିବେଶ କିପରି ଦୃଢ଼ ହୋଇପାରିବ ଏଥି ପାଇଁ ସେମାନେ ନିଜର

ସଂପୃକ୍ତି ବ୍ୟକ୍ତ କରିଥାନ୍ତି । ସେମାନଙ୍କର ଭାବନା, ବିଚାର ଓ ଜୀବନାଦର୍ଶ ସମସାମୟିକ ସମାଜରେ ଗୃହୀତ ନ ହୋଇପାରେ, ତେବେ ସେହି ଭାବନାରୁ ହିଁ ଏକ ସୁସ୍ଥ ସମାଜ ଓ ମହତ୍ତର ଜୀବନବୋଧର ବାର୍ତ୍ତା ଆସିଥାଏ । ଏହା ବଡ଼ ବ୍ୟଙ୍ଗପୂର୍ଣ୍ଣ ଯେ ସଭ୍ୟତାର ପଥପ୍ରଦର୍ଶକ ହୋଇଥିବା ଓ ମହତ୍ତର ମୂଲ୍ୟବୋଧର ବାର୍ତ୍ତାବହ ସାଜିଥିବା ବହୁ ପ୍ରତିଭାଧର ଲୋକମାନେ ସେମାନଙ୍କ ସମସାମୟିକ ସମାଜରେ କାଠଗଡାରେ ଛିଡା ହୋଇଛନ୍ତି, ନିନ୍ଦା ଓ ନିର୍ଯ୍ୟାତନା ସହ୍ୟ କରିଛନ୍ତି ଓ ଏପରିକି ପ୍ରାଣବଳି ଦେଇଛନ୍ତି । ଧର୍ମ, ସଭ୍ୟତା ନିର୍ବିଶେଷରେ ମଣିଷ ଇତିହାସରେ ଏହା ବହୁ ସ୍ଥାନରେ ଘଟିଛି । ସକ୍ରେଟିସଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇଛି, ଯୀଶୁଙ୍କୁ କ୍ରୁସବିଦ୍ଧ କରାଯାଇଛି, ବ୍ରୁନୋଙ୍କୁ ସର୍ବସାଧାରଣରେ ପୋଡି ମରାଯାଇଛି, ଗାଲିଲିଓଙ୍କୁ ବନ୍ଦୀଶାଳାରେ ଜୀବନ ଅତିବାହିତ କରିବାକୁ ହୋଇଛି, ଆବ୍ରାହମ ଲିଙ୍କନ, ମାର୍ଟିନ ଲୁଥର କିଙ୍ଗ୍ ଜୁନିଅର ଓ ମହାତ୍ମା ଗାନ୍ଧୀଙ୍କୁ ହତ୍ୟା କରାଯାଇଛି । ଏହି ନାମର ସଂଖ୍ୟା ବେଶ୍ ଦୀର୍ଘ । ତେବେ ଯେଉଁମାନଙ୍କର ଜୀବନ-ଦର୍ଶନ ଓ ସ୍ୱପ୍ନକୁ ସେମାନଙ୍କ ସମସାମୟିକ ସମାଜ ଗ୍ରହଣ କରିପାରି ନାହିଁ, ସେହିମାନେ ହିଁ ଇତିହାସର ମୋଡ ବଦଳାଇଛନ୍ତି, ସଭ୍ୟ ଜୀବନଦୃଷ୍ଟିର ବାର୍ତ୍ତାବହ ହୋଇଛନ୍ତି, ମାନବିକ ସଂପ୍ରୀତି ଓ ଭାତୃତ୍ୱର ବାଣୀ ଶୁଣାଇଛନ୍ତି ।

ସମାଜକୁ ଅନ୍ୟାୟମୁକ୍ତ କରିବା ଓ ଜୀବନ ପ୍ରବାହକୁ ନୀତିନିଷ୍ଠ କରିବାର ପରିକଳ୍ପନା ସଭ୍ୟତାର ଆଦିପର୍ବରୁ ଚିନ୍ତା କରାଯାଉଥିଲେ ବି ଏହା ସମ୍ଭବ ହୋଇନାହିଁ, ସମ୍ଭବତଃ ସଂପୂର୍ଣ୍ଣ ଭାବେ ହୁଏତ ସମ୍ଭବ ହେବ ନାହିଁ । ତଥାପି ବିଚାରଶୀଳ ଓ ଦରଦୀ ବ୍ୟକ୍ତିମାନେ ଏହି ଲକ୍ଷ୍ୟ ଦିଗରେ ନିଜର ସଂପୃକ୍ତି ବ୍ୟକ୍ତି କରି ଆସିଛନ୍ତି । ସେହି ପ୍ରୟାସରୁ ହିଁ ଜନଜୀବନ ଆଜିର ସ୍ଥିତି ପର୍ଯ୍ୟନ୍ତ ଆସିପାରିଛି । ସାମାଜିକ ନ୍ୟାୟ, ସମତା, ବ୍ୟକ୍ତିମର୍ଯ୍ୟାଦାବୋଧ ଓ ଭାତୃଭାବ ମୂଲ୍ୟବୋଧ ଗୁଡିକ ବିଶ୍ୱ ମାନସରେ ଆଦର୍ଶ ଭାବେ ସ୍ୱୀକୃତ ହୋଇପାରିଛି । ନୀତିପୂର୍ଣ୍ଣ ଜୀବନଶୈଳୀର ଉପାଦେୟତା ଓ ଶୁଦ୍ଧ ମାନବିକତା ଆମ ପାଇଁ ମହତ୍ତର ଜୀବନାଦର୍ଶ ପାଲଟିଛି । ସମାଜ ସୁଧାର ପାଇଁ ନୀତିନିଷ୍ଠ ହେତୁବାଦୀଙ୍କର ସଂପୃକ୍ତି ପୂର୍ଣ୍ଣ ଲକ୍ଷ୍ୟ ହାସଲ ନ କରିଥିଲେ ବି ଯେ ବ୍ୟର୍ଥ ହୋଇନାହିଁ ଏହା କୁହାଯାଇପାରେ ।

(୧୮.୨.୧୫)



# ନୈତିକ ମାନବବାଦ

ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନର ଯେଉଁ ବିକାଶ ପର୍ବ ଆରମ୍ଭ ହୋଇଥିଲା ତାହା ଏହି ତିନି ଶହ ବର୍ଷ ଭିତରେ ଏକ ନିର୍ଣ୍ଣାୟକ ସ୍ଥିତିକୁ ଆସିଥିବା ମନେହୁଏ । ବିଶେଷକରି ଏହି ଶହେ ବର୍ଷ ଭିତରେ ବିଜ୍ଞାନ ଓ ପ୍ରଯୁକ୍ତି କ୍ଷେତ୍ରରେ ଯେଉଁ ଅଭୂତପୂର୍ବ ପରିବର୍ତ୍ତନ ମାନ ଆସିଛି ତାହା ମଣିଷର ଜ୍ଞାନର ଦିଗ୍‌ବଳୟକୁ ନାନା ଭାବରେ ପ୍ରସାରିତ କରିଛି । ଏବେ ବି ପ୍ରକୃତିର ଅନେକ ଘଟଣା ଆମ ପାଇଁ ରହସ୍ୟମୟ ହୋଇ ରହିଥିଲେ ସୁଦ୍ଧା ମଣିଷ ପ୍ରକୃତିର ବହୁ ରହସ୍ୟକୁ ଉନ୍ମୋଚିତ କରିବାରେ ସମର୍ଥ ହେଲାଣି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିଗତ ଜ୍ଞାନ ଯୋଗୁ ପୃଥିବୀର ଦୂରତା କମିଯିବାରେ ଲାଗିଛି । ପୃଥିବୀରେ ଯେଉଁଠି ଯାହା ଉଲ୍ଲେଖନୀୟ ଘଟଣା ଘଟୁଛି, ତାହା ଘଟିବାର ମାତ୍ର କେତୋଟି ଘଣ୍ଟା ଭିତରେ ସମଗ୍ର ମାନବଜାତିର ଦୃଷ୍ଟି ଆକର୍ଷଣ କରିପାରୁଛି । କୌଣସି ପ୍ରାକୃତିକ ଦୁର୍ବିପାକ ବିଷୟରେ ପୂର୍ବ ସୂଚନା ବିଜ୍ଞାନ ଯୋଗୁ ଜଣାପଡୁଛି । ପୃଥିବୀର ଯେକୌଣସି ପ୍ରାନ୍ତରର ବ୍ୟକ୍ତି ସହ ଖୁବ୍ ଅକ୍ଲେଶରେ ସମ୍ପର୍କ ବା ଯୋଗାଯୋଗ କରାଯାଇପାରୁଛି । ମୋବାଇଲ ଫୋନ୍, ଇଣ୍ଟରନେଟ୍, ଇମେଲ, ଫେସ୍ ବୁକ୍ ଇତ୍ୟାଦି ସାହାଯ୍ୟରେ ଅତି ଅନାୟାସରେ ଅନ୍ୟ ସହ ସଂପର୍କ କରାଯାଇପାରୁଛି । ପୃଥିବୀର ଜନଗଣଙ୍କୁ ଭୌତିକ ସ୍ତରରେ ଯୋଡିବାରେ ବିଜ୍ଞାନ ଓ ପ୍ରାଯୁକ୍ତିକ କୌଶଳ ଉଲ୍ଲେଖନୀୟ ସଫଳତା ସୃଷ୍ଟି କରିପାରିଛି । ସମଗ୍ର ବିଶ୍ୱ ଏକ ଗ୍ରାମ, ସମଗ୍ର ମଣିଷ ଜାତି ଏକ ପରିବାର ଯାହା ଦିନେ ଏକ କଳ୍ପନାର ବସ୍ତୁ ଥିଲା ତାହା ମନୁଷ୍ୟର ଜ୍ଞାନକୌଶଳ ଯୋଗୁ ଏବେ ବାସ୍ତବତାରେ ପରିଣତ ହେବାର ଦ୍ୱାରଦେଶରେ ଉପନୀତ ହୋଇପାରିଛି ।

ବିଜ୍ଞାନର ବିକାଶ ସହ ମାନବବାଦୀ ଜୀବନଦୃଷ୍ଟିର ପ୍ରସାର ବ୍ୟାପକ ହୋଇପାରିଲେ ଆମ ସଂସାର ଯେ ପ୍ରୀତିମୟ ହୋଇ ଉଠିବ ଏହା କେତେକ ମାନବବାଦୀ ଦାର୍ଶନିକ ଓ ବୁଦ୍ଧିଜୀବୀ ଆଶାପୋଷଣ କରୁଛନ୍ତି । ଆଜକୁ ଶହେ ବର୍ଷ ତଳେ ପୃଥିବୀରେ

ଯେପରି ଯୁଦ୍ଧର ବିଭୀଷିକା ରହିଥିଲା, ସାମ୍ରାଜ୍ୟବାଦୀ ଶୋଷଣ ବିସ୍ତାରଲାଭ କରିଥିଲା, କେତେକ ଅଞ୍ଚଳରେ ଦୁର୍ଭିକ୍ଷ ଜନିତ ଗଣମୃତ୍ୟୁର ପରିବେଶ ସୃଷ୍ଟି ହେଉଥିଲା, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ସାଧାରଣ ମଣିଷ ପାଖରେ ଅପହଞ୍ଚ ଥିଲା ସେହି ସ୍ଥିତିଠାରୁ ଆଜିର ସ୍ଥିତି ବେଶ୍ ଉନ୍ନତ ଜଣାପଡେ । ଅନ୍ତତଃ ଏହି ସବୁ ପରିସ୍ଥିତିରୁ ମାନବଜାତି ମୁକ୍ତ ହୋଇଥିବା ମନେହୁଏ । ଏହି ପରିପ୍ରେକ୍ଷୀରେ ଅନେକ ଆନ୍ତର୍ଜାତିକ ସଂଗଠନ ମଣିଷ ସମାଜର ସମସ୍ୟା ଦୂର କରି ସମଗ୍ର ବିଶ୍ୱରେ ଭ୍ରାତୃତ୍ୱଭାବ ଓ ଗୁଣାତ୍ମକ ଜୀବନ ସୃଷ୍ଟି କରିବାକୁ ପ୍ରୟାସ କରୁଥିବା ଦେଖାଯାଏ । ମିଳିତ ଜାତିସଂଘ ମାନବିକ ସମସ୍ୟାକୁ ବିଶ୍ୱ ସ୍ତରରେ ଆଲୋଚନା କରି ତାହାର ସମାଧାନର ସୂତ୍ର ବାହାର କରିବାକୁ ପ୍ରୟାସ କରିଆସୁଛି । ସେହିପରି ଆର୍ଥ ଫେଡେରେସନ, ରେଡକ୍ରସ, ଅମ୍ନେଷ୍ଟି ଇଣ୍ଟରନେସନାଲ ପରି ସଂଗଠନମାନ ସମଗ୍ର ବିଶ୍ୱରେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ, ସମଗ୍ର ଜନସାଧାରଣଙ୍କ ଭିତରେ ସ୍ୱାସ୍ଥ୍ୟସେବା, ମାନବିକ ଅଧିକାରର ସୁରକ୍ଷା ଇତ୍ୟାଦି ଦିଗରେ କାର୍ଯ୍ୟ କରୁଛନ୍ତି । ଏସବୁ କାର୍ଯ୍ୟ ପଶ୍ଚାତରେ ରହିଛି ମାନବବାଦୀ ଜୀବନଦୃଷ୍ଟି ।

ମାନବବାଦୀ ଜୀବନଦୃଷ୍ଟି ନୈତିକ ଚେତନାର ଏକ ପ୍ରସାରିତ ଅଭିବ୍ୟକ୍ତି । ମାନବିକ ସମ୍ବେଦନଶୀଳତା, ନ୍ୟାୟବୋଧ, ସମତାଭାବ ପରି ମୂଲ୍ୟଚୟ ମାନବବାଦୀ ଜୀବନଦୃଷ୍ଟିର ନିଷ୍କର୍ଷ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ସବୁ ମୂଲ୍ୟଚୟର ପ୍ରସାର ଦିଗରେ ବିଶ୍ୱ ସ୍ତରରେ ପ୍ରୟାସ ହେବା ବାଂଛନୀୟ । ପୁନଶ୍ଚ ମାନବବାଦ ବହୁ ଦାର୍ଶନିକ, ବୌଦ୍ଧିକ, ଧାର୍ମିକ ଓ ଧର୍ମନିରପେକ୍ଷୀୟ ଧାରାମାନଙ୍କରେ ବ୍ୟକ୍ତ ହେବା ଦେଖାଯାଏ । ମାନବବାଦର ଯେତେ ଯେତେ ବ୍ୟାଖ୍ୟା ଓ ଅଭିବ୍ୟକ୍ତି ଦେଖିବାକୁ ମିଳେ ସେ ସବୁକୁ ମୋଟାମୋଟି ଭାବରେ ଦୁଇଟି ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରେ ଯଥା ଧର୍ମକୈନ୍ଦ୍ରିକ ମାନବବାଦ ଓ ଧର୍ମନିରପେକ୍ଷୀୟ ବା ନୈତିକ ମାନବବାଦ । ବିଭିନ୍ନ ଧର୍ମ ପରିସରରେ ମାନବସେବାକୁ ପ୍ରାଧାନ୍ୟ ଦିଆଯିବା ଦେଖାଯାଏ । କେତେକ ଧର୍ମଭାବନାରେ ଦୁଃସ୍ଥ ମଣିଷର ସେବାକୁ ଜୀବନର ଶ୍ରେୟ ଭାବରେ ଗ୍ରହଣ କରାଯାଏ । ଅନ୍ୟର ଦୁଃଖରେ ସମଭାଗୀ ହେବାର ଅନୁଭବ ହେଉଛି ମାନବତାବାଦ ବା ହ୍ୟୁମାନିଟେରିୟାନିଜିମ୍ ଯାହା ମାନବବାଦଠାରୁ ଭିନ୍ନ । ଧାର୍ମିକ ବିଶ୍ୱାସ ପୃଷ୍ଠଭୂମିରେ ମାନବତାବାଦ ଈଶ୍ୱରପ୍ରାପ୍ତି, ସ୍ୱର୍ଗପ୍ରାପ୍ତି ବା ମୋକ୍ଷଲାଭର ପ୍ରଧାନ ସାଧନ । ଏ କ୍ଷେତ୍ରରେ ଏକ ପାରଲୌକିକ ଜୀବନଦୃଷ୍ଟିର ଲକ୍ଷ୍ୟ ଅନ୍ତର୍ନିହିତ ଥିବା ଦେଖାଯାଏ । ଅଧିକାଂଶ ଧର୍ମରେ ଜୀବନର ଅନ୍ତିମ ଲକ୍ଷ୍ୟ ଭାବେ ଏକ ପାରଲୌକିକ ପ୍ରାପ୍ତି ବା ମରଣୋତ୍ତର କାଳ୍ପନିକ ଉପଲବ୍ଧିକୁ ପ୍ରାଧାନ୍ୟ ଦିଆଯାଏ । ଏପରିକି ଧାର୍ମିକ ମାନସିକତାରେ ନୀତିପୂର୍ଣ୍ଣ ଜୀବନକୁ ଏକ ସାମାଜିକ କର୍ତ୍ତବ୍ୟ ଭାବେ

ଗ୍ରହଣ କରାନଯାଇ ଏକ ପାରଲୌକିକ ପ୍ରାପ୍ତିର ସାଧନ ଭାବେ ଗ୍ରହଣ କରାଯାଏ । ଧର୍ମମାନଙ୍କରେ ନୈତିକ ଜୀବନଧାରାକୁ ପ୍ରାଧାନ୍ୟ ଦିଆଯିବାର ଉଦ୍ଦେଶ୍ୟ ଐହିକ ନହୋଇ ପାରଲୌକିକ ହୋଇଥାଏ । ପରନ୍ତୁ ନୈତିକ ମାନବବାଦ ବା ଏଥିକାଲ ହ୍ୟୁମାନିଜିମ୍ ଏହି ଜୀବନକୁ ପ୍ରାଧାନ୍ୟ ଦିଏ, ଏକ ଆନନ୍ଦ ଓ ପ୍ରୀତିଭରା ସମ୍ବନ୍ଧ ଉପରେ ଗୁରୁତ୍ୱ ଦିଏ ଓ ଏକ ସମତାଭିତ୍ତିକ, ନ୍ୟାୟପୂର୍ଣ୍ଣ ଓ ମାନବିକ ମର୍ଯ୍ୟାଦାର ସଫଳ ରୂପାୟନ ପାଇଁ ନିଜର ଗଭୀର ସଂପୃକ୍ତି ବ୍ୟକ୍ତ କରିଥାଏ । ବ୍ୟକ୍ତିକୁ ତାର କାର୍ଯ୍ୟ ପାଇଁ ଏହା ଉତ୍ତରଦାୟୀ କରେ । ମାନବବାଦ ଏହି ଜଗତରେ ମଣିଷର ଉପସ୍ଥିତିକୁ ସ୍ୱୀକାର କରି ମଣିଷର ଦୁଃଖ ରହିତ ଶାନ୍ତିପୂର୍ଣ୍ଣ ଓ ସୃଜନଶୀଳ ଜୀବନକୁ ମହତ୍ତ୍ୱ ଦେଇଥାଏ । ପ୍ରତ୍ୟେକ ବ୍ୟକ୍ତି ଭିତରେ ରହିଥିବା ସାମର୍ଥ୍ୟ ଓ ସୃଜନଶୀଳତାକୁ ବିକଶିତ କରାଇ ତାହାଦ୍ୱାରା ସମାଜର କ୍ରମୋନ୍ନତିକୁ ଗୁରୁତ୍ୱ ଦିଏ । ଆଜି ଆମେ ସମାଜରେ ଯେଉଁ ସବୁ ସୁବିଧା, ସୁଯୋଗ ଉପଭୋଗ କରୁଛେ ତାହା ପଶ୍ଚାତରେ ଆମ ପିତା, ପିତାମହ, ପ୍ରପିତାମହମାନଙ୍କର ଅବଦାନ ରହିଛି । ସେହିପରି ଆମର କାର୍ଯ୍ୟ ଦ୍ୱାରା ଆମର ଆଗାମୀ ବଂଶଧର ମାନେ ଅଧିକ ସୁଖପ୍ରଦ ଓ ଆନନ୍ଦଭରା ପରିବେଶରେ ଯେ ଜୀବନ ବଞ୍ଚିବେ ଏହା ଆମେ ଚିନ୍ତା କରିବା କଥା । କୌଣସି କଳ୍ପିତ ସ୍ୱର୍ଗ, ଈଶ୍ୱରପ୍ରାପ୍ତି ପରିବର୍ତ୍ତେ ଆମେ ଏହି ଜୀବନକୁ ଓ ଆଗାମୀ ପିଢ଼ିର ଜନଗଣଙ୍କୁ ଉନ୍ନତ କରିବା ପାଇଁ ଆମର ପ୍ରୟାସକୁ ମାନବବାଦ ପ୍ରାଧାନ୍ୟ ଦେଇଥାଏ । ମାନବବାଦ ବିଶ୍ୱାସକରେ ଯେ ଆମେ ଏକ ପରସ୍ପର ନିର୍ଭରଶୀଳ ପୃଥିବୀରେ ବାସକରୁଛେ । ପୃଥିବୀରେ ଯେଉଁଠି ଯାହା ଜ୍ଞାନର ବିକାଶ ହୋଇଛି ତାହାର ସୁଫଳ ସମଗ୍ର ମାନବଜାତି ଉପଭୋଗ କରୁଛୁ । ଏହି ଦୃଷ୍ଟିରୁ ଆମେ ପରସ୍ପର ଉପରେ ନିର୍ଭରଶୀଳ ହୋଇ ରହିଛେ । ଅତୀତରେ ନାନା କାରଣରୁ ଓ ବିଚାରଶୀଳତାର ଅଭାବରୁ ଆମ ସଂସାରରେ ଅନେକ ଭେଦଭାବ ସୃଷ୍ଟି ହୋଇଥିଲା । ଆମେ ସକଳ ଭେଦଭାବ ଓ ପ୍ରାଚୀରକୁ ଦୂରକରି ପରିସ୍ପର ପ୍ରତି ସମ୍ମାନବୋଧ ରଖି ଜୀବନ ନିର୍ବାହ କରିବା ନୈତିକ ମାନବବାଦର ଆଦର୍ଶ ଅଟେ । ଆମେ ନିଜେ ଆତ୍ମସମ୍ମାନର ସହ ବଞ୍ଚିବା ଓ ଅନ୍ୟର ସମ୍ମାନ ଓ ସ୍ୱାଭିମାନକୁ ସ୍ୱୀକାର କରିବା ନୈତିକ ମାନବବାଦର ଏକ ମୂଳାଦର୍ଶ ଅଟେ । ଏହା ସହ ନୈତିକ ମାନବବାଦ ବିଶ୍ୱାସ କରେ ଯେ ମାନବ ସଭ୍ୟତାରେ ଯାହା କିଛି ଜ୍ଞାନ, ପ୍ରଯୁକ୍ତି ବିକାଶଲାଭ କରିଛି ଓ ଯାହା ସବୁ ପ୍ରାକୃତିକ ଉପାଦାନରେ ନିର୍ମିତ ହୋଇଛି ସେସବୁ ମଣିଷର ବୁଦ୍ଧି ଓ ପ୍ରୟାସ ଯୋଗୁ ସମ୍ଭବ ହୋଇପାରିଛି । କିଛି ବ୍ୟକ୍ତିଙ୍କର ବୌଦ୍ଧିକ ଅନୁସନ୍ଧିତ୍ସା, ପ୍ରକୃତି ଓ ଜୀବନର ରହସ୍ୟକୁ ଜାଣିବାର ଅନୁରାଗ ମଧ୍ୟରୁ ବୈଜ୍ଞାନିକ ଉଦ୍‌ଭାବନ ଓ ଆବିଷ୍କାର ସମ୍ଭବ ହୋଇଛି । ସଭ୍ୟ ଜୀବନଦୃଷ୍ଟି ଜନିତ ନୈତିକ ମୂଲ୍ୟବୋଧର ଭାବନା ଆସିଛି, ଜୀବନକୁ ଅଧିକ ପ୍ରୀତିପୂର୍ଣ୍ଣ ଓ ଅର୍ଥପୂର୍ଣ୍ଣ ହେବାର ସମ୍ଭାବନା ସୃଷ୍ଟି ହୋଇଛି । ମଣିଷ ନିଜର ମସ୍ତିଷ୍କ ଓ

ହାତ ଖଟାଇ ସଭ୍ୟତାର ବିକାଶ ପାଇଁ ସଂପୃକ୍ତି ବ୍ୟକ୍ତ କରିଛି । ସେହି ପ୍ରୟାସରୁ ହିଁ ଏକ ଆଦିମ ଅବସ୍ଥାରୁ ଆଜିର ସ୍ଥିତି ପର୍ଯ୍ୟନ୍ତ ମଣିଷ ଜାତି ଆସିପାରିଛି । ଆଗାମୀ ଦିନରେ ମାନବ ସଭ୍ୟତା ଯେ ଆହୁରି ଉନ୍ନତତର ସ୍ଥିତିକୁ ଯାଇପାରିବ ଓ ଏକ ଦୁଃଖରହିତ ସ୍ଥିତିକୁ ସମ୍ଭବ କରାଇବ ଏହା ନୈତିକ ମାନବବାଦ ଆଶା ପୋଷଣ କରିଥାଏ । ମଣିଷ ଭିତରେ ଯାହା କିଛି ସୃଜନଶୀଳ ସାମର୍ଥ୍ୟ ରହିଛି ତାହାର ଉପଯୁକ୍ତ ବିକାଶ କେବଳ ସାମାଜିକ ଜୀବନଧାରାରେ ହିଁ ସମ୍ଭବ ହୋଇଥାଏ । ଏଥିପାଇଁ ସାମାଜିକ ପରିବେଶ, ଶିକ୍ଷା ବ୍ୟବସ୍ଥା ଯେତେ ଉନ୍ନତ ହେବ, ତାର ପରିଣାମରୁ ବ୍ୟକ୍ତି ତାହାର ସୃଜନଶୀଳତାକୁ ପରିସ୍ଫୁଟ କରିବାର ଅବକାଶ ପାଇବ । ପ୍ରତ୍ୟେକ ବ୍ୟକ୍ତିର ସାମର୍ଥ୍ୟକୁ ବିକଶିତ କରାଇ ପ୍ରତ୍ୟେକ ନାଗରିକକୁ ବୃହତ୍ତର ସମାଜ ପାଇଁ ଉତ୍ତରଦାୟୀ କରାଇବାର ସମ୍ଭାବନାକୁ ନୈତିକ ମାନବବାଦ ପ୍ରାଧାନ୍ୟ ଦିଏ । ଏକ ବିକଶିତ ସମାଜ, ସୁଖ ଆନନ୍ଦଭରା ପରିବେଶ, କର୍ତ୍ତବ୍ୟବୋଧ ଓ ବୃହତ୍ତର ସମାଜ ପ୍ରତି ଉତ୍ତରଦାୟିତ୍ୱ ଭାବକୁ ବିକଶିତ କରାଇବା ଉପରେ ଏହା ଗୁରୁତ୍ୱ ଦେଇଥାଏ । ଏହା ଛଡା ବ୍ୟକ୍ତି ସ୍ୱାଧୀନତା, ନିଜ ରୁଚିର ବୃତ୍ତି ଗ୍ରହଣ କରିବାର ସ୍ୱାତନ୍ତ୍ରତା ଓ ସମାଜ ପାଇଁ କୌଣସି କ୍ଷତି ନ ଘଟାଇ ନିଜ ଜୀବନଶୈଳୀ ପରିଚାଳିତ କରିବାର ଅଧିକାର ପ୍ରତ୍ୟେକ ବ୍ୟକ୍ତି ଉପଭୋଗ କରିବା ଆବଶ୍ୟକ । ବିଶେଷକରି ସମତା, ନ୍ୟାୟ ଓ ମାନବିକ ସମ୍ବେଦନଶୀଳତାର କ୍ରମବର୍ଦ୍ଧିଷ୍ଣୁ ଉପଯୋଗ ସାମାଜିକ ଜୀବନର ଆଦର୍ଶ ହେବା ଦରକାର । ସମାଜରେ ଯାହା କିଛି ଅନ୍ୟାୟ, ଭେଦଭାବ, ମନ୍ଦ-ସଂସ୍କାର ଓ ବିଚାରହୀନତା ରହିଛି ତାହାର ଦୂରୀକରଣ କରିବାକୁ ନୈତିକ ମାନବବାଦ ନିବେଦନ କରିଆସିଛି । ଏହା ବିଶ୍ୱାସ କରି ଆସଛି ଯେ ଯେଉଁ ସବୁ ମନ୍ଦ ସଂସ୍କାର ମାନ ଗତାନୁଗତିକ ପ୍ରଥା ଭାବେ ସମାଜରେ ରହିଆସିଛି ସେସବୁର ଦୂରୀକରଣ ପାଇଁ ବିଚାରବୋଧ ଓ ନୀତିବୋଧର ପ୍ରସାରକୁ ପ୍ରାଧାନ୍ୟ ଦିଆଯାଇ ପାରିବ । ସମଗ୍ର ମଣିଷ ସମାଜର ଏକତ୍ୱକୁ ସ୍ୱୀକାର କଲେ ଓ ସକଳ ଭେଦଭାବ ଜନିତ ମାନସିକତାକୁ ଦୂର କଲେ ଏକ ପ୍ରୀତିଭରା 'ବିଶ୍ୱ ସମାଜ' ଯେ ସମ୍ଭବ ହୋଇପାରିବ ଏହି ସ୍ୱପ୍ନ ପୃଥିବୀର କିଛି ମାନବଦରଦୀ ଦାର୍ଶନିକ, ରାଷ୍ଟ୍ରନୀତିଜ୍ଞ ବ୍ୟକ୍ତ କରି ଆସୁଛନ୍ତି । ଦ୍ୱାବିଂଶ ଶତାବ୍ଦୀ ବେଳକୁ ଏକ ବିଶ୍ୱ, ଏକ ମାନବ ସମାଜ ଯେ ରୂପରେଖ ନେବ ଏହା ଆଶା କରାଯାଏ । ରାଷ୍ଟ୍ର, ଜାତୀୟତାବାଦ ପରିବର୍ତ୍ତେ ବିଶ୍ୱ-ରାଷ୍ଟ୍ର ଓ ଆନ୍ତର୍ଜାତୀୟତା ପ୍ରତିଷ୍ଠା ଲାଭକରିବ ବୋଲି କଳ୍ପନା ପ୍ରକାଶ ପାଉଛି ।

(୪.୩.୨୦୧୫)



# ନୈତିକତା ଓ ବିଚାରଶୀଳତା

"ନୈତିକତା" ବ୍ୟକ୍ତିର ଆଚରଣ ଓ ସାମାଜିକ କର୍ତ୍ତବ୍ୟବୋଧ ସହ ସଂଶ୍ଳିଷ୍ଟ । ବ୍ୟକ୍ତିଦ୍ୱାରା ସଂପାଦିତ ଇଚ୍ଛାକୃତ କାର୍ଯ୍ୟ କିଛି ମାନଦଣ୍ଡ ଆଧାରରେ ନୀତିପୂର୍ଣ୍ଣ ବା ଅନୈତିକ ବୋଲି ବିବେଚିତ ହୋଇଥାଏ । ଜଣେ ସ୍ୱଇଚ୍ଛାରେ ଯାହା କରେ, ତାହା ନୀତି ଦୃଷ୍ଟିରୁ ଭଲ ବା ମନ୍ଦ ବୋଲି ଗୃହୀତ ହୁଏ । ନୀତି, ନୈତିକତା ଜନିତ ପ୍ରଶ୍ନ ସାମାଜିକ ସମ୍ବନ୍ଧ ଦୃଷ୍ଟିରେ ଆସିଥାଏ । ବ୍ୟକ୍ତି ନାନା ସମ୍ବନ୍ଧ ନେଇ ସମାଜ ସହ ସଂଶ୍ଳିଷ୍ଟ ହୁଏ । ପାରିବାରିକ ସଂପର୍କ, ସାମାଜିକ କର୍ତ୍ତବ୍ୟ, ବୃହତ୍ତର ସମାଜ ସହ ଆଦାନ ପ୍ରଦାନ ନେଇ ବ୍ୟକ୍ତି ବିଭିନ୍ନ କାର୍ଯ୍ୟ କରେ । ଯେଉଁ କାର୍ଯ୍ୟ ସଂପାଦନ ବ୍ୟକ୍ତି ନଜସ୍ୱ ନିଷ୍ପତ୍ତିରେ କରିଥାଏ ତାହା ନୈତିକ ପରିସରକୁ ଆସିଥାଏ । ଯେଉଁ କାର୍ଯ୍ୟ କରିବା କ୍ଷେତ୍ରରେ ବ୍ୟକ୍ତିର ନିଜସ୍ୱ ନିଷ୍ପତ୍ତି ନଥାଏ ବରଂ ପରିସ୍ଥିତି ଗତ ଚାପ ରହିଥାଏ ତାହା ନୈତିକ ପରିସରଭୁକ୍ତ ହୁଏ ନାହିଁ । ଜଣେ ଯେତେବେଳେ କୌଣସି କାର୍ଯ୍ୟ ବଳପୂର୍ବକ ଚାପର ବଶବର୍ତ୍ତୀ ହୋଇ କରେ କିମ୍ବା ନିଜର ଆତ୍ମରକ୍ଷା ପାଇଁ କରେ ତାହା ଭଲ-ମନ୍ଦ ଦୃଷ୍ଟିରୁ ବଚାର୍ଯ୍ୟ ହୁଏ ନାହିଁ । ସେହିପରି ସ୍ୱୟଂଚାଳିତ ବା ସ୍ୱତଃସ୍ଫୂର୍ତ୍ତ ଜନିତ ଆବେଗିକ କାର୍ଯ୍ୟ ନୈତିକ ପରିସରକୁ ଆସେ ନାହିଁ । ବରଂ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରଖି ଉଦ୍ଦେଶ୍ୟମୂଳକ ଭାବେ କରାଯାଉଥିବା କାର୍ଯ୍ୟ ନୈତିକ ପରିସରକୁ ଆସେ । ନୈତିକ ପରିସରର କାର୍ଯ୍ୟ ଭଲ ବା ମନ୍ଦ, କରଣୀୟ ବା ଅକରଣୀୟ, ନୀତିପୂର୍ଣ୍ଣ ବା ଅନୈତିକ ବିବେଚିତ ହୋଇଥାଏ । ଏକ କାର୍ଯ୍ୟକୁ ଭଲ ବା ମନ୍ଦ ବୋଲି ବିଚାର କଲାବେଳେ କିଛି ମାନଦଣ୍ଡର ସାହାଯ୍ୟ ନିଆଯାଏ । ଏକ କାର୍ଯ୍ୟକୁ ଭଲ ବା ମନ୍ଦ ବୋଲି କିପରି ସ୍ଥିର କରାଯାଏ- ଏକ ଜଟିଳ ପ୍ରଶ୍ନ । ତେବେ ସାଧାରଣତଃ ଏଥି ପାଇଁ କିଛି ମାନଦଣ୍ଡକୁ ସ୍ୱୀକାର କରି ନିଆଯାଏ । ମାନଦଣ୍ଡ ବଦଳିଗଲେ ଭଲ ବା ମନ୍ଦର ମୂଲ୍ୟାୟନ ବି ବଦଳିଯାଏ । ଏହି କ୍ଷେତ୍ରରେ ବିଭିନ୍ନ ପ୍ରଶ୍ନର ଅବତାରଣା ହୋଇଥାଏ । ଏକ କାର୍ଯ୍ୟର ପରିଣାମ ଭଲ ହେଲେ କାର୍ଯ୍ୟଟି ଭଲ ହୁଏ କି ? ସବୁ କ୍ଷେତ୍ରରେ ପରିଣାମକୁ ନେଇ କାର୍ଯ୍ୟର ନୈତିକ ଉତ୍କୃଷ୍ଟତା ବିଚାର କରାଯାଏ ନାହିଁ । ଜଣେ ରୋଗୀଙ୍କର

ଆରୋଗ୍ୟ ପାଇଁ ଅସ୍ତ୍ରୋପଚାର କରାଗଲା ବେଳେ ଯଦି ତାଙ୍କର ଦେହାନ୍ତ ହୁଏ, ଏଠାରେ ପରିଣାମଟି ନକାରାତ୍ମକ ହେଲେ ମଧ ଡାକ୍ତରଙ୍କର କାର୍ଯ୍ୟକୁ ମନ୍ଦ କୁହାଯାଇ ପାରିବ ନାହିଁ । କେଉଁ ଉଦ୍ଦେଶ୍ୟ ରଖି କାର୍ଯ୍ୟଟି କରାଯାଉଛି ତାହା ବିଚାର ପରିସରକୁ ଆସିଥାଏ । ସୁଉଦ୍ଦେଶ୍ୟ ରଖି କରାଯାଉଥିବା କାର୍ଯ୍ୟରୁ ଯଦି ଭଲ ପରିଣାମ ଆସେ ସେତେବେଳେ ମନ୍ଦ ପରିଣାମ ପାଇଁ କର୍ତ୍ତାଙ୍କର କାର୍ଯ୍ୟକୁ ଅନୈତିକ କୁହାଯାଇ ପାରିବ ନାହିଁ । ପୁନଶ୍ଚ ଉଦ୍ଦେଶ୍ୟ ଭଲ ହେଲେ ଏକ କାର୍ଯ୍ୟକୁ ଭଲ ବୋଲି କୁହାଯାଇ ପାରିବ କି ? ଜଣେ କର୍ତ୍ତା ସୁଉଦ୍ଦେଶ୍ୟ ରଖି କାର୍ଯ୍ୟଟି କରୁଛନ୍ତି, କିନ୍ତୁ ଯଦି ସେ ପ୍ରୟୋଗ କରୁଥିବା ପନ୍ଥାଟି ମନ୍ଦ ହୋଇଥାଏ, ସେତେବେଳେ ତାଙ୍କ କାର୍ଯ୍ୟକୁ ଭଲ କୁହାଯାଇ ନପାରେ । ପରୀକ୍ଷାରେ ଉତୀର୍ଣ୍ଣ ହେବା, ଉଚ୍ଚଶିକ୍ଷାର ଲକ୍ଷ୍ୟ ରଖିବା ଜଣେ ବିଦ୍ୟାର୍ଥୀ କାମନା କରିଥାନ୍ତି । କିନ୍ତୁ ଏଥି ପାଇଁ ଯଦି ସେ ନିଜର ପରିଶ୍ରମ ଓ କର୍ତ୍ତବ୍ୟନିଷ୍ଠା ପରିବର୍ତ୍ତେ ଅସତ୍ ଉପାୟ ଅବଲମ୍ବନ କରନ୍ତି ତେବେ ତାହା ଏକ ମନ୍ଦ କାର୍ଯ୍ୟ ବୋଲି ଗୃହୀତ ହୋଇଥାଏ । ସୁତରାଂ ବ୍ୟକ୍ତିର ଉଦ୍ଦେଶ୍ୟ ଭଲ ହେବା ସହ ପ୍ରୟୋଗ କରୁଥିବା ପନ୍ଥା ଭଲ ହେବା ଆବଶ୍ୟକ ।

ଏକ ସାମାଜିକ ଜୀବନ ପ୍ରବାହରେ ନୈତିକ କାର୍ଯ୍ୟ ପ୍ରତି ଯେତେ ଅଧିକ ସମ୍ମତି ପ୍ରକାଶ ପାଉଥାଏ ଓ ଅନ୍ୟାୟ କାର୍ଯ୍ୟ ପ୍ରତି ଅସମ୍ମତି ଥାଏ ତାହା ସୁସ୍ଥ ପରିବେଶର ସୂଚନା ଦେଉଥାଏ । ନୀତି, ନୈତିକତା, ମୂଲ୍ୟବୋଧ ନାଗରିକଙ୍କର ଜୀବନଧାରାରେ ଯେତେ ଅଧିକ ପ୍ରତିଫଳିତ ହେଉଥାଏ ତାହା ଏକ ଉନ୍ନତ ସମାଜର ଚିତ୍ର ଦିଏ ଅଥଚ ଯଦି ଏସବୁ ପ୍ରତି ବିତସ୍ପୃହତା ଦେଖାଯାଏ, ତେବେ ସମାଜ କ୍ଷୟଶୀଳ ହେବା ମନେହୁଏ । ପ୍ରତ୍ୟେକ ସମାଜର ସବୁ ସ୍ତରରେ ଯେ ନ୍ୟାୟ ଓ ନୈତିକତାର ପ୍ରତିଫଳନ ହେଉଥାଏ ଏହା କୁହାଯାଇନପାରେ । ବରଂ ସମାଜରେ କିଛି ଅନ୍ୟାୟ, ଅନୀତି ରହିବା ଏକ ସାଧାରଣ ଅନୁଭବ ଅଟେ । ଏପରିକି ଅସତ୍ ଓ ଅନ୍ୟାୟ ପନ୍ଥାରେ ଯାଇ ସାମାଜିକ ପ୍ରତିଷ୍ଠା ପାଇବା, ସମ୍ମାନର ଅଧିକାରୀ ହେବା, ଆର୍ଥିକ ସ୍ଥିତିକୁ ସୁଦୃଢ଼ କରିବା ଦୃଷ୍ଟାନ୍ତ ବିରଳ ନୁହେଁ । ଠିକ୍ ସେହିପରି ସାଧୁତା ଓ ନ୍ୟାୟପୂର୍ଣ୍ଣ ପନ୍ଥାରେ ରହି ନାନା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହେବାର ଦୃଷ୍ଟାନ୍ତ ମଧ ସମାଜରେ ଦେଖିବାକୁ ମିଳେ । ନୀତି, ନୈତିକତାର ଉଲଘଂନ ସାମାଜିକ ଜୀବନଧାରାରେ ବ୍ୟତିକ୍ରମ ହେବା ଆବଶ୍ୟକ, ଏହା ବ୍ୟତିକ୍ରମ ନ ହୋଇ ଧାରାରେ ପରିଣତ ହେବା ସମାଜ ପାଇଁ ମଙ୍ଗଳପ୍ରଦ ନୁହେଁ । ଯଦି ସମାଜର ବିଭିନ୍ନ ସ୍ତରରେ ନୀତିପୂର୍ଣ୍ଣ କାର୍ଯ୍ୟର ଆଦର ରୁହେ ଓ ନୀତିବାଦୀ ବ୍ୟକ୍ତି ସମ୍ମାନର ଅଧିକାରୀ ହୁଅନ୍ତି, ତେବେ ସମାଜର ସୁସ୍ଥ ବିକାଶ ହେବା ବିଷୟକୁ ଗ୍ରହଣ କରାଯାଏ । ପରନ୍ତୁ ଯଦି ସମାଜର ସାଧାରଣ ମନସ୍ତତ୍ତ୍ୱ ଭିତରେ କୌଣସି ଲକ୍ଷ୍ୟ ହାସଲ ପାଇଁ ଯେକୌଣସି ପନ୍ଥାର ଆଶ୍ରୟ

ନିଆଯାଏ ଓ ତାହା ବାସ୍ତବବାଦୀ ହେବାର ଯୁକ୍ତି କରାଯାଏ ତେବେ ସମାଜ କ୍ଷୟଶୀଳ ହେବାର ସୂଚନା ମିଳିଥାଏ । ସମାଜ ଯେତେ ଅଧିକ କ୍ଷୟଶୀଳ ହୁଏ, ଜନଗଣଙ୍କର ଜୀବନର ଗୁଣାତ୍ମକ ମାନ ନ୍ୟୁନ ହୋଇଥାଏ ଓ ସମାଜର ଶାନ୍ତି, ସ୍ଥିରତା ଓ ସଦ୍‌ଭାବ ନଷ୍ଟ ହୋଇଥାଏ । କୌଣସି ସମାଜ ଅସାଧୁତା, ଅନୈତିକତା ଓ ଅମାନବିକତାର ପ୍ରସାର ଚାହେଁ ନାହିଁ ବରଂ ଏସବୁକୁ ନିୟନ୍ତ୍ରଣ କରିବାକୁ ଚାହେଁ ।

ନୀତି, ନୈତିକତା, ଶିଷ୍ଟାଚାର, ଶୃଂଖଳାବୋଧ ବ୍ୟକ୍ତି ତାର ସାମାଜିକ ପରିବେଶରୁ ଆହରଣ କରିଥାଏ । ବ୍ୟକ୍ତି ସ୍ୱଭାବରେ ନୀତିବୋଧ ନେଇ ବିଚାରଶୀଳ ଦୃଷ୍ଟି ଉଦ୍ରେକ କରିବାରେ ସାମାଜିକ ପରିବେଶର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିବା ମନେହୁଏ । ବ୍ୟକ୍ତି ଭିତରେ ଆବେଗ ଜନିତ ପ୍ରବୃତ୍ତି ରହିବା ଯେପରି ଦେଖାଯାଏ ସେହିପରି ଉତ୍ତମ ବିଚାରବୋଧ ସୃଷ୍ଟି କରିବାରେ ସାମାଜିକ ପରିବେଶ ମୁଖ୍ୟ ଭୂମିକା ନେଇଥାଏ । ପ୍ରତ୍ୟେକ ବ୍ୟକ୍ତି ଭିତରେ ନାନା କାମନା, ବାସନା, ଆବେଗ, ଭାବପ୍ରବଣତା, ପ୍ରେମାନୁଭୂତି ରହିବା ଦେଖାଯାଏ । ବ୍ୟକ୍ତିର ଆବେଗ, ପ୍ରବୃତ୍ତି ପ୍ରାୟତଃ ସହଜାତ । କିନ୍ତୁ ଚିନ୍ତା କରିବା, ଭଲ-ମନ୍ଦର ପାର୍ଥକ୍ୟ କରିବା, ସତ୍‌ମାର୍ଗରେ ନିଜକୁ ପରିଚାଳିତ କରିବା, ନୀତିପୂର୍ଣ୍ଣ ଜୀବନ ପାଇଁ ଆଗ୍ରହୀ ହେବା, ଅନ୍ୟାୟ ଓ ଅସତ୍ ମାର୍ଗରୁ ଦୂରେଇ ଯିବା ଇତ୍ୟାଦି ଗୁଣ ସବୁ ବ୍ୟକ୍ତି ଭିତରର ସହଜାତ ଲକ୍ଷଣ ନୁହେଁ । ଏସବୁ ସାମାଜିକ ପରିବେଶ, ଶିକ୍ଷା, ପାରିବାରିକ ସଂସ୍କାର ଓ ବ୍ୟକ୍ତିର ନିଜସ୍ୱ ନୈତିକ ଅବବୋଧ ଉପରେ ନିର୍ଭର କରିଥାଏ । ଅର୍ଥାତ୍ ପାରିବାରିକ, ସାମାଜିକ, ଶୈକ୍ଷିକ ଓ ସାଂସ୍କୃତିକ ପରିବେଶରୁ ବ୍ୟକ୍ତି ନ୍ୟାୟ-ଅନ୍ୟାୟ, ନୀତି-ଅନୀତି, ଭଲ-ମନ୍ଦର ଧାରଣା ଆଣିଥାଏ । ସାମାଜିକ ପରିବେଶ ଉନ୍ନତ ଥିଲେ ତାର ସୁପ୍ରଭାବ ବ୍ୟକ୍ତି ସ୍ୱଭାବକୁ ଅନୁପ୍ରାଣିତ କରିଥାଏ, ପରନ୍ତୁ ଯଦି ସାମାଜିକ ପରିବେଶରେ ଦୁର୍ନୀତି, ଭ୍ରଷ୍ଟାଚାର, ପଚ୍ଛାର ପବିତ୍ରତା ନେଇ ଉଦାସୀନ ମନୋଭାବ ବ୍ୟାପକ ଭାବରେ ରହିଥାଏ ତାହା ବ୍ୟକ୍ତି ସ୍ୱଭାବକୁ ଖରାପ ଦିଗରେ ପରିଚାଳିତ କରିବାର ଆଶଙ୍କା ଅଧିକ ଥାଏ ।

ପ୍ରତ୍ୟେକ ସମାଜରେ କେତେକ ରୀତି-ନୀତି, ଶିଷ୍ଟାଚାର ନେଇ ଭାବନା, ସୌଜନ୍ୟ ରହିଥାଏ । ଅବଶ୍ୟ ଏହା ବିଭିନ୍ନ କାରଣ ନେଇ ପରିବର୍ତ୍ତିତ ହେଉଥାଏ । ପ୍ରତ୍ୟେକ ସମାଜରେ କେତେକ ସାଂସ୍କୃତିକ ପ୍ରଥା, ଚଳଣି ରହି ଆସିଥାଏ । ବିଭିନ୍ନ ରୀତି, ନୀତି, ଚଳଣି, ପ୍ରଥା ନୀତିପୂର୍ଣ୍ଣ ହୋଇପାରେ, ନୀତିନିରପେକ୍ଷ ହୋଇପାରେ ଓ ଏପରିକି ଅନୈତିକ ମଧ୍ୟ ହୋଇପାରେ । ସ୍ଥଳ ବିଶେଷରେ ଏସବୁ ଧାର୍ମିକ ବିଶ୍ୱାସ ଆଧାରରେ ରୂପରେଖ ନେଇଥାଏ । ଧର୍ମର ଗଭୀର ପ୍ରଭାବ ଥିବା ବେଳେ ଓ ସାମାଜିକ

ବ୍ୟବସ୍ଥା ଧର୍ମକୈନ୍ଦ୍ରିକ ଭାବନାଦ୍ୱାରା ପରିଚାଳିତ ହେଉଥିବା ସମୟରେ କେତେକ ସାମାଜିକ ଚଳଣି, ରୀତି-ନୀତି ସେ ଯୁଗର ଆଦର୍ଶରେ ହୁଏତ ନୀତିପୂର୍ଣ୍ଣ ମନେ ହୋଇଥାଇପାରେ । କିନ୍ତୁ ସାମାଜିକ ପରିବର୍ତ୍ତନ, ବିଚାରବୋଧ ଜନିତ ସଂସ୍କାରବାଦୀ ଚେତନାର ବିକାଶ, ମାନବିକ ମର୍ଯ୍ୟାଦା ଓ ସମତା ନେଇ ଆନ୍ତର୍ଜାତିକ ଘୋଷଣା ଇତ୍ୟାଦି କାରଣରୁ ସମାଜର ପ୍ରଚଳିତ ଧାରଣା ଓ ରୀତି-ନୀତିରେ ପରିବର୍ତ୍ତନର ସୂତ୍ରପାତ ହେବା ଦେଖାଯାଏ । ବିବାହ, ବିବାହ-ବିଚ୍ଛେଦ, ନାରୀମାନଙ୍କର ଅଧିକାର, ଜନ୍ମ ନିୟନ୍ତ୍ରଣ ଇତ୍ୟାଦି ନାନାବିଧ ପ୍ରସଙ୍ଗ ଉପରେ ଅତୀତରେ ଯେଉଁ ସବୁ ସାମାଜିକ ଚଳଣି ଓ ବିଶ୍ୱାସ ରହିଥିଲା ସେସବୁ ପରିବର୍ତ୍ତିତ ସାମାଜିକ ପରିବେଶରେ ବଦଳିଯିବା ମନେହୁଏ । ଅତୀତର ଅନେକ ରୂଢ଼ିବାଦୀ ପରଂପରା ଓ କୁସଂସ୍କାରପୂର୍ଣ୍ଣ ବିଶ୍ୱାସ ସାଂପ୍ରତିକ ସ୍ଥିତିରେ ନୀତିବିରୋଧୀ, ଯୁକ୍ତିବିରୋଧୀ ଓ ମାନବିକତା ବିରୋଧୀ ହୋଇଥିବାରୁ ସେ ସବୁ ପରିବର୍ତ୍ତିତ ହେବା ଦେଖାଯାଏ । ମଣିଷର ବିଚାରଶୀଳ ଦୃଷ୍ଟି ଓ ସମ୍ବେଦନଶୀଳ ଜୀବନଧାରା ଯେତେ ଅଧିକରୁ ଅଧିକ ମହତ୍ତର ହେଉଛି ଓ ମାନବିକ ସଂପ୍ରୀତିକୁ ପ୍ରାଧାନ୍ୟ ଦେଉଛି ତାର ପରିଣାମରେ ସମାଜରୁ ନାନା କୁସଂସ୍କାର, ଅର୍ଥହୀନ ପରଂପରା ଓ ରୂଢ଼ିବାଦୀ ଚଳଣି ଗୁଡିକ ଲୋପ ପାଉଛି । ସାମାଜିକ ବିକାଶ ପ୍ରକ୍ରିୟାରେ ସାମଗ୍ରିକ ଭାବେ ଅନେକ ନୂଆ ନୂଆ ମୂଲ୍ୟବୋଧ, ଜୀବନ ପ୍ରତି ଏକ ସକାରାତ୍ମକ ଭାବଧାରା ସୃଷ୍ଟି ହେବାରେ ଲାଗିଛି ଯାହା ଅତୀତରେ ସମ୍ଭବ ନଥିଲା । ଜ୍ଞାନ, ବିଜ୍ଞାନର ବିକାଶ ସହ ଆନ୍ତର୍ଜାତିକ ଚେତନାର ବିକାଶ, ସମ୍ବେଦନଶୀଳ ଜୀବନଦୃଷ୍ଟିର ପ୍ରସାରଣ ଓ ବ୍ୟକ୍ତିର ନୈତିକ ଦାୟିତ୍ୱର ପରିସର ବୃଦ୍ଧି ପାଇବା ସଭ୍ୟତାର ସାଂସ୍କୃତିକ ଉତ୍ତରଣର ସ୍ୱାକ୍ଷର ବହନ କରେ ।

(୧୧.୩.୨୦୧୫)



# ବିଜ୍ଞାନ ଓ ଯୁଗଧର୍ମ

ଆଧୁନିକ ବିଜ୍ଞାନ ଓ ଶିଳ୍ପ ବିପ୍ଳବର ବିକାଶ ପର୍ଯ୍ୟନ୍ତ ସାରା ପୃଥିବୀରେ କୃଷିଭିତ୍ତିକ ଗ୍ରାମୀଣ ସଭ୍ୟତା ରହିଥିଲା । ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ଅର୍ଥାତ ୧୬୫୦ ମସିହା ବେଳକୁ ସାରା ପୃଥିବୀର ଜନସଂଖ୍ୟା ଥିଲା ମାତ୍ର ପଚାଶ କୋଟି । ପୃଥିବୀର ବିସ୍ତୃତ ଅଞ୍ଚଳରେ ଘଞ୍ଚ ଜଙ୍ଗଲ ରହିଥିଲା । ଛୋଟଛୋଟ ଗ୍ରାମରେ ଜନଗଣ ପରସ୍ପର ଉପରେ ନିର୍ଭର କରି ଜୀବନ ନିର୍ବାହ କରୁଥିଲେ ଓ ସବୁଠି ପ୍ରାୟ ରାଜତନ୍ତ୍ର ରହିଥିଲା । ରାଜ୍ୟଜୟ, ଯୁଦ୍ଧ, ବିଭୀଷିକା ରାଜତନ୍ତ୍ର ଯୁଗରେ ବ୍ୟାପକ ଭାବେ ଘଟୁଥିଲା । ଏହା ସହିତ ସେତେବେଳେ ପୃଥିବୀରେ ଦେଖା ଦେଉଥିଲା ମହାମାରୀ । ହଇଜା, ବସନ୍ତ, ପ୍ଳେଗ ପରି ରୋଗ ମହାମାରୀ ନେଇ ଆସୁଥିଲା ଓ ଗାଁ ଗାଁରେ ମୃତ୍ୟୁର ତାଣ୍ଡବ ସୃଷ୍ଟି କରୁଥିଲା । ବାତ୍ୟା, ବନ୍ୟା, ଭୂକମ୍ପ ହେଲେ ଲୋକମାନେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲେ । ମରୁଡି ଜନିତ ପରିସ୍ଥିତି ଆସିଲେ ଦୁର୍ଭିକ୍ଷ ପଡୁଥିଲା ଓ ବହୁ ସଂଖ୍ୟାରେ ଲୋକ ଅସହାୟ ହୋଇ ମରୁଥିଲେ । ରୋଗ ବାଧକର ଚିକିତ୍ସା ନଥିବାରୁ ସାଧାରଣ ଜୀବନର ଆୟୁ ପଚାଶବର୍ଷ ଭିତରେ ରହିଥିଲା । ସାରା ପୃଥିବୀର ଦୃଶ୍ୟପଟରେ ଜୀବନ ଖୁବ୍ ବିପଦସଙ୍କୁଳ ଥିଲା ଓ ସାଧାରଣ ଜୀବନ ପ୍ରବାହରେ ଧାର୍ମିକ ବିଶ୍ୱାସ ଓ ଆବେଗ ଦୃଢ଼ ହୋଇ ରହିଥିଲା ।

ମଣିଷ ଯେତେବେଳେ ଦୁର୍ଦ୍ଦଶାଗ୍ରସ୍ତ ଓ ଅସହାୟ ଥିଲା, ସେତେବେଳେ ଭାଗ୍ୟ, ଅତୀନ୍ଦ୍ରିୟ ଶକ୍ତି ଓ କାଳ୍ପନିକ ଦେବଦେବୀଙ୍କ ଉପରେ ସେ ନିର୍ଭର କରୁଥିଲା । କୌଣସି ରୋଗବାଧକ ବା ପ୍ରାକୃତିକ ଦୁର୍ବିପାକକୁ ସେ ଦୈବୀଦଣ୍ଡ ବୋଲି ଭାବି ଆସିଥିଲା । ଭୟ, ଅସହାୟବୋଧ ଓ ଅଜ୍ଞତାଜନିତ କାରଣରୁ ସେ ଏ ସବୁଥିରେ ବିଶ୍ୱାସ କରିବା ଅତି ସ୍ୱାଭାବିକ ଥିଲା । ଏହା ସହିତ ମଧ୍ୟଯୁଗୀୟ ସାମାଜିକତାରେ ଧର୍ମର ପ୍ରଭାବ ଜନଜୀବନରେ ନିର୍ଣ୍ଣାୟକ ହୋଇ ରହିଥିଲା । ପ୍ରତ୍ୟେକ ଧର୍ମ ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ଏକ ସାଂସ୍କୃତିକ ଜାଗରଣ ଭାବେ ସୃଷ୍ଟି ହୋଇ କାଳକ୍ରମେ ଏକ ବୃହତ୍ତର ଅଞ୍ଚଳକୁ ବ୍ୟାପିଥିବା ଐତିହାସିକ ସତ୍ୟ ଅଟେ । ଧର୍ମ ଜୀବନର ଓ ପ୍ରାକୃତିକ ଘଟଣା ପ୍ରବାହର ଯେଉଁ ଅର୍ଥ ଓ ତାତ୍ପର୍ଯ୍ୟ କଳ୍ପନା କରିଥିଲା, ବିଜ୍ଞାନର ଯୁଗ ଆରମ୍ଭ ପର୍ଯ୍ୟନ୍ତ ତାହା ଧର୍ମଗୋଷ୍ଠୀ

ଭିତରେ ସ୍ୱତଃସିଦ୍ଧ ମନେହେଉଥିଲା । ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନ ନଥିବା ଯୋଗୁ ପ୍ରତ୍ୟେକ ଧର୍ମ ଗୋଷ୍ଠୀ ନିଜ ଧର୍ମକୁ ଈଶ୍ୱରୀୟ ସନ୍ଦେଶ ଭାବେ ନେଇ ନିଜ ଧର୍ମଗ୍ରନ୍ଥର ବାଣୀକୁ ଅଲଙ୍ଘ୍ୟ ଓ ଚିରନ୍ତନ ମନେକରିବାର ମାନସିକତା ରହିଥିଲା । ପ୍ରାକୃତିକ ଘଟଣା, ଜୀବନର ଘନଘଟା, ପରିବ୍ୟାପ୍ତ ପୃଥିବୀ, ସୂର୍ଯ୍ୟ ଚନ୍ଦ୍ର, ଆକାଶ ସବୁକିଛିକୁ ନିଜର ସୀମିତ ବୌଦ୍ଧିକ ମାନଦଣ୍ଡରେ ମଣିଷ ଈଶ୍ୱର ନିର୍ଦ୍ଧାରିତ ଓ ନିୟନ୍ତ୍ରିତ ବୋଲି ବୁଝିଥିଲା । ପ୍ରତ୍ୟେକ ଧର୍ମ ନିଜସ୍ୱ ଧାରାରେ ଏସବୁ ଏକ ବିଧି ନିର୍ଦ୍ଦିଷ୍ଟ ବ୍ୟବସ୍ଥା ବୋଲି ଭାବନା ଦେଇଥିଲା । ବସ୍ତୁତଃ ୟୁରୋପୀୟ ନବଜାଗରଣ ଯୁଗରେ ଯେତେବେଳେ କୌଣସି ନୂତନ ତଥ୍ୟ ବା ବୈଜ୍ଞାନିକ ଆବିଷ୍କାର ହେଉଥିଲା ତାହା ଧାର୍ମିକ ବିଶ୍ୱାସର ବିରୁଦ୍ଧାଚରଣ କରୁଥିଲା । ପରିଣାମତଃ ବିଜ୍ଞାନର ଆଦିପର୍ବଟି ଥିଲା ଏକ ସଂଘର୍ଷର ସମୟ । ଏହି ସମୟରେ ପାଶ୍ଚାତ୍ୟ ଜଗତରେ ଯେତେବେଳେ ବିଜ୍ଞାନର ଯୁଗ ଆରମ୍ଭ ହେଲା, ସେତେବେଳେ ବହୁ ପ୍ରତିଭାଧର ବୈଜ୍ଞାନିକଙ୍କୁ କାଠଗଡାରେ ଛିଡା ହେବାକୁ ପଡିଥିଲା । ଧାର୍ମିକ ବିଶ୍ୱାସ ଓ ଧର୍ମଗ୍ରନ୍ଥର ବାଣୀ ଯେ ଭ୍ରମାତ୍ମକ ବା ଭୁଲ୍ ହୋଇପାରେ, ଏହା ଏତେ ସହଜରେ ମଣିଷ ବିଶ୍ୱାସ କରିପାରୁ ନଥିଲା । ଧର୍ମର ଯେଉଁ ପ୍ରଭାବ ଥିଲା ଓ ଧର୍ମ ଯେପରି ସକଳ ନିୟନ୍ତ୍ରଣର ଆଧାର ହୋଇ ରହିଥିଲା, ସେଥିରେ ବୈଜ୍ଞାନିକ ଭାବନା ଯେତେ ତଥ୍ୟ-ଆଧାରିତ ଓ ସତ୍ୟନିଷ୍ଠ ହେଲେ ମଧ୍ୟ ଧାର୍ମିକ ବିଶ୍ୱାସର ପରିପନ୍ଥୀ ଥିବାରୁ ସହଜରେ ସ୍ୱୀକୃତ ହେଉ ନଥିଲା । ଏହି ପରିବେଶରେ ଚିକିତ୍ସା ବିଜ୍ଞାନର ଜନକ ଆଣ୍ଡ୍ରିଆସ ଭେସାଲସ, ଭୂତତ୍ତ୍ୱବିତ୍ ଜର୍ଜ ବୁଫୋନ, ପ୍ରକୃତିବାଦୀ ବ୍ରୁନୋ, ପଦାର୍ଥବିଜ୍ଞାନୀ ଗାଲିଲିଓଙ୍କ ପରି ବହୁ ପ୍ରତିଭାଧର ବୈଜ୍ଞାନିକଙ୍କୁ ଅକଥନୀୟ ନିର୍ଯ୍ୟାତନା ସହିବାକୁ ପଡିଛି । ତେବେ ସେମାନଙ୍କ ଅବଦାନ ଯୋଗୁ ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଛି ଓ ସଭ୍ୟତାର ରୂପରେଖ ବଦଳିଛି । ଧୀରେଧୀରେ ବିଜ୍ଞାନ ବୌଦ୍ଧିକ ଉତ୍ତରଣ କ୍ଷେତ୍ରରେ ଏକ ନୂଆ ଯୁଗର ବାର୍ତ୍ତାବହ ହୋଇଛି । ଗୋଟିଏ ଗୋଟିଏ ଉଦ୍ଭାବନ ବା ଆବିଷ୍କାର ଦୁନିଆଁର ରୂପ ପରିବର୍ତ୍ତନ କରିବାରେ ମାଇଲଖୁଣ୍ଟ ହୋଇଛି ।

ମୋଟ ଉପରେ କହିଲେ, ସପ୍ତଦଶ ଶତାବ୍ଦୀରୁ ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତିର ବିକାଶ ପର୍ବ ଆରମ୍ଭ ହୋଇ ଆଜିର ସ୍ଥିତିକୁ ଆସିଛି । ବିଜ୍ଞାନ ଯେ କେବଳ ଜୀବନର ଭୌତିକମାନରେ ଗୁଣାତ୍ମକ ପରିବର୍ତ୍ତନ ଆଣିଛି ତାହା ନୁହେଁ, ଏହା ମଧ୍ୟ ସାମାଜିକ ଜୀବନଧାରାରେ ନାନା କ୍ରାନ୍ତିକାରୀ ବିଚାରକୁ ନୂଆ ମୋଡ ଦେଇଛି । ବୈଜ୍ଞାନିକ ପଦ୍ଧତିକୁ ଅବଲମ୍ବନ କରି ସମାଜର ନାନା କ୍ଷେତ୍ରର ଅଧ୍ୟୟନଦ୍ୱାରା ସମାଜ ବିଷୟରେ ସ୍ପଷ୍ଟ ଚିତ୍ର ମିଳିବା ସମ୍ଭବ ହୋଇଛି । ଇତିହାସ, ରାଜନୀତି, ଅର୍ଥ ବ୍ୟବସ୍ଥା, ସାଂସ୍କୃତିକ ବିକାଶ, ସମାଜଶାସ୍ତ୍ର ଇତ୍ୟାଦି କ୍ଷେତ୍ର ବି ବୈଜ୍ଞାନିକ ଧାରାରେ ବିଶ୍ଳେଷିତ ହେବା ଦ୍ୱାରା ବହୁ ଲୁକ୍କାୟିତ ସତ୍ୟ ଉଦ୍‌ଘାଟିତ ହୋଇଛି । ସମାଜ ବିଷୟକ ଅନୁଶୀଳନ ଓ ଅନୁଧ୍ୟାନରୁ ବିଭିନ୍ନ ସମାଜର ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ, ଶୈକ୍ଷିକ ବିକାଶ ଓ ପରିବର୍ତ୍ତନର

ଚିତ୍ର ସ୍ପଷ୍ଟ ହୋଇଉଠିଛି । କେଉଁ କାରଣ ଯୋଗୁ କେଉଁ ସାମାଜିକ ବ୍ୟବସ୍ଥାରେ କିପରି ପରିବେଶ ରହିଛି, ଜନଜୀବନର ଚିତ୍ର କ'ଣ ହୋଇଛି ତାହାର ବସ୍ତୁନିଷ୍ଠ ବିବରଣୀ ମିଳିପାରିଛି । ଏହି ସାମାଜିକ ଅନୁଶୀଳନରୁ ସାମନ୍ତବାଦ, ରାଜତନ୍ତ୍ର ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱର ଗୁଞ୍ଜରି ଉଠିଛି ।

ଆଗକାଳରେ ଶିକ୍ଷା ସମାଜର ମୁଷ୍ଟିମେୟ ସମ୍ଭ୍ରାନ୍ତ ଲୋକଙ୍କ ନିୟନ୍ତ୍ରଣରେ ରହିଥିଲା, କାଳକ୍ରମେ ଗଣଶିକ୍ଷାର ପରିବେଶ ସୃଷ୍ଟି ହେଲା । ଗଣତନ୍ତ୍ର, ସମାଜବାଦ, ଜନମଙ୍ଗଳକାରୀ ଆଭିମୁଖ୍ୟ ରାଷ୍ଟ୍ରୀୟ ସ୍ତରରେ ଧୀରେଧୀରେ ଗୃହୀତ ହେବାକୁ ଲାଗିଲା । ବିଂଶ ଶତାବ୍ଦୀରେ ପୃଥିବୀର ରାଜନୈତିକ ଦୃଶ୍ୟପଟ ବଦଳିବାରେ ଲାଗିଲା । ସାର୍ବଭୌମ ରାଷ୍ଟ୍ରର ଭାବନା ସହ ଜନମଙ୍ଗଳ ଲକ୍ଷ୍ୟଗୁଡିକ ପ୍ରତ୍ୟେକ ରାଷ୍ଟ୍ରର ଆଭିମୁଖ୍ୟ ହେଲା । ସମାଜ ବା ରାଷ୍ଟ୍ର କହିଲେ ରାଷ୍ଟ୍ରର ସବୁ ନାଗରିକଙ୍କ ପ୍ରଶ୍ନ ଉଠିଲା । ପ୍ରତ୍ୟେକ ନାଗରିକକୁ ଶିକ୍ଷାର ପରିବେଶ, ଆବଶ୍ୟକ ବେଳେ ସ୍ୱାସ୍ଥ୍ୟ ସେବା, ରାଜନୈତିକ କାର୍ଯ୍ୟକଳାପରେ ମତଦାନର ଅଧିକାର, ଆଇନ ଦୃଷ୍ଟିରେ ସମତାର ଭାବନା ଓ ସ୍ୱାବଲମ୍ବୀ ହେବାର ଅବକାଶ ଯୋଗାଇବା ରାଷ୍ଟ୍ରର ଲକ୍ଷ୍ୟ ହୋଇଉଠିଲା । ଏହିସବୁ ସ୍ଥିତି ଯୋଗୁ ଧାର୍ମିକ ମାନସିକତାରେ ପରିବର୍ତ୍ତନ ଆସିଥିଲା । ଧର୍ମ ଯେପରି ଏକ ସର୍ବଗ୍ରାସୀ ଭୂମିକା ନେଇ ସବୁସ୍ତରରେ ସାମାଜିକ ନିୟନ୍ତ୍ରଣର ଆଧାର ହୋଇ ରହିଥିଲା, ସେହି ସ୍ଥିତି ବଦଳିବାରେ ଲାଗିଲା । ଗଣତାନ୍ତ୍ରିକ ରାଷ୍ଟ୍ରମାନ ଧର୍ମକୁ ନାଗରିକର ବ୍ୟକ୍ତିଗତ ବିଶ୍ୱାସ ସ୍ତରରେ ରଖିଲେ ଓ ଧର୍ମନିରପେକ୍ଷତାକୁ ନିଜର ଆଦର୍ଶ ଭାବେ ଗ୍ରହଣ କଲେ । ମଧ୍ୟଯୁଗୀୟ ମାନସିକତାରେ ପାଶ୍ଚାତ୍ୟ ଭୂଖଣ୍ଡରେ ସମାଜସଂସ୍କାର କ୍ଷେତ୍ରରେ ଏହା ପ୍ରତିବନ୍ଧକ ସାଜିଥିଲା । ଭାରତୀୟ ସମାଜରେ ସତୀପ୍ରଥା, ବାଲ୍ୟ ବିବାହ, ବିଧବା ବିବାହ ନେଇ କଟକଣା, ଅସ୍ପୃଶ୍ୟତା, ଜାତିଆଣ ଭେଦଭାବ ଇତ୍ୟାଦି ବହୁ ଅମାନବିକ ପ୍ରଥାକୁ ଧର୍ମୀୟ ମୋହର ଦିଆଯାଉଥିଲା । ଯେତେବେଳେ ଏସବୁର ପରିବର୍ତ୍ତନ ପାଇଁ ସଂସ୍କାରବାଦୀ ଆନ୍ଦୋଳନ ମୁଣ୍ଡ ଟେକିଲା, ତାହାକୁ ରକ୍ଷଣଶୀଳ ଧର୍ମାନ୍ଧ ଲୋକମାନେ ଭୟଙ୍କର ବିରୋଧ କରିବା ଦେଖାଗଲା । ବହୁ ଧାର୍ମିକ ବିରୋଧ ସତ୍ତ୍ୱେ ପାଶ୍ଚାତ୍ୟ ଭୂଖଣ୍ଡରେ ବିଜ୍ଞାନର ଅଗ୍ରଗତି ଯେପରି ସମ୍ଭବ ହୋଇଛି ପ୍ରାଚ୍ୟ ଭୂଖଣ୍ଡରେ ସେହିପରି ଧାର୍ମିକ ବିରୋଧ ଭିତରେ ସମାଜ ସଂସ୍କାରର ଧାରା ଆଗକୁ ଯାଇଛି । ଧାର୍ମିକ ମୌଳବାଦ ସବୁ ସଭ୍ୟତାରେ ମଣିଷ ଜାତିର ସୃଜନଶୀଳ ଓ ମାନବିକ ବିକାଶରେ ପ୍ରତିବନ୍ଧକ ହେବା ଇତିହାସରୁ ଦେଖିବାକୁ ମିଳେ । ଯେଉଁ ରାଷ୍ଟ୍ର ସମୂହ ଧର୍ମତାନ୍ତ୍ରିକ ବା ଥିଓକ୍ରାଟିକ୍ ବ୍ୟବସ୍ଥାରେ ରହିଛନ୍ତି ସେହି ସବୁ ରାଷ୍ଟ୍ରରେ ଗଣତନ୍ତ୍ର, ମାନବିକ ଅଧିକାର, ଧର୍ମନିରପେକ୍ଷତା, ଲିଙ୍ଗଗତ ସମତା ସର୍ବଦା ଆହ୍ୱାନର ସମ୍ମୁଖୀନ ହେବା ଦେଖାଯାଏ । ଧାର୍ମିକ ମୌଳବାଦ, ସାମ୍ପ୍ରଦାୟିକତାବାଦ ଓ ଧର୍ମାନ୍ଧତା ଯେ ମାନବିକତା ଓ ସଭ୍ୟ ଜୀବନ ଦୃଷ୍ଟିର ପରିପନ୍ଥୀ- ଏହା ଆଧୁନିକ ଜୀବନ ପ୍ରବାହରେ ବେଶ୍ ଗୃହୀତ ହେବାରେ ଲାଗିଛି ।

ଧର୍ମମାନଙ୍କ ଭିତରେ ନୀତିବୋଧ, ମାନବିକ ସମ୍ପ୍ରୀତିର ଯେଉଁ ବାର୍ତ୍ତା ରହିଛି ତାହା ପ୍ରତି କେହି ସମାଲୋଚନାମୂଳକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ନାହିଁ । ଧର୍ମ ଯେଉଁଠି ଭ୍ରାତୃତ୍ୱର ଓ ମାନବିକତାର ବାର୍ତ୍ତା ଦେଉଛି ବା ଏକ ମହତ୍ତର ଜୀବନବୋଧ ପାଇଁ ଅଭିନିବେଶ ଯୋଗାଉଛି ତାହାକୁ କେହି ଅସ୍ୱୀକାର କରିବେ ନାହିଁ । କିନ୍ତୁ ଧର୍ମ ମଣିଷ ସମାଜ ଭିତରେ ସାଂସ୍କୃତିକ ପ୍ରାଚୀର ଛିଡା କରାଇଛି । ଧର୍ମଗତ ପରିଚୟକୁ ନେଇ ସ୍ଥଳ ବିଶେଷରେ ତିକ୍ତତା, ସାମ୍ପ୍ରଦାୟିକ ଭେଦଭାବ ବି ସୃଷ୍ଟି ହେଉଛି । ଧର୍ମ ବହୁ କ୍ଷେତ୍ରରେ ଜୀବନର ବାସ୍ତବ ସ୍ଥିତି ଠାରୁ ମଣିଷକୁ ଦୂରେଇ ପାରଲୌକିକ ଲକ୍ଷ୍ୟ ଦିଗରେ ପରିଚାଳିତ କରୁଛି । ତେବେ ସଭ୍ୟତା ଇତିହାସର ଯେଉଁ ଯୁଗରେ ଧର୍ମର ପ୍ରାଧାନ୍ୟ ରହିଥିଲା, ସେହି ପରିବେଶଠାରୁ ଦେଶ ଦୁନିଆ ସଭ୍ୟତାର ଶିଡିରେ ବହୁ ଆଗକୁ ଗଲାଣି । ବୈଜ୍ଞାନିକ ପ୍ରଣାଳୀରେ ଉପଲବ୍ଧ ଜ୍ଞାନ ଉପରେ ଆସ୍ଥା ସ୍ଥାପନ ସଭ୍ୟତାର ବିକାଶ କ୍ଷେତ୍ରରେ ନିର୍ଣ୍ଣାୟକ ମନେହେଉଛି । ଏତଦ୍‌ବ୍ୟତୀତ ମାନବବାଦ, ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ସମତା ଭାବ ଏ ଯୁଗର ଆଦର୍ଶ ଭାବେ ଅଧିକରୁ ଅଧିକ ସଭ୍ୟ ଜୀବନ ଦୃଷ୍ଟିରେ ଗୃହୀତ ହେବାରେ ଲାଗିଛି । ମୋଟ ଉପରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ନିରପେକ୍ଷ ମାନବବାଦ ଓ ସାର୍ବଜନୀନ ଦୃଷ୍ଟିଭଙ୍ଗୀ ଏ ଯୁଗର ଯୁଗଧର୍ମ କହିଲେ ଅତ୍ୟୁକ୍ତି ହେବନାହିଁ ।

ବିଜ୍ଞାନ ଓ ମାନବବାଦର ଭିତ୍ତି ଉପରେ ସାରା ବିଶ୍ୱରେ ଏକ ଆନ୍ତର୍ଜାତିକ ଚେତନା ଓ ବିଶ୍ୱଦୃଷ୍ଟି ଧୀରେଧୀରେ ପ୍ରସାର ଲାଭ କରୁଛି । ଜାତି, ଜାତୀୟତା, ଧର୍ମଜନିତ ବିଭେଦଗୁଡିକ ଦୁନିଆରୁ ହ୍ରାସ ପାଇବାରେ ଲାଗିଛି । ଆଧୁନିକ ପ୍ରଯୁକ୍ତି ସାରା ପୃଥିବୀକୁ ଏକ 'ବିଶ୍ୱ-ଗ୍ରାମ'ରେ ରୂପାନ୍ତରିତ କରିବାର ଅବକାଶ ସୃଷ୍ଟି କରିଛି । ଏହା ସହିତ ମାନବିକ ସମ୍ପ୍ରୀତି ଓ ଭ୍ରାତୃତ୍ୱ ଭାବର ବିକାଶ ହେଲେ ଆମ ସଂସାର ଯେ ଯୁଦ୍ଧମୁକ୍ତ, ହିଂସାମୁକ୍ତ ଓ ଭେଦଭାବ ମୁକ୍ତ ହୋଇପାରିବ ଏହା କେତେକ ଚିନ୍ତାନାୟକ ଆଶାପୋଷଣ କରୁଛନ୍ତି । କୁହାଯାଉଛି- ସଭ୍ୟତା ଯଦି ଆତ୍ମହତ୍ୟା ନକରେ, ତେବେ ଦ୍ୱାବିଂଶ ଶତାବ୍ଦୀ ଏହି ସ୍ୱପ୍ନ ପୂରଣ କରିପାରିବ ।

(୪.୨.୨୦୧୪)



# ବିଜ୍ଞାନ ଓ କୁସଂସ୍କାର

ଭାରତୀୟ ସାମାଜିକ ବ୍ୟବସ୍ଥା ଯେତିକି ପ୍ରାଚୀନ ସେତିକି ଜଟିଳ । ବହୁ ପ୍ରାଚୀନ ପରମ୍ପରା, ବିଶ୍ୱାସ ଓ ବିଧିବିଧାନ ଆମ ସମାଜରେ ପ୍ରଚଳିତ । ସ୍ୱାଧୀନତା ପରେ ଗଣତାନ୍ତ୍ରିକ ବ୍ୟବସ୍ଥା, ଧର୍ମନିରପେକ୍ଷତା ଓ ଜନକଲ୍ୟାଣକାରୀ ଆଭିମୁଖ୍ୟ ଆମ ଜାତୀୟ ଜୀବନର ଲକ୍ଷ୍ୟ । ଆମ ଦେଶର ସମ୍ବିଧାନ ଆମ ପାଇଁ ସବୁଠାରୁ ମହନୀୟ ଦଲିଲ । ଆମ ଦେଶ ସମ୍ବିଧାନର ମୁଖବନ୍ଧରେ ଆମର ଜାତୀୟ ଲକ୍ଷ୍ୟ ସୁନ୍ଦର ଭାବେ ପ୍ରତିଫଳିତ । ଆମେ ଭାରତର ଜନଗଣ ଆମ ଦେଶକୁ ଏକ ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ, ସାର୍ବଭୌମ ରାଷ୍ଟ୍ର ଭାବେ ପୃଥିବୀରେ ପରିଚିତ ହେବାକୁ ଘୋଷଣା କରିଛେ । ଏହା ସହିତ ସାମାଜିକ, ଆର୍ଥିକ ଓ ରାଜନୈତିକ ନ୍ୟାୟ; ବିଚାର, ଅଭିବ୍ୟକ୍ତି, ବିଶ୍ୱାସ କ୍ଷେତ୍ରରେ ସ୍ୱାଧୀନତା, ସୁବିଧାସୁଯୋଗ କ୍ଷେତ୍ରରେ ସମତା ଓ ବ୍ୟକ୍ତି ମର୍ଯ୍ୟାଦା ଜନିତ ଭ୍ରାତୃତ୍ୱଭାବକୁ ଆମର ସ୍ୱୀକୃତ ଆଦର୍ଶ ଭାବେ ସମ୍ବିଧାନରେ ଆମେ ବ୍ୟକ୍ତ କରିଛେ । ସେହିପରି ଆମର ମୌଳିକ କର୍ତ୍ତବ୍ୟ ପୃଷ୍ଠଭୂମିରେ ସମ୍ବିଧାନର ଧାରା ୫୧ଏ(ଏଚ)ରେ 'ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଅନୁସନ୍ଧିତ୍ସୁ ମନୋଭାବ ଓ ସମାଜ ସଂସ୍କାର' ପାଳନ କରିବା ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ କୁହାଯାଇଛି । ପୃଥିବୀର ଯେକୌଣସି ଦେଶର ସମ୍ବିଧାନ ତୁଳନାରେ ଆମ ଦେଶର ସମ୍ବିଧାନରେ ବ୍ୟକ୍ତ ଏହି ଆଦର୍ଶ ଓ ଲକ୍ଷ୍ୟ ବହୁ ଦୃଷ୍ଟିରୁ ପ୍ରଗତିଶୀଳ, ମାନବିକ ଓ ନ୍ୟାୟପୂର୍ଣ୍ଣ । ଆମ ସମ୍ବିଧାନରେ ପ୍ରତିଫଳିତ ଏହି ଆଦର୍ଶଚୟ ଯେତେ ମହନୀୟ ହେଲେ ହେଁ ଏଗୁଡିକ କେବଳ ପୋଥିଗତ ଆଦର୍ଶ । ଆମର ବାସ୍ତବ ଜୀବନରେ ଏହାର ପ୍ରତିଫଳନ ଖୁବ୍ ନଗଣ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଆମର ବାସ୍ତବ ଜୀବନରେ ରାଶିରାଶି କୁସଂସ୍କାର, ଭେଦଭାବଜନିତ ମାନସିକତା, ସାମ୍ପ୍ରଦାୟିକ ବିଦ୍ୱେଷ ଏତେ ବ୍ୟାପକ ଯେ ତାହା ବହୁ ସମୟରେ ଆମ ସମାଜର ସ୍ଥିତି ନେଇ ଏକ ନକାରାତ୍ମକ ଚିତ୍ର ଦେଇଥାଏ ।

ଗଣଶିକ୍ଷାର ପ୍ରସାର ଓ ଚଉଦବର୍ଷ ପର୍ଯ୍ୟନ୍ତ ସମସ୍ତ ପିଲାଙ୍କୁ ସାର୍ବଜନୀନ ଶିକ୍ଷା ପରି ପବିତ୍ର ପ୍ରତିଶ୍ରୁତି ଆମ ସମ୍ବିଧାନ ଦେଇଥିଲେ ମଧ୍ୟ ସ୍ୱାଧୀନତାର ଦୀର୍ଘ ବର୍ଷ ପରେ ଆମ ଜନସଂଖ୍ୟାର ପ୍ରାୟ ଏକ ତୃତୀୟାଂଶ ବ୍ୟକ୍ତି ନିରକ୍ଷର । ସମତା ଭିତ୍ତିକ ସମାଜର ପ୍ରତିଷ୍ଠା ଆମର ଲକ୍ଷ୍ୟ ହୋଇଥିଲେ ମଧ୍ୟ ଜାତିଗତ ବ୍ୟବସ୍ଥା, ଅସ୍ପୃଶ୍ୟତା ଓ ଉଚ୍ଚ-ନୀଚ ଭେଦଭାବ ଆମ ସମାଜରେ ବ୍ୟାପକ ରହିଥିବା ଏକ ବାସ୍ତବ ଅନୁଭୂତି । ଧର୍ମନିରପେକ୍ଷତା ଆମର ସ୍ୱୀକୃତ ଆଦର୍ଶ ହୋଇଥିଲେ ସୁଦ୍ଧା ସାମ୍ପ୍ରଦାୟିକ ଦଙ୍ଗା, ଧର୍ମଗତ ଅସୂୟା ଭାବ ଓ ଧର୍ମ ବିଶ୍ୱାସଜନିତ ବିଦ୍ୱେଷ ଆମ ସାମାଜିକ ଜୀବନରେ ପରିବ୍ୟାପ୍ତ । ତେବେ ସବୁଠାରୁ ବିଡମ୍ବନାର ବିଷୟ ହେଉଛି ଆମ ସମାଜରେ ରହିଥିବା କୁସଂସ୍କାର ଓ ନାନା ଆଧାରହୀନ ବିଶ୍ୱାସ । ଗୋଟିଏ ପଟେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ନାନା ଉପକରଣ ଆମ ଜନଜୀବନରେ ଉପଲବ୍ଧ । ଟେଲିଭିଜନ, ମୋବାଇଲ୍ ଫୋନ୍, ଇଣ୍ଟରନେଟ୍, ମଙ୍ଗଳ ଅଭିଯାନ, ଅତ୍ୟାଧୁନିକ ଚିକିତ୍ସା ବ୍ୟବସ୍ଥା, ଉନ୍ନତ କୃଷିପ୍ରଣାଳୀ, ଗମନାଗମନରେ ପ୍ରଭୂତ ଉନ୍ନତିସାଧନ ନିଶ୍ଚୟ ଆମ ସଫଳତାର ସ୍ୱାକ୍ଷର ବହନ କରେ । ତେବେ ଏସବୁ ସତ୍ତ୍ୱେ ଜନସଂଖ୍ୟାର ମୁଖ୍ୟ ଅଂଶ ଭିତରେ ନାନା କୁସଂସ୍କାର ରକ୍ତ ମଜ୍ଜାଗତ । ବିଡମ୍ବନାର ବିଷୟ ସମାଜର ନିରକ୍ଷର ଲୋକମାନେ ଯେ କୁସଂସ୍କାରଗ୍ରସ୍ତ ତାହା ନୁହେଁ, ସମାଜର ବହୁ ପ୍ରବୀଣ, ପ୍ରତିଭାଧର ଓ ସାମାଜିକ ପ୍ରତିଷ୍ଠା ଥିବା ବ୍ୟକ୍ତିବିଶେଷ ବି କୁସଂସ୍କାରଜନିତ ମାନସିକତାରେ ଆକ୍ରାନ୍ତ । ଅତୀତରେ ସାଧାରଣ ବା ଗୋଟିଏ ଅଞ୍ଚଳର କୁସଂସ୍କାର ଗୋଟିଏ ନିର୍ଦ୍ଦିଷ୍ଟ ସ୍ତରରେ ସୀମିତ ରହିଥିଲା, କିନ୍ତୁ ସମ୍ପ୍ରତି ଗଣମାଧ୍ୟମର ବିସ୍ତାର ଓ ପ୍ରସାରଣ ଯୋଗୁ ଏହା ଦେଶବ୍ୟାପୀ ହେଉଥିବା ଏକ ସାଧାରଣ ଘଟଣା । ଆମ ଦେଶର ସରକାରୀ ଅନୁଷ୍ଠାନ ଓ ସମାଜର ପ୍ରତିଷ୍ଠିତ ବ୍ୟକ୍ତିବିଶେଷ କିପରି କୁସଂସ୍କାରରେ ଆକ୍ରାନ୍ତ ତାହାର ଦୁଇଟି ଉଦାହରଣ ଏଠାରେ ଉଲ୍ଲେଖ କରାଯାଇପାରେ ।

ଉତ୍ତର ଭାରତର ଜଣେ ସାଧୁ ହେଲେ ଶୋଭନ ସରକାର । ଭାରତର ଦାରିଦ୍ର୍ୟ ନେଇ ସେ କିଛିଟା ଚିନ୍ତିତ । ହଠାତ୍ ସେ ଏକ ସ୍ୱପ୍ନ ଦେଖିଲେ । ଖେରା ରାଜବଂଶର ସ୍ୱର୍ଗତ ରାଜା ରାମ ସିଂହ ସ୍ୱପ୍ନରେ ତାଙ୍କୁ ଦେଖାଦେଇ କହିଲେ ଯେ ତାଙ୍କର ଭଗ୍ନ ରାଜପ୍ରାସାଦ ପରିସରରେ ଦଶଲକ୍ଷ କିଲୋଗ୍ରାମ ସୁନା ପୋତା ହୋଇରହିଛି । ଯଦି ମାଟିତଳୁ ସେହି ସୁନାକୁ ଉଦ୍ଧାର କରାଯାଏ ତେବେ ଭାରତରୁ ଦାରିଦ୍ର୍ୟ ଦୂର ହୋଇଯିବ । ବାବା ଶୋଭନ ସରକାର ତାଙ୍କର ଏହି ସ୍ୱପ୍ନ ବିଷୟ ଭାରତ ସରକାରଙ୍କ ପ୍ରତ୍ନତାତ୍ତ୍ୱିକ ସଂରକ୍ଷଣ ସଂସ୍ଥାକୁ ଜଣାଇଲେ । ଭାରତ ସରକାରଙ୍କ ପ୍ରତ୍ନତାତ୍ତ୍ୱିକ ସଂସ୍ଥା ସହ ବହୁ ବିଶେଷଜ୍ଞ ଓ

ବୈଜ୍ଞାନିକ ସଂସ୍ଥିଷ୍ଟ । ପ୍ରାଚୀନ କୀର୍ତ୍ତିରାଜିର ସୁରକ୍ଷା ଓ ସଂରକ୍ଷଣ କରିବା ଏହାର ଦାୟିତ୍ୱ । ଶୋଭନ ସରକାରଙ୍କ ସ୍ୱପ୍ନ ମାଟିତଳେ ପୋତା ହୋଇରହିଥିବା ସୁନା ବିଷୟ ଜାଣିବାକୁ ପାଇ ପ୍ରତ୍ନତାତ୍ତ୍ୱିକ ସଂରକ୍ଷଣ ସଂସ୍ଥା ଭଗ୍ନ ରାଜପ୍ରାସାଦର ବିସ୍ତୃତ ପରିସର ଖୋଳିବାକୁ ଲାଗିଲେ । କିନ୍ତୁ ହାୟ, ସୁନା କେଉଁଠି ମିଳିଲା ନାହିଁ । ଜଣେ ବ୍ୟକ୍ତିଙ୍କ ସ୍ୱପ୍ନକୁ ନେଇ ସରକାରଙ୍କ ଏକ ବୈଜ୍ଞାନିକ ଅନୁଷ୍ଠାନ ଏହି କାର୍ଯ୍ୟରେ ସମ୍ପୃକ୍ତ ହେବାକୁ କିପରି ବ୍ୟାଖ୍ୟା କରାଯିବ ! ଜଣେ ବ୍ୟକ୍ତିଙ୍କର ବ୍ୟକ୍ତିଗତ ଅନୁଭୂତି, ସ୍ୱପ୍ନ, କଳ୍ପନାକୁ ଗୁରୁତ୍ୱ ଦେଇ ଏକ ସରକାରୀ ବୈଜ୍ଞାନିକ ସଂସ୍ଥା ଏପରି ଅବୈଜ୍ଞାନିକ କାର୍ଯ୍ୟରେ ସମ୍ପୃକ୍ତ ହେବା ଘଟଣାରୁ ଆମ ଦେଶରେ କୁସଂସ୍କାର କେଉଁ ସ୍ତରକୁ ଯାଇପାରେ ତାହା ସହଜରେ ଅନୁମେୟ ।

ଭାରତୀୟ ମହାକାଶ ଗବେଷଣା ସଂଗଠନ ବା ଇସ୍ରୋ (ଇଣ୍ଡିଆନ ସ୍ପେସ୍ ରିସର୍ଚ୍ଚ ଅର୍ଗାନାଇଜେସନ) ନଭେମ୍ବର ୭ ତାରିଖ ୨୦୧୪ ଦିନ ମଙ୍ଗଳ ଗ୍ରହକୁ ଏକ ମହାକାଶ ଯାନ ଆନ୍ଧ୍ରପ୍ରଦେଶର ଶ୍ରୀହରିକୋଟାରୁ ପ୍ରେରଣ କଲା । ପୃଥିବୀ ଠାରୁ ପ୍ରାୟ ଚାରିକୋଟି କିମି ଦୂରରେ ଥିବା ମଙ୍ଗଳ ଗ୍ରହ କକ୍ଷପଥକୁ ଯାନ ପଠାଇବା ମହାକାଶ ଗବେଷଣା କ୍ଷେତ୍ରରେ ଏକ ବଡ ସଫଳତା । ଏହାର ଗୌରବ ଆମ ଦେଶର ମହାକାଶ ବିଜ୍ଞାନୀଙ୍କର ଶ୍ରେୟ । ତେବେ ମହାକାଶ ବିଜ୍ଞାନୀ ଓ ଇସ୍ରୋର ମୁଖ୍ୟ ଭି. ରାଧାକ୍ରିଷ୍ଣନ ମଙ୍ଗଳଗ୍ରହକୁ ମହାକାଶ ଯାନ ପଠାଇବା ପୂର୍ବରୁ ସେହି ଯାନର ଏକ ପ୍ରତିରୂପ ନେଇ ତିରୁପତି ମନ୍ଦିରରେ ପ୍ରତିରୂପର ପୂଜାର୍ଚ୍ଚନା କରି ଫେରିଲେ । ଜଣେ ବ୍ୟକ୍ତି ଭାବରେ ତାଙ୍କର ବ୍ୟକ୍ତିଗତ ବିଶ୍ୱାସ ପାଇଁ କାହାର କିଛି କହିବାର ନାହିଁ । ତେବେ ଗୋଟିଏ ବୈଜ୍ଞାନିକ ସଫଳତା ପାଇଁ କଳ୍ପିତ ଦିଅଁଙ୍କର ଆଶୀର୍ବାଦ କାମନା କରିବା ଓ ପ୍ରକଳ୍ପଟିର ପ୍ରତିରୂପ ନେଇ ସେଠାରେ ପୂଜା କରିବାର ମାନସିକତାକୁ କ'ଣ କୁହାଯିବ ? ମଙ୍ଗଳ ଗ୍ରହକୁ ଭାରତ ଯାନ ପଠାଇବାର ଚାଳିଶବର୍ଷ ପୂର୍ବରୁ ଆମେରିକା ସେଠାକୁ ସଫଳତାର ସହ ଯାନ ପଠାଇବା ଓ ରୁଷ, ଫ୍ରାନ୍ସ ଓ ଚୀନ ଭଳି ଦେଶ ମହାକାଶ ଗବେଷଣା କ୍ଷେତ୍ରରେ ଭାରତଠାରୁ ବହୁ ଆଗରେ ରହିଥିବା ଘଟଣା ପାଇଁ କେଉଁ ଦିଅଁ ଦେବତାର ଆଶୀର୍ବାଦ ରହିଛି ? ମହାକାଶ ଗବେଷଣା କ୍ଷେତ୍ରରେ ଭାରତର ସଫଳତା ପଛରେ ବରଂ ଶହଶହ ବୈଜ୍ଞାନିକଙ୍କର ବର୍ଷବର୍ଷର ଗବେଷଣା, ପ୍ରୟାସ ଓ ସରକାରୀ ପ୍ରୋତ୍ସାହନ ରହିଛି । କିନ୍ତୁ ଇସ୍ରୋର ମୁଖ୍ୟ ନିଜ ବିଶ୍ୱାସ ଅନୁଯାୟୀ ଯେଉଁ କାର୍ଯ୍ୟ କଲେ ତାହା ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ ଏହା ମନେହୁଏ ।

ଆନ୍ତର୍ଜାତିକ ଦୃଶ୍ୟପଟରେ ଆମ ଦେଶ ପୃଥିବୀରେ ଏକ ଗରିବ ରାଷ୍ଟ୍ର । ଏବେ ବି ଆମ ଦେଶ ଜନସଂଖ୍ୟାର ଏକ ତୃତୀୟାଂଶ ଲୋକ ନିରକ୍ଷର । ଆମ ଦେଶର ବଡବଡ ସହରଗୁଡିକରେ ଅଗଣିତ ଲୋକ ସ୍ଲମ୍‌ମାନଙ୍କରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନଧାରଣ କରନ୍ତି । ବାଳଶ୍ରମିକ ପ୍ରଥା ପରି ସମସ୍ୟା ଆମ ଦେଶରେ ଅତି ଉତ୍କଟ । ଅପପୁଷ୍ଟିରେ ଆମ ଦେଶର ବହୁ ଲୋକ ଆକ୍ରାନ୍ତ । ସର୍ବନିମ୍ନ ସ୍ୱାସ୍ଥ୍ୟସେବା ବହୁ ଲୋକଙ୍କ ପାଇଁ ଅପହଞ୍ଚ । ମନ୍ଦିର, ପୂଜାସ୍ଥଳ, ଷ୍ଟେସନଗୁଡିକରେ ଓ ରେଳଯାତ୍ରା ବେଳେ ଭିକ୍ଷାବୃତ୍ତି କରୁଥିବା ବହୁ ଲୋକଙ୍କୁ ଆମେ ଦେଖିବାକୁ ପାଇଥାଉ । ବେକାରୀ ବି ଏକ ବଡ ସମସ୍ୟା । ଚାଷୀ ଆତ୍ମହତ୍ୟା ପରି ଘଟଣା ଓଡିଶା ଭଳି ଅନଗ୍ରସର ରାଜ୍ୟଗୁଡିକରେ ଘଟେ । ଗୋଟିଏ ପଟେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ଅଭୂତପୂର୍ବ ବିକାଶ ଓ ଆଉ ଗୋଟିଏ ପଟେ ଜନଜୀବନର ମାନ ଅତି ଅନୁନ୍ନତ । ସାମାଜିକ ଜୀବନ ପ୍ରବାହରେ ଏହି ବିରୋଧାଭାସ ଆମର ସାଧାରଣ ଅନୁଭବ ।

ଆମ ଅନଗ୍ରସରତାର କାରଣ ଅନୁସନ୍ଧାନ କଲାବେଳେ ବହୁ ପ୍ରସଙ୍ଗ ଦୃଷ୍ଟିକୁ ଆସେ । ତେବେ ସେ ମଧ୍ୟରୁ ଗୋଟିଏ ମୁଖ୍ୟ କାରଣ ହେଉଛି ଆମ ଜନଜୀବନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବ ଓ ଆମ ଭିତରେ ଥିବା କୁସଂସ୍କାର । ବିଜ୍ଞାନର ଯେତେ ବିକାଶ ହେଲେ ବି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ନହେବା ଆମ ବ୍ୟବସ୍ଥାର ଏକ ବଡ ଦୁର୍ବଳତା । ଆମ ଦେଶର ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ସମାଜର ପ୍ରତିଷ୍ଠିତ ଲୋକମାନେ ଆମର ଚିରାଚରିତ ଅମାନବୀୟ ପ୍ରଥା, ଅହେତୁକ ପରମ୍ପରା ଓ ଅର୍ଥହୀନ କର୍ମକାଣ୍ଡକୁ ଜିଜ୍ଞାସାହୀନ ଭାବେ ଗ୍ରହଣ କରନ୍ତି । ଆମ ସମାଜରେ ଅଗଣିତ ମଣିଷ ମାନବକୃତ ପ୍ରୟାସ ଓ ପ୍ରଚେଷ୍ଟା ଉପରେ ବିଶ୍ୱାସ ନକରି ଦୈବୀ କରୁଣା ଉପରେ ନିର୍ଭର କରନ୍ତି । ସେମାନେ ନିଜର ପ୍ରତିକୂଳ ସ୍ଥିତି, ବୈଷମ୍ୟପୂର୍ଣ୍ଣ ସାମାଜିକ ପରିସ୍ଥିତି ପାଇଁ ନିଜ ଭାଗ୍ୟ, କର୍ମଫଳ ଉପରେ ବିଶ୍ୱାସ କରନ୍ତି । କେଉଁଠି ଅଧିଆ ପଡିଲେ, କେଉଁଠି ବୁଡ ପକାଇଲେ, କେଉଁଠି ନଡିଆ ବାଡେଇଲେ, କାହାର ପାଦ ଦର୍ଶନ କଲେ, କାହା ଦଉଡିକୁ ଛୁଇଁଲେ, କେଉଁଠି ପାଣି ଢ଼ାଳିଲେ ନିଜ ସ୍ଥିତିର ପରିବର୍ତ୍ତନ ହୋଇଯିବ ବୋଲି ସେମାନେ ନିଷ୍ଠାର ସହ ବିଶ୍ୱାସ କରନ୍ତି । ସେଥିପାଇଁ ନାନା କଷ୍ଟ ସହନ୍ତି ଓ ଆର୍ଥିକ ଦୃଷ୍ଟିରୁ ଶୋଷିତ ହୁଅନ୍ତି । ଏସବୁକୁ ଧର୍ମ କାର୍ଯ୍ୟ ମନେକରି ଏଥିପାଇଁ ତ୍ୟାଗ ବା କଷ୍ଟ ସହିବାକୁ ପ୍ରସ୍ତୁତ ହୁଅନ୍ତି । କିନ୍ତୁ ସାମାଜିକ ଶୃଙ୍ଖଳା, ନାଗରିକ କର୍ତ୍ତବ୍ୟବୋଧ ପ୍ରତି କୌଣସି ସମ୍ପୃକ୍ତି ବ୍ୟକ୍ତ

କରନ୍ତି ନାହିଁ । ଧାର୍ମିକ ଆବେଗକୁ ନେଇ ବେଳେବେଳେ ସର୍ଶକାତର ହୋଇପଡନ୍ତି- ଅଥଚ ମାନବିକ ସମ୍ବେଦନଶୀଳତା, ଅନ୍ୟର ଦୁଃଖକଷ୍ଟ ପ୍ରତି ଅତ୍ୟନ୍ତ ଉଦାସୀନତା ପ୍ରକାଶ କରନ୍ତି । ଧାର୍ମିକ ବିଶ୍ୱାସଜନିତ ଘଟଣାରେ ଲୋକମାନେ ଯେତେ ପ୍ରଭାବିତ ହୁଅନ୍ତି ସମାଜର ବାସ୍ତବ ସମସ୍ୟା ପ୍ରତି ସେହି ସମ୍ପୃକ୍ତି ବ୍ୟକ୍ତ କରନ୍ତି ନାହିଁ । ନାଗରିକ ଶୃଙ୍ଖଳାବୋଧ ଓ ସାମାଜିକ ସଚେତନତାର ଅଭାବ ଆମ ଜନଜୀବନର ବିଭିନ୍ନ କ୍ଷେତ୍ରରେ ଏକ ସାଧାରଣ ଅନୁଭବ ।

ଯେତେବେଳେ ସମାଜର ଅଗଣିତ ବ୍ୟକ୍ତି ସାମାଜିକ ଅନ୍ୟାୟ, ଭେଦଭାବ ଓ ଦୁରାବସ୍ଥା ପାଇଁ କୌଣସି ସମ୍ପୃକ୍ତି ବ୍ୟକ୍ତ କରନ୍ତି ନାହିଁ ଏବଂ ବିଶ୍ୱାସ କରନ୍ତି ଯେ ଦେବୀ-ଦେବତାର ଆଶୀର୍ବାଦଦ୍ୱାରା ତାହା ଦୂର ହୋଇପାରିବ, ତାହା ସମ୍ଭବତଃ ଏକ ବଡ କୁସଂସ୍କାର କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟ ଭାଷାରେ ଏହାକୁ ମାନସିକ ଦାସତ୍ୱ କୁହାଯାଇପାରେ ।

(୧୨.୨.୨୦୧୪)



# ବିଜ୍ଞାନ ଆଡକୁ ପାଦେ

ବୈଜ୍ଞାନିକ ଅନୁଶୀଳନ ଅନୁଯାୟୀ ଆମ ପୃଥିବୀ ଚାରିଶହ ପଚାଶ କୋଟି ବର୍ଷ ତଳେ ଉଦ୍‌ଭବ ହୋଇଥିଲା । ପୃଥିବୀ ପୃଷ୍ଠରେ ଜୀବନର ସତ୍ତା ପ୍ରାୟ ଶହେ କୋଟି ବର୍ଷ ତଳେ ସୃଷ୍ଟି ହୋଇଥିଲା । ନାନା ରାସାୟନିକ ଓ ଜୈବିକ ପରିବର୍ତ୍ତନ ମଧ୍ୟ ଦେଇ ବିବର୍ତ୍ତନ ପ୍ରକ୍ରିୟାରେ ଉଦ୍ଭିଦ ଓ ପ୍ରାଣୀ ଜଗତର ବିକାଶ ହେଲା । ପୃଥିବୀ ପୃଷ୍ଠରେ ମଣିଷମାନଙ୍କର ଆବିର୍ଭାବ ହୋଇଥିଲା ପ୍ରାୟ ଏକ ଲକ୍ଷ ବର୍ଷ ତଳେ । ଗୋଟିଏ ସମୟରେ ମଣିଷ ବଣ ଜଂଗଲରେ ବୁଲୁଥିଲା, ପଶୁ ପରି ଜୀବନ ନିର୍ବାହ କରୁଥିଲା । ତେବେ ପ୍ରକୃତି ମଣିଷ ଭିତରେ କେତେକ ସାମର୍ଥ୍ୟ ଦେଇଥିବାରୁ ସେ ଅନ୍ୟ ପ୍ରାଣୀମାନଙ୍କ ଠାରୁ ପୃଥକ୍ ହେଲା । ମଣିଷର ସ୍ୱରପେଟିକା ଉନ୍ନତ ଥିବାରୁ ସେ ଭାଷା କହିବାକୁ ସମର୍ଥ ହେଲା । ଭାଷାର ବ୍ୟବହାର ମନୁଷ୍ୟକୁ ଉନ୍ନତି ପଥରେ ଅଗ୍ରସର ହେବାକୁ ସାହାଯ୍ୟ କଲା । ବହୁ ଅତୀତରେ ମନୁଷ୍ୟମାନେ କ୍ଷୁଦ୍ର ଗୋଷ୍ଠୀରେ ରହୁଥିବାରୁ ପୃଥିବୀରେ ପାଞ୍ଚ-ଛ'ହଜାର ଭାଷା ସୃଷ୍ଟି ହେଲା । ସେହିପରି ନିଜର ପରିବେଶ ଓ ପ୍ରକୃତିରେ ଉପଲବ୍ଧ ବସ୍ତୁମାନଙ୍କ ସାହାଯ୍ୟରେ ବିଭିନ୍ନ ଉପକରଣ ନିର୍ମାଣ କରିବାର କୌଶଳ ମଣିଷ ଧୀରେ ଧୀରେ ଅର୍ଜନ କରିଛି । ଏହା ଛଡା ବୁଦ୍ଧିର ବିକାଶ ଯୋଗୁ ନିଜର ପରିବେଶ, ପ୍ରକୃତି, ଜୀବନ ପ୍ରବାହକୁ ବୁଝିବାକୁ ମନୁଷ୍ୟ ପ୍ରୟାସ କରିଛି । ଏହି ଧାରାରେ କ୍ରମବର୍ଦ୍ଧିଷ୍ଣୁ ଭାବେ ସାହିତ୍ୟ, ଦର୍ଶନ, ଜ୍ଞାନବିଜ୍ଞାନ, କଳା, ସଂଗୀତ, ନାନା ପ୍ରକାରର ମନୋରଂଜନ ମନୁଷ୍ୟ ବୁଦ୍ଧି ବଳରେ ସୃଷ୍ଟି କରିଛି । ପୁନଶ୍ଚ ମନୁଷ୍ୟ ଭିତରେ ଥିବା ସାମାଜିକ ପ୍ରବୃତ୍ତିରୁ ପରିବାର, ଗୋଷ୍ଠୀଜୀବନ, ଗ୍ରାମ, ସହର, ରାଷ୍ଟ୍ର ଇତ୍ୟାଦିର ଉଦ୍‌ଭବ ହୋଇଛି । ମଣିଷ ଶିଶୁଟି କିଛି ବର୍ଷ ଅସହାୟ ହେଉଥିବାରୁ ପରିବାର ଓ ଅନ୍ୟମାନଙ୍କର ବିନା ସହାୟତାରେ ସେ ବଞ୍ଚିପାରିବ ନାହିଁ । ପରିଣାମତଃ କ୍ଷୁଦ୍ର ଗୋଷ୍ଠୀ ଜୀବନରୁ ପାରିବାରିକ ଜୀବନ, ସାମାଜିକ ବଂଧନ ମଧ୍ୟ ଦେଇ ବୃହତ୍ତର ସାମାଜିକ ଅନୁଷ୍ଠାନ ମାନ କ୍ରମବିକାଶ ଧାରାରେ ଉଦ୍‌ଭବ ହୋଇଛି । ଭାଷା କହିବାର ସାମର୍ଥ୍ୟ, ବସ୍ତୁନିର୍ମାଣର ଦକ୍ଷତା, ବୁଦ୍ଧିର ବିକାଶ ଓ ସାମାଜିକ

ପ୍ରବୃତ୍ତି ଯୋଗୁ ଏକ ଆଦିମ ଅବସ୍ଥାରୁ ନାନା କ୍ରମବିକାଶ ଦେଇ ମନୁଷ୍ୟ ଆଜିର ସଭ୍ୟ ସ୍ଥିତିକୁ ଆସିବାକୁ ସମର୍ଥ ହୋଇପାରିଛି ।

କୁହାଯାଏ କୃଷିକରି ଶଷ୍ୟ ଉତ୍ପାଦନ କରିବାର ସାମର୍ଥ୍ୟ ଆସିବା ପରେ ମଣିଷର ଯାଯାବର ଜୀବନର ପରିସମାପ୍ତି ଘଟିଛି । ମନୁଷ୍ୟ ସ୍ଥାୟୀ ଭାବରେ ବସବାସ କରିବାକୁ ଚେଷ୍ଟା କରିଛି । କ୍ଷୁଦ୍ର ଗ୍ରାମୀଣ ଜୀବନରୁ ରାଜ୍ୟ ସୃଷ୍ଟି ହୋଇଛି । ରାଜତନ୍ତ୍ର ଏକ ରାଜନୈତିକ ବ୍ୟବସ୍ଥା ଭାବେ ସାରା ପୃଥିବୀରେ ବିକଶିତ ହୋଇଛି । ଏହି ପ୍ରକ୍ରିୟାରେ ଧୀରେ ଧୀରେ ସଭ୍ୟତା ବିକାଶ-ପ୍ରକ୍ରିୟାର ଭିତ୍ତି ପଡିଛି । ପୃଥିବୀର ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ଗଢ଼ି ଉଠିଛି ଓ ସଭ୍ୟତାର ବିକାଶ ସହ କେତେକେତେ ସାଂସ୍କୃତିକ, ଦାର୍ଶନିକ ଓ ବୌଦ୍ଧିକ ପ୍ରବାହ ଆସିଛି । ଏହା ସହିତ ସମାଜ ଦୃଢ଼ ଭିତ୍ତି ନେଇଛି, ଧର୍ମ, ନୀତିବୋଧ ଜୀବନର ମୂଲ୍ୟବୋଧକୁ ପ୍ରଭାବିତ କରିଛି । ରାଜନୈତିକ ବ୍ୟବସ୍ଥା ସୁଦୃଢ଼ ହୋଇଛି, ଅର୍ଥନୈତିକ ଢ଼ାଞ୍ଚାମାନ ସୃଷ୍ଟି ହୋଇଛି ।

ଏହି ପ୍ରକ୍ରିୟାରେ ମଣିଷ ସମାଜ ବିଭିନ୍ନ ଭୂଖଣ୍ଡରେ ସଭ୍ୟତା, ସଂସ୍କୃତି ଗଢ଼ିଛି । ମନୁଷ୍ୟ ଜାତିର ଇତିହାସ ବିଭିନ୍ନ ସୃଜନାତ୍ମକ ଓ ଧ୍ୱଂସାତ୍ମକ ପରିସ୍ଥିତିର ସମ୍ମୁଖୀନ ହୋଇଛି । ସୃଜନାତ୍ମକ ପ୍ରବାହ ଗୁଡିକ ସଭ୍ୟତାର ଅଗ୍ରସରରେ ସହାୟକ ହୋଇଛି । ତେବେ ବେଳେବେଳେ ଧ୍ୱଂସାତ୍ମକ ପରିସ୍ଥିତି ଗୋଟିଏ ଗୋଟିଏ ଭୂଖଣ୍ଡରେ ଧ୍ୱଂସର ତାଣ୍ଡବ ସୃଷ୍ଟି କରିଛି । ପୃଥିବୀର କେତେକ ଭୂଖଣ୍ଡରେ ସଭ୍ୟତା କିପରି ଧ୍ୱଂସ ପାଇଛି ତାହାର କାହାଣୀ ବେଶ୍ ମର୍ମାନ୍ତିକ । ମହାମାରୀ, ଯୁଦ୍ଧ, ପ୍ରାକୃତିକ ବିପର୍ଯ୍ୟୟ ଅବର୍ଣ୍ଣନୀୟ ଦୁଃଖଦ ପରିସ୍ଥିତି ସୃଷ୍ଟି କରିଛି । ମନୁଷ୍ୟ ଜାତିର ଇତିହାସରେ କେତେ କେତେ ଦୁଃଖ ଜନିତ ହୃଦୟ ବିଦାରକ ଘଟଣାମାନ ଘଟିଯାଇଛି । ମହେଞ୍ଜଦାର, ହରପ୍ପା ସଭ୍ୟତା ଦୁଇଟି ପ୍ରାକୃତିକ ବିପର୍ଯ୍ୟୟରେ ଧ୍ୱଂସ ପାଇଛି । ଦକ୍ଷିଣ ଇଟାଲୀର ରାଜ୍ୟ ପମ୍ପେଇ ଯାହା ସାତ ସହ ବର୍ଷ ଧରି ଏକ ସମୃଦ୍ଧ ଅଞ୍ଚଳ ହୋଇଥିଲା ୬୩ ମସିହାରେ ହୋଇଥିବା ଭୂକଂପ ଓ ତାର ଷୋହଳ ବର୍ଷ ପରେ ୭୯ ମସିହାରେ ଆଗ୍ନେୟଗିରି ଉଦ୍‌ଗୀରଣ ଦ୍ୱାରା ସମଗ୍ର ରାଜ୍ୟ ଧ୍ୱଂସ ସ୍ତୁପରେ ପରିଣତ ହୋଇଛି ଓ ସମସ୍ତ ଅଧିବାସୀ ମୃତ୍ୟୁ ମୁଖରେ ପଡିଛନ୍ତି । ଅଷ୍ଟାଦଶ ଶତାବ୍ଦୀରେ ପ୍ରତ୍ନତାତ୍ତ୍ୱିକ ଭୂଖନନ ଓ ଗବେଷଣାରୁ ବହୁ ଗୃହ, ମନ୍ଦିର, ନୃତ୍ୟଶାଳାର ଭଗ୍ନାବିଶେଷ ସହ ଅନେକ ଉପକରଣ ସନ୍ଧାନ ମିଳିପାରିଛି । ସଂପ୍ରତି ମେକ୍‌ସିକୋ ଦେଶର କେନ୍ଦ୍ର ଓ ଦକ୍ଷିଣରେ ଥିବା ଆଜ୍‌ଟେକ୍ ସାମ୍ରାଜ୍ୟ ଏକ ବିସ୍ତୃତ ଅଞ୍ଚଳରେ ପ୍ରସାରିତ ହୋଇଥିଲା । ଅଶିହଜାର ବର୍ଗମାଇଲ ଅଞ୍ଚଳରେ ବିସ୍ତାରଲାଭ କରିଥିବା ଏହି ଭୂଖଣ୍ଡର ଲୋକସଂଖ୍ୟା ଥିଲା ପାଖାପାଖି ଷାଠିଏ ଲକ୍ଷ । କୃଷି, ଜଳସେଚନରେ ସେମାନେ ବେଶ୍ ଉନ୍ନତ ଥିଲେ । ଷୋଡଶ ଶତାବ୍ଦୀ ଆରମ୍ଭରେ ସ୍ପାନିଆର୍ଡମାନେ ଏହି ରାଜ୍ୟକୁ ଆକ୍ରମଣ

କରି ଯୁଦ୍ଧରେ ସେହି ରାଜ୍ୟକୁ ପରାସ୍ତ କରିଥିଲେ । ଯୁଦ୍ଧର ବିଭୀଷିକା ପରେ ପରେ ସ୍ପାନିଆର୍ଡମାନେ ଯେଉଁ ରୋଗ ଏଠାକୁ ଆଣିଲେ ସେଥିରେ ସମଗ୍ର ରାଜ୍ୟର ଲୋକମାନେ ଆକ୍ରାନ୍ତ ହୋଇ ଗଣମୃତ୍ୟୁର ଶିକାର ହେଲେ । ପୃଥିବୀର ବିଭିନ୍ନ ଅଞ୍ଚଳରେ ଯୁଦ୍ଧ, ମହାମାରୀ, ପ୍ରାକୃତିକ ବିପର୍ଯ୍ୟୟରେ ସାଧାରଣ ଲୋକମାନେ କିପରି ଅସହାୟ ହୋଇ ପୋକ ମାଛିପରି ମୃତ୍ୟୁବରଣ କରୁଥିଲେ ତାହାର କାହାଣୀ ଥିଲା ମର୍ମାନ୍ତିକ । ଏପରିକି ୧୩୪୭ ରୁ ୧୩୫୦ ତନି ବର୍ଷଧରି ପ୍ଲେଗ୍ ରୋଗ ଇଉରୋପର ବିଭିନ୍ନ ଭୂଖଣ୍ଡରେ ଗଣମୃତ୍ୟୁର ପରିବେଶ ସୃଷ୍ଟି କରିଥିଲା, ଯେଉଁଥିରେ ମହାଦେଶର ଏକ ତୃତୀୟାଂଶ ଲୋକ ମୃତ୍ୟୁମୁଖରେ ପଡିଥିଲେ । ଇଂରେଜ ଶାସନାଧୀନ ଭାରତବର୍ଷରେ ହାରାହାରି ପ୍ରତି ଆଠ ଦଶବର୍ଷରେ କୌଣସି ନା କୌଣସି ଅଞ୍ଚଳରେ ଏକ ବଡ ଦୁର୍ଭିକ୍ଷ ପଡୁଥିଲା ଓ ଲୋକମାନେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲେ । ଉନବିଂଶ ଶତାବ୍ଦୀର ମଧ୍ୟଭାଗରେ ଓଡିଶାରେ ପଡିଥିବା ନଅଙ୍କ ଦୁର୍ଭିକ୍ଷରେ କଟକ, ପୁରୀ ଓ ବାଲେଶ୍ୱରରେ ତିରିଶ ଲକ୍ଷ ଲୋକରୁ ଦଶଲକ୍ଷ ଲୋକ ଖାଦ୍ୟାଭାବ ଯୋଗୁ ମୃତ୍ୟୁମୁଖରେ ପଡିଥିଲେ । ସ୍ୱାଧୀନତା ପୂର୍ବରୁ ଭାରତବର୍ଷର ବଙ୍ଗ ପ୍ରଦେଶରେ ୧୯୪୩ରେ ଯେଉଁ ଦୁର୍ଭିକ୍ଷ ପଡିଥିଲା ସେଥିରେ ସରକାରୀ ହିସାବରେ ପ୍ରାୟ ପନ୍ଦର ଲକ୍ଷ ଲୋକ ଅନାହାରରେ ମରିଥିଲେ ।

ସାରା ପୃଥିବୀର ଦୃଶ୍ୟପଟରେ ପ୍ରାକୃତିକ ବିପର୍ଯ୍ୟୟ, ରୋଗ, ମହାମାରୀ, ଦୁର୍ଭିକ୍ଷ, ଗୋଷ୍ଠୀଗତ ସଂଘର୍ଷ, ଯୁଦ୍ଧ ଲାଗି ରହିଥିଲା ଓ ଜୀବନ ଅତ୍ୟନ୍ତ ବିପଦସଂକୁଳ ଓ ନିରାପଦବିହୀନ ରହିଥିଲା । ଜନସଂଖ୍ୟାରେ ବିଶେଷ ବୃଦ୍ଧି ହେଉନଥିଲା, କାରଣ ଜନ୍ମ ଓ ମୃତ୍ୟୁହାର ପାଖାପାଖି ରହିଥିଲା । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବିଭିନ୍ନ ଭୂଖଣ୍ଡରେ ରାଜତନ୍ତ୍ର ରହିଥିଲା । ପୃଥିବୀର ବିଭିନ୍ନ ଅଞ୍ଚଳରେ ସାମ୍ରାଜ୍ୟବାଦ କାୟାବିସ୍ତାର କରିଥିଲା । ଭାରତବର୍ଷ ପରି ଏକ ବିଶାଳ ଭୂଖଣ୍ଡ ଇଂରେଜ ସାମ୍ରାଜ୍ୟବାଦର ଅଧୀନ ହୋଇଥିଲା । ଇଂରେଜ ଶାସନ ଏଠାରେ ରହିଥିଲେ ବି ଭାରତବର୍ଷରେ ଛ'ଶହରୁ ଅଧିକ କରଦ ରାଜ୍ୟ ରହିଥିଲା ଓ ସେହି ଗଡଜାତମାନଙ୍କରେ ରାଜତନ୍ତ୍ର ଶାସନ ଚାଲୁଥିଲା ।

ସାରା ପୃଥିବୀରେ ଶିଳ୍ପ ବିପ୍ଳବ ଆସିବା ପୂର୍ବରୁ କୃଷିଭିତ୍ତିକ ସମାଜ ରହିଥିଲା । କୃଷିଭିତ୍ତିକ ସମାଜରେ ଯୌଥ ପରିବାର ବ୍ୟବସ୍ଥା ଥିଲା । ଲୋକମାନଙ୍କର ଜୀବନଯାପନ ପ୍ରଣାଳୀ ଭିତରେ ବିଶେଷ ପ୍ରଭେଦ ନଥିଲା । ଏହିପରି ସାମାଜିକ ବ୍ୟବସ୍ଥାରେ ମହିଳାମାନେ ପୁରୁଷମାନଙ୍କଠାରୁ ନ୍ୟୂନ ହୋଇ ରହିଥିଲେ । କେତେକ ସମାଜରେ ପରଦା ପ୍ରଥା, ସତୀଦାହ ପ୍ରଥା ପରି ବିଭତ୍ସ ପରଂପରା ବି ରହିଥିଲା । ଉନ୍ନତ ଦେଶମାନଙ୍କରେ ବି ମହିଳାମାନଙ୍କର ରାଜନୈତିକ ଅଧିକାର ନଥିଲା । ଶିକ୍ଷା ସମାଜର ସଂଭ୍ରାଂତ ବର୍ଗର ନିୟନ୍ତ୍ରଣରେ ଥିଲା ଓ ଗଣଶିକ୍ଷାର ଭାବନା ଅଚିନ୍ତନୀୟ ଥିଲା । ସମାଜରେ ଧର୍ମର ଗଭୀର ପ୍ରଭାବ ରହିଥିଲା ।

ପାରଲୌକିକ ଜୀବନଦୃଷ୍ଟି ସମାଜରେ ବ୍ୟାପକ ଭାବେ ଜନଜୀବନକୁ ପ୍ରଭାବିତ କରୁଥିଲା । ନାନା କୁସଂସ୍କାର, ଅହେତୁକ ବିଶ୍ୱାସ, ଭାଗ୍ୟବାଦର ଭାବନା ସମାଜରେ ବ୍ୟାପକ ଭାବେ ଥିଲା । ମୋଟଉପରେ ମାନବ ସଭ୍ୟତାର ଇତିହାସ ଦେଖିଲେ ସେଥିରେ ବହୁ ନକାରାତ୍ମକ ଓ ବିଭତ୍ସ ଚିତ୍ର ଦେଖିବାକୁ ମିଳିଥାଏ । ଜୀବନ ଥିଲା ବହୁ ବିପଦସଂକୁଳ ଓ ନିରାପଦବିହୀନ ।

ଏସବୁ ସତ୍ତ୍ୱେ ପୃଥିବୀର ବିଭିନ୍ନ ଭୂଖଣ୍ଡରେ କେତେକ ସୃଜନାତ୍ମକ ପରିବେଶ ସୃଷ୍ଟି ହୋଇଥିଲା, ଯାହା ସଭ୍ୟତାର ଅଗ୍ରଗତିରେ ସହାୟକ ହୋଇଥିଲା । କୃଷି ଉତ୍ପାଦନ ଜନିତ ଜ୍ଞାନ ଗ୍ରାମୀଣ ଜୀବନ ପାଇଁ ତଥା ସ୍ଥାୟୀ ବସବାସ ପାଇଁ ପରିବେଶ ସୃଷ୍ଟି କରିଥିଲା । ସେହି ଗ୍ରାମୀଣ ଜୀବନଧାରାରୁ ଭାଷାମାନ ଦୃଢ଼ ଭିତ୍ତି ନେଇଥିଲେ । ବିଭିନ୍ନ ଭାଷାମାନଙ୍କରେ ବର୍ଣ୍ଣମାଳାର ଉଦ୍‌ଭାବନ ଓ ଲିପିମାନଙ୍କର ସୃଷ୍ଟି ଯୁଗାନ୍ତକାରୀ ଥିଲା । ବିଭିନ୍ନ ଭାଷା ମଧ୍ୟ ଦେଇ କିଛି କାଳଜୟୀ ସୃଷ୍ଟି ମଣିଷର ସୃଜନ ସାମର୍ଥ୍ୟ ଦେଇ ଉଦ୍‌ଭବ ହେଲା । ସାହିତ୍ୟ, ସଂଗୀତ, କଳା, ଧର୍ମ, ଗୃହନିର୍ମାଣ ବିଦ୍ୟାମାନ କାଳକ୍ରମେ ବିଭିନ୍ନ ସଭ୍ୟତାରେ ସୃଷ୍ଟି ହେଲା । ଏହି ସବୁ ସହିତ ମନୁଷ୍ୟର ବୌଦ୍ଧିକ ଦିଗନ୍ତ ଧୀରେ ଧୀରେ ବିସ୍ତାରଲାଭ କଲା । ସାମାଜିକ ଜୀବନ ଯେତିକି ଦୃଢ଼ ଭିତ୍ତି ନେଲା, ସେହି ବ୍ୟବସ୍ଥା ଭିତର ଦେଇ ନୀତି, ନୈତିକତା, ଆଦର୍ଶ, ମୂଲ୍ୟବୋଧ ମନୁଷ୍ୟର ବୌଦ୍ଧିକ ଅନୁଶୀଳନ ଦେଇ ପରିପୁଷ୍ଟ ହେବାକୁ ଲାଗିଲା ।

ଏହିପରି ସଭ୍ୟତାର ଅଗ୍ରଗତି ଭିତରେ ଇଉରୋପୀୟ ନବଜାଗରଣ ଚିନ୍ତାରାଜ୍ୟରେ ଓ ସାମାଜିକ ଜୀବନ ପ୍ରବାହରେ ଏକ କ୍ରାନ୍ତିକାରୀ ଆଲୋଡନ ଥିଲା । ସେହି ବୌଦ୍ଧିକ ଆଲୋଡନରୁ ବିଜ୍ଞାନର ବିକାଶ ପର୍ବ ସପ୍ତଦଶ ଶତାବ୍ଦୀରୁ ଜନ୍ମ ନେଲା । ବିଜ୍ଞାନର ବିକାଶ ଓ ପ୍ରକୃତି ସଂପର୍କରେ ମନୁଷ୍ୟର ଜ୍ଞାନରୁ ଶିଳ୍ପବିପ୍ଳବର ଯୁଗ ଆରମ୍ଭ ହେଲା । ଶିଳ୍ପ ବିପ୍ଳବ ପୃଥିବୀର ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଦୃଶ୍ୟପଟରେ ତ୍ରୁମୂଳ ପରିବର୍ତ୍ତନର ସୂତ୍ରପାଦ କରାଇଲା । ଜୀବନ ସହିତ ଯେପରି ନାନା ସମସ୍ୟା, ସଂକଟ ରହିଆସିଛି, ସେହିପରି କିଛି କିଛି ସୃଜନାତ୍ମକ ଆଲୋଡନ ଜୀବନର ବୌଦ୍ଧିକ ଓ ନୈତିକ ଉତ୍ତରଣରେ ସହାୟକ ହୋଇଛି । ବିଶେଷକରି ବିଜ୍ଞାନ ଓ ମାନବବାଦ ଜୀବନର ଗୁଣାତ୍ମକ ମାନରେ ସକାରାତ୍ମକ ପରିବର୍ତ୍ତନ ଆଣିବାରେ ସହାୟକ ହୋଇପାରିଛି ।

(୩୦.୭.୨୦୧୪)



# ଉନ୍ମେଷର ଯନ୍ତ୍ରଣା

ପୃଥିବୀର ବିଭିନ୍ନ ଭୂଖଣ୍ଡରେ ସଭ୍ୟତାମାନ ନିଜସ୍ୱ ଧାରାରେ ବିକଶିତ ହେବା ଏକ ଐତିହାସିକ ଘଟଣା । ବହୁ ସଂସ୍କୃତି, ଭାଷା, ଧର୍ମ, ଦର୍ଶନ ବିଭିନ୍ନ ସଭ୍ୟତା ମଧ୍ୟ ଦେଇ ସୃଷ୍ଟି ହୋଇଛି । ପ୍ରାକୃତିକ ବିପର୍ଯ୍ୟୟ, ଯୁଦ୍ଧ, ବିଭୀଷିକା ଇତ୍ୟାଦି କାରଣରୁ କେତେକ ସଭ୍ୟତାର ବିଲୋପ ମଧ୍ୟ ହୋଇଯାଇଛି । ପ୍ରତ୍ୟେକ ସଭ୍ୟତାରେ ଯେଉଁ ଆହ୍ୱାନ ଗୁଡିକ ଆସିଛି, ତାକୁ ମଣିଷ ନିଜସ୍ୱ ବୁଦ୍ଧି, ବିଚାର ପ୍ରୟୋଗ କରି ସମାଧାନ କରିବାକୁ ପ୍ରୟାସ କରିଛି । ଯେଉଁଠି ତାହା ସମ୍ଭବ ହୋଇନାହିଁ, ସେଠାରେ ଜୀବନର ଗୁଣାତ୍ମକ ମାନରେ ବିଶେଷ ପରିବର୍ତ୍ତନ ହୋଇ ନାହିଁ । ତେବେ ଆଧୁନିକ ବିଜ୍ଞାନର ବିକାଶ ପରଠାରୁ ଜୀବନର ଭୌତିକ ଓ ସାଂସ୍କୃତିକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସିଛି ଓ ବିକାଶର ଧାରା ଦ୍ରୁତତର ହୋଇଛି ।

ଆଧୁନିକ ବିଜ୍ଞାନର ଜନ୍ମ ସପ୍ତଦଶ ଶତାବ୍ଦୀରେ ପାଶ୍ଚାତ୍ୟ ଭୂଖଣ୍ଡରେ ଆରମ୍ଭ ହେବା ଏକ ସ୍ୱୀକୃତ ଘଟଣା । ତେବେ ଇଉରୋପ ମହାଦେଶ ପ୍ରାୟତଃ ଅନ୍ଧକାର ଯୁଗରେ ରହିଥିଲା । ରୋମ୍ ସାମ୍ରାଜ୍ୟର ପତନ ପରେ ଇଉରୋପରେ ଏହି ଅନ୍ଧକାରର ଯୁଗ ଆସିଥିବା କୁହାଯାଏ । ଏକ ହଜାର ବର୍ଷ ଧରି କଳା, ସାହିତ୍ୟ, ଜ୍ଞାନ, ବିଜ୍ଞାନ ସ୍ତରରେ କୌଣସି ପରିବର୍ତ୍ତନ ଆସିପାରି ନଥିଲା । ଅତୀତରେ ଦର୍ଶନ ଓ ସୀମିତ ଅର୍ଥରେ ବିଜ୍ଞାନ କ୍ଷେତ୍ରରେ ଯାହା ସବୁ ଭାବନା ସୃଷ୍ଟି ହୋଇଥିଲା, ସେ ସବୁ ବିସ୍ମୃତ ହୋଇଗଲା । ସାଧାରଣ ଜନତା ଅତ୍ୟନ୍ତ ଦରିଦ୍ର ଓ ଦୟନୀୟ ଜୀବନ ନିର୍ବାହ କରୁଥିଲେ । ରାଜା ଓ ମୁଷ୍ଟିମେୟ ସାମନ୍ତବର୍ଗ ଅର୍ଥ, କ୍ଷମତାର ଅଧିକାରୀ ହୋଇ ସାଧାରଣ ମଣିଷକୁ ଶୋଷଣ କରି ଚାଲିଥିଲେ । ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସମୟକୁ କୁହାଯାଏ ମଧ୍ୟଯୁଗ ଯାହା ହିଁ ଅନ୍ଧକାରର ଯୁଗ ଭାବରେ ଇତିହାସରେ ଜଣାଶୁଣା । ପଞ୍ଚଦଶ ଶତାବ୍ଦୀର ମଧ୍ୟ ଭାଗରୁ ଇଟାଲୀରେ ଓ ଇଉରୋପର ଅନ୍ୟ କେତେକ ସ୍ଥାନରେ ଏକ ସାଂସ୍କୃତିକ ବିପ୍ଳବର ସୂତ୍ରପାତ ହେଲା । ପ୍ରାୟ ଦୁଇ ଶହ ପଚାଶ ବର୍ଷ ଧରି ଯେଉଁ ସାଂସ୍କୃତିକ ଅଭ୍ୟୁଦୟର ପରିବେଶ ଆସିଥିଲା

ତାହାକୁ ଐତିହାସିକ ମାନେ ନବଜାଗରଣ ବା ନବଜାଗୃତିର ଯୁଗ ବୋଲି ଆଖ୍ୟା ଦେଇଛନ୍ତି । ଏହା ଥିଲା ଏକ ବିରାଟ ସାଂସ୍କୃତିକ ଉତ୍‌ଥାନର ପ୍ରସ୍ତୁତି ପର୍ବ । ନବଜାଗରଣ ଯୁଗର ସାଂସ୍କୃତିକ ଆଲୋଡନ ଭିତରୁ ଆରମ୍ଭ ହେଲା ବିଜ୍ଞାନର ଯୁଗ ଓ ମାନବବାଦୀ ବିଚାର । ବିଜ୍ଞାନର ଦିଗନ୍ତ ଏପରି ବିସ୍ତାରଲାଭ କଲା ଯେ ମନୁଷ୍ୟର ବୌଦ୍ଧିକ ଦିଗ୍‌ବଳୟ ସଂପ୍ରସାରିତ ହୋଇଚାଲିଲା । 'ଜ୍ଞାନ ହିଁ ଶକ୍ତି' ଜଣେ ଦାର୍ଶନିକଙ୍କର ଏହି ଉକ୍ତି ବାସ୍ତବତାରେ ରୂପାନ୍ତରିତ ହେଲା । ଏକଦା ଧର୍ମଗ୍ରନ୍ଥର ବିଶ୍ୱାସ ଗୁଡିକ ଜ୍ଞାନର ମୁକୁଟ ପିନ୍ଧିଥିଲେ । ସେହି ଭାବନାରୁ ମୁକ୍ତ ହୋଇ ବୈଜ୍ଞାନିକ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ଜନିତ ଜ୍ଞାନ ହିଁ ଯଥାର୍ଥ ଜ୍ଞାନ ଭାବେ ସ୍ୱୀକୃତ ହେବାକୁ ଲାଗିଲା । ମୋଟ ଉପରେ ଇଉରୋପରେ ବିଜ୍ଞାନର ଯେଉଁ ଯୁଗଟି ଆରମ୍ଭ ହେଲା ତାହା ମନୁଷ୍ୟର ବୌଦ୍ଧିକ, ନୈତିକ ଓ ସାଂସ୍କୃତିକ ଦିଗ୍‌ବଳୟକୁ ବିସ୍ତାରିତ କରିଦେଲା ।

ପଞ୍ଚଦଶ ଶତାବ୍ଦୀ ଆରମ୍ଭ ବେଳକୁ ଇଉରୋପ ଯେଉଁ ଅନ୍ଧକାର ଭିତରେ ଥିଲା ତାଠାରୁ ଭାରତବର୍ଷ, ଆରବ ଭୂଖଣ୍ଡ ଜ୍ଞାନ କ୍ଷେତ୍ରରେ ବହୁ ଆଗରେ ରହିଥିଲେ । ବୈଜ୍ଞାନିକ ଚିନ୍ତନ ନେଇ ଇଉରୋପଠାରୁ ଏହି ପ୍ରାଚୀନ ସଭ୍ୟତା ମାନ ଯଥେଷ୍ଟ ଉନ୍ନତ ଥିଲେ । ବିଶେଷକରି ଗଣିତ, ଜ୍ୟୋତିର୍ବିଜ୍ଞାନ, ଆୟୁର୍ବେଦୀୟ ଚିକିତ୍ସା ଇତ୍ୟାଦି କ୍ଷେତ୍ରରେ ଭାରତ ଓ ଆରବ ଭୂଖଣ୍ଡ ବିକଶିତ ଥିଲେ । ଚାଇନାର ଲୋକମାନେ ପ୍ରଯୁକ୍ତି କ୍ଷେତ୍ରରେ ଇଉରୋପ ତୁଳନାରେ ଅନେକ ଆଗରେ ଥିଲେ । ଗନ୍ ପାଉଡର, କାଗଜ ପ୍ରସ୍ତୁତି ପରି ବହୁ କ୍ଷେତ୍ରରେ ଚୀନର ଅଧିବାସୀମାନେ ପ୍ରଯୁକ୍ତିଗତ ଜ୍ଞାନ ଲାଭ କରିଥିଲେ । ଇଉରୋପ ତୁଳନାରେ ଭାରତ, ଆରବ ଓ ଚୀନ ଭୂଖଣ୍ଡର ଜନଗଣ ଯଥେଷ୍ଟ ଉନ୍ନତ ଥିଲେ ବି ବିଜ୍ଞାନ କ୍ଷେତ୍ରରେ ଏକ ବିପ୍ଳବ ଏହି ପ୍ରାଚୀନ ଦେଶମାନଙ୍କରେ ସୃଷ୍ଟି ନ ହୋଇ ଇଉରୋପରେ କିପରି ଆସିଲା ତାହାର ରହସ୍ୟଟି କେତେକଙ୍କ ପାଇଁ ବିସ୍ମୟ ସୃଷ୍ଟି କରିଥାଏ ।

ଇଉରୋପରେ ବିଜ୍ଞାନର ବିକାଶ ପର୍ବ ପଶ୍ଚାତରେ ରହିଥିଲା ନବଜାଗରଣର ଏକ ସାଂସ୍କୃତିକ ଆଲୋଡନ । ସେହି ସାଂସ୍କୃତିକ ଆଲୋଡନ ପଶ୍ଚାତରେ କେତେକ ଐତିହାସିକ କାରଣ ନିହିତ ଥିଲା । ପ୍ରାଚୀନ କାଳରେ ଗ୍ରୀକ୍ ଦର୍ଶନ ଏକ ବୌଦ୍ଧିକ ଶିଖରକୁ ଯାଇଥିଲା । ପଞ୍ଚଦଶ ଶତାବ୍ଦୀରେ ବାଇଜାଣ୍ଟାଇନ୍ ସାମ୍ରାଜ୍ୟର ପତନ ପରେ ଗ୍ରୀକ୍ ପଣ୍ଡିତମାନେ ଇଟାଲୀକୁ ଯାଇ ସେଠାରେ ରାଜନୈତିକ ଆଶ୍ରୟ ନେଲେ । ପ୍ରାଚୀନ ଗ୍ରୀକ୍ ଦର୍ଶନରେ ପ୍ରକୃତି ଓ ଜୀବନର ଯେଉଁ ବୌଦ୍ଧିକ ଅନୁଶୀଳନର ଧାରାଟି ସୃଷ୍ଟି ହୋଇଥିଲା ତାହାର ଚର୍ଚ୍ଚା ଅଧିକ ଫଳବତୀ ହେଲା । ନବଜାଗରଣ ଯୁଗରେ ଜ୍ଞାନ ସାମନ୍ତବର୍ଗଠାରୁ ମୁକ୍ତ ହୋଇ ସାର୍ବଜନୀନ ହେବାକୁ ଲାଗିଲା । ମୁଦ୍ରଣ ଯନ୍ତ୍ରର (ପ୍ରିଣ୍ଟିଂ ପ୍ରେସ୍) ଉଦ୍‌ଭାବନ ଯୋଗୁ ଜ୍ଞାନ ବିଜ୍ଞାନର ପ୍ରସାର କ୍ଷେତ୍ରରେ ସୁଯୋଗ ଆସିଲା ।

ଜ୍ଞାନାର୍ଜନ, ଶିକ୍ଷା ସର୍ବସାଧାରଣ ସ୍ତରକୁ ପ୍ରସାରିତ ହେବା ଦ୍ୱାରା ବୌଦ୍ଧିକ ଅନୁସନ୍ଧିତ୍ସା ଦୃଢ଼ ଭିତ୍ତି ନେଇପାରିଲା ।

ବିଜ୍ଞାନର ଆଦି ପର୍ବଟି ଥିଲା ଏକ ସଂଘର୍ଷର ସମୟ । ବୈଜ୍ଞାନିକ ସିଦ୍ଧାନ୍ତ ସହ ଧାର୍ମିକ ବିଶ୍ୱାସର ଅମେଳରୁ ବହୁ ସତ୍ୟସନ୍ଧାନୀ ବୈଜ୍ଞାନିକ ଓ ହେତୁବାଦୀ ଚିନ୍ତକ କିପରି ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି ତାହାର କାହାଣୀ ବେଶ୍ ମର୍ମାନ୍ତିକ । ଯେଉଁମାନେ ଜ୍ଞାନବିଜ୍ଞାନକୁ ଅମୂଲ୍ୟ ଅବଦାନ ଦେଇଛନ୍ତି, ଯେଉଁମାନଙ୍କର ଅବଦାନରୁ ସଭ୍ୟତାର ରଥ ଆଗକୁ ଯାଇଛି ସେମାନେ ନିଜ ସମସାମୟିକ ସମାଜର ରକ୍ଷଣଶୀଳ ଲୋକଙ୍କ ଦ୍ୱାରା ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି । ଧାର୍ମିକ ରକ୍ଷଣଶୀଳତା ବିଜ୍ଞାନର ବିକାଶ କ୍ଷେତ୍ରରେ ସର୍ବଦା ପ୍ରତିବଂଧକ ହୋଇଛି । ଏହି ପୃଷ୍ଠଭୂମିରେ କେତୋଟି ଉଦାହରଣ ଦିଆଯାଇପାରେ । ଚିକିତ୍ସା ବିଜ୍ଞାନର ଦୁଇ ଜନକ ଆଣ୍ଡ୍ରିଆସ ଭେସାଲିଅସ୍ ଓ ମାଇକେଲ ସର୍ଭେଟସ ଷୋଡଶ ଶତାବ୍ଦୀର ଦୁଇ ଚିକିତ୍ସା ବିଜ୍ଞାନୀ ନିର୍ଯ୍ୟାତନାର ଶରବ୍ୟ ହୋଇଛନ୍ତି । ଭେସାଲିଅସ୍ ଥିଲେ ଆନାଟୋମିର ଉଦ୍‌ଭାବକ ଓ ସର୍ଭେଟସ ଶରୀରରେ ରକ୍ତ ସଞ୍ଚାଳନର ବ୍ୟାଖ୍ୟା କରିଥିଲେ । ଶରୀର ଏକ ପବିତ୍ର ବସ୍ତୁ ବୋଲି ସେ ଯୁଗରେ ବିଶ୍ୱାସ ଥିଲା । ମୃତ ଶରୀରର ବ୍ୟବଚ୍ଛେଦ ଏକ ଅଧାର୍ମିକ କାର୍ଯ୍ୟ ବୋଲି ଭାବନାରୁ ସେମାନେ ସମାଜଦ୍ୱାରା ନିନ୍ଦିତ ହୋଇଥିଲେ । ଜର୍ଜ ବ୍ରୁନୋ ଥିଲେ ପ୍ରକୃତିବାଦୀ । ତାଙ୍କର ବିଚାର ଥିଲା ଯେ ଜ୍ଞାନ ଅସୀମ, ଧର୍ମଗ୍ରନ୍ଥର ଜ୍ଞାନ ଅସତ୍ୟ ହୋଇପାରେ, ଅନ୍ତିମ ସତ୍ୟ ବୋଲି କିଛି ନାହିଁ । ତାଙ୍କର ଏହି ବିଚାର ଯୋଗୁ ସର୍ବସାଧାରଣରେ ତାଙ୍କୁ ଖୁଣ୍ଟରେ ବାନ୍ଧି ପୋଡି ମାରି ଦିଆଗଲା । ଭୂତତ୍ତ୍ୱ ବିଜ୍ଞାନର ପଥଦ୍ରଷ୍ଟା ଜର୍ଜ ବୁଫନ ଭାବନା ଦେଇଥିଲେ ଯେ ପୃଥିବୀ ପରିବର୍ତ୍ତନଶୀଳ, ପୃଥିବୀ ଉତ୍ପତ୍ତିର ବହୁ ବର୍ଷ ପରେ ନଦୀ, ସମୁଦ୍ର, ପାହାଡ, ପର୍ବତ ଇତ୍ୟାଦିର ଉଦ୍‌ଭବ ହୋଇଛି । ତାଙ୍କର ଏହି ମତ ପାଇଁ ସେ ବହୁ ନିନ୍ଦିତ ଓ ଯନ୍ତ୍ରଣା ଜର୍ଜରିତ ହୋଇଛନ୍ତି । ଆଧୁନିକ ପଦାର୍ଥ ବିଜ୍ଞାନର ଜନକ ଭାବେ ଗାଲିଲିଓଙ୍କୁ ଗ୍ରହଣ କରାଯାଏ । ସୂର୍ଯ୍ୟ ସ୍ଥିର ଓ ଗ୍ରହମାନ ଘୂର୍ଣ୍ଣାୟମାନ ପରି ସୂର୍ଯ୍ୟକୈନ୍ଦ୍ରିକ ସିଦ୍ଧାନ୍ତ ପାଇଁ ଗାଲିଲିଓଙ୍କୁ ବନ୍ଦୀ ଜୀବନ ବିତାଇବାକୁ ପଡିଛି । ଇତିହାସରେ ଏପରି ଅନେକ ଦୃଷ୍ଟାନ୍ତ ରହିଛି । ବୈଜ୍ଞାନିକ ଚିନ୍ତନର ବିକାଶ କ୍ଷେତ୍ରରେ ଯେଉଁମାନେ ପଥପ୍ରଦର୍ଶକ ହୋଇଛନ୍ତି ଓ ଯେଉଁମାନଙ୍କର ମୌଳିକ ଅବଦାନ ଯୋଗୁ ବିଜ୍ଞାନ ଦୁନିଆର ରୂପ ବଦଳାଇ ଦେଇଛି ସେମାନେ କିନ୍ତୁ ବହୁ ନିର୍ଯ୍ୟାତନା ପାଇଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ଓ ଏପରିକି ଶହୀଦ ପାଲଟିଛନ୍ତି । ତେବେ ସେହି ସତ୍ୟ-ସନ୍ଧାନୀ ଅନୁସନ୍ଧିତ୍ସୁ ଚିନ୍ତା ନାୟକଙ୍କର ଅବଦାନର ଫଳରୁ ମନୁଷ୍ୟ ସମାଜ ବହୁ ଉପକାର ପାଇଛି ।

ବିଜ୍ଞାନର ବିକାଶ ପୂର୍ବରୁ ସବୁ ସଭ୍ୟତାରେ ଧାର୍ମିକ ବିଶ୍ୱାସର ଗଭୀର ପ୍ରଭାବ ରହିଥିଲା । ପ୍ରତ୍ୟେକ ଧର୍ମ ତାର ଧର୍ମଗ୍ରନ୍ଥକୁ ପବିତ୍ର, ଧର୍ମର ଭାବନାକୁ ଚିରନ୍ତନ ଓ ଈଶ୍ୱରଦତ୍ତ ଜ୍ଞାନ ବୋଲି ମନେ କରୁଥିଲା । ଧର୍ମଗ୍ରନ୍ଥରେ ଥିବା ଭାବନା ଗୁଡିକ ଯେ ମିଥ୍ୟା ଓ ଅସତ୍ୟ ହୋଇପାରେ ଏହା ବିଶ୍ୱାସ ବହିର୍ଭୂତ ଥିଲା । ଧର୍ମଗ୍ରନ୍ଥରେ ଭାବନା ରହିଛି ଯେ ଈଶ୍ୱର ପୃଥିବୀକୁ ସୃଷ୍ଟି କରିଛନ୍ତି । କେତେକ ଧର୍ମଗ୍ରନ୍ଥରେ ରହିଛି ଯେ ମାତ୍ର ଛ'ହଜାର ବର୍ଷତଳେ ପୃଥିବୀକୁ ଈଶ୍ୱର ସୃଷ୍ଟି କରିଛନ୍ତି ଓ ମାତ୍ର ଛ' ଦିନରେ ଈଶ୍ୱର ଶୂନ୍ୟରୁ ସବୁ ସୃଷ୍ଟି କରିଛନ୍ତି । କିନ୍ତୁ ବିଜ୍ଞାନ ନାନା ଅନୁଶୀଳନ କରି ଜଣାଇଲା ଯେ ପୃଥିବୀ କୋଟି କୋଟି ବର୍ଷ ତଳେ ଉଦ୍‌ଭବ ହୋଇଛି । ପୃଥିବୀ ଆଜି ଯେଉଁ ସ୍ଥିତିରେ ରହିଛି, ସେହି ସ୍ଥିତିରେ ସୃଷ୍ଟି ହୋଇଥିଲା ବୋଲି ଧର୍ମରେ ବିଶ୍ୱାସ ରହିଛି । ବିଜ୍ଞାନ ମତରେ ପୃଥିବୀ ଏହି ସ୍ଥିତିକୁ ଆସିବାକୁ କୋଟି କୋଟି ବର୍ଷ ନେଇଛି । ମଣିଷକୁ ଈଶ୍ୱର ତାଙ୍କ ସ୍ୱରୂପରେ ସୃଷ୍ଟି କରିଛନ୍ତି ବୋଲି ଧର୍ମ ବିଶ୍ୱାସ କରିଛି । ବିଜ୍ଞାନ ମତରେ କୋଟି କୋଟି ବର୍ଷର ନାନା ଜୈବିକ ବିବର୍ତ୍ତନ ଦେଇ ମଣିଷର ଉଦ୍‌ଭବ ହୋଇଛି । ଧର୍ମର ବିଶ୍ୱାସ ଅନୁଯାୟୀ ପୃଥିବୀ ହେଉଛି ବିଶ୍ୱର କେନ୍ଦ୍ର ଓ ଏହା ସ୍ଥିର । ବିଜ୍ଞାନ ଅନୁଯାୟୀ ବିଶ୍ୱରେ କୋଟି କୋଟି ସୌରମଣ୍ଡଳ ରହିଛି ଓ ଆମ ସୌର ମଣ୍ଡଳରେ ଯେଉଁଥିରେ ଆମ ପୃଥିବୀ ରହିଛି ତାହାର କେନ୍ଦ୍ରରେ ସୂର୍ଯ୍ୟ ରହିଛି । ସୂର୍ଯ୍ୟ ଚାରିପଟେ ସବୁ ଗ୍ରହ ଓ ପୃଥିବୀ (ପୃଥିବୀ ବି ଏକ ଗ୍ରହ) ଘୂର୍ଣ୍ଣାୟମାନ ରହିଛନ୍ତି । ଏହିପରି ଦେଖିଲେ ଧର୍ମଗ୍ରନ୍ଥର ଅନେକ ବର୍ଣ୍ଣନା ବିଜ୍ଞାନ ଦୃଷ୍ଟିରୁ ସଂପୂର୍ଣ୍ଣ ଅସତ୍ୟ । ଧର୍ମମାନଙ୍କର ଉତ୍ପତ୍ତି ସମୟରେ ମଣିଷର ବୌଦ୍ଧିକ ସ୍ତର ସେପରି ବିକଶିତ ହୋଇନଥିଲା । ସେହି ସମୟରେ ପୃଥିବୀ ଓ ମନୁଷ୍ୟର ଉତ୍ପତ୍ତି ନେଇ ମଣିଷ ଯାହା ସବୁ କଳ୍ପନା କରିଥିଲା ତାହା ଧର୍ମଗ୍ରନ୍ଥରେ ସ୍ଥାନ ପାଇଲା । ନାନା କାରଣରୁ ଧର୍ମର ଗଭୀର ପ୍ରଭାବ ସମାଜ ଉପରେ ରହିଥିବାରୁ ଧର୍ମଗ୍ରନ୍ଥର ବର୍ଣ୍ଣନା ମାନଙ୍କୁ ମଣିଷ ସତ୍ୟ ଓ ଶାଶ୍ୱତ ମନେ କରି ଆସିଥିଲା । ଏହି ସ୍ଥିତିରେ ବୈଜ୍ଞାନିକ ସିଦ୍ଧାନ୍ତ ମାନ ଧାର୍ମିକ ବିଶ୍ୱାସର ବିରୁଦ୍ଧାଚରଣ କରିବାରୁ ବୈଜ୍ଞାନିକ ଭାବନାର ପ୍ରବକ୍ତାମାନଙ୍କୁ ବହୁ ବିରୋଧର ସମ୍ମୁଖୀନ ହେବାକୁ ପଡିଥିଲା । ଏହି ଦୃଷ୍ଟିରୁ ବିଜ୍ଞାନର ଉନ୍ମେଷ କାଳଟି ଥିଲା ବହୁ ବିରୋଧର ସମୟ । ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ପରୀକ୍ଷିତ ଓ ବସ୍ତୁନିଷ୍ଠ ହୋଇଥିବାରୁ ବିଜ୍ଞାନର ବିକାଶକୁ ପ୍ରତିହତ କରିବା ସମ୍ଭବ ନୁହେଁ । ବିଜ୍ଞାନର ବିକାଶ ହିଁ ସଭ୍ୟତାର ଅଗ୍ରଗତିର ପ୍ରତୀକ ।

(୬.୮.୨୦୧୪)



# ବିଜ୍ଞାନର ଦିଗ ଓ ଦିଗନ୍ତ

ଏକ ସାଂସ୍କୃତିକ ଜାଗରଣରୁ ବିଜ୍ଞାନର ଯୁଗଟି ଆରମ୍ଭ ହେଲା । ବିଜ୍ଞାନର ଉନ୍ମେଷ କାଳଥିଲା ଷୋଡଶ, ସପ୍ତଦଶ ଶତାବ୍ଦୀ । ସେହି ସମୟରୁ ଗୋଟିଏ ପରେ ଗୋଟିଏ ଉଦ୍‌ଭାବନ ଓ ଆବିଷ୍କାର ସଭ୍ୟତାର ରୂପରେଖ ବଦଳାଇବାରେ ସାହାଯ୍ୟ କଲା । ଗୋଟିଏ ଗୋଟିଏ ଉଦ୍‌ଭାବନ ସଭ୍ୟତାର ବିକାଶକୁ ଯେପରି ଲଂଫ ଦେଇଛି ତାହାର କାହାଣୀ ବେଶ୍ ଚମତ୍କାର ମନେହୁଏ । ଆଜି ଆମେ ଯେଉଁ ଦୁନିଆଟିରେ ରହିଛେ, ହାତ ପାହାନ୍ତାରେ ଅନେକ ଉପକରଣ ବ୍ୟବହାର କରୁଛେ, ପୃଥିବୀର ଯେକୌଣସି ବ୍ୟକ୍ତିଙ୍କ ସହ ଟେଲିଫୋନ୍, ଇଣ୍ଟରନେଟ୍ ଯୋଗେ ସଂପର୍କ ସ୍ଥାପନ କରିପାରୁଛେ, କୌଣସି ଅସୁସ୍ଥତା ପାଇଁ ଚିକିତ୍ସକଙ୍କ ସାହାଯ୍ୟ ନେଇପାରୁଛେ ଏସବୁ ସୁବିଧା ସୁଯୋଗ ଗୋଟିଏ ଶତାବ୍ଦୀ ତଳେ ସମ୍ଭବ ନଥିଲା । ଆମର ପିତାମହ ଓ ପ୍ରପିତାମହମାନେ ଯେଉଁ ଦୁନିଆରେ ବାସ କରୁଥିଲେ ସେମାନଙ୍କ ଦୁନିଆଠାରୁ ଆଜିର ଦୁନିଆ ବହୁ ଆଗକୁ ଯାଇପାରିଛି । ତେବେ ଆଜିର ଏହି ସ୍ଥିତିକୁ ଆସିବା ପଶ୍ଚାତରେ ରହିଛି ବିଜ୍ଞାନର ଅବଦାନ । ବିଜ୍ଞାନ ହିଁ ଏହି ଚାରି ଶହ ବର୍ଷ ଭିତରେ ପୃଥିବୀର ରୂପରେଖ ବଦଳାଇ ଦେଇପାରିଛି । ଶହେ ବର୍ଷ ତଳେ ଟେଲିଫୋନ୍, ଟେଲିଭିଜନ କଥା ଚିନ୍ତା ସ୍ତରକୁ ଆସିନଥିଲା, ଦୁଇଶହ ବର୍ଷ ତଳେ ରେଳଯାତ୍ରା ବା ବିମାନ ଯାତ୍ରା ଅଚିନ୍ତନୀୟ ଥିଲା, ଇଲେକ୍‌ଟ୍ରିକ ଲାଇଟ ବା ସେପ୍‌ଟି ପାଇଖାନାର ସୁବିଧା ଉପଲବ୍ଧ ନଥିଲା, ତିନି ଶହ ଚାରିଶହ ବର୍ଷ ତଳେ ଛପା ବହି ଖଣ୍ଡିଏ ଦୁଷ୍ପ୍ରାପ୍ୟ ରହିଥିଲା । ଏସବୁକୁ ବାଦ୍ ଦେଇ ଆଜିର ଜୀବନଯାତ୍ରାକୁ କଳ୍ପନା କରିବା ଆମ ପାଇଁ କେତେ କଷ୍ଟଦାୟକ ହେବ ତାହା ସହଜରେ ଅନୁମେୟ । ସଭ୍ୟତାକୁ ଆଜିର ସ୍ଥିତିକୁ ଆଣିବାକୁ ଯେଉଁମାନଙ୍କର ଅମୂଲ୍ୟ ଅବଦାନ ରହିଛି, ସେମାନେ ହୁଏତ ଜନମାନସରେ ବିସ୍ମୃତ, ତେବେ ସେହିମାନଙ୍କର ଜୀବନବ୍ୟାପୀ ଗବେଷଣାର ସୁଫଳ ତାଙ୍କର ବଂଶଧରମାନେ ଉପଭୋଗ କରୁଛନ୍ତି । ବିଜ୍ଞାନର ଯାତ୍ରାପଥରେ ଯେଉଁମାନେ

କିଛି ଅବଦାନ ଦେଇଛନ୍ତି ସେମାନେ ଯେ ବିଶ୍ୱ ମାନବିକତାର ପଥଦ୍ରଷ୍ଟା ଏହା କହିଲେ ଅତିଶୟୋକ୍ତି ହେବନାହିଁ । ସେମାନେ ତାଙ୍କର ପରବର୍ତ୍ତୀ ପିଢ଼ି ପାଇଁ ଯେଉଁ ଜ୍ଞାନ-ସଂପଦ ଛାଡ଼ି ଯାଇଛନ୍ତି, ଆମେ ହେଉଛେ ତା'ର ଉପଭୋକ୍ତା । ଇଂରାଜୀରେ ଏହି ପ୍ରସଙ୍ଗରେ ଗୋଟିଏ ଉକ୍ତି ରହିଛି-ଆର୍ଟ ଇଜ୍ ପ୍ଳେଜର, ଇନ୍‌ଭେନସନ୍ ଇଜ୍ ଟ୍ରେଜର । ଅର୍ଥାତ୍ କଳା ହେଉଛି ସୁଖ, ଉଦ୍‌ଭାବନ ହେଉଛି ରତ୍ନ ।

ବୈଜ୍ଞାନିକ ଜ୍ଞାନର ବିକାଶ ପଶ୍ଚାତରେ କେତେକ ମୌଳିକ ବିଚାର ରହିଥିଲା । ସେହି ବିଚାରରୁ ବୈଜ୍ଞାନିକ ଗବେଷଣାର ସୂତ୍ରପାତ ହେଲା । ବୈଜ୍ଞାନିକ ବିଚାରରୁ ଏହି ଭାବନା ଦୃଢ଼ୀଭୂତ ହେଲା ଯେ ପ୍ରକୃତିରେ ଯାହା କିଛି ଅଛି ବା ଯାହା କିଛି ଘଟଣା ଘଟେ ତାହା ପଶ୍ଚାତରେ କେବଳ ପ୍ରାକୃତିକ କାରଣ ବା ନିୟମ ରହିଛି । ସେହି କାରଣ ବା ନିୟମକୁ ଜାଣିଲେ ଅନେକ ଘଟଣାକୁ ବ୍ୟାଖ୍ୟା କରିହେବ । ସେହି କାରଣ ବା ନିୟମକୁ ଜାଣିବାର ପ୍ରୟାସ ଯୋଗୁ ପ୍ରକୃତିର ବହୁ ରହସ୍ୟ ପଦାକୁ ଆସିପାରିଲା । କୌଣସି ପ୍ରାକୃତିକ ଘଟଣା ପଶ୍ଚାତରେ ଯେ କୌଣସି ଈଶ୍ୱରୀୟ ବା ଦୈବୀ କାରଣ ନିହିତ ନାହିଁ ଏହାହିଁ ବୈଜ୍ଞାନିକ ଅନୁଶୀଳନର ଏକ ସ୍ୱତଃସିଦ୍ଧ ଶୃଂଖଳା ଥିଲା । ସେହିପରି ଏ ବିଶାଳ ବିଶ୍ୱକୁ ଜାଣିବାର ପଦ୍ଧତି କ'ଣ ? କେଉଁ ପ୍ରଣାଳୀ ଅବଲମ୍ବନ କଲେ ପ୍ରକୃତିର ରହସ୍ୟକୁ ଜାଣିହେବ ? ଏହି ପ୍ରକ୍ରିୟାରେ ଏହା ମଧ୍ୟ ଗୃହୀତ ହେଲା ଯେ ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ହିଁ ବୈଜ୍ଞାନିକ ଜ୍ଞାନର ମୂଳ ଆଧାର । ଆମେ ଯାହା ପରୀକ୍ଷା କରି ପର୍ଯ୍ୟବେକ୍ଷଣ କରେ ସେହି ତଥ୍ୟ ଆଧାରରେ ଘଟଣାମାନଙ୍କୁ ବ୍ୟାଖ୍ୟା କରିବା ସମ୍ଭବ । ଯେଉଁ ଘଟଣାକୁ ବ୍ୟାଖ୍ୟା କରିବା ସମ୍ଭବ ହେଉ ନାହିଁ ସେ ପାଇଁ କୌଣସି ପ୍ରାକୃତିକ କାରଣକୁ ଅନୁମାନ କରି ତାହାର ପରୀକ୍ଷା ଆବଶ୍ୟକ । ଯଦି ପରୀକ୍ଷାଦ୍ୱାରା ଏହା ସତ୍ୟ ବୋଲି ସାବ୍ୟସ୍ତ ହେଉଛି, ତାହାକୁ ଗ୍ରହଣ କରାଯିବ ନହେଲେ ଅନ୍ୟ କିଛି ସମ୍ଭାବ୍ୟ କାରଣ ଚିନ୍ତା କରାଯାଇପାରେ । ଏହି ପ୍ରକ୍ରିୟାରେ ବିଭିନ୍ନ ବୈଜ୍ଞାନିକ ସିଦ୍ଧାନ୍ତମାନ ଆବିଷ୍କୃତ ହୋଇଛି । ବିଜ୍ଞାନର ପ୍ରତ୍ୟେକ ବିଭାଗରେ ବିଭିନ୍ନ ନିୟମ ଓ ସିଦ୍ଧାନ୍ତ ମାନ ରହିଛି । ଯେଉଁମାନେ ବିଜ୍ଞାନ ଅଧ୍ୟୟନ କରୁଛନ୍ତି ସେମାନେ ବିଜ୍ଞାନର ସେହି ବିଭାଗର ନିୟମ ଓ ସିଦ୍ଧାନ୍ତମାନଙ୍କୁ ଜାଣିବାର ଅବକାଶ ପାଉଛନ୍ତି । ତେବେ ଗୋଟିଏ ନିୟମର ଆବିଷ୍କାର ପାଇଁ ବା ସିଦ୍ଧାନ୍ତର ନିର୍ମାଣ ପାଇଁ ବହୁ ବର୍ଷର ନିରବଚ୍ଛିନ୍ନ ପ୍ରୟାସ ରହିଛି । ମାଧ୍ୟାକର୍ଷଣ ନିୟମ, ବିବର୍ତ୍ତନବାଦ, ଅଣୁ ପରମାଣୁ ସିଦ୍ଧାନ୍ତ, ମୌଳିକ ବସ୍ତୁ ମାନଙ୍କର ସ୍ୱରୂପ ଇତ୍ୟାଦି ସହଜରେ ଆମେ ବୁଝିଯାଇ ପାରୁଛେ । କିନ୍ତୁ ଏହି ଗୋଟିଏ ଗୋଟିଏ ତତ୍ତ୍ୱ ବାହାର କରିବାକୁ ଜୀବନବ୍ୟାପୀ ଗବେଷଣା ହୋଇଛି । ପ୍ରକୃତିର ବିଶାଳତା ଓ ଜଟିଳତା ନେଇ ପ୍ରକୃତିର ଏକ ନିୟମ, ରହସ୍ୟ ବା

ଶୃଙ୍ଖଳା ଜାଣିବା ଏତେ ସହଜ ନୁହେଁ । କେବଳ ପ୍ରତିଭାଧର ଅନୁସନ୍ଧିତ୍ସୁ ବ୍ୟକ୍ତିମାନେ ହିଁ ଗମ୍ଭୀର ଅନୁଶୀଳନଦ୍ୱାରା ଏକ ବୈଜ୍ଞାନିକ ସିଦ୍ଧାନ୍ତରେ ଉପନୀତ ହୋଇପାରନ୍ତି । ବର୍ଷ ବର୍ଷ ଧରି ଗବେଷଣା ଓ ଅନୁସନ୍ଧାନଦ୍ୱାରା ବୈଜ୍ଞାନିକ ସିଦ୍ଧାନ୍ତମାନଙ୍କର ନିର୍ମାଣ ସମ୍ଭବ ହୋଇପାରିଛି । ତେବେ ବିଜ୍ଞାନ ସର୍ବଦା ପ୍ରାକୃତିକ କାରଣ ଓ ପର୍ଯ୍ୟବେକ୍ଷଣ-ପରୀକ୍ଷଣକୁ ଆଧାର ଭାବେ ନେଇ ଏହାର ଦିଗନ୍ତକୁ ବିସ୍ତାର କରିପାରିଛି । ଏହା କୌଣସି ଅଧିଦୈବିକ, ଅଲୌକିକ ବା ଈଶ୍ୱରୀୟ କାରଣକୁ ଗ୍ରହଣ କରି ନାହିଁ ।

ଏହି ପୃଷ୍ଠଭୂମିରେ ଏହା କହିବା ପ୍ରାସଙ୍ଗିକ ହେବ ଯେ ବୈଜ୍ଞାନିକ ଜ୍ଞାନ ତଥ୍ୟ-ଆଧାରିତ ଓ ପରୀକ୍ଷା ପାଇଁ ମୁକ୍ତ । ଯେଉଁ ଜ୍ଞାନ ତଥ୍ୟ-ଆଧାରିତ ନୁହେଁ କିମ୍ୱା ଯାହା ପଶ୍ଚାତରେ କୌଣସି ନିୟମ ବା ସିଦ୍ଧାନ୍ତ ନାହିଁ ତାହା ବିଜ୍ଞାନ ପଦବାଚ୍ୟ ନୁହେଁ । ବୈଜ୍ଞାନିକ ଜ୍ଞାନ ପ୍ରଗତିଶୀଳ ଓ ପରିବର୍ତ୍ତନ ସାପେକ୍ଷ । କୌଣସି ବୈଜ୍ଞାନିକ ନିଜର ସିଦ୍ଧାନ୍ତକୁ ଚିରନ୍ତନ ବା ଶାଶ୍ୱତ ବୋଲି ମନେକରନ୍ତି ନାହିଁ । ଗୋଟିଏ ନିୟମ ବା ସିଦ୍ଧାନ୍ତ ଯେଉଁ ଘଟଣାମାନଙ୍କୁ ବ୍ୟାଖ୍ୟା କରୁଛି ତାଠାରୁ ଯଦି ଏକ ଉନ୍ନତ ସିଦ୍ଧାନ୍ତର କେହି ଅବତାରଣା କରନ୍ତି ଯାହାର ବ୍ୟାଖ୍ୟାର ପରିସର ପୂର୍ବ ସିଦ୍ଧାନ୍ତ ତୁଳନାରେ ବ୍ୟାପକ, ତେବେ ପୂର୍ବ ସିଦ୍ଧାନ୍ତର ପରିବର୍ତ୍ତନ କରିବାରେ କୌଣସି ମତଭେଦ ନଥାଏ । ବିଜ୍ଞାନର ସିଦ୍ଧାନ୍ତମାନ ଏହି ଦୃଷ୍ଟିରୁ ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ । ବୈଜ୍ଞାନିକ ସିଦ୍ଧାନ୍ତମାନେ ସାର୍ବଜନୀନ ଓ ସ୍ଥାନ-କାଳ-ସଂସ୍କୃତି ନିରପେକ୍ଷ । ଏକ ବୈଜ୍ଞାନିକ ନିୟମ ଭାରତରେ ଏକ ପ୍ରକାର, ଆମେରିକା ବା ଚୀନରେ ଅନ୍ୟ ପ୍ରକାର ଏହା ସମ୍ଭବ ନୁହେଁ । ଏକ ବୈଜ୍ଞାନିକ ସିଦ୍ଧାନ୍ତ ନିଜ ପ୍ରଣାଳୀ ଆଧାରରେ ସ୍ୱସଂଶୋଧନାତ୍ମକ । ଏହା ସର୍ବଦା ତଥ୍ୟ ଆଧାରିତ ହୋଇଥିବାରୁ ନୂତନ ତଥ୍ୟ ବା ଘଟଣା ଆଧାରରେ ଏହାର ପରିବର୍ତ୍ତନ ବା ସଂଶୋଧନ ସଂଭବ । କୌଣସି ଅତିପ୍ରାକୃତିକ କାରଣ ବା ସିଦ୍ଧାନ୍ତ ବୈଜ୍ଞାନିକ ଜ୍ଞାନର ପରିପନ୍ଥୀ ଓ ତାହା ବିଜ୍ଞାନରେ ସ୍ୱୀକୃତ ନୁହେଁ । ଯାହା ପରୀକ୍ଷା ଆଧାରିତ ନୁହେଁ ବା ଯାହା ପଶ୍ଚାତରେ କୌଣସି ବସ୍ତୁନିଷ୍ଠ ନିୟମ ବା ସିଦ୍ଧାନ୍ତ ନାହିଁ ତାହା ବିଜ୍ଞାନ ଦ୍ୱାରା ଗୃହୀତ ନୁହେଁ ।

ବୈଜ୍ଞାନିକ ଜ୍ଞାନର ମୂଳଭିତ୍ତି ହେଉଛି ଏହାର 'ପ୍ରଣାଳୀ' । ବୈଜ୍ଞାନିକ ଜ୍ଞାନ ଯେଉଁ ପ୍ରଣାଳୀ ମଧ୍ୟ ଦେଇ ଉପଲବ୍ଧ ହୁଏ ସେହି ପ୍ରଣାଳୀ ସୁନିର୍ଦ୍ଦିଷ୍ଟ ଓ ସୁବ୍ୟବସ୍ଥିତ । ଏହି ପ୍ରଣାଳୀ ସାର୍ବଜନୀନ ଓ ସର୍ବଦା ମୁକ୍ତ । ଏହି ପ୍ରଣାଳୀକୁ ପ୍ରୟୋଗ କରି ବିଶାଳ ପ୍ରକୃତିକୁ ମଣିଷ ବୁଝିବାକୁ ପ୍ରୟାସ କରିଛି । ପ୍ରକୃତିର ବିଶାଳତା ଯୋଗୁ ବିଜ୍ଞାନର ବହୁ ବିଭାଗ ରହିଛି । ଜ୍ଞାନର ଯେତିକି ବିକାଶ ହେଉଛି ସେହି ବିଭାଗର ସଂଖ୍ୟା ସେହିପରି ବୃଦ୍ଧି ପାଇଚାଲିଛି । ପ୍ରତ୍ୟେକ ବିଭାଗର, ଜ୍ଞାନର ବିସ୍ତାର ସହ, ବହୁ ଉପବିଭାଗ ରହିଛି ।

ଗବେଷଣାର ପରିସର ଯେତିକି ବୃଦ୍ଧି ପାଉଛି, ନୂଆ ନୂଆ ଦିଗନ୍ତ ସୃଷ୍ଟି ହେଉଛି ଓ ବିଶେଷତା ପ୍ରକାଶ ପାଉଛି । ଚିକିତ୍ସା ବିଜ୍ଞାନ, ଇଂଜିନିୟରିଂ, କୃଷିବିଜ୍ଞାନ ଇତ୍ୟାଦି କ୍ଷେତ୍ରରେ ପ୍ରତ୍ୟେକଥିରେ କେତେ କେତେ ବିଭାଗ ଓ ବିଷୟ ଅଧ୍ୟୟନ ପରିସରକୁ ଆସିଲାଣି ତାହା କହିବା ନିଷ୍ପ୍ରୟୋଜନ ।

ବିଜ୍ଞାନ ଯେ କେବଳ ପ୍ରାକୃତିକ ଘଟଣାମାନଙ୍କୁ ଅଧ୍ୟୟନ ଓ ଅନୁଶୀଳନ କରେ ତାହା ନୁହେଁ, ଏହା ସମାଜର ଘଟଣା ପ୍ରବାହ ଓ ବ୍ୟବସ୍ଥାକୁ ମଧ୍ୟ ବ୍ୟାଖ୍ୟା କରିଥାଏ । ବିଜ୍ଞାନର ମୌଳିକ ଆଭିମୁଖ୍ୟ ହେଉଛି ଘଟଣାମାନଙ୍କୁ କୌଣସି ସିଦ୍ଧାନ୍ତ ଆଧାରରେ ଏକ ସୁବ୍ୟବସ୍ଥିତ ପ୍ରଣାଳୀ ମାଧ୍ୟମରେ ବ୍ୟାଖ୍ୟା କରିବା । ପ୍ରକୃତିର ଅନୁଶୀଳନରୁ ଯେପରି ବିଭିନ୍ନ ପ୍ରାକୃତିକ ବିଜ୍ଞାନ ମାନ ଚିନ୍ତାରାଜ୍ୟରେ ସ୍ୱୀକୃତ ହୋଇଛି, ସେହିପରି ସମାଜର ବିଭିନ୍ନ କ୍ଷେତ୍ରକୁ ସୁବ୍ୟବସ୍ଥିତ ପ୍ରଣାଳୀ ମାଧ୍ୟମରେ ଅନୁଶୀଳନ ଦ୍ୱାରା ସାମାଜିକ ବିଜ୍ଞାନମାନ ବିକାଶଲାଭ କରିଛି । ତେବେ ପ୍ରକୃତିର ଅଧ୍ୟୟନ ହେଉ ବା ସମାଜର ଅଧ୍ୟୟନ ହେଉ ଉଭୟ କ୍ଷେତ୍ରରେ ଏକ ସ୍ୱୀକୃତ ପ୍ରଣାଳୀକୁ ଅବଲମ୍ବନ କରାଯାଏ । ବୈଜ୍ଞାନିକ ପ୍ରଣାଳୀ ଆଧାରରେ ସମାଜର ବିକାଶ ପ୍ରକ୍ରିୟା, ଅନୁଷ୍ଠାନ, ବ୍ୟବସ୍ଥା, ସମ୍ବନ୍ଧ, ପରଂପରା, ଜୀବନପ୍ରବାହକୁ ଅନୁଶୀଳନ କରିବାଦ୍ୱାରା ସାମାଜିକ ବିଜ୍ଞାନମାନ ବିକଶିତ ହୋଇଛି । ଏକ ସ୍ଥିରୀକୃତ ଓ ସାର୍ବଜନୀନ ପ୍ରଣାଳୀ ମାଧ୍ୟମରେ ପ୍ରକୃତି ଓ ମାନବ ସମାଜକୁ ଅନୁଶୀଳନ କରିବା ଦ୍ୱାରା ପ୍ରାକୃତିକ ବିଜ୍ଞାନ (ନାଚୁରାଲ ସାଇନ୍‌ସ) ଓ ସାମାଜିକ ବିଜ୍ଞାନ (ସୋସିଆଲ ସାଇନ୍‌ସ) ଜ୍ଞାନର ପରିସରକୁ ପରିପୁଷ୍ଟ କରିଛନ୍ତି ।

ଉପସଂହାରରେ ଏହା କହିଲେ ଯଥାର୍ଥ ହେବ ଯେ ବିଜ୍ଞାନ ହେଉଛି ଜ୍ଞାନର ଅନ୍ୱେଷଣ । ପ୍ରାକୃତିକ ଜଗତ ଓ ସାମାଜିକ ପ୍ରକ୍ରିୟାକୁ ବିଶ୍ଳେଷଣ କରିବା ଏହି ଅନ୍ୱେଷଣର ପ୍ରଧାନ ଆଭିମୁଖ୍ୟ । ଏହି ବିଶ୍ଳେଷଣ ଏକ ସୁବ୍ୟବସ୍ଥିତ ପ୍ରଣାଳୀ ଆଧାରରେ କରାଯାଇ ସିଦ୍ଧାନ୍ତ ନିର୍ମାଣ କରାଯାଏ । ବୈଜ୍ଞାନିକ ସିଦ୍ଧାନ୍ତ ମାନ ଏହି ଦୃଷ୍ଟିରୁ ତଥ୍ୟଭିତ୍ତିକ, ପରୀକ୍ଷାସାପେକ୍ଷ, ନୂତନ ତଥ୍ୟ ଆଧାରରେ ପରିବର୍ତ୍ତନଶୀଳ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ । ପୁନଶ୍ଚ ପ୍ରାକୃତିକ ବିଜ୍ଞାନର ବିଭିନ୍ନ ବିଭାଗରେ ରହିଥିବା ସିଦ୍ଧାନ୍ତମାନ ପରସ୍ପର ସହ ସମତାଳ ଯୁକ୍ତ ଓ ଏକ ବୃହତ୍ତର ସିଦ୍ଧାନ୍ତର ଅଙ୍ଗବିଶେଷ ।

(୧୩.୮.୨୦୧୪)



# ବିଜ୍ଞାନର କେତେକ ପଥପ୍ରଦର୍ଶକ

ପଞ୍ଚମ ଶତାବ୍ଦୀରେ ରୋମ ସାମ୍ରାଜ୍ୟର ପତନ ପରେ ଏକ ହଜାରରୁ ଅଧିକ ବର୍ଷ ଧରି ଇଉରୋପରେ ଥିଲା ଅନ୍ଧକାରର ଯୁଗ । ଧାର୍ମିକ କୁସଂସ୍କାର, ରକ୍ଷଣଶୀଳତା, ରାଜତନ୍ତ, ସାମନ୍ତବାଦ ଇଉରୋପୀୟ ଜନଜୀବନକୁ କବଳିତ କରି ରଖିଥିଲା । ସମାଜ ସ୍ଥାଣୁ ହୋଇ ରହିଥିଲା, ଜ୍ଞାନ ବିଜ୍ଞାନର ବିକାଶ ନେଇ କୌଣସି ଭାବନା ସୃଷ୍ଟି ହୋଇନଥିଲା । ତେବେ ଇଉରୋପରେ ନବଜାଗରଣର ଯେଉଁ ବୈଚାରିକ ଆନ୍ଦୋଳନଟି ଆସିଲା ତାହା ସବୁ ସ୍ତରରେ ଏକ ବୈପ୍ଲବିକ ପରିବର୍ତ୍ତନର ସୂତ୍ରପାତ କଲା । ତାର ପରିଣତି ସ୍ୱରୂପ ବିଜ୍ଞାନର ଯୁଗଟି ଷୋଡଶ-ସପ୍ତଦଶ ଶତାବ୍ଦୀରୁ ରୂପ ନେବାକୁ ଲାଗିଲା । ବିଜ୍ଞାନର ଆରମ୍ଭ କାଳଟି ଥିଲା ସଂଘର୍ଷର ସମୟ । ଯୁଗ ଯୁଗର ଧାର୍ମିକ ବିଶ୍ୱାସ ଗୁଡିକୁ ବିଜ୍ଞାନ ଯେତେବେଳେ ଅସତ୍ୟ ବୋଲି ପ୍ରତିପାଦିତ କରିବାକୁ ଲାଗିଲା, ସେତେବେଳେ ବିଜ୍ଞାନ ଧର୍ମଦ୍ୱାରା ବହୁ ବିରୋଧର ସମ୍ମୁଖୀନ ହେଲା । ହେଲେ ପରୀକ୍ଷିତ ଓ ସତ୍ୟ ଆଧାରିତ ସିଦ୍ଧାନ୍ତମାନଙ୍କୁ ପ୍ରତ୍ୟାଖ୍ୟାନ କରିବା ସମ୍ଭବ ନଥିଲା । ତେବେ ଏହି ସଂଘର୍ଷ ଓ ସନ୍ଧିକ୍ଷଣ କାଳରେ କେତେକ ପ୍ରତିଭାଧାରୀ ବୈଜ୍ଞାନିକଙ୍କୁ କାଠଗଡାରେ ଛିଡା ହେବାକୁ ପଡିଲା ବା ଶହୀଦ ହେବାକୁ ହେଲା । ତେବେ ବିଜ୍ଞାନର ବିକାଶର ଯାତ୍ରା ଅବ୍ୟାହତ ରହିଲା ଓ ବିଜ୍ଞାନ ଏକ ନୂଆ ଦୁନିଆ ଗଢ଼ିବାକୁ ସମର୍ଥ ହେଲା । ବିଜ୍ଞାନକୁ ଆଧାର କରି ଯେଉଁ ସବୁ ପ୍ରଯୁକ୍ତି ଉଦ୍‌ଭବ ହେଲା ତାହା ସଭ୍ୟତାର ବିକାଶ ପ୍ରକ୍ରିୟାକୁ ଏକ ଲଂଫ ଦେଲା । ପରିଣାମତଃ ମାନବ ସଭ୍ୟତାର ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଦୃଶ୍ୟପଟରେ ତୁମୁଳ ପରିବର୍ତ୍ତନର ସୂତ୍ରପାତ ହେଲା । ଜୀବନର ଭୌତିକ ଓ ନୈତିକ ମାନର ଏକ ଗୁଣାତ୍ମକ ପରିବର୍ତ୍ତନ ଆସିପାରିଲା । ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତିକୁ ବାଦ୍ ଦେଇ ଆଧୁନିକ ସଭ୍ୟତାର ପରିକଳ୍ପନା କରାଯାଇ ପାରିବ ନାହିଁ । ମାନବ ସଭ୍ୟତା ଆଜି ଯେଉଁ ସ୍ଥିତିରେ ଆସି ପହଞ୍ଚିଛି ଓ ଜ୍ଞାନବିଜ୍ଞାନ କ୍ଷେତ୍ରରେ ଯେଉଁ ଉତ୍କର୍ଷ ସାଧିତ ହୋଇଛି ତାହା ପଶ୍ଚାତରେ ଏକ ସୁଦୀର୍ଘ କାହାଣୀ ରହିଛି । ଯେଉଁମାନଙ୍କର ଜୀବନବ୍ୟାପୀ ଗବେଷଣା, ବୌଦ୍ଧିକ

ଅନୁସନ୍ଧିତ୍ସାରୁ ପ୍ରକୃତିର ରହସ୍ୟ ଉନ୍ମୋଚିତ ହୋଇଛି ଓ ନାନା ବୈଜ୍ଞାନିକ ସିଦ୍ଧାନ୍ତର ନିର୍ମାଣ ହୋଇଛି ସେମାନେ ଯେ ସଭ୍ୟତାର ପଥପ୍ରଦର୍ଶକ ଏହା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ପୃଷ୍ଠଭୂମିରେ ବିଜ୍ଞାନ ଜଗତକୁ ଅମୂଲ୍ୟ ଅବଦାନ ଦେଇ ସଭ୍ୟତାର ନିର୍ମାଣ କ୍ଷେତ୍ରରେ ସ୍ୱାକ୍ଷର ରଖିଥିବା କେତେ ଜଣ ବିଶିଷ୍ଟ ବୈଜ୍ଞାନିକଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ସୂଚନା ଏଠାରେ ଦିଆଯାଇପାରେ । ଏହି ସଂଖ୍ୟା ବା ତାଲିକା ସୁଦୀର୍ଘ ହେଲେ ମଧ୍ୟ ବିଚାର ଜଗତରେ ନିଜର ଉଦ୍‌ଭାବନ ଓ ଆବିଷ୍କାରଦ୍ୱାରା ଯୁଗ ପ୍ରବର୍ତ୍ତକ ହୋଇଥିବା ମାତ୍ର କେତେ ଜଣ ସତ୍ୟସନ୍ଧାନୀ ଯୁଗପୁରୁଷଙ୍କୁ ସ୍ମରଣ କରାଯାଇପାରେ ।

ଆଧୁନିକ ବିଜ୍ଞାନର ଜନକ ଭାବେ ଯାହାଙ୍କର ନାମଟି ପ୍ରଥମେ ଚିନ୍ତାସ୍ତରକୁ ଆସେ ସେ ହେଉଛନ୍ତି ଗାଲିଲେ ଗାଲିଲିଓ (୧୫୬୪-୧୬୪୨) । ଇଟାଲି ଦେଶର ଏହି ବିପ୍ଳବୀ ଚିନ୍ତାନାୟକଙ୍କର ଜୀବନ ଥିଲା ସଂଘର୍ଷପୂର୍ଣ୍ଣ । ପ୍ରକୃତିର ଅନୁଶୀଳନ ଓ ପ୍ରାକୃତିକ ନିୟମର ଆବିଷ୍କାର କ୍ଷେତ୍ରରେ ସେ ଥିଲେ ଜଣେ ପଥପ୍ରଦର୍ଶକ । ଏହି ବିଶାଳ ବିଶ୍ୱକୁ ଜାଣିବାର ଓ ପ୍ରକୃତିର ରହସ୍ୟକୁ ଆବିଷ୍କାର କରିବାର ପ୍ରଣାଳୀ ହେଉଛି ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ । ପର୍ଯ୍ୟବେକ୍ଷଣ ଓ ପରୀକ୍ଷଣ ହିଁ ଜ୍ଞାନର ଦିଗନ୍ତକୁ ବିସ୍ତାର କରିପାରିବ । ସୂର୍ଯ୍ୟ ଓ ଗ୍ରହମାନଙ୍କର ସ୍ଥିତିକୁ ଜାଣିବାକୁ ସେ ଟେଲିସ୍କୋପର ଉଦ୍‌ଭାବନ କରି ଜ୍ୟୋତିର୍ବିଜ୍ଞାନ ଗବେଷଣାର ମୂଳଦୁଆ ପକାଇଥିଲେ । ଆମ ଗ୍ରହମଣ୍ଡଳରେ ସୂର୍ଯ୍ୟ ଯେ କେନ୍ଦ୍ରସ୍ଥଳରେ ରହିଛି ଓ ପୃଥିବୀ ସହ ସମସ୍ତ ଗ୍ରହମାନ ସୂର୍ଯ୍ୟର ଚତୁର୍ଦିଗରେ ଘୂର୍ଣ୍ଣାୟମାନ ଏହି କୋପରନିକସୀୟ ସିଦ୍ଧାନ୍ତକୁ ସେ ପ୍ରମାଣସିଦ୍ଧ ଭାବେ ପ୍ରତିଷ୍ଠା କରିବାରେ ସମର୍ଥ୍ୟ ହୋଇଥିଲେ । ଗତି, ଜଡତ୍ୱ ବା ଇନ୍‌ର୍ସିଆ ଇତ୍ୟାଦି ବିଷୟକୁ ସେ ଯେପରି ବ୍ୟାଖ୍ୟା କଲେ ସେଥିରୁ ପଦାର୍ଥ ବିଜ୍ଞାନର ବିକାଶ ସମ୍ଭବ ହେଲା ।

ବିଜ୍ଞାନ ଜଗତର ଆଉ ଜଣେ ପ୍ରଥିତଯଶା ବ୍ୟକ୍ତିତ୍ୱ ହେଲେ ଆଇଜାକ୍ ନିଉଟନ (୧୬୪୩-୧୭୨୭) । ଗାଲିଲିଓଙ୍କ ମୃତ୍ୟୁର ପରବର୍ଷ ନିଉଟନ ଜନ୍ମ ହୋଇଥିଲେ । ଇଂଲଣ୍ଡର ଏହି ବୈଜ୍ଞାନିକ ପଦାର୍ଥ ବିଜ୍ଞାନର ଗବେଷଣା କ୍ଷେତ୍ରରେ ଥିଲେ ଏକ ଜାଜ୍ୱଲ୍ୟମାନ ପ୍ରତିଭା । ଏହି ବିଶାଳ ବିଶ୍ୱର ଏକ କ୍ଷୁଦ୍ର ଗ୍ରହରେ ମଣିଷମାନେ ରହିଛନ୍ତି ଏହି ଭାବନା ସହ ସେ ମାଧ୍ୟାକର୍ଷଣ ନିୟମର ଅବତାରଣା କରିଥିଲେ । ପ୍ରକୃତିରେ ଅନ୍ତର୍ନିହିତ ଥିବା କେତେକ ଶୃଂଖଳାର ବ୍ୟାଖ୍ୟା ସହ ଗଣିତବିଦ୍ୟାକୁ ମଧ୍ୟ ପରିପୁଷ୍ଟ କରିଥିଲେ । କଳନ ଗଣିତ ବା କାଲ୍‌କୁଲସ୍‌ର ସେ ଥିଲେ ପଥଦ୍ରଷ୍ଟା ।

ବସ୍ତୁର ଗଠନ ପ୍ରକ୍ରିୟା, ଅଣୁ ଓ ପରମାଣୁର ରହସ୍ୟର ବ୍ୟାଖ୍ୟାରୁ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଚାଲିଲା । ଏହି କ୍ଷେତ୍ରରେ ଏକ ମହାନ ପ୍ରତିଭା ହେଲେ ଆଲବର୍ଟ୍

ଆଇନଷ୍ଟାଇନ୍ (୧୮୭୯-୧୯୫୫)। ତାଙ୍କର ଆପେକ୍ଷିକ ତତ୍ତ୍ୱ ବିଜ୍ଞାନର ଦିଗନ୍ତକୁ ପ୍ରସାରିତ କରିଦେଲା । ଦେଶ ଓ କାଳ (ସ୍ପେସ-ଟାଇମ) କ୍ଷେତ୍ରରେ ତାଙ୍କର ସିଦ୍ଧାନ୍ତ ଥିଲା ଯୁଗାନ୍ତକାରୀ । ଆଇନଷ୍ଟାଇନ୍ଙ୍କ ସମସାମୟିକ ମାକ୍ସ ପ୍ଲାଙ୍କ, ରୁଥରଫୋର୍ଡ, ନେଲସ୍ ବୋର୍ ଇତ୍ୟାଦି ପଦାର୍ଥ ବିଜ୍ଞାନୀମାନେ ଅଣୁ, ପରମାଣୁର ବ୍ୟାଖ୍ୟା କ୍ଷେତ୍ରରେ ଯେଉଁ ନୂଆ ନୂଆ ତଥ୍ୟ ଆବିଷ୍କାର କଲେ ତାହା ମହାକାଶ ଯାତ୍ରାଠାରୁ ଆରମ୍ଭ କରି ନାନା ପ୍ରଯୁକ୍ତିର ବିକାଶ କ୍ଷେତ୍ରରେ ପଥପ୍ରଦର୍ଶକ ହେଲା ।

ପୃଥିବୀ ପୃଷ୍ଠରେ ମନୁଷ୍ୟର ଓ ଜୀବଜଗତର ଉତ୍ପତ୍ତି ସଂପର୍କରେ ଚାର୍ଲସ ଡରଓ୍ୱିନ (୧୮୦୯-୧୮୮୨) ଙ୍କର ସିଦ୍ଧାନ୍ତ ମଧ୍ୟ ଅତ୍ୟନ୍ତ ବୈପ୍ଳବିକ ଥିଲା । ପୃଥିବୀପୃଷ୍ଠର ପ୍ରାକୃତିକ ପରିବେଶ ସମାନ ନୁହେଁ । ବିଭିନ୍ନ ପ୍ରାଣୀମାନେ କୋଟି କୋଟି ବର୍ଷର ଜୈବିକ ବିବର୍ତ୍ତନ ଧାରାରେ କିପରି ସୃଷ୍ଟି ହୋଇଛନ୍ତି ଓ ପ୍ରତିକୂଳ ପରିବେଶରେ ବଞ୍ଚିଛନ୍ତି ବା ବିଲୁପ୍ତ ହୋଇଛନ୍ତି ତାହାର ବିଶ୍ଳେଷଣ ବିଜ୍ଞାନସମ୍ମତ ପଦ୍ଧତିରେ ବୁଝାଇଲେ । ବିଭିନ୍ନ ପ୍ରାଣୀମ୍ାନଙ୍କ ଭିତରେ ଭିନ୍ନତା ଭିନ୍ନ ଭିନ୍ନ ପରିବେଶରେ କିପରି ସମ୍ଭବ ହୋଇଛି ଓ ନୂଆ ନୂଆ ଗୁଣ ବିକଶିତ ହୋଇଛି ତାହା ବିବର୍ତ୍ତନ ସିଦ୍ଧାନ୍ତରେ ବ୍ୟାଖ୍ୟା କରାଗଲା । ମଣିଷ ଯେ ଈଶ୍ୱରକୃତ ଏକ ସ୍ୱତନ୍ତ୍ର ପ୍ରାଣୀ ନୁହଁ, ବରଂ ଜୈବିକ ବିବର୍ତ୍ତନ ଧାରାରେ ବାନର ଜାତୀୟ ପ୍ରାଣୀଙ୍କର ଏକ ବିବର୍ତ୍ତିତ ରୂପ ଏହି ସିଦ୍ଧାନ୍ତ ଏକ ନୂତନ ଦିଗନ୍ତ ସୃଷ୍ଟି କଲା । ଡରଓ୍ୱିନଙ୍କ ସିଦ୍ଧାନ୍ତ ପରବର୍ତ୍ତୀ ସମୟରେ ତଥ୍ୟଭିତ୍ତିକ ସମର୍ଥନ ଲାଭ କଲା । ମଲିକୁଲାର ଜୀବବିଜ୍ଞାନୀ ମାନେ ପରେ ଗବେଷଣାଦ୍ୱାରା ପ୍ରତିଷ୍ଠା କଲେ ଯେ ବାନର ଜାତୀୟ ପ୍ରାଣୀ ଓ ମନୁଷ୍ୟର ଡି.ଏନ୍.ଏ. ଭିତରେ ଶତକଡା ଅଠାନବେ ଭାଗରୁ ଅଧିକ ସାମଂଜସ୍ୟ ରହିଛି । ଡରଓ୍ୱିନଙ୍କର ବିବର୍ତ୍ତନବାଦକୁ ଆଧାର କରି ଜୀବବିଜ୍ଞାନ, ଚିକିତ୍ସାବିଜ୍ଞାନ କ୍ଷେତ୍ରରେ ନୂଆ ନୂଆ ଦିଗନ୍ତ ସୃଷ୍ଟି ହୋଇଚାଲିଲା । ପ୍ରାଣୀମାନଙ୍କର ବଂଶାନୁଗତ ଲକ୍ଷଣକୁ ବୁଝାଇବାରେ ତଥା କେତେକ ବଂଶାନୁଗତ ରୋଗକୁ ନିୟନ୍ତ୍ରଣ କରିବାରେ ଏହା ଯଥେଷ୍ଟ ସହାୟକ ହେଲା । ବିଭିନ୍ନ ପ୍ରାଣୀ ମାନଙ୍କର ଡି.ଏନ.ଏ.ର ସ୍ୱରୂପ ଓ ଲକ୍ଷଣକୁ ବ୍ୟାଖ୍ୟା କରିବାରେ ଫ୍ରାନସିସ୍ କ୍ରିକ୍ ଓ ଜେମସ୍ ୱାଟସନ୍ଙ୍କର ଆବିଷ୍କାର ପ୍ରାଣୀବିଜ୍ଞାନର ବିକାଶ କ୍ଷେତ୍ରରେ ଯୁଗାନ୍ତକାରୀ ଥିଲା । କ୍ରିକ୍ ଓ ୱାଟସନ୍ ଡି.ଏନ୍.ଏ. ସମ୍ବନ୍ଧରେ ମୌଳିକ ଗବେଷଣା ପାଇଁ ୧୯୬୨ ରେ ନୋବେଲ ପୁରସ୍କାର ପାଇଛନ୍ତି । ଜିନ୍‌ଗତ ପରିବର୍ତ୍ତନ, କ୍ଲୋନିଂ ଇତ୍ୟାଦି ଯେଉଁ ଭାବନା ପ୍ରାଣୀବିଜ୍ଞାନ କ୍ଷେତ୍ରରେ ବିକଶିତ ହୋଇଛି ତାହା ପଛରେ ବହୁ ଗବେଷକଙ୍କର ଅବଦାନ ରହିଥିଲେ ବି ଡରଓ୍ୱିନଙ୍କ ବିବର୍ତ୍ତନବାଦରୁ ଏସବୁ ଭାବନାର କ୍ରମବିକାଶ ହୋଇଛି ।

ମନୋବିଜ୍ଞାନ ବୈଜ୍ଞାନିକ ବିକାଶଧାରାରେ ଅନ୍ୟ ଏକ ନୂତନ ଦିଗ ଉନ୍ମୋଚିତ କରିଛି । ମନୋବିଜ୍ଞାନ ଗବେଷଣାର ଜନକ ଭାବେ ଅଷ୍ଟ୍ରିଆର ସିଗମଣ୍ଡ ଫ୍ରଏଡ୍‌ଙ୍କୁ (୧୮୫୬-୧୯୩୯) ଗ୍ରହଣ କରାଯାଏ । ବ୍ୟକ୍ତିର ବ୍ୟବହାର କିପରି ତାର ଅବଚେତନ ମନଦ୍ୱାରା ପ୍ରଭାବିତ ହୁଏ ଓ ମାନସିକ ବିକୃତିର କାରଣ କ'ଣ ଇତ୍ୟାଦିକୁ ବ୍ୟାଖ୍ୟା କରିବାରେ ଫ୍ରଏଡ୍ ନୂତନ ଦିଗ ଦେଖାଇଛନ୍ତି । ମନୁଷ୍ୟମାନଙ୍କର ଅହେତୁକ ବ୍ୟବହାରର କାରଣ ଜାଣିବାରେ ଫ୍ରଏଡ୍‌ଙ୍କର ବିଶ୍ଳେଷଣ ନୂତନ ପଥ ଦେଖାଇଥାଏ । ଫ୍ରଏଡ୍‌ଙ୍କର କେତେକ ବିଚାର ନୂତନ ତଥ୍ୟ ଆଧାରରେ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ମନୋବିଜ୍ଞାନ ଗବେଷଣା କ୍ଷେତ୍ରରେ ସେ ଯେ ପଥପ୍ରଦର୍ଶକ ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

ଚିକିତ୍ସା ବିଜ୍ଞାନ ସର୍ବଦା ଉନ୍ନତରୁ ଉନ୍ନତତର ସ୍ଥିତିକୁ ଯାଉଛି । ଏହି ବିଜ୍ଞାନର ବିକାଶ କ୍ଷେତ୍ରରେ ଅନେକ ବ୍ୟକ୍ତିଙ୍କର ଅବଦାନ ରହିଛି । ତେବେ ଯେଉଁ କେତେକ ଏହାର ବିକାଶ କ୍ଷେତ୍ରରେ ଅମୂଲ୍ୟ ଅବଦାନ ଦେଇଛନ୍ତି ସେମାନଙ୍କ ମଧ୍ୟରେ ଆନାଟୋମିର ଜନକ ଆଣ୍ଡ୍ରିଆସ୍ ଭେସାଲିଅସ୍, ରକ୍ତ ସଞ୍ଚାଳନର ବ୍ୟାଖ୍ୟାକାର ମାଇକେଲ ସର୍ଭେଟସ, ଜୀବାଣୁତତ୍ତ୍ୱର ଉଦ୍‌ଭାବକ ଲୁଇ ପାଶ୍ଚର, ଜୀବାଣୁମୁକ୍ତ ଶଲ୍ୟଚିକିତ୍ସାର ପ୍ରବର୍ତ୍ତକ ଯୋଶଫ୍ ଲିଷ୍ଟର, ନିଶ୍ଚେତକର ଉଦ୍‌ଭାବକ ସିଂପସନ୍, ଆଣ୍ଟିବାଓଟିକର ଉଦ୍‌ଭାବକ ଆଲେକଜାଣ୍ଡର ଫ୍ଲେମିଂ ଅନ୍ୟତମ ।

ପ୍ରିଣ୍ଟିଂପ୍ରେସ୍‌ର ଉଦ୍‌ଭାବକ ଗୁଟେନ୍‌ବର୍ଗ, ଇଲେକ୍‌ଟ୍ରିସିଟିର ଉଦ୍‌ଭାବକ ମାଇକେଲ ଫାରାଡେ, ରେଳଇଂଜିନର ଉଦ୍‌ଭାବକ ଜର୍ଜ ଷ୍ଟିଫେନ୍‌ସନ୍, ରେଡିଓର ଉଦ୍‌ଭାବକ ମାର୍କୋନି, ଉଡାଜାହାଜର ଉଦ୍‌ଭାବକ ରାଇଟ୍ ବ୍ରଦର୍ସଙ୍କର ସଭ୍ୟତାକୁ ଅବଦାନ ଅତୁଳନୀୟ । ବିଜ୍ଞାନ କ୍ଷେତ୍ରରେ ସେମାନେ ଯେଉଁ ଭାବନା ଦେଇଛନ୍ତି ପରେ ସେଥିରେ ଗବେଷଣା ହୋଇ ବହୁ ଉନ୍ନତି ସାଧନ ସମ୍ଭବ ହୋଇଛି । ବହୁ ଅନୁସନ୍ଧିତ୍ସୁ ବ୍ୟକ୍ତିଙ୍କର ଜୀବନବ୍ୟାପୀ ଗବେଷଣା ଓ ଅନୁସନ୍ଧାନରୁ ଜ୍ଞାନର ଦିଗ୍‌ବଳୟ ବିସ୍ତାରିତ ହେବା ସହ ତାହାର ସୁଫଳ ମାନବ ସମାଜ ଉପଭୋଗ କରୁଛି । ଏହି ପ୍ରତିଭାଧର ମନୀଷୀଗଣ ସଭ୍ୟତାର ବିକାଶରେ ପଥଦ୍ରଷ୍ଟା କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୨୦.୮.୧୪)



# ବିଜ୍ଞାନ, ପ୍ରଯୁକ୍ତି ଓ ବିକାଶ

ଆଧୁନିକ ବିଜ୍ଞାନର ଆରମ୍ଭ କାଳ ହେଉଛି ଷୋଡଶ ଓ ସପ୍ତଦଶ ଶତାବ୍ଦୀ । ବିଜ୍ଞାନର ଆରମ୍ଭ ପର୍ବରେ ଏହା ବିଶ୍ୱାସ ଥିଲା ଯେ ବିଜ୍ଞାନ ପ୍ରକୃତି ସଂପର୍କରେ ଜ୍ଞାନ ପାଇଁ ଉଦ୍ଦିଷ୍ଟ । ପ୍ରକୃତିର ରହସ୍ୟକୁ ଉନ୍ମୋଚନ କରିବା ବିଜ୍ଞାନର ଲକ୍ଷ୍ୟ । ପକୃତିର ବିଶାଳତା ଓ ଜଟିଳତା ପରିପ୍ରେକ୍ଷୀରେ କେବଳ ଧୁରୀଣ ବ୍ୟକ୍ତିମାନେ ଏହାକୁ ଅନୁଶୀଳନ କରିପାରିବେ । ସେ ଯୁଗରେ କେତେକ ପ୍ରତିଭାବାନ ବ୍ୟକ୍ତିବିଶେଷ ବ୍ୟକ୍ତିଗତ ପ୍ରୟାସରେ ପ୍ରାକୃତିକ କାରଣ ଅନୁଶୀଳନରେ ବ୍ରତୀ ହେଉଥିଲେ । ତେବେ ଧୀରେ ଧୀରେ ବିଶ୍ୱବିଦ୍ୟାଳୟ ଶିକ୍ଷାର ପ୍ରସାର ସହ ବିଶ୍ୱବିଦ୍ୟାଳୟ ସ୍ତରରେ ବୈଜ୍ଞାନିକ ଗବେଷଣାର ପରିବେଶ ସୃଷ୍ଟି ହେଲା । ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀ ବେଳକୁ ବିଜ୍ଞାନ କ୍ଷେତ୍ରରେ ଜ୍ଞାନର ଯେଉଁ ବିକାଶ ହେଲା ତାହା ବିଶ୍ୱବିଦ୍ୟାଳୟ ସ୍ତରରେ ଅଧ୍ୟୟନର ପରିସରକୁ ଆସିଲା । ବିଭିନ୍ନ ବିଶ୍ୱବିଦ୍ୟାଳୟରେ ବିଜ୍ଞାନର ବିଭାଗ ମାନ ସୃଷ୍ଟି ହେଲା ଓ ବୈଜ୍ଞାନିକ ଗବେଷଣା ଊନବିଂଶ ଶତାବ୍ଦୀ ବେଳକୁ ନିର୍ଦ୍ଦିଷ୍ଟ ରୂପରେଖ ନେଲା ।

ବିଜ୍ଞାନର ଯେ ଏକ ପ୍ରୟୋଗାତ୍ମକ ଦିଗ ରହିଛି, ଅର୍ଥାତ୍ ବୈଜ୍ଞାନିକ ସିଦ୍ଧାନ୍ତକୁ ପ୍ରୟୋଗ କରି ନୂତନ ପ୍ରଯୁକ୍ତି ସୃଷ୍ଟି କରିହେବ ଏହା ବିଜ୍ଞାନର ଯୁଗ ଆସିବାର ଦୁଇ ଶହ ବର୍ଷ ପରେ ଭାବନାସ୍ତରକୁ ଆସିଲା । ବିଜ୍ଞାନ ପ୍ରକୃତି ସଂପର୍କରେ ଯେଉଁ ଜ୍ଞାନ ଦେଉଛି ତାହାକୁ ପ୍ରୟୋଗ କରି କାରିଗରୀ କୌଶଳରେ ଯେ ଉନ୍ନତି ଆଣି ହେବ ଏହି ଭାବନା ମଧ୍ୟ ଯୁଗାନ୍ତକାରୀ ଥିଲା । ଏପରିକି ଗୋଟିଏ ଯୁଗରେ ବୈଜ୍ଞାନିକ ଓ ଉଦ୍‌ଭାବନକାରୀ ଦୁଇ ପୃଥକ୍ ଶ୍ରେଣୀକୁ ବୁଝାଉଥିଲା । ଜଣେ ବୈଜ୍ଞାନିକ ବୌଦ୍ଧିକ ସ୍ତରରେ ପ୍ରକୃତିର ରହସ୍ୟକୁ ଭେଦ କରିବାକୁ ପ୍ରୟାସୀ ଥିଲେ । ପ୍ରକୃତିରେ ନିହିତ ଥିବା ଶୃଂଖଳା, ଏକରୂପତା ଓ ନିୟମକୁ ଆବିଷ୍କାର କରିବା ଓ ପ୍ରାକୃତିକ ଘଟଣାର ବ୍ୟାଖ୍ୟା କରିବା ବିଜ୍ଞାନ-ଶିକ୍ଷାର ଆଭିମୁଖ୍ୟ ଥିଲା । ବିଜ୍ଞାନ ସୁନିର୍ଦ୍ଦିଷ୍ଟ ପ୍ରଣାଳୀ ପ୍ରୟୋଗ କରି ପ୍ରାକୃତିକ ନିୟମକୁ ଆବିଷ୍କାର

କରିବା କ୍ଷେତ୍ରରେ ସୀମାବଦ୍ଧ ରହିଥିଲା । କାଳକ୍ରମେ ଏହାର ପରିସର ପ୍ରସାରିତ ହେବାକୁ ଲାଗିଲା ଓ ପ୍ରକୃତିର ଅନୁଶୀଳନ ପାଇଁ ନାନା ଦିଗନ୍ତ ସୃଷ୍ଟି ହେଲା । ଜ୍ଞାନର ଅନୁଶୀଳନ କ୍ଷେତ୍ରରେ ନାନା ବିଶେଷତା ପ୍ରକାଶ ପାଇଲା । ଜ୍ଞାନର ଦିଗନ୍ତ ଯେତେ ବିସ୍ତାରଲାଭ କଲା, ସେତେ ନୂଆ ନୂଆ ବିଭାଗ ଓ ବିଶେଷ କ୍ଷେତ୍ର ମାନ ଗବେଷଣାର ପରିସରକୁ ଆସିଲା ।

ବିଜ୍ଞାନ ଆରମ୍ଭର ଦୁଇ ଶତାବ୍ଦୀ ପରେ ପ୍ରଯୁକ୍ତିର ଯୁଗ ଆରମ୍ଭ ହେଲା । ଅବଶ୍ୟ ସଭ୍ୟତାର ଆରମ୍ଭ କାଳରୁ ମଣିଷ ନିଜର ଆବଶ୍ୟକତା ଅନୁଯାୟୀ ତାର ବୁଦ୍ଧି ଖଟାଇ କିଛି କିଛି କାରିଗରୀ କୌଶଳ ଆୟତ କରିବାକୁ ପ୍ରଯତ୍ନ କରିଛି । ନିଜ ପରିବେଶରେ ଉପଲବ୍ଧ ପ୍ରାକୃତିକ ଉପାଦାନକୁ ନେଇ ସେ ନିଜର କିଛି ଆବଶ୍ୟକତାକୁ ପୂରଣ କରିବାକୁ ଚେଷ୍ଟିତ ହୋଇଛି । କୃଷିର ଆବଶ୍ୟକତାରୁ କେତେକ ଉପକରଣ ପ୍ରସ୍ତୁତ କରିଛି, ପୋଷାକ ପତ୍ର ଓ ଆସବାବ ପତ୍ର ତିଆରି କରିବାକୁ ବୁଦ୍ଧି ପ୍ରୟୋଗ କରିଛି, ଖରା ବର୍ଷା ଶୀତରୁ ନିଜକୁ ରକ୍ଷା କରିବାକୁ ଗୃହ ନିର୍ମାଣ କରିଛି ଓ ସେଥିରେ ଉନ୍ନତି ଆଣିବାକୁ ଚେଷ୍ଟା କରିଛି । ଗୃହପାଳିତ ପଶୁମାନଙ୍କ ସହାୟତାରେ ଜିନିଷପତ୍ର ପରିବହନ କରିବାକୁ ଉଦ୍ୟମ କରିଆସିଛି । ତେବେ ଏ ସବୁ ଅତ୍ୟନ୍ତ ଧୀର ମନ୍ଥର ଗତିରେ ସଭ୍ୟତାରେ ବିକଶିତ ହୋଇଛି । କିନ୍ତୁ ବିଜ୍ଞାନର ଯୁଗ ଆସିବା ପରେ ବୈଜ୍ଞାନିକ ଜ୍ଞାନ ଆଧାରରେ ପ୍ରଯୁକ୍ତି ସୃଷ୍ଟି କରିବା, କାରିଗରୀ କୌଶଳରେ ଉନ୍ନତି ଆଣିବା ଓ ଉତ୍ପାଦନକୁ ବହୁ ଗୁଣିତ କରିବା ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ହିଁ ସମ୍ଭବପର ହୋଇଛି । ଯେତେବେଳେ ବିଜ୍ଞାନକୁ ପ୍ରୟୋଗ କରାଯାଇ ନୂଆ ନୂଆ କୌଶଳ ସୃଷ୍ଟି କରାଯାଇଛି, ସେହି ପରିସ୍ଥିତିରୁ ଶିଳ୍ପ ବିପ୍ଲବର ଯୁଗ ଆସିଛି । ପୃଥିବୀ ଇତିହାସରେ ଇଂଲଣ୍ଡରେ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଶିଳ୍ପ ବିପ୍ଲବ ଆସିବା କଥା ସମାଜଶାସ୍ତ୍ରୀମାନେ ମତ ଦେଇଥାନ୍ତି । ପ୍ରାଥମିକ ପର୍ଯ୍ୟାୟରେ ବୟନଶିଳ୍ପ କ୍ଷେତ୍ରରେ ଶିଳ୍ପୀକରଣର ପ୍ରଭାବ ଅନୁଭୂତ ହୋଇଛି । ଯନ୍ତ୍ରର ପ୍ରୟୋଗ ଯୋଗୁ ପ୍ରଚୁର ଉତ୍ପାଦନ ସମ୍ଭବ ହୋଇଛି । ଉତ୍ପାଦନଜନିତ କଳା-କୌଶଳରେ ଯୁଗାନ୍ତକାରୀ ପରିବର୍ତ୍ତନ ସଂଘଟିତ ହୋଇଛି । କୁଟୀରଶିଳ୍ପ ମାଧ୍ୟମରେ ମଣିଷ ବହୁ ଆୟାସରେ ଯାହା ଉତ୍ପାଦନ କରୁଥିଲା, ଯନ୍ତ୍ରଶିଳ୍ପ ସାହାଯ୍ୟରେ ଅନାୟାସରେ ତାର ଶହ ଶହ ଗୁଣ ଉତ୍ପାଦନ କରିବାକୁ ସମର୍ଥ ହେଲା । ଶିଳ୍ପବିପ୍ଲବର ପ୍ରଭାବରୁ ସଭ୍ୟତାର ଦୃଶ୍ୟପଟରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା । ଦେଶର ଅର୍ଥନୀତି, ସାମାଜିକ ବ୍ୟବସ୍ଥା, ସାଂସ୍କୃତିକ ପରିବେଶ ଓ ଏପରିକି ରାଜନୈତିକ ଦୃଶ୍ୟପଟରେ ଶିଳ୍ପବିପ୍ଳବ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିବାରେ ସହାୟକ ହେଲା । ଏପରିକି ଶିଳ୍ପବିପ୍ଳବ ଜନିତ କାରଣରୁ ସାମ୍ରାଜ୍ୟବାଦ ବି ଆସିଥିବା ମନେହୁଏ ।

ଊନବିଂଶ ଶତାବ୍ଦୀ ବେଳକୁ ବିଜ୍ଞାନ ଓ ପ୍ରଯୁକ୍ତିଜ୍ଞାନ ଭିତରେ ସୁଦୃଢ଼ ସମ୍ବନ୍ଧ ସ୍ଥାପିତ ହୋଇପାରିଛି । ବଜ୍ଞାନ ବ୍ୟତୀତ ପ୍ରଯୁକ୍ତିଗତ ଜ୍ଞାନରେ ଗୁଣାତ୍ମକ ପରିବର୍ତ୍ତନ ଯେ ସମ୍ଭବ ନୁହଁ ଏହା ଅନୁଭୂତ ହୋଇଛି । ପ୍ରଯୁକ୍ତିଗତ ତଥା କାରିଗରୀ କୌଶଳରେ ଉଲ୍ଲେଖନୀୟ ପରିବର୍ତ୍ତନ ପାଇଁ ବିଜ୍ଞାନକୁ ଆୟୁଧ କରାଯାଇଛି । ଏହି ପ୍ରକ୍ରିୟାରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଶିଳ୍ପବିପ୍ଳବର ଏକ ନୂଆ ଯୁଗ ଆରମ୍ଭ ହୋଇଛି । ଏହାକୁ ଦ୍ୱିତୀୟ ଶିଳ୍ପବିପ୍ଳବ କୁହାଯାଉଛି । ବାଷ୍ପରୁ ଶକ୍ତି ଓ ସେହି ଶକ୍ତିର ପ୍ରୟୋଗରୁ ବିଭିନ୍ନ ଯନ୍ତ୍ରର ପରିଚାଳନା ଏକ ନୂଆ ପରିବେଶ ସୃଷ୍ଟିକରିଛି । ଏହି ଜ୍ଞାନକୁ ଆଧାର କରି ଗମନାଗମନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ସମ୍ଭବ ହୋଇଛି । ବାଷ୍ପଚାଳିତ ଇଂଜିନ୍‌ର ଉଦ୍ଭାବନ ଓ ପ୍ରୟୋଗ ସ୍ଥଳପଥରେ ରେଳଗାଡିର ବ୍ୟବହାର ଓ ଜଳପଥରେ ଶକ୍ତିଚାଳିତ ଜାହାଜରେ ଯାତ୍ରା ସମ୍ଭବ  କରାଇଛି । ବାଷ୍ପଚାଳିତ ଶକ୍ତିରୁ ବିଜୁଳିଶକ୍ତିକୁ ମଣିଷର ଲଂଫ ବହୁ ସ୍ତରରେ ନାନା ସମ୍ଭାବନା ସୃଷ୍ଟିକରିଛି । ଶକ୍ତି ଯେ ସଭ୍ୟତାର ବିକାଶଧାରାରେ ଏକ ପ୍ରଧାନ ଆୟୁଧ ଏହା ଅନୁଭୂତ ହୋଇଛି । ପେଟ୍ରୋଲ, କୋଇଲା ପରି ଜୈବିକ ଶକ୍ତି ଉତ୍ସ ଯେ ଦିନେ ପୃଥିବୀରୁ ଶେଷ ହୋଇଯିବ ଓ ମାନବ ସଭ୍ୟତା ସଂକଟର ସମ୍ମୁଖୀନ ହେବ ଏହି ଚିନ୍ତା କେବେଠାରୁ ପ୍ରକାଶ ପାଇଲାଣି । ସୁତରାଂ ବିକଳ୍ପ ଶକ୍ତି ଉତ୍ସ ପାଇଁ ବିଭିନ୍ନ ସ୍ତରରେ ଗବେଷଣାରୁ କେତେ କେତେ ନୂଆ ସମ୍ଭାବନା ସୃଷ୍ଟି ହେଲାଣି । ନିଉକ୍ଲିୟର ଶକ୍ତି, ସୂର୍ଯ୍ୟଶକ୍ତି, ବାୟୁ ଶକ୍ତି ଇତ୍ୟାଦିର ପ୍ରୟୋଗ କରାଗଲାଣି । ନୂଆ ନୂଆ ପ୍ରଯୁକ୍ତି ବୈଜ୍ଞାନିକ ସିଦ୍ଧାନ୍ତ ଆଧାରରେ ବିକଶିତ ହେବାରେ ଲାଗିଛି ।

ବୈଜ୍ଞାନିକ ଜ୍ଞାନ ଓ ବିଜୁଳି ଶକ୍ତିର ଉଦ୍‌ଭାବନ ଯୋଗୁ ରାସାୟନିକ ଶିଳ୍ପର ବିକାଶ ହୋଇଛି । ଶିଳ୍ପ ବିପ୍ଳବର ଅଗ୍ରଗତି ଭିତରେ ଷ୍ଟିଲର ବ୍ୟବହାର ବହୁ କ୍ଷେତ୍ରରେ ବିକାଶକୁ ତ୍ୱରାନ୍ୱିତ କରିଛି । ମଣିଷ ବହୁ ଅତୀତରୁ ଲୁହାର ବ୍ୟବହାର ଜାଣିଥିଲେ ବି ଏହାର ଗୁଣାତ୍ମକ ପରିବର୍ତ୍ତନ ଓ ବହୁଳ ଉତ୍ପାଦନ କେବଳ ଶିଳ୍ପ ବିପ୍ଳବ ଯୁଗରେ ସମ୍ଭବ ହୋଇଛି । ଲୁହାକୁ ଅଧିକ ଶକ୍ତିଶାଳୀ ଓ ଉନ୍ନତ ମାନରେ ରୂପାନ୍ତରିତ କରିବାର ଜ୍ଞାନ ଆସିବା ପରେ ଷ୍ଟିଲ କାରଖାନା ମାନ ପ୍ରତିଷ୍ଠା କରାଯାଇ ଏହାର ଉତ୍ପାଦନକୁ ବହୁ ଗୁଣରେ ବୃଦ୍ଧି କରାଯାଇଛି । ଧାତୁ ବିଜ୍ଞାନ ଜନିତ ପ୍ରାଯୁକ୍ତିକ ଜ୍ଞାନଦ୍ୱାରା ଲୁହାକୁ ତରଳାଇ ବିଭିନ୍ନ ଆକାରରେ ପ୍ରସ୍ତୁତ କରିବା ସମ୍ଭବ ହୋଇଛି । ଶିଳ୍ପୀକରଣ କ୍ଷେତ୍ରରେ ଏହାର ପ୍ରୟୋଗ ଅତ୍ୟନ୍ତ ଅପରିହାର୍ଯ୍ୟ ହୋଇଥିବାରୁ ଏଥିରେ ନାନା ଗବେଷଣା କରାଯାଇ ଏହାର ଉତ୍ପାଦନକୁ ପ୍ରାଧାନ୍ୟ ଦିଆଯାଇଛି । ରେଳ ଲାଇନ ନିର୍ମାଣ, ବୃହତକାୟ ବନ୍ଧ, ବହୁ ମହଲା ବିଶିଷ୍ଟ ଗୃହ, ନାନା ଯନ୍ତ୍ରପାତି ନିର୍ମାଣ କ୍ଷେତ୍ରରେ ଷ୍ଟିଲର ବହୁଳ ପ୍ରୟୋଗ

କରାଯାଉଛି । ଆଧୁନିକ ସଭ୍ୟତାର ବିକାଶ ଓ ଅସଂଖ୍ୟ ଉପକରଣ ପ୍ରସ୍ତୁତିରେ ଗୁଣାତ୍ମକ ସ୍କିଲର ବ୍ୟବହାର ବହୁ ମାତ୍ରାରେ ବୃଦ୍ଧି ପାଇଛି । ଶିଳ୍ପବିପ୍ଳବର ଦ୍ୱିତୀୟ ଭାଗରେ ସ୍କିଲ ଜନିତ ଜ୍ଞାନ ସଭ୍ୟତାକୁ ନୂଆ ମୋଡ ଦେଇଛି ।

ପୃଥିବୀର ଲୋକସଂଖ୍ୟା ବିଂଶଶତାବ୍ଦୀ ଆରମ୍ଭରୁ ଚିକିତ୍ସା ବିଜ୍ଞାନର ବିକାଶ ଓ ମହାମାରୀ ରୋଗମାନଙ୍କର ନିୟନ୍ତ୍ରଣ ଯୋଗୁ ଆଶାତୀତ ଭାବେ ବୃଦ୍ଧି ପାଇଚାଲିଛି । ୧୮୦୦ମସିହାରେ ପୃଥିବୀରେ ଜନସଂଖ୍ୟା ପ୍ରାୟ ଶହେକୋଟି ଥିବା ବେଳେ ୧୯୦୦ ମସିହା ବେଳକୁ ଏହା ୧୬୦ କୋଟି ହୋଇଛି ଓ ୨୦୦୦ ମସିହାରେ ଏହା ୬୦୦ କୋଟିରୁ ଅଧିକ ହୋଇଛି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟ ଆବଶ୍ୟକତାକୁ ପୂରଣ କରିବା ପାଇଁ କୃଷି କ୍ଷେତ୍ରରେ ମଧ୍ୟ ନାନା ପରିବର୍ତ୍ତନ ଆସିଛି । ଶିଳ୍ପ ବିପ୍ଳବର ପ୍ରଭାବରେ କୃଷି କ୍ଷେତ୍ର ବି ବାଦ୍ ଯାଇନାହିଁ । ରାସାୟନିକ ସାର ଓ ନାନା ପ୍ରକାରର କୃଷି ଯନ୍ତ୍ରପାତି ନିର୍ମାଣ କରାଯାଇ କୃଷିର ଆଧୁନିକୀକରଣ ପାଇଁ ଉଦ୍ୟମ ହୋଇଛି । କୃଷିଭିତ୍ତିକ ସଭ୍ୟତାରେ ଦେଶର ଅଧାଠାରୁ ଅଧିକ ଲୋକ ଚାଷକାର୍ଯ୍ୟରେ ନିୟୋଜିତ ହେଉଥିଲେ । ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ପରିଣାମରୁ ଉନ୍ନତ ଦେଶମାନଙ୍କରେ ଲୋକସଂଖ୍ୟାର ଶତକଡା ପାଞ୍ଚଭାଗରୁ କମ୍ ଲୋକ କୃଷିରେ ନିୟୋଜିତ ରହି ଦେଶକୁ ଖାଦ୍ୟଶସ୍ୟ ଉତ୍ପାଦନରେ ସ୍ୱାବଲମ୍ବୀ କରିବା ସହ ଅନ୍ୟ ଦେଶମାନଙ୍କୁ ଏହା ରପ୍ତାନି କରୁଛନ୍ତି । ବୈଜ୍ଞାନିକ ଜ୍ଞାନକୌଶଳ ଓ ନୂଆ ନୂଆ ପ୍ରଯୁକ୍ତି ଏହିପରି ଉତ୍ପାଦନ ଓ ବିକାଶ ପ୍ରକ୍ରିୟାରେ ସହାୟକ ହୋଇଛି ।

ଆଧୁନିକ ବିଜ୍ଞାନ ଯୋଗୁ ପ୍ରଯୁକ୍ତିଗତ ଜ୍ଞାନ ବିକଶିତ ହୋଇଛି । ପ୍ରଯୁକ୍ତିଗତ ଜ୍ଞାନରୁ ଶିଳ୍ପବିପ୍ଳବ ସମ୍ଭବ ହୋଇଛି । ଏସବୁର ସମନ୍ୱିତ ପରିଣାମରୁ ସଭ୍ୟତାର ରୂପରେଖ ବଦଳିଛି । ବିଜ୍ଞାନ ଓ ପ୍ରଯୁକ୍ତିକୁ ମାନବ-ହିତକାରୀ ଲକ୍ଷ୍ୟରେ ବିନିଯୋଗ କଲେ ପୃଥିବୀରୁ ସକଳ ଦାରିଦ୍ର୍ୟ ଦୂର ହୋଇପାରିବ । ପରନ୍ତୁ ଜ୍ଞାନକୁ ସଭ୍ୟତା ଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣରେ ବିନିଯୋଗ କଲେ ସଭ୍ୟତାର ବିନାଶ ବି ଘଟିପାରିବ । ଜ୍ଞାନବିଜ୍ଞାନ, ପ୍ରଯୁକ୍ତି ଓ ଶିଳ୍ପୀକରଣ ସହ ମାନବିକ ମୂଲ୍ୟବୋଧ ଓ ମାନବବାଦର ବିକାଶ ଆଜିର ବଡ ଆବଶ୍ୟକତା କହିଲେ ଅତ୍ୟୁକ୍ତି ହେବନାହିଁ ।

(୩.୯.୨୦୧୪)



# ବିଜ୍ଞାନ ଓ ପ୍ରଯୁକ୍ତିର ଦୁଇ ଦିଗନ୍ତ

ଜ୍ଞାନକୁ ଲକ୍ଷ୍ୟ ସାଧନ ଦିଗରେ ପ୍ରୟୋଗ କରିବା ପାଇଁ ମଣିଷ ପ୍ରୟାସ କରିଛି । ଏହି ପ୍ରୟାସ ଯୋଗୁ ସେ ବିଭିନ୍ନ ସାଧନ ବା ଯନ୍ତ୍ରର ନିର୍ମାଣ କରିଛି । ସେହିପରି ପ୍ରାକୃତିକ ପରିବେଶରେ ପରିବର୍ତ୍ତନ ଆଣିବା ପାଇଁ ମଧ୍ୟ ସେ ନାନା ଉପକରଣର ସାହାଯ୍ୟ ନେଇଛି । ଯେଉଁ ସାଧନ ବା ଉପକରଣ ଦ୍ୱାରା କୌଣସି ଲକ୍ଷ୍ୟ ସାଧିତ ହୁଏ ତାହାକୁ ସାଧାରଣତଃ ପ୍ରଯୁକ୍ତି ବା ଟେକ୍‌ନୋଲୋଜି କୁହାଯାଏ । ପ୍ରଯୁକ୍ତି ବା କାରିଗରୀ କୌଶଳ ଆମର ଜୀବନ ପ୍ରବାହକୁ ସୁଖପ୍ରଦ, ଅଧିକ କାର୍ଯ୍ୟକ୍ଷମ ହେବାରେ ସାହାଯ୍ୟ କରିଥାଏ । କୌଣସି ଘଟଣା କିପରି ଓ କାହିଁକି ଘଟେ ତାହାର ବ୍ୟାଖ୍ୟା ବିଜ୍ଞାନ କରିଥାଏ । ବିଜ୍ଞାନ ଘଟଣାର କାରଣ ଅନୁସନ୍ଧାନ କରେ ଓ ପ୍ରକୃତିରେ ନିହିତ ଥିବା ନିୟମ ବା ଏକରୂପତାର ବିଶ୍ଳେଷଣ କରିଥାଏ । ପ୍ରାକୃତିକ ନିୟମକୁ ପ୍ରୟୋଗ କରି ଯେତେବେଳ କିଛି ସୃଷ୍ଟି କରାଯାଏ ବା କୌଣସି ସାଧନ ମାଧ୍ୟମରେ ଏକ ଲକ୍ଷ୍ୟ ହାସଲ କରାଯାଏ, ତାହା ହୁଏ ପ୍ରଯୁକ୍ତି । ଯେବେଠାରୁ ମଣିଷ କୌଣସି ପଦାର୍ଥ, ଯନ୍ତ୍ର ବା ହତିଆର ଏକ ଲକ୍ଷ୍ୟ ନେଇ ପ୍ରସ୍ତୁତ କରିଛି ସେବେଠାରୁ ସେ ପ୍ରଯୁକ୍ତିର ସାହାଯ୍ୟ ନେଇଛି । ତେବେ ବିଜ୍ଞାନର ଯୁଗ ଆସିବାପରେ ପ୍ରଯୁକ୍ତିର ନାନା ଉନ୍ନତି ସାଧନ ସମ୍ଭବ ହୋଇଛି । ବିଶେଷକରି ଶିଳ୍ପବିପ୍ଳବ ପୃଷ୍ଠଭୂମିରେ ଆଧୁନିକ ପ୍ରଯୁକ୍ତି ତ୍ୱରାନ୍ୱିତ ହୋଇଛି । ଅତ୍ୟାଧୁନିକ ଯନ୍ତ୍ରପାତିର ପ୍ରୟୋଗ ମଣିଷର ସାମର୍ଥ୍ୟକୁ ବହୁଗୁଣରେ ବୃଦ୍ଧି କରିପାରିଛି । ଆଗେ ମଣିଷ ହାତ ସାହାଯ୍ୟରେ ଯେତିକି କରିପାରୁଥିଲା, ପ୍ରଯୁକ୍ତିର ପ୍ରୟୋଗଦ୍ୱାରା ତାର ସହସ୍ରଗୁଣର କାର୍ଯ୍ୟ ସଂପାଦନ କରିପାରୁଛି । ପ୍ରଯୁକ୍ତି ମଣିଷର ସାମର୍ଥ୍ୟକୁ ବହୁଗୁଣରେ ବୃଦ୍ଧି କରିବାରେ ସହାୟକ ହୋଇଛି । ଶଂସିତ ଲେଖାଟିରେ ଗମନାଗମନ ଓ ଯୋଗାଯୋଗ କ୍ଷେତ୍ରରେ ଗତ ଏକ ଶତାବ୍ଦୀ ଭିତରେ ଆଧୁନିକ ପ୍ରଯୁକ୍ତି ଯେଉଁ ପରିବର୍ତ୍ତନ ଆଣିଛି ତାର ସଂକ୍ଷିପ୍ତ ସୂଚନା ଦେବା ଆମର ଲକ୍ଷ୍ୟ ।

ମନୁଷ୍ୟ ସଭ୍ୟତାର ଇତିହାସ ବେଶ୍ ସୁଦୀର୍ଘ । ତେବେ ଆଜକୁ ଦୁଇ ଶହ ବର୍ଷ ତଳ ପର୍ଯ୍ୟନ୍ତ ଗମନାଗମନ କ୍ଷେତ୍ରରେ ସବୁଠାରୁ ଗତିଶୀଳ ସାଧନ ଥିଲା ଗୃହପାଳିତ ଘୋଡା । କୌଣସି ଦୂର ସ୍ଥାନକୁ ଯିବାକୁ ହେଲେ ସ୍ଥଳଭାଗରେ ମଣିଷ ଘୋଡାର ହିଁ

ଆଶ୍ରୟ ନେଉଥିଲା । ଆଧୁନିକ ପ୍ରଯୁକ୍ତିର ଜନକ କୁହାଯାଉଥିବା ଜେମ୍ସ ୱାଟ୍ (୧୭୩୬-୧୮୧୯) ପ୍ରଥମେ ବାଷ୍ପଚାଳିତ ଇଂଜିନ ବାହାର କଲେ । ଏହା ସେତେବେଳେ କଳକାରଖାନାରେ ବ୍ୟବହୃତ ହେଲା । ଏହାପରେ ଏହି ବାଷ୍ପଚାଳିତ ଇଂଜିନ୍‌କୁ ଗମନାଗମନ ପାଇଁ କିପରି ବିନିଯୋଗ କରାଯିବ ସେ ନେଇ ଚିନ୍ତା ପ୍ରକଟ ହେଲା । ପ୍ରଥମେ ଜଳପଥରେ ଜାହାଜରେ ଏହାର ପ୍ରୟୋଗ ହୋଇ ସଫଳତା ମିଳିଲା । ଜର୍ଜ ଷ୍ଟିଫେନସନ୍ (୧୭୮୧-୧୮୪୮) ବାଷ୍ପଚାଳିତ ରେଳଇଂଜିନ୍‌ର ପରିକଳ୍ପନା କଲେ । ମାନବ ସଭ୍ୟତାର ଇତିହାସରେ ରେଳଯାତ୍ରା ପ୍ରଥମେ ୧୮୨୫ ମସିହାରେ ଇଂଲଣ୍ଡରେ ସଫଳ ହେଲା । ଧୀରେ ଧୀରେ ରେଳ ଲାଇନ ନିର୍ମାଣ, ରେଲ ଇଂଜିନ ପ୍ରସ୍ତୁତି ନେଇ ଉଦ୍ୟମ ହେଲା ଓ ୧୮୫୦ ବେଳକୁ ରେଳଯାତ୍ରା ବିଭିନ୍ନ ଉନ୍ନତ ଦେଶରେ ବିକାଶଲାଭ କଲା । ବାଷ୍ପଚାଳିତ ଇଂଜିନରୁ ଡିଜେଲ୍-ଇଲେକ୍ଟ୍ରିକ୍ ରେଳ ଇଂଜିନମାନ ବହୁ ପରେ ପ୍ରସ୍ତୁତ ହେଲା । ଏହି ପ୍ରାଯୁକ୍ତିକ ଜ୍ଞାନରେ ଏବେ ଅଧିକ ଉନ୍ନତି ହୋଇ ମାଗ୍ନେଟିକ୍ ଲେଭିଟେସନ ଦ୍ରୁତଗାମୀ ଟ୍ରେନମାନ ନିର୍ମିତ ହେଲାଣି ।

ମାଟିତଳୁ ପେଟ୍ରୋଲ ନିଷ୍କାସନ ପ୍ରଥମେ ୧୮୫୩ ରେ ଆମେରିକାରେ ସମ୍ଭବ ହେଲା । ପେଟ୍ରୋଲ ଓ ଡିଜେଲ ବାହାର କରିବା ପରେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜର୍ମାନୀରେ ମଟର ଇଂଜିନ ନିର୍ମିତ ହେଲା । ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ମଟର ଗାଡିର ପ୍ରଚଳନ ଆରମ୍ଭ ହେଲା । ମଟରଗାଡିର ପ୍ରଚଳନ ଦୁଇଟି ଶିଳ୍ପର ବିକାଶ ଉପରେ ନିର୍ଭର କରୁଥିଲା । ପ୍ରଥମତଃ ପେଟ୍ରୋଲିୟମ ଶିଳ୍ପର ବିକାଶ ନ ହୋଇଥିଲେ ମଟରଗାଡିର ପ୍ରଚଳନ ସମ୍ଭବ ହୋଇନଥାନ୍ତା । ଅଶୋଧିତ ପେଟ୍ରୋଲ ନିଷ୍କାସନ ଓ ତାର ଶୋଧନଦ୍ୱାରା ପେଟ୍ରୋଲ ପ୍ରସ୍ତୁତ ହେବାରୁ ମଟରଗାଡିର ବ୍ୟବହାର ହୋଇପାରିଲା । ଦ୍ୱିତୀୟରେ ରବର ଶିଳ୍ପର ବିକାଶ ଯୋଗୁ ଟିଉ ଟାର ମାନ ନିର୍ମିତ ହେଲା । ଏହି ପ୍ରଯୁକ୍ତିର ବିକାଶ ଚାର୍ଲସ ଗୁଡ୍‌ଇୟରଙ୍କ ଉଦ୍ଭାବନ ଯୋଗୁ ସମ୍ଭବ ହେଲା । ରବରକୁ କିପରି ଶକ୍ତ ଓ କଠିନ କରାଯିବ ସେ ତାର ପ୍ରକ୍ରିୟା ଉଦ୍ଭାବନ କଲେ । ଏହି ଦୁଇଟି ଜିନିଷର ବିକାଶ ଯୋଗୁ ମଟର ଗାଡି ଜନିତ ଅଟୋମୋବାଇଲ୍‌ର ଯୁଗ ଶହେ ବର୍ଷ ତଳେ ପୃଥିବୀରେ ବ୍ୟାପକ ହୋଇପାରିଲା । ତେବେ ଏଥିପାଇଁ ଆବଶ୍ୟକ ଥିଲା ଉନ୍ନତମାନର ରାସ୍ତା ନିର୍ମାଣ । ଧୀରେ ଧୀରେ ରୋଡ ନିର୍ମାଣ କ୍ଷେତ୍ରରେ ଉନ୍ନତିସାଧନ ହେଲା । ହାଏୱେ, ଫ୍ଲାଏଓଭର, ନଦୀମାନଙ୍କ ଉପରେ ବନ୍ଧନିର୍ମାଣ ଯୋଗୁ ଯାତାୟତ ଓ ମାଲ ପରିବହନ କ୍ଷେତ୍ରରେ ନୂଆ ଯୁଗ ଶହେ ବର୍ଷ ତଳେ ଆରମ୍ଭ ହେଲା । ଏହା ସହିତ ବିଂଶଶତାବ୍ଦୀ ଆରମ୍ଭରେ ଉଡାଜାହାଜର ଉଦ୍ଭାବନ ସଭ୍ୟତାର ଇତିହାସରେ ଯୁଗାନ୍ତକାରୀ ଥିଲା । ବିମାନଯାତ୍ରାର ଯୁଗ ପ୍ରଥମ ବିଶ୍ୱଯୁଦ୍ଧପରେ ବାସ୍ତବ ରୂପରେଖ ନେଲା । ବିମାନଘାଟି ନିର୍ମାଣ ସ୍ୱତନ୍ତ୍ର ଜ୍ଞାନକୌଶଳ, ଭିତ୍ତିଭୂମି ଉପରେ ନିର୍ଭରଶୀଳ । ତେବେ ଶହେ ବର୍ଷ

ଭିତରେ ଏଥିରେ ବ୍ୟାପକ ଉନ୍ନତି ସାଧନ ସମ୍ଭବ ହୋଇଛି । ବିମାନ ଯାତ୍ରାର ଯୁଗ ଆସିବା ପରେ ପୃଥିବୀ କ୍ଷୁଦ୍ର ହୋଇଯାଇଛି ଓ ମଣିଷ ଗୋଟିଏ ପ୍ରାନ୍ତରୁ ପୃଥିବୀର ଅନ୍ୟ ପ୍ରାନ୍ତକୁ ଅକ୍ଳେଶରେ କେତୋଟି ଘଣ୍ଟା ଭିତରେ ଯାଇପାରୁଛି । କାର୍, ବସ, ରେଳ ଓ ବିମାନ ଗମନାଗମନ କ୍ଷେତ୍ରରେ ପ୍ରଧାନ ଅବଲମ୍ବନ ହୋଇପାରିଛି । ସର୍ବସାଧାରଣଙ୍କ ଯାତ୍ରା ପାଇଁ ସାରା ପୃଥିବୀରେ ସାଇକେଲ ଓ ମଟରସାଇକେଲ ମଧ୍ୟ ଏକ ବଡ ଆବଶ୍ୟକତା ପୂରଣ କରୁଛି । ଜନ୍ ଡନଲପ୍ ଟାୟାର ଉଦ୍ଭାବନ ଓ ନିର୍ମାଣ କରିବାର କୌଶଳ ଜଣାଇବା ପରେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ସାଇକେଲ ପ୍ରସ୍ତୁତ ହେଲା । ସବୁ ଦେଶରେ ସାଇକେଲର ପ୍ରଚଳନ ଶହେ ବର୍ଷ ଭିତରେ ବେଶ୍ ବ୍ୟାପକ ହୋଇଥିବା ଦେଖାଯାଏ । ଛାତ୍ର, ପୋଷ୍ଟମାନ, କ୍ଷୀରବିକ୍ରେତା, ସମ୍ବାଦପତ୍ର ହକର, ଶ୍ରମଜୀବୀ ଲୋକ ସମସ୍ତଙ୍କ ପାଇଁ ପ୍ରଦୂଷଣମୁକ୍ତ ଏହି ଯାନଟି ବଡ ଆବଶ୍ୟକତା ପୂରଣ କରିଥାଏ । ସାଇକେଲ ସହିତ ମଟର ସାଇକେଲ, ସ୍କୁଟର, ମୋପେଡ ଓ ଅଟୋରିକ୍ସା ଯାନ ଗୁଡିକ ଯାତାୟତ କ୍ଷେତ୍ରରେ ବଡ ଅବଲମ୍ବନ ହୋଇପାରିଛି । ତେବେ ଏ ସବୁ ଏହି ଶହେ ବର୍ଷ ଭିତରେ ମଣିଷର ବ୍ୟବହାର କ୍ଷେତ୍ରକୁ ଆସିଛି । ଏହି ସବୁ ପ୍ରଯୁକ୍ତିଗତ ଉପକରଣ ମାନ ଗମନାଗମନ କ୍ଷେତ୍ରରେ ବୈପ୍ଲବିକ ପରିବର୍ତ୍ତନ ଆଣିଛି ।

ଭାବର ଆଦାନ ପ୍ରଦାନ ପ୍ରତ୍ୟେକ ପ୍ରାଣୀର ଏକ ସହଜାତ ପ୍ରବୃତ୍ତି । ମଣିଷ ଜୀବଜଗତର ଏକ ମାତ୍ର ପ୍ରାଣୀ ଯିଏ ଭାଷା କରିବାକୁ ସମର୍ଥ । ଗୋଟିଏ ସ୍ଥାନରେ ରହି ଦୂର ସ୍ଥାନକୁ ସମ୍ବାଦ ପ୍ରେରଣ ପାଇଁ ମନୁଷ୍ୟ ପ୍ରୟାସ କରି ଆସିଛି । ସଭ୍ୟତାର ଦୀର୍ଘଦିନ ପରେ ମାତ୍ର ଦେଢ଼ ଶହ ବର୍ଷ ତଳେ ଏ କ୍ଷେତ୍ରରେ କିଛି ଜ୍ଞାନର ବିକାଶ ହୋଇଛି । ସେହି ଧାରାରେ କ୍ରମୋନ୍ନତି ହୋଇ ଏବେ ବିଜ୍ଞାନ ବିସ୍ମୟକର ସଫଳତା ହାସଲ କରିପାରିଛି । ବହୁ ଅତୀତରେ ପତ୍ର ମାଧ୍ୟମରେ ମଣିଷ ଦୂର ସ୍ଥାନକୁ ଖବର ପଠାଉଥିଲା । ତେବେ ଟେଲିଗ୍ରାଫ୍‌ର ଭାବନା ଊନବିଂଶ ଶତାବ୍ଦୀରେ ଆସିବା ପରଠାରୁ ଆଜିର ଇଲେକ୍‌ଟ୍ରୋନିକ୍‌ସ୍ ଯୁଗ ଭିତରେ ବିଜ୍ଞାନ ଓ ପ୍ରଯୁକ୍ତିରେ ଏକ ସୁଦୀର୍ଘ କାହାଣୀ ରହିଛି । ଟେଲିଗ୍ରାଫରୁ ଟେଲିଫୋନ୍‌ର ଉଦ୍ଭବ ହେଲା । ଆଲେକ୍‌ଜାଣ୍ଡର ଗ୍ରାହମ୍ ବେଲ୍ (୧୮୪୭-୧୯୨୨) ଟେଲିଫୋନର ପ୍ରଯୁକ୍ତି ଉଦ୍ଭାବନ କରିଥିଲେ । ଅବଶ୍ୟ ଏହି କ୍ଷେତ୍ରରେ ବହୁ ବୈଜ୍ଞାନିକ ସିଦ୍ଧାନ୍ତର ଭାବନା ରହିଥିଲା । ଜଣଙ୍କର କଥା ଜନିତ ଶବ୍ଦ ତରଙ୍ଗକୁ ଇଲେକ୍‌ଟ୍ରିକାଲ ତରଙ୍ଗରେ ରୂପାନ୍ତରିତ କରିବା ଦ୍ୱାରା ଜଣଙ୍କର କଥା ଦୂରରେ ରହି ଅନ୍ୟ ଜଣେ ଶୁଣିବାକୁ ସମର୍ଥ ହୋଇପାରୁଛି । ଟେଲିଫୋନ ଜନିତ ପାରସ୍ପରିକ ଯୋଗାଯୋଗ କ୍ଷେତ୍ରରେ ଏତେ ଉନ୍ନତି ଏହି କେତୋଟି ଦଶନ୍ଧି ଭିତରେ ସମ୍ଭବ ହୋଇପାରିଛି । ଯେଉଁ ଭାବନା ଓ ପ୍ରଯୁକ୍ତିଗତ କୌଶଳର ସୂତ୍ରପାତ ଗ୍ରାହମ୍ ବେଲ କରିଥିଲେ ତାହା ଆଜି ଏପରି ଏକ ଉନ୍ନତ ସ୍ଥିତିକୁ ଯାଇପାରିଛି ଯେ ଟେଲିଫୋନ୍ ବ୍ୟତୀତ ଆଧୁନିକ ଜୀବନଧାରାକୁ ପରିକଳ୍ପନା

କରିହେବ ନାହିଁ । ସମଗ୍ର ବିଶ୍ୱର ଜନଗଣ ଆଜି ଟେଲିଫୋନ୍‌ର ଉପକାର ପାଉଛନ୍ତି । ଟେଲିଫୋନ୍‌ର ସୁଫଳ ପ୍ରତ୍ୟେକ ବ୍ୟକ୍ତି ଯେପରି ପାଇବାକୁ ସମର୍ଥ ହୋଇଛି, ସମ୍ଭବତଃ ଅନ୍ୟ କୌଣସି ବୈଜ୍ଞାନିକ ଉପକରଣ ଏହା ଦେଇପାରି ନାହିଁ । ବ୍ୟକ୍ତିଗତ ସଂପର୍କ, ପ୍ରଶାସନ, ବ୍ୟବସାୟ ପ୍ରତ୍ୟେକ କ୍ଷେତ୍ରରେ ଏହା ଅପରିହାର୍ଯ୍ୟ ହୋଇପଡିଛି ।

ବିଦ୍ୟୁତ-ଚୁମ୍ବକୀୟ-ତରଙ୍ଗ ଏକ ଜଟିଳ ବୈଜ୍ଞାନିକ ଧାରଣା ଯାହାକୁ ଜଣେ ଜର୍ମାନ ବୈଜ୍ଞାନିକ ଆବିଷ୍କାର କରିଥିଲେ । ସେହି ବୈଜ୍ଞାନିକ ସିଦ୍ଧାନ୍ତକୁ ଆଧାର କରି ମାର୍କୋନୀ ରେଡିଓର ଉଦ୍‌ଭାବନ କଲେ । ବେତାର ସଂଯୋଗ ବା ଓୟାରଲେସ୍ କମ୍ୟୁନିକେସନର ଜନକ ଭାବେ ମାର୍କୋନିଙ୍କୁ (୧୮୭୪-୧୯୩୭) ନିଆଗଲେ ବି ବହୁ ବୈଜ୍ଞାନିକ ସିଦ୍ଧାନ୍ତର କାହାଣୀ ଏହା ପଛରେ ରହିଛି । ରେଡିଓରୁ ଟେଲିଭିଜନର ଉଭାବନ ସଭ୍ୟତାର ଅଗ୍ରଗତିରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ମୋବାଇଲ ଫୋନ୍, ରେଡିଓ, ଟେଲିଭିଜନ, ଇଣ୍ଟରନେଟ୍, ସାଟେଲାଇଟ କମ୍ୟୁନିକେସନ ଆଧୁନିକ ପ୍ରଯୁକ୍ତିର ବିସ୍ମୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ଏସବୁର କାର୍ଯ୍ୟକାରିତା ପଶ୍ଚାତରେ ରହିଛି କେତେକ ବୈଜ୍ଞାନିକ ସିଦ୍ଧାନ୍ତ । ସେହି ବୈଜ୍ଞାନିକ ସିଦ୍ଧାନ୍ତ ସକଳ ପ୍ରାକୃତିକ ନିୟମ ଆଧାରିତ ।

ଗମନାଗମନ ଓ ଟେଲିକମ୍ୟୁନିକେସନ କ୍ଷେତ୍ରରେ ମଣିଷ ଏହି ଦୁଇ ଶତାବ୍ଦୀ ଭିତରେ ଯେଉଁ ସଫଳତା ହାସଲ କରିଛି ତାହା ପ୍ରକୃତରେ ଅଭୂତପୂର୍ବ । ଏହି ସଫଳତା ପଶ୍ଚାତରେ ରହିଛି ମାନବିକ ପ୍ରୟାସ, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ଓ ବୈଜ୍ଞାନିକ ମାନସିକତା । ବିଜ୍ଞାନଦ୍ୱାରା ହିଁ ସଭ୍ୟତାର ଅଗ୍ରଗତି ଉନ୍ନତ ହୋଇଚାଲିଛି ଓ ଜୀବନର ଗୁଣାତ୍ମକ ମାନରେ ଉତ୍ତରଣ ସମ୍ଭବ ହେଉଛି । କିନ୍ତୁ ଯେଉଁ ବିଚାରବୋଧ ଏହା ପଶ୍ଚାତରେ ରହିଛି, ତାହା ସାର୍ବଜନୀନ ହେଉ ନାହିଁ । ଏକବିଂଶ ଶତାବ୍ଦୀର ପ୍ରଯୁକ୍ତି ଆମେ ବ୍ୟବହାର କରୁଥିଲେ ମଧ୍ୟ ଆମର ଦୃଷ୍ଟିଭଙ୍ଗୀ ମଧ୍ୟଯୁଗୀୟ ମାନସିକତା ଭିତରେ ରହିଛି । ଏହା ହିଁ ଆମ ପାଇଁ ବଡ ବିଡମ୍ବନା କହିବାକୁ ହେବ ।

(୧୦.୯.୧୪)



# ବିଜ୍ଞାନ ଓ ଶିଳ୍ପାୟନ

ମଣିଷ ପାଖରେ ବୁଦ୍ଧିର ବିକାଶ ପରଠାରୁ ସେ ତାର ପରିସର ଓ ପରିବେଶରେ ଉପଲବ୍ଧ ବସ୍ତୁମାନଙ୍କ ସାହାଯ୍ୟରେ ଜୀବନର ଆବଶ୍ୟକତା ଅନୁଯାୟୀ ବିଭିନ୍ନ ଉପକରଣ ନିର୍ମାଣ କରିବାକୁ ପ୍ରୟାସ କରିଛି । ଏହି ପ୍ରୟାସ ମଧ୍ୟ ଦେଇ ସେ ଖରା ବର୍ଷାରୁ ସୁରକ୍ଷା ପାଇଁ ଗୃହ ନିର୍ମାଣ କରିବାର କୌଶଳ ଉଦ୍‌ଭାବନ କରିଛି ଓ ସେଥିରେ କ୍ରମୋନ୍ନତି ଘଟି ଚାଲିଛି । ନିଜର ଭୂଷଣ ପାଇଁ ସେ ବସ୍ତ୍ର ତିଆରି କରିବାର କଳା-କୌଶଳ ହାସଲ କରିଛି ଓ ସେଥିରେ ଧୀରେ ଧୀରେ ଉନ୍ନତି ହୋଇଛି । କାଳକ୍ରମେ ବିଭିନ୍ନ ଯାନ ବାହାନ ନିର୍ମାଣ ନେଇ ଜ୍ଞାନ କୌଶଳ ମଣିଷ ମସ୍ତିଷ୍କ ଖଟାଇ ଉଦ୍‌ଭାବନ କରିଛି । ଏହିପରି ସଭ୍ୟତା ଆଗକୁ ଯିବାରେ ମଣିଷର କାରିଗରୀ କୌଶଳ ଏକ ମୁଖ୍ୟ ଭୂମିକା ନେଇଛି । ବିଜ୍ଞାନର ଯୁଗ ଆସିବାର ଦୁଇ ଶତାବ୍ଦୀ ପରେ ପ୍ରଯୁକ୍ତିର ଯୁଗ ଉଦ୍‌ଭବ ହୋଇଛି । ସଂପ୍ରତି ଯାହାକୁ 'ବିଜ୍ଞାନ' କୁହାଯାଉଛି, ଏହାର ଆରମ୍ଭ କାଳରେ ଏହାକୁ 'ପ୍ରାକୃତିକ ଦର୍ଶନ' କୁହାଯାଉଥିଲା । ପ୍ରାକୃତିକ ଶୃଂଖଳା ଓ ନିୟମକୁ ଜାଣିବା ବିଜ୍ଞାନର ଆଭିମୁଖ୍ୟ ରହିଥିଲା । ବିଜ୍ଞାନର ଏକ ପ୍ରୟୋଗାତ୍ମକ ଦିଗ ଯେ ରହିଛି ଅର୍ଥାତ୍ ବୈଜ୍ଞାନିକ ଜ୍ଞାନକୁ ଭିତ୍ତି କରି ନୂତନ ପ୍ରଯୁକ୍ତି ସୃଷ୍ଟି କରିହେବ ଏହି ଭାବନା ବିଜ୍ଞାନର ଉଦ୍‌ଭବ ହେବାର ବହୁ ପରେ ଚିନ୍ତା ରାଜ୍ୟକୁ ଆସିଲା । ଏହି ଭାବନାରୁ ହିଁ ଇତିହାସରେ ଶିଳ୍ପବିପ୍ଳବର ପରିବେଶ ଆସିପାରିଲା । ଅଷ୍ଟାଦଶ ଶତାବ୍ଦୀରେ ଶିଳ୍ପବିପ୍ଳବ ପ୍ରଥମେ ଇଂଲଣ୍ଡରେ ଆସିଥିବା କୁହାଯାଉଛି । ଶିଳ୍ପବିପ୍ଳବର ଯୁଗ ଆସିବା ପୂର୍ବରୁ ସବୁ କ୍ଷେତ୍ରରେ ଉତ୍ପାଦନ ନିର୍ଦ୍ଦିଷ୍ଟ ଓ ନିଷ୍ଚଳ ହୋଇ ରହିଥିଲା । ଖାଦ୍ୟ ଉତ୍ପାଦନ, ପୋଷାକ ପ୍ରସ୍ତୁତି ଇତ୍ୟାଦି କ୍ଷେତ୍ରରେ ହଜାରେ ବର୍ଷ ତଳେ ଯେଉଁ ପରିସ୍ଥିତି ଥିଲା, ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ସେଥିରେ ବିଶେଷ କିଛି ଉନ୍ନତି ସାଧିତ ହୋଇନଥିଲା । ତେବେ ଶିଳ୍ପ ବିପ୍ଳବର ଯୁଗ ଆସିବାପରେ ଉତ୍ପାଦନକୁ କିପରି ବୃଦ୍ଧି କରାଯିବ, ସେଥିପାଇଁ ନାନା ପ୍ରୟାସ ହେଲା । ବିଜ୍ଞାନକୁ ପ୍ରୟୋଗକରି ନୂଆ ନୂଆ ଯନ୍ତ୍ରପାତି ନିର୍ମିତ ହେଲା, କାରିଗରୀ କୌଶଳରେ ଉନ୍ନତି ସାଧିତ ହେବାକୁ ଲାଗିଲା

ଓ ଏ କ୍ଷେତ୍ରରେ ଉତ୍ତମାନର ଗବେଷଣା ହୋଇ ପ୍ରଯୁକ୍ତିଗତ ଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଚାଲିଲା । ଏ ସବୁର ସମ୍ମିଳିତ ପ୍ରଭାବରେ ଶିଳ୍ପବିପ୍ଳବ ସଂଘଟିତ ହେଲା ଓ ସବୁ କ୍ଷେତ୍ରରେ ପ୍ରଚୁର ଉତ୍ପାଦନ ହେବାକୁ ଲାଗିଲା । ଶିଳ୍ପ ବିପ୍ଳବର ପରିବେଶରୁ ସଭ୍ୟତା ନୂଆ ମୋଡ ନେବାକୁ ବସିଲା ।

ଶିଳ୍ପ ବିପ୍ଳବର ଯୁଗ ଆସିବା ପରେ ବୈଜ୍ଞାନିକ ଗବେଷଣା ତ୍ୱରାନ୍ୱିତ ହେବାକୁ ଲାଗିଲା । ଗ୍ରାମୀଣ ଜୀବନଧାରାରେ ନାନା ପରିବର୍ତ୍ତନର ସୂତ୍ରପାତ ହେଲା । ଶିଳ୍ପାୟନରୁ ସହରୀ କରଣର ପରିବେଶ ଆସିଲା । ବିଭିନ୍ନ କଳକାରଖାନା, ବ୍ୟାବସାୟିକ କାର୍ଯ୍ୟାଳୟ ମାନ ସହରମାନଙ୍କରେ ମୁଣ୍ଡ ଟେକିଲା । ବୈଜ୍ଞାନିକ ଜ୍ଞାନର ବିକାଶରୁ କୃଷିକ୍ଷେତ୍ରରେ ଯେଉଁ ଉନ୍ନତି ହେଲା ସେଥିରେ ଚାଷରେ ଅଧିକ ଲୋକଙ୍କର ଆବଶ୍ୟକତା ରହିଲା ନାହିଁ । କୃଷିଭିତ୍ତିକ ସମାଜରେ ଅଧାରୁ ଅଧିକ ଲୋକ କେବଳ ଚାଷରେ ନିୟୋଜିତ ହୋଇ ରହୁଥିଲେ, ଶିଳ୍ପବିପ୍ଳବ ପରେ ଶତକଡା ମାତ୍ର ଦଶଭାଗ ଲୋକ କୃଷି କ୍ଷେତ୍ରରେ ରହିଲେ ଓ ପୂର୍ବାପେକ୍ଷା ଅଧିକ ଉତ୍ପାଦନ କରିପାରିଲେ । କୃଷିଭିତ୍ତିକ ସମାଜ ରୂପାନ୍ତରିତ ହେବାକୁ ଲାଗିଲା । କୁଟୀରଶିଳ୍ପ ପରିବର୍ତ୍ତେ ଯନ୍ତ୍ରଶିଳ୍ପର ବିକାଶ ଏକ ନୂଆ ପରିବେଶ ସୃଷ୍ଟି କଲା । କୃଷିଭିତ୍ତିକ ସମାଜରେ ଗ୍ରାମୀଣ ପରିବେଶ, କୁଟୀର ଶିଳ୍ପ, ଯେଉଁ ପାରସ୍ପରିକ ନିର୍ଭରଶୀଳତା ରହିଥିଲା ତାହା ବଦଳି ଯିବାକୁ ଲାଗିଲା । ଊନବିଂଶ ଶତାବ୍ଦୀରୁ ସହରୀ ସଭ୍ୟତା, ଯନ୍ତ୍ରଶିଳ୍ପ, ପ୍ରଚୁର ଉତ୍ପାଦନ, ଜନସଂଖ୍ୟାର ହାର ଆଶାତୀତ ଭାବେ ବୃଦ୍ଧିପାଇଲା ।

ଶିଳ୍ପବିପ୍ଳବ ଆରମ୍ଭ ଯୁଗରେ ଶ୍ରମିକମାନେ ନାନା ଶୋଷଣର ଶିକାର ହେଉଥିଲେ । କୃଷି କ୍ଷେତ୍ରରେ ଯେଉଁମାନେ କାର୍ଯ୍ୟ ପାଇଲେ ନାହିଁ ବା ଚାଷ ଭିତରେ ରହି ଜୀବନର ଭୌତିକ ଆବଶ୍ୟକତା ପୂରଣ କରିବାରେ ଅସମର୍ଥ ହେଲେ, ସେମାନେ ସହରକୁ ଆସିଲେ । ଏପରିକି ମହିଳା, କିଶୋର ପୁଅ ଝିଅମାନେ ବିଭିନ୍ନ କଷ୍ଟକର କାର୍ଯ୍ୟରେ କାମ କରିବାକୁ ବାଧ୍ୟ ହେଲେ । ଶ୍ରମିକମାନଙ୍କର ଶୋଷଣ, ଦୁରାବସ୍ଥା, ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନଧାରଣ ଜନିତ ପରିବେଶରୁ ନୂତନ ରାଜନୈତିକ ଓ ଅର୍ଥନୈତିକ ଆଦର୍ଶର ସୂତ୍ରପାତ ହେଲା । ଶ୍ରମିକମାନଙ୍କର ଅଧିକାର, ମାନବିକ ମର୍ଯ୍ୟାଦା, ଶୋଷଣହୀନ ସୁସ୍ଥ ପରିବେଶ ନେଇ ବିଭିନ୍ନ ଆନ୍ଦୋଳନମାନ ମୁଣ୍ଡଟେକିଲା । ଏହି ସ୍ଥିତିରେ ସମାଜବାଦ, କମ୍ୟୁନିଷ୍ଟବାଦ ପରି ରାଜନୈତିକ-ଅର୍ଥନୈତିକ ବିଚାର ଭିତରୁ ସାମ୍ୟ ସମାଜର ଭାବନା ଭିତ୍ତି ନେବାକୁ ଲାଗିଲା । ଗଣବିପ୍ଳବର ଚେତନା ମୁଣ୍ଡ ଟେକିଲା । ପୁଞ୍ଜିବାଦ, ସାମ୍ରାଜ୍ୟବାଦ, ରାଜତନ୍ତ୍ର, ସାମନ୍ତବାଦ ବିରୁଦ୍ଧରେ ଯେଉଁ ବୌଦ୍ଧିକ ଆଲୋଡନ ଆସିଲା, ତାହାର ପରିଣତିରୁ ରାଜନୈତିକ ଦୃଶ୍ୟପଟରେ ପରିବର୍ତ୍ତନ ସମ୍ଭବ ହେଲା ।

ଶିଳ୍ପୀକରଣ ଯୁଗ ପୂର୍ବରୁ ପୃଥିବୀର ବହୁ ଦେଶରେ ରାଜତନ୍ତ୍ର ରହିଥିଲା । ରାଜତନ୍ତ୍ର ପରଂପରାରେ ବଂଶାନୁକ୍ରମିକ ଶାସନ ବ୍ୟବସ୍ଥା ସର୍ବତ୍ର ରହିଥିଲା । ରାଜତନ୍ତ୍ର ସହ ସାମନ୍ତବାଦ ସାମାଜିକ ଆଦର୍ଶ ହୋଇ ବୈଷମ୍ୟପୂର୍ଣ୍ଣ ପରିବେଶ ସୃଷ୍ଟି କରିଥିଲା । ଶିଳ୍ପୀକରଣ ଯୋଗୁ ସାମ୍ରାଜ୍ୟବାଦର ବି ବିସ୍ତାର ହୋଇଥିଲା । ଯେଉଁ ରାଷ୍ଟ୍ରମାନେ ବିଜ୍ଞାନ ଓ ଶିଳ୍ପୀକରଣ କ୍ଷେତ୍ରରେ ଅଗ୍ରଗାମୀ ଥିଲେ ସେମାନେ ବିଭିନ୍ନ ଅଞ୍ଚଳକୁ ବାଣିଜ୍ୟ କରିବାକୁ ଯାଇ ସେଠାରେ କୌଶଳକ୍ରମେ ରାଜନୈତିକ ପରିସ୍ଥିତିକୁ ନିୟନ୍ତ୍ରଣ କରିବାକୁ ପ୍ରୟାସ କଲେ । ତେବେ ରାଜତନ୍ତ୍ର, ସାମ୍ରାଜ୍ୟବାଦ ବିରୁଦ୍ଧରେ ଧୀରେ ଧୀରେ ଯେଉଁ ବୈଚାରିକ ଆଲୋଡ଼ନ ଆସିଲା ତାହା ସଭ୍ୟତାର ଇତିହାସରେ ଏକ ନୂଆ ପରିବେଶ ସୃଷ୍ଟି କଲା । ରାଜତନ୍ତ୍ରର ବିଲୋପ ଓ ଗଣତାନ୍ତ୍ରିକ ବ୍ୟବସ୍ଥାର ପ୍ରବର୍ତ୍ତନ ରାଜନୈତିକ ଦୃଶ୍ୟପଟରେ ଏକ କ୍ରାନ୍ତିକାରୀ ବିଚାର ଥିଲା । ଗଣତନ୍ତ୍ରର ଭିତ୍ତି ଦୃଢ଼ ହେବାରୁ ଜନମଙ୍ଗଳକାରୀ ରାଷ୍ଟ୍ରର ଭାବନା ସୃଷ୍ଟି ହେଲା । ରାଷ୍ଟ୍ର ପ୍ରତ୍ୟେକ ନାଗରିକର ବିକାଶ, ଅଧିକାର, ମର୍ଯ୍ୟାଦାପୂର୍ଣ୍ଣ ଜୀବନ, ଶିକ୍ଷା ପାଇବାର ସୁଯୋଗ ପାଇଁ ପରିବେଶ ସୃଷ୍ଟି କଲା । ମାନବ ସଭ୍ୟତାର ଇତିହାସରେ ବିଭିନ୍ନ ସ୍ତରରେ ଯେଉଁ ଭେଦଭାବମୂଳକ ପରିସ୍ଥିତି ରହିଥିଲା ଗଣତାନ୍ତ୍ରିକ ଚେତନାର ବିକାଶ ଦ୍ୱାରା ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ରାଷ୍ଟ୍ରର ଜନଗଣଙ୍କ ଭିତରେ ଧର୍ମ, ଭାଷା, ବର୍ଣ୍ଣ, ଜାତି ଇତ୍ୟାଦି କ୍ଷେତ୍ରରେ ପାର୍ଥକ୍ୟ ରହିଥିଲେ ବି ସବୁ ନାଗରିକ ସମାନ ସୁବିଧା ସୁଯୋଗ ପାଇବାର ପରିବେଶ ଆସିଲା । ପ୍ରତ୍ୟେକ ରାଷ୍ଟ୍ର ବିଭିନ୍ନ ଜନମଙ୍ଗଳକାରୀ ଯୋଜନାର ରୂପାୟନ କରି ସମସ୍ତ ନାଗରିକ ମାନଙ୍କୁ ଶିକ୍ଷା, ସ୍ୱାସ୍ଥ୍ୟ ସେବା, ନିରାପତ୍ତା, କର୍ମସଂସ୍ଥାନ ଯୋଗାଇବାକୁ ଏକ କର୍ତ୍ତବ୍ୟ ବୋଲି ଗ୍ରହଣ କଲା । ଯେକୌଣସି ପ୍ରକାର ଶୋଷଣ, ଅତ୍ୟାଚାର, ଭେଦଭାବ ଜନିତ ପରଂପରା ବିରୁଦ୍ଧରେ ଆଇନଗତ ବ୍ୟବସ୍ଥା କରାଗଲା । ଏସବୁ ସହିତ ବ୍ୟକ୍ତି ସ୍ୱାଧୀନତା, ମାନବିକ ଅଧିକାର, ସମତାର ପରିବେଶ, ନ୍ୟାୟ ଦୃଷ୍ଟିରେ ସମସ୍ତଙ୍କୁ ସମାନ କରିବାର ପରିବେଶ ପ୍ରତି ଗଣତାନ୍ତ୍ରିକ ରାଷ୍ଟ୍ରରେ ବ୍ୟବସ୍ଥା କରିବାକୁ ଉଦ୍ୟମ ହେଲା । ବିଭିନ୍ନ ସମାଜରେ ଧାର୍ମିକ ବିଶ୍ୱାସ, ମନ୍ଦ ପରଂପରା ନେଇ ନାରୀମାନଙ୍କ ପ୍ରତି ଯେଉଁ ଅମର୍ଯ୍ୟାଦାପୂର୍ଣ୍ଣ ମନୋଭାବ ରହିଥିଲା ସେଥିରେ ମଧ୍ୟ ପରିବର୍ତ୍ତନ ଆସିଲା । ଶିଳ୍ପୀକରଣ ଯୋଗୁ ମହିଳାମାନେ ବହୁ ସଂଖ୍ୟାରେ ବିଭିନ୍ନ କର୍ମସଂସ୍ଥାନରେ ନିଯୁକ୍ତି ପାଇଲେ । ପୁରୁଷମାନଙ୍କ ପରି ସେମାନଙ୍କର ଅର୍ଥନୈତିକ ଅଧିକାର ଓ ସ୍ୱାବଲମ୍ବନଶୀଳତା ପ୍ରତି ରାଷ୍ଟ୍ର ସୁଯୋଗ ସୃଷ୍ଟିକଲା । ଇଂଲଣ୍ଡ ପରି ପ୍ରାଚୀନ ଗଣତାନ୍ତ୍ରିକ ରାଷ୍ଟ୍ରରେ ପ୍ରଥମ ବିଶ୍ୱଯୁଦ୍ଧ ପରେ ମହିଳାମାନେ ଭୋଟ ଅଧିକାର ପାଇଲେ । ମହିଳା ସଶକ୍ତିକରଣ ଏକ ଶତାବ୍ଦୀ ଭିତରେ ସବୁ ଦେଶରେ ଏକ ଦୃଢ଼ ଭିତ୍ତି ନେଇଥିବା ମନେହୁଏ ।

ଶିଳ୍ପ ବିପ୍ଲବର ପରିଣାମରୁ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଏହି ଯେଉଁ ସବୁ ପରିବର୍ତ୍ତନ ଆସିଲା ତାହା ସଭ୍ୟତାର ବିକାଶ ଓ ମାନବିକ ମୂଲ୍ୟବୋଧର ଦୃଢ଼ୀକରଣ ଦିଗରେ ଦୃଢ଼ ଭିତ୍ତି ଯୋଗାଇଲା । ଶିଳ୍ପବିପ୍ଲବ ଅର୍ଥନୈତିକ ବିକାଶ କ୍ଷେତ୍ରରେ ଯେପରି ପରିବର୍ତ୍ତନର ଦିଗନ୍ତ ସୃଷ୍ଟିକଲା, ସେହିପରି ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ପରିବର୍ତ୍ତନ ପାଇଁ ପରିବେଶ ଆଣିପାରିଲା । ଏହା ଭିତରେ ଗମନାଗମନ କ୍ଷେତ୍ରରେ ଦ୍ରୁତ ପ୍ରଗତି ଓ ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନ ଯୋଗୁଁ ମାନବ ସମାଜରେ ରହିଥିବା ନାନା ଭେଦଭାବ, ବିଦ୍ୱେଷର ବିଲୋପ ପାଇଁ ଅନୁକୂଳ ପରିବେଶ ଆସିଥିବା ମନେହୁଏ । ବିଜ୍ଞାନର ବିକାଶ, ପ୍ରଯୁକ୍ତିର ବିପ୍ଲବ, ଶିଳ୍ପାୟନ ଇତ୍ୟାଦି ଘଟଣାର ସମ୍ମିଳିତ ପରିଣାମରୁ ସମଗ୍ର ବିଶ୍ୱର ମାନବସମାଜ ଯେ ଗୋଟିଏ ସୂତ୍ରରେ ବନ୍ଧା ଏହି ଭାବନା ସୃଷ୍ଟି ହେବାରେ ଲାଗିଛି । ରାଷ୍ଟ୍ର, ଜାତୀୟତା ଶହେ ବର୍ଷ ତଳେ ଯେଉଁ ଆବେଗ ସୃଷ୍ଟି କରୁଥିଲା ଆଗାମୀ ବିଶ୍ୱ ସେଥିରୁ ମୁକ୍ତ ହୋଇ ଏକ ଆନ୍ତରାଷ୍ଟ୍ରୀୟ ଚେତନାକୁ ଯେ ସାର୍ବଜନୀନ କରିବ ଏହା କେତେକ ରାଷ୍ଟ୍ରନୀତିଜ୍ଞ ଓ ଦାର୍ଶନିକ ଆଶାପୋଷଣ କରୁଛନ୍ତି । ସାଂପ୍ରଦାୟିକ ଧର୍ମରୁ ମୁକ୍ତ ହୋଇ ମାନବବାଦୀ ବିଶ୍ୱଦୃଷ୍ଟିର ବିକାଶ ପାଇଁ ପରିବେଶ ସୃଷ୍ଟି ହେବାରେ ଲାଗିଛି । ସମସ୍ତ ସଂକୀର୍ଣ୍ଣତାକୁ ଦୂର କରି ଏକ ବିଶ୍ୱ, ଏକ ମାନବ ସମାଜର ଭାବନା ନେଇ ସାରା ପୃଥିବୀରେ ଚେତନା ସୃଷ୍ଟି ହେଉଛି । ବିଜ୍ଞାନ, ମାନବବାଦ, ବିଚାରଶୀଳ ଦୃଷ୍ଟିର ସମ୍ମିଳିତ ପ୍ରଭାବରୁ ଏକ ନୂଆ ଭାତୃତ୍ୱପୂର୍ଣ୍ଣ ଦୁନିଆ ଯେ ରୂପ ନେବ ଏହା ଅନେକ ବୁଦ୍ଧିଜୀବୀ ଆଶାପୋଷଣ କରୁଛନ୍ତି ।

(୨୪.୯.୧୪)



# ବିଜ୍ଞାନ ଓ ଆଗାମୀ ବିଶ୍ୱ

ସଂପ୍ରତି ମାନବ ସଭ୍ୟତା ଯେଉଁ ଶିଖରକୁ ସ୍ପର୍ଶ କରିଛି ଏହା ପଶ୍ଚାତରେ ସବୁଠାରୁ ଅଧିକ ଅବଦାନ ରହିଛି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର । ବିଜ୍ଞାନର ଆଦି ପର୍ବଟି କେବଳ ବୌଦ୍ଧିକ ଅନୁସନ୍ଧିତ୍ସା ସ୍ତରରେ ସୀମିତ ରହିଥିଲା । କେତେକ ପ୍ରଭାବଶାଳୀ ଅନୁସନ୍ଧିତ୍ସୁ ବ୍ୟକ୍ତି ପ୍ରାକୃତିକ ଶୃଙ୍ଖଳା ଓ ବିଶ୍ୱବ୍ରହ୍ମାଣ୍ଡ ବିଷୟରେ ଜାଣିବାକୁ ପ୍ରୟାସ କରୁଥିଲେ । ଷୋଡଶ-ସପ୍ତଦଶ ଶତାବ୍ଦୀରେ ବିଜ୍ଞାନର ଯୁଗ ଆରମ୍ଭ ହେବାର ଦୁଇ ଶହ ବର୍ଷ ପରେ ଆଧୁନିକ ପ୍ରଯୁକ୍ତିର ବିକାଶ ପର୍ବ ଆରମ୍ଭ ହେଲା । ବଜ୍ଞାନର ଯେ ଏକ ପ୍ରୟୋଗାତ୍ମକ ଦିଗ ରହିଛି ଓ ସେହି ପ୍ରୟୋଗରୁ ଜୀବନ ଉପଯୋଗୀ ଅନେକ ନୂଆ ନୂଆ ବସ୍ତୁ ନିର୍ମାଣ ହୋଇପାରିବ ଏହି ଜ୍ଞାନ ଏକ ନୂଆ ଦୁନିଆ ସୃଷ୍ଟି କରିବାରେ ସହାୟକ ହେଲା । ଅଷ୍ଟାଦଶ ଶତାବ୍ଦୀରେ ଆଧୁନିକ ପ୍ରଯୁକ୍ତିର ଯେଉଁ ଧାରାଟି ସୃଷ୍ଟି ହେଲା ତାହା ଶିଳ୍ପବିପ୍ଳବକୁ ଜନ୍ମ ଦେଲା । ଶିଳ୍ପବିପ୍ଳବ ଯୋଗୁ ସହରୀ ଜୀବନର ପରିବେଶ ଆସିଲା । କୃଷିଭିତ୍ତିକ ଗ୍ରାମୀଣ ଜୀବନଧାରା ଶିଳ୍ପାୟନର ପ୍ରଭାବରେ ରୂପାନ୍ତରିତ ହେବାକୁ ଲାଗିଲା । ରାଜତନ୍ତ୍ର ଲୋପ ପାଇଲା, ସାମନ୍ତବାଦ ସଭ୍ୟ ମୂଲ୍ୟବୋଧର ଯେ ପରିପନ୍ଥୀ ଏହା ସ୍ୱୀକୃତ ହେବାକୁ ଲାଗିଲା । ସାମ୍ରାଜ୍ୟବାଦ ବିରୁଦ୍ଧରେ ବିପ୍ଳବ ମୁଣ୍ଡ ଟେକିଲା । ରାଷ୍ଟ୍ରୀୟତା ଭାବନାର ଆଧାରରେ ଦେଶାତ୍ମବୋଧର ଯେଉଁ ଚେତନା ପ୍ରକାଶ ପାଇଲା ତାହା ସାମ୍ରାଜ୍ୟବାଦକୁ କବର ଦେଲା । ଗଣତନ୍ତ୍ର ଓ ସମାଜବାଦ ରାଜନୈତିକ ଓ ଅର୍ଥନୈତିକ ଆଦର୍ଶ ଭାବେ ଅଧିକ ସ୍ୱୀକୃତ ହେବାକୁ ଲାଗିଲା । ରାଷ୍ଟ୍ର ଜନମଙ୍ଗଳକାରୀ ଆଭିମୁଖ୍ୟକୁ ଆଦର୍ଶ ଭାବେ ଗ୍ରହଣ କଲା । ନାଗରିକମାନଙ୍କର ମର୍ଯ୍ୟାଦାପୂର୍ଣ୍ଣ ଜୀବନ, ସାର୍ବଜନୀନ ଶିକ୍ଷା, ଉନ୍ନତ ସ୍ୱାସ୍ଥ୍ୟ ସେବା, ବ୍ୟକ୍ତି ସ୍ୱାଧୀନତା, ସାମାଜିକ ନିରାପତ୍ତା ଇତ୍ୟାଦି ରାଷ୍ଟ୍ରର ଆଭିମୁଖ୍ୟ ହେଲା । ବିଜ୍ଞାନ ପ୍ରକୃତି ସଂପର୍କରେ ମଣିଷ ଜ୍ଞାନର ଦିଗନ୍ତକୁ ବିସ୍ତାର କରିବା ସହ ଏକ ସାଂସ୍କୃତିକ ବିପ୍ଳବ ଆଣିବାରେ ପଥ ପ୍ରଦର୍ଶକ ହେଲା ।

## ଜୀବନ ଅନ୍ୱେଷା

ଜୀବନର ଭୌତିକ ମାନରେ କ୍ରମୋନ୍ନତି ଓ ଆଧୁନିକ ଚିକିତ୍ସା ବିଜ୍ଞାନ ଯୋଗୁ ଜୀବନର ଗୁଣାତ୍ମକ ମାନରେ ଉଲ୍ଲେଖନୀୟ ପରିବର୍ତ୍ତନ ଆସିପାରିଲା । ପରିଣାମତଃ ଊନବିଂଶ ଶତାବ୍ଦୀରୁ ଜନସଂଖ୍ୟାର ବୃଦ୍ଧି ଏପରି ହୋଇଚାଲିଛି ଯେ ସଂପ୍ରତି ଜନସଂଖ୍ୟାର ନିୟନ୍ତ୍ରଣ ଏକ ବଡ ଆବଶ୍ୟକତା ହୋଇପଡିଛି । ଜନସଂଖ୍ୟାର ନିୟନ୍ତ୍ରଣ ଓ ପରିବାର ନିୟୋଜନ କ୍ଷେତ୍ରରେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଚିକିତ୍ସା ବିଜ୍ଞାନ ବିଭିନ୍ନ ପନ୍ଥାର ଉଦ୍‌ଭାବନ କରିଛି । ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ମହାମାରୀର ଯେଉଁ ଆତଙ୍କ ରହିଥିଲା ତାହା ସାରା ପୃଥିବୀରୁ ଦୂର ହୋଇପାରିଛି । ଆଧୁନିକ ଚିକିତ୍ସା ବିଜ୍ଞାନର ଗବେଷଣା ଯୋଗୁଁ ବହୁ ରୋଗର ନିୟନ୍ତ୍ରଣ ସମ୍ଭବ ହୋଇଛି । ଶରୀରରେ ରୋଗ କାହିଁକି ହୁଏ, ରୋଗର କାରଣ କ'ଣ ଓ ରୋଗର କିପରି ଚିକିତ୍ସା କରାଯାଇ ପାରିବ ଏହି ସବୁ ବିଷୟରେ ଯୁଗାନ୍ତକାରୀ ଉଦ୍ଭାବନ ଓ ଆବିଷ୍କାର ମାନ ଜୀବନକୁ ଅଧିକ ସୁଖପ୍ରଦ କରିବାରେ ସହାୟକ ହୋଇଛି । ପ୍ରତ୍ୟେକ ସହରରେ ପରିବେଶକୁ କିପରି ଉନ୍ନତ କରାଯାଇପାରିବ, ବର୍ଜ୍ୟବସ୍ତୁକୁ କିପରି ଆଧୁନିକ ପ୍ରଯୁକ୍ତି ସାହାଯ୍ୟରେ ନିଷ୍କାସନ ବା ଉପଯୋଗ କରାଯିବ, ଲୋକମାନେ କିପରି ପୁଷ୍ଟିକର ଖାଦ୍ୟ ପାଇପାରିବେ, ଜଳକୁ ବିଶୋଧନ କରାଯାଇ ଲୋକଙ୍କୁ ଯୋଗାଯିବ ଏ ସବୁ ନେଇ ଯଥେଷ୍ଟ ସଚେତନତା ବୃଦ୍ଧି ପାଇବାରେ ଲାଗିଛି । ଏସବୁ ପାଇଁ ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତି ଅପରିହାର୍ଯ୍ୟ ହୋଇପଡିଛି । ଏହି ପରିଣାମରୁ ସାରା ପୃଥିବୀରେ ଲୋକମାନଙ୍କର ଆୟୁଷ ବୃଦ୍ଧି ପାଇବାରେ ଲାଗିଛି । ଏକ ଅଧ୍ୟୟନରୁ ଜଣାଯାଏ ଯେ ଗତ ଦୁଇ ଶତାବ୍ଦୀ ଧରି ପ୍ରତି ଦଶବର୍ଷରେ ଲୋକମାନଙ୍କର ସାଧାରଣ ଆୟୁ ଦୁଇ ବର୍ଷ ଲେଖାଏଁ ବୃଦ୍ଧି ପାଇଚାଲିଛି । ବୟସ୍କ ଲୋକମାନଙ୍କର ସଂଖ୍ୟା ପ୍ରତି ଦେଶରେ ବଢ଼ି ବଢ଼ି ଚାଲିଛି । ଜନମଙ୍ଗଳକାରୀ ରାଷ୍ଟ୍ରମାନ ନାଗରିକମାନଙ୍କର ସ୍ୱାସ୍ଥ୍ୟରକ୍ଷା ଓ ଚିକିତ୍ସା ପାଇଁ ଯେପରି ବ୍ୟବସ୍ଥା କରୁଛନ୍ତି, ସେହିପରି ଆନ୍ତର୍ଜାତିକ ସ୍ତରରେ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ, ରେଡକ୍ରସ ପରି ଅନୁଷ୍ଠାନ ମାନ ସାରା ମନୁଷ୍ୟ ସମାଜର ସ୍ୱାସ୍ଥ୍ୟରକ୍ଷା ପାଇଁ ନିଜର ସଂପୃକ୍ତି ବ୍ୟକ୍ତ କରି ଆସୁଛନ୍ତି । ସ୍ୱାସ୍ଥ୍ୟ ରକ୍ଷା ନେଇ ଯେଉଁ ଉଚ୍ଚମାନର ଗବେଷଣା ହେଉଛି ତାହାର ସୁଫଳ ମଣିଷ ସମାଜର ଭାଗ୍ୟ ପରିବର୍ତ୍ତନ କରିପାରୁଛି ।

ଶିକ୍ଷା କ୍ଷେତ୍ରରେ ମଧ୍ୟ ନାନା ଉଲ୍ଲେଖନୀୟ ପରିବର୍ତ୍ତନ ଆଧୁନିକ ଯୁଗରେ ପରିଲକ୍ଷିତ ହୁଏ । ନିଜର ଜନଗଣଙ୍କ ମଧ୍ୟରେ ଗୁଣାତ୍ମକ ଶିକ୍ଷାର ପ୍ରସାର ଓ ସଚେତନ ନାଗରିକ ସମାଜର ବିକାଶ ପାଇଁ ପ୍ରତ୍ୟେକ ରାଷ୍ଟ୍ରରେ ପ୍ରୟାସ ହେଉଛି । ବିଭିନ୍ନ ବିଶ୍ୱ ବିଦ୍ୟାଳୟ ମାନଙ୍କରେ ଉଚ୍ଚ ମାନର ଗବେଷଣା ପାଇଁ ପରିବେଶ ସୃଷ୍ଟି ହେଉଛି, ବିଶ୍ୱ

ସ୍ତରରେ ଶିକ୍ଷାର ଯେଉଁ ମାନ ରହିଛି ତାହାର ସମକକ୍ଷ ହେବାକୁ ପ୍ରତ୍ୟେକ ଦେଶରେ କିଛି ପ୍ରୟାସ ହେଉଛି । ଯେଉଁ ଦେଶମାନଙ୍କରେ ଉତ୍କଟ ଦାରିଦ୍ର୍ୟ ରହିଛି ଓ ନିରକ୍ଷରତା ଦୂର ହୋଇ ପାରି ନାହିଁ ସେ ପାଇଁ ଆନ୍ତର୍ଜାତିକ ସ୍ତରରେ ଯୋଜନା କରାଯାଇ ଦେଶମାନଙ୍କୁ ସାହାଯ୍ୟ କରାଯାଉଛି । ସବୁ ମଣିଷ କିପରି ଶିକ୍ଷା ପାଇବେ, ନାଗରିକ ଶୃଂଖଳା ଓ ଦାୟିତ୍ୱ ବିଷୟରେ ସଚେତନ ହେବେ ଏ କ୍ଷେତ୍ରରେ ବହୁ ମାନବ ଦରଦୀ ଶିକ୍ଷାବିତ୍ ବିଭିନ୍ନ ଦିଗ୍‌ଦର୍ଶନ ଦେଉଛନ୍ତି । ବିକଶିତ ରାଷ୍ଟ୍ରମାନଙ୍କରେ ଶିକ୍ଷାର ମାନ ଯେପରି ଉନ୍ନତ ହୋଇଛି ସେହି ପରିବେଶ କିପରି ସବୁ ଦେଶରେ ଉପଲବ୍ଧ ହୋଇପାରିବ ସେ ପାଇଁ ସଚେତନତା ପ୍ରକାଶ ପାଉଛି । ଦେଶ ଦେଶ ଭିତରେ ବିଦ୍ୟାର୍ଥୀ ଆଦାନ ପ୍ରଦାନ ଏକ ସାଂସ୍କୃତିକ ସଂହତିର ପରିବେଶ ସୃଷ୍ଟି କରିପାରିଛି । ଗମନା ଗମନ କ୍ଷେତ୍ରରେ ଦ୍ରୁତ ଅଭିବୃଦ୍ଧି ଯୋଗୁ ସାରା ପୃଥିବୀରେ ଆନ୍ତର୍ଜାତିକ ମନୋଭାବ ବୃଦ୍ଧି ପାଇବାରେ ଲାଗିଛି । ଜ୍ଞାନ, ବିଜ୍ଞାନ, ଗବେଷଣା, ପାରସ୍ପରିକ ଆଦାନ ପ୍ରଦାନ ସାର୍ବଜନୀନ ହେବାରେ ଲାଗିଛି । କେଉଁଠି କିଛି ପ୍ରାକୃତିକ ବିପର୍ଯ୍ୟୟ ଦେଖା ଦେଲେ ସମଗ୍ର ପୃଥିବୀରୁ ସାହାଯ୍ୟ ଯାଇପାରୁଛି, ଅତ୍ୟାଧୁନିକ ପ୍ରଯୁକ୍ତି ସାହାଯ୍ୟରେ ପରିସ୍ଥିତିର ମୁକାବିଲା କରିବା ସମ୍ଭବ ହେଉଛି । ଏ ସବୁ କେବଳ ବିଜ୍ଞାନ ଓ ତଦାଶ୍ରୟୀ କାରିଗରୀ କୌଶଳ ସମ୍ଭବ କରାଇଛି ।

ବିଜ୍ଞାନ ଓ ପ୍ରଯୁକ୍ତିର ସଫଳତା ଗମନାଗମନ ଓ ଗଣମାଧ୍ୟମରେ ସବୁଠାରୁ ଅଧିକ ପରିଲକ୍ଷିତ ହୋଇଥାଏ । ଗୋଟିଏ ଶତାବ୍ଦୀ ଭିତରେ ଗମନାଗମନ କ୍ଷେତ୍ରରେ ଅଭୂତପୂର୍ବ ସାମର୍ଥ୍ୟ ମନୁଷ୍ୟ ହାସଲ କରିପାରିଛି । ବିମାନ ସେବା ପୃଥିବୀରୁ ଦୂରତାକୁ ଦୂର କରିପାରୁଛି । ଏପରିକି ସ୍ଥଳପଥ, ଆକାଶପଥ ଓ ଜଳପଥରେ ଗମନାଗମନ ଓ ପରିବହନ ବହୁ ସଫଳତା ସୃଷ୍ଟି କରିପାରିଛି । ଏସବୁ ପରେ ପଚାଶ ବର୍ଷ ଭିତରେ ମହାକାଶ ଯାତ୍ରା ସଫଳତାର ଯାତ୍ରା ପଥରେ ମଣିଷକୁ ଆହୁରି ଆଗକୁ ନେବାରେ ସାହାଯ୍ୟ କରିଛି । ସେହିଭଳି ଗଣମାଧ୍ୟମ କ୍ଷେତ୍ରରେ ଯେଉଁ ସଫଳତା ମିଳିଛି ତାହା ଅଚିନ୍ତନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ପୃଥିବୀର ଯେକୌଣସି ପ୍ରାନ୍ତରେ କୌଣସି ଘଟଣା ଘଟିଲେ ତାହା ସାରା ବିଶ୍ୱର ଲୋକମାନେ ଅବିଳମ୍ବେ ଜାଣିବାର ସୁଯୋଗ ପାଉଛନ୍ତି । ପୃଥିବୀର ଯେକୌଣସି ପ୍ରାନ୍ତରର ଲୋକମାନଙ୍କ ସହ ସମ୍ବନ୍ଧ ଅବିଳମ୍ବେ ପ୍ରତିଷ୍ଠା କରାଯାଇ ପାରୁଛି । ଏସବୁ ବିଜ୍ଞାନ ଓ ପ୍ରଯୁକ୍ତି ଯୋଗୁ ସମ୍ଭବ ହୋଇଛି ।

ବିଜ୍ଞାନ ଓ ପ୍ରଯୁକ୍ତିର ପ୍ରଭାବରେ ଯେଉଁ ଜୀବନଶୈଳୀର ବିକାଶ ହୋଇଛି ତାହାର ବହୁ ସକାରାତ୍ମକ ପ୍ରଭାବ ସତ୍ତ୍ୱେ କେତେକ ସମସ୍ୟା ଓ ସଂକଟ ବି ମୁଣ୍ଡ ଟେକିଛି ।

ଏ କ୍ଷେତ୍ରରେ ବଡ ସମସ୍ୟା ହେଉଛି ପରିବେଶ ପ୍ରଦୂଷଣ । ଜନସଂଖ୍ୟାର ଚାପ, କଳକାରଖାନାରୁ ନିର୍ଗତ ନାନା ରାସାୟନିକ ବର୍ଜ୍ୟ ବସ୍ତୁ, ଯାନ ବାହାନର ବହୁଳ ବ୍ୟବହାର ଯୋଗୁ ସେଥିରୁ ବାହାରୁଥିବା ବିଷାକ୍ତ ବାଷ୍ପ, କୃଷି କ୍ଷେତ୍ରରେ ପ୍ରୟୋଗ ହେଉଥିବା ରାସାୟନିକ ସାର ଓ କୀଟନାଶକ ଏସବୁ ପରିବେଶ ପ୍ରଦୂଷଣର ମୁଖ୍ୟ କାରଣ ମନେହୁଏ । ସେହିପରି ଜଂଗଲ ଜମିର କ୍ରମ ଅବକ୍ଷୟ, ଜୈବ ବିବିଧତା ନଷ୍ଟ ଇତ୍ୟାଦି କାରଣରୁ ପରିବେଶର ଅବକ୍ଷୟ ହୋଇଚାଲିଛି । ବାୟୁମଣ୍ଡଳ, ଜଳଉତ୍ସ ଏପରି ପ୍ରଦୂଷିତ ହେବାରେ ଲାଗିଛି ଯେ ଏହାର ପରିଣତି ଭବିଷ୍ୟ ପାଇଁ ଏକ ଭୟାନକ ଚିତ୍ର ଦେଉଛି । କୁହାଯାଉଛି ପୃଥିବୀର ବାୟୁ ମଣ୍ଡଳର ଉତ୍ତାପ ବୃଦ୍ଧି ପାଇବାରେ ଲାଗିଛି ଓ ଏହି ଧାରା ଯଦି ଅବ୍ୟାହତ ରହେ ତେବେ ପୃଥିବୀରୁ ଜୀବଜଗତ ଧ୍ୱଂସର ସମ୍ମୁଖୀନ ହେବ । ପରିବେଶ ପ୍ରଦୂଷଣ ଭବିଷ୍ୟତ ପାଇଁ ବହୁ ଆଶଙ୍କା ସୃଷ୍ଟି କରୁଛି । ତେବେ ଏହି ଆହ୍ୱାନର ସମ୍ମୁଖୀନ ହେବା ପାଇଁ ସେହି ବିଜ୍ଞାନର ଆଶ୍ରୟ ନେବାକୁ ହେବ । ଯେଉଁ ଯେଉଁ କାରଣ ସମୂହରୁ ପରିବେଶ ପ୍ରଦୂଷିତ ହୋଇଚାଲିଛି ସେହି ସବୁ କାରଣକୁ ପ୍ରତିହତ କରିବା ପାଇଁ ଅଧିକ ଜ୍ଞାନ କୌଶଳର ଆବଶ୍ୟକତା ରହିଛି । ବର୍ଜ୍ୟ ବସ୍ତୁର ଉପଯୋଗ କ୍ଷେତ୍ରରେ, ରାସାୟନିକ ବସ୍ତୁମାନଙ୍କର ବହୁଳ ବ୍ୟବହାରକୁ ସୀମିତ କରି ତାହାର ବିକଳ୍ପ ବାହାର କରିବାରେ ଓ କୃଷି କ୍ଷେତ୍ରରେ ଜୈବସାର ଓ ପରିବେଶ-ଉପଯୋଗୀ କୀଟନାଶକ ବାହାର କରିବା କ୍ଷେତ୍ରରେ ବିଜ୍ଞାନ ହିଁ ସାଧନ ହୋଇପାରିବ ।

ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତି ମଣିଷ ସମାଜକୁ ବହୁ ସୁଫଳ ଦେଇଛି, ତେବେ ବିଜ୍ଞାନର ଅପପ୍ରୟୋଗ ସଭ୍ୟତାର ଧ୍ୱଂସସାଧନ ପାଇଁ ବି ବାଟ ଦେଖାଇଛି । ବିଶେଷକରି ପୃଥିବୀର କେତେକ ରାଷ୍ଟ୍ର ଯେପରି ଆଣବିକ ଅସ୍ତ୍ର ନିର୍ମାଣ କରୁଛନ୍ତି ଓ ଆଣବିକ ଅସ୍ତ୍ର ନିର୍ମାଣ ନେଇ ଯେଉଁ ପ୍ରତିଯୋଗିତା ଲାଗିଛି ତାହା ହିଁ ସଭ୍ୟତା ପାଇଁ ଅଧିକ ଆହ୍ୱାନ ସୃଷ୍ଟି କରୁଛି । ନିଜ ଦେଶର ସୁରକ୍ଷା ଆଳରେ ପୃଥିବୀର କେତେକ ଦେଶ ବିରଳ ପ୍ରାକୃତିକ ସଂପଦକୁ ଧ୍ୱଂସ କରି ଚାଲିଛନ୍ତି । ଏହି ପୃଷ୍ଠଭୂମିରେ କେତେକ ମାନବହିତୈଷୀ ବୈଜ୍ଞାନିକ ଓ ଦାର୍ଶନିକ ବିଶ୍ୱ ସରକାରର ଭାବନା ଦେଇଛନ୍ତି । ସମଗ୍ର ବିଶ୍ୱ ଏକ ଶାସନତନ୍ତ୍ର ଦ୍ୱାରା ପରିଚାଳିତ ହେଲେ ସବୁ ଦିନ ପାଇଁ ଆଣବିକ ଯୁଦ୍ଧର ଆଶଙ୍କା ଦୂର ହୋଇପାରିବ । ଏ କ୍ଷେତ୍ରରେ ନାନା ଚିନ୍ତନ ଓ ନୂତନ ଦିଗ୍‌ଦର୍ଶନ ପ୍ରକାଶ ପାଇବାରେ ଲାଗିଛି ।

ସାମାଜିକ ସ୍ତରରେ ଶିଳ୍ପାୟନ ଓ ସହରାଧିକରଣ ଯୋଗୁଁ ପାରିବାରିକ ବନ୍ଧନ ଅତି ଶିଥିଳ ହୋଇଯାଉଛି । ମଣିଷ-ମଣିଷ ଭିତରର ସମ୍ବନ୍ଧ ଯାନ୍ତ୍ରିକ ହୋଇଉଠୁଛି । ବିବାହ-

ବିଚ୍ଛେଦ ଘଟଣା ସମାଜରେ ବୃଦ୍ଧି ପାଇବାରେ ଲାଗିଛି । ଅପରାଧ ପ୍ରବଣତା ବି ବଢ଼ିଚାଲିଛି । ଏସବୁ ସଭ୍ୟ ଜୀବନଧାରାର ପରିପନ୍ଥୀ ମନେହୁଏ । ଏହି ପୃଷ୍ଠଭୂମିରେ ଜ୍ଞାନ କିପରି ଉନ୍ନତ ସମାଜ ଗଠନରେ ସହାୟକ ହେବ ଓ ସମାଜରୁ ହିଂସା, ସନ୍ତ୍ରାସବାଦ, ସାଂପ୍ରଦାୟିକ ମନୋଭାବ ଓ ସଭ୍ୟତା ଧ୍ୱଂସକାରୀ ଅସ୍ତ୍ର ନିର୍ମାଣ ବନ୍ଦ ହୋଇପାରିବ ସେ ପାଇଁ ଏକ ସଚେତନ ବାୟୁମଣ୍ଡଳ ସୃଷ୍ଟି ହେବା ଆବଶ୍ୟକ । ବିଜ୍ଞାନକୁ ମାନବହିତ ଦିଗରେ ପ୍ରୟୋଗ କରିବା ଓ ଏକ ମାନବିକ ସମ୍ବେଦନଶୀଳ ଦୃଷ୍ଟିର ବିକାଶ ଘଟାଇବା ସାଂପ୍ରତିକ ବିଶ୍ୱର ବଡ ଆବଶ୍ୟକତା ମନେହୁଏ । ଏହା ହେଲେ ଏକ ସୁନ୍ଦର ଓ ପ୍ରୀତିପୂର୍ଣ୍ଣ ପୃଥିବୀ ସମ୍ଭବ ହୋଇପାରିବ ।

(୧.୧୦.୨୦୧୪)



# କନ୍ୟା - ସନ୍ତାନର ମୂଲ୍ୟ

ନିକଟରେ ୟୁନିସେଫ ସାହାଯ୍ୟରେ "ଭାଲ୍ୟୁ ଦି ଗାର୍ଲ- ଚାଇଲ୍ଡ୍" (କନ୍ୟା-ସନ୍ତାନକୁ ମୂଲ୍ୟ ଦିଅ) ଉପରେ ଏକ ଶିକ୍ଷାନୁଷ୍ଠାନରେ ଏକ ଆଲୋଚନା ଚକ୍ରକୁ ବକ୍ତା ଭାବରେ ନିମନ୍ତ୍ରିତ ହୋଇ ଯାଇଥିଲି । ଜାଣିବାକୁ ପାଇଲି ୟୁନିସେଫ ଏହି ସାମାଜିକ ସମସ୍ୟା ବିଷୟରେ ସଚେତନତା ପାଇଁ ଆର୍ଥିକ ସାହାଯ୍ୟ ଦେଉଛି । ସେଠାରେ ଏହି ପ୍ରସଙ୍ଗରେ ଯାହା ମନ୍ତବ୍ୟ ରଖିଥିଲି ତାହା ଏଠାରେ ଲେଖୁଛି ।

ମଣିଷ ଯେ ଏକ ସାମାଜିକ ପ୍ରାଣୀ ଏହା ସନ୍ଦେହର ଊର୍ଦ୍ଧ୍ୱରେ । ସମାଜ ବ୍ୟତୀତ କୌଣସି ବ୍ୟକ୍ତି ବଞ୍ଚି ରହିବା ସମ୍ଭବ ନୁହେଁ । ତେବେ ସାମାଜିକ ଜୀବନର ମୂଳ ଆଧାର ହେଉଛି ପରିବାର । ପରିବାର ନର-ନାରୀ ଓ ସେମାନଙ୍କର ସନ୍ତାନ ସନ୍ତତିକୁ ନେଇ ପରିପୁଷ୍ଟ ହୋଇଥାଏ । ପ୍ରାକୃତିକ ପ୍ରବୃତ୍ତିରୁ ପୁରୁଷ-ନାରୀ ଏକାଠି ରୁହନ୍ତି ଓ ପରିବାରର ଭିତ୍ତି ଏହି ସମ୍ପର୍କରୁ ଆରମ୍ଭ ହୋଇଥାଏ । ସାମାଜିକ ଜୀବନଧାରାରେ ପରିବାର ହିଁ ସର୍ବ ପୁରାତନ ଓ ଆଦିମ ସଙ୍ଗଠନ । ପାରିବାରିକ ସମ୍ପର୍କରୁ ଗୋଷ୍ଠୀ ଜୀବନ ଓ ବୃହତ୍ତର ସମାଜ ବିକାଶଲାଭ କରିବା ଦେଖାଯାଏ । ସମାଜରେ ନର-ନାରୀ ସମ୍ପର୍କରୁ ପାରିବାରିକ ଜୀବନ ଉଦ୍ଭବ ହେଉଥିଲେ ବି ନର-ନାରୀ ସମ୍ପର୍କ କ୍ଷେତ୍ରରେ ବିଭିନ୍ନ ସମାଜରେ ନାନା ବୈଷମ୍ୟ ବିଦ୍ୟମାନ । ସାମାଜିକ ବିକାଶଧାରାରେ ବିଭିନ୍ନ ସମାଜରେ ପୁରୁଷ ନିଜର ସ୍ୱାର୍ଥକୁ ଭିତ୍ତି କରି ଏକ ବୈଷମ୍ୟପୂର୍ଣ୍ଣ ସମାଜର ପରିକଳ୍ପନା କରିଛି । ସବୁ ସଭ୍ୟତାରେ ନର-ନାରୀ ସମ୍ପର୍କ କ୍ଷେତ୍ରରେ ପ୍ରାୟତଃ ଏକ ବିଷମତାର ଚିତ୍ର ମିଳିଥାଏ । ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓ ବିଶେଷକରି "ମାନବିକ ଅଧିକାରର ବିଶ୍ୱ ଘୋଷଣା" ଜନିତ ଏକ ମୂଲ୍ୟବୋଧକୁ ଆନ୍ତର୍ଜାତିକ ସ୍ୱୀକୃତି ପ୍ରଦାନ ପର୍ଯ୍ୟନ୍ତ ଅଧିକାଂଶ ସମାଜରେ ନରନାରୀ ସମ୍ପର୍କ କ୍ଷେତ୍ରରେ ସମାନତାର ଚିତ୍ର ଦେଖିବାକୁ ମିଳେନାହିଁ । ନର-ନାରୀ ସମ୍ପର୍କ ଜନିତ ବିଷମତା ଯେ ଈଶ୍ୱରୀୟ ବିଧାନ ଏହାକୁ ବିଭିନ୍ନ ଧର୍ମ ପରମ୍ପରାରେ ଗ୍ରହଣ କରାଯିବା

ଦେଖାଯାଏ । ଯେ କୌଣସି ଏକ ଅନ୍ୟାୟ ଓ ବୈଷମ୍ୟକୁ ସ୍ଥାୟୀ କରିବାକୁ ଧର୍ମର ଆଶ୍ରୟ ନିଆଯିବା ଏକ ସାଧାରଣ ମନସ୍ତତ୍ତ୍ୱ ଅଟେ । ଯାହାକୁ ଧାର୍ମିକ ଧାରାରେ ସ୍ୱୀକୃତି ଦିଆଯାଏ, ତାହା ଯେ ଈଶ୍ୱରୀୟ ବିଧାନ ଏହି ବାର୍ତ୍ତା ଜନ ମାନସକୁ ଆସିବାରୁ ତାହା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିପାରେ ନାହିଁ । ତେବେ ବିଭିନ୍ନ ମୁଖ୍ୟ ଧର୍ମ ମାନଙ୍କରେ ନାରୀର ସ୍ଥାନ ପୁରୁଷ ତୁଳନାରେ ନ୍ୟୂନ କରାଯିବାର କେତେକ ସାଧାରଣ ଅଭିବ୍ୟକ୍ତିକୁ ଉଲ୍ଲେଖ କରାଯାଇପାରେ । ଗୋଟିଏ ଧର୍ମର ବିଶ୍ୱାସ ଅନୁଯାୟୀ ନାରୀ ହେଉଛି ସବୁ ପାପର ମୂଳ ଓ ନରକର ପ୍ରତୀକ । ପୁରୁଷ ଉଦ୍ଦେଶ୍ୟରେ ନାରୀକୁ ଈଶ୍ୱର ପୁରୁଷ ଦେହର ଖଣ୍ଡିଏ ହାଡରୁ ତିଆରି କରିଛନ୍ତି । ଫଳତଃ ନାରୀ ପୁରୁଷ ସହ ସମାନ ହୋଇପାରିବ ନାହିଁ । ଅନ୍ୟ ଏକ ଧର୍ମରେ ବିଶ୍ୱାସ ରହିଛି ଯେ ଜଣେ ପୁରୁଷ ଚାରିଜଣ ମହିଳାଙ୍କୁ ବିବାହ କରିପାରିବ ଓ କୌଣସି ଅଦାଲତରେ ଜଣେ ପୁରୁଷର ସାକ୍ଷ୍ୟ ସହ ଚାରିଜଣ ନାରୀଙ୍କର ସାକ୍ଷ୍ୟ ସମାନ । ଅନ୍ୟ ଏକ ଧର୍ମର ବିଶ୍ୱାସ ଅନୁଯାୟୀ ନାରୀର ମହତ୍ତ୍ୱ ପୁତ୍ର ସନ୍ତାନ ଜନ୍ମ ପାଇଁ ଉଦ୍ଦିଷ୍ଟ । ସ୍ୱାମୀ ଯେତେ ମନ୍ଦ ସ୍ୱଭାବର ହେଲେ ବି ସେ ପତ୍ନୀର ଦେବତା ଓ ସ୍ୱାମୀର ସମସ୍ତ ବ୍ୟବହାରକୁ ସହ୍ୟ କରିବା ପତ୍ନୀର ଧର୍ମ । ଏପରିକି ଜଣେ ବିଶିଷ୍ଟ କବି ତାଙ୍କ ରଚିତ ପୁରାଣରେ କହିଛନ୍ତି ଯେ ନାରୀ ଢୋଲ ଓ ପଶୁ ପରି ତାଡନାର ଯୋଗ୍ୟ । ଆମର କେତେକ ସଂହିତାରେ ନାରୀକୁ ଏତେ ନ୍ୟୂନ କରାଯାଇଛି ଯାହା ଆଧୁନିକ ମୂଲ୍ୟବୋଧ ପରିପ୍ରେକ୍ଷୀରେ ଅତ୍ୟନ୍ତ ଅରୁଚିକର ଓ ଅସଭ୍ୟ ମନେ ହେବ । ଶାସ୍ତ୍ରରେ ଏହା ମଧ କୁହାଯାଇଛି ଯେ ନାରୀମାନେ ବାଲ୍ୟକାଳରେ ପିତାର ନିୟନ୍ତ୍ରଣରେ, ବିବାହ ପରେ ସ୍ୱାମୀର ଅଧୀନରେ ଓ ବାର୍ଦ୍ଧକ୍ୟ ଆସିଲେ ପୁତ୍ରର ଅଧୀନରେ ରହିବେ । ସେମାନେ କୌଣସି ସମୟରେ ନିଜର ସ୍ୱାଧୀନତା ଉପଭୋଗ କରିପାରିବେ ନାହିଁ ।

ପୁରୁଷ-ପ୍ରଧାନ ସମାଜ ବ୍ୟବସ୍ଥାରେ ଏହି ସବୁ ବିଚାରକୁ ଧାର୍ମିକ ସ୍ୱୀକୃତି ଦିଆଯାଇ ଏହାକୁ ସମାଜରେ ଦୃଢ଼ କରିବାକୁ ଉଦ୍ୟମ କରାଯାଇଛି । ସାମାଜିକ ଜୀବନଧାରା ଓ ମନସ୍ତତ୍ତ୍ୱକୁ ଧାର୍ମିକ ବିଚାର ଓ ଆବେଗ ଗଭୀର ଭାବେ ପ୍ରଭାବିତ କରୁଥିବାରୁ ଧାର୍ମିକ ବିଧି ବିରୁଦ୍ଧରେ ସ୍ୱର ଉଠାଇବା ସମ୍ଭବ ହୋଇ ନାହିଁ । ବସ୍ତୁତଃ ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ସବୁ ସଭ୍ୟତାରେ ନାରୀମାନେ ଭେଦଭାବର ଶିକାର ହୋଇଛନ୍ତି । ନାରୀ-ପୁରୁଷ ଭିତରେ ସମତା ଆଣିବା ଓ ଏକ ନ୍ୟାୟଯୁକ୍ତ ସମାଜ ଗଠନ କରିବାର ଭାବନାରୁ ନାରୀର ଅଧିକାର, ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ମୂଲ୍ୟ ପାଇଁ ବିଭିନ୍ନ ସମାଜରେ ନାରୀ-ମୁକ୍ତି ଆନ୍ଦୋଳନ ମୁଣ୍ଡ ଟେକିଛି ।

ତଥାପି ଆମ ଦେଶ ଭଳି ଏକ ପାରମ୍ପାରିକ ସମାଜ ବ୍ୟବସ୍ଥାରେ ନାରୀମାନେ

ପୂର୍ଣ୍ଣ ଗୌରବ ଓ ମର୍ଯ୍ୟାଦାର ଅଧିକାରୀ ହୋଇ ପାରି ନାହାନ୍ତି । ଝିଅମାନେ ପାଠ ପଢ଼ିଲେଣି, ସମାଜର ବିଭିନ୍ନ ସ୍ତରରେ ଗୁରୁତ୍ୱପୂର୍ଣ୍ଣ ପଦ ପଦବୀ ନେଲେଣି, ରାଜନୀତିରେ ବି କ୍ଷମତାର କେନ୍ଦ୍ର ହେଲେଣି ତଥାପି ସମାଜରେ ନାରୀ-ପୁରୁଷ ସମତାର ମୂଲ୍ୟବୋଧ ଜନ ଜୀବନରେ ସାର୍ବଜନୀନ ହୋଇପାରି ନାହିଁ । ନାନା ବାର, ବ୍ରତ, ଓଷା, ଉପବାସ କେବଳ ନାରୀମାନଙ୍କ ପାଇଁ ଖଞ୍ଜା ଯାଇଛି । ଆମ ମାନସିକତାରେ ମାନବିକ ମହତ୍ତ୍ୱ କ୍ଷେତ୍ରରେ ପୁଅ-ଝିଅଙ୍କୁ ସମାନ ଭାବରେ ସ୍ୱୀକୃତି ଦିଆଯାଇନାହିଁ । କୁମାରୀ ଝିଅମାନଙ୍କ ପାଇଁ କେତେ ଓଷା, ପୂଜାର ବ୍ୟବସ୍ଥା କରାଯାଇଛି ଏହି ବିଶ୍ୱାସରେ ଯେ ସେମାନେ ଏସବୁ କଲେ ଭବିଷ୍ୟତରେ ଉତ୍ତମ ସ୍ୱାମୀ ଲାଭ କରିପାରିବେ । ସେହିପରି ବିବାହ ପରେ ସ୍ୱାମୀର ମଙ୍ଗଳ ପାଇଁ ନାନା ଓଷା, ବ୍ରତ ଓ ଉପବାସ ସେମାନଙ୍କ ପାଇଁ ଖଞ୍ଜା ଯାଇଛି । ଏପରିକି ଆମ କିମ୍ବଦନ୍ତୀରେ ଯମଠାରୁ ନିଜର ପତିକୁ ଫେରାଇ ଆଣିବାର ନାରୀ-ଚରିତ୍ର ରହିଛି । ଏହି କିମ୍ବଦନ୍ତୀକୁ ଆଧାର କରି ସଧବାମାନେ ବ୍ରତ, ଓଷା, ଉପବାସ କରିବାର ପରମ୍ପରା ସୃଷ୍ଟି କରାଯାଇଛି । ତେବେ ଯମ ପାଖରୁ ମୃତ-ପତ୍ନୀକୁ ଫେରାଇ ଆଣିବାର ପୁରୁଷ ଚରିତ୍ର ଆମ ପୁରାଣ ବା କିମ୍ବଦନ୍ତୀରେ ନାହିଁ । ସେହିପରି ଉତ୍ତମ ପତ୍ନୀ ଲାଭ ପାଇଁ ପୁଅମାନେ ଓଷା, ବାର, ଉପବାସ କରିବାର ପରମ୍ପରା ଆମ ସମାଜରେ ନାହିଁ । ଏହି ସବୁ କାରଣରୁ ଏହା ନିଃସନ୍ଦେହ ଯେ ସମାଜରେ ନାରୀ-ପୁରୁଷ ସମତାର ମୂଲ୍ୟବୋଧ ଆମ ସଂସ୍କୃତିରେ ସୁଦୃଢ଼ ହୋଇନାହିଁ ।

ତେବେ ବର୍ତ୍ତମାନ ସମୟରେ ଏକ ବଡ ସାମାଜିକ ସମସ୍ୟା ଉଦ୍ରେକ ହୋଇଛି । ପରିସଂଖ୍ୟାନରୁ ଜଣାଯାଏ ଯେ ମହିଳା ମାନଙ୍କର ସଂଖ୍ୟା ଆଶାତୀତ ଭାବେ ହ୍ରାସ ପାଇଚାଲିଛି । ପୁଅ ଝିଅ ଲିଙ୍ଗ ଅନୁପାତ କ୍ଷେତ୍ରରେ ଝିଅମାନଙ୍କର ସଂଖ୍ୟା କ୍ରମବର୍ଦ୍ଧିଷ୍ଣୁ ଭାବେ ହ୍ରାସ ପାଇବାରେ ଲାଗିଛି । ପ୍ରକୃତି ସର୍ବଦା ନରନାରୀ ସଂଖ୍ୟାରେ ଏକ ସନ୍ତୁଳନ ରକ୍ଷା କରି ଆସୁଥିବାବେଳେ ପୁରୁଷ ପ୍ରଧାନ ମାନସିକତା ଯୋଗୁଁ ସମାଜରେ କନ୍ୟା ଭ୍ରୂଣ ହତ୍ୟା, କନ୍ୟା ହତାଦର ଇତ୍ୟାଦି କାରଣରୁ ଝିଅ ସଂଖ୍ୟା କମିବାରେ ଲାଗିଛି । ଓଡିଶା ପରିପ୍ରେକ୍ଷୀରେ ସାମ୍ପ୍ରତିକ ପରିସଂଖ୍ୟାନରୁ ଜଣାଯାଏ ଯେ ୧୦୦୦ ପୁଅରେ ଝିଅଙ୍କର ସଂଖ୍ୟା ହେଉଛି ୯୩୪ । ରାଷ୍ଟ୍ରୀୟ ସ୍ତରରେ ସେହିପରି ୧୦୦୦ ପୁରୁଷରେ ମହିଳାଙ୍କ ସଂଖ୍ୟା ୯୩୦ । ରାଜ୍ୟବ୍ୟାପୀ ଜନଗଣନା କ୍ଷେତ୍ରରେ ଭାରତରେ କେବଳ କେରଳ ଓ ପଣ୍ଡିଚେରୀକୁ ଛାଡିଦେଲେ ଅନ୍ୟ ସବୁ ରାଜ୍ୟରେ ପୁରୁଷଙ୍କ ସଂଖ୍ୟା ତୁଳନାରେ ନାରୀର ସଂଖ୍ୟା ହ୍ରାସ ପାଇବାରେ ଲାଗିଛି । ତେବେ ଚଣ୍ଡୀଗଡ, ଦିଲ୍ଲୀ, ହରିୟାନା, ଡାମନ ଡିଉ ଇତ୍ୟାଦି ରାଜ୍ୟମାନଙ୍କରେ ଏହି ସଂଖ୍ୟା ଉଦ୍‌ବେଗଜନକ ଭାବେ ହ୍ରାସ ପାଇବାରେ ଲାଗିଛି । ଏକ ହଜାର ପୁରୁଷ କ୍ଷେତ୍ରରେ ଚଣ୍ଡୀଗଡରେ ମହିଳାଙ୍କ ସଂଖ୍ୟା ୮୧୮, ଦିଲ୍ଲୀରେ

୮୦୬, ହରିୟାନାରେ ୮୭୭, ଡାମନ ଡିଉରେ ୬୧୮ । ଏହି ପରିସଂଖ୍ୟାନରୁ ସମସ୍ୟାଟି କେତେ ଉତ୍କଟ ହେବାକୁ ଯାଉଛି ତାହା ଅନୁମେୟ । ହୁଏତ ଏପରି ସ୍ଥିତି ସୃଷ୍ଟି ହେବାକୁ ଯାଉଛି ଯେତେବେଳେ ସବୁ ପୁଅମାନେ ଯୁବକ ଅବସ୍ଥାରେ ବିବାହ ପାଇଁ ଝିଅ ପାଇବେ ନାହିଁ ଫଳତଃ ଅନେକ ପରିବାର ଗଠନରୁ ବଞ୍ଚିତ ହେବେ । ଏପରି ସ୍ଥିତିରେ ସାମାଜିକ ପରିବେଶରେ ହିଂସା, ବ୍ୟଭିଚାର ଇତ୍ୟାଦି ନକାରାତ୍ମକ ଆଲୋଡନ ସୃଷ୍ଟି ହେବାର ସମ୍ଭାବନା ଆସିବ ।

ନର-ନାରୀ ସଂଖ୍ୟାରେ ଯେଉଁ ଅସନ୍ତୁଳନ ସୃଷ୍ଟି ହୋଇଛି ତାହାର କାରଣ ଅନୁଶୀଳନରୁ ଜଣାଯାଏ ଯେ କନ୍ୟା ଭୃଣ ହତ୍ୟା ଓ କନ୍ୟ ମୃତ୍ୟୁହାର ଅଧିକ ଯୋଗୁଁ ଏହି ସ୍ଥିତି ଆସିଛି । ଆଧୁନିକ ଚିକିତ୍ସା ବିଜ୍ଞାନ ସାହାଯ୍ୟରେ ଜନ୍ମ ପୂର୍ବରୁ ଶିଶୁର ଲିଙ୍ଗ ନିରୂପଣ କରାଯାଉଛି । ଯେଉଁ ଦମ୍ପତି ଝିଅ ଜନ୍ମ ହେବାର ସୂଚନା ପରୀକ୍ଷାରୁ ଜାଣି ପାରୁଛନ୍ତି ସେମାନେ କନ୍ୟା ଭୃଣକୁ ନଷ୍ଟକରି ପାରୁଛନ୍ତି । ଏପରିକି ଝିଅଟିଏ ଜନ୍ମ ହେବାପରେ ଯଦି ପରିବାରରେ ତା ପ୍ରତି ଉପଯୁକ୍ତ ଯତ୍ନ, ଚିକିତ୍ସା କରାନଯାଏ ତେବେ ଶିଶୁଟି ମୃତ୍ୟୁ ମୁଖରେ ପଡିବାର ସମ୍ଭାବନା ଥାଏ । ମଣିଷ ଆବଶ୍ୟକ ବେଳେ ଚିକିତ୍ସା ନ ପାଇଲେ କୌଣସି ଶିଶୁ ବଞ୍ଚିପାରିବ ନାହିଁ । ଯେଉଁ ପରିବାରରେ କନ୍ୟା-ଶିଶୁ ପ୍ରତି ଅଯତ୍ନ ପ୍ରକାଶ ପାଏ ଓ ଚିକିତ୍ସାର ସୁବିଧା ଉପଲବ୍ଧ ହୋଇପାରେ ନାହିଁ ଶିଶୁଟି ମୃତ୍ୟୁ ମୁଖରେ ପଡିବାର ସମ୍ଭାବନା ବଢ଼ିଯାଏ । ନାନା ସାମାଜିକ ଓ ସାଂସ୍କୃତିକ କାରଣରୁ ଝିଅ ପରିବର୍ତ୍ତେ ପୁଅ ଜନ୍ମ ହେବାକୁ ବାପା-ମା ଅଧିକ ଆଗ୍ରହ ଦେଖାନ୍ତି । କନ୍ୟା ଭୃଣ ନଷ୍ଟ ଜନିତ କାର୍ଯ୍ୟ କ୍ଷେତ୍ରରେ ଏକ ପୁରୁଷ-ପ୍ରଧାନ ସମାଜରେ ବାପା-ମା ଝିଅ ପରିବର୍ତ୍ତେ ପୁଅ ଜନ୍ମକୁ ଅଧିକ ପ୍ରାଧାନ୍ୟ ଦେବାରେ ତିନୋଟି କାରଣକୁ ଉଲ୍ଲେଖ କରାଯାଇପାରେ । ପ୍ରଥମରେ ଏକ ପାରମ୍ପାରିକ ସମାଜରେ ଯେଉଁଠି ଧାର୍ମିକ ଆବେଗର ପ୍ରଭାବ ଯଥେଷ୍ଟ ଥାଏ ସେଠାରେ ଲୋକମାନେ କେତେକ ବିଶ୍ୱାସଦ୍ୱାରା ପ୍ରଭାବିତ ହୁଅନ୍ତି । ଆମ ଧର୍ମରେ ଯେଉଁ ପାରଲୌକିକ ଜୀବନଦୃଷ୍ଟି ରହିଛି ସେଥିରେ ବିଶ୍ୱାସ ରହିଛି ଯେ ପୁଅ ହିଁ ପୂର୍ବପୁରୁଷଙ୍କୁ ପିଣ୍ଡଦାନ କରିପାରିବ, ମୃତ୍ୟୁରେ ମୁଖାଗ୍ନି ଦେବ ଓ ପୁତ୍ର ସନ୍ତାନ ଦ୍ୱାରା ବଂଶ ରକ୍ଷା ସମ୍ଭବ ହେବ । ଏହି ଧାର୍ମିକ ବିଶ୍ୱାସର ପ୍ରଭାବରୁ ଲୋକମାନେ ଝିଅ ଅପେକ୍ଷା ପୁଅକୁ ଅଧିକ ଗୁରୁତ୍ୱ ଦେବା ଏକ ମନସ୍ତାତ୍ତ୍ୱିକ କାରଣ ଅଟେ । ଦ୍ୱିତୀୟରେ ଆମ ସାମାଜିକ ବ୍ୟବସ୍ଥାରେ ଝିଅର ସାମାଜିକ ସୁରକ୍ଷା ପାଇଁ ବାପା-ମା ସର୍ବଦା ଚିନ୍ତିତ ରହନ୍ତି, ପୁଅ ପାଖରେ ଏହି ପ୍ରଶ୍ନ ଉଠିନଥାଏ । ଝିଅର ବୟସ ବୃଦ୍ଧି ସହିତ ତାର ସାମାଜିକ ସୁରକ୍ଷାର ପ୍ରଶ୍ନଟି ଆସେ । ଯଦି କୌଣସି କ୍ଷେତ୍ରରେ ଝିଅଟିଏ ଅସମ୍ମାନର ସମ୍ମୁଖୀନ ହୁଏ ଏହା ପାରିବାରିକ ମର୍ଯ୍ୟାଦାରେ ଆଞ୍ଚ

ଆଣିଥାଏ । ଆମର ସାମାଜିକ ଜୀବନରେ ଝିଅଙ୍କର ଶୋଷଣ, ଧର୍ଷଣ, ଅସମ୍ମାନ ପରି ଅନୈତିକତାର ପ୍ରଭାବ ରହିବା ଏକ ସାଧାରଣ ଘଟଣା ଅଟେ । ଦ୍ୱିତୀୟରେ ଝିଅ ବିବାହ ପାଇଁ ସ୍ଥଳ ବିଶେଷରେ ଯୌତୁକ ଏକ ବଡ ସମସ୍ୟା ଭାବେ ଆସେ । ଅନେକ ପରିବାରରେ ଝିଅ ପାଇଁ ଉପଯୁକ୍ତ ପାତ୍ରଟିଏ ପାଇବାକୁ ପ୍ରଚୁର ଯୌତୁକ ଦେବାକୁ ପଡୁଥିବାରୁ ସାଧାରଣତଃ କେତେକ ପରିବାରର ଆର୍ଥିକ ସ୍ଥିତି ଦୋହଲି ଯାଏ । ଝିଅପାଇଁ ଯୌତୁକ ଦେବାକୁ ହୁଏ, ଅଥଚ ପୁଅ ଥିଲେ ଯୌତୁକ ମିଳିବାର ସମ୍ଭାବନା ଥାଏ । ଏହିପରି ନାନା କାରଣ ଯୋଗୁଁ ଝିଅ ପରିବର୍ତ୍ତେ ପୁଅ ଚାହିଁବା ସାମାଜିକ ମନସ୍ତତ୍ତ୍ୱରେ ପ୍ରଭାବଶାଳୀ ଥିବା ମନେହୁଏ । ଭ୍ରୁଣ ହତ୍ୟା, ଝିଅ ହତାଦର ଜନିତ ମୃତ୍ୟୁ ଇତ୍ୟାଦି ଏହିପରି କାରଣ ଯୋଗୁଁ ହେଉଥିବା ଅନୁମାନ କରାଯାଏ ।

ଏହିପରି ଯେଉଁ ସାମାଜିକ ପରିବେଶ ରହିଛି ସେଥିରେ କନ୍ୟା ଅପେକ୍ଷା ପୁତ୍ରର ମହତ୍ତ୍ୱକୁ ଗୁରୁତ୍ୱ ଦିଆଯିବା ହେତୁ ଗୋଟିଏ ସାମାଜିକ ସମସ୍ୟା ଉତ୍କଟ ହେବାକୁ ଯାଉଛି । ପୁନଶ୍ଚ ଏକ ଜାତିଭିତ୍ତିକ ସମାଜରେ ଝିଅମାନଙ୍କର ସ୍ୱାଭିମାନ, ଆତ୍ମ ମର୍ଯ୍ୟାଦା ଓ ମାନବିକ ଅଧିକାରକୁ ମହତ୍ତ୍ୱ ଦିଆଯାଏ ନାହିଁ । କେତେକ ରାଜ୍ୟରେ ଗୋଟିଏ ଝିଅ କିପରି ବଞ୍ଚିବ ବା ଜୀବନ ନିର୍ବାହ କରିବ, କାହାକୁ ବିବାହ କରିବ ତାହା ତାର ନିଷ୍ପତ୍ତି ଉପରେ ନିର୍ଭର କରେ ନାହିଁ । ବରଂ ପୁରୁଷ-କୈନ୍ଦ୍ରିକ ଖାପ ବା ଜାତି ପଞ୍ଚାୟତ ଝିଅର ଭବିଷ୍ୟତ ବିଷୟରେ ହିଁ ନିଷ୍ପତ୍ତି ନେବେ । ଯଦି କେହି ଶିକ୍ଷା, ବିବାହ, କର୍ମ ସଂସ୍ଥାନ କ୍ଷେତ୍ରରେ ପଞ୍ଚାୟତର ନିଷ୍ପତ୍ତିକୁ ଅବମାନନା କରେ, ତେବେ ସେଥିପାଇଁ ତାକୁ ଭୟଙ୍କର ପରିଣତିର ସମ୍ମୁଖୀନ ହେବାକୁ ହେବ । ଝିଅମାନେ ଏବେ ବି ଏହିସବୁ କାରଣରୁ ସାମାଜିକ ଦାସତ୍ୱ ଭିତରେ ରହିବାକୁ ବାଧ ହୋଇଥାନ୍ତି ।

ବସ୍ତୁତଃ ଏହି ସ୍ଥିତିରେ ଆମର ମୂଲ୍ୟବୋଧ, ମାନସିକତାରେ ପରିବର୍ତ୍ତନ ଆବଶ୍ୟକ । ପ୍ରତ୍ୟେକ ବ୍ୟକ୍ତିର ସ୍ୱତନ୍ତ୍ରତା, ମାନବିକ ମହତ୍ତ୍ୱ ଓ ସମ୍ମାନର ସହ ବଞ୍ଚିବାର ଅଧିକାରକୁ ସମାଜରେ ବ୍ୟାପକ କରିବାକୁ ହେବ । ନର-ନାରୀ ସମତା ପାଇଁ ବ୍ୟକ୍ତି ଓ ସମାଜର ଦୃଷ୍ଟିଭଙ୍ଗୀ ଓ ମାନସିକତାରେ ପରିବର୍ତ୍ତନ ଆବଶ୍ୟକ । ଲିଙ୍ଗ ନିର୍ବିଶେଷରେ ଏକ ସମତାଭିତ୍ତିକ ସମାଜ ପାଇଁ ନୂଆ ମୂଲ୍ୟବୋଧ ଓ ମାନବବାଦୀ ଦୃଷ୍ଟିର ବିକାଶ କରିବାକୁ ହେବ । ଯେଉଁ ଯେଉଁ କାରଣରୁ ମହିଳାମାନେ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଛନ୍ତି ସେ ସବୁର ଦୂରୀକରଣ ପାଇଁ ରାଷ୍ଟ୍ରୀୟ ସ୍ତରରେ ବିଚାର ବିମର୍ଶ ଓ ପନ୍ଥା ବାହାର କରିବାକୁ ପଡିବ । ବିଶେଷକରି ନାରୀମାନେ ଅଧିକ ନିରକ୍ଷର ରହିବା, ପୁଅଙ୍କ ତୁଳନାରେ ଝିଅମାନେ ଅଧିକ ସଂଖ୍ୟାରେ ପାଠ ଛାଡିବା ଇତ୍ୟାଦି କାରଣକୁ ପ୍ରୟାସ ଦ୍ୱାରା ଦୂର କରାଯାଇ ପାରିବ ।

ବ୍ୟକ୍ତିଗତ ସ୍ୱାଧୀନତା, ନିରାପତ୍ତା, ଭୟଶୂନ୍ୟତା, ସହଶିକ୍ଷା, ଚିକିତ୍ସା ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନର ପରିବେଶ ସୃଷ୍ଟି କରିବାକୁ ହେବ । ପାଶ୍ଚାତ୍ୟ ଜଗତରେ ଏସବୁ କିପରି ସମ୍ଭବ ହୋଇଛି ଅଥଚ ଆମ ଦେଶରେ ଏହା କାହିଁକି ହୋଇପାରୁନାହିଁ ତାହାର ବି ଅନୁଶୀଳନ ଆବଶ୍ୟକ ।

ବସ୍ତୁତଃ ସାମାଜିକ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଏଠାରେ ଜରୁରୀ ମନେହୁଏ । କେବଳ ଆଇନଦ୍ୱାରା ଏକ ସାମାଜିକ ସମସ୍ୟାକୁ ଦୂର କରିବା ସମ୍ଭବ ନୁହେଁ । ମଣିଷର ମୂଲ୍ୟ, ବ୍ୟକ୍ତି ମର୍ଯ୍ୟାଦାବୋଧ ଓ ମାନବିକ ଅଧିକାର ପରି ମୂଲ୍ୟବୋଧ ଯେ ଗୁଣାତ୍ମକ ଜୀବନର ମାନଦଣ୍ଡ ଏହି ଭାବନାକୁ ସମାଜରେ ବ୍ୟାପକ କରାଇଲେ ଏହି ସମସ୍ୟାକୁ ପ୍ରତିହତ କରିହେବ ବୋଲି ଆଶା କରାଯାଏ ।

(୭.୧୧.୧୨)



# ଯୁଦ୍ଧ ରହିତ ପୃଥିବୀ, ମଧୁମୟ ବିଶ୍ୱ

କିଛିଦିନ ତଳେ ଜଣେ ମହାକାଶଯାତ୍ରୀ ମହାକାଶ ଯାତ୍ରାରୁ ଫେରି ଆସିବା ପରେ ଏକ ଶିକ୍ଷାନୁଷ୍ଠାନର ଶିକ୍ଷାର୍ଥୀମାନଙ୍କ ସହ ଆଲୋଚନା ଅବସରରେ ସେ କହିଥିଲେ ଯେ ତାଙ୍କର ମହାକାଶ-ଅନୁଭୂତି ପୃଥିବୀ ପ୍ରତି ତାଙ୍କ ଦୃଷ୍ଟିଭଙ୍ଗୀରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଛି । ସେ ଯେତେବେଳେ ମହାକାଶରେ ଥିଲେ ପୃଥିବୀକୁ ଅବଲୋକନ କଲାବେଳେ ସେ କୌଣସି ଦେଶର ସୀମା ଦେଖୁନଥିଲେ ବା ତାଙ୍କର ରାଷ୍ଟ୍ରୀୟତା ତାଙ୍କ ମନରେ ସ୍ଥାନ ପାଉନଥିଲା । ସେ ଭାବୁଥିଲେ ମଣିଷ ଜାତି ଏକ ଓ ସେ ହେଉଛନ୍ତି ପୃଥିବୀ ରୂପକ ଗ୍ରହର ଜଣେ ଅଧିବାସୀ । ପୃଥିବୀର ଜଣେ ପ୍ରତିନିଧି ଭାବେ ମହାକାଶ ସମ୍ପର୍କୀୟ ଜ୍ଞାନ ଆହରଣ କରିବାକୁ ସେ ଯାଉଛନ୍ତି । ସଭ୍ୟ ଜୀବନଦୃଷ୍ଟିର ବିକାଶ ପୃଷ୍ଠଭୂମିରେ ଏହି ମନୋଭାବ "ଆମେ ସମସ୍ତେ ପୃଥିବୀବାସୀ" ଏକ ବଡ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଭିନ୍ନ ସଭ୍ୟତାରେ କେତେକ ମାନବଦରଦୀ ଦାର୍ଶନିକ ବିଶ୍ୱକୁ ଏକ ପରିବାର ବୋଲି ଭାବନା ସୃଷ୍ଟି କରିଛନ୍ତି ବା ମଣିଷ-ଜାତିର ଏକତ୍ୱ ବିଷୟରେ ଚିନ୍ତା ପ୍ରକଟ କରିଛନ୍ତି । ହେଲେ ତାହା ବାସ୍ତବପକ୍ଷେ ପୃଥିବୀର ଜନଜୀବନରେ ପ୍ରତିଫଳିତ ହୋଇନାହିଁ । ଆମର ଏହି ପୃଥିବୀ ଓ ତାର ଜନଗଣ ଧର୍ମ, ଜାତି, ଜାତୀୟତା, ଭାଷା ଇତ୍ୟାଦିକୁ ନେଇ ନାନା ଭାବରେ ବିଭାଜିତ ହୋଇଆସିଛନ୍ତି । ଏ ସବୁକୁ ଆଧାର କରି ସଂସାରରେ ବହୁ ହିଂସା, ପ୍ରତିହିଂସା, ଯୁଦ୍ଧ, ବିଭୀଷିକା, ବିଦ୍ୱେଷର ମାନସିକତା ରହିଆସିଛି । ଅବଶ୍ୟ ଏକଥା ଅନସ୍ୱୀକାର୍ଯ୍ୟ ଯେ ସାରା ପୃଥିବୀରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରଠାରୁ ଏକ ଅନ୍ତରାଷ୍ଟ୍ରୀୟ ଓ ଆନ୍ତର୍ଜାତିକ ମନୋଭାବର କ୍ରମବିକାଶ ହୋଇଆସିଛି । ଏହା ସହିତ ପୃଥିବୀରେ ଯେଉଁଠି ଯାହା ନୂତନ ଜ୍ଞାନ ବା ପ୍ରଯୁକ୍ତିର ଉଦ୍ଭାବନ ହେଉଛି, କାଳକ୍ରମେ ସାରା ପୃଥିବୀର ଜନଗଣ ତାର ସୁଫଳ ଲାଭ କରୁଛନ୍ତି । ବିଶେଷକରି ଧନୀ ଓ ବିକଶିତ ରାଷ୍ଟ୍ରମାନଙ୍କରେ ବିଜ୍ଞାନ କ୍ଷେତ୍ରରେ ଯେଉଁ ସୂକ୍ଷ୍ମାତିସୂକ୍ଷ୍ମ ଗବେଷଣାର ପରିବେଶ ରହିଛି, ତାହାର ଫଳସ୍ୱରୂପ ଜ୍ଞାନ ଓ ପ୍ରଯୁକ୍ତିର ଦିଗନ୍ତ ବିସ୍ତାରିତ

ହୋଇଚାଲିଛି । ଏକଦା ପୃଥିବୀରେ ରହିଥିବା ବହୁ ମାରାତ୍ମକ ବ୍ୟାଧି ଯାହା ଗଣମୃତ୍ୟୁର ପରିବେଶ ସୃଷ୍ଟି କରୁଥିଲା ସେସବୁକୁ ନିୟନ୍ତ୍ରଣ କରାଯାଇଛି । ସାରା ପୃଥିବୀକୁ ପୋଲିଓ ମୁକ୍ତ, କୁଷ୍ଠ ମୁକ୍ତ ବା ଯକ୍ଷ୍ମାମୁକ୍ତ କରିବାକୁ ଆନ୍ତର୍ଜାତିକ ପ୍ରୟାସରୁ ବହୁ ଗରିବ ଓ ବିକଶିତ ରାଷ୍ଟ୍ରର ଜନଗଣ ବି ବେଶ୍ ସୁଫଳ ଲାଭ କରୁଛନ୍ତି । ବିଶ୍ୱ ସ୍ୱାସ୍ଥ୍ୟ ସଂଘ, ରେଡକ୍ରସ ଇତ୍ୟାଦି ଅନୁଷ୍ଠାନ ମଣିଷ ଜାତିକୁ ଏକକ ସୂତ୍ରରେ ନେଇ ଯେକୌଣସି ଅଞ୍ଚଳର ସ୍ୱାସ୍ଥ୍ୟଗତ ସମସ୍ୟାକୁ ଏକ ମାନବୀୟ ସମସ୍ୟା ଭାବରେ ବିଚାର କରି ତାହାକୁ ଆନ୍ତର୍ଜାତିକ ସ୍ତରରେ ସମାଧାନ କରିବାକୁ ପ୍ରୟାସ କରୁଛନ୍ତି । ଏହା ସହିତ ଏଡସ୍, କ୍ୟାନସର ପରି ମାରାତ୍ମକ ରୋଗମାନଙ୍କୁ ନିୟନ୍ତ୍ରଣ କରିବାକୁ ବିଶ୍ୱସ୍ତରରେ ଗବେଷଣା ଚାଲୁରହିଛି । ସେହିପରି ଆଧୁନିକ ପ୍ରଯୁକ୍ତି ସାହାଯ୍ୟରେ ସାରା ବିଶ୍ୱ ଏକ ଗ୍ରାମରେ ରୂପାନ୍ତରିତ ହୋଇଚାଲିଛି । ଗତ କେତୋଟି ଦଶନ୍ଧି ଭିତରେ ମୋବାଇଲ ଫୋନ୍, ଇଣ୍ଟରନେଟ୍, ସାଟେଲାଇଟ୍ କମ୍ୟୁନିକେସନ ଇତ୍ୟାଦି ସ୍ତରରେ ଏପରି ଅଭୂତପୂର୍ବ ବିକାଶ ହୋଇଛି ତାହା ସାରା ପୃଥିବୀର ଦୂରତାକୁ କମାଇ ଦେବାରେ ଲାଗିଛି । ସଂସ୍କୃତି-ସଂସ୍କୃତି, ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନର ପରିବେଶରୁ ପ୍ରତି ସଂସ୍କୃତି, ସଭ୍ୟତାରେ ରହିଥିବା ମହନୀୟ ଭାବକୁ ସାରା ବିଶ୍ୱର ଆଦର୍ଶ ଭାବେ ସ୍ୱୀକାର କରାଯାଉଛି । ମଣିଷ ଜାତିର ମଙ୍ଗଳ ପାଇଁ ଯେଉଁଠି କିଛି ମହତ୍ତର ଭାବନା, ଜ୍ଞାନ କୌଶଳ ଓ ମାନବିକ ଆଦର୍ଶ ରହିଛି ତାହା ଧୀରେ ଧୀରେ ସାର୍ବଜନୀନ ହେବାରେ ଲାଗିଛି । ଜ୍ଞାନ, ବିଚାରବୋଧ ଓ ମାନବିକ ମୂଲ୍ୟବୋଧର ବିକାଶ ଦିଗରେ ଯେଉଁମାନେ ଅମୂଲ୍ୟ ଅବଦାନ ଦେଇଛନ୍ତି ସେମାନେ ବିଶ୍ୱମାନବର ସ୍ୱୀକୃତି ଲାଭ କରିଛନ୍ତି । ବୁଦ୍ଧ, ସକ୍ରେଟିସ୍, ଗାଲିଲିଓ, ନିଉଟନ, ଆଇନଷ୍ଟାଇନ୍, ମହାତ୍ମାଗାନ୍ଧୀ, ବର୍ଟ୍ରାଣ୍ଡ ରସେଲ....ଙ୍କ ପରି ବ୍ୟକ୍ତିଗଣ କୌଣସି ଧର୍ମ, ଜାତୀୟତା, ଭାଷା, ଗୋଷ୍ଠୀର ପ୍ରତିନିଧିତ୍ୱ କରୁନାହାନ୍ତି, ସେମାନେ ମଣିଷଜାତିର ଆଦର୍ଶ ଭାବେ ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି । ସଭ୍ୟତାର ବିକାଶ ଦିଗରେ ଯେଉଁମାନଙ୍କର ମହାନ ଓ ସୃଜନଶୀଳ ଅବଦାନ ରହିଛି, ସେମାନେ ମଣିଷଜାତିର ଜ୍ୟୋତିଷ୍କ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସଭ୍ୟତାର କ୍ରମୋନ୍ନତି, ଗୁଣାତ୍ମକ ଜୀବନର ବିକାଶ, ମାନବିକ ମୂଲ୍ୟବୋଧର ପ୍ରସାର, ଆନ୍ତର୍ଜାତିକ ଚେତନାର ଦୃଢ଼ୀକରଣ ଓ ବିଶ୍ୱଦୃଷ୍ଟି ଜନିତ ଜୀବନ ଦର୍ଶନ ପାଇଁ ଏସବୁ ନାନା ପ୍ରେରଣା ଯୋଗାଇଛି । ତଥାପି ଆମ ସଂସାରରେ ନାନା ବୈଷମ୍ୟ, ଶୋଷଣ, ଭେଦଭାବ, ସଂଘର୍ଷ, ସନ୍ତ୍ରାସବାଦ ଓ ବିଦ୍ୱେଷ ରହିଆସିଛି । ଏ କ୍ଷେତ୍ରରେ ସବୁଠାରୁ ଯେଉଁ ଗୁରୁତ୍ୱପୂର୍ଣ୍ଣ ଆବେଗଦ୍ୱାରା ମଣିଷ ସମାଜରେ ବିଦ୍ୱେଷ, ସନ୍ଦେହ ଓ ଅବିଶ୍ୱାସର

ବାତାବରଣ ଆସୁଛି ସେ ମଧ୍ୟରେ ଧାର୍ମିକ ଆବେଗ ଓ ରାଷ୍ଟ୍ରୀୟତା ସବୁଠାରୁ ଅଧିକ ପ୍ରଭାବଶାଳୀ କହିଲେ ଅତ୍ୟୁକ୍ତି ହେବନାହିଁ । ବହୁ ଅତୀତରେ ପ୍ରତ୍ୟେକ ଧର୍ମ ଗୋଟିଏ ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡର ଏକ ସାଂସ୍କୃତିକ ଜାଗରଣ ଭାବେ ବିକଶିତ ହୋଇଥିଲା । ସାମାଜିକ ଜୀବନ ପ୍ରବାହକୁ ସୁନିୟନ୍ତ୍ରିତ ଶୃଙ୍ଖଳା, ଆଦର୍ଶବୋଧ ଓ ସାଂସ୍କୃତିକ ଏକତ୍ୱବୋଧରେ ସୁସଂହତ କରିବାରେ ଧର୍ମର ଯଥେଷ୍ଟ ପ୍ରଭାବ ରହିଥିଲା । ଏହା ସହିତ ନୀତି-ନୈତିକତା, ଜୀବନର ପାରଲୌକିକ ମୂଲ୍ୟ, ଈଶ୍ୱରୀୟ ବ୍ୟବସ୍ଥା ଜନିତ ନାନା ତାତ୍ତ୍ୱିକ ଚିନ୍ତନ ଏବଂ ଜୀବନ ଓ ଜଗତ ନେଇ କିଛି ଦାର୍ଶନିକ ବିଚାରବୋଧ ପ୍ରତ୍ୟେକ ଧର୍ମକୁ ଆଧାର କରି ସୃଷ୍ଟି ହୋଇଥିଲା । ତେବେ ସଭ୍ୟତାର ବିକାଶଧାରାରେ ବିଜ୍ଞାନର ବିକାଶ ଓ ସଭ୍ୟତା ସଭ୍ୟତା ଭିତରେ ଆଦାନ ପ୍ରଦାନ ଯୋଗୁଁ ଧାର୍ମିକ ବ୍ୟବସ୍ଥାକୁ ଆହ୍ୱାନ ଆସିଲା । ବିଭିନ୍ନ ଧର୍ମର ଅନେକ ତାତ୍ତ୍ୱିକ ବିଶ୍ୱାସକୁ ବିଜ୍ଞାନ ମିଥ୍ୟା ବୋଲି ପ୍ରମାଣ କଲା । ଧର୍ମର ପୃଷ୍ଠପୋଷକତାରେ ରହିଥିବା ସାମନ୍ତବାଦ, ରାଜତନ୍ତ୍ର ବା ଥିଓକ୍ରାସି ନୂତନ ଚିନ୍ତା ଚେତନାରେ ଅପାଂକ୍ତେୟ ଓ ଅନୈତିକ ବୋଧହେଲା । କାଳକ୍ରମେ ଗଣତାନ୍ତ୍ରିକ ବିଚାରବୋଧ, ସମତାଭିତ୍ତିକ ଜୀବନ ଦୃଷ୍ଟି, ମାନବିକ ମହତ୍ତ୍ୱ, ବ୍ୟକ୍ତି ମର୍ଯ୍ୟାଦାବୋଧ ଇତ୍ୟାଦି ବିଚାରର ଅଭ୍ୟୁଦୟ ହେଲା ଯାହାକୁ ମାନବବାଦର ଅନ୍ତର୍ନିହିତ ତାତ୍ପର୍ଯ୍ୟ ଭାବେ ଗ୍ରହଣ କରାଗଲା । ଧର୍ମ ମଣିଷ ଜାତି ଭିତରେ ଭେଦଭାବ, ବିଦ୍ୱେଷ ଭାବ ସୃଷ୍ଟି କରୁଥିବାବେଳେ ମାନବବାଦ ସାରା ମଣିଷଜାତିକୁ ଏକତ୍ୱର ବନ୍ଧନରେ ଆବଦ୍ଧ କରିବାକୁ ପ୍ରୟାସ କଲା । ତେବେ ଯେଉଁଠି ଧାର୍ମିକ ଆବେଗ ମାନବବାଦ, କରୁଣାଭାବ, ସମ୍ବେଦନଶୀଳ ଜୀବନ ଦୃଷ୍ଟି ଓ ଅହିଂସା ପରି ମୂଲ୍ୟବୋଧର ପ୍ରସାର ଦିଗରେ ସହାୟକ, ସେହି ଧର୍ମକୁ କେହି ବିରୋଧ କରିବେ ନାହିଁ । ପରନ୍ତୁ ଯେତେବେଳେ ଧର୍ମ ସାମ୍ପ୍ରଦାୟିକତା, ମୌଳବାଦୀ ମାନସିକତା, ରୂଢ଼ିବାଦ ଓ ବିଦ୍ୱେଷର ବାତାବରଣ ଆଣିଲା, ତାହାକୁ ଦୂରକରି ଧର୍ମନିରପେକ୍ଷ ଜୀବନଦର୍ଶନ ଅଧିକ ସଭ୍ୟ, ମାନବିକ ଓ ନୀତିଯୁକ୍ତ ମନେହେଲା । ପ୍ରତ୍ୟେକ ଦେଶ ଧର୍ମନିରପେକ୍ଷ ମୂଲ୍ୟବୋଧକୁ ରାଷ୍ଟ୍ରୀୟ ସ୍ୱୀକୃତି ଦେଇଥିବା ଏକ ବୌଦ୍ଧିକ ଓ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସେହିପରି ରାଷ୍ଟ୍ରୀୟ ଭାବନାର ବିକାଶ ପରଠାରୁ ଏହା ସାମାଜିକ ପରିଚୟ କ୍ଷେତ୍ରରେ ଏକ ବଳିଷ୍ଠ ଆବେଗ ହୋଇ ରହିଆସିଛି । ଜନଗଣଙ୍କର ସାମାଜିକ ନିରାପତ୍ତା, ଶିକ୍ଷା, ଚିକିତ୍ସା, କର୍ମସଂସ୍ଥାନ, ନ୍ୟାୟ, ଜନମଙ୍ଗଳକାରୀ ଯୋଜନା ଇତ୍ୟାଦିକୁ ସୁନିୟନ୍ତ୍ରିତ କରିବାରେ ରାଷ୍ଟ୍ର ପ୍ରମୁଖ ଭୂମିକା ନେଇଆସିଛି । ରାଷ୍ଟ୍ରୀୟ ଚେତନା ଜରିଆରେ ଜନଗଣଙ୍କ ଭିତରେ ଦେଶାତ୍ମବୋଧ, ଜାତୀୟ ଅସ୍ମିତା ସୃଷ୍ଟି ହେବା ସହ ରାଷ୍ଟ୍ର ଏହାର ଭୌଗୋଳିକ

ଭୂଖଣ୍ଡ ଭିତରେ ଥିବା ଜନଗଣଙ୍କର ନିରାପତ୍ତା, ଶିକ୍ଷା, ସ୍ୱାସ୍ଥ୍ୟ, ରାଜନୈତିକ ଅଧିକାର ଓ ନାନା ସୁଯୋଗ ପାଇଁ ପ୍ରୟାସ କରିଛି । ବିଭିନ୍ନ ଭୌଗୋଳିକ ଭୂଖଣ୍ଡର ଜନଗଣଙ୍କର ଜୀବନର ମୂଲ୍ୟ ଓ ବଞ୍ଚିବାର ମାନରେ ଯଦି ଉଲ୍ଲେଖନୀୟ ଉନ୍ନତି ହୋଇଛି, ତେବେ ତାହା ପଶ୍ଚାତରେ ରାଷ୍ଟ୍ର-ଚେତନା ଓ ରାଷ୍ଟ୍ର-ଯୋଜନାର ବହୁ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ରହିଛି । ପ୍ରତ୍ୟେକ ରାଷ୍ଟ୍ର ଏହାର ନାଗରିକଙ୍କର ନିରାପତ୍ତା, ନ୍ୟାୟବ୍ୟବସ୍ଥା ଓ ଉନ୍ନତ ଜୀବନଶୈଳୀ ପାଇଁ ନାନା ଜନହିତକାରୀ ଯୋଜନା, ପନ୍ଥା ଓ ପରିବେଶ ପାଇଁ ପ୍ରୟାସ କରିଛି । ଏହି ଦୃଷ୍ଟିରୁ ଦେଖିଲେ 'ରାଷ୍ଟ୍ରୀୟତା' ବ୍ୟକ୍ତିକୁ ଏକ ବୃହତ୍ତର ଜନଗୋଷ୍ଠୀ ସହ ଏକାତ୍ମତାର ବନ୍ଧନରେ ବାନ୍ଧି ପାରିଛି ଓ ଏକ ସଂହତିପୂର୍ଣ୍ଣ ପରିବେଶ ସୃଷ୍ଟି କରିବାରେ ସହାୟକ ହୋଇଛି । ତେବେ ବିଶ୍ୱ ସମୁଦାୟ ବା ସମଗ୍ର ମଣିଷଜାତି ମାନଦଣ୍ଡରୁ ବିଚାର କଲେ ରାଷ୍ଟ୍ରୀୟତାର ଅନେକ ନକାରାତ୍ମକ ଆବେଗ ରହିଛି । ପୃଥିବୀରେ ଯୁଦ୍ଧ, ବିଭୀଷିକା ଓ ବିଦ୍ୱେଷର ମାନସିକତା ରାଷ୍ଟ୍ରୀୟ ଭାବନା ସହ ସଂଶ୍ଳିଷ୍ଟ ହୋଇରହିଛି । ଅନେକ ରାଷ୍ଟ୍ର ନିଜର ପଡୋଶୀ ରାଷ୍ଟ୍ରମାନଙ୍କୁ ଶତ୍ରୁ ବୋଲି ଭାବୁଛନ୍ତି ଓ ଏଥିପାଇଁ ନିଜର ସାମରିକ ଶକ୍ତିକୁ ସୁଦୃଢ଼ କରି ରଖିବାକୁ ପ୍ରୟାସ କରୁଛନ୍ତି । ରାଷ୍ଟ୍ର-ରାଷ୍ଟ୍ର ଭିତରେ ସାମରିକ ଶକ୍ତି ବୃଦ୍ଧି ନେଇ ନିରନ୍ତର ପ୍ରତିଯୋଗିତା ଲାଗି ରହିଛି ଓ ଏହାଦ୍ୱାରା ଜନମଙ୍ଗଳକାରୀ ଯୋଜନା ବହୁ ଭାବରେ ବାଧାପ୍ରାପ୍ତ ହେଉଛି । ଅସ୍ତ୍ର ଶସ୍ତ୍ର ନିର୍ମାଣ ଓ ସାମରିକ ଶକ୍ତି ବୃଦ୍ଧି ନେଇ ପ୍ରତ୍ୟେକ ରାଷ୍ଟ୍ର ତାର ଜାତୀୟ ଆୟର ଏକ ମୁଖ୍ୟ ଅଂଶ ବ୍ୟୟ କରୁଛି । ସ୍ୱିଡେନର ରାଜଧାନୀ ଷ୍ଟକହୋମ ଆନ୍ତର୍ଜାତିକ ଶାନ୍ତି ଗବେଷଣା ଅନୁଷ୍ଠାନ (ଷ୍ଟକହୋମ ଇଣ୍ଟରନେସନାଲ ପିସ ରିସର୍ଚ୍ଚ ଇନଷ୍ଟିଚ୍ୟୁଟ ବା ସିପ୍ରି (SIPRI) ପ୍ରତ୍ୟେକ ବର୍ଷ ପୃଥିବୀର ରାଷ୍ଟ୍ରମାନଙ୍କର ସାମରିକ ଖର୍ଚ୍ଚକୁ ହିସାବ କରିଥାଏ । ସାମରିକ ବ୍ୟୟର କ୍ରମବର୍ଦ୍ଧିଷ୍ଣୁ ବୃଦ୍ଧି ପାଇଁ ସିପ୍ରି ସର୍ବଦା ଉଦ୍‌ବେଗ ପ୍ରକାଶ କରିଆସିଛି । ଏହାର ହିସାବ ଅନୁଯାୟୀ ୨୦୦୦ ମସିହାରେ ପୃଥିବୀରେ ୪୦ ଲକ୍ଷ କୋଟି ଟଙ୍କା ଏ ବାବଦରେ ଖର୍ଚ୍ଚ ହୋଇଥିବା ବେଳେ ଏହା ବୃଦ୍ଧି ପାଇ ପାଇ ୨୦୧୦ ରେ ୮୧ ଲକ୍ଷ ୧୫ ହଜାର କୋଟି ଟଙ୍କାରେ ପହଞ୍ଚିଛି । ବାର୍ଷିକ ସାମରିକ ବ୍ୟୟ ଅନୁଯାୟୀ ପୃଥିବୀର ଅଗ୍ରଭାଗରେ ଥିବା ପାଞ୍ଚଟି ରାଷ୍ଟ୍ର ହେଲେ ଆମେରିକା (୭୧୧୦୦ କୋଟି ଡଲାର) ଚାଇନା (୧୪୩୦୦ କୋଟି ଡଲାର), ରୁଷ (୭୧୯୦ କୋଟି ଡଲାର), ଇଂଲଣ୍ଡ (୬୨୭୦ କୋଟି ଡଲାର), ଓ ଫ୍ରାନ୍ସ (୬୨୫୦ କୋଟି ଡଲାର) । ଏହା ବ୍ୟଙ୍ଗପୂର୍ଣ୍ଣ ଯେ ଜାତିସଂଘର ସିକ୍ୟୁରିଟି କାଉନ୍‌ସିଲର ପାଞ୍ଚଟି ସ୍ଥାୟୀ ରାଷ୍ଟ୍ର ସବୁଠାରୁ ଅଧିକ ସାମରିକ ବ୍ୟୟ କରୁଛନ୍ତି । ଆମ ଦେଶର ଗତବର୍ଷର ସାମରିକ ବ୍ୟୟ ପାଇଁ ୩୭୪୦ କୋଟି ଡଲାର ବା ୨ ଲକ୍ଷ କୋଟିରୁ ଅଧିକ ଟଙ୍କା ବରାଦ କରାଯାଇଛି । ସାମରିକ ବ୍ୟୟ କ୍ଷେତ୍ରରେ ଆମ ଦେଶ ପୃଥିବୀରେ

ସପ୍ତମ ସ୍ଥାନରେ ରହିଛି ଓ ଅସ୍ତ୍ର ଆମଦାନୀ କ୍ଷେତ୍ରରେ ଉଚ୍ଚରେ ରହିଛି ଯେହେତୁ ବିଶ୍ୱ କାରବାର ପୃଷ୍ଠଭୂମିରେ ୧୨% ଭାଗ ଅସ୍ତ୍ର ଆମ ଦେଶ କିଣିଥାଏ । ମାନବୀୟ ବିକାଶ ଓ ବଞ୍ଚିବାର ମାନ କ୍ଷେତ୍ରରେ ବିଶ୍ୱସ୍ତରରେ ଭାରତର ସ୍ଥାନ ୧୩୪ରେ ରହିଥିବା ହ୍ୟୁମାନ ଡେଭଲପମେଣ୍ଟ ଇଣ୍ଡେକ୍ସ ମୂଲ୍ୟାୟନରୁ ଜଣାଯାଏ ।

ବିଶ୍ୱରେ ଅଧିକାଂଶ ରାଷ୍ଟ୍ର ସାମରିକ ସ୍ତରରେ ଯାହା ବ୍ୟୟ କରୁଛନ୍ତି ତାହାର ଚାରିଭାଗରୁ ଏକଭାଗ ବାସସ୍ଥାନ, ଶକ୍ତି, ଜଳଯୋଗାଣ, ସ୍ୱାସ୍ଥ୍ୟ ସେବା, ନିରକ୍ଷରତା ଓ ଦାରିଦ୍ର୍ୟ ଦୂରୀକରଣ ପରି ଜନମଙ୍ଗଳକାରୀ ଲକ୍ଷ୍ୟରେ ବ୍ୟୟ କରୁଛନ୍ତି । ପୃଥିବୀରୁ ସମସ୍ତ ସାମରିକ ବ୍ୟୟକୁ ଯଦି ବାଦ୍ ଦିଆଯାଇ ପାରନ୍ତା, ତେବେ ପୃଥିବୀରୁ ସମସ୍ତ ଦାରିଦ୍ର୍ୟ ସହ ଅନେକ ସମସ୍ୟା ଅଚିରେ ଦୂର ହୋଇ ପାରନ୍ତା । ଏହି ପରିପ୍ରେକ୍ଷୀରେ ପୃଥିବୀର ବହୁ ଶାନ୍ତିକାମୀ, ଦାର୍ଶନିକ, ହେତୁବାଦୀ, ବୁଦ୍ଧିଜୀବୀ, ମାନବ ହିତୈଷୀ ବୈଜ୍ଞାନିକ ସାରା ବିଶ୍ୱରେ ସାମରିକ ବ୍ୟୟକୁ କମାଇବାକୁ ବା ବନ୍ଦ କରିବାକୁ ଦ୍ୱିତୀୟ ବିଶ୍ୱଯୁଦ୍ଧଠାରୁ ସ୍ୱର ଉଠାଇ ଆସୁଛନ୍ତି । ଏପରିକି ୧୯୭୮ ମସିହାଠାରୁ ସାରା ବିଶ୍ୱରେ ପ୍ରତିବର୍ଷ ଅକ୍ଟୋବର ମାସରେ ବିଶ୍ୱ ନିରସ୍ତ୍ରୀକରଣ ସପ୍ତାହ ପାଳିତ ହୋଇ ଆସୁଛି । ପୃଥିବୀର ଶାନ୍ତିକାମୀ ବ୍ୟକ୍ତିଗଣ ସଭା, ସମିତି ଆଲୋଚନା ଚକ୍ର କରି ପୃଥିବୀରୁ ଅସ୍ତ୍ର ଶସ୍ତ୍ର ହ୍ରାସ କରିବା, ଅସ୍ତ୍ର ଶସ୍ତ୍ର ନିର୍ମାଣ ଜନିତ ବ୍ୟୟକୁ କମାଇବା, ଗଣବିଧ୍ୱଂସକାରୀ ଅସ୍ତ୍ର ନିର୍ମାଣ କ୍ଷେତ୍ରରେ ଗବେଷଣା ନ କରିବା ପାଇଁ ଚେତନା ସୃଷ୍ଟି କରି ଆସୁଛନ୍ତି । ହେଲେ ତାହା ବିଶେଷ ସଫଳତା ହାସଲ କରିନାହିଁ । ମଣିଷ ଜାତିର ଏକମାତ୍ର ବାସସ୍ଥଳୀ ଆମର ପୃଥିବୀକୁ ଆମେ ମଧୁମୟ କରିବାକୁ ହେଲେ ସକଳ ବିଭେଦକାରୀ ବ୍ୟବସ୍ଥା ଓ ଧ୍ୱଂସକାରୀ ଅସ୍ତ୍ର ଶସ୍ତ୍ର ନିର୍ମାଣ ଓ ତଦ୍‌ଜନିତ ଗବେଷଣାକୁ ବନ୍ଦ କରିବାକୁ ହେବ । ଏହା ଯଦି ସମ୍ଭବ ହୁଏ, ତେବେ ଆମ ସଂସାର ମଧୁମୟ ହୋଇଉଠିବ ।

(୨୨.୫.୨୦୧୩)



# ପରମ୍ପରା, ପରିବର୍ତ୍ତନ ଓ ଯୁଗଧର୍ମ

ବିଶିଷ୍ଟ ଫରାସୀ ଦାର୍ଶନିକ ଭୋଲ୍‌ଟାୟାରଙ୍କର (୧୬୯୪-୧୭୭୮) ଏକ ଉକ୍ତି ହେଉଛି- 'ଆପଣଙ୍କ ବକ୍ତବ୍ୟର ଗୋଟିଏ ଶବ୍ଦ ସହ ବି ମୁଁ ଏକମତ ନୁହେଁ, କିନ୍ତୁ ଆପଣଙ୍କ ମତ ବ୍ୟକ୍ତ କରିବାର ଅଧିକାର ପାଇଁ ମୁଁ ମୋ ଜୀବନ ଦେଇ ଚେଷ୍ଟା କରିବି'। ସ୍ୱାଧୀନ ଭାବେ ମତପୋଷଣ କରିବାର ଅଧିକାର ଗଣତାନ୍ତ୍ରିକ ଜୀବନଧାରାର ଏକ ଆଦର୍ଶ, ଯାହା ଭୋଲ୍‌ଟାୟରଙ୍କ ଏହି ବକ୍ତବ୍ୟରେ ପ୍ରତିଫଳିତ। ଲେଖା ଆରମ୍ଭରେ ବକ୍ତବ୍ୟଟି ଉଦ୍ଧାର କରିବାର ଲକ୍ଷ୍ୟ ହେଉଛି ଗୋଟିଏ ବୌଦ୍ଧିକ ଦୃଷ୍ଟିଭଙ୍ଗୀର ଅବତାରଣା କରିବା। ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ଉପରେ ଗଭୀର ଆସ୍ଥା ସ୍ଥାପନ କରୁଥିବା ବ୍ୟକ୍ତିମାନେ ପ୍ରାୟତଃ ଅପୌତ୍ତଳିକ। ସେମାନେ କେଉଁ ପ୍ରତିମା ବା ଦିଅଁଦେବତାଙ୍କୁ ପୂଜା କରନ୍ତି ନାହିଁ। କାରଣ, କୌଣସି ଦିଅଁ ଦେବତାଙ୍କୁ ପୂଜା ଆରାଧନା କରିବା ଦ୍ୱାରା ଜୀବନର ଗୁଣାତ୍ମକ ବିକାଶ ସମ୍ଭବ ନୁହେଁ କିମ୍ବା ଏହାଦ୍ୱାରା ଦେଶର ବିକାଶ ହେବନାହିଁ ବୋଲି ତାଙ୍କର ବିଶ୍ୱାସ। ଯେଉଁ ରାଷ୍ଟ୍ର ସକଳ ବିକଶିତ ଓ ଯେଉଁ ଦେଶଗୁଡ଼ିକରେ ଜୀବନର ମାନ ଉନ୍ନତ ତାହା କୌଣସି ଈଶ୍ୱରଙ୍କ ଆଶୀର୍ବାଦରୁ ହୋଇନାହିଁ। ଆମ ଦେଶରେ ଏତେ ମନ୍ଦିର, ପୂଜାସ୍ଥଳ, ଦିଅଁଦେବତାର ଉପାସନା ସତ୍ତ୍ୱେ ଆମେ ଏକ ଗରିବ ରାଷ୍ଟ୍ର ହୋଇ ରହିଛେ। ଜନସଂଖ୍ୟାର ଏକତୃତୀୟାଂଶ ନିରକ୍ଷର ଓ ଦାରିଦ୍ର୍ୟ ସୀମାରେଖା ତଳେ ଅବମାନବୀୟ ସ୍ତରରେ ଜୀବନ ନିର୍ବାହ କରନ୍ତି। ଭିକ୍ଷାବୃତ୍ତି, ଶିଶୁଶ୍ରମିକ ପ୍ରଥା, ଅପପୁଷ୍ଟି, ସାମାଜିକ ଭେଦଭାବ, ନାରୀ ନିର୍ଯାତନା ପରି ବହୁ ସମସ୍ୟା ଆମର ରହିଛି। ଆମର ଏହି ସବୁ ଅନଗ୍ରସରତା ଈଶ୍ୱରଙ୍କ ଅଭିଶାପରୁ ହୋଇନାହିଁ। ହେତୁବାଦୀମାନେ ବିଶ୍ୱାସ କରନ୍ତି ଯେ, ସମାଜର ବିକାଶ ଓ ଜୀବନର ଗୁଣାତ୍ମକମାନରେ ଉନ୍ନତି ଉତ୍ତମ ସାମାଜିକ ପରିବେଶ, ଉନ୍ନତ ଶିକ୍ଷାପଦ୍ଧତି, ନାଗରିକ ଶୃଙ୍ଖଳାବୋଧ, ଦୁର୍ନୀତିମୁକ୍ତ ଅର୍ଥନୈତିକ ଯୋଜନା, ଉତ୍ତରଦାୟୀ ରାଜନୈତିକ ବ୍ୟବସ୍ଥା ଇତ୍ୟାଦି ଉପରେ ନିର୍ଭର କରେ, ଦିଅଁ ଦେବତାଙ୍କୁ ପ୍ରାର୍ଥନା ଉପରେ ନୁହେଁ। ପ୍ରାର୍ଥନା ଜନିତ ଧାର୍ମିକ ଅବେଗ ବ୍ୟକ୍ତିଗତ ବିଶ୍ୱାସ ମାତ୍ର ଓ ଏହା ଅନେକାଂଶରେ ସାମାଜିକ ପ୍ରଭାବ ଜନିତ ଓ ମନସ୍ତାତ୍ତ୍ୱିକ।

ପୁରୀର ଜଗନ୍ନାଥ ମନ୍ଦିରକୁ ନେଇ ଶହଶହ ବର୍ଷ ଭିତରେ ଗୁଡ଼ିଏ ପରମ୍ପରା ଗଢ଼ିଉଠିଥିବା ସୁବିଦିତ । ଜଗନ୍ନାଥଙ୍କୁ ନେଇ କେତେ ସାହିତ୍ୟ, କିମ୍ବଦନ୍ତୀ, ଲୋକବିଶ୍ୱାସ, ଅଲୌକିକ ମାନସିକତା ଓ ଭକ୍ତିଭାବନା ସୃଷ୍ଟି ହୋଇଛି । ହିନ୍ଦୁ ଧର୍ମ ପୃଷ୍ଠଭୂମିରେ ଜଗନ୍ନାଥ ଭାବନା ଏକ ଧାରା ଭାବରେ ହିନ୍ଦୁ ଧର୍ମଚେତନାର ଅଙ୍ଗ ହୋଇଛି ଓ ତାହାକୁ ଋଦ୍ଧିମନ୍ତ ମଧ୍ୟ କରିଛି । ହିନ୍ଦୁଧର୍ମ ଭିତରର ବିଭିନ୍ନ ପନ୍ଥୀମାନେ ଜଗନ୍ନାଥ ମନ୍ଦିର ଓ ଭାବନା ପ୍ରତି ଆକୃଷ୍ଟ ହୋଇ ପ୍ରତିବର୍ଷ ଦର୍ଶନାର୍ଥୀ, ଭକ୍ତ, ପର୍ଯ୍ୟଟକ ଭାବେ ଆସିବା ସାଧାରଣ ଘଟଣା । ଶ୍ରଦ୍ଧାଳୁ ଭକ୍ତମାନେ ଧାର୍ମିକ ଆବେଗ ଦ୍ୱାରା ପରିଚାଳିତ ହୋଇ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯେପରି ଆସୁଛନ୍ତି, ସେହିପରି ବହୁ ପର୍ଯ୍ୟଟକ ପୁରୀର ସମୁଦ୍ରବେଳା, ଜଗନ୍ନାଥ ମନ୍ଦିରର କଳା, ଭାସ୍କର୍ଯ୍ୟ ଦେଖିବାକୁ ମଧ୍ୟ ଆସୁଛନ୍ତି । ପୁରୀର ଜଗନ୍ନାଥ ମନ୍ଦିର ଶ୍ରଦ୍ଧାଳୁ ଭକ୍ତ ଓ ପର୍ଯ୍ୟଟକମାନଙ୍କର ଓଡିଶାକୁ ଆସିବା ପାଇଁ ଆକର୍ଷଣୀୟ ହୋଇ ରହିଛି । ତେବେ ଯେଉଁ ଭକ୍ତମାନେ ମନ୍ଦିରରେ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଆସୁଛନ୍ତି ସେମାନେ ଯଦି ଓଡିଶା ଲୋକଙ୍କ ସୌଜନ୍ୟତାରେ ସନ୍ତୁଷ୍ଟ ହେବେ ଏହା ଓଡିଶାର ସୁନାମ ବୃଦ୍ଧି କରିବା ସହ ଜଗନ୍ନାଥ ସଂସ୍କୃତିର ମାନ ବୃଦ୍ଧି କରିବ । କିନ୍ତୁ ପରିତାପର ବିଷୟ, ଜଗନ୍ନାଥ ମନ୍ଦିର ନେଇ ଏକ ନକାରାତ୍ମକ ଚିତ୍ର ସୃଷ୍ଟି ହେଉଛି । ନିକଟରେ ଇଲିଆନା ସିତାରିସ୍ତଙ୍କୁ ଯେପରି ବ୍ୟବହାର କରାଯାଇଥିବା ଗଣମାଧ୍ୟମରେ ପ୍ରସାରିତ ହେଲା ଓ ଡ. ପ୍ରତିଭା ରାୟ ଅତୀତରେ ଏଭଳି ପରିସ୍ଥିତିର ସାମ୍ନା କରିଥିବା ଘଟଣା ନେଇ ସମ୍ବାଦପତ୍ରରେ ଯେଉଁ ଲେଖା ପ୍ରକାଶ କରିଥିଲେ, ତାହା ଓଡିଶା ବିଷୟରେ କେଉଁ ଚିତ୍ର ଦେଉଛି ? ଏହି ପୃଷ୍ଠଭୂମିରେ ଲେଖକର ଏକ ବ୍ୟକ୍ତିଗତ ଅନୁଭୂତି ଏଠାରେ ଉଲ୍ଲେଖ କରୁଛି ।

୧୯୮୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପରିସରରେ ଭାରତୀୟ ଦର୍ଶନ କଂଗ୍ରେସର ଅଧିବେଶନ ହୋଇଥିଲା, ଯେଉଁଥିରେ ଦେଶର ଅଧିକାଂଶ ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ଯୋଗ ଦେଇଥିଲେ । ସମ୍ମିଳନୀ ପରେ ଓଡିଶା ବାହାରୁ ଆସିଥିବା ବହୁ ଅଧ୍ୟାପକ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଚାହିଁଲେ ଓ ଆୟୋଜକଙ୍କ ତରଫରୁ ସେମାନଙ୍କୁ ପୁରୀ ନେବାକୁ ବ୍ୟବସ୍ଥା କରାଗଲା । ପୁରୀ ମନ୍ଦିରରେ ସେମାନଙ୍କ ପ୍ରତି ଅଶାଳୀନ ଓ ଅସୌଜନ୍ୟ ବ୍ୟବହାରରେ ଅଧ୍ୟାପକମାନେ ବହୁ ଅଶାନ୍ତ ଓ ଦୁଃଖ ମନରେ ଫେରିଲେ । ତା'ର ପରବର୍ତ୍ତୀ ବର୍ଷଗୁଡିକରେ ଯେତେବେଳେ ସର୍ବଭାରତୀୟ ଦର୍ଶନ କଂଗ୍ରେସକୁ ମୁଁ ଯାଇଛି, ଅନ୍ୟ ରାଜ୍ୟର କେତେକଙ୍କ ସହ ବନ୍ଧୁତା ଅବକାଶରେ ସେମାନେ ପୁରୀ ମନ୍ଦିରରେ

ସେମାନଙ୍କ ତିକ୍ତ ଅନୁଭୂତି କଥା କହି ଭବିଷ୍ୟତରେ ସେଠାକୁ ଯାଇ ଅସମ୍ମାନିତ ନହେବାକୁ ମତ ଦେଇଛନ୍ତି । ଅତିଥି ଭାବେ ଓଡିଶାକୁ ଆସି ଅସମ୍ମାନିତ ହୋଇଥିବା କଥା ଶୁଣି ମୁଁ କେତେକଙ୍କ ପାଖରେ ଲଜ୍ଜିତ ହୋଇଛି । ମନ୍ଦିରକୁ ଆସୁଥିବା ଦର୍ଶନାର୍ଥୀ ଭକ୍ତମାନେ ଦିଅଁଦର୍ଶନ କରି ସେମାନଙ୍କର ଧାର୍ମିକ ଆବେଗକୁ ଚରିତାର୍ଥ କରିବା ଆବଶ୍ୟକ । ଶୋଷିତ ହେବା, ଅସମ୍ମାନିତ ହେବା ଓ ନିଜକୁ ଅସୁରକ୍ଷିତ ମନେ କରିବା ଯଦି ଦିଅଁଦର୍ଶନର ପରିଣାମ ହୁଏ, ତେବେ ତାହା ଓଡିଶାର ଭାବମୂର୍ତ୍ତିକୁ କେତେ କ୍ଷୁର୍ଣ୍ଣ କରୁଛି ତାହା କହିବା ନିଷ୍ପ୍ରୟୋଜନ ।

ଜଗନ୍ନାଥ ମନ୍ଦିରର କେତେକ ପରମ୍ପରା ବିଚାରକୁ ନିଆଯାଉ । କୌଣସି ସାମାଜିକ ଅସ୍ମିତା ବହନ କରୁଥିବା ଏକ ଜନଗୋଷ୍ଠୀର କିଛି ପରମ୍ପରା ରହିବା ସ୍ୱାଭାବିକ । ବହୁ ପିଢ଼ି ଦେଇ ସମାଜରେ ପ୍ରଚଳିତ ରହିଥିବା ଚଳଣି, ଲୋକାଚାର ଓ ବିଶ୍ୱାସ ହିଁ ହେଉଛି ଏକ ସାମାଜିକ ଜନଗୋଷ୍ଠୀର କିଛି ପରମ୍ପରା । ଓଡିଶାରେ ରଥଯାତ୍ରା ଜଗନ୍ନାଥ ପରମ୍ପରାର ଏକ ବିଶେଷ ଆକର୍ଷଣ । କେବଳ ପୁରୀର ରଥଯାତ୍ରା ପାଇଁ ପ୍ରକାଶିତ ତଥ୍ୟ ଅନୁଯାୟୀ, ରଥ ନିର୍ମାଣ ଉଦ୍ଦେଶ୍ୟରେ ପ୍ରତ୍ୟେକ ବର୍ଷ ଏକ ହଜାର ଗଛ କାଟିବାକୁ ପଡୁଛି । ଓଡିଶାରେ ଥିବା ୩ ହଜାରରୁ ଅଧିକ ଜଗନ୍ନାଥ ମନ୍ଦିରର ରଥଯାତ୍ରା ପାଇଁ ପ୍ରତିବର୍ଷ ଲକ୍ଷ ଲକ୍ଷ ଗଛ କାଟିବାକୁ ହେଉଛି । ଯେଉଁ ଗଛ କଟାଯାଉଛି ସେହିପରି ଗଛ ସୃଷ୍ଟିକରିବାକୁ ପ୍ରାୟ ଚାଳିଶିରୁ ପଚାଶ ବର୍ଷ ଲାଗିଯିବ । ଏହି ସ୍ଥିତିରେ ଏହି ଧାରା ଯଦି ଅବ୍ୟାହତ ରହେ ଓଡିଶାର ଜଙ୍ଗଲ ଧ୍ୱଂସ ହେବାରେ ବିଭିନ୍ନ କାରଣ ଭିତରୁ ରଥଯାତ୍ରା ବି ଏକ ମୁଖ୍ୟ କାରଣ ହେବ । ଓଡିଶାରେ ଖରାଦିନେ ଗ୍ରୀଷ୍ମ ପ୍ରବାହ ଯେପରି ବୃଦ୍ଧି ପାଇବାରେ ଲାଗିଛି ଜଙ୍ଗଲ ସରିଗଲେ କି ଭୟଙ୍କର ଅବସ୍ଥା ହେବ ତାହା ସହଜରେ ଅନୁମେୟ । ରଥଯାତ୍ରାର ପରମ୍ପରା ବନ୍ଦ କରିବାକୁ କେହି କହୁନାହିଁ । ତେବେ ପରିବେଶକୁ ନଷ୍ଟ ନକରି ରଥଯାତ୍ରା କିପରି କରାଯାଇପାରିବ ସେ ବିଷୟରେ ବିକଳ୍ପ ନେଇ ଚିନ୍ତା କରାଯିବା ଦରକାର । ପର୍ବପର୍ବାଣୀ ପରିବେଶ ଅନୁକୂଳ ବା ଇକୋଫ୍ରେଣ୍ଡଲି ନହେଲେ ତାହାର କୁପରିଣାମ ଜନଗଣଙ୍କୁ ଭୋଗିବାକୁ ହିଁ ହେବ ।

ଜଗନ୍ନାଥ ମନ୍ଦିରର ପରମ୍ପରା ସହିତ ଜାତିବାଦ ଓ ଭେଦଭାବମୂଳକ ସାମନ୍ତବାଦ ବି ଜଡିତ । ଏହା ଆଧୁନିକ ଗଣତାନ୍ତ୍ରିକ ବିଚାରବୋଧ ଓ ମାନବବାଦୀ ଜୀବନଦୃଷ୍ଟିର ପରିପନ୍ଥୀ । ଯେଉଁଠି ପୂଜକଶ୍ରେଣୀ ଓ ମୁକ୍ତିମଣ୍ଡପ ବଂଶାନୁକ୍ରମିକ ଓ ଜାତିଗତ ଆଧାରରେ

ନିଜର ଆଧିପତ୍ୟ ବିସ୍ତାର କରନ୍ତି ତାହା ସାମନ୍ତବାଦୀ ବ୍ୟବସ୍ଥାର ଅଙ୍ଗ କହିଲେ ଅତ୍ୟୁକ୍ତି ହେବନାହିଁ । ରାଜତନ୍ତ୍ର ଯୁଗରେ ରାଜା ଓ ପୂଜକଗୋଷ୍ଠୀ ପରସ୍ପରର ସ୍ୱାର୍ଥକୁ ରକ୍ଷା କରିବା ପାଇଁ ଅନେକ ସାମନ୍ତବାଦୀ ପରମ୍ପରା ସୃଷ୍ଟି କରିଥିଲେ । ସେହି ପରମ୍ପରା ପିଢ଼ି ପରେ ପିଢ଼ି ଚାଲିଆସିଛି । ପରିଣାମତଃ, ବଂଶାନୁକ୍ରମିକ ଭାବେ ଜାତିଗତ ଆଧାରରେ ଲୋକମାନେ ପୂଜକ ହେଉଛନ୍ତି । ଯେଉଁଠି ଜାତିଗତ, ବଂଶାନୁକ୍ରମିକ ଓ ଜନ୍ମଗତ ଉତ୍ତରାଧିକାରୀ ସୂତ୍ରରେ ବ୍ୟବସ୍ଥାର ପରମ୍ପରା ଚାଲେ, ସେଠାରେ ଗଣତାନ୍ତ୍ରିକ ଉତ୍ତରଦାୟୀ ଆଚରଣବିଧି ଓ ଶୃଙ୍ଖଳାର ପରିବେଶ ରହେନାହିଁ । ଏହି ପୃଷ୍ଠଭୂମିରେ ଯେଉଁମାନେ ମନ୍ଦିର ଗୁଡ଼ିକରେ ପୂଜକ ହେବେ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଆଚରଣ ବିଧି ଓ ଯୋଗ୍ୟତା ରହିବା ଆବଶ୍ୟକ । ବିଶେଷକରି ଯେଉଁ ପୂଜାସ୍ଥଳମାନ ସର୍ବସାଧାରଣ ଅନୁଷ୍ଠାନ ହେଲାଣି ସେଠାରେ ହିନ୍ଦୁଧର୍ମ, ସଂସ୍କୃତି ବିଷୟରେ ଅଧ୍ୟୟନ କରି ସ୍ନାତକ ହୋଇଥିବା ବ୍ୟକ୍ତିମାନଙ୍କୁ ନିଯୁକ୍ତି ଦିଆଗଲେ ସେମାନଙ୍କ ପାଇଁ ରାଜ୍ୟର ଅନୁଶାସନ ପ୍ରୟୋଗ ହୋଇପାରନ୍ତା । ଏହାଦ୍ୱାରା ଏକ ବଂଶାନୁକ୍ରମିକ ସାମନ୍ତବାଦୀ ପନ୍ଥାରେ ପରିବର୍ତ୍ତନ ଆସିପାରନ୍ତା । ସର୍ବସାଧାରଣ ପ୍ରାଚୀନ ମନ୍ଦିରଗୁଡ଼ିକର ସୁରକ୍ଷା ସରକାରଙ୍କ ପତ୍ନତତ୍ତ୍ୱ ବିଭାଗ ନେଇଛି ଓ ମନ୍ଦିରର ସୁରକ୍ଷା ତଥା ପରିଚାଳନା ପାଇଁ ସରକାର ରାଜକୋଷରୁ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି । ସର୍ବସାଧାରଣଙ୍କ ଅର୍ଥ ବିନିଯୋଗ ହୋଇ ଯଦି ମନ୍ଦିରର ସୁରକ୍ଷା ଓ ପରିଚାଳନା କରାଯାଉଛି, ତେବେ ନିର୍ଦ୍ଦିଷ୍ଟ ଯୋଗ୍ୟତା ଓ ଆଚରଣବିଧି ଆଧାରରେ ମନ୍ଦିରରେ ପୂଜକ ନିଯୁକ୍ତି ବ୍ୟବସ୍ଥା କାହିଁକି କରାଯିବ ନାହିଁ? ଏହି ପ୍ରକାରର ସଂସ୍କାର ଦ୍ୱାରା ହିଁ ଜାତିପ୍ରଥା ପରି ଏକ କଳଙ୍କିତ ସାମାଜିକ ପ୍ରଥା ଦୂର ହେବା ପାଇଁ ପଥ ପରିଷ୍କାର ହେବ ।

ଯେଉଁମାନେ ପରମ୍ପରା ପରିବର୍ତ୍ତନଶୀଳ ନୁହେଁ ବୋଲି ଯୁକ୍ତି କରନ୍ତି ସେମାନେ ରୂଢ଼ିବାଦର ସମର୍ଥକ । ହିନ୍ଦୁ ସମାଜରୁ ସତୀଦାହ ପ୍ରଥା, ଅସ୍ପୃଶ୍ୟତା ପରି ବ୍ୟବସ୍ଥାକୁ ଦୂର କରିବା ପାଇଁ ସଂସ୍କାରବାଦୀ ଆଲୋଡ଼ନ ଆସିବା ବେଳେ ରକ୍ଷଣଶୀଳ ଧର୍ମାନ୍ଧ ବ୍ୟକ୍ତିମାନେ ଧାର୍ମିକ ପରମ୍ପରାକୁ ପରିବର୍ତ୍ତନ ନ କରିବା ପାଇଁ ଆବେଗ ସୃଷ୍ଟି କରିଥିଲେ । ଏଇ ମାତ୍ର କେତେ ଦଶନ୍ଧି ତଳେ ରଥଯାତ୍ରା ବେଳେ ଡାହୁକମାନେ ଅଶ୍ଳୀଳ ସଂଗୀତ ଗାନ କରିବା ଓ ମନ୍ଦିର ଭିତରେ ଦଳିତମାନଙ୍କ ପ୍ରବେଶ ଅଧିକାର ନଥିବା ମନ୍ଦିରର ପରମ୍ପରା ଥିଲା । ସେସବୁକୁ ଯଦି ପରିବର୍ତ୍ତନ କରାଗଲା, ତେବେ ଯେଉଁ ନୂତନ ବ୍ୟବସ୍ଥା ଧାର୍ମିକ ପରମ୍ପରାକୁ ଅଧିକ ମାନବିକ ଓ ସଂସ୍କାରିତ କରିପାରିବ ତାହାର ପରିବର୍ତ୍ତନ କାହିଁକି କରାନଯିବ?

ପରମ୍ପରା ମଣିଷ ହିଁ ଯୁଗର ଆବଶ୍ୟକତା ଅନୁଯାୟୀ କରିଛି, ସମୟର ପରିବର୍ତ୍ତନ ସହ ପରମ୍ପରାର ପରିବର୍ତ୍ତନ ସଭ୍ୟତାର ବିକାଶ ପାଇଁ ଅବଶ୍ୟମ୍ଭାବୀ ମନେହୁଏ ।

ପରମ୍ପରା ଯୁଗଧର୍ମ ସହ ସମତାଳ ରକ୍ଷା କରିବା ଆବଶ୍ୟକ । ଆମ ସମୟର ଯୁଗଧର୍ମ ଭାରତୀୟ ସମ୍ବିଧାନର ମୁଖବନ୍ଧ (ପ୍ରିଏମ୍ବୁଲ) ଓ ମାନବିକ ଅଧିକାରର ବିଶ୍ୱ ଘୋଷଣାନାମାରେ ସୁନ୍ଦର ଭାବେ ବ୍ୟକ୍ତ ହୋଇଛି । ମାନବବାଦ, ସାମାଜିକ ନ୍ୟାୟ, ବ୍ୟକ୍ତିମର୍ଯ୍ୟାଦାବୋଧ, ସମତାଭାବ ଓ ପରିବେଶ ସୁରକ୍ଷା ସାର୍ବଜନୀନ ଆଦର୍ଶ ଭାବେ ଆଜି ଆନ୍ତର୍ଜାତିକ ସ୍ତରରେ ବୌଦ୍ଧିକ ସ୍ୱୀକୃତି ଲାଭ କରିଛି । ଆମର ଧାର୍ମିକ ବିଶ୍ୱାସ ଓ ପରମ୍ପରା ଏହି ମୂଲ୍ୟବୋଧ ସହ ସମତାଳ ହେବା ଉଚିତ । ଯେଉଁ ପରମ୍ପରା ଏହି ମୂଲ୍ୟଚୟର ବିରୋଧୀ- ତାହା ଦୂର ହେବା ଦରକାର । ପରମ୍ପରା ନାମରେ ସାମନ୍ତବାଦ, ରୂଢ଼ିବାଦ, ଭେଦଭାବ ଓ ପରିବେଶ କ୍ଷତିକାରକ ବ୍ୟବସ୍ଥାକୁ ଜାବୁଡ଼ି ଧରିବା ଯୁଗଚେତନାର ପରିପନ୍ଥୀ ମନେହୁଏ ।

(୧୧.୯.୨୦୧୩)



# ଦାସତ୍ୱ ଓ ରାଷ୍ଟ୍ରୀୟ କର୍ତ୍ତବ୍ୟ

ଜ୍ଞାନ ବିଜ୍ଞାନ, ଗଣତାନ୍ତ୍ରିକ ବ୍ୟବସ୍ଥା, ସମାଜବାଦୀ ବିଚାରବୋଧ ଇତ୍ୟାଦିର ଯେତେ ବିକାଶ ହେଲେ ମଧ୍ୟ ମଣିଷ ସମାଜରୁ ଭେଦଭାବ ଓ ନାନା ବର୍ବରତା ଲୋପ ପାଇପାରୁ ନାହିଁ । ସବୁ ଯୁଗରେ ଓ ପ୍ରାୟତଃ ସବୁ ସଭ୍ୟତାରେ ବହୁ ଅମାନବିକ ବ୍ୟବସ୍ଥା, ଶୋଷଣ, କ୍ରୂରତା ଜନିତ ପରିବେଶ ରହି ଆସିଛି । ମଣିଷ ଜାତି ସାମଗ୍ରିକ ଭାବେ କେବେହେଲେ ସମ୍ପୂର୍ଣ୍ଣ ଭାବେ ସଭ୍ୟ ଓ ସଂସ୍କୃତିସମ୍ପନ୍ନ ହୋଇପାରୁନାହିଁ । ସମାଜରେ ଯେତେ ଦୁଃଖ, ଦୁର୍ଦ୍ଦଶା ରହିଛି ତାହା ହୁଏତ ପ୍ରକୃତି ଦତ୍ତ ନଚେତ ମାନବକୃତ । ପ୍ରାକୃତିକ ବିପର୍ଯ୍ୟୟ, ରୋଗ ବାଧକ, ମହାମାରୀ ମଣିଷ ସମାଜରେ ସର୍ବଦା ରହି ଆସିଛି । ତେବେ ଜ୍ଞାନ ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ବିକାଶ ଦ୍ୱାରା ସେସବୁକୁ ନିୟନ୍ତ୍ରଣ କରିବାକୁ ଅନେକ ଶକ୍ତି ସାମର୍ଥ୍ୟ ମଣିଷ ଧୀରେ ଧୀରେ ହାସଲ କରିବାରେ ଲାଗିଛି । ଯେଉଁ ଯୁଗରେ ଜ୍ଞାନ ବିଜ୍ଞାନର ବିକାଶ ହୋଇ ନଥିଲା, ସେତେବେଳେ ମହାମାରୀ ହେଲେ ବା ପ୍ରାକୃତିକ ବିପର୍ଯ୍ୟୟ ଆସିଲେ ମଣିଷ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲା । ଏହି ସ୍ଥିତିରେ ଏବେ ଅନେକ ପରିବର୍ତ୍ତନ ଆସିଲାଣି । ତେବେ ବିଡମ୍ୱନାର ବିଷୟ ମଣିଷକୃତ ଶୋଷଣ ଓ ଅନ୍ୟାୟର ଏପର୍ଯ୍ୟନ୍ତ ଅନ୍ତ ହୋଇପାରୁ ନାହିଁ । ନିକଟରେ ଗଣମାଧ୍ୟମରେ ପ୍ରଚାରିତ ସମ୍ବାଦ ଅନୁଯାୟୀ ବିଶ୍ୱରେ ତିନି କୋଟି କ୍ରୀତଦାସ ରହିଛନ୍ତି ଓ ସେହି ଭିତରୁ ଅଧାଅଧି କେବଳ ଭାରତରେ ରହିଛନ୍ତି । (୧୮ ଅକ୍ଟୋବର ପ୍ରଗତିବାଦୀ ଦ୍ରଷ୍ଟବ୍ୟ) ଗ୍ଲୋବାଲ ସ୍ଲେଭରି ଇଣ୍ଡେକ୍ସର ପରିସଂଖ୍ୟାନରୁ ଜଣାଯାଏ ଯେ ଭାରତରେ ପ୍ରାୟ ଦେଢ଼ କୋଟି ଲୋକ କ୍ରୀତଦାସ ଭଳି ଜୀବନ ଅତିବାହିତ କରିଥାନ୍ତି । ଦେଶର ଗଣତନ୍ତ୍ର, ଜନମଙ୍ଗଳକାରୀ ଯୋଜନା, ଆଇନ କାନୁନ ସେମାନଙ୍କୁ ସୁରକ୍ଷା ଦେଇପାରେ ନାହିଁ ।

ଅତୀତରେ ଦାସତ୍ୱ ପ୍ରଥା ପୃଥିବୀରେ କେତେକ ଦେଶରେ ରହିଥିଲା ଓ ସମାଜର ଅଗଣିତ ମଣିଷ ଅନ୍ୟ ମଣିଷ ଦ୍ୱାରା ଶୋଷିତ, ଅତ୍ୟାଚାରିତ ହେଉଥିଲେ । ରାଜତନ୍ତ୍ର

ଯୁଗରେ ଯୁଦ୍ଧର ବିଭୀଷିକା ସର୍ବଦା ଲାଗି ରହିଥିଲା ଓ ପରାଜିତ ରାଜ୍ୟର ଲୋକମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ହେଉଥିଲା । ରାଷ୍ଟ୍ରଭାବନା ଓ ଗଣତାନ୍ତ୍ରିକ ବ୍ୟବସ୍ଥାର ବିକାଶ ସହ ଯୁଦ୍ଧର ପରିବେଶ ହ୍ରାସ ପାଇଲା, ଯଦିବା ବିଂଶ ଶତାବ୍ଦୀ ମଧ୍ୟ ଭାଗ ପର୍ଯ୍ୟନ୍ତ ଯୁଦ୍ଧର ଘନଘଟା ସାରା ପୃଥିବୀରେ ନାନା ଆତଙ୍କର ପରିବେଶ ସୃଷ୍ଟି କରୁଥିଲା । ତେବେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମିଳିତ ରାଷ୍ଟ୍ରସଙ୍ଘର ପ୍ରତିଷ୍ଠା ବିଶ୍ୱ ଇତିହାସରେ ଥିଲା ଏକ ଯୁଗାନ୍ତକାରୀ ଘଟଣା । ସେହିପରି ୧୯୪୮ ମସିହା ଡିସେମ୍ବର ୧୦ ତାରିଖ ଦିନ ମାନବିକ ଅଧିକାରର ଯେଉଁ ବିଶ୍ୱଘୋଷଣାନାମା ରାଷ୍ଟ୍ରସଙ୍ଘରେ ଗୃହୀତ ହେଲା ତାହା ସଭ୍ୟ ବିଚାରବୋଧର ବିକାଶ କ୍ଷେତ୍ରରେ ଥିଲା ସବୁଠାରୁ ବଡ଼ ଉଲ୍ଲେଖନୀୟ ବିଷୟ । ପୃଥିବୀର ବହୁ ରାଷ୍ଟ୍ରର ପ୍ରତିନିଧି ବା ରାଷ୍ଟ୍ରମୁଖ୍ୟମାନେ ସମ୍ମତ ହେଲେ ଯେ "ସବୁ ମଣିଷ ଜନ୍ମରୁ ମୁକ୍ତ ଓ ସ୍ୱାଧୀନ ଓ ସେମାନେ ସମାନ ମର୍ଯ୍ୟାଦାର ଅଧିକାରୀ । ପ୍ରତ୍ୟେକ ବ୍ୟକ୍ତି ଭିତରେ ବିଚାରବୋଧ ଓ ବିବେକବୋଧ ରହିଛି ଓ ସବୁ ମଣିଷ ସମଗ୍ର ବିଶ୍ୱ ପ୍ରତି ଭ୍ରାତୃତ୍ୱବୋଧ ନେଇ କାର୍ଯ୍ୟ କରିବା ଆବଶ୍ୟକ ।" ଏହି ଦୃଷ୍ଟିଭଙ୍ଗୀ ଏକ ମାନବବାଦୀ, ସଭ୍ୟ ଓ ହେତୁବାଦୀ ଜୀବନ ଦର୍ଶନର ପ୍ରତିଫଳନ ହେଲେ ମଧ୍ୟ ସାମାଜିକ ବାସ୍ତବତା ଏହାଠାରୁ ବହୁଦୂରରେ । ଜାତିସଂଘରେ ମାନବିକ ଅଧିକାରର ଏହି ଘୋଷଣାନାମା ଗୃହୀତ ହେବା ଏହା ଭିତରେ ପଞ୍ଚଷଠି ବର୍ଷ ଅତିକ୍ରାନ୍ତ ହୋଇ ଯାଇଥିଲେ ମଧ୍ୟ ଏବେ ବି ଏହି ଆଦର୍ଶର ବିପରୀତ ଧାରା "କ୍ରୀତଦାସ ପ୍ରଥା" ବିଶ୍ୱରେ ରହିଛି ଓ ଭାରତରେ ଅଧିକ ରହିଛି । ଏହା ହିଁ ସବୁଠାରୁ ବଡ ବିଡମ୍ବନା ।

ଏକଦା ଆମ ସଂସାରରେ ଦାସତ୍ୱ ପ୍ରଥା ରହିଥିଲା ଓ ଅସହାୟ ମଣିଷମାନଙ୍କୁ କ୍ରୀତଦାସ ଭାବେ କିଛି ଲୋକ ନିଜର ସମ୍ପତ୍ତି ବୋଲି ବିଚାର କରୁଥିଲେ । ଏପରିକି ଦାସମାନଙ୍କୁ ନିଜସ୍ୱ ସମ୍ପତ୍ତି ଭାବେ ବିକା କିଣା କରାଯାଉଥିଲା ଯାହାକୁ "ସ୍ଲେଭ ଟ୍ରେଡ" କୁହାଯାଉଥିଲା । ନିୟୁତ ନିୟୁତ ମଣିଷଙ୍କୁ ଦାସତ୍ୱର ବେଡ଼ି ପିନ୍ଧାଯାଇ ସେମାନଙ୍କୁ ଅକଥନୀୟ ଶୋଷଣ କରାଯାଉଥିଲା । ବିଶେଷକରି କେତେକ ଦେଶର ଲୋକମାନେ ଆଫ୍ରିକୀୟ ନିଗ୍ରୋମାନଙ୍କୁ ଓ କୌଣସି ରାଜ୍ୟ ଜୟପରେ ସେଠିକାର ମୂଳ ଅଧିବାସୀ ମାନଙ୍କୁ ଦାସ ଭାବେ ନେଇ ସମସ୍ତ ପ୍ରକାର ଶୋଷଣ ଓ ନିର୍ଯ୍ୟାତନା ଦେଉଥିଲେ । ତେବେ ପ୍ରାୟ ଦେଢ଼ଶହ ବର୍ଷ ହେବ ଏହି ବ୍ୟବସ୍ଥାକୁ ଲୋପ କରାଗଲାଣି । ଏହି ସ୍ଲେଭ ଟ୍ରେଡ ବ୍ୟବସ୍ଥା ପୃଥିବୀରୁ ଲୋପ ପାଇଥିଲେ ମଧ୍ୟ ଦାସତ୍ୱ ପ୍ରଥାର ବିଲୋପ ହୋଇନାହିଁ ଓ ଏହା ଅନ୍ୟ ରୂପରେ ଓ ଅନ୍ୟ ଢଙ୍ଗରେ ପ୍ରଚଳିତ ରହିଛି ।

ବର୍ତ୍ତମାନ ପୃଥିବୀରେ ଯେଉଁ ଦାସତ୍ୱ ରହିଛି ଓ ଯାହା ମାନବିକ ଅଧିକାରର ନିଛକ ଉଲ୍ଲଙ୍ଘନ, ତାହାର ମୂଳ ଭିତ୍ତି ହେଉଛି ଦାରିଦ୍ର୍ୟ, ଭେଦଭାବ ଜନିତ ସାମାଜିକ

ବ୍ୟବସ୍ଥା, ଅଜ୍ଞତା, ଭିତ୍ତିହୀନ ପରମ୍ପରା ଓ ସ୍ୱାର୍ଥାନ୍ୱେଷୀ ମାନସିକତା । ଏବେ ବି କେତେକ ସମାଜରେ ଗୋତି ଶ୍ରମିକ ପ୍ରଥା ରହିଛି । ଏହି ବ୍ୟବସ୍ଥାରେ କିଛି ବ୍ୟକ୍ତି ଅନ୍ୟ ମଣିଷର ଶ୍ରମ ଓ ପରାଧୀନତାକୁ ଉପଭୋଗ କରିଥାନ୍ତି । କୌଣସି ବ୍ୟକ୍ତି ଅସୁବିଧାରେ ପଡି ପ୍ରଭାବଶାଳୀ ଓ ସମ୍ପନ୍ନ ବ୍ୟକ୍ତିଙ୍କ ଠାରୁ ଧାର ଉଧାର କରିଥିଲେ ପୁରୁଷାନୁକ୍ରମେ ସେହି ପ୍ରଭାବଶାଳୀ ପରିବାରରେ ଗୋତି ଖଟିବାକୁ ହୋଇଥାଏ । ସ୍ୱଳ୍ପ ମୂଲ୍ୟରେ ଅନ୍ୟର ସେବା ଓ ଶ୍ରମକୁ କିଛି ପ୍ରଭାବଶାଳୀ ଲୋକ ଉପଭୋଗ କରନ୍ତି । ଗୋତି ଖଟୁଥିବା ଲୋକମାନେ ଅସହାୟ ହୋଇ ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ ପାଇଁ ଅନ୍ୟକୁ ଜୀବନସାରା ସେବା ଦେଉଥାନ୍ତି । ସେହିମାନଙ୍କର ସ୍ୱାଭିମାନ ବା ଆତ୍ମମର୍ଯ୍ୟାଦାର ପ୍ରଶ୍ନ ଉଠି ନଥାଏ । ଏପରିକି ସ୍ଥଳ ବିଶେଷରେ ଅନ୍ୟକୁ ଭୟଭୀତ କରାଇ ଓ ହିଂସାର ଆଶ୍ରୟ ନେଇ ସେମାନଙ୍କୁ ସେବା ଯୋଗାଇବାକୁ ବାଧ୍ୟ କରାଯାଏ । ଗୋଟିଏ ଜାତିଭିତ୍ତିକ ସମାଜରେ ଗାଁ ଗହଳରେ ବର୍ତ୍ତନ ପ୍ରଥା ରହିବା ସାଧାରଣ ଘଟଣା ଥିଲା । ଏହି ବ୍ୟବସ୍ଥାରେ ଜାତିଗତ ମାନସିକତାରେ କେତେକ ଲୋକଙ୍କୁ କିଛି ଧାନ ବା ଜମି ଦେଇ ବର୍ଷସାରା ଯେତେବେଳେ ଆବଶ୍ୟକ ସେମାନଙ୍କର ସେବା ନେବାକୁ ହୁଏ । ଯେତେ ଅସମ୍ମାନ ଜନକ କାର୍ଯ୍ୟ ହେଲେ ମଧ୍ୟ ସେମାନେ ତାହା କରିବାକୁ ବାଧ୍ୟ ହୁଅନ୍ତି । କାରଣ ସେମାନଙ୍କ ପାଇଁ ବିକଳ୍ପ ନଥାଏ କିମ୍ବା ରାଷ୍ଟ୍ର ସେମାନଙ୍କୁ ସୁରକ୍ଷା ଦେଇପାରେ ନାହିଁ ।

ସେହିପରି ଅସହାୟ ଶିଶୁମାନଙ୍କୁ ବିଭିନ୍ନ କଷ୍ଟକର କାର୍ଯ୍ୟରେ ନିୟୋଜିତ କରିବା ମଧ୍ୟ ଦାସତ୍ୱ ପ୍ରଥାର ଅନ୍ୟ ଏକ ଦିଗ । କୌଣସି ପରିସ୍ଥିତିରେ ଯେଉଁ ପିଲାମାନେ ସାମାଜିକ ସ୍ତରରେ ଅସୁରକ୍ଷିତ ଥାନ୍ତି, ସେହିମାନଙ୍କୁ ଚାକର ପରି ଖଟାଇବା, ଅତ୍ୟନ୍ତ ଅରୁଚିକର ବା ଜଟିଳ କାର୍ଯ୍ୟରେ ନିୟୋଜିତ କରିବା ଦେଖାଯାଏ । ବିଶେଷ କରି ଆମ ଦେଶ ପରି ଦରିଦ୍ର ଦେଶମାନଙ୍କରେ ଅଗଣିତ ଶିଶୁ ବଞ୍ଚି ରହିବାକୁ ହୋଟେଲରେ ବାସନ ମାଜନ୍ତି, ଭିକ ମାଗନ୍ତି, ମଇଳା ଜାଗାରୁ ଜରି ପ୍ଲାଷ୍ଟିକ ଗୋଟାନ୍ତି, ଟ୍ରେନରେ ଜୋତା ପଲିସ କରନ୍ତି ବା ମଇଳା ସଫା କରନ୍ତି ଇତ୍ୟାଦି । ଯେଉଁ ବୟସରେ ସେମାନେ ସ୍କୁଲରେ ପାଠ ପଢୁଥାନ୍ତେ, ଖେଳକୁଦରେ ଓ ସ୍ନେହ ଆଦର ଭିତରେ ସମୟ ଅତିବାହିତ କରୁଥାନ୍ତେ, ସେହି କଅଁଳ ବୟସରୁ ସେମାନେ ଜୀବନର ଭାର ବୋହିବାକୁ ବାଧ୍ୟ ହୁଅନ୍ତି । ଏ କ୍ଷେତ୍ରରେ ଝିଅମାନେ ବେଶି ଅତ୍ୟାଚାରର ଶରବ୍ୟ ହୋଇଥାନ୍ତି । ସେମାନଙ୍କ ଅସହାୟତାର ସୁଯୋଗ ନେଇ ସେମାନଙ୍କୁ ଦେହ ବ୍ୟବସାୟରେ ବାଧ୍ୟ କରିବା ଓ ବେଶ୍ୟାବୃତ୍ତିରେ ଖଟାଇବା ଦେଖାଯାଏ । ଦାରିଦ୍ର୍ୟ, ସାମାଜିକ ସ୍ତରରେ ସୁରକ୍ଷାର ଅଭାବ ଜନିତ କାରଣରୁ ସେମାନେ ଉତ୍ପୀଡନର ଶିକାର ହୁଅନ୍ତି । ସେହିପରି କେତେକ ମହିଳା ପାରିବାରିକ ଅତ୍ୟାଚାରରୁ ଚାଲିଆସି

ଶେଷରେ ପରିସ୍ଥିତି ତାଡନାରେ ଦେହ ବ୍ୟବସାୟରେ ଲିପ୍ତ ହୁଅନ୍ତି । ଯେଉଁମାନେ ଏହିଭଳି ସ୍ଥିତିରେ ବଞ୍ଚି ରହିବାକୁ ବାଧ୍ୟ ହୁଅନ୍ତି ଓ ନିଜ ଦାସତ୍ୱର ପରିସର ଭିତରେ ଅନ୍ୟ ମଣିଷର ଅତ୍ୟାଚାରକୁ ସହ୍ୟ କରନ୍ତି ସେମାନେ ହିଁ ଦାସତ୍ୱର ପରିସର ଭିତରେ ଆସନ୍ତି ।

ଗୋଟିଏ ଶତାବ୍ଦୀ ତଳେ ଭାରତରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲା । ଯେଉଁ ଝିଅମାନେ ବାଲ୍ୟ ବିଧବା ହୋଇ ଯାଉଥିଲେ ସେମାନଙ୍କ ପରବର୍ତ୍ତୀ ଜୀବନ ଅତ୍ୟନ୍ତ ଦୟନୀୟ ହେଉଥିଲା । ଧର୍ମପୀଠ ମାନଙ୍କରେ ସେମାନଙ୍କୁ ରହିବାକୁ ପଡୁଥିଲା ଓ ଅତ୍ୟନ୍ତ ନିରାପଦବିହୀନ ଜୀବନ ଭିତରେ ସେମାନେ ଦେହ ବ୍ୟବସାୟରେ ବେଳକେ ଲିପ୍ତ ରହୁଥିଲେ । କେତେକ ମନ୍ଦିରରେ ଦେବଦାସୀ ପ୍ରଥା ରହିଥିଲା ଓ ଦେବଦାସୀମାନେ ବେଳକେ ନାନା ଶୋଷଣର ଶରବ୍ୟ ହେଉଥିଲେ । ଏହିପରି ନାନା କାରଣ ଯୋଗୁ ମହିଳାମାନେ ଅଧିକ ଅସହାୟ ହୋଇ ଜୀବନ ନିର୍ବାହ କରିବାକୁ ବାଧ୍ୟ ହେଉଥିଲେ ।

ପୁନଶ୍ଚ ଭାରତୀୟ ସମାଜରେ ଜାତିପ୍ରଥା ଓ ଅସ୍ପୃଶ୍ୟତା ପରି କଳଙ୍କ ଯୁଗ ଯୁଗ ଧରି ରହିଥିଲା । ତଥାକଥିତ ଦଳିତ ମାନେ ନାନା ଭାବରେ ଅନ୍ୟାୟ ଓ ଅମାନବିକତାର ଶରବ୍ୟ ହେଉଥିଲେ । ଆମର ସାମାଜିକ ଓ ସାଂସ୍କୃତିକ ଇତିହାସ ଉପରେ ଯେଉଁ ଗବେଷଣାମୂଳକ ତଥ୍ୟ ମିଳେ ସେଥିରେ ଜାତିପ୍ରଥାର ଯେଉଁ କଠୋର ନିୟମ ଯୁଗ ଯୁଗ ଧରି ଭାରତୀୟ ସମାଜକୁ କଳୁଷିତ କରି ରଖିଥିଲା ତାର ଏକ ଚିତ୍ର ମିଳିଥାଏ । ଅସ୍ପୃଶ୍ୟତାରୁ ନିଷ୍କୃତି ପାଇବା ପାଇଁ ଯାହା କିଛି ସଂସ୍କାରବାଦୀ ଆନ୍ଦୋଳନ ହୋଇଛି ତାହା ନିର୍ଦ୍ଦିଷ୍ଟ ଭୂଖଣ୍ଡରେ ଓ କିଛି ସମୟ ପାଇଁ ଆଲୋଡନ ଆଣିଥିଲେ ବି ତାହା ସ୍ୱାଧୀନତା ଆନ୍ଦୋଳନ ପୂର୍ବରୁ ଏକ ଜାତୀୟ ରୂପରେଖ ନେଇ ପାରି ନଥିଲା । ଜାତିପ୍ରଥା ଓ ଅସ୍ପୃଶ୍ୟତା ଦାସତ୍ୱ ପ୍ରଥାର ଏକ ଭିନ୍ନ ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବନାହିଁ । ଏତେବଡ ପ୍ରାଚୀନ ସଭ୍ୟତାର ବିପର୍ଯ୍ୟୟ ପଶ୍ଚାତରେ କଳଙ୍କିତ ଜାତିପ୍ରଥା ଯେ ଏକ ମୁଖ୍ୟ ଭୂମିକା ନେଇଛି ତାହା ଅନେକ ମତ ଦେଇଥାନ୍ତି ।

ରାଜନୈତିକ ସ୍ୱାଧୀନତା ଲାଭ କରିବା ଛ' ଦଶନ୍ଧିରୁ ଅଧିକ ହେଲାଣି । ବହୁ ଜନ ମଙ୍ଗଳକାରୀ ଯୋଜନା ଦେଶରେ ସ୍ୱାଧୀନତା ପରଠାରୁ କାର୍ଯ୍ୟକାରୀ ହୋଇ ଆସୁଛି । ଏକ ପ୍ରଗତିଶୀଳ ସମ୍ବିଧାନ ଭିତରେ ଆମ ରାଷ୍ଟ୍ରର ଆଭିମୁଖ୍ୟକୁ ବ୍ୟକ୍ତ କରାଯାଇ ତାହାକୁ ଜାତୀୟ ଜୀବନର ଆଦର୍ଶ କରାଯାଇଛି । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାରକୁ ନାଗରିକର ମୌଳିକ କର୍ତ୍ତବ୍ୟ ଭାବେ ସମ୍ବିଧାନ ସ୍ୱୀକୃତି ଦେଇଛି । ଧର୍ମଗତ ସହନଶୀଳତା ଓ ଧର୍ମନିରପେକ୍ଷତା ଆମ ଜାତୀୟ ଜୀବନର ଆଦର୍ଶ ହୋଇ ରହିଛି । ଆମର ଏହି ସବୁ

ସକାରାତ୍ମକ ପଦକ୍ଷେପ ସତ୍ତ୍ୱେ ତଥାପି ଦାସତ୍ୱ ପ୍ରଥାରେ ଶିକାର ହେଉଥିବା ଅଗଣିତ ମଣିଷ ଆମ ସମାଜରେ ରହିଛନ୍ତି ।

ଆମ ସମାଜରେ ଯେଉଁ କଳଙ୍କ ରହିଛି ସେସବୁର ଦୂରୀକରଣ ପାଇଁ ଆମକୁ ଆହୁରି ବହୁତ କିଛି କରିବାକୁ ହେବ । ଦାରିଦ୍ର୍ୟରୁ ଯେଉଁ ଅସହାୟବୋଧ ଓ ପରିଣାମତଃ ଦାସତ୍ୱ ପ୍ରଥା ସମାଜରେ ତିଷ୍ଠି ରହିଛି, ସେସବୁର ମୂଳୋତ୍ପାଟନ ପାଇଁ ରାଜନୈତିକ ଇଚ୍ଛାଶକ୍ତିର ମଧ୍ୟ ଆବଶ୍ୟକତା ରହିଛି । ସେହିପରି ଶିକ୍ଷାର ବ୍ୟାପକ ପ୍ରସାର ଓ ସାମାଜିକ ସଂସ୍କାର ପାଇଁ ସରକାର ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନ ଅନେକ କିଛି କରିପାରିବେ । ଏତଦ୍‌ବ୍ୟତୀତ ପରମ୍ପରା ନାମରେ ଚାଲି ଆସିଥିବା ଅନେକ ଭେଦଭାବମୂଳକ ବ୍ୟବସ୍ଥାକୁ ଲୋପ କରିବା ପାଇଁ ନିଷ୍ପାପର ଉଦ୍ୟମ ଆବଶ୍ୟକ । କୌଣସି ବ୍ୟକ୍ତି ଯେପରି କୌଣସି ଭେଦଭାବ, ନିଷ୍ଠୁରତା, ଶୋଷଣ ବା ଅମାନବିକ ଭାବନାର ଶିକାର ନହୁଏ ସେଥିପାଇଁ ରାଷ୍ଟ୍ରୀୟ ସ୍ତରରେ ବହୁ ଉଦ୍ୟମର ଆବଶ୍ୟକତା ରହିଛି ।

ମାନବକୃତ କାରଣରୁ ସମାଜରେ ଯେ ଦାସତ୍ୱ, ନିଷ୍ଠୁରତା, ଗୋତିପ୍ରଥା, ଶୋଷଣ ରହିଛି ଏ ବିଷୟରେ ଜନମାନସକୁ ସଚେତନ କରିବାକୁ ହେବ । ପ୍ରତ୍ୟେକ ବ୍ୟକ୍ତି ଯେପରି ସମ୍ମାନର ସହ ବଞ୍ଚିବାର ସୁଯୋଗ ପାଇବ ଓ ନିଜ ସାମର୍ଥ୍ୟ ଭିତରେ ସାମାଜିକ ଜୀବନକୁ ଋଦ୍ଧିମନ୍ତ କରିବ ସେହିପରି ଏକ ବାତାବରଣ ରାଷ୍ଟ୍ର ହିଁ ସୃଷ୍ଟି କରିପାରିବ । ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ସୁରକ୍ଷା, ଶିକ୍ଷା ଓ ସ୍ୱାବଲମ୍ବନଶୀଳତାର ପରିବେଶ ପାଇଁ ରାଷ୍ଟ୍ର ହିଁ ଉତ୍ତରଦାୟୀ । ସେହି ପରିବେଶ ଆସି ପାରିଲେ ହିଁ ଦାସତ୍ୱ ପ୍ରଥାର ବିଲୋପ ସମ୍ଭବ ହେବ । ଦାସତ୍ୱ ପ୍ରଥାର ବିଲୋପ ଯେ ଏକ ରାଷ୍ଟ୍ରୀୟ କର୍ତ୍ତବ୍ୟ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୩୦.୧୦.୨୦୧୩)



# ଲୋକପ୍ରତିନିଧିମାନଙ୍କୁ ଚିଠିଟିଏ....

ଲବଣମ୍ ଜଣେ ବିଶିଷ୍ଟ ହେତୁବାଦୀ ଓ ଗାନ୍ଧୀବାଦୀ ସମାଜସେବୀ ଭାବେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରରେ ପରିଚିତ । ବାପା ଅଧ୍ୟାପକ ଗୋରା ଏବଂ ମା' ସରସ୍ୱତୀ ଦେବୀ ଥିଲେ ସ୍ୱାଧୀନତା ସଂଗ୍ରାମୀ ଓ ଗାନ୍ଧୀବାଦୀ ମୂଲ୍ୟବୋଧ ପ୍ରତି ଉତ୍ସର୍ଗୀକୃତ ବ୍ୟକ୍ତି । ତେବେ ଗୋରା ଥିଲେ ଜଣେ ନିରୀଶ୍ୱରବାଦୀ ଓ ଆଥେଇଷ୍ଟ ସେଣ୍ଟରର ପ୍ରତିଷ୍ଠାତା । ବିଜୟୱାଡାଠାରେ ଥିବା ଆଥେଇଷ୍ଟ ସେଣ୍ଟର ସମାଜସେବା, ରଚନାତ୍ମକ କାର୍ଯ୍ୟ, ମାନବିକ ଅଧିକାରର ପ୍ରସାର ଓ ନାନା ସାମାଜିକ କଳଙ୍କ ଦୂର କରିବାରେ ଏକ ଅଗ୍ରଣୀ ଅନୁଷ୍ଠାନ । ଗୋରା ଓ ସରସ୍ୱତୀ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରୁ ଆସିଥିଲେ ମଧ୍ୟ ସେମାନେ ନିଜ ଝିଅ ମନୋରମା ଓ ପୁଅ ଲବଣମ୍‌ଙ୍କୁ ଦଳିତ ପରିବାରରେ ବିବାହ କରାଇ ସାମାଜିକ କ୍ରାନ୍ତି ଦିଗରେ ପଥ ପ୍ରଦର୍ଶକ ହୋଇଥିଲେ । ଲବଣମ୍ ପିଲାଟି ବେଳୁ ଗାନ୍ଧୀ, ବିନୋବା, ଜେପିଙ୍କ ସହ ସମ୍ପର୍କିତ ଥିଲେ ଓ ଆଜି ପରିଣତ ବୟସରେ ବି ଗାନ୍ଧୀବାଦ ଓ ମାନବବାଦୀ ମୂଲ୍ୟବୋଧ ପ୍ରସାରରେ ସମ୍ପୃକ୍ତ ରହିଛନ୍ତି । ବିଭିନ୍ନ ସାମାଜିକ ସମସ୍ୟା କ୍ଷେତ୍ରରେ ଲବଣମ୍ ତାଙ୍କର ସମ୍ପୃକ୍ତି ବ୍ୟକ୍ତ କରିବା ସହ ସାମାଜିକ ଜୀବନରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ଦୀର୍ଘ ଛ' ଦଶନ୍ଧି ହେବ ପ୍ରୟାସ କରିଆସୁଛନ୍ତି । ଆମ ଦେଶର ରାଜନୈତିକ ଜୀବନଧାରାରେ ଥିବା ଦୁର୍ନୀତି ସମ୍ପର୍କରେ ସେ ଦେଶର ସମସ୍ତ ଲୋକପ୍ରତିନିଧିମାନଙ୍କୁ ପ୍ରତ୍ୟେକ ରାଜ୍ୟର ବାଚସ୍ପତିମାନଙ୍କ ମାଧ୍ୟମରେ ଗୋଟିଏ ପତ୍ର ଜାନୁଆରୀ ୧୮,୨୦୦୬ରେ ଲେଖିଥିଲେ । ଦେଶର ରାଜନୈତିକ ବ୍ୟବସ୍ଥାରୁ ଦୁର୍ନୀତି ଓ ଭ୍ରଷ୍ଟାଚାର ବିଲୋପ ପାଇଁ ତାଙ୍କର ଏହି ପତ୍ରଟି ଏବେ ବି ଯଥେଷ୍ଟ ପ୍ରାସଙ୍ଗିକ ମନେହୁଏ । ସେହି ଚିଠିର ଅନୁବାଦ ଏଠାରେ ପ୍ରକାଶ କରୁଛି ।

ମାନ୍ୟବର ଲୋକପ୍ରତିନିଧି ମହୋଦୟଗଣ,

ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଲୋକପ୍ରତିନିଧିମାନେ ଅତ୍ୟନ୍ତ ସମ୍ମାନିତ ବ୍ୟକ୍ତି । ତେବେ ସମାଜର ନାଗରିକମାନେ ସେମାନଙ୍କୁ ଭୋଟ ଦେଇ ସମ୍ମାନିତ ପ୍ରତିନିଧି ଭାବେ ମନୋନୀତ କରିଥିବାରୁ ପ୍ରକୃତରେ ଲୋକମାନେ ହିଁ ସେମାନଙ୍କର ପ୍ରଭୁ ବା ମାଷ୍ଟର । ମୁଁ ସମାଜର ଜଣେ ସଚେତନ ନାଗରିକ ଭାବେ ଆପଣମାନଙ୍କୁ ଏହି ପତ୍ରଟି ଲେଖୁଛି ।

ମୁଁ ଆମ ଦେଶର ଗଣତନ୍ତ୍ର ପାଇଁ ଗର୍ବ ଅନୁଭବ କରୁଛି । ଏହା ଯେ ବିଶ୍ବର ସର୍ବବୃହତ୍ ଗଣତନ୍ତ୍ର ତାହା ନୁହେଁ, ଏହା ବହୁ ଆହ୍ବାନର ସମ୍ମୁଖୀନ ହୋଇ ମଧ୍ୟ ତିଷ୍ଠି ରହିଛି ଓ ଭବିଷ୍ୟତ ପାଇଁ ଅନେକ ଆଶା ସଞ୍ଚାର କରୁଛି । ତେବେ ଗତ ପାଞ୍ଚ ଦଶନ୍ଧି ଭିତରେ ଏଥିରେ ଯେଉଁ ଦୁର୍ବଳତା ପ୍ରକାଶ ପାଇଛି ତାହା ଚିନ୍ତାର ବିଷୟ । ସୁତରାଂ ଆମର ଦୁର୍ବଳତାଗୁଡିକୁ ଦୂର କରି ଏକ ସୁନ୍ଦର ଭବିଷ୍ୟତ ନିର୍ମାଣ ଲକ୍ଷ୍ୟରେ ମୁଁ ନିଜର କର୍ତ୍ତବ୍ୟ ଭାବି ଆପଣମାନଙ୍କୁ ଏହି ପତ୍ରଟି ଲେଖୁଛି ।

ଗୋଟିଏ ନିର୍ବାଚନ ମଣ୍ଡଳୀର ଜାତି, ଧର୍ମ, ଶ୍ରେଣୀ, ଲିଙ୍ଗ ଓ ବୟସ ନିର୍ବିଶେଷରେ ଆପଣ ହେଉଛନ୍ତି ଲୋକପ୍ରତିନିଧି । ରାଜ୍ୟର ଶାସନ ବ୍ୟବସ୍ଥାରେ ଆପଣ ଏକ ପ୍ରମୁଖ ଭୂମିକା ନିର୍ବାହ କରୁଛନ୍ତି । ଆପଣମାନେ ପାରିତ କରୁଥିବା ଆଇନ, ଆପଣମାନଙ୍କ କାର୍ଯ୍ୟଧାରା ଓ ନିଷ୍ପତ୍ତି ନିୟୁତ ନିୟୁତ ଲୋକଙ୍କର ଜୀବନଧାରାକୁ ପ୍ରଭାବିତ କରୁଛି । ଆପଣ ଯେ କେବଳ ଆପଣଙ୍କୁ ଭୋଟ ଦେଇଥିବା ଲୋକଙ୍କର ପ୍ରତିନିଧି ତା' ନୁହେଁ, ଆପଣଙ୍କୁ ଭୋଟ ଦେଇନଥିବା, ଭୋଟ ଦେଉନଥିବା ବା ଭୋଟ ଦେବାର ସୁଯୋଗ ଆସିନଥିବା ସବୁ ଲୋକଙ୍କର ପ୍ରତିନିଧି । ଆପଣଙ୍କ ନିର୍ବାଚନ ମଣ୍ଡଳୀର ସବୁ ମଣିଷ ଓ ପରିବେଶର ବି ଆପଣ ପ୍ରତିନିଧି । ଆପଣ ସ୍ବେଚ୍ଛାରେ ଏକ ଗୁରୁ ଦାୟିତ୍ବ ନିଜ କାନ୍ଧ ଉପରେ ନେବାକୁ ଚାହିଁଛନ୍ତି । ଗୋଟିଏ ପଟେ ଏହି ଦାୟିତ୍ବ ସହ ଅନ୍ୟ ପଟରେ ଆପଣ ଏକ ରାଜନୈତିକ ଦଳ, ଏକ ଗୋଷ୍ଠୀ, ଏକ ଅଞ୍ଚଳ ଇତ୍ୟାଦି ସହ ସମ୍ପୃକ୍ତ ହୋଇଛନ୍ତି । ବେଳେବେଳେ ଆପଣ ଦଳୀୟ ବା ଆଞ୍ଚଳିକ ଆନୁଗତ୍ୟ ଭିତରେ ସଂକୀର୍ଣ୍ଣ ହେବା ଆମ ଗଣତନ୍ତ୍ରର ଏକ ଦୁର୍ବଳତା । ନିକଟରେ ସଂସଦରୁ କେତେକ ସଦସ୍ୟ ଦୁର୍ନୀତି ଅଭିଯୋଗରେ ନିଲମ୍ବିତ ହେବା ଆମ ଦେଶର ଗଣତାନ୍ତ୍ରିକ ମୂଲ୍ୟବୋଧ ଅବକ୍ଷୟର ସୂଚନା ଦିଏ । ପ୍ରତ୍ୟେକ ନିର୍ବାଚନ ପରେ ସଂସଦ ହେଉ ବା ବିଧାନସଭା, ଅପରାଧମୂଳକ ଅଭିଯୋଗ ଥିବା କେତେକ ବ୍ୟକ୍ତି ନିର୍ବାଚିତ ହୋଇଆସୁଛନ୍ତି । ସ୍ବାର୍ଥପରତା ଓ ଅପରାଧ ପ୍ରବଣତା ରାଜନୀତି ସହ ସମ୍ପୃକ୍ତ ହେବା ଦେଖାଯାଉଛି । ଏହି ପରିସ୍ଥିତିରେ କେତେକ ଅପରାଧମୂଳକ କାର୍ଯ୍ୟରେ ସମ୍ପୃକ୍ତ ଥିବା ମାଫିଆ ମଧ୍ୟ ରାଜନୀତିରେ ସମ୍ପୃକ୍ତ ହେବା ଦେଖାଯାଉଛି । ଏହା ଗଣତନ୍ତ୍ର ପାଇଁ ଦୁର୍ଭାଗ୍ୟଜନକ ମନେହେଉଛି ।

ସାଧାରଣତଃ ସରକାରୀ କର୍ମଚାରୀମାନେ ଆପଣମାନଙ୍କର କାର୍ଯ୍ୟକୁ ଅନୁକରଣ କରିଥାନ୍ତି । ବିକାଶ କ୍ଷେତ୍ରରେ କେତେକ ଦୁର୍ନୀତି ଯେ ରହିବ ଆପଣମାନେ ଏହା ବ୍ୟକ୍ତ କରୁଛନ୍ତି । ନିର୍ବାଚନ ବେଳେ ଆପଣମାନେ ଲୋକମାନଙ୍କୁ ଯେଉଁ ପ୍ରତିଶ୍ରୁତି ଦେଉଛନ୍ତି ସେଠାରୁ ଯେ ସରକାରୀ କାର୍ଯ୍ୟ ଏକ ବିଚ୍ୟୁତି ଏହା ମନେହେଉଛି ।

ଆନ୍ତର୍ଜାତିକ ସ୍ତରରେ 'ଟ୍ରାନ୍ସପରେନ୍ସି ଇଣ୍ଟରନ୍ୟାସନାଲ' ନାମରେ ଏକ ସ୍ବେଚ୍ଛାସେବୀ ସଂଗଠନ ବା ଏନଜିଓ ରହିଛି । ଏହି ସଂଗଠନ, ପ୍ରତିବର୍ଷ ସବୁ ଦେଶଗୁଡିକର

ନୈତିକ ସ୍ଥିତି ନେଇ ଏକ ମୂଲ୍ୟାୟନ କରିଥାଏ । ଏହାର ସର୍ବେକ୍ଷଣ ଅନୁଯାୟୀ ୨୦୦୧ରେ ଭାରତର ସ୍ଥାନ ୭୧ ରେ ରହିଥିଲା, ପରବର୍ତ୍ତୀ ବର୍ଷଗୁଡ଼ିକରେ ତଳକୁ ତଳ ଯାଇ ୨୦୦୩ ରେ ଏହା ୭୩ ଓ ୨୦୦୪ରେ ଏହା ୯୦ ସ୍ଥାନକୁ ଖସିଆସିଛି । ସେହିପରି ସ୍ୱିସ୍ ବ୍ୟାଙ୍କରେ ଭାରତୀୟ ମାନେ ଅଧିକରୁ ଅଧିକ ଅର୍ଥ ଗୁପ୍ତରେ ରଖିଛନ୍ତି । କିଛି ବେସରକାରୀ ସଂସ୍ଥାର ଆକଳନ ଅନୁଯାୟୀ ପରାର୍ଦ୍ଧ ପରାର୍ଦ୍ଧ ଟଙ୍କା ସ୍ୱିସ୍ ବ୍ୟାଙ୍କରେ ଭାରତୀୟମାନେ ଜମା କରିଛନ୍ତି । ଏହି ଅର୍ଥ ଯେ ଦୁର୍ନୀତିଜନିତ,ଏହା ନିଃସନ୍ଦେହ । କେବଳ ଶିଳ୍ପପତି, ବ୍ୟବସାୟୀ, ମାଫିଆ ଗୋଷ୍ଠୀ ଯେ ଏହି ଟଙ୍କା ଜମା କରିଛନ୍ତି ତା'ନୁହେଁ- ଏଥିରେ କେତେକ ରାଜନେତା ମଧ୍ୟ ରହିଛନ୍ତି । ଏହି ବିପୁଳ ଅର୍ଥକୁ ବିଦେଶୀ ବ୍ୟାଙ୍କରେ ରଖିବା ଦ୍ୱାରା ଆମ ଦେଶ କୌଣସି ଉପକାର ପାଉନାହିଁ । ପରନ୍ତୁ ଏହି ଟଙ୍କା ୟୁରୋପୀୟ ଗ୍ରାହକମାନେ ଋଣ ନେଉଛନ୍ତି । ଯଦି ଭାରତ ସରକାର ସେହି ଅର୍ଥ ବିଦେଶରୁ ଆଣିବାରେ ସଫଳ ହୋଇପାରନ୍ତା ଓ ତାହାକୁ ଜାତୀୟକରଣ କରନ୍ତା, ତେବେ ଆମ ଦେଶକୁ ବିଭିନ୍ନ ଉନ୍ନୟନ କାର୍ଯ୍ୟ ପାଇଁ ବିଦେଶରୁ ଋଣ କରିବାକୁ ପଡନ୍ତା ନାହିଁ । ବ୍ୟବସ୍ଥାପକ ସଭାରେ ଆମ ଲୋକପ୍ରତିନିଧିମାନେ ଏହିସବୁ ସମସ୍ୟା ଉପରେ ଆଲୋଚନା କରନ୍ତି ନାହିଁ । ସେମାନେ ନିଜର ଦୁର୍ନୀତି, ସ୍ୱାର୍ଥପରତା ଓ ଅପାରଗତା ଲୁଚାଇବାକୁ ଯାଇ ଲୋକମାନଙ୍କର ଅସହାୟତାକୁ ଢ଼ାଲ କରନ୍ତି । ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ଜନଗଣ ହିଁ ହେଉଛନ୍ତି ମୁଖ୍ୟ, ତେବେ ସେମାନେ ବହୁବିଧ ସମସ୍ୟା ଭିତରେ ଅସହାୟ ହେଉଛନ୍ତି । ଲୋକପ୍ରତିନିଧିମାନେ ନିଜର ବହୁ ସମୟ ନିଜ ସ୍ଥିତିକୁ ସୁଦୃଢ଼ କରିବାରେ ବ୍ୟୟ କରୁଥିବା ବେଳେ ବିରୋଧୀ ଦଳରେ ଥିବା ପ୍ରତିନିଧିମାନେ ସରକାର ଭାଙ୍ଗିବାରେ ବା ସରକାରୀ ଦଳକୁ ଦୁର୍ବଳ କରିବାରେ ସମୟ ବ୍ୟୟ କରୁଛନ୍ତି । ଏହି ସ୍ଥିତିରେ ଲୋକଙ୍କ ନାମରେ ଅସ୍ତ୍ରଶସ୍ତ୍ର ସଂଗ୍ରହ କରି ଲୋକପ୍ରତିନିଧିମାନେ ନିଜର ସୁରକ୍ଷା ପାଇଁ ବନ୍ଧୁକଧାରୀ ଦେହରକ୍ଷୀ ରଖିଛନ୍ତି । ବିକାଶ ସହିତ ଦୁର୍ନୀତି ଯେପରି ଅଙ୍ଗାଙ୍ଗୀ ଭାବେ ଜଡିତ ହେଉଛି ସେହିପରି ପ୍ରତିନିଧିମାନଙ୍କ ସୁରକ୍ଷା ସହିତ ବନ୍ଧୁକଧାରୀ ଦେହରକ୍ଷୀ ନିଯୁକ୍ତ ହେଉଛନ୍ତି । ହିଂସାତ୍ମକ ପନ୍ଥାରେ ବିପ୍ଳବ ଚାହୁଁଥିବା ବ୍ୟକ୍ତିମାନେ ବନ୍ଧୁକକୁ ଯେପରି ତାଙ୍କ ଦେହର ଅଙ୍ଗ କଲେଣି, ସେହିପରି ପ୍ରତିନିଧିମାନଙ୍କର ସୁରକ୍ଷା ବନ୍ଧୁକଧାରୀ ଦେହରକ୍ଷୀଙ୍କ କାର୍ଯ୍ୟ ହେଲାଣି । ଏହି ପରିବେଶରେ ସମ୍ପ୍ରତି ସବୁ କ୍ଷେତ୍ରରେ ପୋଲିସର ଆବଶ୍ୟକତା ପଡୁଛି ଓ ଗଣତାନ୍ତ୍ରିକ ରାଷ୍ଟ୍ର ପୋଲିସ ରାଷ୍ଟ୍ରରେ ପରିବର୍ତ୍ତିତ ହେବାରେ ଲାଗିଛି । ନକ୍ସଲପନ୍ଥୀମାନେ ସେମାନଙ୍କର ବିପ୍ଳବ ଓ ଲକ୍ଷ୍ୟ ପାଇଁ ନିଜର ଜୀବନ ଦେବାକୁ ପ୍ରସ୍ତୁତ । ତେବେ କେତେଜଣ ଲୋକପ୍ରତିନିଧି ଲୋକଙ୍କ ସହିତ ରହି ସମସ୍ତ ତ୍ୟାଗ ସହିବାକୁ ପ୍ରସ୍ତୁତ ?

ଯାହା ଜଣାପଡୁଛି, ସାମ୍ପ୍ରତିକ ସ୍ଥିତିରେ ଗଣତାନ୍ତ୍ରିକ ମୂଲ୍ୟବୋଧ ଓ ବୈପ୍ଳବିକ ମୂଲ୍ୟବୋଧ ଭିତରେ ଦ୍ୱନ୍ଦ୍ୱ ନାହିଁ । କିନ୍ତୁ ଏହି ଦ୍ୱନ୍ଦ୍ୱ ଲୋକପ୍ରତିନିଧିଙ୍କୁ ସୁରକ୍ଷା ଦେବା ପାଇଁ ନିଯୁକ୍ତ ପୋଲିସର ବନ୍ଧୁକ ଓ ବନ୍ଧୁକ ହିଁ ବିପ୍ଳବର ଏକମାତ୍ର ସାଧନ କଥାରେ ବିଶ୍ୱାସ

କରୁଥିବା ନକ୍ସଲଙ୍କ ହାତରେ ବନ୍ଧୁକ ଭିତରେ ରହିଛି । ଲୋକଙ୍କର ପ୍ରତିନିଧି ଭାବରେ ଆପଣମାନେ ଏହି ସମସ୍ୟା ଉପରେ ଚିନ୍ତା କରୁଛନ୍ତି କି ? ଗଣତାନ୍ତ୍ରିକ ମୂଲ୍ୟବୋଧର ସୁରକ୍ଷା ପାଇଁ ଆପଣମାନଙ୍କର ପ୍ରତିବଦ୍ଧତା ବିଷୟରେ ଆପଣମାନେ ସାଧାରଣ ଜନଗଣଙ୍କୁ ସଚେତନ କରାଉଛନ୍ତି କି ?

ଏହି ବର୍ଷ ମହାତ୍ମା ଗାନ୍ଧୀଙ୍କ ସତ୍ୟାଗ୍ରହର ଶତବାର୍ଷିକୀ ପାଳିତ ହେଉଛି । ବିପ୍ଳବର ପନ୍ଥା ଯେ ହିଂସାତ୍ମକ ଏହା ଅବଶ୍ୟମ୍ଭାବୀ ନୁହେଁ । ସତ୍ୟାଗ୍ରହ ଆଧାରରେ ଯେ ବିପ୍ଳବ ଆଣିହେବ ଏହା ଗାନ୍ଧୀ ପ୍ରୟୋଗ କରି ଦେଖାଇଛନ୍ତି । ଗାନ୍ଧୀଙ୍କ ଅହିଂସା ପଦ୍ଧତି ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଏକ ପ୍ରଧାନ ଆଧାର ଥିଲା । ଭାରତୀୟ ଜାତୀୟ କଂଗ୍ରେସ ଏବେ ଗାନ୍ଧୀଙ୍କ ଆଦର୍ଶକୁ ପାଳନ କରୁଥିବା ଦାବି ପୃଷ୍ଠଭୂମିରେ, କଂଗ୍ରେସ ଏ କ୍ଷେତ୍ରରେ ସୂଚିତ ପ୍ରସଙ୍ଗ ଉପରେ ଅଧିକ ଦାୟିତ୍ୱ ନିର୍ବାହ କରିବା ଆବଶ୍ୟକ । ଲୋକପ୍ରତିନିଧିଙ୍କ ଭିତରୁ ଯଦି ଦୁର୍ନୀତି ଲୋପପାଇବ, ଯଦି ସେମାନେ ଗଣତନ୍ତ୍ରକୁ ଏକ ନୈତିକ ଶକ୍ତିରେ ପରିବର୍ତ୍ତନ କରିପାରିବେ ଓ ପୋଲିସ ବ୍ୟବସ୍ଥାରେ ପରିବର୍ତ୍ତନ ଆଣି ଲୋକମାନଙ୍କର ସୁରକ୍ଷା ପାଇଁ ଏହାକୁ ଉତ୍ତରଦାୟୀ କରାଯିବ ତେବେ ହିଂସାତ୍ମକ ବିପ୍ଳବ ଚାହୁଁଥିବା ନକସଲବାଦର ବିଲୋପ ହୋଇପାରିବ । ଏକ ସୁସ୍ଥ ଓ ଗୁଣାତ୍ମକ ଜୀବନ ବଞ୍ଚିବା ପ୍ରତ୍ୟେକ ନାଗରିକର ଅଧିକାର- ଏହି ପ୍ରତିଶ୍ରୁତି ଏକ ଗଣତାନ୍ତ୍ରିକ ସରକାର ଜନଗଣଙ୍କୁ ଦେଲେ ନକ୍ସଲବାଦ ଅଚିରେ ବିଲୁପ୍ତ ହେବ ।

ଲୋକ ପ୍ରତିନିଧିମାନେ ଓ ରାଜନୈତିକ କର୍ମୀମାନେ ଏହି ସବୁ ପ୍ରଶ୍ନ ଉପରେ ଲୋକଙ୍କ ସହ ମୁକ୍ତ ଆଲୋଚନା କରିବା ପାଇଁ ମୁଁ ବିନୀତ ନିବେଦନ କରୁଛି । ସମାଜରେ ଗଣତାନ୍ତ୍ରିକ ଓ ନୈତିକ ମୂଲ୍ୟବୋଧର ଉତ୍କର୍ଷ ଆଣିବାକୁ ପ୍ରୟାସ କରୁଥିବା ଜଣେ ନାଗରିକ । ଶ୍ରଦ୍ଧା ଓ ସମ୍ମାନ ଜଣାଇ ରହୁଛି । ଲବଣମ୍ ।

ମାତ୍ର ବାରବର୍ଷ ବୟସରେ ଭାରତଛାଡ ଆନ୍ଦୋଳନରେ ଯୋଗଦେଇ ଓ ପିଲାଟି ବେଳୁ ଗାନ୍ଧୀଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କରେ ଆସି ଲବଣମ୍ ଏକ ଉନ୍ନତ ସମାଜ ଓ ନ୍ୟାୟପୂର୍ଣ୍ଣ ବ୍ୟବସ୍ଥା ପାଇଁ ଜୀବନସାରା ଉତ୍ସର୍ଗୀକୃତ ଭାବେ କାର୍ଯ୍ୟ କରୁଛନ୍ତି । ଦେଶରୁ ଦୁର୍ନୀତି ଓ ହିଂସାତ୍ମକ ପରିସ୍ଥିତିର ବିଲୋପ ପାଇଁ ଲୋକ ପ୍ରତିନିଧିମାନଙ୍କର ଯେପରି ଦାୟିତ୍ୱ ରହିଛି ସେହିପରି ଯୁବ ପିଢ଼ିର ମଧ୍ୟ ରହିଛି । ଦେଶ ଦୁନିଆର ପରିସ୍ଥିତି ବିଷୟ ଚିନ୍ତାକରିବା ତଥା ଲୋକମାନଙ୍କ ସମସ୍ୟା ଉପରେ ଗଭୀର ସମ୍ପୃକ୍ତି ବ୍ୟକ୍ତ କରିବାରେ ଲବଣମ୍ ଆମ ସମୟର ଜଣେ କ୍ରାନ୍ତିକାରୀ ଚିନ୍ତାନାୟକ କହିଲେ ଅତ୍ୟୁକ୍ତି ହେବନାହିଁ ।

(୫.୩.୨୦୧୪)



# ମାଓବାଦୀଙ୍କୁ ଚିଠିଟିଏ

ଜଣେ ଗାନ୍ଧୀବାଦୀ ଓ ହେତୁବାଦୀ ଚିନ୍ତକ ଭାବେ ଲବଣମ୍ ଦେଶ ବିଦେଶରେ ସୁପରିଚିତ । ତାଙ୍କର ଜନ୍ମ ୧୯୩୦ରେ ଆନ୍ଧ୍ରପ୍ରଦେଶରେ । ତାଙ୍କ ବାପା ଗୋପରାଜୁ ରାମଚନ୍ଦ୍ର ରାଓ, ଗୋରା ନାମରେ ଆନ୍ତର୍ଜାତିକ ସ୍ତରରେ ପ୍ରସିଦ୍ଧ । ଲବଣ ସତ୍ୟାଗ୍ରହ ବର୍ଷ ଜନ୍ମ ହୋଇଥିବାରୁ ବାପା, ମା' ତାଙ୍କ ନାମ ରଖିଲେ ଲବଣମ୍, ଯାହାର ଅର୍ଥ 'ଲୁଣ' । ଗୋରା ଅଧ୍ୟାପକ ଜୀବନରୁ ଇସ୍ତଫା ଦେଇ ସ୍ୱାଧୀନତା ଆନ୍ଦୋଳନ ଓ ସମାଜ ସଂସ୍କାର କ୍ଷେତ୍ରରେ ନିଜକୁ ଉତ୍ସର୍ଗ କରିଥିଲେ । ଲବଣମ୍ ପିଲାଟି ବେଳୁ ଗାନ୍ଧୀଙ୍କ ସହ ରହିଛନ୍ତି । ଏବେ ଭାରତବର୍ଷରେ ଗାନ୍ଧୀଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିବା ଯେଉଁ କେତେଜଣ ମୁଷ୍ଟିମେୟ ବ୍ୟକ୍ତି ରହିଛନ୍ତି ସେମାନଙ୍କ ମଧ୍ୟରେ ଲବଣମ୍ ଅନ୍ୟତମ । ଲବଣମ୍‌ଙ୍କର କୌଣସି ଆନୁଷ୍ଠାନିକ ଶିକ୍ଷା ନାହିଁ, ସେ ବିଦ୍ୟାଳୟ ବା ବିଶ୍ୱବିଦ୍ୟାଳୟରେ ପାଠ ପଢ଼ି ନାହାନ୍ତି । କିନ୍ତୁ ଜଣେ ମୌଳିକ ଚିନ୍ତକ ଓ କ୍ରାନ୍ତିକାରୀ ବୁଦ୍ଧିଜୀବୀ ଭାବେ ସେ ଭାରତରେ ଓ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ । ବହୁ ଜାତୀୟ ତଥା ଆନ୍ତର୍ଜାତିକ ପୁରସ୍କାର ପାଇଛନ୍ତି । ଯମନାଲାଲ ବଜାଜ ପୁରସ୍କାର ତଥା ଇଣ୍ଟରନ୍ୟାସନାଲ ହ୍ୟୁମାନିଷ୍ଟ ଏଣ୍ଡ ଏଥିକାଲ ୟୁନିଅନ ଆୱାର୍ଡ ଭଳି ମର୍ଯ୍ୟାଦାଜନକ ପୁରସ୍କାର ଲାଭ କରିଛନ୍ତି । ଜୀବନସାରା ମାନବବାଦ, ହେତୁବାଦ ଓ ଗାନ୍ଧୀବାଦ ପ୍ରସାର କରିବାରେ ସେ ନିଜକୁ ଉତ୍ସର୍ଗ କରିଛନ୍ତି । ଏତଦ୍‌ବ୍ୟତୀତ ତାଙ୍କ ବାପା ଗୋରାଙ୍କ ଜୀବନଦର୍ଶନ ସକାରାତ୍ମକ ନିରୀଶ୍ୱରବାଦକୁ ଆନ୍ତର୍ଜାତିକ ସ୍ତରରେ ବ୍ୟାପକ କରିବାରେ ଲବଣମ୍‌ଙ୍କର ଅବଦାନ ମଧ୍ୟ ଉଲ୍ଲେଖନୀୟ ।

ବିଭିନ୍ନ ଜାତୀୟ ଓ ମାନବିକ ସମସ୍ୟା ଉପରେ ଲବଣମ୍ ନିଜକୁ ସମ୍ପୃକ୍ତ କରାଇ ତାହାର ସମାଧାନ କ୍ଷେତ୍ରରେ ନିଜର ବିଚାର ବ୍ୟକ୍ତ କରିଆସିଛନ୍ତି । ଭାରତବର୍ଷରେ ମାଓବାଦୀ ସମସ୍ୟା ସମ୍ପର୍କରେ ଲବଣମ୍ ନିଜର ସମ୍ପୃକ୍ତି ମଧ୍ୟ ବ୍ୟକ୍ତ କରିଛନ୍ତି । ଏହି ପରିପ୍ରେକ୍ଷୀରେ

ଜୁଲାଇ ୯,୨୦୦୫ ଦିନ ସେ ମାଓବାଦୀମାନଙ୍କୁ ଏକ ପତ୍ର ଲେଖିଥିଲେ । ଏବେ ବି ସେ ଚିଠିଟିର ପ୍ରାସଙ୍ଗିକତା ଥିବା ମନେହୁଏ । ପାଠକଙ୍କ ଅବଗତି ନିମନ୍ତେ ସେ ଚିଠିଟିର ଓଡିଆ ଅନୁବାଦ ଏଠାରେ ପ୍ରକାଶ କରୁଛି-

ପ୍ରିୟ ମାଓବାଦୀ ସାଥିଗଣ,

ମୁଁ ଯଦିବା ଆପଣମାନଙ୍କ ପରି ହାତରେ କେବେ ବନ୍ଧୁକ ଧରି ନାହିଁ, ତେବେ ମୁଁ ନିଜକୁ ବିପ୍ଳବୀ ମନେକରେ । ମୋର ବିଶ୍ୱାସ ବିପ୍ଳବୀ ଭାବରେ ଆମ ଭିତରେ କେତେକ ସାମଞ୍ଜସ୍ୟ ରହିଛି । ଆମେ ଆମ ଆଦର୍ଶ ଓ ଲକ୍ଷ୍ୟ ପାଇଁ ଆମ ଜୀବନକୁ ବଳି ଦେବାକୁ ପ୍ରସ୍ତୁତ । ଆମ ଲକ୍ଷ୍ୟ ହାସଲ କ୍ଷେତ୍ରରେ ଆମମାନଙ୍କର ଦୃଢ ନିଷ୍ପତ୍ତି ଓ ସଙ୍କଳ୍ପ ରହିଛି । ଆମେମାନେ ଏକ ଉନ୍ନତ ବ୍ୟବସ୍ଥା ଓ ସମାଜ ପାଇଁ ଆମ ସାଧମତେ ଆମର ଲକ୍ଷ୍ୟ ପାଇଁ କାର୍ଯ୍ୟ କରୁଛେ । ଯଦିବା ଆମର ପନ୍ଥା ଓ କାର୍ଯ୍ୟଧାରା ଭିତରେ ପାର୍ଥକ୍ୟ ରହିଛି, ତେବେ ମୋର ଧାରଣା ଆମର ଲକ୍ଷ୍ୟ ସମାନ । ଆମର ଲକ୍ଷ୍ୟ ହେଉଛି ଲୋକମାନେ କିପରି ସ୍ୱାବଲମ୍ବୀ ହୋଇ ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦାର ସହ ବଞ୍ଚିବେ, ସେଥିପାଇଁ ସେମାନଙ୍କୁ ସଚେତନ କରାଇବା ।

ଦୁଇଟି ପୃଥକ୍ ଆଦର୍ଶ ପୋଷଣ କରିଥିବା ଆମ ଭିତରେ କିପରି ସମନ୍ୱୟ ସମ୍ଭବ ବୋଲି କେତେକ ସନ୍ଦେହ କରିପାରନ୍ତି । ତେବେ ଆମେ ଜୀବନର ବାସ୍ତବତାକୁ ଯଦି ଦେଖିବା ତେବେ ଜୀବନ ସମ୍ପୂର୍ଣ୍ଣ ହିଂସାତ୍ମକ ବା ଅହିଂସାତ୍ମକ ନୁହେଁ, ବରଂ ଏ ଉଭୟର ଏକ ମିଶ୍ରିତ ଅଭିବ୍ୟକ୍ତି ବୋଲି ଆମର ଅନୁଭବ ହେବ । ଏପରିକି ମହାତ୍ମା ଗାନ୍ଧୀଙ୍କ ପରି ଜଣେ ମହାନ୍ ବ୍ୟକ୍ତି ଏହା କହିଛନ୍ତି ଯେ ଅହିଂସା ହିଂସା ଅପେକ୍ଷା ମହତ୍ ପନ୍ଥା ଓ ହିଂସା ଭୀରୁତା ଅପେକ୍ଷା ଅଧିକ ଗ୍ରହଣୀୟ । ସାଧାରଣତଃ ଗୁପ୍ତ କାର୍ଯ୍ୟ, ଅସତ୍ୟ, ଅସମତା, ଏକଛତ୍ରବାଦୀ ମାନସିକତା ହିଂସା ସହିତ ସମ୍ପୃକ୍ତ । ଅଥଚ ସତ୍ୟବାଦିତା, ମୁକ୍ତଭାବ, ସମତା ଓ ଗଣତାନ୍ତ୍ରିକ ମାନସିକତା ଅହିଂସା ସହ ସଂଶ୍ଳିଷ୍ଟ । ସେଥିପାଇଁ ରାଷ୍ଟ୍ରୀୟ ସଂଗଠନମାନ ଏବେ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଅଧିକ ଉନ୍ନତ ବୋଲି ଗ୍ରହଣ କରିଛନ୍ତି ଯଦିବା ଏଥିରେ କେତେକ ଦୁର୍ବଳତା ରହିଛି । ଗାନ୍ଧୀଙ୍କର ଯେତେବେଳେ ଆବିର୍ଭାବ ହେଲା, କେହି କେବେ କଳ୍ପନା କରିନଥିଲେ ଯେ ଅହିଂସା ବି ବିପ୍ଳବର ଏକ ମାଧ୍ୟମ ହୋଇପାରିବ । ଗାନ୍ଧୀ ଅହିଂସାକୁ ବ୍ୟକ୍ତିଗତ ସ୍ତରରୁ ସାମାଜିକ ସ୍ତରକୁ ପ୍ରସାରିତ କରି ଏହାକୁ କ୍ରାନ୍ତି ପାଇଁ ଏକ ଅସ୍ତ୍ର କରିପାରିଲେ । ଏହା ସହିତ ସେ ଅହିଂସା ପନ୍ଥାର ସୀମିତତାକୁ

ମଧ୍ୟ ସ୍ୱୀକାର କଲେ । ସେହିପରି ବନ୍ଧୁକ ମୁନରେ ବିପ୍ଳବ ଆଣିବାକୁ ଚାହୁଁଥିବା ସାଥିଗଣ ଯଦି ହିଂସାତ୍ମକ ପନ୍ଥାର ସୀମିତତାକୁ ସ୍ୱୀକାର କରିବେ, ତେବେ ଆମେ ପରସ୍ପର ଭିତରେ ଆଦାନପ୍ରଦାନ କରିପାରିବା ଓ ଏକାଠି କ୍ରାନ୍ତି ପାଇଁ କାର୍ଯ୍ୟ କରିପାରିବା । ଗାନ୍ଧୀଙ୍କର ଦେହାନ୍ତ ପୂର୍ବରୁ ତାଙ୍କର ଏହି ଅନୁଭବ ହୋଇଥିଲା ଯେ, ଯଦି ଭାରତୀୟ ସମାଜରୁ ବୈଷମ୍ୟ ଦୂର ନହୁଏ, ତେବେ ହିଂସାତ୍ମକ ବିପ୍ଳବ ଅବଶ୍ୟମ୍ଭାବୀ ହୋଇପଡିବ । ସୁତରାଂ ହିଂସକୁ ଶେଷ ସାଧନ ଭାବେ ନେବା ପୂର୍ବରୁ ଆମେମାନେ ଏକାଠି କାର୍ଯ୍ୟ କରିବାର ସୁଯୋଗ ରହିଛି ବୋଲି ମୋର ମନେହୁଏ । ତେବେ ବର୍ତ୍ତମାନର ସ୍ଥିତିରେ ଆନ୍ତର୍ଜାତିକ ଅର୍ଥନୈତିକ ସାମ୍ରାଜ୍ୟବାଦର ଯେଉଁ ଆକ୍ରମଣ ଆମ ପାଇଁ ତୀବ୍ର ବେଗରେ ଆସୁଛି ତାହା ବିରୁଦ୍ଧରେ ଆମେ ଲୋକମାନଙ୍କୁ ସଚେତନ କରିବା ଓ ସଂଗଠିତ କରିବା ଜରୁରୀ ମନେହୁଏ ।

ହିଂସା ଅହିଂସାର ପ୍ରସଙ୍ଗକୁ ବାଦ୍ ଦେଇ ଆମେ ଯଦି ଜନଗଣଙ୍କର ହିତ ବିଷୟ ଚିନ୍ତା କରିବା, ତେବେ କିପରି ଆମେ ଲୋକଙ୍କର ମଙ୍ଗଳ କରିପାରିବା ସେ ନେଇ ବିଚାର ଆଲୋଚନା କରିପାରିବା । ମୁଁ ଜଣେ ବ୍ୟକ୍ତି ଭାବରେ ଓ ଜଣେ ବିପ୍ଳବୀ ଭାବେ ଆପଣମାନଙ୍କୁ ଏହା ଲେଖୁଛି । ବିପ୍ଳବର ନୂଆ ପନ୍ଥା ବିଷୟରେ ଆମେ ଗମ୍ଭୀର ଚିନ୍ତା ପ୍ରକଟ କରିବା ଆବଶ୍ୟକ । ଆମେ ଯେଉଁମାନେ ଏକ ଉନ୍ନତ ଓ ଉତ୍ତରଦାୟୀ ବ୍ୟବସ୍ଥା ପାଇଁ ଆମର ସମ୍ପୃକ୍ତି ପ୍ରକାଶ କରୁଛେ, ଆମେ ବିଚାରଶୀଳ ଭାବେ ଏଥିପାଇଁ ପ୍ରୟାସ କରିପାରିବା ।

ମୁଁ ଆପଣମାନଙ୍କୁ ଏହି ପତ୍ର ଲେଖିବାର ଉଦ୍ଦେଶ୍ୟ ହେଉଛି ଲୋକମାନଙ୍କୁ ଏହି କଥା କହିବାକୁ ଯେ ବିପ୍ଳବୀ ଭାବେ ଆମ ଭିତରେ ସାମଞ୍ଜସ୍ୟ ରହିଛି । ବିପ୍ଳବୀ ଭାବେ ଆମେ ପରସ୍ପରକୁ ବୁଝିବାକୁ ଉଦ୍ୟମ କରିବା ଦରକାର । ଆମେ କେଉଁ ସ୍ତରରେ ଏକାଠି ହାତକୁ ହାତ ମିଶାଇ କାର୍ଯ୍ୟ କରିପାରିବା ଓ କେଉଁ ବିଷୟକୁ ଅଗ୍ରାଧିକାର ଦେବା ସେ ନେଇ ଭାବ ବିନିମୟ ଆବଶ୍ୟକ । ପ୍ରତ୍ୟେକ ବିପ୍ଳବ ଏକ ନୂତନ ପନ୍ଥା ବାହାର କରିଥାଏ । କେହି ପୂର୍ବରୁ ଏହି ପନ୍ଥାରେ କାର୍ଯ୍ୟ କରି ନଥାଏ । ଆମେ ଆମର ନୂତନ ପନ୍ଥାରେ ହୁଏତ ତ୍ରୁଟି କରିପାରୁ, ତେବେ ଆମେ ଆତ୍ମ-ସମୀକ୍ଷା କରି ଆମର ତ୍ରୁଟିକୁ ପରିବର୍ତ୍ତନ କରିପାରିବା । ଆମର ଲକ୍ଷ୍ୟପୂରଣ ପାଇଁ ଆଜି ପରିବର୍ତ୍ତିତ ପରିସ୍ଥିତିରେ ଆମେ ନୂତନ ପନ୍ଥା ସନ୍ଧାନ କରିବା ଦରକାର । ଯଦିବି ଆମର ଲକ୍ଷ୍ୟ ପୂରଣ ନହୁଏ, ତେବେ ବି

ଆମେ ବିଫଳ ହେଲେ ବୋଲି ଭାବିବା ନାହିଁ । ବର୍ତ୍ତମାନର ପରିସ୍ଥିତିରେ ପରିବର୍ତ୍ତନ ପାଇଁ ଆମେ କିଛି ଆଲୋଡନ ସୃଷ୍ଟି କରିପାରିବା, ଫଳରେ ଲକ୍ଷ୍ୟ ପୂରଣ ଦିଗରେ ସମାଜ ଅଗ୍ରସର ହୋଇପାରିବ । ମୋର ବିଶ୍ୱାସ ଆପଣମାନେ ମୋର ପ୍ରସ୍ତାବ ବିଷୟରେ ନିଜର ମତ ଓ ଚିନ୍ତା ବ୍ୟକ୍ତ କରିବେ । ଆପଣମାନଙ୍କୁ ବିପ୍ଳବୀ ଅଭିନନ୍ଦନ । ଲବଣମ୍ ।

ମାଓବାଦ ଏକ ରାଜନୈତିକ ବିଚାର ଯାହାର ମୂଳ ଉତ୍ସ କାର୍ଲ ମାର୍କସଙ୍କ ଦର୍ଶନ ଉପରେ ଆଧାରିତ । କାର୍ଲ ମାର୍କସ ଚିନ୍ତା ରାଜ୍ୟର ଜଣେ ମହାନ୍ ବିପ୍ଳବୀ । ଶିଳ୍ପ ବିପ୍ଳବ ପରବର୍ତ୍ତୀ ଯୁଗରେ ଉଦ୍‌ଭବ ପୁଞ୍ଜିବାଦ ସାରା ପୃଥିବୀରେ ଯେଉଁ ଅର୍ଥନୈତିକ ବିଭାଜନ ଆଣିଛି ସେହି ପରିସ୍ଥିତିରୁ ମାର୍କସଙ୍କର ଆବିର୍ଭାବ ହୋଇଛି । ପୁଞ୍ଜିବାଦୀ ବୈଷମ୍ୟର ବିଲୋପ ଘଟାଇ ଏକ ସମତାପୂର୍ଣ୍ଣ, ସମାଜବାଦୀ ରାଷ୍ଟ୍ରର ପରିକଳ୍ପନା କ୍ଷେତ୍ରରେ ମାର୍କସଙ୍କର ବିଚାର ଓ ବିଶ୍ଳେଷଣ ଅନନ୍ୟ ମନେହୁଏ । ମାର୍କସବାଦୀ ଦର୍ଶନ ପ୍ରୟୋଗରେ ଏକ ସମାଜବାଦୀ ରାଷ୍ଟ୍ରର ବାସ୍ତବ ରୂପାୟନ ପାଇଁ ଲେନିନ ରୁଷରେ ଓ ମାଓ ଚୀନରେ ବୈପ୍ଳବିକ ପଦକ୍ଷେପ ନେଇଛନ୍ତି । ଏକ ବର୍ଣ୍ଣ-ବୈଷମ୍ୟପୂର୍ଣ୍ଣ ବ୍ୟବସ୍ଥାରେ ଆଘାତ ପାଇ ତା'ର ଦୂରୀକରଣ ପାଇଁ ପଦକ୍ଷେପ ଓ ବିଚାରରୁ ଗାନ୍ଧୀଙ୍କର ଆବିର୍ଭାବ ହୋଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ସାମ୍ରାଜ୍ୟବାଦକୁ ଦେଶରୁ ହଟାଇବା ପାଇଁ ଗାନ୍ଧୀ ନୂତନ କୌଶଳ ଓ ପନ୍ଥା ସୃଷ୍ଟି କରିଛନ୍ତି । ତେବେ ମାର୍କସ, ମାଓ ଓ ଗାନ୍ଧୀ ପ୍ରତ୍ୟେକ ଜଣେ ଜଣେ କ୍ରାନ୍ତିକାରୀ ବ୍ୟକ୍ତି ଯେଉଁମାନେ ଏକ ନ୍ୟାୟପୂର୍ଣ୍ଣ, ସମତାଭିତ୍ତିକ ତଥା ଅଧିକ ମାନବିକ ସମାଜର ପରିକଳ୍ପନା କରିଛନ୍ତି । ମାନବ ସମାଜର କ୍ରମ ବିକାଶ ଓ ଇତିହାସକୁ ଗଭୀର ଅନୁଶୀଳନ କରି ମାର୍କସ ଚିନ୍ତା ରାଜ୍ୟରେ ବିପ୍ଳବ ଆଣିଛନ୍ତି କିନ୍ତୁ ସେ ସକ୍ରିୟ ରାଜନୀତିରେ ସମ୍ପୃକ୍ତ ହୋଇନାହାନ୍ତି । ଅପରପକ୍ଷରେ ଗାନ୍ଧୀ ଓ ମାଓ ସକ୍ରିୟ ରାଜନୀତିରେ ସମ୍ପୃକ୍ତ ରହି ନିଜସ୍ୱ ଶୈଳୀରେ ସାମାଜିକ ଓ ରାଜନୈତିକ ପରିବର୍ତ୍ତନ ଆଣିଛନ୍ତି । ସାମାଜିକ ନ୍ୟାୟ, ସମତାପୂର୍ଣ୍ଣ ସମାଜ ଓ ମାନବିକ ମର୍ଯ୍ୟାଦା ପ୍ରତିଷ୍ଠା ପାଇଁ ସେମାନଙ୍କର ସମ୍ପୃକ୍ତି ସେମାନଙ୍କୁ ଇତିହାସରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ କରାଇଛି । ମାର୍କସ, ଗାନ୍ଧୀ ଓ ମାଓଙ୍କୁ ଗଭୀର ଭାବେ ଅଧ୍ୟୟନ କରିଥିବା ଓ ସାମାଜିକ ଦୁର୍ଗତି ବା ଇଭିଲକୁ ଦୂର କରିବା ପାଇଁ ନିଜର ଗମ୍ଭୀର ସମ୍ପୃକ୍ତି ବ୍ୟକ୍ତ କରିଥିବା ବ୍ୟକ୍ତିଙ୍କ ଭିତରେ ଲବଣମ୍ ଜଣେ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ । ନ୍ୟାୟ, ସମତା ଓ ପ୍ରତ୍ୟେକ ବ୍ୟକ୍ତି ପାଇଁ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ନିଶ୍ଚୟ ଆମର ସାମାଜିକ ଲକ୍ଷ୍ୟ, ଯାହା ଆମ ସମ୍ବିଧାନର ମୁଖବନ୍ଧରେ ବ୍ୟକ୍ତ ହୋଇଛି । ତେବେ ପ୍ରଶ୍ନ ହେଉଛି-ଏହା

କିପରି ସମ୍ଭବ ? ଲବଣମ୍ ତାଙ୍କ ପତ୍ରରେ ସେହି ପନ୍ଥା ଉପରେ ପ୍ରଶ୍ନ ଉଠାଇଛନ୍ତି । ମାଓବାଦୀମାନେ ଯେଉଁମାନେ ସାମାଜିକ ପରିବର୍ତ୍ତନ ପାଇଁ ଏତେ ତ୍ୟାଗ ସ୍ୱୀକାର କରି ଜୀବନ ଦେବାକୁ ପ୍ରସ୍ତୁତ ଅଛନ୍ତି, ସେମାନେ ଏହି କଥାକୁ ଚିନ୍ତା କରି ଜାତୀୟ ମୁଖ୍ୟ ସ୍ରୋତକୁ ଆସନ୍ତୁ । ଆମର ସାମାଜିକ ଓ ଅର୍ଥନୈତିକ ସ୍ଥିତିରେ ପରିବର୍ତ୍ତନ ଆସି ଗୁଣାତ୍ମକ ଜୀବନ କିପରି ସବୁ ବ୍ୟକ୍ତିଙ୍କ ପାଇଁ ସମ୍ଭବ ହେବ ସେ ପାଇଁ ବିଭିନ୍ନ ସ୍ତରରେ ବିଚାର ବିମର୍ଶର ସୂତ୍ରପାତ ହେଉ । ଜୀବନଜୀବିକା ପାଇଁ ସଂଗ୍ରାମ କରୁଥିବା ଜନବାଦୀ ଆନ୍ଦୋଳନ ପ୍ରତି ସରକାରୀ ଉଦାସୀନତା ପ୍ରକାଶ ନପାଉ । ରାଜନୈତିକ ଦୃଶ୍ୟପଟରେ ସାଧୁତା ପ୍ରତିଫଳିତ ହେଉ ଓ ପ୍ରଶାସନ ଦୁର୍ନୀତିମୁକ୍ତ ରହି ଉତ୍ତରଦାୟୀ ହେଉ । ସମାଜର ସଚେତନ ଗୋଷ୍ଠୀ ସମାଜରେ ଗୁଣାତ୍ମକ ପରିବର୍ତ୍ତନ ପାଇଁ ନିଜର ସମ୍ପୃକ୍ତି ବ୍ୟକ୍ତ କରନ୍ତୁ । ଏସବୁ ଦ୍ୱାରା ହିଂସାତ୍ମକ ପରିସ୍ଥିତିର ପରିବର୍ତ୍ତନ ସମ୍ଭବ ହୋଇପାରିବ ।

(୧୨.୩.୨୦୧୪)



# ସଭ୍ୟତାର ଉତ୍ତରଣ

ଜୀବ ଜଗତରେ ଯେତେ ପ୍ରାଣୀ ଅଛନ୍ତି, ଜୀବନ ଧାରଣ ପାଇଁ ତିନୋଟି ମୌଳିକ ବସ୍ତୁ ଉପରେ ନିର୍ଭର କରନ୍ତି ଯଥା ପବନ, ପାଣି ଓ ଖାଦ୍ୟ । ପବନ ଓ ପାଣି ପ୍ରକୃତିଦତ୍ତ । ସମସ୍ତ ଇତର ଜୀବ ଖାଦ୍ୟ ପାଇଁ ନିଜର ପରିବେଶ ଉପରେ ନିର୍ଭର କରନ୍ତି । ମଣିଷ ବି ଦିନେ ସେହି ସ୍ଥିତିରେ ଥିଲା । ତେବେ କୁହାଯାଏ ପାଞ୍ଚ ଛ' ହଜାର ବର୍ଷ ତଳେ କୃଷି କରି ଉତ୍ପାଦନ କରିବାର ଜ୍ଞାନ ମଣିଷ ହାସଲ କଲା । କୃଷି ହିଁ ସଭ୍ୟତାର ବିକାଶ ପର୍ବରେ ପ୍ରଧାନ ସାଧନ ହେଲା । ଚାଷ କରିବାର ଜ୍ଞାନରୁ ନୂଆ ନୂଆ ହତିଆର, ଯନ୍ତ୍ରପାତି ପ୍ରସ୍ତୁତ କରିବାର ଆବଶ୍ୟକତା ପଡିଲା । ସେହି ଆବଶ୍ୟକତାରୁ କିପରି ମାଟି ହାଣିବ, ହଳ କରିବ, ଫସଲ କାଟି ଅମଳ କରିବ ସେ ଚିନ୍ତା କଲା । ଧୀରେ ଧୀରେ କେତେକ ପଶୁଙ୍କର ସାହାଯ୍ୟ ନେଲା ଓ ପଶୁପାଳନର ଆବଶ୍ୟକତା ଆସିଲା । କେତେକ ସମାଜ ଶାସ୍ତ୍ରୀ ମତ ଦିଅନ୍ତି ଯେ ମାନବ ସଭ୍ୟତାର ଇତିହାସ ହେଉଛି କୃଷିର ଇତିହାସ । କୃଷିର ଜ୍ଞାନ ହିଁ ମଣିଷକୁ ସଭ୍ୟ କରିବାରେ ଓ ସଭ୍ୟତାର ବିକାଶରେ ନିର୍ଣ୍ଣାୟକ ହୋଇଥିବା ସେମାନେ ମତ ଦିଅନ୍ତି । ଗୋଟିଏ ସମୟରେ ସମାଜର ସବୁ ଲୋକ ଖାଦ୍ୟ ଉତ୍ପାଦନ, ସଂଗ୍ରହ ଓ ପ୍ରସ୍ତୁତିରେ ସଂପୃକ୍ତ ରହୁଥିଲେ । ଏପରିକି ଶିଳ୍ପ ବିପ୍ଳବ ଆସିବା ପୂର୍ବରୁ ଓ ସହରୀ ସଭ୍ୟତାର ବିକାଶ ହୋଇନଥିବା ଯୁଗରେ କୃଷି ଓ କୁଟୀର ଶିଳ୍ପ ହିଁ ଥିଲା ଜୀବନଧାରାର ଅବଲମ୍ବନ । ସମାଜର ଅଶୀ ଭାଗରୁ ଅଧିକ ଲୋକ ଚାଷ ଓ ଉତ୍ପାଦନରେ ସଂପୃକ୍ତ ରହୁଥିଲେ । ସଂପ୍ରତି ବିକଶିତ ରାଷ୍ଟ୍ରମାନଙ୍କରେ ଶତକଡା ସାତ ଆଠ ଭାଗ ଲୋକ ମାତ୍ର କୃଷିରେ ସଂପୃକ୍ତ ରହିଛନ୍ତି । କୃଷିଭିତ୍ତିକ ଯନ୍ତ୍ରପାତି ଓ ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ ଯୋଗୁଁ ଶତକଡା ପାଞ୍ଚ ଭାଗ ଲୋକ କୃଷିରେ ପ୍ରତ୍ୟକ୍ଷ ଭାବେ ସଂପୃକ୍ତ ହୋଇ ରାଷ୍ଟ୍ରର ସବୁ ଲୋକଙ୍କର ଖାଦ୍ୟ ଆବଶ୍ୟକତାକୁ ପୂରଣ କରିପାରୁଛନ୍ତି । ଆଗେ ଅଶିକ୍ଷିତ ଲୋକମାନେ ଚାଷ କରୁଥିଲେ ଓ ଖାଦ୍ୟ ଉତ୍ପାଦନରେ ମୁଖ୍ୟ ଭୂମିକା ନେଉଥିଲେ । ତେବେ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଯୋଗୁ ଭାବନା ଆସିଲା ଯେ କୃଷିରେ ସଂପୃକ୍ତ ବ୍ୟକ୍ତି ମାନେ କୃଷି ସମ୍ପର୍କରେ ପ୍ରଶିକ୍ଷିତ ନ ହେଲେ ସେମାନେ ଉନ୍ନତ ପ୍ରଣାଳୀରେ ଯନ୍ତ୍ରପାତି ବିନିଯୋଗ କରି ପ୍ରଚୁର

ଉତ୍ପାଦନ କରିପାରିବେ ନାହିଁ । ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟ ଆବଶ୍ୟକତା ଯଦି ପୂରଣ ହେବା ସମ୍ଭବ ହୋଇଛି ଏହା ପଶ୍ଚାତରେ କୃଷିବିଜ୍ଞାନର ଯଥେଷ୍ଟ ଅବଦାନ ରହିଛି । କୃଷି କ୍ଷେତ୍ରରେ ବୈଜ୍ଞାନିକ ଜ୍ଞାନକୌଶଳ ମଣିଷ ହାସଲ କରିନଥିଲେ ସଭ୍ୟତାର ବିକାଶ ବହୁ ଭାବରେ ବାଧାପ୍ରାପ୍ତ ହୋଇଥାନ୍ତା ।

ହଜାର ହଜାର ବର୍ଷର କୃଷି ସଭ୍ୟତା ଇତିହାସର ଏକ କାଳଖଣ୍ଡରେ ଶିଳ୍ପ ସଭ୍ୟତାକୁ ଜନ୍ମ ଦେଲା । ବିଜ୍ଞାନର ଯୁଗ ସହିତ ଆରମ୍ଭ ହେଲା ଯନ୍ତ୍ର ଶିଳ୍ପର ଯୁଗ । ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ କୁଟୀର ଶିଳ୍ପ ଆଧାରରେ ମଣିଷ ଯେତିକି ଉତ୍ପାଦନ କରୁଥିଲା ଯନ୍ତ୍ର ଶିଳ୍ପର ଜ୍ଞାନ ଓ ପ୍ରୟୋଗରୁ ତାହା ବହୁ ଗୁଣିତ ହେଲା । ଜଣେ ବୁଣାକାର ଚାରି ପାଞ୍ଚ ଦିନର ପରିଶ୍ରମରେ ଖଣ୍ଡିଏ ବସ୍ତ୍ର ବୁଣି ପାରୁଥିଲା, ଯନ୍ତ୍ର ଶିଳ୍ପର ବିକାଶ ହେତୁ ପ୍ରତି ମିନିଟରେ ଶହ ଶହ ବସ୍ତ୍ର ନିର୍ମିତ ହୋଇପାରିଲା । ଯନ୍ତ୍ର ଶିଳ୍ପ ଓ ସେଥିରେ କ୍ରମୋନ୍ନତି ଯୋଗୁ ସବୁ ବସ୍ତୁ ଖୁବ୍ ଅଳ୍ପ ସମୟରେ ଓ ଅଳ୍ପ ଦୈହିକ ପରିଶ୍ରମରେ ହଜାର ହଜାର ସଂଖ୍ୟାରେ ନିର୍ମିତ ହେଲା । ଯେଉଁ ରାଷ୍ଟ୍ରମାନେ ବିଜ୍ଞାନର ସାହାଯ୍ୟରେ ନୂଆ ନୂଆ ପ୍ରଯୁକ୍ତି ଓ ଯନ୍ତ୍ରଶିଳ୍ପର ପ୍ରସାର କରିପାରିଲେ ସେମାନେ ଧୀରେ ଧୀରେ ବିକଶିତ ହୋଇ ଉଠିଲେ । ସଂପ୍ରତି ଯେଉଁ ରାଷ୍ଟ୍ରମାନେ ବିକଶିତ ହୋଇଛନ୍ତି ତାହା ପଶ୍ଚାତରେ ସେମାନଙ୍କର ଶିଳ୍ପୋନ୍ନତି ଏକ ମୁଖ୍ୟ ଭୂମିକା ନେଇପାରିଛି । ଶିଳ୍ପର ବିକାଶ ସହ ଗମନାଗମନର ବିକାଶ, ଶିକ୍ଷାରେ ଗୁଣାତ୍ମକ ଅଭିବୃଦ୍ଧି, ମନୋରଂଜନ ପାଇଁ ନାନା ସାମଗ୍ରୀ, ଉନ୍ନତ ଚିକିତ୍ସା ବ୍ୟବସ୍ଥା ଇତ୍ୟାଦି ବହୁ କ୍ଷେତ୍ରରେ ପ୍ରଗତି ହାସଲ ହେବା ସମ୍ଭବ ହୋଇଛି ।

ଯନ୍ତ୍ରଶିଳ୍ପରେ ଅଭୂତପୂର୍ବ ଉନ୍ନତି ସାଧନ ସହ ବୈଜ୍ଞାନିକ ଗବେଷଣାରୁ ଆସିଛି ସ୍ୱୟଂଚାଳିତ ବ୍ୟବସ୍ଥା । ସବୁ କଥାକୁ ଯନ୍ତ୍ର ସାହାଯ୍ୟରେ କରିବାର ପ୍ରୟାସ ଏକ ନୂତନ ସଂସ୍କୃତିକୁ ବିକାଶ କରାଉଛି । ଜୀବନର ବହୁ କ୍ଷେତ୍ରରେ ସ୍ୱୟଂଚାଳିତ ଯନ୍ତ୍ର ଦ୍ୱାରା ମଣିଷ ଜୀବନକୁ ଅଧିକ ଆରାମଦାୟକ କରିବାକୁ ପ୍ରଯତ୍ନ କରୁଛି । ପୃଥିବୀଠାରୁ କୋଟି କୋଟି କି.ମି. ଦୂରରେ ଥିବା ଗ୍ରହମାନଙ୍କୁ ସ୍ୱୟଂଚାଳିତ ଯାନ ପଠାଇ ସେହି ଗ୍ରହମାନଙ୍କର ସ୍ଥିତି, ସେଥିରେ ଥିବା ଉପାଦାନ ଇତ୍ୟାଦିକୁ ମଣିଷ ଅଧ୍ୟୟନ କରିପାରୁଛି । ଏକ ମଟରଗାଡି ବା ରେଳଇଂଜିନରେ ରହିଥିବା ହଜାର ହଜାର ଯନ୍ତ୍ରାଂଶମାନଙ୍କୁ ମେସିନ ସାହାଯ୍ୟରେ ନିର୍ମାଣ କରାଯାଇ ଖଂଜା ଯାଇପାରୁଛି । ଯନ୍ତ୍ର ସାହାଯ୍ୟରେ ବୋତଲ ମାନଙ୍କରେ ଔଷଧ ପୂରାଇବା, ସେମାନଙ୍କୁ ଉପଯୁକ୍ତ ଭାବେ ବନ୍ଦ ବା ସିଲ କରିବା, ବଟିକା ମାନଙ୍କୁ ଯନ୍ତ୍ରର ସାହାଯ୍ୟରେ ଷ୍ଟ୍ରିପ ଭିତରେ ପୁରାଇବା ସବୁ କିଛି ମେସିନ ସାହାଯ୍ୟରେ କରାଯାଉଛି । ପ୍ରତ୍ୟହଃ ଗୋଟିଏ ଗୋଟିଏ ସମ୍ବାଦପତ୍ର ଲକ୍ଷ ଲକ୍ଷ ସଂଖ୍ୟାରେ ଛପାଯାଉଛି । କୌଣସି ଗୋଟିଏ ଘଟଣା ଘଟିବାର ମାତ୍ର କେତୋଟି ଘଣ୍ଟା ଭିତରେ ସମ୍ବାଦପତ୍ର ମାନେ ଲେଖା ପ୍ରସ୍ତୁତ କରି ତାକୁ ଛାପି ବାହାରକୁ ଛାଡୁଛନ୍ତି । ଏହକୁ ଯନ୍ତ୍ର ସାହାଯ୍ୟରେ କରାଯାଉଛି । ଗୋଟିଏ କାରଖାନାର

ହିସାବ ପତ୍ର ଠିକ୍ କରିବାଠାରୁ ମହା ଜାଗତିକ ବିଶ୍ୱର ଚିତ୍ର ଉତ୍ତୋଳନ କରିବାରେ, ଲକ୍ଷ ଲକ୍ଷ ପରୀକ୍ଷାର୍ଥୀଙ୍କ ଉତ୍ତରକୁ ମୂଲ୍ୟାୟନ କରିଦେବା କାର୍ଯ୍ୟଠାରୁ ପାଗରେ କଣ ପରିବର୍ତ୍ତନ ହେବାକୁ ଯାଉଛି ସବୁ କିଛିକୁ ସ୍ୱୟଂଚାଳିତ ଯନ୍ତ୍ର ସାହାଯ୍ୟରେ କରିବା ବା ଜାଣିବା ସମ୍ଭବ ହୋଇପାରୁଛି । ଅତ୍ୟାଧୁନିକ କଂପ୍ୟୁଟର, ସ୍ୱୟଂକ୍ରିୟ ଯନ୍ତ୍ରର ପ୍ରସାର ମଣିଷ ନିଜର ବୁଦ୍ଧିଦ୍ୱାରା ନିର୍ମିତ କରିପାରିଛି, ତେବେ ମଣିଷର ମସ୍ତିଷ୍କ ଯାହା କାର୍ଯ୍ୟ କରିପାରିବ ତାହାର ହଜାର ହଜାର ଗୁଣର କାର୍ଯ୍ୟ ସ୍ୱୟଂ କ୍ରିୟ ଯନ୍ତ୍ର କରିଦେବା ସମ୍ଭବ ହେଉଛି । ଏହି ପୃଷ୍ଠଭୂମିରେ ଆଜିର ଯୁଗକୁ କୁହାଯାଉଛି ସ୍ୱୟଂ କ୍ରିୟ ଯୁଗ ବା ଏଜେ ଅଫ୍ ଅଟୋମେସନ୍ ।

ସୁଖର ବିଷୟ ଯେଉଁଠି ଯାହା ଜ୍ଞାନ ବିଜ୍ଞାନର ବିକାଶ ହେଉଛି ତାହା ସମଗ୍ର ମଣିଷ ସମାଜର ହିତ ପାଇଁ ବିନିଯୋଗ ହୋଇପାରୁଛି । ଯେଉଁ ବୈଜ୍ଞାନିକ ମାନଙ୍କର ଜୀବନ ବ୍ୟାପୀ ପ୍ରୟାସ, ଗବେଷଣା ଓ ଅନୁଶୀଳନରୁ କିଛି ନୂତନ ଜ୍ଞାନ ବା ଉଦ୍ଭାବନ ହୋଇଛି ତାହାର ସୁଫଳ ମଣିଷ ସମାଜ ଉପଭୋଗ କରିଛି । ବିଂଶ ଶତାବ୍ଦୀ ଆରମ୍ଭରୁ ବିଜ୍ଞାନ ଏତେ ନୂଆ ନୂଆ ଉଦ୍ଭାବନ ଓ ଆବିଷ୍କାର କରିଛି ତାହା ସଭ୍ୟତାର ରୂପରେଖ ପରିବର୍ତ୍ତନ କରିଦେବାରେ ଲାଗିଛି । ଜ୍ଞାନ ସାର୍ବଜନୀନ ହେବା ଓ ସର୍ବ ସାଧାରଣ ତାହାର ସୁଫଳ ପାଇବା ସଭ୍ୟତାର କ୍ରମବିକାଶ ଧାରାରେ ଏକ ବଡ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମଗ୍ର ବିଶ୍ୱରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ଓ ସାର୍ବଜନୀନ ମନୋଭାବର ବିକାଶ ଦିଗରେ କେତେକ ଘଟଣା ପ୍ରମୁଖ ଭୂମିକା ନେଇଥିବା ମନେହୁଏ । ଜାତି, ଧର୍ମ, ଜାତୀୟତା, ଜୀବନଦର୍ଶନ ନିର୍ବିଶେଷରେ ଯେଉଁ ପ୍ରତିଭାଧର ବ୍ୟକ୍ତିମାନେ ମଣିଷ ସମାଜର ହିତ ପାଇଁ କିଛି ମୌଳିକ ଅବଦାନ ଦେଉଛନ୍ତି ସେମାନଙ୍କ ଅବଦାନକୁ ସ୍ୱୀକୃତି ସ୍ୱରୂପ ଜଣେ ବ୍ୟକ୍ତି ଏକ ଆନ୍ତର୍ଜାତିକ ପୁରସ୍କାରର ଭାବନା ସୃଷ୍ଟି କରିଥିଲେ । ସୁଇଡେନର ବିଶିଷ୍ଟ ବୈଜ୍ଞାନିକ ଆଲ୍‌ଫ୍ରେଡ୍ ନୋବେଲ ଥିଲେ ଜଣେ ମାନବ ଅନୁରାଗୀ ଶିଳ୍ପପତି । ତାଙ୍କର ବୈଜ୍ଞାନିକ ଉଦ୍‌ଭାବନ ତାଙ୍କୁ ଅଜସ୍ର ସଂପତ୍ତିର ମାଲିକ କରିପାରିଥିଲା । ଯେହେତୁ ସେ ବିବାହ କରିନଥିଲେ ଓ ତାଙ୍କର ପରିବାର ନଥିଲା ତାଙ୍କର ସଂପତ୍ତିକୁ ସେ ଏକ ଟ୍ରଷ୍ଟକୁ ଦେଇଥିଲେ । ଆନ୍ତର୍ଜାତିକ ସ୍ତରରେ ଯେଉଁ ବ୍ୟକ୍ତି ମଣିଷ ସମାଜର ମଙ୍ଗଳପାଇଁ କୌଣସି ନୂତନ ଜ୍ଞାନ ଦେଇପାରିବେ ବା ସାହିତ୍ୟିକ କୃତି ଦ୍ୱାରା ବିଶ୍ୱଭ୍ରାତୃତ୍ୱର ବାଣୀ ପ୍ରସାର କରିବେ ତାଙ୍କ ଗଚ୍ଛିତ ଅର୍ଥର ସୁଧରୁ ତାଙ୍କୁ ପୁରସ୍କୃତ କରାଯିବ । ନୋବେଲଙ୍କର ଦେହାନ୍ତ ୧୮୯୬ ମସିହାରେ ହୋଇଥିଲା ଓ ନୋବେଲ ପୁରସ୍କାର ୧୯୦୧ ରୁ ପୃଥିବୀରେ ଦିଆଯାଉଛି । ପ୍ରଥମେ ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଚିକିତ୍ସା ବିଜ୍ଞାନ, ସାହିତ୍ୟ ଓ ଶାନ୍ତି ଏପରି ପାଞ୍ଚୋଟି ବିଷୟରେ ଏହି ପୁରସ୍କାର ଦିଆଯାଉଥିଲା ଓ ୧୯୬୯ ରୁ ଅର୍ଥନୀତିରେ ଦିଆଯାଉଛି । ଜ୍ଞାନରାଜ୍ୟରେ ଯେଉଁମାନେ ନୂତନ ଦିଗନ୍ତ ସୃଷ୍ଟି କରୁଛନ୍ତି,

ବିଶ୍ୱରେ ଶାନ୍ତି ଓ ମାନବିକତାର ପ୍ରସାର ପାଇଁ ମହତ୍ତର ଅବଦାନ ଦେଉଛନ୍ତି ସେହି ପ୍ରତିଭାବାନ ବ୍ୟକ୍ତିଙ୍କୁ ଏହି ପୁରସ୍କାରରେ ସମ୍ମାନିତ କରାଯାଉଛି । ଯେଉଁମାନେ ନୋବେଲ ପୁରସ୍କାର ପାଉଛନ୍ତି, ସେମାନେ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରନ୍ତି ଓ ସେମାନେ ହୋଇଯାନ୍ତି ବିଶ୍ୱ-ନାଗରିକ । ମଣିଷ ସମାଜର ଏକତ୍ୱ ଓ ଭ୍ରାତୃତ୍ୱ ହିଁ ଏହି ପୁରସ୍କାର ଦ୍ୱାରା ଋଦ୍ଧିମନ୍ତ ହେବାରେ ଲାଗିଛି ।

ସେହିପରି ସାରା ବିଶ୍ୱରେ ମାନବିକ ଚେତନା ଓ ବିଶ୍ୱ-ଭ୍ରାତୃତ୍ୱର ବାର୍ତ୍ତା ପ୍ରସାର କରିବାରେ ଜାତିସଂଘ ଏକ ପ୍ରମୁଖ ଅନୁଷ୍ଠାନ । ଏକ ଯୁଦ୍ଧରହିତ ବିଶ୍ୱ ଗଠନ ପାଇଁ ରାଷ୍ଟ୍ରମାନଙ୍କ ସହଯୋଗରେ ଏହି ସଂଗଠନ ସ୍ଥାପିତ ହୋଇଥିଲା । ଏତଦ୍‌ବ୍ୟତୀତ ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାବୋଧକୁ ସାର୍ବଜନୀନ କରିବା ପାଇଁ, ବିଶ୍ୱ ସ୍ତରରେ ନ୍ୟାୟ ପ୍ରତିଷ୍ଠା ପାଇଁ, ପ୍ରତ୍ୟେକ ରାଷ୍ଟ୍ରରେ ଜନଗଣ ଯେପରି ଉନ୍ନତ ଓ ଗୁଣାତ୍ମକ ଜୀବନର ଅଧିକାରୀ ହୋଇପାରିବେ ସେ କ୍ଷେତ୍ରରେ ବିଶ୍ୱ ସହଯୋଗ ପାଇଁ ଜାତିସଂଘ କାର୍ଯ୍ୟ କରିଆସୁଛି । ବିଶ୍ୱରୁ କ୍ଷୁଧା, ଦାରିଦ୍ର୍ୟ, ନିରକ୍ଷରତା, ମହାମାରୀକୁ ଦୂର କରିବା ପାଇଁ ଜାତିସଂଘ ପ୍ରୟାସ କରିଆସିଛି । ସବୁ ଆନ୍ତରାଷ୍ଟ୍ରୀୟ ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ସମସ୍ତ ଦେଶ କ୍ଷେତ୍ରରେ ଏହା ସୁଯୋଗ ସୃଷ୍ଟି କରିଛି ।

ସମଗ୍ର ମଣିଷ ସମାଜରେ ମାନବିକ ପ୍ରୀତିଭାବ, ଭ୍ରାତୃତ୍ୱଭାବ, ସେବା ମନୋଭାବ ପରି ମାନବୀୟ ଗୁଣର ପ୍ରସାର ପାଇଁ ନାନା ଆନ୍ତର୍ଜାତିକ ସଂଗଠନ କାର୍ଯ୍ୟ କରୁଛନ୍ତି । ରେଡକ୍ରସ, ଆମ୍ନେଷ୍ଟି ଇଣ୍ଟରନେସନାଲ, ସ୍କାଉଟ ଏଣ୍ଡ ଗାଇଡ, ୟୁନିସେଫ ଏହି ବିଶ୍ୱ ସଂଗଠନ ମାନ ଏକ ପ୍ରୀତିଭରା ଓ ମହତ୍ତର ଭବିଷ୍ୟତ ଗଠନ ଦିଗରେ କାର୍ଯ୍ୟ କରି ଆସୁଛନ୍ତି । ଏସବୁ ଯେ ସଭ୍ୟ ଜୀବନଦୃଷ୍ଟିର ଉତ୍କର୍ଷ ବହନ କରେ ଏହା ନିଃସନ୍ଦେହ ମନେହୁଏ ।

ଏସବୁ ସତ୍ତ୍ୱେ ଆମ ସଂସାରରେ ସାଂପ୍ରଦାୟିକ ଦୃଷ୍ଟିଭଙ୍ଗୀ ଅନେକ ରହିଛି । ଧର୍ମ, ଜାତୀୟତା, ଭାଷା ଇତ୍ୟାଦି ଭାବନାକୁ ନେଇ ନାନା ଭେଦଭାବ ସମାଜରେ ରହିଆସିଛି । ଅନ୍ୟ ପ୍ରତି ଘୃଣା, ଭେଦଭାବ, ବିଦ୍ୱେଷ ଯେ ମାନବିକ ମୂଲ୍ୟବୋଧ ଓ ମହତ୍ତର ଜୀବନବୋଧର ପରିପନ୍ଥୀ ଏହା ଧୀରେ ଧୀରେ ସମାଜରେ ଗୃହୀତ ହେବାରେ ଲାଗିଛି । ଉଦାର ମାନବିକତା, ସହିଷ୍ଣୁତା ସଭ୍ୟ ଜୀବନ ଦୃଷ୍ଟିର ପ୍ରତୀକ ହେବା ବେଳେ ଭେଦଭାବ ଓ ଅସହିଷ୍ଣୁତା ଏହାର ପ୍ରତିକୂଳ ମନେହୁଏ ।

(୩୦.୪.୧୪)



# ଏକବିଂଶ ଶତାବ୍ଦୀ : ସମ୍ଭାବନା ଓ ସଂକଟ

ହଜାର ହଜାର ବର୍ଷ ଧରି ମଣିଷ ସଭ୍ୟତାର ସୋପାନରେ ଆଗକୁ ଯାଇଛି । ଯେତେବେଳେ ମଣିଷ ସଭ୍ୟ ହୋଇନଥିଲା, ବଣ ଜଂଗଲରେ ରହୁଥିଲା, ପଶୁ ଶିକାର କରି ତାର ମାଂସ ଓ ଗଛର ଫଳ ମୂଳ ଖାଇ ବଞ୍ଚୁଥିଲା, ସେତେବେଳେ ମଣିଷ ଓ ପଶୁ ଖୁବ୍ ନିକଟତର ଥିଲେ । କୃଷିର ଜ୍ଞାନ ଓ କେତେକ ପଶୁଙ୍କୁ ଗୃହପାଳିତ କରିବାର ସାମର୍ଥ୍ୟରୁ ମଣିଷ ସ୍ଥାୟୀ ଭାବରେ ବସବାସ କରିବାକୁ ଲାଗିଲା । ଧୀରେ ଧୀରେ ପାରିବାରିକ ଜୀବନ ଦୃଢ଼ ଭିତ୍ତି ନେଲା ଓ ଗୋଷ୍ଠୀଜୀବନରୁ ସଭ୍ୟତାର ବିକାଶ ପର୍ବ ଆରମ୍ଭ ହେଲା । ହଜାର ହଜାର ଭାଷାର କ୍ରମବିକାଶ ହେଲା, ଭାଷା ମାଧ୍ୟମରେ ଭାବ ପ୍ରକାଶ କରିବା ଦ୍ୱାରା ଜ୍ଞାନବିଜ୍ଞାନ ବିଷୟରେ ଚିନ୍ତା ପ୍ରକଟିତ ହେଲା । ବିଭିନ୍ନ ଭୂଖଣ୍ଡରେ ସଭ୍ୟତା ମାନ ଗଢ଼ି ଉଠିଲା, କେଉଁ କେଉଁ ସଭ୍ୟତା ପରିସ୍ଥିତି ଜନିତ ଐତିହାସିକ କାରଣରୁ ଆଗକୁ ଚାଲିଲା ବା ବିଲୋପର ସମ୍ମୁଖୀନ ହେଲା । କେତେ କେତେ ଧର୍ମ, ସଂସ୍କୃତି, ଦର୍ଶନର ବିକାଶ ହେଲା । ଭୌଗୋଳିକ ପରିସୀମାକୁ ନେଇ ରାଷ୍ଟ୍ର, ଦେଶର ଭାବନା ଆସିଲା । ଅର୍ଥନୈତିକ ଢ଼ାଂଚାରେ ପରିବର୍ତ୍ତନ ଯୋଗୁ ସମାଜରେ ସାମନ୍ତବର୍ଗ ସୃଷ୍ଟି ହେଲା । କାଳକ୍ରମେ ରାଜତନ୍ତ୍ର ଆସିଲା ଓ ସମାଜ ଧୀରେ ଧୀରେ ସୁବ୍ୟବସ୍ଥିତ ରୂପ ନେଲା । ସପ୍ତଦଶ ଶତାବ୍ଦୀରୁ ଆଧୁନିକ ବିଜ୍ଞାନର ଯୁଗ ଆରମ୍ଭ ହେଲା । ବିଜ୍ଞାନର ଯୁଗ ଆସିବା ସହ ପାଶ୍ଚାତ୍ୟ ଦେଶମାନଙ୍କରେ ଶିଳ୍ପ ବିପ୍ଳବ ସମ୍ଭବ ହେଲା । ଶିଳ୍ପ ବିପ୍ଳବରୁ ସାମ୍ରାଜ୍ୟବାଦର ପରିବେଶ ଆସିଲା । ରାଜତନ୍ତ୍ର ବିରୁଦ୍ଧରେ କେତେକ ରାଷ୍ଟ୍ରରେ ଗଣ ବିପ୍ଳବ ହୋଇ ଗଣତାନ୍ତ୍ରିକ ବ୍ୟବସ୍ଥାର ଉଦ୍‌ଭବ ହେଲା । ଗଣତନ୍ତ୍ର, ସମାଜବାଦ ଓ ଧର୍ମନିରପେକ୍ଷ ମୂଲ୍ୟବୋଧ ଚିନ୍ତାରାଜ୍ୟରେ ବୈପ୍ଳବିକ ପରିବର୍ତ୍ତନର ସୂତ୍ରପାତ କରାଇଲା ।

ସଭ୍ୟତାର ବିକାଶ ଧାରାରେ ବିଂଶଶତାବ୍ଦୀ ଥିଲା ଅତ୍ୟନ୍ତ ଯୁଗାନ୍ତକାରୀ । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ମହାମାରୀ ରୋଗମାନଙ୍କ ଯୋଗୁ ଯେଉଁ ଗଣମୃତ୍ୟୁର ପରିବେଶ ଥିଲା, ମଣିଷ ଚିକିତ୍ସା ବିଜ୍ଞାନ ଜରିଆରେ ସେ ସବୁକୁ ନିୟନ୍ତ୍ରଣ କରିପାରିଲା । ଇନ୍‌ଫ୍ଲୁଏଂଜା, ନିମୋନିଆ, ହଇଜା, ବସନ୍ତ, ଯକ୍ଷ୍ମା, ପ୍ଲେଗରେ ଅସଂଖ୍ୟ ଲୋକ ମୃତ୍ୟୁବରଣ କରୁଥିଲେ । ଏସବୁ ରୋଗର କାରଣ ଓ ନିଦାନ ଜଣାପଡିବା ପରେ ମୃତ୍ୟୁହାର କମିଗଲା ଓ ପୃଥିବୀର ଜନସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଲା । ୧୮୦୦ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ଥିଲା ଶହେକୋଟି, ୧୯୦୦ ମସିହାରେ ଏହା ହେଲା ୧୬୦ କୋଟି ଓ ୨୦୦୦ ମସିହାରେ ଏହା ହେଲା ୬୦୦ କୋଟି । ଊନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ବିଭିନ୍ନ ଭୂଖଣ୍ଡରେ ବେଳେ ବେଳେ ଦୁର୍ଭିକ୍ଷ ପଡୁଥିଲା, କୌଣସି ପ୍ରାକୃତିକ ବିପର୍ଯ୍ୟୟ ହେଲେ ଲୋକମାନେ ଅସହାୟ ହୋଇ ମୃତ୍ୟୁବରଣ କରୁଥିଲେ । ଗମନାଗମନର ବିକାଶ ଯୋଗୁଁ ଏହି ପ୍ରକାର ପରିସ୍ଥିତିକୁ ମୁକାବିଲା କରାଯାଇ ପାରିଲା । ରୋଗ ବାଧକର ଚିକିତ୍ସା, ପ୍ରାକୃତିକ ଦୁର୍ବିପାକର ମୁକାବିଲା ପାଇଁ ଜ୍ଞାନ କୌଶଳ, ଗମନାଗମନରେ ଉଲ୍ଲେଖନୀୟ ଉନ୍ନତି, ସାର୍ବଜନୀନ ଶିକ୍ଷାର ପ୍ରସାର, ସଭ୍ୟତାର ବିକାଶ ଓ ଗୁଣାତ୍ମକ ଜୀବନ ପାଇଁ ଉପଜୀବ୍ୟ ହୋଇପାରିଲା ।

ଦୁଇ ତିନି ଶତାବ୍ଦୀ ତଳେ ଅର୍ଥନୀତିଜ୍ଞ ମାନେ ଆଶଙ୍କା ବ୍ୟକ୍ତ କରୁଥିଲେ ଯେ ପୃଥିବୀର ଜନସଂଖ୍ୟା ବଢ଼ିଚାଲିଲେ ଉତ୍କଟ ଖାଦ୍ୟ ସମସ୍ୟା ଦେଖା ଦେବ । ଚାଷ ଜମି ସୀମିତ ଥିବାରୁ କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟ ଆବଶ୍ୟକତା ପୂରଣ ହୋଇପାରିବ ନାହିଁ, ଫଳରେ ଖାଦ୍ୟାଭାବ ଯୋଗୁ ବହୁ ଲୋକ ମୃତ୍ୟୁବରଣ କରିବେ । ତେବେ କୃଷି କ୍ଷେତ୍ରରେ ବୈଜ୍ଞାନିକ ଗବେଷଣା ଯୋଗୁ ଚାଷ କ୍ଷେତ୍ରରେ ଏତେ ଉନ୍ନତି ସାଧନ ହୋଇଛି ଯେ ଖାଦ୍ୟାଭାବ ଜନିତ ପରିସ୍ଥିତି ସେପରି କିଛି ସଂକଟ ସୃଷ୍ଟି କରୁନାହିଁ । ଦୁଇ ଶହ ବର୍ଷ ତଳେ ଶହେ କୋଟି ଲୋକଙ୍କର ଖାଦ୍ୟ ସମସ୍ୟା ଉତ୍କଟ ଥିଲା, ଏବେ ସାତ ଶହ କୋଟି ଲୋକଙ୍କର ଖାଦ୍ୟ ସମସ୍ୟା ଦୂରୀଭୂତ ହୋଇପାରିଛି । ଏସବୁ ସମ୍ଭବ ହୋଇଛି ଆଧୁନିକ ବିଜ୍ଞାନର ଅଗ୍ରଗତି ଯୋଗୁ ।

ମଣିଷ ସଭ୍ୟ ହେବା ପରଠାରୁ ସେ ନିଜର ପରିସ୍ଥିତିରେ ଉନ୍ନତି ଆଣିବା ପାଇଁ ନିଜର ମସ୍ତିଷ୍କ ଖଟାଇଛି । ଯେଉଁଠି ମଣିଷ ନିଜର ମସ୍ତିଷ୍କ ଖଟାଇ ନିଜର ବୁଦ୍ଧି ବଳରେ ପରିସ୍ଥିତିରେ ଉନ୍ନତି ଆଣିବା ପାଇଁ ପ୍ରୟାସ କରିଛି ସେଠି ସଭ୍ୟତା ଆଗକୁ ଯାଇଛି ।

ଯେଉଁଠି ଲୋକମାନେ ନିଜର ସ୍ଥିତିରେ ଉନ୍ନତି ଆଣିବା ପାଇଁ କାଳ୍ପନିକ ଦିଅଁ ଦେବତା ଉପରେ ଆଶ୍ରା କରିଛନ୍ତି, ଦୈବୀ କରୁଣା ପାଇବା ପାଇଁ କେତେ କେତେ ପୂଜା, ପରଂପରାରେ ଭୋଳ ହୋଇଛନ୍ତି ସେମାନେ ଅନଗ୍ରସର ରହିଛନ୍ତି । ସଭ୍ୟତାରେ ଯାହା କିଛି ସମ୍ଭବ ହୋଇଛି ସେ ସବୁ ମଣିଷର ପ୍ରୟାସରେ ହୋଇଛି । ରାସ୍ତାଘାଟ, ଘରଦ୍ୱାର, ଗାଡି ମଟର, ଟିଭି, କଂପୁଟର, ମୋବାଇଲ ଫୋନ୍, ପ୍ରିଣ୍ଟିଂ ପ୍ରେସ, ମହାକାଶ ଯାନ ଇତ୍ୟାଦି ସବୁ କିଛି ମଣିଷ ନିଜର ବୁଦ୍ଧି ବଳରେ ନିର୍ମାଣ କରିଛି । ପ୍ରକୃତିରେ ଉପଲବ୍ଧ ବସ୍ତୁକୁ ନେଇ ମଣିଷ ଏସବୁ ନିଜର ମସ୍ତିଷ୍କ ଖଟାଇ ତିଆରି କରିଛି, କୌଣସି ପଦାର୍ଥ ଆକାଶରୁ ଖସି ନାହିଁ କିମ୍ବା କେଉଁ କଳ୍ପିତ ଦିଅଁ ଦେବତାର ଆଶୀର୍ବାଦରୁ ସମ୍ଭବ ହୋଇନାହିଁ ।

ବିଂଶ ଶତାବ୍ଦୀ ମଣିଷକୁ ନେଇ ପହଞ୍ଚାଇଛି ସ୍ୱୟଂକ୍ରିୟ ବା ଅଟୋମେସନ ଯୁଗରେ । ଯନ୍ତ୍ର ସାହାଯ୍ୟରେ ମଣିଷ କିପରି ବହୁ କଥା କରିପାରୁଛି ତାହା ଆଜି ଏକ ସାଧାରଣ ଉପଲବ୍ଧି । ସ୍ୱୟଂଚାଳିତ ମେସିନ ମଣିଷର ବହୁ ସମସ୍ୟାକୁ ଦୂରୀଭୂତ କରିପାରୁଛି । ମେସିନ ଗାଈର କ୍ଷୀର ଦୁହିଁବ, ମେସିନରୁ ମଣିଷ ଆବଶ୍ୟକ ଅନୁଯାୟୀ ଟଙ୍କା ଆଣିବ ବା ସେଥିରେ ଜମା କରିବ, ମେସିନ ସାହାଯ୍ୟରେ ଘରେ ବସି ଟ୍ରେନ ବା ପ୍ଲାଂଇଟ୍ ଟିକଟ କରିବ ଏ ସବୁ ଆଜି ସାଧାରଣ ଘଟଣା ହୋଇଗଲାଣି । ଡାକ୍ତର ଜଣେ ରୋଗୀର ଜଟିଳ ଅସ୍ତ୍ରୋପଚାର ବା ଅପରେସନ କରୁଛନ୍ତି, ମେସିନ ହୃତ୍‌ପିଣ୍ଡ, ଶ୍ୱାସକ୍ରିୟା, ଫୁସ୍‌ଫୁସ୍ କିପରି ଚାଲିଛି ତାହା ସୂଚାଇ ଦେଉଛି । ଏକ ଆନ୍ତର୍ଜାତିକ ସମ୍ମିଳନୀରେ ବହୁ ଦେଶର ଲୋକ ଆଲୋଚନା କରୁଛନ୍ତି । ଜଣେ ଗୋଟିଏ ନିର୍ଦ୍ଦିଷ୍ଟ ଭାଷାରେ ବକ୍ତବ୍ୟ ରଖୁଛନ୍ତି । ଅନ୍ୟମାନେ କାନରେ ଯନ୍ତ୍ର-ଫୋନ ଲଗାଇ ନିଜ ନିଜ ଭାଷାରେ ଭାଷଣ ଶୁଣୁଛନ୍ତି । ଗୋଟିଏ ଭାଷାକୁ ଭିନ୍ନ ଭିନ୍ନ ଭାଷାରେ ମେସିନ ଅନୁବାଦ କରିଦେଉଛି ।

ସ୍ୱୟଂକ୍ରିୟ ଯନ୍ତ୍ର ବା ଅଟୋମେସନ ମଣିଷକୁ କେତେ ସଫଳତା ଦେଇପାରିଛି ତାହାର ଏକ ବଳିଷ୍ଠ ଉଦାହରଣ ହେଲା ମଣିଷର ମହାକାଶ ଯାତ୍ରା । ବିଂଶ ଶତାବ୍ଦୀ ଆରମ୍ଭରେ ମଣିଷ ଆକାଶରେ ଉଡିବାର ଜ୍ଞାନ ହାସଲ କଲା । ତାର ପଚାଶ ବର୍ଷ ପରେ ଆରମ୍ଭ ହେଲା ମହାକାଶ ଯୁଗ । ପ୍ରଥମ କରି ଋଷ ମହାକାଶକୁ ଯାନ ପଠାଇଲା ପ୍ରାୟ ୧୯୫୭ ମସିହାରେ । ଋଷର ପ୍ରତିବାଦୀ ଆମେରିକାରେ ଚହଳ ପଡିଗଲା । ଆମେରିକା ମହାକାଶ ଗବେଷଣାରେ ସମସ୍ତ ଶକ୍ତି ପ୍ରୟୋଗ କଲା । ୧୯୬୯ ରେ ଆମେରିକା ଚନ୍ଦ୍ରକୁ ଯେଉଁ ଯାନ ପଠାଇଲା, ସେଥିରେ ଚନ୍ଦ୍ରରେ ପ୍ରଥମ କରି ମଣିଷ ପାଦ ପକାଇଲା ।

ତାହାର କୋଡିଏ ବର୍ଷ ପରେ ଶନି ଗ୍ରହକୁ ପାୟୋନିୟର-୨ କୁ ପଠାଗଲା । ସେହି ଯାନରେ କେତେ ଲକ୍ଷ ପାର୍ଟ୍ ରହିଛି, ପ୍ରତ୍ୟେକ ଅଂଶଟି ଠିକ୍ ଭାବରେ କାମ ନ କଲେ ଯାନଟି ଅଚଳ ହୋଇଯିବ । ଏହି ଯାନଟି ପୃଥିବୀଠାରୁ ୩୨୦ କୋଟି କି.ମି. ଯିବା ପରେ ସେହି ଗ୍ରହର ଫଟୋ ଉତ୍ତୋଳନ କରି ସ୍ୱୟଂ କ୍ରିୟ ଭାବେ ଏହା ପୃଥିବୀକୁ ପଠାଇଲା । ଏକ ଉଡାଜାହାଜ ଯଦି ଘଣ୍ଟାକୁ ଚଉଦ ଶହ କି.ମି. ବେଗରେ ନିରନ୍ତର ଯାତ୍ରା କରେ ତେବେ ଶନି ଗ୍ରହରେ ପହଞ୍ଚିବାକୁ ତାକୁ ୯୯ ବର୍ଷ ଲାଗିବ । କିନ୍ତୁ ପାୟୋନିୟର ଯାନଟି ଛ'ବର୍ଷ ପରେ ଶନିର କକ୍ଷରେ ପହଞ୍ଚି ପାରିଲା । ଶନି ଗ୍ରହର ଦଶଟି ଉପଗ୍ରହ ଓ ସେହି ଗ୍ରହର ଗଠନ ସଂପର୍କରେ ବହୁ ଆଲୋକ ଚିତ୍ର ପୃଥିବୀକୁ ପଠାଉଥିଲା । ପୃଥିବୀର ଗୋଟିଏ ଉପଗ୍ରହ ଚନ୍ଦ୍ର ଥିବା ବେଳେ ଶନିଗ୍ରହର ଦଶଟି ଉପଗ୍ରହ ବିଷୟରେ ବହୁ ରହସ୍ୟମୟ ତଥ୍ୟ ଜଣାପଡିଲା । ସେଠାରୁ ଯେଉଁ ଫଟୋଚିତ୍ର ଆସୁଥିଲା ତାହା ସ୍ୱୟଂକ୍ରିୟ ଯନ୍ତ୍ର ମାଧ୍ୟମରେ ଆସୁଥିଲା ଓ ସେହି ଯନ୍ତ୍ର କିପରି କାର୍ଯ୍ୟ କରିବ ଏଥିପାଇଁ ପୃଥିବୀରୁ ନିର୍ଦ୍ଦେଶ ଯାଉଥିଲା । ସବୁ କିଛି ସ୍ୱୟଂକ୍ରିୟ ଯନ୍ତ୍ର ସାହାଯ୍ୟରେ ସମ୍ଭବ ହେଉଥିଲା । ଜ୍ୟୋତିର୍ବିଜ୍ଞାନ ଗବେଷଣା କ୍ଷେତ୍ରରେ ଗତ ଷାଠିଏ, ସତୁରୀ ବର୍ଷ ଭିତରେ ଯେତେ ସଫଳତା ମିଳିଛି ତା ଫଳରେ ବିଶ୍ୱର ଉତ୍ପତ୍ତି, ଜୀବସତ୍ତାର କ୍ରମବିକାଶ ନେଇ ବହୁ ତଥ୍ୟ ମଣିଷ ଜାଣିବାକୁ ସମର୍ଥ ହୋଇଛି । ଏସବୁ ମଣିଷର ମସ୍ତିଷ୍କ ଚାଳନା ଯୋଗୁ ସମ୍ଭବ ହୋଇପାରିଛି ।

ମଣିଷ ଜାତି ଯେତେବେଳେ ଯେଉଁ ସଂକଟମୟ ସ୍ଥିତିର ସମ୍ମୁଖୀନ ହେଉଛି, ତାର ସମାଧାନ ବାହାର କରିବାକୁ ପୃଥିବୀର ବିଭିନ୍ନ ଦେଶର ବୈଜ୍ଞାନିକ, ରାଷ୍ଟ୍ରନୀତିଜ୍ଞ ଓ ମାନବ-ଦରଦୀ ହେତୁବାଦୀ ଗଣ ପ୍ରୟାସ କରି ଆସିଛନ୍ତି । ଏକବିଂଶ ଶତାବ୍ଦୀର ଦୁଇଟି ବଡ ସଂକଟ ପ୍ରସଙ୍ଗରେ ଏବେ ବହୁ ସ୍ତରରେ ଚର୍ଚ୍ଚା ହେଉଛି । ସେହି ସଂକଟ ଦୁଇଟି ହେଲା ଶକ୍ତି ସଂକଟ ଓ ପରିବେଶ ପ୍ରଦୂଷଣ ଜନିତ ସଂକଟ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରଠାରୁ ଧୀରେ ଧୀରେ ପୃଥିବୀରେ ବହୁ ଯାନ, ବାହାନ ସଂଖ୍ୟା ବଢ଼ି ବଢ଼ି ଚାଲିଛି । ସେହିପରି ଅସଂଖ୍ୟ କଳ, କାରଖାନା ନିର୍ମିତ ହୋଇଛି ଓ ହେଉଛି । ପୁନଶ୍ଚ କୃଷିର ଉନ୍ନତିକରଣ ପାଇଁ ପ୍ରଚୁର ସାର ଆବଶ୍ୟକ ହେଉଛି । ଏସବୁ ପାଇଁ ଆବଶ୍ୟକ ପଡୁଛି ପ୍ରଚୁର ଜୈବ ଇନ୍ଧନ । ତେବେ କୋଇଲା, ପେଟ୍ରୋଲ, ପ୍ରାକୃତିକ ଗ୍ୟାସ ପରି ଜୈବଇନ୍ଧନ ମାନ ସୀମିତ ଓ ଏହାର ଉତ୍ସ ଗୁଡିକ କେତୋଟି ଦଶନ୍ଧି ଭିତରେ ସମାପ୍ତ ହୋଇଯିବ । ଏହି

ସ୍ଥିତିରେ ଏହାର ବିକଳ୍ପ ପାଇଁ ସୂର୍ଯ୍ୟ ଶକ୍ତି, ପରମାଣୁ ଶକ୍ତି ହିଁ ବିକଳ୍ପ ବୋଲି କୁହାଯାଉଛି । ଏ କ୍ଷେତ୍ରରେ ସାରା ପୃଥିବୀରେ ଗବେଷଣ ଚାଲିଛି ଓ ଏହି ସଂକଟର ସମାଧାନ ପାଇଁ ପ୍ରୟାସ ସଫଳତାର ଦ୍ୱାର ଦେଶରେ ବୋଲି ମନେହେଉଛି । ସେହିପରି ପରିବେଶ ପ୍ରଦୂଷଣ ଏକ ବିଶ୍ୱ ସମସ୍ୟା ଓ ମଣିଷର ଭବିଷ୍ୟତ ସ୍ଥିତି ପାଇଁ ଏକ ଆହ୍ୱାନ । ଏହି ସ୍ଥିତିରେ ଆମ ପରିବେଶର ସୁରକ୍ଷା ଓ ଜୈବ ବିବିଧତାକୁ ରକ୍ଷା କରିବାକୁ ବହୁ ଆନ୍ତର୍ଜାତିକ ଆଲୋଚନା ହୋଇ ଜନଗଣଙ୍କୁ ସଚେତନ କରାଯାଉଛି ।

ମୋଟ ଉପରେ ସଭ୍ୟତାର ବିକାଶଠାରୁ ଆଜି ପର୍ଯ୍ୟନ୍ତ ମାନବିକ ସମସ୍ୟା ଓ ସଂକଟକୁ ଦୂର କରିବାକୁ ମଣିଷ ତା ମସ୍ତିଷ୍କ ଖଟାଇ ଆସିଛି । ଏହି ବୌଦ୍ଧିକ ପ୍ରୟାସରୁ ସଭ୍ୟତା ଆଜିର ସ୍ତରକୁ ଆସିଛି । ବୌଦ୍ଧିକ ଅନୁସନ୍ଧିତ୍ସା ଓ ବିଚାରଶୀଳ ମାନସିକତା ସଭ୍ୟତାକୁ ଆଗକୁ ନେବାରେ ଓ ଗୁଣାତ୍ମକ ଜୀବନର ବିକାଶ କ୍ଷେତ୍ରରେ ପଥ ପ୍ରଦର୍ଶକ ହୋଇଛି । ଏହା ହିଁ ହେଉଛି ବୈଜ୍ଞାନିକ ମାନସିକତା ଓ ହେତୁବାଦର ଅନ୍ତଃସ୍ୱର ।

(୭.୫.୧୪)



# ସୀମାହୀନ ଅନ୍ୱେଷଣ

ମଣିଷ କିଏ, ମଣିଷର ସଂଜ୍ଞା କ'ଣ? ଏହି ପ୍ରଶ୍ନଟିର ଉତ୍ତର ସମାଜ ବିଜ୍ଞାନୀ, ଦାର୍ଶନିକ ମାନେ ନାନା ଭାବରେ ଦେବାକୁ ପ୍ରୟାସ କରିଛନ୍ତି । ଜୀବ ଜଗତରେ ଯେତେ ପ୍ରାଣୀ ରହିଛନ୍ତି ତା ଭିତରୁ ମଣିଷ ଏକ ମାତ୍ର ପ୍ରାଣୀ ଯେ ପ୍ରାକୃତିକ ଉପାଦାନରେ ବସ୍ତୁ ନିର୍ମାଣ କରିପାରେ । ନାନା ଉପକରଣ, ରାସ୍ତାଘାଟ, ଘରଦ୍ୱାର, ଗାଡି ମଟର, ଯନ୍ତ୍ର ମଣିଷ କରିବାକୁ ସମର୍ଥ ହୋଇଛି । ତେଣୁ ମଣିଷ ଯେ ଏକ ଯନ୍ତ୍ର-ପ୍ରସ୍ତୁତକାରୀ ପ୍ରାଣୀ ଏହା କେତେକ ମତ ଦେଇଥାନ୍ତି । ସେହିପରି ମଣିଷ ପ୍ରକୃତିର ଏକ ମାତ୍ର ପ୍ରାଣୀ ଯିଏ ଭାଷା କହିବାକୁ ସମର୍ଥ । ଭାଷା କହିବାର ସାମର୍ଥ୍ୟ ଯୋଗୁ ମଣିଷ ସଭ୍ୟତାର ସୋପାନରେ ଆଗକୁ ଯିବା ସମ୍ଭବ ହୋଇଛି । ଜ୍ଞାନ ବିଜ୍ଞାନର ବିକାଶ ହୋଇଛି, ଜୀବନର ମାନରେ କ୍ରମୋନ୍ନତି ସମ୍ଭବ ହୋଇଛି । ସୁତରାଂ ମଣିଷର ଏହି ସାମର୍ଥ୍ୟକୁ ଲକ୍ଷ୍ୟ କରି କେତେକ କହିଥାନ୍ତି ଯେ ମଣିଷ ଭାଷା କହୁଥିବା ପ୍ରାଣୀ । ଏହି ସବୁ ଲକ୍ଷଣ ବ୍ୟତୀତ, ମଣିଷ ଗୋଟିଏ ସମାଜରେ ରହିବା ଓ ସମାଜ ବ୍ୟତୀତ ଜୀବନ ସମ୍ଭବ ନହେବା ପରିସ୍ଥିତିକୁ ଲକ୍ଷ୍ୟ କରି କେତେକ ମତ ଦିଅନ୍ତି ଯେ ମଣିଷ ଏକ ସାମାଜିକ ପ୍ରାଣୀ । ତେବେ ବସ୍ତୁ ନିର୍ମାଣ କରିବା, ଭାଷା କହିବା, ସାମାଜିକ ଜୀବନ ଅତିବାହିତ କରିବା ସମ୍ଭବ ହୋଇଛି ମଣିଷର ବିଚାରଶୀଳ ସାମର୍ଥ୍ୟ ଯୋଗୁ । ମଣିଷର ଯେ ଏକ ମସ୍ତିଷ୍କ ରହିଛି ଓ ମଣିଷ ନିଜର ମସ୍ତିଷ୍କ ଖଟାଇ ତାର ପରିବେଶକୁ ବୁଝିବାକୁ ପ୍ରଯତ୍ନ କରିଛି ଏହା ହିଁ ତାର ଅସ୍ତିତ୍ୱର ବଡ କଥା । ମଣିଷ ନିଜର ପରିବେଶକୁ, ଜୀବନ ପ୍ରବାହକୁ ଅନୁଧାନ କରିଛି । ବିଭିନ୍ନ ବିଷୟରେ ଚିନ୍ତା କରିଛି । ନାନା ପ୍ରତିକୂଳ ସ୍ଥିତିକୁ ଅତିକ୍ରମ କରିବାକୁ ପ୍ରଯତ୍ନ କରିଛି । ହଜାର ହଜାର ବର୍ଷର ଜୀବନ ପ୍ରବାହ ଭିତରେ ଜ୍ଞାନବିଜ୍ଞାନର ବିକାଶ କରାଇଛି, ସଭ୍ୟତାକୁ ଆଗକୁ ନେଇଛି ଓ ଜୀବନର ମାନରେ ଉନ୍ନତି କରିବାକୁ ଅବିରତ ପ୍ରଯତ୍ନ କରିଛି । ଏଣୁ ଜଣେ ଦାର୍ଶନିକ ମଣିଷର ସଂଜ୍ଞା ଦେବାକୁ ଯାଇ କହିଛନ୍ତି ଯେ ମଣିଷ ଏକ ବିଚାରଶୀଳ ପ୍ରାଣୀ । ମଣିଷ ଭିତରେ ଚିନ୍ତା କରିବାର ସାମର୍ଥ୍ୟ ରହିଛି ଓ ଏହି ସାମର୍ଥ୍ୟରୁ ଅନ୍ୟାନ୍ୟ ଦକ୍ଷତା ମଣିଷ ହାସଲ କରିଛି ।

ଯେଉଁ ଯୁଗରେ ରେଳ, ମଟର, ଉଡାଜାହାଜ ନଥିଲା ଓ ମଣିଷର ଗତିଶୀଳତା ଅତ୍ୟନ୍ତ ସୀମିତ ଥିଲା ସେତେବେଳେ ବି କିଛି ବ୍ୟକ୍ତି ନିଜ ଚାରିପାଖର ପୃଥିବୀକୁ ଜାଣିବାକୁ ପ୍ରୟାସ କରିଛନ୍ତି । ଏହି କୌତୂହଳତା ଯୋଗୁ ଧୀରେ ଧୀରେ ସେ ଜାଣିଲା ଯେ ପୃଥିବୀଟି ବହୁତ ବଡ । ତା ମନରେ ପ୍ରଶ୍ନ ଉଠିଲା ତା ଚାରିପଟେ କେଉଁମାନେ ଅଛନ୍ତି, ସେଠାରେ କ'ଣ ଅଛି ? ପାଦରେ ଚାଲି, ହାତୀ, ଓଟ, ଘୋଡା ପିଠିରେ ବସି ସେ ଯେତେଦୂର ସମ୍ଭବ ଯାଇ ଜାଣିଲା ଯେ ବିଭିନ୍ନ ସ୍ଥାନରେ ସଭ୍ୟତା ରହିଛି । ମଣିଷମାନେ ରହିଛନ୍ତି । ସଭ୍ୟତା ଅନ୍ୱେଷଣରେ ଯାଇ ସଭ୍ୟତା-ସଭ୍ୟତା ଭିତରେ ସଂପର୍କ ଯୋଡିଥିବା ମଣିଷମାନେ ବିସ୍ମୃତ ହୋଇ ଯାଇଛନ୍ତି, ତେବେ ସେମାନେ ମଣିଷ ଜାତିର ବହୁ ଉପକାର ସାଧନ କରିଛନ୍ତି ।

ପାଞ୍ଚ ଶହ ଛ' ଶହ ବର୍ଷ ତଳେ ମଣିଷର ସମୁଦ୍ରରେ ଯାତ୍ରା ଆରମ୍ଭ ହୋଇଥିଲା । ସୁବିସ୍ତୃତ ସମୁଦ୍ର ଯାତ୍ରା ଏକଦା ଅତ୍ୟନ୍ତ ବିପଦ ସଂକୁଳ ଥିଲା, ତା ସତ୍ତ୍ୱେ ମଣିଷ ନିଜର ବୁଦ୍ଧି, ମସ୍ତିଷ୍କ ଖଟାଇ ସମୁଦ୍ର ପଥରେ ଯାତ୍ରା ଆରମ୍ଭ କଲା । ସାଗର, ମହାସାଗରର ବିସ୍ତୃତ ଜଳରାଶି ଉପରେ ମାସ, ମାସ ଧରି ଯାତ୍ରା କରିବାର ଦୁଃସାହସ ଭିତରୁ ପୃଥିବୀର ବିଭିନ୍ନ ଅଞ୍ଚଳର ସନ୍ଧାନ ପାଇଲା । ପୃଥିବୀର କେତେକ ସ୍ଥାନର ଲୋକମାନେ ସମୁଦ୍ର ଯାତ୍ରାରେ ଥିଲେ ଅଗ୍ରଣୀ । ବିଶେଷ କରି ସ୍ପେନୀୟ ଓ ପର୍ତ୍ତୁଗିଜମାନେ ଏ କ୍ଷେତ୍ରରେ ଅଧିକ ଦୁଃସାହସର ସହ ପ୍ରଶାନ୍ତ ମହାସାଗରରେ ଯାତ୍ରା କରିଛନ୍ତି । ପ୍ରଶାନ୍ତ ମହାସାଗର ଏକ ବିଶାଳ ସାଗର । ୫୩ ଟି ଭାରତର ଆୟତନ ସହ ଗୋଟିଏ ପ୍ରଶାନ୍ତ ମହାସାଗରର ଆୟତନ ସମାନ ଓ ଏହା ପୃଥିବୀ ଆୟତନର ପ୍ରାୟ ଏକ ତୃତୀୟାଂଶ । ସମୁଦ୍ର ଯାତ୍ରାରେ ଯାଇ ପୃଥିବୀର କେଉଁ ଅଞ୍ଚଳରେ କ'ଣ ରାଜ୍ୟ ରହିଛି ତାହା କୌତୂହଳୀ ନାବିକମାନେ ମଣିଷ ଜାତିକୁ ଜଣାଇଛନ୍ତି । ଅଷ୍ଟାଦଶ ଶତାବ୍ଦୀ ଆରମ୍ଭ ବେଳକୁ ପୃଥିବୀର ବିଭିନ୍ନ ଅଞ୍ଚଳ, ମହାଦେଶ, ମହାସାଗର ବିଷୟରେ ସ୍ପଷ୍ଟ ଚିତ୍ର ମିଳିବା ସମ୍ଭବ ହୋଇ ପାରିଥିଲା । ଏହି ପ୍ରକ୍ରିୟାରେ ଅଷ୍ଟାଦଶ ଶତାବ୍ଦୀରୁ ସାମ୍ରାଜ୍ୟବାଦର ବିସ୍ତାର ସମ୍ଭବ ହୋଇଥିଲା । ଦେଶ-ଦେଶ, ମହାଦେଶ-ମହାଦେଶ ଭିତରେ ସଂପର୍କ ସ୍ଥାପିତ ହେଲା । ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରଦାନର ଯୁଗ ଆରମ୍ଭ ହେଲା । ତେବେ କେତେକ ଭୂଖଣ୍ଡର ଆଦିମ ମୂଳ ଅଧିବାସୀମାନେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ସମ୍ମୁଖୀନ ହୋଇ ପାରିଲେ ନାହିଁ । ସେମାନେ ତାଙ୍କର ପ୍ରାଚୀନ ଅସ୍ତ୍ର ଶସ୍ତ୍ର ଭିତରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନଙ୍କର ଆଧୁନିକ ମାରଣାସ୍ତ୍ରର ମୁକାବିଲା କରିପାରିଲେ ନାହିଁ । ସେମାନେ ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର ବଶ୍ୟତା ସ୍ୱୀକାର କଲେ ବା କେତେକ ଜାତି ନିଶ୍ଚିହ୍ନ ହୋଇଗଲେ । ସମୁଦ୍ର ଯାତ୍ରାର ଜ୍ଞାନକୌଶଳ, ନୂତନ ଅଞ୍ଚଳର ଅନ୍ୱେଷଣ ଭିତରୁ ଅନେକ ଅଗମ୍ୟ

ଅଞ୍ଚଳ ବିଷୟରେ ଧାରଣ ଆସିଲା । ଏହି ପ୍ରକ୍ରିୟାରେ ପାଶ୍ଚାତ୍ୟ ଭୂଖଣ୍ଡରେ ଶିଳ୍ପ ବିପ୍ଳବ ଯୋଗୁ ବାଣିଜ୍ୟ ବିସ୍ତାର ଓ ଉପନିବେଶ ସ୍ଥାପନର ଯୁଗ ସୃଷ୍ଟି ହେଲା । ଏହି ସ୍ଥିତିରେ ପାଶ୍ଚାତ୍ୟ ଦେଶର କିଛି ଜ୍ଞାନ ପିପାସୁ ବ୍ୟକ୍ତି ବିଭିନ୍ନ ଜନଜାତି ଓ ସଭ୍ୟତା ବିଷୟରେ ନାନା ଅନୁଶୀଳନ ଆରମ୍ଭ କଲେ । ଭାଷା, ସାହିତ୍ୟ, ଧର୍ମ, ସଂସ୍କୃତି ମାନଙ୍କର ତୁଳନାତ୍ମକ ଅଧ୍ୟୟନ ବିଶ୍ୱବିଦ୍ୟାଳୟ ମାନଙ୍କରେ କରାଗଲା । ବିଶ୍ୱବିଦ୍ୟାଳୟ ଶିକ୍ଷାର ବିସ୍ତାର ହେଲା ଓ ଜ୍ଞାନବିଜ୍ଞାନରେ ନୂଆ ନୂଆ ଗବେଷଣା ଜ୍ଞାନର ଦିଗନ୍ତକୁ ବିସ୍ତାର କରି ଚାଲିଲା ।

ଉନବିଂଶ ଶତାବ୍ଦୀ ମଧ୍ୟଭାଗରେ ରେଳ ଯାତ୍ରାର ଜ୍ଞାନ ଆସିଲା । ରେଳ ଯାତ୍ରା ଯୋଗୁ ସ୍ଥଳପଥରେ ଯାତ୍ରା ଓ ପରିବହନ ସୁଗମ ହୋଇପାରିଲା । ମଣିଷ ବୁଦ୍ଧି ଖଟାଇ ନଦୀମାନଙ୍କ ଉପରେ ପୋଲ ନିର୍ମାଣ କଲା ଓ ଗମନାଗମନ କ୍ଷେତ୍ରରେ ବିପ୍ଳବର ଯୁଗ ଆରମ୍ଭ ହେଲା । ବିଂଶ ଶତାବ୍ଦୀ ଆରମ୍ଭରେ ଆକାଶ ପଥରେ ଯାତ୍ରା କରିବାର ଜ୍ଞାନ ଆସିଲା, ଉଡାଜାହାଜ ଉଦ୍‌ଭାବନରୁ । ଏହା ଥିଲା ସଭ୍ୟତାର ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ସମଗ୍ର ପୃଥିବୀର ଭୂଗୋଳକୁ ମଣିଷ ନିଜର ବୁଦ୍ଧି ଖଟାଇ ଜାଣିବାକୁ ପ୍ରୟାସ କଲା । ଏପରିକି ଦୁଇଟି ବରଫ ରାଇଜର ସନ୍ଧାନ ପାଇଲା, ଯାହା ଉତ୍ତରମେରୁ ଓ ଦକ୍ଷିଣ ମେରୁ ବା ଆଣ୍ଟାରଟିକା ଭାବେ ଜଣାଶୁଣା । ଉଡାଜାହାଜ ଯୋଗେ ମଣିଷ ଦୁଇ ମେରୁ ରାଜ୍ୟ ଉପରେ ଉଡି ତାହାକୁ ଆକଳନ କଲା । ଉତ୍ତରମେରୁ ଓ ଆଣ୍ଟାରକଟିକା ଜନବସତି ବିହୀନ । ଉତ୍ତରମେରୁ ଅଞ୍ଚଳ ଏକ ସମୁଦ୍ର, ଯାହାର ଅଧିକାଂଶ ଭାଗ ହେଉଛି ଭାସମାନ ବରଫ । ଦକ୍ଷିଣମେରୁ ହେଉଛି ବରଫ ଆଚ୍ଛାଦିତ ସ୍ଥଳଭାଗ । ଆନ୍ତର୍ଜାତିକ ସହଯୋଗରେ ପୃଥିବୀର ବହୁ ଦେଶର ବୈଜ୍ଞାନିକମାନେ ବୈଜ୍ଞାନିକ ଗବେଷଣା ପାଇଁ ଦୁଇ ମେରୁକୁ ଅନୁଶୀଳନ କରି ଚାଲିଛନ୍ତି । ମଣିଷ ନିଜର ଜ୍ଞାନ ବଳରେ ପୃଥିବୀର କୋଣ ଅନୁକୋଣ ଓ ଉପରିଭାଗଟିକୁ ଜାଣିବାକୁ ସମର୍ଥ ହେବା ଏକ ଗୌରବର କାହାଣୀ । ସେହିପରି ମହାସାଗରର ଗଭୀରତାକୁ ମାପିବା, ଆଧୁନିକ ଯନ୍ତ୍ର ସାହାଯ୍ୟରେ ହଜାର ହଜାର ମିଟର ସମୁଦ୍ର ତଳକୁ ଯାଇ ସମୁଦ୍ର ଭିତରର ରହସ୍ୟ ଉନ୍ମୋଚନ କରିବା ମଣିଷ ପକ୍ଷରେ ବିଂଶ ଶତାବ୍ଦୀରେ ସମ୍ଭବ ହୋଇଛି । ସମୁଦ୍ର ଭିତରର ଗବେଷଣା ଅଦିପର୍ବରେ ରହିଛି, ଭବିଷ୍ୟତରେ ସମୁଦ୍ର ବିଷୟରେ ବହୁ ରହସ୍ୟ ଜଣାପଡିବ ବୋଲି ଭୂବିଜ୍ଞାନୀ ଓ ସମୁଦ୍ରବିଜ୍ଞାନୀ ମାନେ ମତ ପ୍ରକାଶ କରୁଛନ୍ତି ।

ସ୍ଥଳପଥ ଓ ଜଳପଥରେ ପୃଥିବୀର ସବୁ ଅଞ୍ଚଳକୁ ଜାଣିବା ଆଜି ମଣିଷ ପକ୍ଷରେ ସମ୍ଭବ ହୋଇଛି । ବହୁ ଅତୀତରେ ମଣିଷର ସଂସାରଟି ଖୁବ୍ କ୍ଷୁଦ୍ର ଥିଲା । ସେ ଶିକାର କରିବାକୁ, ଫଳ ସଂଗ୍ରହ କରିବାକୁ ଖୁବ୍ ଅଳ୍ପ ବାଟ ପାଦରେ ଯାଉଥିଲା, ସନ୍ଧ୍ୟା ପୂର୍ବରୁ ନିଜର ବସାକୁ ଫେରି ଆସୁଥିଲା । ବିଂଶ ଶତାବ୍ଦୀର ଶେଷ ବେଳକୁ ପୃଥିବୀଟି ଛୋଟ

ହୋଇଯାଇଛି । ଟେଲିଫୋନ୍, ରେଡିଓ, ଟେଲିଭିଜନ, ଇଣ୍ଟରନେଟ୍, ଉଡାଜାହାଜ ପୃଥିବୀକୁ ଏକ କ୍ଷୁଦ୍ର ଗ୍ରାମରେ ପରିଣତ କରିଦେଇଛି । ପୃଥିବୀରୁ ଦୂରତା କମିଯାଇଛି । ସମୟ ଓ ଦୂରତା ଉପରେ ମଣିଷ ନିଜର କର୍ତ୍ତୃତ୍ୱ ସ୍ଥାପନ କରିପାରିଛି । ଏସବୁ ସମ୍ଭବ ହୋଇଛି ମଣିଷର ବୁଦ୍ଧିରୁ ଓ ବୈଜ୍ଞାନିକ ଜ୍ଞାନ କୌଶଳରୁ ।

ବିଂଶଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଆରମ୍ଭ ହୋଇଛି ମହାକାଶ ଯାତ୍ରା । ସମ୍ଭବତଃ ବିଂଶଶତାବ୍ଦୀର ଷଷ୍ଠ ଦଶକରେ ରୁଷ ମହାକାଶକୁ ସ୍ୱୟଂକ୍ରିୟ ଯାନ ପଠାଇଲା । ତାର କିଛି ବର୍ଷ ପରେ ୧୯୬୯ ରେ ଆମେରିକା ଚନ୍ଦ୍ରକୁ ମଣିଷ ପଠାଇ ପାରିଲା । ସଂପ୍ରତି ମହାକାଶକୁ ଯାନ ପଠାଇ ପୃଥିବୀର ଉତ୍ପତ୍ତି ସଂପର୍କରେ ଗବେଷଣା ପାଇଁ ପୃଥିବୀର ବହୁ ଦେଶ ପ୍ରୟାସ କରୁଛନ୍ତି । ପୃଥିବୀଠାରୁ ଶହ ଶହ କୋଟି କିଲୋମିଟର ଦୂରରେ ଥିବା ବିଭିନ୍ନ ଗ୍ରହମାନଙ୍କୁ ମଣିଷ ଯାନ ପଠାଇ ବିଶ୍ୱ ବ୍ରହ୍ମାଣ୍ଡର ପରିସ୍ଥିତିକୁ ଅନୁଧ୍ୟାନ କରିବା ସମ୍ଭବ ହୋଇଛି । ଏକ ଆଦିମ ସ୍ଥିତିରୁ ଆଜିର ଏହି ସାମର୍ଥ୍ୟ ଓ ସଫଳତା ମଣିଷର ବୌଦ୍ଧିକ ଅନୁସନ୍ଧିତ୍ସାରୁ ସମ୍ଭବ ହୋଇଛି ।

ଜ୍ଞାନବିଜ୍ଞାନର ବିକାଶ ଓ ସଭ୍ୟତାର ଜୟଯାତ୍ରା ପଶ୍ଚାତରେ ମଣିଷର ବିଚାରଶୀଳତା, ବୌଦ୍ଧିକ ପ୍ରୟାସ ଓ ବୈଜ୍ଞାନିକ ଗବେଷଣା ନିର୍ଣ୍ଣାୟକ ହୋଇଛି । କୌଣସି ଦିଅଁ ଦେବତାର ଆଶୀର୍ବାଦରୁ ଏହା ସମ୍ଭବ ହୋଇନାହିଁ । ମଣିଷ ନିଜର ମସ୍ତିଷ୍କ ଖଟାଇ ପ୍ରକୃତି ଓ ବିଶ୍ୱର ରହସ୍ୟକୁ ବୁଝିବାକୁ ଯେତେବେଳେ ପ୍ରୟାସ କରିଛି, ସେତେବେଳେ ସଭ୍ୟତାର ବିକାଶ ହୋଇଛି, ପ୍ରକୃତିର ରହସ୍ୟ ଉନ୍ମୋଚିତ ହୋଇଛି । ସେହିପରି ମଣିଷ ଉଦ୍ୟମରେ ଆମ ସଂସାର ସୁନ୍ଦର ଓ ପ୍ରୀତିପଦ ହୋଇପାରିବ । ବିଜ୍ଞାନର ବିକାଶ ସହ ମାନବିକତାର ବିକାଶ ସଭ୍ୟତାର ରୂପରେଖ ପରିବର୍ତ୍ତନ କରିପାରିବ । ମାନବିକ ସଂପ୍ରୀତି, ଭାତୃତ୍ୱଭାବ ଓ ଏକ ବିଶ୍ୱଦୃଷ୍ଟି ଜୀବନର ମାନରେ ଗୁଣାତ୍ମକ ପରିବର୍ତ୍ତନ ଆଣିପାରିବ । ତେବେ ମଣିଷର ପ୍ରୟାସ ଓ ଅନ୍ୱେଷଣ କେବେ ଶେଷ ହେବ ନାହିଁ । ସେହିପରି ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ମଣିଷ ନୂଆ ନୂଆ ଆହ୍ୱାନର ସମ୍ମୁଖୀନ ହେଉଥିବ ଓ ମାନବିକ ସମସ୍ୟାର ଦୂରୀକରଣ ପାଇଁ ଚେତନାରେ ଉତ୍ତରଣ ଘଟାଇ ଚାଲିଥିବ । ସଭ୍ୟତାର ବିକାଶ ଓ ମାନବିକତାର ଜୟଗାନ ମାନବିକ ଚେତନାର ଯେ ସୃଜନଶୀଳ ଅଭିବ୍ୟକ୍ତି ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

(୨୧.୫.୨୦୧୪)



# ସଭ୍ୟତାର ଅନ୍ଧକାର

ମଣିଷ ସମାଜର ଇତିହାସ ଯେତିକି ସ୍ୱର୍ଣ୍ଣାଭ, ସେତିକି ମଧ୍ୟ କଳଙ୍କମୟ । ସ୍ୱର୍ଣ୍ଣାଭ ଏହି ଦୃଷ୍ଟିରୁ ଯେ ନାନା ଘାତ ପ୍ରତିଘାତ, ପ୍ରାକୃତିକ ବିପର୍ଯ୍ୟୟ, ଯୁଦ୍ଧ, ମାନବିକ ବିଭୀଷିକା ମଧ୍ୟ ଦେଇ ସମାଜର ବିକାଶଧାରା ସର୍ବଦା ଅବ୍ୟାହତ ରହିଛି । ଆଦିମ ସ୍ଥିତିରୁ ନାନା ପରିବର୍ତ୍ତନ ମଧ୍ୟ ଦେଇ ମଣିଷ ସଭ୍ୟ ଓ ଉନ୍ନତ ହୋଇଛି । ସମାଜ ସୁବ୍ୟବସ୍ଥିତ ଓ ଦୃଢ଼ ହୋଇଛି, ଗଣଶିକ୍ଷାର ପରିବେଶ ଆସିଛି, ଜ୍ଞାନ ବିଜ୍ଞାନର ବିକାଶ ହୋଇଛି, ଜୀବନ ଅନେକାଂଶରେ ନିରାପଦ ହୋଇଛି, ରାଷ୍ଟ୍ରର ଭାବନା ସହ ରାଜନୈତିକ ସ୍ଥିରତା ଆସିଛି ଓ ଜନମଙ୍ଗଳକାରୀ ଯୋଜନା ପ୍ରତ୍ୟେକ ରାଷ୍ଟ୍ରର ଲକ୍ଷ୍ୟ ହୋଇଛି । ଏସବୁ ସତ୍ତ୍ୱେ ସଭ୍ୟତାର ଇତିହାସରେ ନାନା କଳଙ୍କମୟ ଘଟଣା ଘଟିଯାଇଛି । ଅଗଣିତ ମଣିଷଙ୍କର ଜୀବନ ଦୁଃଖ ଯନ୍ତ୍ରଣାରେ ଜର୍ଜରିତ ହୋଇଛି, କେତେ ସୁନାର ସଂସାର ମାନବିକ କ୍ରୂରତା ଯୋଗୁ ଧ୍ୱଂସ ପାଇଛି, ନାନା ଯୁଦ୍ଧ, ବିଭୀଷିକା ଧ୍ୱଂସର ତାଣ୍ଡବ ସୃଷ୍ଟି କରିଛି । ବିଂଶ ଶତାବ୍ଦୀ ମଧ୍ୟ ଭାଗ ପର୍ଯ୍ୟନ୍ତ ପୃଥିବୀ ଇତିହାସରେ ନାନା କଳଙ୍କମୟ ଘଟଣା ଘଟିଯାଇଛି । ଜାତିଗତ, ଧର୍ମଗତ ବିଦ୍ୱେଷ ପୃଥିବୀକୁ ନାନା ଭାବରେ ରକ୍ତରଂଜିତ କରିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଜର୍ମାନୀରେ ହିଟ୍‌ଲର ଅଠାବନ ଲକ୍ଷ ଜିଉମାନଙ୍କୁ ଅତି ନିର୍ମମ ଭାବରେ ହତ୍ୟା କରିବା ଘଟଣା ଇତିହାସରୁ ଜାଣିବାକୁ ମିଳେ । ବିଂଶ ଶତାବ୍ଦୀ ମଧ୍ୟଭାଗ ପୂର୍ବରୁ ଦୁଇଟି ବିଶ୍ୱଯୁଦ୍ଧରେ ଯେଉଁ ରକ୍ତପାତ ହୋଇଛି ତାହା ପୃଥିବୀର ବିବେକକୁ ନାନା ଆଘାତ ଦେଇଛି । ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ ଆମେରିକାର ଆବିଷ୍କାର ଓ ସପ୍ତଦଶ ଶତାବ୍ଦୀରେ ଅଷ୍ଟ୍ରେଲିଆର ଆବିଷ୍କାର ହୋଇଥିଲା, ଅର୍ଥାତ୍ ଇଉରୋପୀୟ ନାବିକମାନେ ଏହି ଦୁଇ ଦେଶ ବିଷୟରେ ଜାଣିବାକୁ ପାଇଥିଲେ । ଘଟଣାକ୍ରମେ ସାମ୍ରାଜ୍ୟ ବିସ୍ତାର କରିବାକୁ ଯେତେବେଳେ ଇଉରୋପୀୟମାନେ ସେହି ଦେଶମାନଙ୍କୁ ଗଲେ ସେଠିକାର ମୂଳ ଅଧିବାସୀମାନେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ବିଭିନ୍ନ ସ୍ଥାନମାନଙ୍କରେ ରହୁଥିଲେ । ସେମାନଙ୍କର ସାମରିକ ଶକ୍ତି ଅତ୍ୟନ୍ତ ଅନୁନ୍ନତ ଅବସ୍ଥାରେ ଥିବାରୁ ସେମାନେ ବଳଶାଳୀ ଇଉରୋପୀୟ ମାନଙ୍କୁ ପ୍ରତିରୋଧ

କରିପାରିଲେ ନାହିଁ । ଆମେରିକାର ମୂଳ ଅଧିବାସୀ ଯେଉଁମାନଙ୍କୁ ଲୋହିତ ଭାରତୀୟ କୁହାଯାଉଥିଲା ସେମାନେ ଗଣହତ୍ୟାର ଶିକାର ହେଲେ । ସେହିପରି ଅଷ୍ଟ୍ରେଲିଆ ଯେତେବେଳେ ୟୁରୋପୀୟ ସାମ୍ରାଜ୍ୟବାଦର ଅଧୀନ ହେଲା, ତାର ମୂଳ ଅଧିବାସୀ ଜନଜାତିର ଲୋକମାନଙ୍କୁ ନିପାତ କରାଗଲା । ସେଠାରେ ଥିବା ଆଦିମ ଜନଜାତି ଓ ସେମାନଙ୍କର ସଭ୍ୟତା ଧ୍ୱଂସ ପାଇଲା । ଏହି ପ୍ରକାରର ନାନା ବର୍ବରତାର କାହାଣୀ ଇତିହାସରୁ ଜାଣିହୁଏ ।

କ୍ରୀତଦାସ ପ୍ରଥା ମାନବ ସଭ୍ୟତାର ଇତିହାସରେ ଆଉ ଏକ କଳଙ୍କମୟ ଘଟଣା । ଆଫ୍ରିକା ମହାଦେଶର ଲୋକମାନେ ଦେଖିବାକୁ କଳା । ସେମାନେ 'ନିଗ୍ରୋ' ଭାବେ ପରିଚିତ । ଲାଟିନ ଭାଷାରେ 'ନିଗର' ଅର୍ଥ କଳା, ଆଫ୍ରିକାର ଲୋକମାନଙ୍କର ବର୍ଣ୍ଣ କଳା ହୋଇଥିବାରୁ ସେମାନଙ୍କୁ ଇଉରୋପୀୟ ମାନେ ନିଗ୍ରୋ ବୋଲି ଅଭିହିତ କଲେ । ଆମେରିକାକୁ ଜଳପଥ ଆବିଷ୍କାର ପରେ ଯେତେବେଳେ ଇଉରୋପର ବିଭିନ୍ନ ଦେଶରୁ ସେଠାକୁ ଲୋକମାନେ ଯାଇ ବସବାସ କଲେ ସେମାନେ ଆଫ୍ରିକାରୁ ଲୋକମାନଙ୍କୁ ସେଠାକୁ ଜବରଦସ୍ତ ଜାହାଜରେ ବାନ୍ଧି କରି ନେଲେ । ରାସ୍ତାଘାଟ, ଜମିବାଡ଼ି ଇତ୍ୟାଦି କାମ କରିବାକୁ ଲକ୍ଷ ଲକ୍ଷ ନିଗ୍ରୋମାନଙ୍କୁ ନେଇ ସେଠାରେ ବିକ୍ରି କରାଗଲା । ଗାଈ, ଛେଳିକୁ ବିକିଲା ପରି ମଣିଷମାନଙ୍କୁ ବେପାରୀ ମାନେ ନେଇ ବିକ୍ରି କରୁଥିଲେ ଓ ଏହି କ୍ରୀତଦାସମାନେ ବହୁ ମାନବିକ ଅତ୍ୟାଚାରର ଶରବ୍ୟ ହେଉଥିଲେ । ଊନବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ କ୍ରୀତଦାସ ପ୍ରଥା ଆମେରିକାରେ ରହିଥିଲା ଓ ଆଫ୍ରିକାରୁ ଏଥିପାଇଁ ଏକକୋଟି ପନ୍ଦର ଲକ୍ଷ ଲୋକଙ୍କୁ ନିଆଯାଇଥିବା ଜଣାଯାଏ । ନିଜର ଭିଟାମାଟି, ପରିବାର, ସଂସ୍କୃତିରୁ ସେମାନଙ୍କୁ ବିଚ୍ଛିନ୍ନ କରାଯାଇ ଯୁବକମାନଙ୍କୁ ବଂଧୁକ ମୁନରେ ଜାହାଜରେ ବାନ୍ଧିକରି ନେଇ ଆମେରିକାରେ ବିକ୍ରି କରାଯିବା ଥିଲା ଅତ୍ୟନ୍ତ ଅମାନବିକ । କ୍ରୀତଦାସ ମାନେ ଲେଖାପଢ଼ା କରିପାରିବେ ନାହିଁ, ସମ୍ପତ୍ତି ରଖିପାରିବେ ନାହିଁ, ସମବେତ ହୋଇପାରିବେ ନାହିଁ, କାହା ସାଙ୍ଗରେ କିଛି ଚୁକ୍ତି କରିପାରିବେ ନାହିଁ, କୌଣସି ଅପରାଧ ପ୍ରତ୍ୟକ୍ଷ କରିଥିଲେ ବି ସାକ୍ଷ ଦେଇପାରିବେ ନାହିଁ ଇତ୍ୟାଦି ନାନା କଟକଣା ଭିତରେ ସେମାନେ ଜୀବନ ନିର୍ବାହ କରୁଥିଲେ । ସେମାନଙ୍କୁ ସର୍ବନିମ୍ନ ଖାଦ୍ୟ ଦିଆଯାଉଥିଲା ଓ ମାଲିକର ଚିରାଫଟା ପୋଷାକ ହିଁ ସେମାନେ ପିନ୍ଧୁଥିଲେ । ମାଲିକର ଆୟ ବଢ଼ାଇବା ହିଁ ସେମାନଙ୍କର ଜୀବନର ଲକ୍ଷ୍ୟ ଥିଲା । ଏହିପରି ଅମାନବିକ ପ୍ରଥା ଆମେରିକାର

ଜନଜୀବନରେ ବ୍ୟାପକ ଭାବେ ରହିଥିଲା । ଏଥିପାଇଁ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସାମାଜିକ ଚେତନା ପ୍ରକାଶ ପାଇବାରୁ ଏହି ନିଷ୍ଠୁର ପ୍ରଥାକୁ ଆଇନଗତ ଭାବେ ନିଷେଧ କରାଗଲା ।

ଇତିହାସର ଆଉ ଏକ କଳଙ୍କିତ ଘଟଣା ହେଉଛି ଅସ୍ପୃଶ୍ୟତା ଓ ବର୍ଣ୍ଣବୈଷମ୍ୟ । ଅସ୍ପୃଶ୍ୟତା ହିନ୍ଦୁ ସାମାଜିକ ବ୍ୟବସ୍ଥାର ଏକ ପରିଣାମ । ହିନ୍ଦୁ ସମାଜର ବର୍ଣ୍ଣବ୍ୟବସ୍ଥା ହିନ୍ଦୁ ପୁରାଣ, ଶାସ୍ତ୍ରଦ୍ୱାରା ସ୍ୱୀକୃତ । ବର୍ଣ୍ଣବ୍ୟବସ୍ଥାନୁଯାୟୀ ସମାଜରେ ଥିବା ଲୋକମାନେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଭାବରେ ବିଭାଜିତ ଓ ସେମାନଙ୍କ ବାହାରେ ଥିବା ଲୋକମାନେ ଅବର୍ଣ୍ଣ ଓ ଅସ୍ପୃଶ୍ୟ । କାଳକ୍ରମେ ବର୍ଣ୍ଣବ୍ୟବସ୍ଥା ହଜାର ହଜାର ଜାତିକୁ ଉଦ୍‌ଭବ କରାଇଛି ଓ ଜାତିଗତ ବ୍ୟବସ୍ଥାଟି ସମାଜରେ ଦୃଢ଼ ହୋଇଯାଇଛି । ପ୍ରତ୍ୟେକ ଜାତି ଏକ ସାର୍ବଭୌମ ସଂଗଠନରେ ପରିଣତ ହୋଇଛି ଓ ଜାତି ଜାତି ଭିତରେ ଆଦାନ-ପ୍ରଦାନ ଅତି ସଂକୁଚିତ ହୋଇଯାଇଛି । ଅବର୍ଣ୍ଣ, ପଞ୍ଚମବର୍ଣ୍ଣ, ଅନୁସୂଚିତ ଜାତି, ହରିଜନ ଓ ଦଳିତ ଭାବେ ସମାଜର ଏକ ଗୋଷ୍ଠୀ ପରିଚିତ ହୋଇଛନ୍ତି । ଏହି ଗୋଷ୍ଠୀର ଲୋକମାନେ ହଜାର ହଜାର ବର୍ଷ ଧରି ଶୋଷିତ ଓ ଅତ୍ୟାଚାରିତ ହୋଇଛନ୍ତି । ସେମାନେ ସମସ୍ତ ମାନବିକ ଅଧିକାରରୁ ବଞ୍ଚିତ ହୋଇ ଅତ୍ୟନ୍ତ ଅମାନବିକ ଓ ଅବମାନବୀୟ ସ୍ତରରେ ଜୀବନ ନିର୍ବାହ କରିଛନ୍ତି । ତଥାକଥିତ ଉଚ୍ଚଜାତିର ଲୋକମାନେ ନିଜ ଧର୍ମର ଶୂଦ୍ର ଓ ଦଳିତମାନଙ୍କୁ ସର୍ବଦା ନ୍ୟୂନ କରି ଆସିଛନ୍ତି ଓ ଅର୍ଥ ଉପାର୍ଜନ, ଜ୍ଞାନ ଆହରଣ ଓ ଅସ୍ତ୍ରଧାରଣରୁ ବଞ୍ଚିତ କରି ରଖିଛନ୍ତି । ବିଶେଷକରି ଦଳିତମାନଙ୍କୁ ଅସ୍ପୃଶ୍ୟ କରିବାର ନାନା କରୁଣ କାହାଣୀ ଭାରତୀୟ ଜନଜୀବନର ଇତିହାସରୁ ଜଣାପଡେ । ଦଳିତମାନେ ସର୍ବସାଧାରଣ ରାସ୍ତାରେ ଚାଲିପାରିବେ ନାହିଁ, କୂଅ ପୋଖରୀରୁ ଜଳ ନେଇ ପାରିବେ ନାହିଁ, ପୂଜାସ୍ଥଳର ଦ୍ୱାରଦେଶକୁ ବି ଯାଇପାରିବେ ନାହିଁ ଏହି ପରି ନାନା ନିଷ୍ଠୁର କଟକଣା ଭିତରେ ହିନ୍ଦୁ ସମାଜର ଦଳିତମାନେ ପୁରୁଷ ପୁରୁଷ ଧରି ଜୀବନ ନିର୍ବାହ କରିଛନ୍ତି । ଭାରତୀୟ ସ୍ୱାଧୀନତା ଆନ୍ଦୋଳନ ସମୟରେ ହିଁ ଏହି ଜଟିଳ ସାମାଜିକ ସମସ୍ୟାଟି ଜାତୀୟ ଦୃଶ୍ୟପଟକୁ ଆସିଛି ଓ ଅସ୍ପୃଶ୍ୟତା ପରି ଏକ କଳଙ୍କକୁ ଦୂର କରିବାକୁ ଦେଶରେ କିଛି ପ୍ରୟାସ ହୋଇଛି । ରାଜନୈତିକ ସ୍ୱାଧୀନତା ପରେ ଅସ୍ପୃଶ୍ୟତା ଏକ ଦଣ୍ଡନୀୟ ଅପରାଧ ବୋଲି ଆଇନଗତ ବ୍ୟବସ୍ଥା ହୋଇଛି । ଏସବୁ ସତ୍ତ୍ୱେ ଗାଁ ଗହଳରେ ଏବେ ବି ଅସ୍ପୃଶ୍ୟତା ଅନେକାଂଶରେ ରହିଛି । ଜନ୍ମକୁ ଆଧାର କରି ବ୍ୟକ୍ତିର ସାମାଜିକ ସ୍ଥିତି ନିର୍ଣ୍ଣିତ ହେବା ଓ ଜାତିଗତ ଅସ୍ମିତା

ଟି ଅପରିବର୍ତ୍ତନୀୟ ରହିବା ଭାରତୀୟ ହିନ୍ଦୁ ସମାଜର ଏକ ନିଛକ ବାସ୍ତବତା । ଜନ୍ମଜନିତ ସାମାଜିକ ଭେଦଭାବ ଭାରତୀୟ ଜନଜୀବନକୁ ସର୍ବଦା କଳୁଷିତ କରି ରଖିଛି ଓ ଏହି ପ୍ରଥାରୁ ସମାଜ ସଂପୂର୍ଣ୍ଣ ମୁକ୍ତ ହୋଇପାରୁ ନାହିଁ ।

ବର୍ଣ୍ଣବୈଷମ୍ୟ ବା ଅପରଥେଡ୍ ଆଫ୍ରିକାର ଏକ ସାମାଜିକ ଭେଦଭାବ ଜନିତ ବ୍ୟବସ୍ଥା । ଦେହର ରଙ୍ଗ ଅନୁଯାୟୀ ଗୋରା ଲୋକମାନେ ଯେଉଁମାନେ ଇଉରୋପରୁ ଯାଇ ଆଫ୍ରିକାରେ ସାମ୍ରାଜ୍ୟବାଦର ବିସ୍ତାର କରିଥିଲେ କଳାଲୋକମାନଙ୍କୁ ବିଭିନ୍ନ କଟକଣା ଭିତରେ ରଖିଲେ । କଳାଲୋକମାନେ ଗୋରା ଲୋକଙ୍କ ଦ୍ୱାରା ପରିଚାଳିତ ଶିକ୍ଷାନୁଷ୍ଠାନକୁ ଯାଇପାରିବେ ନାହିଁ, ହୋଟେଲରେ ଖାଇପାରିବେ ନାହିଁ ଓ ଏପରିକି ଗୋରାଲୋକଙ୍କ ଡବାରେ ଟ୍ରେନ୍‌ରେ ଯାତ୍ରାକରି ପାରିବେ ନାହିଁ । ବର୍ଣ୍ଣଗତ ବୈଷମ୍ୟ ଦୀର୍ଘ ଦିନ ପର୍ଯ୍ୟନ୍ତ ଆଫ୍ରିକାରେ ରହିଛି ଓ ସମାଜ ଗୋରା-କଳା ଅନୁଯାୟୀ ବିଭାଜିତ ହୋଇଯାଇଛି । ଗୋରା ଲୋକ ସଂଖ୍ୟା ନ୍ୟୁନ ହେଲେ ବି କ୍ଷମତା, ଅର୍ଥ, କଳ କାରଖାନା, ଚାଷ ସବୁର ମାଲିକ ହୋଇ ରହିଥିଲେ । କଳା ଲୋକଙ୍କ ଭିତରେ ଶିକ୍ଷା ଓ ସଚେତନତାର ବିକାଶ ଦ୍ୱାରା ଯେଉଁ ଆନ୍ଦୋଳନ ହେଲା ତାର ପରିଣାମ ସ୍ୱରୂପ ବର୍ଣ୍ଣବୈଷମ୍ୟ ପ୍ରତି ସାମାଜିକ ଦୃଷ୍ଟିଭଙ୍ଗୀରେ ଅନେକ ପରିବର୍ତ୍ତନ ଆସିପାରିଛି । ମଣିଷ ମଣିଷ ଭିତରେ ଘୃଣା, ବିଦ୍ୱେଷ, ଭେଦଭାବ, ନାରକୀୟ ହିଂସା, ଅତ୍ୟାଚାର, ଗଣସଂହାର ପରି ଯେଉଁ ସବୁ ଘଟଣା ଅତୀତରେ ଘଟିଯାଇଛି ତାହା ସଭ୍ୟତାର ଅନ୍ଧକାର ଦିଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ରୋଗ, ପ୍ରାକୃତିକ ଦୁର୍ବିପାକ ମଣିଷ ସମାଜରେ ଯେତିକି ଦୁଃଖର ପରିବେଶ ସୃଷ୍ଟି କରିନାହିଁ, ତାର ବହୁଗୁଣ ଦୁର୍ଦ୍ଦଶା ମାନବିକ କ୍ରୂରତା ଯୋଗୁ ସୃଷ୍ଟି ହୋଇଛି । ଇତିହାସର ଏହା ଏକ ବିଡମ୍ୱନା ଯେ ଧାର୍ମିକ ସାଂପ୍ରଦାୟିକତା ଅନେକ ଅମାନବୀୟ ବର୍ବରତା ସୃଷ୍ଟି କରିବାରେ ବି ପ୍ରମୁଖ ଭୂମିକା ନେଇଆସିଛି । ଧର୍ମର ଅହେତୁକ ପ୍ରଭାବ ଥିବା କେତେକ ସମାଜରେ ସାଂପ୍ରଦାୟିକ ହିଂସା ଏବେ ବି ନିଛକ ବାସ୍ତବତା । ଭାରତ-ପାକିସ୍ତାନ ବିଭାଜନରେ ଲକ୍ଷ ଲକ୍ଷ ଲୋକ କିପରି ସର୍ବସ୍ୱାନ୍ତ, ଆହତ ଓ ନିହତ ହୋଇଛନ୍ତି ଓ ଅଗଣିତ ପରିବାରର ସୁନାର ସଂସାର ଚୂନା ହୋଇଯାଇଛି ତାହା ଏବେ ବି ଏକ ମାନବଦରଦୀ ବ୍ୟକ୍ତି ପାଇଁ ଅତ୍ୟନ୍ତ ମର୍ମାନ୍ତିକ । ଧର୍ମର ମୁଖାପିନ୍ଧା କିଛି ମଣିଷ ବିଦ୍ୱେଷ ଓ ହିଂସ୍ରତାର ଯେଉଁ ସାଂପ୍ରଦାୟିକ ବୀଜ ବୁଣନ୍ତି, ସେଥିରେ ଅଗଣିତ ନିରୀହ ମଣିଷ ଶିକାର ହୁଅନ୍ତି । ଧର୍ମାନ୍ଧ ଲୋକମାନେ ସଂସାରରେ କ୍ଷମତାର ଅଧିକାରୀ ହୋଇଛନ୍ତି ଓ ଅନ୍ୟାୟ ଓ ଅଧର୍ମର ଝଡ ସୃଷ୍ଟି କରିଛନ୍ତି ।

ଏସବୁ ସତ୍ତ୍ୱେ ଏକ ସହିଷ୍ଣୁତାର ସଂସ୍କୃତି ପୃଥିବୀରେ ବିକଶିତ ହେବାରେ ଲାଗିଛି । ବିଂଶଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଯେପରି ଆନ୍ତର୍ଜାତିକ ଚେତନା, ବିଶ୍ୱ ଭାତୃତ୍ୱର ଭାବନା, ବ୍ୟକ୍ତି ମର୍ଯ୍ୟାଦାବୋଧ ଜନିତ ସଚେତନତା ବୃଦ୍ଧି ପାଇବାରେ ଲାଗିଛି ତାହା ଅନେକ ଆଶାର ଆଲୋକ ସଂଚାର କରୁଛି । ସଭ୍ୟତାର ଅନ୍ଧକାର ଭିତରେ ମାନବିକତାର ପରାଜୟ ହୋଇନାହିଁ । ମାନବିକତା ଯେପରି ହେଲେ ବି ତାର ଦୀପ ଶିଖାଟିକୁ ଜଳାଇ ଆସିଛି । ବିଜ୍ଞାନ ଓ ମାନବିକତାର ସ୍ପର୍ଶରେ ଦୁନିଆ ସୁନ୍ଦର ହୋଇଚାଲିଛି । ଉଦାରବାଦୀ, ସହିଷ୍ଣୁ, ମାନବବାଦୀମାନେ ବିଶ୍ୱ ଭାତୃତ୍ୱର ଯେଉଁ ବାଣୀଟି ଶୁଣାଇ ଆସିଛନ୍ତି ତାହା ଏକ ବିଂଶ ଶତାବ୍ଦୀରେ ଯେ ଅଧିକ ଶକ୍ତିଶାଳୀ ହେବ ଏହା ଆଶା କରାଯାଏ । ସଭ୍ୟତାର ଅନ୍ଧକାରକୁ ଦୂର କରିବାରେ ବିଜ୍ଞାନ ଓ ମାନବବାଦ ଯେ ଆଲୋକର ବର୍ତ୍ତିକା ହୋଇପାରିବ ଏହା ନିଃସନ୍ଦେହ ମନେହୁଏ ।

(୨୮.୫.୧୪)



# ବିକାଶ ଓ ବୈଷମ୍ୟ

ସାମାଜିକ ବିକାଶ ଏକ ନିରନ୍ତର ପ୍ରକ୍ରିୟା, ତେବେ ସବୁ ସଭ୍ୟତାରେ ବା ସମାଜରେ ବିକାଶର ଚିତ୍ର ସମାନ ନୁହେଁ । କେଉଁଠି ସାମାଜିକ ସ୍ତରରେ ବିକାଶର ଚିତ୍ର ଅତି ମନ୍ଥର, ଅଥଚ ଅନ୍ୟ କେଉଁଠି ବିକାଶର ଚିତ୍ର ବେଶ୍ କ୍ଷୀପ୍ର । ବିଭିନ୍ନ ଦେଶର ଜନଗଣଙ୍କର ଜୀବନଧାରାରେ ଯଥେଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏପରିକି ଗୋଟିଏ ଦେଶର ଜନଗଣଙ୍କ ଭିତରେ ବିଶାଳ ପାର୍ଥକ୍ୟ ମଧ୍ୟ ଦେଖାଯାଏ । ଭୌତିକ ଆବଶ୍ୟକତା, ଶିକ୍ଷା, ମାନସିକ ସ୍ଥିତି, ବିଚାରବୋଧ, ଜୀବନଦୃଷ୍ଟି ଇତ୍ୟାଦି କ୍ଷେତ୍ରରେ ନାନା ପାର୍ଥକ୍ୟ ଦେଖିବାକୁ ମିଳେ । ସମାଜରେ ଯେଉଁ ତାରତମ୍ୟ ଦେଖାଯାଏ ତାହା ପଶ୍ଚାତରେ ନାନାବିଧ କାରଣ ଥାଇପାରେ । ପୃଥିବୀର କେତେକ ରାଷ୍ଟ୍ର ବା ଜନଗୋଷ୍ଠୀ ପରିସ୍ଥିତିଗତ କାରଣରୁ ବିକଶିତ ହୋଇପାରିଛନ୍ତି । ଅନ୍ୟ କେତେକ ରାଷ୍ଟ୍ର ବା ଜନଗୋଷ୍ଠୀ ମଧ୍ୟରେ ଉତ୍କଟ ଦାରିଦ୍ର୍ୟ, ନିରକ୍ଷରତା, ଅପପୁଷ୍ଟି ଜନିତ ମୃତ୍ୟୁ, ଅନାହାର ମୃତ୍ୟୁ, ବାଳ ଶ୍ରମିକ ପରି ବହୁ ସମସ୍ୟାମାନ ରହିଛି । ଏକ ସମତାପୂର୍ଣ୍ଣ ଓ ଗୁଣାତ୍ମକ ଜୀବନର ପରିବେଶ ସାର୍ବଜନୀନ ଭାବେ ସବୁ ମଣିଷଙ୍କ ପାଇଁ ସମ୍ଭବପର ହୋଇ ନାହିଁ । ସବୁ ସଭ୍ୟତାରେ କିଛି ଚିନ୍ତାଶୀଳ ଓ ମାନବ ଦରଦୀ ବ୍ୟକ୍ତି ସବୁ ମଣିଷଙ୍କ ପାଇଁ ଦୁଃଖରହିତ ଓ ମର୍ଯ୍ୟାଦାପୂର୍ଣ୍ଣ ଜୀବନର ସ୍ୱପ୍ନ ଦେଖିଛନ୍ତି । ସମାଜରୁ ଅନ୍ୟାୟ, ବୈଷମ୍ୟ, ଭେଦଭାବ ଦୂର କରିବାକୁ ଗମ୍ଭୀର ଚିନ୍ତା ପ୍ରକଟ କରିଛନ୍ତି । ପୃଥିବୀର ଇତିହାସରେ କେତେ କେତେ ବିପ୍ଳବ ଓ କ୍ରାନ୍ତିର ପରିବେଶ ସୃଷ୍ଟି ହୋଇଛି, ରାଜନୈତିକ ଦୃଶ୍ୟପଟରେ ପରିବର୍ତ୍ତନ ଆସିଛି, ଅର୍ଥନୈତିକ ଢ଼ାଂଚା ନୂଆ ରୂପରେଖ ନେଇଛି । ଗଣଶିକ୍ଷା ଓ ଜନକଲ୍ୟାଣକାରୀ ଆଭିମୁଖ୍ୟ ବ୍ୟାପକ ହୋଇଛି । ପରିଣାମତଃ କେତେକ ରାଷ୍ଟ୍ରରେ ଜୀବନ ଧାରଣର ମାନରେ ନାନା ଉନ୍ନତି ଆସିଛି ଓ ସଭ୍ୟ ଦୃଷ୍ଟିଭଙ୍ଗୀ ସୁଦୃଢ଼ ଭିତ୍ତି ନେଇପାରିଛି । ଆଧୁନିକ ବିଜ୍ଞାନ ଓ ପ୍ରାଯୁକ୍ତିକ ଜ୍ଞାନକୌଶଳ ଦେଶରୁ ଦାରିଦ୍ର୍ୟ, ଅନାହାର, ଅପପୁଷ୍ଟି ଦୂର କରିବାରେ ସହାୟକ ହୋଇଛି । ତେବେ ଏବେ ବି ପୃଥିବୀର ଅଧାଅଧି ଦେଶ ଅନଗ୍ରସର ରହିଛନ୍ତି, ଏହି ଦେଶ ମାନଙ୍କର ଏକ

ତୃତୀୟାଂଶ ଜନଗଣ ଦାରିଦ୍ର୍ୟ, ଅପପୁଷ୍ଟି, ନିରକ୍ଷର, ବାସହୀନ ଅବସ୍ଥାରେ ଜୀବନ ଅତିବାହିତ କରୁଛନ୍ତି । କେତେକ ଲୋକ ପ୍ରାଚୁର୍ଯ୍ୟ ଭିତରେ ଜୀବନକୁ ଉପଭୋଗ କରୁଥିବା ବେଳେ ଆଉ କେତେକ ଲୋକ ଜୀବନ ସଂଗ୍ରାମ ଭିତରେ ପରିବାରର ସର୍ବନିମ୍ନ ଆବଶ୍ୟକତା ପୂରଣ କରିପାରୁ ନାହାନ୍ତି ।

ମାନବ ସଭ୍ୟତାର କ୍ରମବିକାଶକୁ ଗଭୀର ଭାବେ ଅନୁଶୀଳନ କରିଥିବା ସମାଜବିଜ୍ଞାନୀଙ୍କ ମତରେ ମଣିଷର ଦୁଃଖଦୁର୍ଦ୍ଦଶା ଓ ସମାଜରେ ରହିଥିବା ଭେଦଭାବ ଓ ବୈଷମ୍ୟ ଅବଶ୍ୟମ୍ଭାବୀ ନୁହେଁ । ସମାଜରେ ରହିଥିବା ଭେଦଭାବ ପଶ୍ଚାତରେ କୌଣସି ଦୈବୀ ବା ଈଶ୍ୱରୀୟ କାରଣ ନାହିଁ । ସମାଜର କିଛି ବ୍ୟକ୍ତି ପ୍ରାଚୁର୍ଯ୍ୟ ଭିତରେ ରହିବା ଓ ଆଉ କିଛି ବ୍ୟକ୍ତି ଦାରିଦ୍ର୍ୟ ଭିତରେ ଜର୍ଜରିତ ହୋଇ ଦୟନୀୟ ସ୍ଥିତିରେ ଜୀବନ ଧାରଣ କରିବା ଭାଗ୍ୟର ପରିଣାମ ନୁହେଁ । ଧାର୍ମିକ ବିଶ୍ୱାସର ଗଭୀର ପ୍ରଭାବ ଥିବା ସମାଜରେ ସମାଜର ବୈଷମ୍ୟ, ଭେଦଭାବ ଇତ୍ୟାଦିକୁ ଏକ ଦୈବୀ ବିଧାନ ଭାବେ ମଣିଷ ବିଶ୍ୱାସ କରି ଆସିଥିଲା । ଆମ ଦେଶ ପରି ଜାତିଭିତ୍ତିକ ସମାଜରେ ଜନ୍ମଭିତ୍ତିକ ଜାତିଗତ ଭେଦଭାବ ଏକ ଐଶ୍ୱରିକ ବ୍ୟବସ୍ଥା ଭାବେ ସ୍ୱୀକାର କରାଯାଉଥିଲା । ଏପରିକି ଜାତିଗତ ବ୍ୟବସ୍ଥାର ଉଲଘଂନ ଏକ ଅଧର୍ମୀୟ କାର୍ଯ୍ୟ ବୋଲି ମାନସିକତା ସୃଷ୍ଟି ହୋଇଥିଲା । ଗୋଟିଏ ଭେଦଭାବ ମୂଳକ ସାମାଜିକ ବ୍ୟବସ୍ଥା ଯେତେ ନୀତିବିରୋଧୀ, ଯୁକ୍ତିବିରୋଧୀ ଓ ମାନବିକତା ବିରୋଧୀ ହେଲେ ମଧ୍ୟ ଏହାକୁ ଧାର୍ମିକ ସ୍ୱୀକୃତି ଦେଇ ଗ୍ରହଣ କରିନିଆଯାଇଥିଲା । ପରନ୍ତୁ ଶିକ୍ଷାର ପ୍ରସାର ଓ ଗଣତାନ୍ତ୍ରିକ ଜୀବନଦୃଷ୍ଟିର ବିକାଶ ଯୋଗୁ ସାମାଜିକ ଭେଦଭାବ ବିରୁଦ୍ଧରେ ଜନଚେତନା ପ୍ରକାଶ ପାଇଲା । ଜାତିଗତ ଭେଦଭାବ ଯେ ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ ଓ ଏକ ଅମାନବିକ ବ୍ୟବସ୍ଥା ଏହା କ୍ରମବର୍ଦ୍ଧିଷ୍ଣୁ ଭାବେ ସମାଜରେ ପ୍ରସାର ଲାଭ କରିବାରୁ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନର ସୂତ୍ରପାତ ହେଲା । ଜାତିଗତ ଭେଦଭାବ ପରି ସମାଜରେ ରହିଥିବା ନାନା ଦୁଃଖ ଦୁର୍ଦ୍ଦଶା, ଶୋଷଣ ଭିତ୍ତିକ, ଶ୍ରେଣୀଗତ ସମାଜ ବ୍ୟବସ୍ଥାର ପରିଣତି ବୋଲି ବୈଚାରିକ ଆଲୋଡନ ଆସିଲା । ସମାଜର ବିକାଶଧାରାକୁ ଅର୍ଥନୈତିକ ବ୍ୟବସ୍ଥା କିପରି ପ୍ରଭାବିତ କରିଛି ଓ ସମାଜରେ ଶ୍ରେଣୀଗତ ବୈଷମ୍ୟ ସୃଷ୍ଟି ଯୋଗୁ ଦାରିଦ୍ର୍ୟ ଓ ଭେଦଭାବ ସୃଷ୍ଟି ହୋଇଛି ତାହାର ବ୍ୟାଖ୍ୟା କରାଗଲା । ଏକ ଉତ୍ତମ ବ୍ୟବସ୍ଥା ଓ ମାନବବାଦୀ ଦୃଷ୍ଟିର ପ୍ରସାର ଦ୍ୱାରା ସମାଜରୁ ସକଳ ଦାରିଦ୍ର୍ୟ ଓ ଭେଦଭାବକୁ ଯେ ଦୂର କରାଯାଇ ପାରିବ ଏହା ଅବଶ୍ୟମ୍ଭାବୀ ମନେହୁଏ ।

ମଣିଷ ସ୍ୱରୂପର ବ୍ୟାଖ୍ୟାରୁ ଏହା ଜଣାଯାଏ ଯେ ଆଦିମ କାଳରୁ ପାରସ୍ପରିକ ନିର୍ଭରଶୀଳତା ମଧ୍ୟ ଦେଇ ମଣିଷର ଗୋଷ୍ଠୀ ଜୀବନ ଆରମ୍ଭ ହୋଇଛି । କାଳକ୍ରମେ

ଗୋଷ୍ଠୀ ଜୀବନରୁ ଏକ ରାଜନୈତିକ ବ୍ୟବସ୍ଥା 'ରାଜତନ୍ତ୍ର' ବିକାଶଲାଭ କରିଛି । ଗୋଷ୍ଠୀ ଜୀବନରୁ ସମାଜର ଭିତ୍ତି ସୁଦୃଢ଼ ହୋଇଛି ଓ ଏହା ମଧ୍ୟ ଦେଇ ରାଜନୈତିକ ସଂଗଠନ ମୁଣ୍ଡ ଟେକିଛି । କେତେକ ଜନଗୋଷ୍ଠୀରେ ନାଗରିକଙ୍କର ରାଜନୈତିକ ଜୀବନ ଓ ସାମାଜିକ ଜୀବନ ଅଭିନ୍ନ ରହିଥିବାର ପ୍ରମାଣ ମିଳେ । ତେବେ ସାମାଜିକ ଗୋଷ୍ଠୀଟି ପ୍ରସାରିତ ହେବା ସହ ରାଜତନ୍ତ୍ରର ଭିତ୍ତି ସୁଦୃଢ଼ ହୋଇଛି । ପ୍ରାଚୀନ ସଭ୍ୟତା ମାନଙ୍କରେ ରାଜତନ୍ତ୍ର ଜନିତ ବ୍ୟବସ୍ଥା ମଧ୍ୟ ଦେଇ ସମାଜର ବିକାଶ ଅଗ୍ରଗାମୀ ହୋଇଛି । ରାଜତନ୍ତ୍ର ଏକ ରାଜନୈତିକ ବ୍ୟବସ୍ଥା ମଧ୍ୟ ଦେଇ ସାମାଜିକ ଜୀବନଧାରାକୁ ନିୟନ୍ତ୍ରିତ କରିଛି । ସେହି ବ୍ୟବସ୍ଥାରେ ଯୁଦ୍ଧ, ରାଜ୍ୟ ବିସ୍ତାର, ରାଜ୍ୟଜୟର ପରିବେଶ ସୃଷ୍ଟି ହୋଇଛି । ପରିଣାମତଃ କେଉଁ କେଉଁ ସାମ୍ରାଜ୍ୟର ପତନ ହୋଇଛି ତ କେଉଁ କେଉଁ ସାମ୍ରାଜ୍ୟ ବିସ୍ତାରିତ ହୋଇଛି । ରାଜତନ୍ତ୍ର ଯୁଗରେ ସାମନ୍ତବାଦର ପରିବେଶ ସୃଷ୍ଟି ହୋଇଛି । ରାଜତନ୍ତ୍ର ସହାୟତାରେ କ୍ଷୁଦ୍ର ଗୋଷ୍ଠୀ ସୃଷ୍ଟି ହୋଇଛି ଯେଉଁମାନେ ଭୂମିର ଅଧିକାରୀ ହୋଇଛନ୍ତି । ସେହି ଯୁଗରେ କୃଷିଭିତ୍ତିକ ସମାଜ ବ୍ୟବସ୍ଥାରେ ଯେଉଁମାନେ ଚାଷଜମିର ଅଧିକାରୀ ହୋଇଛନ୍ତି ସେହିମାନେ ହିଁ ସାମନ୍ତବର୍ଗ ପାଲଟିଛନ୍ତି । ସମାଜର ଅଗଣିତ ମଣିଷ ଶ୍ରମଜୀବୀ ଭାବେ ବା ହସ୍ତଶିଳ୍ପୀ ଭାବେ ଜୀବନ ଅତିବାହିତ କରିଛନ୍ତି । ସାଧାରଣ ମଣିଷମାନେ ଏହି ବ୍ୟବସ୍ଥାରେ ନାନା ଶୋଷଣର ଶିକାର ହୋଇଛନ୍ତି ଓ ସଂପତ୍ତିର ଅଧିକାର ପାଇନାହାନ୍ତି । ସମାଜର ସାମନ୍ତବର୍ଗ ଓ ପୂଜକ ଗୋଷ୍ଠୀ ରାଜତନ୍ତ୍ରର ସହାୟତାରେ ପ୍ରଭାବଶାଳୀ ଓ ବିତ୍ତଶାଳୀ ପାଲଟିଛନ୍ତି । ସବୁ ସଭ୍ୟତାରେ ସାମନ୍ତବାଦୀ ସମାଜ ମୁଣ୍ଡଟେକିଛି ଓ ସମାଜର ସାଧାରଣ ମଣିଷମାନେ ଶୋଷିତ ଓ ଅତ୍ୟାଚାରିତ ହୋଇ ଆସିଛନ୍ତି । ସମାଜର ପୂଜକ ଗୋଷ୍ଠୀ ଓ ଶାସକଗୋଷ୍ଠୀ ସକଳ ଭୂସଂପତ୍ତିର ଅଧିକାରୀ ହୋଇ ସାମନ୍ତବାଦର ପରିଚୟ ନେଇଛନ୍ତି । ସମାଜର ନୀତି, ଆଦର୍ଶ, ଜୀବନ ପ୍ରବାହ, ଅର୍ଥନୀତି ଇତ୍ୟାଦି ସକଳ ବ୍ୟବସ୍ଥାକୁ ଏହି ସାମନ୍ତବାଦୀ ମାନେ ହିଁ ପ୍ରଭାବିତ ଓ ନିୟନ୍ତ୍ରିତ କରି ଆସିଛନ୍ତି ।

ଇଉରୋପରେ କାଳକ୍ରମେ ବିଜ୍ଞାନର ଯୁଗ ଆରମ୍ଭ ହୋଇଛି । ବିଜ୍ଞାନ ପ୍ରକୃତିର ବହୁ ରହସ୍ୟକୁ ଆବିଷ୍କାର କରିଛି ଓ ଜ୍ଞାନର ଦିଗନ୍ତକୁ ବିସ୍ତାରିତ କରିଛି । ବୈଜ୍ଞାନିକ ଜ୍ଞାନକୁ ଆଧାର କରି ନୂଆ ନୂଆ ପ୍ରଯୁକ୍ତିର ସୂତ୍ରପାତ ହୋଇଛି ଓ ଶିଳ୍ପ ବିପ୍ଳବର ଯୁଗ ଆସିଛି । ଶିଳ୍ପ ବିପ୍ଳବର ପରିଣାମରୁ ଅର୍ଥନୈତିକ ଢାଂଚାରେ ତୁମୂଳ ପରିବର୍ତ୍ତନର ସୂତ୍ରପାତ ହୋଇଛି । କୃଷିଭିତ୍ତିକ ଗ୍ରାମୀଣ ଜୀବନଧାରା ନାନା ଆହ୍ୱାନର ସମ୍ମୁଖୀନ ହୋଇଛି । ଶିଳ୍ପ ଓ କଳକାରଖାନା ମାନ ଗଢ଼ି ଉଠିବାରୁ ସହରୀ ସଭ୍ୟତାର ବିକାଶ ହୋଇଛି ଓ ସମାଜର ଅର୍ଥନୈତିକ ବ୍ୟବସ୍ଥା ବଦଳିବାରେ ଲାଗିଛି । ଏହି ବ୍ୟବସ୍ଥାରୁ ପୁଂଜିବାଦର ଉଦ୍‌ଭବ

ହୋଇଛି ଓ ସାମ୍ରାଜ୍ୟବାଦର ଯୁଗ ଆସିଛି । ପୁଂଜିବାଦୀ ବ୍ୟବସ୍ଥାରେ କୃଷିଶ୍ରମିକ ଓ କ୍ଷୁଦ୍ର କାରିଗର ଶ୍ରେଣୀ ବୃତ୍ତି ହରାଇଛନ୍ତି । ସାମନ୍ତବାଦୀ ସମାଜରେ ଯେଉଁ ବୈଷମ୍ୟ ଓ ଶୋଷଣର ଚିତ୍ର ରହିଥିଲା ତାହା ବହୁଗୁଣିତ ହୋଇ ନୂତନ ବ୍ୟବସ୍ଥାରେ ଅନ୍ୟ ଭାବରେ ପ୍ରକାଶିତ ହେଲା । ସମାଜରେ ସୃଷ୍ଟି ହେଲା ଶ୍ରମିକ ଶ୍ରେଣୀ ଓ ଏକ ପୁଂଜିପତି ଗୋଷ୍ଠୀ । ସକଳ ଶିଳ୍ପ, କଳ କାରଖାନା ଓ ଉତ୍ପାଦନର ଆୟୁଧ ପୁଂଜି ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଦ୍ୱାରା ନିୟନ୍ତ୍ରିତ ହେଲା ଯାହାକୁ ବୁର୍ଜୁୟା ଶ୍ରେଣୀ କୁହାଯାଉଛି ।

ରାଜତନ୍ତ୍ର ଓ ସାମନ୍ତବାଦର ପ୍ରାଧାନ୍ୟ ଥିବା ବେଳେ ସମାଜରେ ଯେପରି ଶୋଷଣ ଓ ଭେଦଭାବ ରହିଥିଲା, ପୁଂଜିବାଦ ଓ ସାମ୍ରାଜ୍ୟବାଦର ବିକାଶରେ ଏହି ଶୋଷଣ ଆହୁରି ତୀବ୍ର ହେଲା ଓ ଏପରିକି ବିଶ୍ୱବ୍ୟାପୀ ହେଲା । ଶିଳ୍ପୋନ୍ନତ ଦେଶମାନେ ଅନେକ ଦେଶକୁ ରାଜନୈତିକ ନିୟନ୍ତ୍ରଣରେ ରଖି ସାମ୍ରାଜ୍ୟବାଦୀ ଶୋଷଣ କଲେ । ସେହିପରି ପୁଂଜିବାଦ ବିକାଶର ଚିତ୍ର ଆଙ୍କିଥିଲେ ବି ଏକ ଶୋଷିତ ସର୍ବହରା ଶ୍ରମଜୀବୀ ଶ୍ରେଣୀ ସୃଷ୍ଟି କଲା । ସଭ୍ୟତାର କ୍ରମବିକାଶର ଇତିହାସ ଅନୁଶୀଳନ କଲା ବେଳେ ଏହି ଚିତ୍ରଟି ଦେଖିବାକୁ ମିଳେ ଯେ ମାନବ ସମାଜରେ ମୁଷ୍ଟିମେୟ ବ୍ୟକ୍ତି ସର୍ବଦା ସୁବିଧା, ସୁଯୋଗର ଅଧିକାରୀ ହୋଇଛନ୍ତି ଓ ଅଗଣିତ ମଣିଷ ନାନା ଭାବରେ ଶୋଷିତ ଓ ଅତ୍ୟାଚାରିତ ହୋଇଛନ୍ତି । ବିଶ୍ୱ ଦୃଶ୍ୟପଟରେ କେତେକ କ୍ରାନ୍ତିକାରୀ ଚିନ୍ତାନାୟକଙ୍କର ଆବିର୍ଭାବ ହୋଇଛି ଯେଉଁମାନେ ଏକ ଭେଦଭାବରହିତ ଓ ଶୋଷଣମୁକ୍ତ ସମାଜର ସ୍ୱପ୍ନ ଦେଖିଛନ୍ତି । ନ୍ୟାୟ, ସମତା ଓ ଭାତୃତ୍ୱର ଆଧାରରେ ଏକ ସର୍ବଜନ-ହିତୈଷୀ ବିଶ୍ୱ ମାନବ ସମାଜର କଳ୍ପନା କରିଛନ୍ତି । ଯେଉଁମାନେ ଏହି ଲକ୍ଷ୍ୟ ଦିଗରେ ନିଜର ଅବଦାନ ଦେଇଛନ୍ତି ସେହିମାନଙ୍କ ବିଚାର ଓ କାର୍ଯ୍ୟ ପାଖରେ ଅଧିକ ସଭ୍ୟ ହେବାକୁ ମଣିଷ ସମାଜ କୃତଜ୍ଞତା ଜ୍ଞାପନ କରୁଛି ।

(୧.୪.୨୦୧୫)



# ଅରୁଣାଙ୍କ କରୁଣ କାହାଣୀ

ଅରୁଣା ଶାନବାଗ କର୍ଣ୍ଣାଟକର କନଡ ଜିଲ୍ଲାସ୍ଥିତ ହଲଦିପୁର ଗ୍ରାମରେ ଜନ୍ମ ହୋଇଥିଲେ ୧୯୪୮ ମସିହାରେ । ବାପା ରାମଚନ୍ଦ୍ର ଶାନବାଗ ଓ ମାଆ ସୀତା ବାଈଙ୍କର ନ'ଟି ସନ୍ତାନ ଭିତରୁ ସେ ଥିଲେ ଶେଷ ସନ୍ତାନ । ଗ୍ରାମରେ ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ଏହାପରେ ବମ୍ବେ (ସଂପ୍ରତି ମୁମ୍ବଇ) ଆସି ସେଠାରେ ନର୍ସିଂ ଟ୍ରେନିଂ ନେଇ ମୁମ୍ବଇ ସ୍ଥିତ କିଙ୍ଗ୍ ଏଡୱାର୍ଡ ମେମୋରିଆଲ ବା କେଇଏମ୍ ହସ୍ପିଟାଲରେ ସେବିକା ଭାବରେ ଯୋଗଦେଲେ । ସେଠାରେ ସେବିକା ଭାବେ କାର୍ଯ୍ୟ କରୁଥିବା ବେଳେ ସେହି ହସ୍ପିଟାଲର ଜଣେ ୱାର୍ଡ ବଏ ସୁଇପରଙ୍କ ଦ୍ୱାରା ଅମାନୁଷିକ ଭାବେ ଧର୍ଷିତା ହେଲେ । ଧର୍ଷଣକାରୀ କୁହାଯାଉଥିବା ସୋହନଲାଲ ବାଲ୍ମୀକି ତାଙ୍କୁ ମାରିଦେବାକୁ ଉଦ୍ୟମ କରି ଏକ ଲୁହା ଶିକୁଳିରେ ଅରୁଣାଙ୍କ ତଣ୍ଟିକୁ ଚିପି ଦେଲେ । ଅରୁଣା ମୃତବତ୍ ଅଚେତ ହୋଇଗଲେ । ଏହା ଥିଲା ୧୯୭୩ ନଭେମ୍ବର ୨୭ ତାରିଖର ଘଟଣା । ସେହି ହସ୍ପିଟାଲରେ ତାଙ୍କର ଚିକିତ୍ସା ହେଲା । ହେଲେ ଅରୁଣାଙ୍କର ଚେତା ଫେରିଲା ନାହିଁ । ଦୀର୍ଘ ବୟାଳିଶି ବର୍ଷ ଧରି ସେ କୋମାରେ ରହିଥିଲେ । ଦୀର୍ଘ ବର୍ଷ ଧରି ଏହି ଅତ୍ୟାଧୁନିକ ହସ୍ପିଟାଲରେ ସେବିକା ଓ ଡାକ୍ତରମାନେ ତାଙ୍କର ଚିକିତ୍ସା କରିଛନ୍ତି । ଅଚେତ ଅବସ୍ଥାରେ ସେ ମୃତବତ୍ ବା ଭେଜିଟେଟିଭ୍ ସ୍ଥିତିରେ ରହି ମେ' ମାସ ଅଠର ତାରିଖ ଦିନ ଶେଷ ନିଶ୍ୱାସ ତ୍ୟାଗ କଲେ । ଏକ ଯନ୍ତ୍ରଣାସିକ୍ତ ଜୀବନର ପରିସମାପ୍ତି ଘଟିଲା, କେଇଏମ ହସ୍ପିଟାଲର ସେବିକା ଓ ଡାକ୍ତରମାନେ ତାଙ୍କୁ ଅଶ୍ରୁଳ ଶ୍ରଦ୍ଧାଂଜଳି ଜଣାଇଲେ । ଅରୁଣାଙ୍କୁ ନେଇ ବିଭିନ୍ନ ସମ୍ବାଦପତ୍ର, ଟିଭି ଚାନେଲ ମାନଙ୍କରେ ସମ୍ବାଦ ପ୍ରକାଶ ପାଇଛି ଓ ପ୍ରସାରିତ ହୋଇଛି, କେତେକ ସମ୍ବାଦପତ୍ର ତାଙ୍କ ଉପରେ ସଂପାଦକୀୟ ମାନ ବି ପ୍ରକାଶ କରିଛନ୍ତି । ବୟାଳିଶି ବର୍ଷ ଧରି ଅଚେତ ହୋଇ ରହିବା ଓ ହସ୍ପିଟାଲ ବେଡରେ ଶଯ୍ୟାଶାୟୀ ହେବା ଚିକିତ୍ସା ବିଜ୍ଞାନ ଇତିହାସରେ ଏକ ଅଭିନବ ଘଟଣା ।

ହସ୍ପିଟାଲ ବେଡରେ ମୃତବତ୍ ପଡିଥିବା ଅରୁଣା ଜାତୀୟ ସ୍ତରରେ ଚର୍ଚ୍ଚାକୁ ଆସିଲେ ଚାରିବର୍ଷ ତଳେ । ଅରୁଣାଙ୍କ ସାଥୀ ସାମ୍ବାଦିକ ବୃତ୍ତିରେ ଥିବା ପିଙ୍କି ବିରାନୀ ଅରୁଣାଙ୍କ ଉପରେ ବହିଟିଏ ଲେଖିଲେ । ସୁପ୍ରିମ କୋଟରେ ଏକ ପିଟିସନ ଦେଇ ଅରୁଣାଙ୍କୁ ଯନ୍ତ୍ରଣାରୁ ମୁକ୍ତି ଦେବାକୁ ତାଙ୍କୁ କରୁଣା-ମୃତ୍ୟୁ ବା ମର୍ସି-କିଲିଙ୍ଗ୍ କରିବାକୁ ପିଙ୍କି ନିବେଦନ କଲେ । ଏକ ଭେଜିଟେଟିଭ୍ ସ୍ଥିତିରେ ଥିବା ଓ ଚେତା ଫେରିବାର ସାମାନ୍ୟ ସମ୍ଭାବନା ନଥିବା ଜଣେ ଯନ୍ତ୍ରଣା ଜର୍ଜରିତ ମହିଳାଙ୍କ ଦୁଃଖରେ ପୂର୍ଣ୍ଣଚ୍ଛେଦ ପକାଇବାକୁ ପିଙ୍କି ସର୍ବୋଚ୍ଚ ନ୍ୟାୟାଳୟର ଦ୍ୱାରସ୍ଥ ଥିଲେ । ଏହି ଦୀର୍ଘ ବର୍ଷ ଭିତରେ ଅରୁଣାଙ୍କର ପରିବାରର କେହି ତାଙ୍କ ଖବର ନେଇ ନାହାନ୍ତି ବା ତାଙ୍କୁ ଦେଖିବାକୁ ଆସି ନାହାନ୍ତି । କେବଳ ଡାକ୍ତରଖାନାର ସେବିକାମାନେ ଓ ହସ୍ପିଟାଲର କର୍ତ୍ତୃପକ୍ଷ ଅରୁଣାଙ୍କୁ ସେବା ଓ ଚିକିତ୍ସା ଦେଇ ଆସିଛନ୍ତି । ଏହି ଘଟଣା ଏକ ସମ୍ବେଦନଶୀଳ ଓ ସ୍ପର୍ଶକାତର ପ୍ରଶ୍ନ । ଜଣଙ୍କୁ ମାରିବାକୁ ନ୍ୟାୟାଳୟ ପରାମର୍ଶ ଦେଇ ପାରିବ କି- ଏକ ଜଟିଳ ପ୍ରଶ୍ନ । ଏଥିପାଇଁ ଆମ ବ୍ୟବସ୍ଥାରେ କୌଣସି ଆଇନ ନାହିଁ । ଏହା ସହିତ ନାନା ଆଇନଗତ, ନୀତିଗତ ଓ ମାନବିକ ସମସ୍ୟା ସଂଶ୍ଳିଷ୍ଟ । ସୁପ୍ରିମ କୋଟର ଦୁଇଜଣ ବିଶିଷ୍ଟ ନ୍ୟାୟମୂର୍ତ୍ତି ମାର୍କଣ୍ଡେୟ କାଟ୍‌ଜୁ ଓ ଜ୍ଞାନସୁଧା ମିଶ୍ରଙ୍କ କୋଟରେ ଏହି ପିଟିସନର ଶୁଣାଣି ଆରମ୍ଭ ହେଲା । ପ୍ରଥମେ ମାନ୍ୟବର ବିଚାରକ ଦ୍ୱୟ ଅରୁଣାଙ୍କ ଚିକିତ୍ସା, ସ୍ୱାସ୍ଥ୍ୟ ସ୍ଥିତି ଇତ୍ୟାଦି ବିଷୟରେ ତଥ୍ୟ ଓ ଭିଡିଓ ଚିତ୍ର ଦେବାକୁ କେଇଏମ ହସ୍ପିଟାଲକୁ ନିର୍ଦ୍ଦେଶ ଦେଲେ । ମାନ୍ୟବର ବିଚାରକ ଅରୁଣାଙ୍କ ସ୍ୱାସ୍ଥ୍ୟ ସ୍ଥିତି ନେଇ ଭରପୁର କୋଟ ରୁମରେ ଅରୁଣାଙ୍କ ସ୍ୱାସ୍ଥ୍ୟର ଭିଡିଓ ଚିତ୍ର ଦେଖିଲେ । ସେଦିନ କୋଟ୍ ରୁମ୍‌ରେ ବହୁ ଓକିଲ ଓ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ରହିଥିଲେ । ଏହିଭଳି ସ୍ଥିତିରେ ରହିଥିବା ଓ ମୃତବତ୍ ଜୀବନ ବିତାଉଥିବା ଜଣଙ୍କୁ କରୁଣା ମୃତ୍ୟୁ ଦେବା ଏକ ମାନବୋଚିତ ଓ ବିବେକାନୁମୋଦିତ କାର୍ଯ୍ୟ ହେବ, ଏହା ପିଙ୍କିଙ୍କ ତରଫରୁ କୋଟ୍‌ରେ ଯୁକ୍ତି ଉପସ୍ଥାପନ କରାଗଲା । ବିଭିନ୍ନ ଦେଶରେ ଓ କେତେକ ସଭ୍ୟ ରାଷ୍ଟ୍ରରେ ଇଚ୍ଛା ମୃତ୍ୟୁ, ସମ୍ମାନର ସହ ମୃତ୍ୟୁ, କରୁଣା ମୃତ୍ୟୁକୁ କିପରି ଆଇନଗତ ସ୍ୱୀକୃତି ଦିଆଯାଇଛି ତାହାର ନାନା ନଜିର ମଧ୍ୟ ଉପସ୍ଥାପନ କରାଗଲା । ମାନ୍ୟବର ବିଚାରକ ଦ୍ୱୟ ଅରୁଣାଙ୍କୁ ମାରିଦେବାକୁ ବା ଲାଇଫ ସପୋଟ ଦେଇ ପୂର୍ବପରି ବଞ୍ଚାଇ ରଖାଯିବା ଆବଶ୍ୟକ କ'ଣ ନିଷ୍ପତ୍ତି ନେବେ ତାହା ଜାଣିବାକୁ ସମସ୍ତଙ୍କର ଉତ୍କଣ୍ଠା ରହିଲା । ଏହି ସ୍ଥିତିରେ କେଇଏମ ହସ୍ପିଟାଲର କିଛି ସେବିକା ଓ ଡାକ୍ତର ପକ୍ଷଭୁକ୍ତ ହୋଇ କୋଟ୍‌ର ଦ୍ୱାରସ୍ଥ ହେଲେ । ସେବିକା ମାନେ କୋଟ୍‌ରେ ମତ ରଖିଲେ ଯେ "ଅରୁଣା ସେମାନଙ୍କ ଭିତରୁ ଜଣେ । ସେମାନେ ନିଷ୍ଠାର ସହ ଅରୁଣାଙ୍କର ସେବା ଯତ୍ନ କରି ଆସିଛନ୍ତି । ଏହା ଭିତରେ ହସ୍ପିଟାଲରୁ ବହୁ ସେବିକା

ଅବସର ନେଲେଣି, କେତେକ ଚାକିରି ଛାଡିଲେଣି, ତେବେ ଅରୁଣାଙ୍କର ସେବା ଯତ୍ନରେ କୌଣସି ଅବହେଳା ହୋଇ ନାହିଁ । ଯେତେବେଳେ ହସ୍ପିଟାଲରେ ସେବିକାମାନେ ନୂଆ ଭାବରେ ଯୋଗ ଦିଅନ୍ତି, ସେମାନଙ୍କୁ ଅରୁଣାଙ୍କ ବିଷୟରେ ଅବଗତ କରାଯାଏ ଓ କୁହାଯାଏ ସେ ସେ ହେଉଛନ୍ତି ଆମ ଭିତରୁ ଜଣେ ଓ ତାଙ୍କର ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେ ଆମ ସହିତ ରହିବେ । ଆମେ ଯେଉଁମାନେ ତାଙ୍କୁ ଏତେ ବର୍ଷ ଧରି ବଞ୍ଚାଇରଖିଛୁ , ଆମେ କେବେହେଲେ ତାଙ୍କ ପାଖରୁ ଲାଇଫ ସପୋର୍ଟ୍ ଯନ୍ତ୍ର ଗୁଡିକୁ ବାହାର କରିଦେଇ ପାରିବୁ ନାହିଁ" । ସେବିକା ମାନେ ସର୍ବୋଚ୍ଚ ନ୍ୟାୟାଳୟକୁ ସେମାନଙ୍କର ମତାମତ ଆଫିଡେଭିଟ କରି ଜଣାଇଲେ । ସେମାନେ ଆହୁରି ମଧ୍ୟ କହିଲେ ଯେ ଅରୁଣାଙ୍କୁ ଏକ ଶିଶୁ ଭାବି ତାଙ୍କର ଯତ୍ନ ସେମାନେ ନେଇଛନ୍ତି । ତାଙ୍କୁ ଶେଷ ନିଦ୍ରାରେ ଶୁଆଇ ଦେବାକୁ ସେମାନେ କେବେ ଚାହାନ୍ତି ନାହିଁ । ସେବିକାମାନଙ୍କ ପାଖରୁ ଏହି ବକ୍ତବ୍ୟ ଶୁଣିବା ପରେ ମାନ୍ୟବର ବିଚାରକ ଦ୍ୱୟ ପିଙ୍କି ବିରାନୀଙ୍କର ପିଟିସନକୁ ଖାରଜ କରିଦେଲେ । ତେବେ ଏହି ପ୍ରସଙ୍ଗକୁ ନେଇ ଇଚ୍ଛା ମୃତ୍ୟୁ ପ୍ରସଙ୍ଗଟି ବିଚାର ବିଭାଗ ପରିସରରେ ଏକ ସମ୍ବେଦନଶୀଳ ବିଷୟ ହେଲା । ଇଚ୍ଛା ମୃତ୍ୟୁ ବା ଇଉଥାନେସିଆକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଗଲା, ଯଥା ଆକ୍ଟିଭ ଇଉଥାନେସିଆ ଓ ପାସିଭ ଇଉଥାନେସିଆ । ସୁପ୍ରିମ କୋର୍ଟ୍ ପାସିଭ ଇଉଥାନେସିଆ ବା ନିଷ୍କ୍ରିୟ ଇଚ୍ଛାମୃତ୍ୟୁକୁ ଏକ ଆଇନଗତ ସ୍ୱୀକୃତି ପ୍ରଦାନ କରିଛନ୍ତି । ଏକ ଯନ୍ତ୍ରଣା ଜର୍ଜରିତ ବ୍ୟକ୍ତି ଯାହାଙ୍କ ରୋଗର ଚିକିତ୍ସା ବା ଯନ୍ତ୍ରଣାର ଉପଶମ ସମ୍ଭବ ନୁହେଁ ତାଙ୍କୁ ସମ୍ମାନର ସହ ମୃତ୍ୟୁବରଣ କରିବାକୁ ସ୍ୱୀକୃତି ଦିଆଯାଇ ପାରିବ । ଏହା କିପରି ଆଇନର ପରିସର ଭିତରେ ଓ ଚିକିତ୍ସା ବିଜ୍ଞାନକୁ ପ୍ରୟୋଗ କରି କରାଯିବ ତାହା ଅନ୍ୟ ପ୍ରସଙ୍ଗରେ ଆଲୋଚନା କରାଯାଇ ପାରିବ । ଆତ୍ମହତ୍ୟା ଓ ସମ୍ମାନର ସହ ଇଚ୍ଛାମୃତ୍ୟୁ ଦୁଇଟି ପୃଥକ୍ ଭାବନା ।

ବର୍ତ୍ତମାନ ଅରୁଣାଙ୍କ ପ୍ରସଙ୍ଗକୁ ପୁଣି ଫେରିବା । ଏହି ମେ'୧୮ ତାରିଖରେ ଅରୁଣାଙ୍କ ଦେହାନ୍ତ ପରେ ଏହା ଜାତୀୟ ସ୍ତରରେ ଗଣମାଧ୍ୟମରେ ଏକ ଚର୍ଚ୍ଚାର ବିଷୟ ହୋଇଥିଲା । ତାଙ୍କର ଦେହାନ୍ତ ସମ୍ବାଦ ପ୍ରଚାର ପରେ ଅରୁଣାଙ୍କର ଜଣେ ଝିଆରୀ ମଙ୍ଗଳା ଓ ପୁତୁରା ବୈକୁଣ୍ଠ କେଇଏମ ହସ୍ପିଟାଲକୁ ଆସି ତାଙ୍କର ଶବ ସତ୍କାର କରିବାକୁ ଚାହିଁଲେ । ସେହି ହସ୍ପିଟାଲର ମାଟ୍ରନ (ସେବିକା ମାନଙ୍କର ମୁଖ୍ୟ) ଅରୁନ୍ଧତି ଭେଲ୍ଲୁର ଓ ସେବିକାମାନେ ଅରୁଣାଙ୍କର ଶବ ଦେବାକୁ ଚାହିଁଲେ ନାହିଁ । ସେମାନେ ମତ ଦେଲେ ଯେ ସେମାନେ ଅରୁଣାଙ୍କ ପାଇଁ ସବୁକିଛି କରିଛନ୍ତି, ତାଙ୍କର ସମସ୍ତ ଦାୟିତ୍ୱ ନେଇଛନ୍ତି । ସେ ଯେଉଁ

କୋଠରୀରେ ଚିକିତ୍ସିତ ହୋଇ ଆସିଛନ୍ତି ସେହି ରୁମଟିକୁ ତାଙ୍କ ନାମରେ ନାମିତ କରିଛନ୍ତି । ତେବେ ଗଣ ମାଧ୍ୟମରେ ପ୍ରଚାରିତ ସମ୍ବାଦ ଅନୁଯାୟୀ ଅରୁଣାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସେବିକା, ଡାକ୍ତର ଖାନାର ଡାକ୍ତର ଓ ଅନ୍ୟାନ୍ୟ କର୍ମକର୍ତ୍ତା ଅରୁଣାଙ୍କ ପରିବାର ଲୋକଙ୍କ ସହ ଏକାଠି କରିଛନ୍ତି ।

ଅରୁଣାଙ୍କ କାହାଣୀକୁ ନେଇ ଦତ୍ତକୁମାର ଦେଶାଇ "କଥା ଅରୁଣାଚୀ" ନାମରେ ଏକ ନାଟକ ରଚନା କରିଥିଲେ ଯାହାକି ମହାରାଷ୍ଟ୍ରରେ ବେଶ୍ ଦର୍ଶକୀୟ ସ୍ୱୀକୃତି ଲାଭ କରିଥିଲା । ଗୁଜୁରାଟି ଭାଷାରେ ହରକିଶନ ମେହେଟା ଜଡ-ଚେତନ ନାମରେ ଏକ ଉପନ୍ୟାସ ଅରୁଣାଙ୍କ କାହାଣୀକୁ ନେଇ ଲେଖିଛନ୍ତି ।

ଅରୁଣାଙ୍କୁ କେଇଏମ ହସ୍ପିଟାଲରେ ସେବିକାମାନେ ଯେଉଁ ସେବା ଦେଇଛନ୍ତି ତାହା ସେବିକା ବୃତ୍ତିକୁ ମହାନ କରିଛି । ଆଧୁନିକ ଚିକିତ୍ସା ବିଜ୍ଞାନର ବିକାଶ ପରଠାରୁ ସବୁ ଦେଶରେ ମନୁଷ୍ୟ ସମାଜକୁ ସେବିକାମାନେ ଦେଇ ଆସିଥିବା ସେବା ଏହି ବୃତ୍ତିର ମହନୀୟତା ସୂଚାଇଛି । ଏହି ସେବାର ସ୍ୱୀକୃତି ସ୍ୱରୂପ ଆନ୍ତର୍ଜାତିକ ସ୍ତରରେ ମେ ୧୨ ତାରିଖ ଦିନ ପ୍ରତିବର୍ଷ "ବିଶ୍ୱ ସେବିକା ଦିବସ" ପାଳିତ ହେଉଛି । ଏହି ଦିନଟି ହେଉଛି ମହାନ ସେବିକା ଫ୍ଲୋରେନ୍ସ ନାଇଟଆଙ୍ଗେଲଙ୍କ ଜନ୍ମଦିନ । ନାଇଟଆଙ୍ଗେଲ (୧୨.୫.୧୮୨୦ ରୁ ୧୩.୮.୧୯୧୦) ନର୍ସିଂ ବୃତ୍ତିର ପଥପ୍ରଦର୍ଶକ ଭାବେ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ । ତୁର୍କିରେ କ୍ରିମିଆନ ଯୁଦ୍ଧ ବେଳେ କ୍ଷତାକ୍ତ ସୈନିକ ମାନଙ୍କୁ ସେବା କରି ସେ ଯେପରି ସେମାନଙ୍କୁ ଆରୋଗ୍ୟ କରିଥିଲେ ତାହା ତାଙ୍କୁ ସବୁ ସ୍ତରରେ ପ୍ରିୟ କରିଥିଲା । ମଦର ଟେରେସା ତ ତାଙ୍କର ମହାନ୍ ସେବା ପାଇଁ ବିଶ୍ୱବିଦିତ । ତାଙ୍କଦ୍ୱାରା ସ୍ଥାପିତ ମିସନାରୀ ଅଫ ଚାରିଟିରେ ଅନେକ ମହିଳା ସେବିକା ଭାବେ ନିସ୍ୱାର୍ଥପର ସେବା ଯୋଗାଇ ଆସୁଛନ୍ତି । ଅରୁଣାଙ୍କୁ ବର୍ଷ ବର୍ଷ ଧରି ସେବା ଦେଇଥିବା ସେବିକାମାନଙ୍କୁ କେହି ମନେ ରଖିବେ ନାହିଁ, କିନ୍ତୁ ସେମାନେ ସେହି ସେବାଦ୍ୱାରା ଏକ ବୃତ୍ତିକୁ ଯେ ମହାନ୍ କରିଛନ୍ତି ଏହା କୁହାଯାଇ ପାରେ ।

ମଣିଷର ମସ୍ତିଷ୍କ ଭିତରେ ଅସଂଖ୍ୟ ବିକଶିତ କୋଷ ବା ନିଉରନ ରହିଛି, ଯାହା ଶରୀରକୁ ନିୟନ୍ତ୍ରଣ କରେ । ଅରୁଣାଙ୍କ ତଣ୍ଟିକୁ ଶିକୁଳିରେ ଚିପି ଦେବାଦ୍ୱାରା ଅମ୍ଳଜାନ ଓ ରକ୍ତ ସଞ୍ଚାଳନ ଅଭାବରେ ମସ୍ତିଷ୍କର ଅନେକ ନିଉରନ ନଷ୍ଟ ହୋଇଗଲା । ଫଳରେ ସେ ଦୀର୍ଘ ବର୍ଷ କୋମାରେ ରହିଲେ । ଜୀବନ ଓ ଚେତନା ଶରୀର ଓ ମସ୍ତିଷ୍କ ଭିତରେ ସଂଘଟିତ ହେଉଥିବା ରାସାୟନିକ ଓ ଜୈବିକ ପ୍ରକ୍ରିୟାର ପରିଣାମ । ମୃତ୍ୟୁ

ପୂର୍ବରୁ ମସ୍ତିଷ୍କର ଏହି ପ୍ରକ୍ରିୟା କମି କମି ଆସି ଏହା ଶେଷରେ ବନ୍ଦ ହେଲେ ମଣିଷ ମସ୍ତିଷ୍କର ମୃତ୍ୟୁ ହୁଏ । ମଣିଷ ଦେହରେ ଏକ ଅବିନାଶୀ ଆତ୍ମା ରହିଛି ଯାହା ମୃତ୍ୟୁରେ ଶରୀରରୁ ପୃଥକ୍ ହୋଇଯାଏ- ବୈଜ୍ଞାନିକ ଜ୍ଞାନ ମାନଦଣ୍ଡରେ ଏକ ମନଗଢ଼ା କାହାଣୀ ଓ ଆଧାରହୀନ ବିଶ୍ୱାସ । ଅରୁଣାଙ୍କ କରୁଣ କାହାଣୀ କୌଣସି କର୍ମର ଫଳ ନୁହେଁ ବା ଭାଗ୍ୟ ଲିଖନ ନୁହେଁ । ତାଙ୍କ ମୃତ୍ୟୁରେ ତାଙ୍କ ଦେହରୁ କିଛି ଆତ୍ମା ବାହାରି ଯାଇନାହିଁ । ସେ ଏକ ପାଶବିକ କାର୍ଯ୍ୟର ଶରବ୍ୟ ହୋଇ ଜୀବନରେ ଅକଥନୀୟ ଯନ୍ତ୍ରଣା ଭୋଗ କରିଛନ୍ତି, ତେବେ ତାଙ୍କୁ ସେବା ଦେଇଥିବା ସହକର୍ମୀମାନେ ମାନବିକତାର ପ୍ରଦୀପ ପ୍ରଜ୍ୱଳିତ କରିଛନ୍ତି । ବୟାଳିଶି ବର୍ଷ ଧରି କୋମାରେ ବଞ୍ଚିବା ଚିକିତ୍ସା ବିଜ୍ଞାନର ଯେ ବିସ୍ମୟକର ଦୃଷ୍ଟାନ୍ତ ଏହା କୁହାଯାଇପାରେ । ତାଙ୍କ ସ୍ମୃତି ପ୍ରତି ବିନମ୍ର ଶ୍ରଦ୍ଧାଂଜଳି ।

(୨୭.୫.୨୦୧୫)



# ମାନବୀୟ ସଙ୍କଟ ଓ ବିକଳ୍ପ ବିଶ୍ୱ

ୟୁରୋପୀୟ ନବଜାଗରଣ ଯୁଗର ସନ୍ଧିକ୍ଷଣରେ ବୈଜ୍ଞାନିକ ଗବେଷଣାର ଯେଉଁ ଧାରାଟି ସୃଷ୍ଟି ହୋଇଥିଲା ତାହା ବିଂଶ ଶତାବ୍ଦୀରେ ଏକ ନିର୍ଣ୍ଣାୟକ ସ୍ଥିତିରେ ପହଞ୍ଚିଲା । ଗବେଷଣାର ଦିଗନ୍ତ ନାନା ଭାବରେ ବିସ୍ତାରିତ ହୋଇ ପ୍ରକୃତି ସମ୍ପର୍କରେ ମଣିଷର ଜ୍ଞାନରାଜିକୁ ସମୃଦ୍ଧ କରିପାରିଲା । ଏହାକୁ ଆଧାର କରି ନୂଆ ନୂଆ ପ୍ରଯୁକ୍ତି ସୃଷ୍ଟି ହେଲା ଓ ଆମ ପୃଥିବୀ ଏକ କ୍ଷୁଦ୍ର ଗ୍ରାମରେ ରୂପାନ୍ତରିତ ହୋଇ ଚାଲିଲା । ପୃଥିବୀର ଦୂରତ୍ୱ କମିଗଲା, ପୃଥିବୀର ଯେକୌଣସି ଅଞ୍ଚଳର କୌଣସି ଘଟଣା ସାରା ପୃଥିବୀରେ ତତ୍‌କ୍ଷଣାତ୍ ପ୍ରସାର ହୋଇ ପାରିଲା, ଜଣେ ସାଧାରଣ ନାଗରିକ ପୃଥିବୀର ଯେକୌଣସି ଅଞ୍ଚଳର ବ୍ୟକ୍ତି ସହ ସମ୍ବନ୍ଧ ସ୍ଥାପନ କରି ପାରିଲା ଓ ସାମାଜିକ ଗତିଶୀଳତା ଆଶାତୀତ ଭାବେ ବଢ଼ିପାରିଲା । ଜୀବନଶୈଳୀରେ ଅଭୂତପୂର୍ବ ପରିବର୍ତ୍ତନ ଯୋଗୁ ମାନବିକ ମୂଲ୍ୟବୋଧ, ପାରିବାରିକ ବନ୍ଧନ, ସାମାଜିକ ସଂହତି କ୍ଷେତ୍ରରେ ନୂଆ ନୂଆ ଆହ୍ୱାନ ଓ ପରିବେଶ ସୃଷ୍ଟି ହେଲା । ବିଂଶ ଶତାବ୍ଦୀରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ଘଟିଗଲା ଓ ତା ପରବର୍ତ୍ତୀ ସମୟରେ ଆଦର୍ଶଗତ ଦ୍ୱନ୍ଦ୍ୱ ଓ ଶୀତଳ ଯୁଦ୍ଧର ପରିବେଶ ଆସିଲା । ଏହି ପରିସ୍ଥିତିରେ ବିଶ୍ୱରେ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ବୈଜ୍ଞାନିକମାନେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଦିଗରେ ପଥ ପ୍ରଦର୍ଶକ ହେଲେ । ଜାତିସଂଘ ପରି ବିଶ୍ୱ ସଙ୍ଗଠନମାନ ସୃଷ୍ଟି ହେଲା ଓ ପରିଣାମ ସ୍ୱରୂପ ମାନବିକ ଅଧିକାର, ଗଣତାନ୍ତ୍ରିକ ଜୀବନଦୃଷ୍ଟି, ଧର୍ମନିରପେକ୍ଷ ବିଚାରବୋଧ ପରି ସାର୍ବଜନୀନ ମୂଲ୍ୟବୋଧ ଚିନ୍ତାରାଜ୍ୟରେ ସକାରାତ୍ମକ ଆଲୋଡ଼ନମାନ ସୃଷ୍ଟିକଲା । ମାନବବାଦୀ ଘୋଷଣାନାମା ଜରିଆରେ ବ୍ୟକ୍ତିମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ଭେଦଭାବରହିତ ଜୀବନଦୃଷ୍ଟି ବିଶ୍ୱସ୍ତରରେ ସ୍ୱୀକୃତ ହେବାକୁ ଲାଗିଲା । ଯୁଗ ଯୁଗ ଧରି ମଣିଷ ସମାଜରେ ରହି ଆସିଥିବା ରଙ୍ଗଭେଦ, ଲିଙ୍ଗଭେଦ, ଜାତିଭେଦ, ଧର୍ମଭେଦ ଇତ୍ୟାଦି ବିଭେଦକାରୀ ମାନସିକତା ବିରୁଦ୍ଧରେ କ୍ରାନ୍ତିକାରୀ ଭାବନାର ସୂତ୍ରପାତ ହେଲା । ଯେଉଁ ଯେଉଁ କଳୁଷିତ ଭାବନା ମଣିଷ ମଣିଷ ଭିତରେ

ପ୍ରାଚୀର ଛିଡା କରାଇ ଆସିଥିଲା, ତାହା ବିରୁଦ୍ଧରେ ଚିନ୍ତାରାଜ୍ୟରେ ଆଲୋଡନ ସୃଷ୍ଟି ହେଲା । ପ୍ରତ୍ୟେକ ବ୍ୟକ୍ତି ଶିକ୍ଷାଲାଭ କରିବା, କର୍ମସଂସ୍ଥାନ ପାଇ ସ୍ୱାବଲମ୍ୱୀ ହେବା, ନାଗରିକ ଅଧିକାର ଉପଭୋଗ କରିବା ତଥା ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା ତାହାର ମୌଳିକ ଅଧିକାର ବୋଲି ସଭ୍ୟ ସମାଜରେ ଗୃହୀତ ହେବାରେ ଲାଗିଲା । ଏସବୁ ଭାବନା ସଭ୍ୟତାର ଇତିହାସରେ ପ୍ରାୟତଃ ବିଂଶ ଶତାବ୍ଦୀରେ ଦୃଢ଼ୀଭୂତ ହେବାର ପରିବେଶ ଆସିଲା । ସାମନ୍ତବାଦ, ସାମ୍ରାଜ୍ୟବାଦ, ଏକଛତ୍ରବାଦ ବିରୁଦ୍ଧରେ ବିଶ୍ୱ ସ୍ତରରେ ଆଲୋଡନ ଆସିଲା ଓ ଏହା ବିରୁଦ୍ଧରେ ସଂଗ୍ରାମକୁ ଆନ୍ତର୍ଜାତିକ ସମର୍ଥନ ମିଳିଲା । ଏସବୁ ସଭ୍ୟତାର ବିକାଶ ଦିଗରେ ସକାରାତ୍ମକ ଅଗ୍ରଗତି କହିଲେ ଅତ୍ୟୁକ୍ତି ହେବ ନାହିଁ । ତେବେ ସଭ୍ୟତାର ପହିଲି ପର୍ବରୁ ଅଦ୍ୟାବଧି ମଣିଷ ସମାଜ କେବେହେଲେ ସଙ୍କଟମୁକ୍ତ ହୋଇ ନାହିଁ । ସବୁ ଯୁଗରେ ଓ ସବୁ ସମାଜରେ ମଣିଷ ସହିତ କିଛି ନା କିଛି ସଙ୍କଟ ରହି ଆସିଛି । ଆଜି ଏକବିଂଶ ଶତାବ୍ଦୀରେ ମଣିଷ ଅନେକାଂଶରେ ସାମାଜିକ ନିରାପତ୍ତା, ଗୁଣାତ୍ମକ ଜୀବନ, ଉନ୍ନତ ଜୀବନଶୈଳୀ ପାଇଁ ପରିବେଶ ପାଇଥିଲେ ବି ନାନା ଜଟିଳ ସଙ୍କଟ ସମଗ୍ର ସମାଜ ପାଇଁ ସୃଷ୍ଟି ହୋଇଛି । ପ୍ରତ୍ୟେକ ବ୍ୟକ୍ତି ରାଷ୍ଟ୍ରୀୟ ନିରାପତ୍ତା, ବୌଦ୍ଧିକ ବିକାଶର ଅବକାଶ, ସୁସ୍ଥ ଜୀବନ ପାଇଁ ସ୍ୱାସ୍ଥ୍ୟସେବା ଜନିତ ପରିବେଶ ପାଇଥିଲେ ମଧ୍ୟ ଅପରପକ୍ଷରେ ନାନା ସମସ୍ୟା, ଉଦ୍‌ବେଳନ ଓ ଏପରିକି ମାନସିକ ଚାପର ବଶବର୍ତ୍ତୀ ହେବାରେ ଲାଗିଛି । ବସ୍ତୁତଃ ଜୀବନର ମାନ ଯେତେ ଉନ୍ନତ ହେଲେ ମଧ୍ୟ ବ୍ୟକ୍ତି ସ୍ତରରେ ଓ ବିଶ୍ୱସ୍ତରରେ ମାନବୀୟ ସଙ୍କଟ ଅଧିକ ଘନୀଭୂତ ହେବାରେ ଲାଗିଛି । ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ ନାନା ସ୍ତରରେ ନାନା ବିଚାର ଓ ସମ୍ପୃକ୍ତି ନେଇ ଗମ୍ଭୀର ଚର୍ଚ୍ଚା ଅବଶ୍ୟ ହେଉଛି । ଏହି ପରିପ୍ରେକ୍ଷୀରେ ଏକ ଶାନ୍ତିପୂର୍ଣ୍ଣ ବିଶ୍ୱ ପାଇଁ "ପୃଥିବୀ ରାଷ୍ଟ୍ରସଙ୍ଘ"ର (ଆର୍ଥ ଫେଡେରେସନ) ପରିକଳ୍ପନା ପୃଥିବୀର କିଛି ପ୍ରବୀଣ ବୁଦ୍ଧିଜୀବୀ, ଦାର୍ଶନିକ, ମାନବହିତୈଷୀ ସମାଜସେବୀ କରିଛନ୍ତି । ପୃଥିବୀର ଜନଗଣଙ୍କୁ ଗୋଟିଏ ଶାସନାଧୀନ ବ୍ୟବସ୍ଥା ଭିତରେ ରଖି ବିଶ୍ୱ ସରକାର ପରି ଏକ ଯୁଗାନ୍ତକାରୀ ଭାବନାକୁ ବାସ୍ତବ ରୂପରେଖ ଦେବାକୁ ଗତ କେତେ ଦଶନ୍ଧି ଧରି ସେମାନେ ପ୍ରୟାସ କରୁଛନ୍ତି । ସେମାନେ ପୃଥିବୀ ରାଷ୍ଟ୍ରସଙ୍ଘର ସମ୍ବିଧାନ ପ୍ରସ୍ତୁତ କରିଛନ୍ତି ଓ ତାହାକୁ ପ୍ରୟୋଗ କରି ଏକ ରାଷ୍ଟ୍ରସଙ୍ଘ ପାଇଁ ଆନ୍ତର୍ଜାତିକ ସ୍ତରରେ ସଚେତନତା ପାଇଁ ଗମ୍ଭୀର ଭାବେ ଚିନ୍ତା କରୁଛନ୍ତି । ସେମାନେ କେତେକ ବିଚାର ରଖୁଛନ୍ତି ଯେ ବର୍ତ୍ତମାନ ସମୟରେ ମଣିଷ ସମାଜ ଏପରି କେତେକ ସମସ୍ୟା ଓ ସଙ୍କଟର ସମ୍ମୁଖୀନ ହୋଇଛି ଯାହା କୌଣସି ରାଷ୍ଟ୍ର ପକ୍ଷରେ ସମାଧାନ କରିବା ସମ୍ଭବ ନୁହେଁ । ମିଳିତ ଜାତିସଙ୍ଘ ପରି ସଙ୍ଗଠନ ମଧ୍ୟ ବିଶ୍ୱ ସ୍ତରରେ ଶାନ୍ତି, ସ୍ଥିରତା ଓ ସଂହତି ସ୍ଥାପନ କରି ପାରୁନାହିଁ । ବରଂ ରାଷ୍ଟ୍ରୀୟତା ପୃଥିବୀରେ ଏପରି ବିଚାର ଆଣିଛି ଯଦ୍ୱାରା

ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଅବିଶ୍ୱାସ, ବିଦ୍ୱେଷ, ସାମରିକ ପ୍ରତିଯୋଗିତା ଓ ଯୁଦ୍ଧର ପରିବେଶ ରହିଛି । ଏଣୁ ରାଷ୍ଟ୍ର ଓ ରାଷ୍ଟ୍ରୀୟତାର ଊର୍ଦ୍ଧ୍ୱକୁ ଯାଇ ସମଗ୍ର ମଣିଷ ସମାଜକୁ ଭ୍ରାତୃତ୍ୱର ବନ୍ଧନରେ ବାନ୍ଧିବାକୁ ହେଲେ ପୃଥିବୀ ରାଷ୍ଟ୍ରସଙ୍ଘ ହିଁ ଯଥାର୍ଥ ବିକଳ୍ପ ବୋଲି ସେମାନେ ମତ ଦେଉଛନ୍ତି । ଏହି ପୃଷ୍ଠଭୂମିରେ ମଣିଷ ସମାଜର କେତେକ ଗୁରୁତ୍ୱପୂର୍ଣ୍ଣ ସଙ୍କଟ ବିଷୟରେ ଅବତାରଣା କରାଯାଇପାରେ ।

ପ୍ରଥମତଃ ସାରା ବିଶ୍ୱରେ ପରିବେଶ ପ୍ରଦୂଷଣ ଏକ ବଡ଼ ଆହ୍ୱାନ ଭାବରେ ପୃଥିବୀର ଜନଗଣଙ୍କୁ ଆକ୍ରାନ୍ତ କରିବାକୁ ଯାଉଛି । ପରିବେଶ ଯେପରି ପ୍ରଦୂଷିତ ହୋଇ ଚାଲିଛି ତାହାର ପରିଣାମ ଯେ ଭୟଙ୍କର ହେବ ଓ ଏପରିକି ଆମ ଧରିତ୍ରୀରେ ଜୀବଜଗତ ତିଷ୍ଠି ରହିପାରିବ ନାହିଁ ଏହି ଆଶଙ୍କା ସୃଷ୍ଟି ହେଉଛି । ଜଙ୍ଗଲର ଅବକ୍ଷୟ, ବାୟୁମଣ୍ଡଳରେ ଅଙ୍ଗାରକାମ୍ଳର ପରିମାଣ ବୃଦ୍ଧି, ବାୟୁ ମଣ୍ଡଳର ଉତ୍ତାପ ବଢ଼ିଚାଲିବା, ଓଜନ ସ୍ତରରେ ଫାଟହୋଇ କ୍ଷତିକାରକ ସୂର୍ଯ୍ୟରଶ୍ମି ବାୟୁମଣ୍ଡଳରେ ପ୍ରବେଶ କରିବା, ମେରୁର ବରଫ ତରଳିବା, ଜୈବ ବିବିଧତା ନଷ୍ଟହେବା, ମାଟି, ପାଣି ଓ ପବନ ପ୍ରଦୂଷିତ ହୋଇ ଚାଲିବା, ସମୁଦ୍ରର ଜଳ ପତନ ବୃଦ୍ଧି ପାଇବା, ମଧୁର ପାଣି ନ ମିଳିବା, ଭୂତଳ ଜଳସ୍ତର ତଳକୁ ତଳ ଯିବା ଇତ୍ୟାଦି ନାନା ପାରିବେଶିକ ସଙ୍କଟର ପରିବେଶ ଆସୁଛି । ଏହା ସହିତ ଗାଡ଼ି, ମଟରର ଅଭିବୃଦ୍ଧି ଜନିତ ନାନା କାରଣରୁ ଜୈବ ଇନ୍ଧନ କ୍ରମବର୍ଦ୍ଧିଷ୍ଣୁ ଭାବେ ହ୍ରାସ ପାଇବା ପରି ସମସ୍ୟାମାନ ସୃଷ୍ଟି ହେବାକୁ ଯାଉଛି । ଫଳତଃ ପରିବେଶର ସୁରକ୍ଷା ନ ହେଲେ ବିଭିନ୍ନ ସଙ୍କଟ ଜନକ ପରିସ୍ଥିତି ଆସିବ ଓ ଏପରିକି ଧରାପୃଷ୍ଠରୁ ଜୀବଜଗତ ଲୋପ ପାଇଯିବ । ଦ୍ୱିତୀୟରେ ପୃଥିବୀର ପ୍ରତ୍ୟେକ ରାଷ୍ଟ୍ର ଯେପରି ନିଜର ସାମରିକ ଶକ୍ତି ବୃଦ୍ଧି କରିବାକୁ ଯୋଜନା କରୁଛି ଓ ଏଥିପାଇଁ ରାଷ୍ଟ୍ରୀୟ ପୁଞ୍ଜିର ମୁଖ୍ୟ ଅଂଶ ଏଥିରେ ଖର୍ଚ୍ଚ କରୁଛି ତାହା ମଣିଷ ସମାଜ ପାଇଁ ଆଦୌ ଶୁଭ ଲକ୍ଷଣ ନୁହେଁ । ହାଇଟେକ ଆଣବିକ ଅସ୍ତ୍ର ନିର୍ମାଣ ପାଇଁ ଗବେଷଣା ପୃଥିବୀର ପ୍ରତ୍ୟେକ ସଭ୍ୟ ରାଷ୍ଟ୍ରମାନେ କରୁଛନ୍ତି ଓ କେତେକ ଦୁର୍ଲଭ ପ୍ରାକୃତିକ ସମ୍ପଦକୁ ନଷ୍ଟ କରିବାରେ ଲାଗିଛନ୍ତି । ଆଣବିକ ଅସ୍ତ୍ର ନିର୍ମାଣ ସାଙ୍ଗକୁ ଜୀବାଣୁ ଯୁଦ୍ଧ ପାଇଁ ମଧ୍ୟ ଗବେଷଣା ଚାଲୁକରିବା ଆମ ବିବେକହୀନତାର ପରିଚୟ ଦିଏ । ଏତଦ୍‌ବ୍ୟତୀତ ପୃଥିବୀରେ ସନ୍ତ୍ରାସବାଦ, ସୀମାପାର ଆତଙ୍କବାଦ ଓ ହିଂସାତ୍ମକ ବାତାବରଣ ସଂକୀର୍ଣ୍ଣ ଅସ୍ମିତାକୁ ନେଇ ସୃଷ୍ଟି ହେଉଛି । ଜାତି, ଧର୍ମ, ଜାତୀୟତା ଇତ୍ୟାଦି ଭାବନାକୁ ନେଇ ପୃଥିବୀରେ ହିଂସା, ବିଦ୍ୱେଷ, ଘୃଣାର ପରିବେଶ ସୃଷ୍ଟି ହେଉଛି । ଧର୍ମ, ରାଷ୍ଟ୍ରୀୟତା ଇତ୍ୟାଦିର ଆବେଗର ପରିଣାମରୁ ଅମାନବିକ ଓ ଅସହିଷ୍ଣୁ ମାନସିକତା ପୃଥିବୀର ଜନଗଣଙ୍କୁ ଭାଗ ଭାଗ କରି ରଖିଛି । ଏସବୁ ଯେ ସଭ୍ୟ ଜୀବନଦୃଷ୍ଟିର ପ୍ରତିକୂଳ ଏହା

ନିଃସନ୍ଦେହ ମନେହୁଏ । ତୃତୀୟରେ ଆଧୁନିକ ଚିକିତ୍ସା ବିଜ୍ଞାନର ଅଗ୍ରଗତି ଜନିତ କାରଣରୁ ପୃଥିବୀର ଜନସଂଖ୍ୟା ଆଶାତୀତ ଭାବରେ ବୃଦ୍ଧି ପାଇଚାଲିଛି । ୧୮୦୦ ମସିହାରେ ପୃଥିବୀର ଜନସଂଖ୍ୟା ୧୦୦ କୋଟି, ୧୯୦୦ ମସିହାରେ ୧୬୦ କୋଟି ଥିବା ବେଳେ ୨୦୦୦ ମସିହାରେ ଏହା ୬୦୦ କୋଟି ଓ ୨୦୧୧ ରେ ଏହା ୭୦୦ କୋଟିରୁ ଅଧିକ ହେବା ବେଶ୍ ଚିନ୍ତାର ବିଷୟ । ଜନସଂଖ୍ୟାର ଏହି ଅଭିବୃଦ୍ଧିକୁ ଯଦି ନିୟନ୍ତ୍ରଣ କରା ନଯାଏ, ତେବେ ନାନା ସଙ୍କଟଜନକ ସ୍ଥିତିର ଉଦ୍ଭବ ହେବ । ବିଶେଷ କରି ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କରେ ଉତ୍କଟ ଦାରିଦ୍ର୍ୟ ଥିବା ବେଳେ ସେଠାରେ ଜନସଂଖ୍ୟାର ଆଶାତୀତ ଅଭିବୃଦ୍ଧି ସେମାନଙ୍କର ବିକାଶ କ୍ଷେତ୍ରରେ ପ୍ରତିବନ୍ଧକ ହେବ । ଚତୁର୍ଥରେ ବିଜ୍ଞାନ ଓ ନାନା ପ୍ରଯୁକ୍ତି ବିଜ୍ଞାନରେ ଆଶାତୀତ ଅଭିବୃଦ୍ଧି ସତ୍ତ୍ୱେ ପୃଥିବୀର ଜନଗଣଙ୍କ ଭିତରେ ଉତ୍କଟ ଦାରିଦ୍ର୍ୟ ରହିବା ଉଦ୍‌ବେଗର କାରଣ ମନେହୁଏ । ଆନ୍ତର୍ଜାତିକ ଅନୁସନ୍ଧାନରୁ ଜଣାଯାଏ ଯେ ପୃଥିବୀ ଜନସଂଖ୍ୟାର ପ୍ରାୟ ଅଧାଅଧି ଲୋକ ସହର ମାନଙ୍କର ସ୍ଲମ ମାନଙ୍କରେ, ରାସ୍ତା କଡରେ, ଗାଁ ଗହଳର ନିହାତି ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନଧାରଣ କରନ୍ତି । ଆମ ଦେଶ ପରି ଅତ୍ୟନ୍ତ ଜନବହୁଳ ରାଷ୍ଟ୍ରରେ ବାଳ ଶ୍ରମିକ, ଭିକ୍ଷାବୃତ୍ତି, ଅସ୍ୱାସ୍ଥ୍ୟକର ପରିବେଶରେ ଜୀବନ ବଞ୍ଚିବା, ବିଶୁଦ୍ଧ ପାନୀୟରୁ ବଞ୍ଚିତ ହେବା ପରି ପରିବେଶ ରହିଛି । ଫଳତଃ ବହୁ ଲୋକ କୁପୋଷଣର ଶିକାର ହେବା ଜଣାଯାଏ । ଜୀବନର ସର୍ବନିମ୍ନ ଆବଶ୍ୟକତାରୁ ବଞ୍ଚିତ ହେବା, ଖାଦ୍ୟାଭାବ ଜନିତ କଷଣରୁ ଦୁଃଖ, ନୈରାଶ୍ୟ ଓ ହତାଶା ଭିତରେ ଜୀବନ ବଞ୍ଚିବାର ପରିବେଶ ଗରିବ ଦେଶମାନଙ୍କରେ ଉତ୍କଟ ହେବା ଦେଖାଯାଏ ।

ବିଶ୍ୱସ୍ତରରେ ଏହି ସବୁ ସମସ୍ୟାର ସମାଧାନ ପାଇଁ କୌଣସି ଏକକ ରାଷ୍ଟ୍ର ସମର୍ଥ ନୁହେଁ । ସମ୍ପ୍ରତି ଏହିସବୁ ସମସ୍ୟା ପରିପ୍ରେକ୍ଷୀରେ ସାମଗ୍ରିକ ଭାବେ ବିଶ୍ୱସ୍ତରରେ ପ୍ରୟାସ ଆବଶ୍ୟକ । ବସ୍ତୁତଃ ଏକ ବିକଳ୍ପ ବିଶ୍ୱର ପରିକଳ୍ପନା ଭିତରେ ବିଶ୍ୱସଙ୍ଘର ଭାବନା କେତେକ କ୍ରାନ୍ତିକାରୀ ବୁଦ୍ଧିଜୀବୀ ପ୍ରସାର କରୁଛନ୍ତି । ରାଷ୍ଟ୍ରୀୟତାର ଊର୍ଦ୍ଧ୍ୱରେ ଏକ ବିଶ୍ୱ ସରକାର ଗଠନ ପାଇଁ ସେମାନେ ଯୋଜନାବଦ୍ଧ ଭାବେ କାର୍ଯ୍ୟ କରୁଛନ୍ତି । ସମସ୍ତ ଅଞ୍ଚଳର ସୃଜନାତ୍ମକ ସଂସ୍କୃତି ଓ ଐତିହ୍ୟକୁ ସୁରକ୍ଷା ଦେଇ ସାରା ପୃଥିବୀର ଜନଗଣଙ୍କୁ ଗଣତାନ୍ତ୍ରିକ ପ୍ରକ୍ରିୟାରେ ଏକ ଶାସନାଧୀନ ବ୍ୟବସ୍ଥାରେ ରଖିଲେ ପୃଥିବୀରୁ ଯୁଦ୍ଧ ଭିଭୀଷିକା ଦୂର ହୋଇ ପାରିବ । ଏକ ନିରସ୍ତ୍ରୀକରଣ ବିଶ୍ୱ ଦ୍ୱାରା ସାମରିକ ଅସ୍ତ୍ର ନିର୍ମାଣରେ ଯେଉଁ ବିପୁଳ ଅର୍ଥର ଅପବ୍ୟୟ ହେଉଛି ତାହା ମାନବହିତକାରୀ ଜନମଙ୍ଗଳ ଲକ୍ଷ୍ୟରେ ବ୍ୟୟ ହେଲେ ପୃଥିବୀରୁ ଦାରିଦ୍ର୍ୟ, ନିରକ୍ଷରତା, କୁପୋଷଣ, ବହୁ ବ୍ୟାଧିର ନିରାକରଣ ସମ୍ଭବ

ହେବ । ସେହିପରି ଆମ ସଂସାରରେ ଯୁଗ ଯୁଗ ଧରି ରହିଥିବା ଭେଦଭାବ, ଅମାନବିକତା, ଶୋଷଣ, ବୈଷମ୍ୟ ଇତ୍ୟାଦିର ମଧ୍ୟ ବିଲୋପ ହୋଇପାରିବ । ସବୁ ଦେଶର ସବୁ ମଣିଷଙ୍କ ଭିତରେ ଭ୍ରାତୃତ୍ୱ, ଏକାତ୍ମତା, ମାନବିକ ସମ୍ବେଦନଶୀଳତା ଓ ସହିଷ୍ଣୁତାର ପରିବେଶ ସୃଷ୍ଟି କରାଯାଇ ପାରିବ । ମଣିଷର ସୃଜନଶୀଳତା ଓ ବୌଦ୍ଧିକ ସାମର୍ଥ୍ୟ ଭିତରେ ଯେଉଁ ସମ୍ଭାବନା ରହିଛି ତାହାର ଉପଯୁକ୍ତ ବିକାଶ ଦ୍ୱାରା ପୃଥିବୀରୁ ଅନେକ ମନ୍ଦ, ଅନ୍ୟାୟ ବା ଇଭିଲ୍‌କୁ ଦୂର କରାଯାଇ ପାରିବ । ଏହି ସମ୍ଭାବନା ନେଇ "ବିଶ୍ୱ ସଂଘ" ବା ଆର୍ଥ ଫେଡେରେସନ ଏକ ନୂତନ ବିକଳ୍ପ ଭାବେ ଚିନ୍ତାରାଜ୍ୟରେ ଆଲୋଡନ ଆଣିଥିବା ମନେହୁଏ । ବିଶ୍ୱ ସଂଘ ଜରିଆରେ ସମଗ୍ର ପୃଥିବୀ ପାଇଁ ଏକ 'ବିଶ୍ୱ ସରକାର' ଗଠନ ସମ୍ଭାବନା ଏକ ବିକଳ୍ପ ବିଶ୍ୱର ଚିତ୍ର ପ୍ରଦାନ କରିଥାଏ ।

(୧୨.୬.୨୦୧୩)



# ବିଶ୍ୱଶାନ୍ତି ପାଇଁ ବିଶ୍ୱସଙ୍ଘ

ବିଶ୍ୱସଙ୍ଘ ବା ଆର୍ଥ ଫେଡେରେସନ ବିଂଶ ଶତାବ୍ଦୀ ଦ୍ୱିତୀୟାର୍ଦ୍ଧରେ ବିଶ୍ୱଶାନ୍ତି ପାଇଁ ବିକାଶଲାଭ କରିଥିବା ଏକ ସମ୍ଭାବ୍ୟ ବିକଳ୍ପ । ମଣିଷ ସଭ୍ୟତା ପୃଥିବୀର ବିଭିନ୍ନ ଭୂଖଣ୍ଡରେ ଆଦିମ ସ୍ତରରୁ କ୍ରମବିକଶିତ ହୋଇ ଆଜିର ସ୍ଥିତିକୁ ଆସିଛି । ଅତୀତରେ ଗୋଷ୍ଠୀ-ଗୋଷ୍ଠୀ, ରାଜ୍ୟ-ରାଜ୍ୟ ଓ ରାଷ୍ଟ୍ର-ରାଷ୍ଟ୍ର ଭିତରେ ନାନା କାରଣରୁ ଯୁଦ୍ଧ ବା ସଙ୍ଘର୍ଷମାନ ଘଟିଯାଇଛି । ତେବେ ତାହାଦ୍ୱାରା ସମଗ୍ର ମଣିଷ ଜାତି ପ୍ରତି ବିପଦ ଆସିନାହିଁ । ଯୁଦ୍ଧର ପରିଣାମରୁ ପୃଥିବୀର ବିଭିନ୍ନ ଭୂଖଣ୍ଡ ନାନା ଭାବରେ ରକ୍ତରଞ୍ଜିତ ହୋଇଛି । କେତେକ ଭୂଖଣ୍ଡର ଜନଗଣ ନାହିଁ ନଥିବା ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଛନ୍ତି । ତେବେ ବିଂଶ ଶତାବ୍ଦୀର ଦ୍ୱିତୀୟ ବିଶ୍ୱଯୁଦ୍ଧ ଓ ତାର ପରବର୍ତ୍ତୀ ସୋପାନରେ ବିଭିନ୍ନ ରାଷ୍ଟ୍ରରେ ଆଣବିକ ଅସ୍ତ୍ର ନିର୍ମାଣ ମଣିଷର ସଭ୍ୟତା ଓ ସ୍ଥିତି ପ୍ରତି ଆହ୍ୱାନ ଭାବେ ଆସିଛି । ଏକବିଂଶ ଶତାବ୍ଦୀ ଆରମ୍ଭ ପୂର୍ବରୁ ଏହିପରି ଏକ ଆଶଙ୍କା ପୃଥିବୀରେ ଦେଖା ଦେଇଛି ଯେ ମଣିଷର ସଭ୍ୟତା ଏକ ସଙ୍କଟମୟ ଅବସ୍ଥା ଆଡକୁ ଆଗେଇ ଚାଲିଛି । ଆଣବିକ ଯୁଦ୍ଧର ସମ୍ଭାବନା ଓ ପାରିବେଶିକ ପ୍ରଦୂଷଣ ଯୋଗୁଁ ସଭ୍ୟତା ଯେ ଲୋପ ପାଇଯାଇପାରେ ଏହି ଆଶଙ୍କା ଆସିଛି । ଏତଦ୍‌ବ୍ୟତୀତ ଜନସଂଖ୍ୟା ବୃଦ୍ଧି ଜନିତ କାରଣ, ସ୍ୱଚ୍ଛ ଲୋକଙ୍କର ପ୍ରାଚୁର୍ଯ୍ୟ ଓ ଅଗଣିତ ଲୋକଙ୍କର ଦାରିଦ୍ର୍ୟ, ବିଶ୍ୱସ୍ତରରେ ମାନବିକ ଅଧିକାରର ଉଲ୍ଲଙ୍ଘନ, ଜାତି, ଧର୍ମ ଇତ୍ୟାଦିକୁ ନେଇ ସାମ୍ପ୍ରଦାୟିକ ହିଂସା ଓ ଅସହିଷ୍ଣୁ ମନୋଭାବ, ପ୍ରାକୃତିକ ସମ୍ବଳର ବିଷମ ବ୍ୟବହାର ଜନିତ ବୈଷମ୍ୟ ଓ ଉତ୍ତେଜନାର ବାତାବରଣ ସାରା ପୃଥିବୀରେ ବିସ୍ତାରଲାଭ କରିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିକୁ ସଭ୍ୟତା-ଧ୍ୱଂସକାରୀ ଲକ୍ଷ୍ୟରେ ଅପପ୍ରୟୋଗ, କର୍ପୋରେଟ ସଂସ୍କୃତିର ବିକାଶ ଓ ଯେ କୌଣସି ରାଷ୍ଟ୍ରର ପ୍ରାକୃତିକ ସାଧନ ଗୁଡିକୁ କରାୟତ କରିବାର ଅପଚେଷ୍ଟା ପରି ନାନା ଜଟିଳ ସମସ୍ୟା ବିଶ୍ୱର ଜନଗଣଙ୍କୁ ଆକ୍ରାନ୍ତ କରିବାରେ ଲାଗିଛି । ଏହିସବୁ ମାନବକୃତ ସଂକଟ ପରିପ୍ରେକ୍ଷୀରେ ସଭ୍ୟତାର ଭବିଷ୍ୟତ ନେଇ ନାନା ଆଶଙ୍କା ଓ ଉଦ୍‌ବେଳନ ପୃଥିବୀର କିଛି ରାଷ୍ଟ୍ରନୀତିଜ୍ଞ, ମାନବହିତୈଷୀ ବୁଦ୍ଧିଜୀବୀ ଓ ସମାଜସେବୀଙ୍କୁ ଗଭୀର ଭାବେ ପ୍ରଭାବିତ କରିଛି । ଏହିପରି ଏକ ଜଟିଳ ସ୍ଥିତିରୁ ମଣିଷ ଜାତିକୁ ରକ୍ଷାକରି ଆଗାମୀ ବଂଶଧରଙ୍କ ପାଇଁ ଏକ ପ୍ରୀତିପୂର୍ଣ୍ଣ

ଭବିଷ୍ୟତ ସମ୍ଭାବନା ସୃଷ୍ଟି କରିବାକୁ ବିଶ୍ୱସ୍ତରରେ କିଛି ବ୍ୟକ୍ତି ପ୍ରୟାସ କରୁଛନ୍ତି । ସେହି ବିଚାର ଓ ଚିନ୍ତନରୁ ବିଶ୍ୱସଙ୍ଘ ଭାବନା ଜନ୍ମ ନେଇଛି । ଅବଶ୍ୟ ବିଶ୍ୱସଙ୍ଘ ଭାବନା ପୂର୍ବରୁ ପ୍ରଥମ ବିଶ୍ୱଯୁଦ୍ଧ ପରେ ୧୯୧୯ରେ ଗଠିତ ହୋଇଥିବା ରାଷ୍ଟ୍ରସଙ୍ଘ (ଲିଗ ଅଫ ନେସନସ) ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ୧୯୪୫ରେ ଗଠିତ ହୋଇଥିବା ମିଳିତ ଜାତିସଙ୍ଘ(ୟୁନାଇଟେଡ ନେସନସ) ଓ ବିଭିନ୍ନ ଆନ୍ତର୍ଜାତିକ ସଙ୍ଗଠନମାନ ବିଶ୍ୱରେ ସୃଷ୍ଟି ହୋଇଛି । ରେଡକ୍ରସ, ୟୁଏନେସ୍କୋ ପରି ସଙ୍ଗଠନମାନ ସାରା ବିଶ୍ୱରେ ମଣିଷ ଜାତିର ମଙ୍ଗଳ ପାଇଁ କାର୍ଯ୍ୟ କରିବା ସହ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବାରେ ସହାୟକ ହୋଇଥିଲେ ମଧ୍ୟ ବାସ୍ତବ ପକ୍ଷେ ଏସବୁ ମଣିଷ ଜାତିର ସମସ୍ୟାକୁ ସମାଧାନ କରିବାରେ ଯଥେଷ୍ଟ ସଫଳତା ଦେଇ ପାରିନାହିଁ । ବସ୍ତୁତଃ ବିଚାର ଆସିଛି ଯେ ଯଦି ଏକ ବିଶ୍ୱ ସରକାର ସମଗ୍ର ପୃଥିବୀ ପାଇଁ ସୃଷ୍ଟି କରାଯାଏ, ତେବେ ହୁଏତ ଏହା ଜରିଆରେ ସବୁ ରାଷ୍ଟ୍ରର ଜନଗଣଙ୍କୁ ଏକକ ଡୋରିରେ ବନ୍ଧାଯାଇ ପାରିବ ଓ ମଣିଷ ସମାଜରୁ ବହୁ ସଙ୍କଟକୁ ଦୂର କରାଯିବା ସମ୍ଭବ ହେବ । ସମଗ୍ର ପୃଥିବୀର ଜନଗଣଙ୍କ ମଧ୍ୟରେ ଶାନ୍ତି, ପ୍ରଗତି, ନ୍ୟାୟ ଓ ସଂହତି ସ୍ଥାପନ କରିବାର ଲକ୍ଷ୍ୟ ନେଇ ବିଶ୍ୱର କେତେକ ପ୍ରବୀଣ ବୁଦ୍ଧିଜୀବୀ ଓ ମାନବବାଦୀ ୧୯୫୮ରୁ ଏକ ଉଦ୍ୟମ ଆରମ୍ଭ କଲେ । ବିଶ୍ୱସଙ୍ଘର ଏକ ସମ୍ବିଧାନ ପ୍ରସ୍ତୁତ କରିବାକୁ ଆନ୍ତର୍ଜାତିକ ସ୍ତରରେ ଉଦ୍ୟମ ଆରମ୍ଭ ହେଲା । ବିଶ୍ୱସଙ୍ଘର ଲକ୍ଷ୍ୟ ଗୁଡିକୁ ତାହାର ମୁଖବନ୍ଧରେ ସ୍ପଷ୍ଟ କରାଯିବା ସହ ୧୯୭୭ ରେ ଅଷ୍ଟ୍ରିଆର ଇନସବ୍ରୁକଠାରେ ଏହାର ସମ୍ବିଧାନର ଡ୍ରାଫ୍ଟ ଗୃହୀତ ହେଲା । ସମ୍ବିଧାନ ପ୍ରସ୍ତୁତି ପରେ ଏହା ପ୍ରତ୍ୟେକ ରାଷ୍ଟ୍ରର ସରକାରକୁ ତଥା ଜାତିସଙ୍ଘର ଜେନେରାଲ ଆସେମ୍ବ୍ଲିକୁ ମଧ୍ୟ ପଠାଗଲା ।

ଆମେ ଓ ଆମର ଆଗାମୀ ବଂଶଧର କେଉଁ ପ୍ରକାରର ଏକ ବିଶ୍ୱରେ ଜୀବନ ଧାରଣ କରିବାକୁ ଚାହୁଁ ତାହାକୁ ସମ୍ବିଧାନର ମୁଖବନ୍ଧରେ (ପ୍ରିଏମ୍ବୁଲ) ଉଲ୍ଲେଖ କରାଯାଇଛି । ଆମେ ସମସ୍ତେ ଏହି ପୃଥିବୀର ଅଧିବାସୀଗଣ ଭ୍ରାତୃତ୍ୱ, ଶାନ୍ତି ଓ ଅହିଂସାକୁ ଆମର ଆଦର୍ଶ ଭାବେ ନେଇ ଏକ ପରସ୍ପର ନିର୍ଭରଶୀଳ ପରିବେଶରେ ଜୀବନଧାରଣ କରିବାକୁ ଚାହୁଁ । ଆମେ ଆମ ଧରିତ୍ରୀର ସୁରକ୍ଷା କରିବା ସହ ଆଗାମୀ ବଂଶଧରମାନେ ଯେପରି ନିରନ୍ତର ପ୍ରଗତି ଭିତରେ ଗୁଣାତ୍ମକ ଜୀବନ ଯାପନ କରିବେ ତାହାହିଁ ଆମର ଧ୍ୟେୟ । ଆମେ ଆମ ପରିବେଶକୁ ସୁରକ୍ଷା ଦେବୁ ଓ ସାରା ପୃଥିବୀରୁ ହିଂସା, ଯୁଦ୍ଧ, ସନ୍ତ୍ରାସବାଦ ପରି ଭାବନାକୁ ଦୂର କରିବାକୁ ଚାହୁଁ । ମଣିଷ ସମାଜରେ ଥିବା ସମସ୍ତ ବୈଷମ୍ୟ, ଭେଦଭାବକୁ ଦୂର କରିବା ଆମର ଲକ୍ଷ୍ୟ । ଆମ ଭିତରେ କିଛି ବିଭେଦତା ଥିଲେ ମଧ୍ୟ ଆମେ ପୃଥିବୀର ସମସ୍ତ ଜନଗଣ ଏକ ଓ ଆମ ଭିତରେ ଭାତୃତ୍ୱଭାବ ଓ ସମ୍ପ୍ରୀତି ସ୍ଥାପନ କରିବା ଆମର କାମ୍ୟ । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିକୁ ଆମେ କେବଳ ମଣିଷ ଜାତିର ହିତ ପାଇଁ ବିନିଯୋଗ କରିବୁ ଓ ପୃଥିବୀରୁ ସବୁଦିନ ପାଇଁ ଯୁଦ୍ଧର ସମ୍ଭାବନାକୁ କବର ଦେବୁ । ସମଗ୍ର ପୃଥିବୀର ଜନଗଣ ଏକ ଗଣତାନ୍ତ୍ରିକ ବିଶ୍ୱ ସରକାର ଦ୍ୱାରା ଶାସିତ

ହେବେ । ଆମ ସଂସାରରେ ଥିବା ସକଳ ଦାରିଦ୍ର୍ୟକୁ ଦୂର କରି ପ୍ରତ୍ୟେକ ବ୍ୟକ୍ତିର ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ମାନବିକ ଅଧିକାର ପ୍ରତି ଆମେ ପ୍ରତିଶ୍ରୁତିବଦ୍ଧ ।

ବିଶ୍ୱସଘଂର ସମ୍ବିଧାନରେ ୧୯ଟି ଧାରା ରହିଛି ଓ ପ୍ରତ୍ୟେକ ଧାରାରେ ନାନା ଉପଧାରା ରହି ଏହାକୁ ପ୍ରାଞ୍ଜଳ କରାଯାଇଛି । ସମ୍ଭାବ୍ୟ ବିଶ୍ୱ ସରକାର ଗଠନର ନାନା ଦିଗ ଉପରେ ଆଲୋଚନା ସହ ବିଶ୍ୱ ସଂସଦ କିପରି ଗଠନ କରାଯିବ ତାହାର ବିସ୍ତୃତ ବିବରଣୀ ସମ୍ବିଧାନରେ ବ୍ୟକ୍ତ ହୋଇଛି । ସବୁ ମଣିଷଙ୍କର ସୁଖମୟ ଜୀବନ, ସ୍ୱାଧୀନତା ଓ ନିରାପତ୍ତାକୁ ସ୍ୱୀକାର କରି ସାମାଜିକ ବୈଷମ୍ୟକୁ ଦୂର କରିବାକୁ ଘୋଷଣା କରାଯାଇଛି । ସମଗ୍ର ପୃଥିବୀକୁ ଜନସଂଖ୍ୟା ଅନୁପାତରେ ଏକ ହଜାର ଶାସନାଧୀନ ଭୂଖଣ୍ଡରେ ବିଭକ୍ତ କରାଯାଇଛି । ବିଶ୍ୱସଘଂର ସଂସଦ, ପ୍ରଶାସନ, ନ୍ୟାୟପାଳିକା ଓ ଆଇନଗତ ବ୍ୟବସ୍ଥାର ରୂପରେଖ କିପରି ହେବ ତାହାର ବିଶ୍ଳେଷଣ ରହିଛି । ଏହା ସହିତ ସମସ୍ତ ଦେଶ ନିରସ୍ତ୍ରୀକରଣ କାର୍ଯ୍ୟକ୍ରମକୁ କିପରି ସଫଳତାର ସହ ପାଳନ କରିବେ ତାହା ବି କୁହାଯାଇଛି । ବିଶ୍ୱ ସଂସଦର ରୂପରେଖ କିପରି ହେବ ଓ ଏହା କିଭଳି ହାଉସ ଅଫ ପିପୁଲ, ହାଉସ ଅଫ ନେସନସ ଓ ହାଉସ ଅଫ କାଉନସେଲରସ ତିନି ଗୃହ ବିଶିଷ୍ଟ ହେବ ତାହାର ବିସ୍ତୃତ ବର୍ଣ୍ଣନା ସମ୍ବିଧାନରେ ରହିଛି । ବିଶ୍ୱର ଶାସନ ପରିଚାଳନାର ରୂପରେଖ ବିଷୟରେ ଏକ ସ୍ପଷ୍ଟ ଚିତ୍ର ଦିଆଯାଇଛି । ବିଶ୍ୱ ସରକାରରେ କ'ଣ କ'ଣ ବିଭାଗ ରହିବ ଓ ଶାସନ ପରିଚାଳନା ପାଇଁ ଏକ କ୍ୟାବିନେଟ କିପିରି ଗଠିତ ହେବ ତାହାର କାର୍ଯ୍ୟଧାରାକୁ ବ୍ୟାଖ୍ୟା କରାଯାଇଛି । ଏଥିରେ କିପରି ୨୮ଟି ବିଭାଗ ରହିବ ଓ ପ୍ରତ୍ୟେକ ବିଭାଗ କିପରି କାର୍ଯ୍ୟ କରିବ ତାହାର ସୂଚନା ରହିଛି । ବିଶ୍ୱର ନ୍ୟାୟପାଳିକାର ସ୍ୱରୂପ କିପରି ହେବ ଓ ଏହା କିପରି ନାଗରିକ ଅଧିକାରକୁ ସୁରକ୍ଷା ଦେବ ତାହାର ବିସ୍ତୃତ ବର୍ଣ୍ଣନା ରହିଛି । ଏହା ସହିତ ନ୍ୟାୟ ପାଳିକାର ନିଷ୍ପତ୍ତି କିପରି ବାଧ୍ୟତାମୂଳକ ହେବ ତାହା ଦର୍ଶାଯାଇଛି । ଅପରାଧମୂଳକ ଘଟଣା ବା ସାମ୍ବିଧାନିକ ସମସ୍ୟାର ସମାଧାନ ପାଇଁ ନ୍ୟାୟପାଳିକାର କାର୍ଯ୍ୟ କିପରି ସାରା ବିଶ୍ୱରେ ବିସ୍ତୃତ ହୋଇ ରହିବ ସେ ବିଷୟରେ ଗମ୍ଭୀର ଚିନ୍ତା ବ୍ୟକ୍ତ କରାଯାଇଛି । ଜନଗଣଙ୍କର ନିରାପତ୍ତା ଓ ଆଇନଶୃଙ୍ଖଳା ସୁରକ୍ଷା ଦିଗରେ ପୋଲିସ ବ୍ୟବସ୍ଥାର କାର୍ଯ୍ୟଦକ୍ଷତାକୁ ଗୁରୁତ୍ୱ ଦିଆଯାଇଛି । କୌଣସି କ୍ଷେତ୍ରରେ ନାଗରିକମାନଙ୍କର ଆପତ୍ତି ଅଭିଯୋଗ ପ୍ରତି ପ୍ରାଧାନ୍ୟ ଦିଆଯାଇ ସେସବୁକୁ କିପରି ସମାଧାନ କରାଯିବ ତାହାର ସୂତ୍ର ଦର୍ଶାଯାଇଛି । ସମଗ୍ର ପୃଥିବୀକୁ ଯେଉଁ ପ୍ରୋଭିନ୍‌ସିଆଲ ଭାଗରେ ବିଭକ୍ତ କରାଯିବ ସେହି ପ୍ରତ୍ୟେକ ପ୍ରୋଭିନ୍‌ସିଆଲ ଭୂଖଣ୍ଡରେ ସରକାରୀ ବ୍ୟବସ୍ଥା କିପରି କାର୍ଯ୍ୟକାରୀ ହେବ ତାହାର ମଧ୍ୟ ବିସ୍ତୃତ ବର୍ଣ୍ଣନା ରହିଛି । ଏହିପରି ସମଗ୍ର ପୃଥିବୀ ପାଇଁ ଏକ ବିଶ୍ୱ ସରକାର ରହି ପୃଥିବୀରେ ଶାସନ ବ୍ୟବସ୍ଥା ମାଧ୍ୟମରେ ଶାନ୍ତି, ସ୍ଥିରତା, ସମତା ଆଣିବାକୁ ପ୍ରୟାସ କରିପାରିବ । ପୃଥିବୀର ସମସ୍ତ ଜନଗଣଙ୍କୁ ଉନ୍ନତ ସ୍ୱାସ୍ଥ୍ୟ ସେବା, ଉଚ୍ଚମାନର ଶିକ୍ଷା, ଖାଦ୍ୟ ନିରାପତ୍ତା ଓ ସ୍ୱାସ୍ଥ୍ୟକର ନିବାସ ଯୋଗାଇବା ସରକାରର କର୍ତ୍ତବ୍ୟ ହେବ ।

ବିଶେଷକରି ପୃଥିବୀର କେତେକ ଭୂଖଣ୍ଡରେ ଯେଉଁ ପ୍ରକାରର ଦାରିଦ୍ର୍ୟ ରହିଛି ଓ ଅଗଣିତ ମଣିଷ ଯେପରି ଉପମାନବୀୟ ସ୍ତରରେ ଜୀବନ ନିର୍ବାହ କରୁଛନ୍ତି ତାହାକୁ ବିଶ୍ୱସ୍ତରୀୟ ସମ୍ବଳ, ଯୋଜନା ଓ ପ୍ରୟାସ ଦ୍ୱାରା କିଛି ବର୍ଷ ଭିତରେ ଦୂର କରାଯାଇ ପାରିବ । ପୃଥିବୀର ସାମରିକ ବ୍ୟୟକୁ ବନ୍ଦ କରାଯାଇ ପାରିଲେ ଓ ସେହି ଅର୍ଥ ସାରା ବିଶ୍ୱରେ ଜନମଙ୍ଗଳକାରୀ ଉଦ୍ଦେଶ୍ୟରେ ବିନିଯୋଗ ହେଲେ ପୃଥିବୀରୁ ଦାରିଦ୍ର୍ୟ ଲୋପ ପାଇ ପାରିବ ।

ବିଶ୍ୱସଙ୍ଘ ଦ୍ୱାରା ସାରା ପୃଥିବୀର ଜନଗଣ ଗୋଟିଏ ଶାସନ ବ୍ୟବସ୍ଥା ଭିତରେ ରହିଲେ ମଣିଷ ସମାଜରୁ ସବୁଦିନ ପାଇଁ ଯୁଦ୍ଧ, ଆଣବିକ ବିଭୀଷିକାର ଭୟ ଦୂର ହୋଇପାରିବ । ଏହା ସହିତ ପୃଥିବୀରୁ ପୁଞ୍ଜିବାଦ, ସାମ୍ରାଜ୍ୟବାଦ ବା କର୍ପୋରେଟ କ୍ୟାପିଟାଲିଜିମର ମଧ୍ୟ ବିଲୋପ ହେଲେ ସମାଜବାଦ ଓ ଏକ ସମତାଭିତ୍ତିକ ସମାଜ ଦିଗରେ ସାରା ବିଶ୍ୱ ଅଗ୍ରସର ହୋଇପାରିବ । ସେହିପରି ପୃଥିବୀରେ ଯେଉଁପରି ଉଗ୍ର ସାମ୍ପ୍ରଦାୟିକ ମାନସିକତା ରହିଛି ଯାହା ମଣିଷ ସମାଜକୁ ଭାଗ-ଭାଗ କରି ରଖିଛି ତାହାର ମଧ୍ୟ ଅବସାନ ହୋଇପାରିବ । ସାରା ବିଶ୍ୱରେ ମଣିଷ ଜାତି ପ୍ରତି ସମ୍ପ୍ରୀତି, ଭ୍ରାତୃତ୍ୱଭାବ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ପ୍ରସାର ପାଇଁ ପ୍ରତ୍ୟେକ ବିଦ୍ୟାର୍ଥୀକୁ ଶିକ୍ଷା ଦିଆଯାଇ ପାରିବ । ଫଳରେ ଯେଉଁ ଭାବନା ଓ ମାନସିକତା ଜନ ମାନସରେ ଅନ୍ୟ ପ୍ରତି ବିଦ୍ୱେଷ, ଘୃଣା ବା ଭେଦଭାବ ସୃଷ୍ଟି କରିଥାଏ ତାହାକୁ ଦୂର କରାଯାଇ ପାରିବ ।

ବର୍ତ୍ତମାନ ସୁଦ୍ଧା ପୃଥିବୀର ବିଭିନ୍ନ ରାଷ୍ଟ୍ରର ପ୍ରମୁଖ ବୁଦ୍ଧିଜୀବୀ, କେତେକ ଏନ୍‌ଜିଓ ସଙ୍ଗଠନର କର୍ମକର୍ତ୍ତା ଓ ବିଶ୍ୱଶାନ୍ତିର ପ୍ରବକ୍ତାଗଣ ୧୨ଟି ଆନ୍ତର୍ଜାତିକ ସମ୍ମିଳନୀ କରି ବିଶ୍ୱସଙ୍ଘର ଭାବନାକୁ ବିଶ୍ୱରେ ପରିବ୍ୟାପ୍ତ କରିବାକୁ ପ୍ରୟାସ କରିଛନ୍ତି । ପୃଥିବୀର ବିଭିନ୍ନ ଦେଶର କିଛି ସଚେତନ ବ୍ୟକ୍ତି ନିଜକୁ 'ବିଶ୍ୱ ନାଗରିକ' ବୋଲି ପରିଚୟ ଦେଇ 'ଆମେ ଏକ ବିଶ୍ୱ ସରକାର ଚାହୁଁ' ବୋଲି ଘୋଷଣା କରୁଛନ୍ତି । ସମ୍ଭାବ୍ୟ ବିଶ୍ୱ ସଂସଦ (ପ୍ରୋଭିଜିନାଲ ୱାର୍ଲଡ ପାର୍ଲିଆମେଣ୍ଟ) ର ୧୨ଟି ଅଧିବେଶନରେ ସେମାନେ ବିଶ୍ୱସଙ୍ଘର ସମ୍ବିଧାନର ପୁଙ୍ଖାନୁପୁଙ୍ଖ ଆଲୋଚନା, ଆବଶ୍ୟକୀୟ ସଂଶୋଧନ ମଧ୍ୟ କରୁଛନ୍ତି । ସମଗ୍ର ଭାବନାଟି ଏବେ ଏକ କାଳ୍ପନିକ ବସ୍ତୁ ବା ୟୁଟୋପିଆ ହୋଇ ରହିଥିଲେ ବି ଏହି ସମ୍ଭାବନାଟି ଯେ ଆଗାମୀ ଦିନରେ ବାସ୍ତବତାରେ ପରିଣତ ହେବ ଏହା ଅନେକାଂଶରେ ଅନୁମାନ କରାଯାଉଛି । ସାରା ପୃଥିବୀରେ ଯେଉଁ ଭଳି ଗତିଶୀଳତା ବିସ୍ତାର ଲାଭ କରୁଛି ଓ ଏକ ଉଦାରବାଦୀ ମାନସିକତାର ପରିବେଶ ଆସିଛି, ସେଥିରୁ ବିଶ୍ୱସଙ୍ଘ ଓ ବିଶ୍ୱ ସରକାରର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ ।

(୧୯.୬.୧୩)



# ଆନ୍ତର୍ଜାତିକ ଚେତନାର ବିକାଶ

ମଣିଷ ସମାଜର ଇତିହାସରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଥିଲା ଏକ ନିର୍ଣ୍ଣାୟକ ସନ୍ଧିକ୍ଷଣ । ସେତେବେଳର ବିଭିନ୍ନ ଦେଶର ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ, ମାନବବାଦୀ ଦାର୍ଶନିକ ଓ ବୁଦ୍ଧିଜୀବୀ ଆଶଙ୍କା ବ୍ୟକ୍ତ କଲେ ଯେ ଯଦି ପୃଥିବୀରେ ଏକ ତୃତୀୟ ବିଶ୍ୱଯୁଦ୍ଧର ପରିବେଶ ଆସେ, ତେବେ ତାହା ମଣିଷ ସଭ୍ୟତାକୁ ବିଲୋପ କରିଦେବ । ଏହି ପରିପ୍ରେକ୍ଷୀରେ ଶାନ୍ତି ପାଇଁ ସର୍ବନିମ୍ନ କାର୍ଯ୍ୟସୂଚୀ ନେଇ ମିଳିତ ଜାତିସଙ୍ଘର ପ୍ରତିଷ୍ଠା ଥିଲା ଏକ ମହତ୍ତ୍ୱପୂର୍ଣ୍ଣ ଐତିହାସିକ ଘଟଣା । ମିଳିତ ଜାତିସଙ୍ଘ ପୃଥିବୀର ଏକାବନଟି ରାଷ୍ଟ୍ରର ସହମତିରେ ୧୯୪୫ ଅକ୍ଟୋବର ୨୪ ତାରିଖରେ ସ୍ଥାପିତ ହେଲା । ପରେ ପୃଥିବୀର ପ୍ରାୟ ସମସ୍ତ ରାଷ୍ଟ୍ର ଏଥିରେ ସମ୍ପୃକ୍ତ ହେଲେ । ସମଗ୍ର ପୃଥିବୀରେ ଶାନ୍ତି ସ୍ଥାପନା ଓ ରାଷ୍ଟ୍ରମାନଙ୍କ ମଧ୍ୟରେ ଭ୍ରାତୃତ୍ୱ ଭାବନାର ବିକାଶକୁ ସେତେବେଳେ ପ୍ରାଥମିକତା ଦିଆଯାଇଥିଲା । ସେହିପରି ପୃଥିବୀର କେତେକ ଦେଶରେ ରହିଥିବା କ୍ଷୁଧା, ଦାରିଦ୍ର୍ୟ, ମହାମାରୀ, ନିରକ୍ଷରତା ପରି ମାନବୀୟ ସମସ୍ୟା ମାନଙ୍କୁ ଦୂର କରିବାକୁ ରାଷ୍ଟ୍ରମାନେ ସଙ୍ଘବଦ୍ଧ ଭାବରେ କାର୍ଯ୍ୟ କରିବାକୁ ଆହ୍ୱାନ ଦିଆଗଲା । ଏହି ଲକ୍ଷ୍ୟ ସାଧନ ପାଇଁ ରାଷ୍ଟ୍ରମାନଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ କରିବାକୁ ମିଳିତ ଜାତିସଙ୍ଘର ଆଭିମୁଖ୍ୟ ରହିଲା । ଜାତିସଙ୍ଘର ଯେଉଁ ସମ୍ବିଧାନ ରହିଲା ତାହାର ମୁଖବନ୍ଧର ପ୍ରସ୍ତାବନାରେ ଉଲ୍ଲେଖ କରାଗଲା ଯେ ଆଗାମୀ ପିଢ଼ିର ଜନଗଣଙ୍କୁ ଯୁଦ୍ଧର ବିଭୀଷିକାରୁ ରକ୍ଷା କରିବା ଆମର ଏକ ନୈତିକ କର୍ତ୍ତବ୍ୟ । ଏହା ସହିତ ମୌଳିକ ମାନବିକ ଅଧିକାର ଓ ବ୍ୟକ୍ତି ମର୍ଯ୍ୟାଦାକୁ ଆମେ ସମ୍ମାନ କରିବା ଆବଶ୍ୟକ । ବିଶ୍ୱସ୍ତରରେ ନ୍ୟାୟ ପାଇଁ ଆନ୍ତର୍ଜାତିକ ଆଇନଦ୍ୱାରା ମଣିଷ ସମାଜ ପରିଚାଳିତ ହେବା ଦରକାର । ପ୍ରତ୍ୟେକ ରାଷ୍ଟ୍ରର ଜନଗଣ ଯେପରି ସାମାଜିକ ବିକାଶ ପ୍ରକ୍ରିୟାରେ ଉନ୍ନତ ଓ ଗୁଣାତ୍ମକ ଜୀବନର ଅଧିକାରୀ ହେବେ, ସେଥିପାଇଁ ଆନ୍ତର୍ଜାତିକ ସହଯୋଗ କ୍ଷେତ୍ରରେ ମିଳିତ ଜାତିସଙ୍ଘ ଆଲୋକ ବର୍ତ୍ତିକା ହୋଇ ରହିବ ।

॥ ୩୩୩ ॥

ମିଳିତ ଜାତିସଙ୍ଘର ପ୍ରତିଷ୍ଠା ପରେ ସାମ୍ରାଜ୍ୟବାଦୀ ଉପନିବେଶବାଦ ବିରୁଦ୍ଧରେ ବିଶ୍ୱସ୍ତରରେ ଆଲୋଡନ ଆସିଲା । ଯେଉଁ ଯେଉଁ ଦେଶ ସାମ୍ରାଜ୍ୟବାଦୀ ଉପନିବେଶବାଦରୁ ମୁକ୍ତ ହେବା ପାଇଁ ଜନ ଆନ୍ଦୋଳନ ଆରମ୍ଭ କରିଥିଲେ, ଧୀରେ ଧୀରେ ସେସବୁ ଦେଶ ରାଜନୈତିକ ସ୍ୱାଧୀନତା ହାସଲ କଲେ । ଏହା ସହିତ ମିଳିତ ଜାତିସଙ୍ଘ ନାନା ଜନହିତକର ଲକ୍ଷ୍ୟ, ମାନବିକ ଅଧିକାର, ସୁରକ୍ଷା ଓ କେତେକ ଜଟିଳ ସମସ୍ୟାର ସମାଧାନ ଲକ୍ଷ୍ୟରେ ନାନା କାର୍ଯ୍ୟକ୍ରମ ଗ୍ରହଣ କଲା । ବିଭିନ୍ନ ମାନବିକ ସମସ୍ୟା ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହେଲା, ପୃଥିବୀର ବହୁ ପ୍ରବୀଣ ବ୍ୟକ୍ତି ନାନା ଜଟିଳ ସମସ୍ୟାର ସମାଧାନ କ୍ଷେତ୍ରରେ ଦିଗ୍‌ଦର୍ଶନ ଦେଲେ । ଧୀରେ ଧୀରେ ବହୁ ଆନ୍ତର୍ଜାତିକ ସଂସ୍ଥା ଓ ସଙ୍ଗଠନମାନ ପୃଥିବୀରେ ମୁଣ୍ଡ ଟେକିଲା । ଏହି ପରିପ୍ରେକ୍ଷୀରେ ରାଜନୈତିକ ଓ ଅର୍ଥନୈତିକ ସହଯୋଗ କ୍ଷେତ୍ରରେ କେତେକ ପ୍ରମୁଖ ଆନ୍ତର୍ଜାତିକ ସଙ୍ଗଠନ ହେଲା ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନ, (ନନ-ଆଲାଇନଡ ମୁଭମେଣ୍ଟ), ନର୍ଥ ଆଟଲାଣ୍ଟିକ ଟ୍ରିଟି ଅର୍ଗାନାଇଜେସନ (ନାଟୋ), ଆରବ ଲିଗ୍, ଇଉରୋପିଆନ ୟୁନିୟନ, ଅର୍ଗାନାଇଜେସନ ଅଫ ଆଫ୍ରିକାନ ୟୁନିଟି, ସାଉଥ ଏସିଆନ ଆସୋସିଏସନ ଫର ରିଜିଓନାଲ କୋଅପରେସନ, କମନ ଓ୍ୱେଲଥ ଅଫ ଇଣ୍ଡିପେଣ୍ଡେଣ୍ଟ ନେସନ, ଗ୍ରୁପ ଅଫ ଏଇଟ ଇତ୍ୟାଦି । ଏହି ପ୍ରତ୍ୟେକ ସଙ୍ଗଠନ ଆନ୍ତର୍ଜାତିକ ସ୍ତରରେ ସହମତି ଭିତ୍ତିରେ ଜନକଲ୍ୟାଣକାରୀ କାର୍ଯ୍ୟମାନ କରିଆସୁଛି । ଏତଦ୍‌ବ୍ୟତୀତ ଅନ୍ତାରାଷ୍ଟ୍ରୀୟ ସମସ୍ୟା ସମାଧାନ ପାଇଁ ବା କେତେକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସାଧନ ପାଇଁ କେତେକ ରାଷ୍ଟ୍ର ସମ୍ମିଳିତ ଭାବେ ମଧ୍ୟ କାର୍ଯ୍ୟ କରୁଛନ୍ତି । ଏହା ଜରିଆରେ ରାଷ୍ଟ୍ରରାଷ୍ଟ୍ର ମଧ୍ୟରେ ରହିଥିବା ବିବାଦକୁ ସମାଧାନ କରିବା ସହ ଅନ୍ତାରାଷ୍ଟ୍ରୀୟ ବୁଝାମଣାର ପରିବେଶ ରହିଛି । ରାଜନୈତିକ ବା ଅର୍ଥନୈତିକ ସହଯୋଗ ପାଇଁ ଏହି ଅନ୍ତାରାଷ୍ଟ୍ରୀୟ ସଙ୍ଗଠନ ମାନଙ୍କୁ ବାଦ ଦେଲେ ସାଂସ୍କୃତିକ ଓ ସାମାଜିକ ସମନ୍ୱୟ କ୍ଷେତ୍ରରେ ମାନବିକ ଉତ୍କର୍ଷ ସାଧନ ପାଇଁ ବିଭିନ୍ନ ସଙ୍ଗଠନ ବି ଆନ୍ତର୍ଜାତିକ ସ୍ତରରେ କାର୍ଯ୍ୟ କରୁଛନ୍ତି । ମାନବିକ ଅଧିକାର ପାଇଁ 'ଆମ୍ନେଷ୍ଟି ଇଣ୍ଟରନେସନାଲ' ପ୍ରାକୃତିକ ପିପର୍ଯ୍ୟୟ ସମୟରେ ଜନଗଣଙ୍କୁ ସାହାଯ୍ୟ ଓ ସ୍ୱାସ୍ଥ୍ୟ ସେବାପାଇଁ 'ରେଡକ୍ରସ' ତଥା ଯୁବକ ଓ ଯୁବତୀ ମାନଙ୍କ ଭିତରେ ସେବା ମନୋଭାବ, ଚରିତ୍ର ଗଠନ ପାଇଁ 'ସ୍କାଉଟ ଏଣ୍ଡ ଗାଇଡ' ପରି ସଙ୍ଗଠନମାନ, ନିର୍ବିବାଦୀୟ ଆନ୍ତର୍ଜାତିକ ସଙ୍ଗଠନମାନ ସାରା ପୃଥିବୀରେ କାର୍ଯ୍ୟ କରୁଛନ୍ତି । ଏହି ସବୁ ସଙ୍ଗଠନମାନ ସାରା ପୃଥିବୀର ଜନଗଣଙ୍କ ଭିତରେ ଭ୍ରାତୃତ୍ୱଭାବ, ମାନବିକ ସମ୍ପ୍ରୀତି ଓ ସେବା ପରି ମୂଲ୍ୟବୋଧ ସୃଷ୍ଟି କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଛନ୍ତି । ଏହି ପ୍ରତ୍ୟେକଟି ସାମାଜିକ ଓ ସାଂସ୍କୃତିକ ସଂଗଠନର ଆଭିମୁଖ୍ୟ ଭିତରେ ଏକ ମାନବବାଦୀ ଜୀବନ-ଦର୍ଶନର ପ୍ରତିଫଳନ ଦେଖିବାକୁ ମିଳେ । ମଣିଷ ସମାଜରୁ ସକଳ ଶୋଷଣ, ଭେଦଭାବ ଦୂରକରି

ଭ୍ରାତୃତ୍ୱଭାବ, ମାନବିକ ମର୍ଯ୍ୟାଦା ଓ ସୁସ୍ଥ ଜୀବନକୁ ଏମାନେ ଗୁରୁତ୍ୱ ଦେଇଥାନ୍ତି। ସେହିପରି ଆନ୍ତର୍ଜାତିକ ସ୍ତରରେ ସନ୍ତ୍ରାସବାଦ, ସୀମାପାର ଆତଙ୍କବାଦ ବା ଅପରାଧକୁ ନିୟନ୍ତ୍ରଣ କରିବା ପାଇଁ 'ଇଣ୍ଟରପୋଲ' ସଙ୍ଗଠନ ପୃଥିବୀରେ ପ୍ରଥମ ବିଶ୍ୱଯୁଦ୍ଧ ପରଠାରୁ କାର୍ଯ୍ୟ କରୁଛି। ଆନ୍ତର୍ଜାତିକ ସ୍ତରରେ ଏହା ସବୁଠାରୁ ବଡ ପୁଲିସ ସଙ୍ଗଠନ ଯାହାର ଆଭିମୁଖ୍ୟ ହେଉଛି ରାଷ୍ଟ୍ର-ରାଷ୍ଟ୍ର ସହଯୋଗ ଦ୍ୱାରା ପୃଥିବୀରୁ ଅପରାଧମୂଳକ କାର୍ଯ୍ୟକୁ ଲୋପ ବା ନିୟନ୍ତ୍ରଣ କରିବା। ସେହିପରି ମିଳିତ ଜାତିସଙ୍ଘଂଦ୍ୱାରା ସ୍ଥାପିତ ଇଣ୍ଟରନେସନାଲ କୋର୍ଟ ଅଫ ଜଷ୍ଟିସ ଦେଶ-ଦେଶ ଭିତରର ବିବାଦର ନ୍ୟାୟପୂର୍ଣ୍ଣ ସମାଧାନ ପାଇଁ କାର୍ଯ୍ୟ କରିଆସୁଛି। ଏତଦ୍‌ବ୍ୟତୀତ ମିଳିତ ଜାତିସଙ୍ଘଂର ପରିଚାଳନା ଭିତରେ ବିଶ୍ୱ ସ୍ୱାସ୍ଥ୍ୟ ସଂଘ (ୱାର୍ଲଡ ହେଲଥ ଅର୍ଗାନାଇଜେସନ) ଶିକ୍ଷା, ବିଜ୍ଞାନ ଓ ସାଂସ୍କୃତିକ ସମନ୍ୱୟ ପାଇଁ ୟୁନେସ୍କୋ (ଇଉନାଇଟେଡ ନେସନସ ଏଜୁକେସନାଲ ସାଇଣ୍ଟିଫିକ ଏଣ୍ଡ କଲଚରାଲ ଅର୍ଗାନାଇଜେସନ) ପରି ଅନୁଷ୍ଠାନମାନ ଆନ୍ତର୍ଜାତିକ ସ୍ତରରେ ସ୍ୱାସ୍ଥ୍ୟସେବା, ଶିକ୍ଷାର ପ୍ରସାର, ବୈଜ୍ଞାନିକ ଗବେଷଣା ଓ ସାଂସ୍କୃତିକ ଏକତା ପାଇଁ ଉଲ୍ଲେଖନୀୟ କାର୍ଯ୍ୟ କରୁଛନ୍ତି। ସେହିପରି ବିସ୍ଥାପିତ ସମସ୍ୟା, ଶରଣାର୍ଥୀ ସମସ୍ୟା ପରି ସମସ୍ୟାମାନଙ୍କୁ ଦୂର କରିବା ପାଇଁ ଆନ୍ତର୍ଜାତିକ ସଙ୍ଗଠନମାନ ମିଳିତ ଜାତିସଙ୍ଘଂର ଛତା ତଳେ ବା ସ୍ୱତନ୍ତ୍ର ଭାବେ କାର୍ଯ୍ୟ କରୁଛନ୍ତି। ଶ୍ରମିକମାନଙ୍କ ସମସ୍ୟା ଦୂରୀକରଣ ପାଇଁ ଆନ୍ତର୍ଜାତିକ ଶ୍ରମିକ ସଙ୍ଗଠନ, ନାରୀମାନଙ୍କ ସମସ୍ୟା ସମାଧାନ ପାଇଁ ଆନ୍ତର୍ଜାତିକ ମହିଳା ସଙ୍ଗଠନମାନ ପୃଥିବୀରେ କାର୍ଯ୍ୟ କରୁଛି। ଶିଶୁମାନଙ୍କ ମଙ୍ଗଳ ଓ ସେମାନଙ୍କୁ ସୁନାଗରିକ କରିବାକୁ ବିଶ୍ୱସ୍ତରରେ ୟୁନିସେଫ (ଇୟୁନାଇଟେଡ ଚିଲଡ୍ରେନସ ଇମରଜେନ୍ସି ଫଣ୍ଡ) ପରି ସଂସ୍ଥାମାନ ରହିଛି। ଏତଦ୍‌ବ୍ୟତୀତ କେତେକ ନିର୍ଦ୍ଦିଷ୍ଟ ପରିସରରେ ସହଯୋଗ ଓ ମିଳିତ ଗବେଷଣା ପାଇଁ ବିଭିନ୍ନ ଆନ୍ତର୍ଜାତିକ ସଂସ୍ଥାମାନ କାର୍ଯ୍ୟ କରୁଛନ୍ତି। ଅର୍ଥନୈତିକ ସହଯୋଗ ଦ୍ୱାରା ଓ ବିଶ୍ୱ ବାଣିଜ୍ୟ ପାଇଁ ୱାର୍ଲଡ ବ୍ୟାଙ୍କ, ଇଣ୍ଟରନେସନାଲ ମନିଟାରି ଫଣ୍ଡ, ୱାର୍ଲଡ ଟ୍ରେଡ ଅର୍ଗାନାଇଜେସନ ପରି ବହୁ ଆନ୍ତର୍ଜାତିକ ସଙ୍ଗଠନମାନ ବିଶ୍ୱରେ ରହିଛି। ଏହିପରି ବିଚାରକଲେ ସାରା ପୃଥିବୀରେ ବହୁ ଆନ୍ତର୍ଜାତିକ ସଂସ୍ଥା, ସଙ୍ଗଠନ ବିଶ୍ୱସ୍ତରରେ ମାନବ ସମାଜରେ ଏକତା, ସହଯୋଗ, ପାରସ୍ପରିକ ଆଦାନ ପ୍ରଦାନ ପାଇଁ ବିଭିନ୍ନ ଲକ୍ଷ୍ୟ ନେଇ କାର୍ଯ୍ୟ କରୁଛନ୍ତି। ପରିଣାମତଃ ସାରା ପୃଥିବୀର ଜନଗଣଙ୍କ ମଧ୍ୟରେ ଭାଇ ଚାରା ସୃଷ୍ଟି ଦିଗରେ ଏ ସବୁର ନିଶ୍ଚୟ ଗୁରୁତ୍ୱ ରହିଛି।

ଏତଦ୍‌ବ୍ୟତୀତ ଯେଉଁ ଯେଉଁ କ୍ଷେତ୍ରରେ କୌଣସି ସଙ୍କଟ ପୃଥିବୀ ପାଇଁ ବା ଆଗାମୀ ବଂଶଧରମାନେ ସମ୍ମୁ ଖୀନ ହେବେ ବୋଲି ଚିନ୍ତା କରାଯାଉଛି ସେ ସବୁର

ସମାଧାନ ପାଇଁ ବିଶ୍ୱସ୍ତରରେ ଉଦ୍ୟମ ହେଉଛି । ବିଶେଷ କରି ପରିବେଶ ପ୍ରଦୂଷଣ ଜନିତ ସଙ୍କଟ, ଶକ୍ତି ସଙ୍କଟ, ଗ୍ଲୋବାଲ ୱାର୍ମିଂ, ଗ୍ରୀନ ହାଉସ ଏଫେକ୍ଟ ଜନସଂଖ୍ୟାର ଆଶାତୀତ ଅଭିବୃଦ୍ଧି ଇତ୍ୟାଦି ସମସ୍ୟା ଗୁଡିକୁ ଦୂର କରିବା ପାଇଁ ବିଶ୍ୱର ପ୍ରମୁଖ ବୁଦ୍ଧିଜୀବୀଗଣ ଗମ୍ଭୀର ସମ୍ପୃକ୍ତି ପ୍ରକାଶ କରୁଛନ୍ତି । ବିନା ଆନ୍ତର୍ଜାତିକ ସହଯୋଗରେ ଏସବୁ ସମସ୍ୟାର ଯେ ସମାଧାନ ସମ୍ଭବ ନୁହେଁ ଏହା ସମସ୍ତେ ଉପଲବ୍ଧି କରୁଛନ୍ତି । ଫଳତଃ ଦିନକୁ ଦିନ ଏ କ୍ଷେତ୍ରରେ ଗବେଷଣା ନେଇ ଆନ୍ତର୍ଜାତିକ ସହଯୋଗ ବୃଦ୍ଧି ପାଇବାରେ ଲାଗିଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଆଜି ଯେଉଁ ନୂଆ ପରିବେଶ ସୃଷ୍ଟି କରିଛି ତାହାଦ୍ୱାରା ସାରାପୃଥିବୀ ଏକ ବିଶ୍ୱଗ୍ରାମରେ ରୂପାନ୍ତରିତ ହୋଇଚାଲିଛି । ଗୋଟିଏ ପଟେ ବିଜ୍ଞାନ ଓ ପ୍ରଯୁକ୍ତିର ଅଭୂତପୂର୍ବ ବିକାଶ ଓ ଅନ୍ୟପଟେ ନାନା ଅନ୍ତାରାଷ୍ଟ୍ରୀୟ ସହଯୋଗର ବାତାବରଣ ଭିତରେ ଏକ ଆନ୍ତର୍ଜାତିକ ଚେତନାର କ୍ରମବର୍ଦ୍ଧିଷ୍ଣୁ ଅଭିବୃଦ୍ଧି ହୋଇଚାଲିଛି । ଏସବୁର ଯେ ମାନବଜାତିର ସାଂସ୍କୃତିକ ଉତ୍ତରଣ କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏହା ନିଃସନ୍ଦେହ ମନେହୁଏ ।

ବିଶ୍ୱ ମାନବିକତା ପ୍ରତିଷ୍ଠା କ୍ଷେତ୍ରରେ ଏସବୁ ସକାରାତ୍ମକ ପରିବେଶ ସତ୍ତ୍ୱେ ଆମ ସଂସାରରେ ବହୁ ବିଦ୍ୱେଷ, ଭେଦଭାବ, ଅସହିଷ୍ଣୁତା, ସାମ୍ପ୍ରଦାୟିକ ମନୋଭାବ ରହିଛି । କେତେକ ଭୌଗୋଳିକ ଭୂଖଣ୍ଡରେ ପଡୋଶୀ ରାଷ୍ଟ୍ରମାନଙ୍କ ଭିତରେ ସୀମା ବିବାଦ ଜନିତ ତିକ୍ତତା ରହିଛି । ଫଳତଃ ସେହି ରାଷ୍ଟ୍ର ସମୂହ ନିଜର ସାମରିକ ଶକ୍ତି ବୃଦ୍ଧି ପାଇଁ ପ୍ରୟାସ କରିବା ଭିତରେ ଜନମଙ୍ଗଳକାରୀ ଲକ୍ଷ୍ୟ ପଥରୁ ଦୂରେଇ ଯାଉଛନ୍ତି । ସେହିପରି ସାଂସ୍କୃତିକ ଭିନ୍ନତା ନେଇ ଜନଗୋଷ୍ଠୀମାନଙ୍କ ଭିତରେ ବିଦ୍ୱେଷର ମନୋଭାବ ରହିଛି । ବିଶେଷକରି ଧର୍ମ, ପରମ୍ପରାର ଗଭୀର ପ୍ରଭାବ ଥିବା ଜନଗୋଷ୍ଠୀ ଭିତରେ ଅନ୍ୟ ଧର୍ମ ଓ ସଂସ୍କୃତି ପ୍ରତି ଅନେକ ଅସହିଷ୍ଣୁ ଦୃଷ୍ଟିଭଙ୍ଗୀ ରହିଛି । ଧାର୍ମିକ ଆବେଗ ଓ ରକ୍ଷଣଶୀଳ ମାନସିକତା ଦ୍ୱାରା ପ୍ରଭାବିତ ବ୍ୟକ୍ତିମାନେ ସାମ୍ପ୍ରଦାୟିକ ଓ ମୌଳବାଦୀ ବିଦ୍ୱେଷକୁ ପ୍ରସାର କରିବା ଓ ମଣିଷ ମଣିଷ ଭିତରେ ଭେଦଭାବ ସୃଷ୍ଟି କରିବାର ପରିବେଶ ସୃଷ୍ଟି କରି ଚାଲିଛନ୍ତି । ଫଳତଃ ସାଂସ୍କୃତିକ ଭିନ୍ନତାକୁ ନେଇ ମାନବ ସମାଜରେ ରହିଥିବା ଅସହିଷ୍ଣୁତାକୁ ଦୂର କରିବା ସହଜ ହୋଇନାହିଁ । ଏପରିକି ଆଧୁନିକ ବିଜ୍ଞାନ ଓ ସଚେତନତା ମଣିଷକୁ ନିଜ ଧର୍ମ, ସଂସ୍କୃତି, ପରମ୍ପରା ନେଇ ଉଦାର ଓ ମାନବବାଦୀ କରିବା ପରିବର୍ତ୍ତେ ଅଧିକ ମୌଳବାଦୀ ଓ ଧର୍ମାନ୍ଧ କରିବା ଦୃଷ୍ଟିଗୋଚର ହୋଇଥାଏ । ଏହାଛଡା ବିକଶିତ ରାଷ୍ଟ୍ର ସମୂହ ନିଜର ଅତ୍ୟାଧୁନିକ ପ୍ରଯୁକ୍ତି ସାହାଯ୍ୟରେ ବିକାଶଶୀଳ ବା ଗରିବ ଦେଶମାନଙ୍କର ପ୍ରାକୃତିକ ସମ୍ବଳକୁ କରାୟତ୍ତ କରିବାକୁ ପ୍ରୟାସ କରିବା ନେଇ ଏକ ନୂଆ ସାମ୍ରାଜ୍ୟବାଦର

ପ୍ରସାର କରୁଛନ୍ତି ବୋଲି କେତେକ ଅଭିଯୋଗ ଆସିଥାଏ । ଅର୍ଥନୈତିକ ଶୋଷଣ, ଧନୀ-ଦରିଦ୍ର ଭେଦଭାବ ଜନିତ କାରଣରୁ ରାଷ୍ଟ୍ର-ରାଷ୍ଟ୍ର ମଧ୍ୟରେ ଓ ରାଷ୍ଟ୍ରର ଜନଗୋଷ୍ଠୀ ଭିତରେ ତିକ୍ତତାର ମନୋଭାବ ପରିଲକ୍ଷିତ ହୋଇଥାଏ । ଏସବୁ ଓ ଅନ୍ୟାନ୍ୟ ନାନା କାରଣରୁ ମଣିଷ ସମାଜ ଭିତରେ ଭେଦଭାବ, ଅସହିଷ୍ଣୁତା, ହିଂସା, ସନ୍ତ୍ରାସବାଦ ପରି ପରିବେଶ ରହିଛି । ଫଳତଃ ବହୁ ଆନ୍ତର୍ଜାତିକ ସଙ୍ଗଠନ, ସାର୍ବଜନୀନ ବୈଜ୍ଞାନିକ ଚିନ୍ତନ ଓ ସାଂସ୍କୃତିକ ସମନ୍ୱୟ ସତ୍ତ୍ୱେ ଆମ ସଂସାରରେ ବିଶ୍ୱ ଭ୍ରାତୃତ୍ୱର ପରିବେଶ ଆସି ପାରୁନାହିଁ । ତେବେ ମଣିଷ ସଭ୍ୟତାର ସୁଦୀର୍ଘ ଇତିହାସରେ ଗୋଟିଏ ଶତାବ୍ଦୀ ସେପରି ଏକ ଦୀର୍ଘ ସମୟ ନୁହେଁ କିନ୍ତୁ ବିଂଶ ଶତାବ୍ଦୀରେ ସାରା ପୃଥିବୀରେ ଯେତେ ସବୁ ଆନ୍ତର୍ଜାତିକ ସଙ୍ଗଠନମାନ ସୃଷ୍ଟି ହୋଇ ମାନବୀୟ ସମସ୍ୟା ସମାଧାନରେ ବ୍ରତୀ ହୋଇଛନ୍ତି ଏହାର ଭବିଷ୍ୟତ ପରିଣାମ ଯେ ଅନେକ ଶୁଭଙ୍କର ଏହା ମନେହୁଏ । ରାଷ୍ଟ୍ରସଂଘ, ବିଶ୍ୱ ସରକାର, ଧର୍ମୋତ୍ତର ମାନବସମାଜ, ବିଚାରଶୀଳ ଦୃଷ୍ଟି ଓ ବିଶ୍ୱଭ୍ରାତୃତ୍ୱ ହିଁ ଆଗାମୀ ଯୁଗର ଆଦର୍ଶ ହେବ ବୋଲି ଆଶା କରାଯାଏ ।

(୩.୭.୨୦୧୩)



# ଯୁଗଦୃଷ୍ଟି ଓ ଭବିଷ୍ୟ ନିର୍ମାଣ

ସଭ୍ୟତାର କ୍ରମବିକାଶର ଅନୁଶୀଳନରୁ ଏହା ଜଣାଯାଏ ଯେ ଗୋଟିଏ ଯୁଗର ବୌଦ୍ଧିକ ବିକାଶର ଭିତ୍ତି ଉପରେ ସାମାଜିକ ଚେତନାର ସ୍ତର ରୂପରେଖ ନେଇଥାଏ । ଗଣତାନ୍ତ୍ରିକ ବ୍ୟବସ୍ଥାର ଅଭ୍ୟୁଦୟ ପୂର୍ବରୁ ସାରା ପୃଥିବୀରେ ପ୍ରାୟତଃ ରାଜତନ୍ତ୍ର ଥିଲା । କୃଷିଭିତ୍ତିକ ସମାଜରେ ରାଜତନ୍ତ୍ର ରାଜନୈତିକ ସଂହତି ସୃଷ୍ଟି କରିଥିଲା । ରାଜତନ୍ତ୍ର ଯୁଗରେ ବ୍ୟକ୍ତି ସତ୍ତାର ମୂଲ୍ୟ ନ୍ୟୁନ ହୋଇ ରହିଥିଲା । ଶିକ୍ଷା ସମାଜର ସାମନ୍ତବର୍ଗ ପାଇଁ ଉଦ୍ଦିଷ୍ଟ ଥିଲା ଓ ସାଧାରଣ ମଣିଷ ଶିକ୍ଷା ପ୍ରାପ୍ତିରୁ ବଞ୍ଚିତ ଥିଲା, କାରଣ ଶିକ୍ଷାର ଦାୟିତ୍ୱ ରାଜ୍ୟ ବହନ କରୁନଥିଲା । ରାଜତନ୍ତ୍ର ଓ ସାମନ୍ତବାଦ ପରସ୍ପରର ସହୋଦର ଭାଇ ଭାବେ ପରସ୍ପରକୁ ସମର୍ଥନ କରୁଥିଲେ । ଏକ ଜାତିଭିତ୍ତିକ ଅନମନୀୟ ସମାଜରେ ସମାଜ ଭାଗ ଭାଗ ହୋଇ ରହିଥିଲା ଓ ପାରସ୍ପରିକ ଆଦାନ ପ୍ରଦାନ ଅତି ସୀମିତ ଥିଲା । ଏହି ପରିବେଶରେ ଧାର୍ମିକ ଦୃଷ୍ଟିଭଙ୍ଗୀ ଓ ପାରଲୌକିକି ବିଶ୍ୱାସ ନୀତି-ନୈତିକତାର ଆଧାର ହୋଇଥିଲା । ଧର୍ମଗ୍ରନ୍ଥର ବାଣୀକୁ ଅଭ୍ରାନ୍ତ ଓ ପ୍ରଶ୍ନାତୀତ ବୋଲି ସ୍ୱୀକାର କରାଯାଉଥିଲା । କାଳକ୍ରମେ ରାଜତନ୍ତ୍ର ଓ ସାମନ୍ତବାଦ ବିରୁଦ୍ଧରେ ବୌଦ୍ଧିକ ଚିନ୍ତାସ୍ତରରେ ଆଲୋଡନ ସୃଷ୍ଟିହେଲା । ଗଣତନ୍ତ୍ର ଓ ବ୍ୟକ୍ତିମୂଲ୍ୟ ଜନିତ ଭାବନା ଚିନ୍ତାରାଜ୍ୟରେ କିଛିଟା ଆଲୋଡନ ଆଣିଲା । ଧୀରେ ଧୀରେ ବିଜ୍ଞାନର ଯୁଗ ଆରମ୍ଭ ହେଲା । ପ୍ରକୃତିର ଗୂଢ଼ ରହସ୍ୟକୁ ବ୍ୟାଖ୍ୟା କରିବାକୁ ବିଜ୍ଞାନ ଏକ ସାର୍ବଜନୀନ ପ୍ରଣାଳୀର ବିକାଶ କରାଇଲା । ବିଜ୍ଞାନର ଦିଗନ୍ତ ଧୀରେ ଧୀରେ ବିସ୍ତାରିତ ହୋଇ ଚାଲିଲା । ବୈଜ୍ଞାନିକ ଜ୍ଞାନ ମୁକ୍ତ, ନିରପେକ୍ଷ, ପ୍ରଣାଳୀବଦ୍ଧ, ପରୀକ୍ଷାସାପେକ୍ଷ ହୋଇଥିବାରୁ ଏହାର ଏକ ସାର୍ବଜନୀନ ଆବେଦନ ରହିଲା । ଅବଶ୍ୟ ପ୍ରକୃତିର ଜଟିଳତା ଓ ବିଶାଳତା ପୃଷ୍ଠଭୂମିରେ ନୂତନ ତଥ୍ୟ ଓ ଜ୍ଞାନ ଆଧାରରେ ବୈଜ୍ଞାନିକ ସିଦ୍ଧାନ୍ତ କ୍ଷେତ୍ରରେ ପରିବର୍ତ୍ତନର ବି ସୂତ୍ରପାତ ହେଲା । ସୁତରାଂ ବୈଜ୍ଞାନିକ ଜ୍ଞାନ ଯେ ପ୍ରଗତିଶୀଳ ଓ ନୂତନ ସିଦ୍ଧାନ୍ତ ଆଧାରରେ ପରିବର୍ତ୍ତନ ସାପେକ୍ଷ ଏହା ସ୍ୱୀକୃତ ହେଲା । ବିଜ୍ଞାନ ଧୀରେ ଧୀରେ ଏକ ନୂଆ ଦୁନିଆ ଗଢ଼ିବାରେ ସହାୟକ ହେଲା ।

ରାଜନୈତିକ ଦୃଶ୍ୟପଟରୁ ବିଚାର କଲେ ଜଣାଯାଏ ଯେ ସାର୍ବଭୌମ ରାଷ୍ଟ୍ରର ପରିକଳ୍ପନା ଯେଉଁ ଯୁଗରେ ଦୃଢ଼ ଭିତ୍ତି ନେଇଥିଲା, ସେହି ସମୟରେ ଉପନିବେଶବାଦ ବି ସୃଷ୍ଟି ହୋଇଥିଲା । ଯେଉଁମାନେ ରାଜନୈତିକ ସ୍ତରରେ ସୁସଙ୍ଗଠିତ ଓ ସାମରିକ ଶକ୍ତିରେ ଅଧିକ ବଳଶାଳୀ ଥିଲେ ସେମାନେ ଅନ୍ୟ ଭୂଖଣ୍ଡର ଶାସନ ତନ୍ତ୍ରକୁ କବଳିତ କରିପାରୁଥିଲେ । ବିଜ୍ଞାନ ଓ ତଦାଶ୍ରୟୀ ପ୍ରଯୁକ୍ତି ଯୋଗୁଁ ଶିଳ୍ପ ବିପ୍ଳବର ଯୁଗ ଆସିଲା । ଆଧୁନିକ କଳ କାରଖାନା ଯୋଗୁଁ ଉତ୍ପାଦନ ବୃଦ୍ଧି ପାଇବାରେ ଲାଗିଲା । ଶିଳ୍ପ ବିପ୍ଳବ ଯୋଗୁଁ ଉପନିବେଶବାଦ ଓ ପୁଞ୍ଜିବାଦର ଅଭ୍ୟୁଦୟ ହେଲା । କୃଷିଭିତ୍ତିକ ସମାଜରେ ହସ୍ତଶିଳ୍ପ ଥିଲା, ଶିଳ୍ପ ବିପ୍ଳବ ଯୋଗୁଁ ହସ୍ତଶିଳ୍ପ ପରିବର୍ତ୍ତେ ଯନ୍ତ୍ରଶିଳ୍ପର ପ୍ରାଧାନ୍ୟ ଆସିଲା । ପରିଣାମତଃ ଅର୍ଥନୈତିକ ବ୍ୟବସ୍ଥାରେ ଚୂଳମୂଳ ପରିବର୍ତ୍ତନର ସୂତ୍ରପାତ ହେଲା । ଶିଳ୍ପ ବିପ୍ଳବ ଫଳରେ ପୁଞ୍ଜିବାଦର ଅଭ୍ୟୁଦୟଦ୍ୱାରା ଏକ ବିରାଟ ଶ୍ରମିକ ଶ୍ରେଣୀ ଉଦ୍ଭବ ହେଲା । ସାମନ୍ତବାଦୀ ବ୍ୟବସ୍ଥାରେ ସମାଜରେ ଯେପରି ପାର୍ଥକ୍ୟ ରହିଥିଲା ଓ ମୁଷ୍ଟିମେୟ ବ୍ୟକ୍ତି ଅଗଣିତ ମଣିଷଙ୍କୁ ନ୍ୟୂନ କରି ରଖିଥିଲେ, ପୁଞ୍ଜିବାଦୀ ବ୍ୟବସ୍ଥାରେ ଏହା ଏକ ଭିନ୍ନ ରୂପ ନେଲା । ସମାଜରେ ଏକ ବିରାଟ ଶ୍ରମିକ ଶ୍ରେଣୀ ପୁଞ୍ଜିବାଦୀ ବ୍ୟବସ୍ଥାରେ ଶୋଷିତ ହୋଇଚାଲିଲେ । କୃଷିଭିତ୍ତିକ ସମାଜରେ ରାଜତନ୍ତ୍ର ଓ ସାମନ୍ତବାଦ ଯେପରି ଏକ ବୈଷମ୍ୟପୂର୍ଣ୍ଣ ସମାଜର ଚିତ୍ର ଦେଇଥାଏ ସେହିପରି ଶିଳ୍ପବିପ୍ଳବ ପରବର୍ତ୍ତୀ ସମାଜ ଉପନିବେଶବାଦ ଓ ପୁଞ୍ଜିବାଦ ଭିତରେ ସେହି ବୈଷମ୍ୟକୁ ଏକ ଭିନ୍ନ ଭାବରେ ବ୍ୟକ୍ତ କରିଥାଏ । ଏହି ପରିବେଶରେ ସମାଜବାଦର ଭାବନା ଏକ ନୂତନ ଦିଗନ୍ତ ସୃଷ୍ଟି କରିଥିଲା । ସମାଜର ଅଗଣିତ ଶ୍ରମଜୀବୀ ଓ "ହାଭ-ନଟ୍" ମଣିଷଙ୍କ ଭିତରେ ଏକ ଶ୍ରେଣୀବିହୀନ ଓ ଶୋଷଣମୁକ୍ତ ସମାଜର ଭାବନା ବେଶ୍ କ୍ରାନ୍ତିକାରୀ ବିଚାର ଭାବରେ ଆସିଥିଲା । ସମାଜବାଦ ଉପନିବେଶବାଦ, ପୁଞ୍ଜିବାଦ, ସାମନ୍ତବାଦ ଓ ଏକଛତ୍ରବାଦକୁ କବର ଦେବ ଓ ତା ସ୍ଥାନରେ ଏକ ଶୋଷଣମୁକ୍ତ ସାମ୍ୟବାଦୀ ବ୍ୟବସ୍ଥା ଉଦ୍ଭବ ହେବ, ଏହି ବିଚାର ଯୁଗାନ୍ତକାରୀ ଥିଲା ।

ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଯୁଗରେ ରାଜନୈତିକ ଦୃଶ୍ୟପଟରେ ଗଣତନ୍ତ୍ର ଓ ସମାଜବାଦ ଦୁଇଟି ପ୍ରମୁଖ ଆଦର୍ଶ ଭାବରେ ଚିନ୍ତାରାଜ୍ୟରେ ପ୍ରଭାବ ବିସ୍ତାର କରି ରହିଥିଲା । ଗଣତାନ୍ତ୍ରିକ ବ୍ୟବସ୍ଥାରେ ବାକ୍ ସ୍ୱାଧୀନତା, ସମ୍ପତ୍ତିର ନିରାପତ୍ତା, ସାଧାରଣ ବ୍ୟକ୍ତିର ରାଜନୈତିକ ଅଧିକାର ପ୍ରାଧାନ୍ୟ ପାଇଥିବା ବେଳେ ସମାଜବାଦୀ ବ୍ୟବସ୍ଥାରେ ସମତା, ଦାରିଦ୍ର୍ୟ ଦୂରୀକରଣ, ସମୃଦ୍ଧି, ସବୁ ମଣିଷଙ୍କ ପାଇଁ ଜୀବନ ଧାରଣ ମାନରେ ଉଲ୍ଲେଖନୀୟ ଉନ୍ନତି ଗୁରୁତ୍ୱ ନେଇଥିଲା । ତେବେ ସାମ୍ୟବାଦୀ ଶାସନ ବ୍ୟବସ୍ଥାର ଅଗ୍ରଦୂତ ଥିବା

ସୋଭିଏଟ ଋଷିଆ ନାନା କ୍ଷେତ୍ରରେ ଉଲ୍ଲେଖନୀୟ ବିକାଶ ସାଧନ କରି ଏକ ପରାକ୍ରମୀ ରାଷ୍ଟ୍ରରେ ପରିଣତ ହୋଇଥିଲେ ମଧ୍ୟ ବିଂଶ ଶତାବ୍ଦୀର ଶେଷ ଦଶକରେ ତାର ବିଲୟ ଅନେକଙ୍କ ପାଇଁ ଆଶ୍ଚର୍ଯ୍ୟର ବିଷୟ ଥିଲା ।

ଋଷରେ ସାମ୍ୟବାଦର ବିଲୟ ପରେ ପୃଥିବୀରେ ଜଗତୀକରଣର ଏକ ନୂତନ ଆଲୋଡନ ଆସିଲା । କୁହାଗଲା ଜଗତୀକରଣ ଜନିତ ମୁକ୍ତ ବାଣିଜ୍ୟ, ଘରୋଇକରଣ ଓ ଉଦାରୀକରଣ ଦ୍ୱାରା ନୂତନ ପ୍ରଯୁକ୍ତି ଆଧାରରେ ଦାରିଦ୍ର୍ୟ ବିଲୋପ ସହ ସମୃଦ୍ଧି ସମ୍ଭବ ହେବ । ସାରା ପୃଥିବୀରେ ନୂତନ ଅର୍ଥନୀତି ଧାରାରେ ମୁକ୍ତ ବଜାର ସୃଷ୍ଟି ହୋଇ ସମୃଦ୍ଧ ଦେଶମାନଙ୍କର ପୁଞ୍ଜିଦ୍ୱାରା ବିକାଶଶୀଳ ଦେଶମାନଙ୍କରୁ ଦାରିଦ୍ର୍ୟ ଅଚିରେ ଦୂର ହୋଇଯିବ । ଫଳରେ ବିକଶିତ ରାଷ୍ଟ୍ରମାନଙ୍କର ସମୃଦ୍ଧି ବିକାଶଶୀଳ ଓ ଅନଗ୍ରସର ରାଷ୍ଟ୍ରମାନଙ୍କରେ ଉପଲବ୍ଧ ହେବ ଓ ଅନଗ୍ରସର ରାଷ୍ଟ୍ରର ଜନସାଧାରଣ ଯୁଗ ଯୁଗର ଦାରିଦ୍ର୍ୟରୁ ମୁକ୍ତ ହେବେ । ଯେଉଁ ଶିକ୍ଷା, ଚିକିତ୍ସା ଓ ସ୍ୱଚ୍ଛଳ ଜୀବନସ୍ତର ବିକଶିତ ରାଷ୍ଟ୍ରର ଜନଗଣ ପାଇ ପାରୁଛନ୍ତି ସେହି ସୁବିଧା ଓ ସୁଯୋଗ ଅନଗ୍ରସର ରାଷ୍ଟ୍ରମାନଙ୍କର ଜନସାଧାରଣ ମଧ୍ୟ ପାଇପାରିବେ । ସମାଜବାଦ, ସାମ୍ୟବାଦ ଭିତରେ ଜନମଙ୍ଗଳକାରୀ ଆଭିମୁଖ୍ୟର ଯେଉଁ ସ୍ୱପ୍ନ ରହିଥିଲା ତାହା ଉଦାରୀକରଣ, ଘରୋଇକରଣ ଓ ଜଗତୀକରଣ ଦ୍ୱାରା ଯେ ବାସ୍ତବ ହେବ, ଗୋଟିଏ ସମୟରେ ଏହି ପ୍ରକାର ବିଚାରକୁ ପ୍ରସାର କରାଯାଉଥିଲା । ଜଗତୀକରଣ ଓ ଆଧୁନିକ ଯନ୍ତ୍ର, ପ୍ରଯୁକ୍ତି ଦ୍ୱାରା ସବୁ ଦେଶ ଯେ ସମୃଦ୍ଧିର ଶିଖରକୁ ଯାଇ ପାରିବେ ଏହା ହିଁ ବିଂଶ ଶତାବ୍ଦୀର ଶେଷଆଡକୁ ବେଶ୍ ପ୍ରଚାର କରାଯାଉଥିଲା ।

ତେବେ ସାମ୍ପ୍ରତିକ ସ୍ଥିତିରେ କେଉଁ ଚିତ୍ର ମିଳୁଛି ? ବରଂ ଏକ ପ୍ରକାର ନୂଆ ସାମ୍ରାଜ୍ୟବାଦ ଏବେ ସାରା ପୃଥିବୀରେ ମୁଣ୍ଡ ଟେକିଛି । ଉପନିବେଶ ଯୁଗରେ ଯେଉଁ ସାମ୍ରାଜ୍ୟବାଦୀ ଶୋଷଣ ରହିଥିଲା, ଏକ ନୂତନ ଢ଼ଙ୍ଗରେ ଓ ନୂତନ କୌଶଳରେ ସେହି ସାମ୍ରାଜ୍ୟବାଦୀ ଶୋଷଣ ଏବେ ପୃଥିବୀର ବିକାଶଶୀଳ ଦେଶମାନଙ୍କୁ କବଳିତ କରୁନାହିଁ ତ ? ଅତ୍ୟାଧୁନିକ ସମୃଦ୍ଧି ଓ ଅତ୍ୟାଧୁନିକ ଯନ୍ତ୍ରଶିଳ୍ପ ଯେଉଁ ବୈଭବ ଆଣିଛି ତାହା ସମାଜର କେତେ ଲୋକଙ୍କ ପାଇଁ ଉପଲବ୍ଧ ହେଉଛି ? ଗୁଣାତ୍ମକ ଶିକ୍ଷାର ବିକାଶ ପାଇଁ ଯେଉଁ ନୂଆ ନୂଆ ବ୍ୟୟବହୁଳ ଶିକ୍ଷାନୁଷ୍ଠାନ ସ୍ଥାପିତ ହେଉଛି, ସେଥିରେ ସମାଜର କେଉଁ ବର୍ଗର ପିଲାମାନେ ଉପକୃତ ହେଉଛନ୍ତି ? ଗୋଟିଏ ସମୟରେ ସମାଜର ନିମ୍ନ ମଧ୍ୟବିତ୍ତ ଓ ଏପରିକି ଗରିବ, ଦଳିତ ଲୋକମାନେ ଶିକ୍ଷାପାଇଁ ଯେଉଁ ସ୍ୱପ୍ନ ଦେଖି ପାରୁଥିଲେ, ଏବେ ତାହା ସମାଜର ମଧ୍ୟବିତ୍ତ ଲୋକମାନଙ୍କ ପାଇଁ ବି ଅପହଞ୍ଚ ହେବାରେ ଲାଗିଛି । ସେହିପରି ଯେଉଁ ବ୍ୟୟବହୁଳ ଘରୋଇ ଚିକିତ୍ସାଳୟମାନ ସ୍ଥାପିତ ହେବାରେ ଲାଗିଛି, ସେଠାକୁ

ନିମ୍ନମଧ୍ୟବିତ୍ତ ଶ୍ରେଣୀର ମଣିଷ ଯାଇ ଚିକିତ୍ସିତ ହେବାର ସ୍ୱପ୍ନ ଦେଖିପାରିବ କି ? ସେହିପରି ଗୋଟିଏ ପଟେ ସାଧାରଣ ମଣିଷ ପାଖରେ ପାନୀୟ ଜଳ ଓ ପୁଷ୍ଟିକର ଖାଦ୍ୟର ଅଭାବ ରହିଥିବା ବେଳେ ଅନ୍ୟ ପଟରେ ଦେଶରେ କେତେ ବିଳାସ ସାମଗ୍ରୀ, ସୌଖୀନ ଗାଡିମଟରର ସୁଅ ଛୁଟୁଛି । ଏକ ଉପଭୋକ୍ତାବାଦୀ ସଂସ୍କୃତିକୁ ଯେପରି ସମାଜରେ ବ୍ୟାପକ ଭାବେ ପ୍ରସାର କରାଯାଉଛି, ସେଥିରେ ସାଧାରଣ ମଣିଷମାନଙ୍କ ଭିତରେ ହତାଶା ଓ ନୈରାଶ୍ୟବୋଧର ବିକାଶ ହେଉନାହିଁ ତ ? କର୍ପୋରେଟ ସଂସ୍କୃତି ଓ ବହୁରାଷ୍ଟ୍ରୀୟ କମ୍ପାନୀରେ ଯେଉଁ ଉଚ୍ଚ ବେତନଭୋଗୀ କର୍ମଚାରୀ ଗୋଷ୍ଠୀ ସୃଷ୍ଟି ହୋଇଛି ସେଥିରେ ଆର୍ଥିକ ବୈଷମ୍ୟର ଚିତ୍ରଟି ସ୍ପଷ୍ଟ ହୋଇଉଠୁଛି । ଗୋଟିଏ ଦେଶ ଭିତରେ ଏକ କ୍ଷୁଦ୍ର ନବସମୃଦ୍ଧ ଶ୍ରେଣୀ ସୃଷ୍ଟି ହେବାବେଳେ ଏକ ବୃହତ୍ତର ଅଂଶ ବେକାରୀ ସମସ୍ୟା ଭିତରେ ଜର୍ଜରିତ ହେଉଛନ୍ତି ।

ଦେଶରେ ଅଗଣିତ ମଣିଷ ଯେତେବେଳେ ସମୃଦ୍ଧିର ସୁଫଳରୁ ବଞ୍ଚିତ ହୁଅନ୍ତି, ସେମାନଙ୍କ ପାଖରେ ଅତୀନ୍ଦ୍ରିୟ ବିଶ୍ୱାସ, ଭାଗ୍ୟ, ପୂର୍ବ ନିର୍ଦ୍ଦିଷ୍ଟବାଦ ପରି ଭାବନାର ସୂତ୍ରପାତ ହୁଏ । କେଉଁ ଦିଅଁଙ୍କୁ ପୂଜା କଲେ, କେଉଁଠି ଜଳ ଢ଼ାଳିଲେ, କେଉଁଠି ନଡିଆ ବାଡେଇଲେ, କେଉଁ ମାହେନ୍ଦ୍ରବେଳାରେ ବୁଡ ପକାଇଲେ ଜୀବନର ଅଭିଳଷିତ ବସ୍ତୁ ଯେ ମିଳିବ ଏହି ଭାବନାରେ ସମାଜର ଅଗଣିତ ମଣିଷ ଆକ୍ରାନ୍ତ ହୁଅନ୍ତି । ଲୋକମାନଙ୍କର ଏହି ମାନସିକତାକୁ ପୁଞ୍ଜିବାଦୀ ନିୟନ୍ତ୍ରିତ ଗଣମାଧ୍ୟମ ଚମତ୍କାର ଭାବେ ଖୋରାକ ଯୋଗାଏ । ଆଧୁନିକ ଗଣମାଧ୍ୟମ ଧାର୍ମିକ ଆବେଗ, କୁସଂସ୍କାର, ପାରଲୌକିକ ସ୍ୱପ୍ନ ପ୍ରସାର କରିବାରେ ଭୂମିକା ନେବାଦ୍ୱାରା ଜୀବନର ବାସ୍ତବତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯୁବ ମାନସରେ ଅପାଂକ୍ତେୟ ହୋଇପଡେ । ଏହି ସ୍ଥିତିରେ ମୌଳବାଦୀ ଓ ସାମ୍ପ୍ରଦାୟିକ ଶକ୍ତି ହିଁ ସମାଜ ପାଇଁ ଆଦର୍ଶ ହୋଇଉଠନ୍ତି । ଗୋଟିଏ ପଟେ ଆଧୁନିକ ଜ୍ଞାନ ବିଜ୍ଞାନ ଓ ଆଉ ଗୋଟିଏ ପଟେ ସାମ୍ପ୍ରଦାୟିକତାବାଦ ଏକାଠି ବିସ୍ତାର ଲାଭ କରିବା ଏ ଯୁଗର ଏକ ବଡ ପ୍ରହେଳିକା ଅଟେ । ଏହି ପୃଷ୍ଠଭୂମିରେ ଯେଉଁମାନେ ସମାନତା ବିରୋଧୀ ଓ ଏକ ଭେଦଭାବର ସଂସ୍କୃତିରେ ବିଶ୍ୱାସ କରନ୍ତି ସେହିମାନେ ଜାତୀୟତାବାଦୀ ବୋଲି ବିଶ୍ୱାସ ସୃଷ୍ଟି କରନ୍ତି । ଜାତୀୟତାବାଦ ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ଭିତରେ ଯେ ପରିପୁଷ୍ଟ ହୋଇଥାଏ ବହୁ ଘଟଣାରେ ଇତିହାସ ଏହାର ମୂକସାକ୍ଷୀ ଅଟେ ।

ବିଡମ୍ବନାର ବିଷୟ କେଉଁ ବିଚାରବୋଧ ଓ ଆଦର୍ଶ ବା ଆଇଡିଓଲୋଜି ଆମ ସଂସାରକୁ ବୈଷମ୍ୟମୁକ୍ତ ଓ ଦାରିଦ୍ର୍ୟମୁକ୍ତ କରିପାରିବ ତାହାର ସ୍ପଷ୍ଟ ଚିତ୍ର ମିଳିପାରୁ ନାହିଁ । ସେହିପରି କେଉଁ ମୂଲ୍ୟବୋଧଦ୍ୱାରା ସମାଜରୁ ସାମୂହିକ ବ୍ୟାଧି, କୁସଂସ୍କାର

ଭେଦଭାବମୂଳକ ମାନସିକତା ଦୂର ହେବ ତାହା ବି ସ୍ପଷ୍ଟ ହୋଇପାରୁନାହିଁ । ଅତୀତରେ ବହୁ ଆଦର୍ଶ ଓ ୟୁଟୋପିଆ ମଣିଷକୁ କେତେ ସ୍ୱପ୍ନ ଦେଖାଇଛି । ସମାଜରୁ ରୋଗ, ଦାରିଦ୍ର୍ୟ, ଶୋଷଣ, ବୈଷମ୍ୟ, ଅନ୍ୟାୟ ଦୂର କରିବାକୁ ନାନା ଆଲୋଡନ ଆସିଛି, ତଥାପି ଏହା ସବୁ ଯୁଗରେ ରହିଛି ଓ ଆଜିର ଏକବିଂଶ ଶତାବ୍ଦୀରେ ବି ରହିଛି । ଏହି ପରିପ୍ରେକ୍ଷୀରେ ଯଦି କେଉଁ ଆଦର୍ଶ ମଣିଷ ପାଇଁ ଅଧିକ ଉପଯୋଗୀ ମନେହୁଏ, ସେଠାରେ ଦୁଇଟି ବିଚାରବୋଧ ଚିନ୍ତାସ୍ତରକୁ ଆସିଥାଏ । ଗୋଟିଏ ହେଲା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଜନିତ ବିଚାରଶୀଳତା ଓ ଅନ୍ୟଟି ସମ୍ବେଦନଶୀଳ ମାନବିକତା । ଏହାକୁ ଯୁଗଦୃଷ୍ଟି ଭାବେ ଗ୍ରହଣ କଲେ ସମ୍ଭବତଃ ଏକ ମାନବିକ, ନ୍ୟାୟଯୁକ୍ତ, ବୈଷମ୍ୟରହିତ ବିଶ୍ୱର କଳ୍ପନା କରାଯାଇପାରିବ । ଏହାର ସାର୍ବଜନୀନ ଗ୍ରହଣଶୀଳତା ଓ ପ୍ରୟୋଗ ଦ୍ୱାରା ଆମ ସଂସାରରୁ ବହୁ ମାନବୀୟ ସମସ୍ୟାର ଦୂରୀକରଣ କରାଯିବା ସମ୍ଭବ ହେବ ବୋଲି ଆଶା କରାଯାଏ । ଏକ ମହତ୍ତର ଓ ସୁନ୍ଦରତର ଭବିଷ୍ୟ ନିର୍ମାଣ କ୍ଷେତ୍ରରେ ଏହି ଯୁଗ ଦୃଷ୍ଟି ମହତ୍ତ୍ୱପୂର୍ଣ୍ଣ ଭୂମିକା ଯେ ନେଇପାରିବ ଏହା ଅନୁମାନ କରିବା ଯୁକ୍ତିସଙ୍ଗତ ମନେହୁଏ ।

(୧୬.୧୦.୨୦୧୩)



# ସାଂସ୍କୃତିକ ବିଭବ

ଗୋଟିଏ ଜନଗୋଷ୍ଠୀର ସାମାଜିକ ଜୀବନକୁ ନେଇ ସଂସ୍କୃତିର ଭାବନା ଆସିଥାଏ । ଜନଗୋଷ୍ଠୀଟି କ୍ଷୁଦ୍ର ହୋଇପାରେ ବୃହତ୍ତର ହୋଇପାରେ । ଏକ ଜନଗୋଷ୍ଠୀ ବା ଜନସମୁଦାୟର ମହତ୍ତର ଜୀବନବୋଧ ହିଁ ସେହି ଗୋଷ୍ଠୀର ସଂସ୍କୃତି । 'ମହତ୍ତର ଜୀବନବୋଧ' ସାଂସ୍କୃତିକ ବିଭବର ସ୍ୱାକ୍ଷର ବହନ କଲାବେଳେ, ଯେଉଁ ବିଚାରବୋଧ ମହତ୍ତର ଜୀବନବୋଧର ପରିପନ୍ଥୀ ତାହା 'ଅପସଂସ୍କୃତି' ବୋଲି ପ୍ରତୀତ ହୁଏ । ତେବେ ଗୋଟିଏ ଯୁଗରେ କେତେକ ବ୍ୟବସ୍ଥା ଓ ଜୀବନଶୈଳୀ ସେହି ଯୁଗର ବିଚାରବୋଧରେ ସାଂସ୍କୃତିକ ବିଭବର ପରିଚୟ ଦେଉଥିବା ବେଳେ ଅନ୍ୟ ସମୟର ବିଚାରବୋଧରେ ବା ପରିବର୍ତ୍ତିତ ପରିବେଶରେ ସେହି ବ୍ୟବସ୍ଥା ଅପସାଂସ୍କୃତିକ ମାନସିକତାର ପରିଚୟ ଦେଇଥାଏ ।

ସଂସ୍କୃତି ଓ ଅପସଂସ୍କୃତି ଭିତରେ ପ୍ରଭେଦ କରିବାର କିଛି ସାର୍ବଜୀନନ ମାନଦଣ୍ଡ ରହିଛି କି ? ଏହି ପ୍ରଶ୍ନଟି ବେଶ୍ ଜଟିଳ ଓ ଏହାର ସାଧାରଣ ଉତ୍ତର ଏତେ ସହଜସାଧ ନୁହେଁ । କାରଣ ଗୋଟିଏ ସମୟର ସାଂସ୍କୃତିକ ବିଭବ ଅନ୍ୟ ସମୟରେ ଅପସଂସ୍କୃତି ବା ସାଂସ୍କୃତିକ ବିକୃତିର ଭାବନା ଆଣିଥାଏ । ତେବେ ପ୍ରତ୍ୟେକ ସଂସ୍କୃତିର କିଛି ମହତ୍ତର ଦିଗ ରହିପାରେ ଓ କେତେକ ନକାରାତ୍ମକ ଦିଗ ବି ରହିପାରେ । ପୁନଶ୍ଚ ଗୋଟିଏ ଜନଗୋଷ୍ଠୀର ସାଂସ୍କୃତିକ ଜୀବନ ନାନା ଧାରା ଓ ପ୍ରବାହର ଏକ ସମ୍ମିଳିତ ଅଭିବ୍ୟକ୍ତି ମନେହୁଏ । ଜନଗୋଷ୍ଠୀର ଭାଷା, ସାହିତ୍ୟ, ଦର୍ଶନ, ଜୀବନଦୃଷ୍ଟି, ପରମ୍ପରା, ବୌଦ୍ଧିକ ବିକାଶ, ନାନ୍ଦନିକ ଅଭିବ୍ୟକ୍ତିର ସମ୍ମିଳିତ ଧାରା ସଂସ୍କୃତିର ପରିଚୟ ବହନ କରେ । ସେହିପରି ଏକ ଜନଗୋଷ୍ଠୀର ଉତ୍‌ଥାନ ପତନ ବା ବିକାଶର ଚିତ୍ର ଇତିହାସ ପୃଷ୍ଠାରୁ ଦେଖିବାକୁ ମିଳେ । ବିଭିନ୍ନ ଭୌଗୋଳିକ ଭୂ-ଖଣ୍ଡରେ ବିକଶିତ ହୋଇଥିବା ବହୁ ସଭ୍ୟତାରୁ ଯେଉଁ ସାସ୍କୃତିକ ବିଭବର ଚିତ୍ର ମିଳେ, ତାହାର ତୁଳନାତ୍ମକ ଅନୁଶୀଳନରୁ ସଂସ୍କୃତିର ଭଲ ମନ୍ଦ ଦିଗ ବିଷୟରେ କିଛି ଚିତ୍ର ମିଳିଥାଏ । ତେବେ ସାମଗ୍ରିକ ଭାବେ ସଭ୍ୟତାର ଯେପରି ବିକାଶ ହୋଇଛି ସେଥିରୁ ମଣିଷ ଜାତି ନାନା କ୍ରମବିକାଶର ପଥ ଦେଇ କିପରି

ଆଗକୁ ଯାଇଛି ତାହାର ପରିଚୟ ମିଳେ । ଗ୍ରାମୀଣ କୃଷିଭିତ୍ତିକ ସମାଜରୁ ରାଜତନ୍ତ୍ର, ସାମନ୍ତବାଦ, ଶିଳ୍ପ ବିପ୍ଳବ, ଉପନିବେଶବାଦ, ଗଣତାନ୍ତ୍ରିକ ବ୍ୟବସ୍ଥା, ସମାଜବାଦ ଭିତର ଦେଇ ବିଶ୍ୱସଂଘ ସ୍ତରକୁ ସଭ୍ୟତାର ବିକାଶ ପଛରେ ରହିଛି ଏକ ସୁଦୀର୍ଘ କାହାଣୀ । ଆଜିର ଜଗତୀକରଣ, ଅତ୍ୟାଧୁନିକ ପ୍ରଯୁକ୍ତି, ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ମାନବିକ ଅଧିକାରର ବିଶ୍ୱ ଘୋଷଣା ଇତ୍ୟାଦିର ବିକାଶ ବହୁ ବୌଦ୍ଧିକ ସ୍ତର ଦେଇ ବିକଶିତ ହୋଇଛି । ସେହିପରି ଏକଦା ପଥର, ନିଆଁ, ବର୍ଚ୍ଛା, ଧନୁ, ତୀର ଭିତରେ ନିଜର ସୁରକ୍ଷା କରୁଥିବା ମଣିଷ ଏବେ ଅତ୍ୟାଧୁନିକ ଆଣବିକ କ୍ଷେପଣାସ୍ତ୍ର, ଗଣ ବିଧ୍ୱଂସକାରୀ ଅସ୍ତ୍ର ନିର୍ମାଣ କରିବାକୁ ସମର୍ଥ ହୋଇଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଯୋଗୁ ମୋବାଇଲ ଫୋନ, କମ୍ପ୍ୟୁଟର, ସାଟେଲାଇଟ କମୁନିକେସନ, ଇଣ୍ଟରନେଟ, ଇମେଲ ଇତ୍ୟାଦିଦ୍ୱାରା ପୃଥିବୀର ଦୂରତା କମିଯିବାରେ ଲାଗିଛି । ଏସବୁ ଜୀବନଧାରାକୁ କେତେକ କ୍ଷେତ୍ରରେ ସରଳ ଓ ସରସ କରିବାରେ ସମର୍ଥ ହୋଇଛି । ତେବେ ସବୁ ଯୁଗରେ ମଣିଷ ସମାଜ ସହିତ କିଛି ସଙ୍କଟ ରହିଛି । ଆଧୁନିକ ଯୁଗରେ ଏହି ସଙ୍କଟ ଉତ୍କଟ ହେବାରେ ଲାଗିଛି । ସମ୍ପ୍ରତି ବର୍ଦ୍ଧିତ ଜନସଂଖ୍ୟାର ଚାପ, ପରିବେଶ ପ୍ରଦୂଷଣ, ତୃତୀୟ ବିଶ୍ୱର ରାଷ୍ଟ୍ର ମାନଙ୍କର ଦାରିଦ୍ର୍ୟ ଓ ନିରକ୍ଷରତା ଇତ୍ୟାଦି ସମସ୍ୟା ବିଶ୍ୱସ୍ତରରେ ଉତ୍କଟ ହେବାରେ ଲାଗିଛି ।

ତେବେ ପୃଥିବୀରେ ଯେଉଁଠି କିଛି ମହତ୍ତର ଜୀବନବୋଧ ନେଇ ବିଚାର ଆସିଛି, ମାନବିକତାର ବାଣୀ ଉଦ୍‌ଘୋଷିତ ହୋଇଛି ତାହାକୁ ମାନବୀୟ ସଂସ୍କୃତିର ବିଭବ ଭାବେ ସ୍ୱୀକାର କରିବା ଆବଶ୍ୟକ । ଅପରପକ୍ଷରେ ଯେଉଁ ଦୃଷ୍ଟିଭଙ୍ଗୀ ମଣିଷର ବିଚାରବୋଧକୁ ସଂକୀର୍ଣ୍ଣ କରେ, ଘୃଣା ଓ ଅସହିଷ୍ଣୁତାର ମାନସିକତା ଆଣେ, ମଣିଷ ମଣିଷ ଭିତରେ ଭେଦଭାବ ସୃଷ୍ଟିକରେ ତଥା ବିଚାରଶୀଳତା ଓ ସମ୍ବେଦନଶୀଳତା ପ୍ରତି ସ୍ପର୍ଶକାତରହୀନ ମାନସିକତା ସୃଷ୍ଟି କରେ ତାହା ଯେ ସାଂସ୍କୃତିକ ଅବକ୍ଷୟର ଚିତ୍ର ଦିଏ ଏହା କୁହାଯାଇପାରେ । ଯେଉଁ ବିଚାରବୋଧ, ଜୀବନ ଦୃଷ୍ଟି ଓ ପ୍ରଜ୍ଞା ବ୍ୟକ୍ତିକୁ ଏକ ବୃହତ୍ତର ସମୁଦାୟ ସହିତ ସମ୍ମିଳିତ କରେ ତାହା ହିଁ ମହତ୍ତର ଜୀବନର ସ୍ୱାକ୍ଷର ବହନ କରେ । ଯେଉଁ ସାଂସ୍କୃତିକ ଜୀବନ ପ୍ରବାହ ବ୍ୟକ୍ତି ଓ ଗୋଷ୍ଠୀକୁ ଅଧିକ ଗଣତାନ୍ତ୍ରିକ, ମାନବିକ ଓ ସାର୍ବଜନୀନ କରେ ତାହା ହିଁ ମହତ୍ତର ଜୀବନବୋଧର ପରିଚୟ ଦେଇଥାଏ । ଅପରପକ୍ଷରେ ଯେଉଁ ସାଂସ୍କୃତିକ ପ୍ରବାହ ସାମାଜିକ ସ୍ତରରେ ଭେଦଭାବର ପ୍ରାଚୀର ଆଣେ, ମାନବିକ ମୂଲ୍ୟ ଓ ମହତ୍ତ୍ୱକୁ ନ୍ୟୂନକରେ ତାହା ଯେ ଅପସାଂସ୍କୃତିକ ଭାବନାର ପରିଚୟ ଦିଏ ଏହା କୁହାଯାଇପାରେ ।

ଏହି ପୃଷ୍ଠଭୂମିରେ ଓ ସାମ୍ପ୍ରତିକ ଜୀବନ ପ୍ରବାହରେ ଯେଉଁ ସାଂସ୍କୃତିକ ମୂଲ୍ୟଗୁଡ଼ିକ ବ୍ୟକ୍ତି ଓ ଗୋଷ୍ଠୀର ନୈତିକ ଓ ବୌଦ୍ଧିକ ଉତ୍ତରଣ ସହ ଭୌତିକ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ପ୍ରେରଣା ସୃଷ୍ଟିକରେ ତାହାକୁ ଗ୍ରହଣ କରାଯିବା ଆବଶ୍ୟକ । ଏହା ସହିତ ମଣିଷ-ମଣିଷ

ଭିତରର ସମ୍ପର୍କକୁ ସମତାମୂଳକ କରିବାର ପ୍ରେରଣା ଏକ ଉନ୍ନତ ସଂସ୍କୃତିରୁ ମିଳୁଥିବା ଦରକାର । ସମାଜରେ ଯାହା କିଛି ଦୁଃଖ, ଦାରିଦ୍ର୍ୟ ଓ ବିଷମତା ରହିଛି ତାହା ହିଁ ମଣିଷଦ୍ୱାରା ସମାହିତ ହୋଇପାରିବ । ଜ୍ଞାନ-ବିଜ୍ଞାନର ବିକାଶକୁ ସମାଜର ହିତ ସାଧନରେ ବିନିଯୋଗ କରିବା ହିଁ ସାଂସ୍କୃତିକ ବିଭବ । ଅପରପକ୍ଷରେ ଯଦି ଏକ ସାଂସ୍କୃତିକ ପରିବେଶ ବ୍ୟକ୍ତି ଭିତରେ ପାରଲୌକିକ ଜୀବନଦୃଷ୍ଟି ଓ ତତ୍‌ସଂଲଗ୍ନ କର୍ମକାଣ୍ଡ ପ୍ରତି ଅହେତୁକ ଶ୍ରଦ୍ଧା ସୃଷ୍ଟିକରେ, ତେବେ ତାହା ସମାଜକୁ ଉନ୍ନତ କରେ ନାହିଁ । ସେହିପରି ଶ୍ରମବିହୀନ ଉପାର୍ଜନ ଓ ଯେକୌଣସି ପନ୍ଥାରେ ଜୀବନର ଶ୍ରେୟସାଧନ ପାଇଁ ପ୍ରୟାସ ଏକ କ୍ଷୟଶୀଳ ମାନସିକତାର ପରିଚୟ ଦେଇଥାଏ । ଏହା ସହିତ ଯେଉଁ ପରିବେଶ ଓ ମନୋଭାବ ବ୍ୟକ୍ତି ଓ ଗୋଷ୍ଠୀ ଭିତରେ ବିଚାରଶୀଳତାର ପ୍ରେରଣା ସୃଷ୍ଟି ନକରି ବିଶ୍ୱାସ ଓ କୁସଂସ୍କାରର ମନୋଭାବ ଉଦ୍ରେକ କରିବ, ତାହା ଉନ୍ନତ ସାଂସ୍କୃତିକ ଧାରାର ଚିତ୍ର ବହନ କରେନାହିଁ । ମୋଟ ଉପରେ ପାରଲୌକିକ ଜୀବନ ଦୃଷ୍ଟି, ଯେକୌଣସି ପନ୍ଥା ପ୍ରୟୋଗ କରି ସଫଳତା ବା ଶ୍ରେୟ ହାସଲ କରିବାର ମନୋଭାବ, ଶ୍ରମବିହୀନ ଉପାର୍ଜନ ପ୍ରତି ଅହେତୁକ ଶ୍ରଦ୍ଧା, ବିଚାରଶୀଳତା ପ୍ରତି ସ୍ପର୍ଶକାତରଶୂନ୍ୟ ମନୋଭାବ ଉନ୍ନତ ଜୀବନଦୃଷ୍ଟିର ସ୍ୱାକ୍ଷର ବହନ କରେନାହିଁ । ଅଧିକନ୍ତୁ ଯେଉଁ ସାଂସ୍କୃତିକ ଜୀବନବୋଧରେ ଏହି ସବୁ ଭାବନାର ପ୍ରାବଲ୍ୟ ଦେଖିବାକୁ ମିଳେ ତାହା ସାଂସ୍କୃତିକ ବିକୃତିର ଚିତ୍ର ବହନ କରେ ।

ସଂସ୍କୃତି ସହିତ ଧର୍ମ ଓ ଧାର୍ମିକ ପରମ୍ପରାର ଏକ ସୁଦୃଢ଼ ସମ୍ବନ୍ଧ ଥିବା ମନେହୁଏ । ଯେହେତୁ ସଭ୍ୟତାର ବିକାଶଧାରାରେ ଧର୍ମ ଏକ ପ୍ରମୁଖ ଭୂମିକା ନେଇଛି ଓ ଶହ ଶହ ବର୍ଷ ଧରି ଶିକ୍ଷା, ରାଜନୀତି, ନୀତିବୋଧ, ସାମାଜିକ ସଂହତି କ୍ଷେତ୍ରକୁ ଗଭୀର ପ୍ରଭାବିତ କରିଆସିଛି ସେ ଦୃଷ୍ଟିରୁ ଧର୍ମ ଓ ସଂସ୍କୃତି ଭିତରେ ଏକ ଦୃଢ଼ ଓ ଗୂଢ଼ ସମ୍ପର୍କ ରହିଛି । ତେବେ ଧର୍ମର ପରିସରଠାରୁ ସଂସ୍କୃତିର ପରିସରଟି ବହୁ ବ୍ୟାପକ ମନେହୁଏ । ଧର୍ମ ଅଧିକ ପାରଲୌକିକ ଓ ରହସ୍ୟମୟ ଭାବନା ସହ ସଂଶ୍ଳିଷ୍ଟ ଥିବା ବେଳେ ସଂସ୍କୃତି ବାସ୍ତବ ଜୀବନ ପ୍ରବାହର ବୌଦ୍ଧିକ, ନୈତିକ ଓ ନାନ୍ଦନିକ ଦିଗ ସହ ସମ୍ପୃକ୍ତ ହେବା ଦେଖାଯାଏ । ଯେଉଁ ଯୁଗରେ ଗୋଟିଏ ଗୋଷ୍ଠୀର ଧର୍ମ, ସଂସ୍କୃତି ନିର୍ଦ୍ଦିଷ୍ଟ ଭୌଗୋଳିକ ଭୂଖଣ୍ଡରେ ସୀମିତ ରହିଥିଲା, ସେ ସମୟରେ ଧର୍ମ-ଧର୍ମ ଭିତରେ ବା ସଂସ୍କୃତି-ସଂସ୍କୃତି ଭିତରେ ଆଦାନ ପ୍ରଦାନର ପରିବେଶ ଆସି ନଥିଲା । ପରନ୍ତୁ ବିଜ୍ଞାନର ଯୁଗ ଆସିବା ପରେ ଯେଉଁ ଉପନିବେଶୀୟ ଯୁଗର ପରିବେଶ ଆସିଲା, ସେଥିରେ ସଂସ୍କୃତି-ସଂସ୍କୃତି ଓ ଧର୍ମ-ଧର୍ମ ଭିତରେ ଆଦାନ ପ୍ରଦାନର ପରିବେଶ ଅଧିକ ଦୃଢ଼ ଭିତ୍ତି ନେଲା । ସାଂସ୍କୃତିକ ଆଦାନ ପ୍ରଦାନରୁ ପ୍ରତ୍ୟେକ ସାଂସ୍କୃତିକ ପରିବେଶ ଅଧିକ ମାନବିକ ହେବା ନେଇ ଏକ ବାୟୁମଣ୍ଡଳ ସୃଷ୍ଟି ହେଲା । ଗୋଟିଏ ସଂସ୍କୃତିର ମହତ୍ତର ଜୀବନବୋଧ ଅନ୍ୟ ସାଂସ୍କୃତିକ ଜୀବନଧାରାକୁ ପ୍ରଭାବିତ କଲା । ପରିଣାମତଃ ସାଂସ୍କୃତିକ ବିଚାରବୋଧରେ ବୁଦ୍ଧିବାଦୀ ଓ ମାନବଧର୍ମୀ ଚେତନା ଅଧିକ ପ୍ରତିଫଳିତ ହେବାକୁ ଲାଗିଲା । ସେହି ବୁଦ୍ଧିବାଦୀ ଓ

ମାନବବାଦୀ ଭାବନା କାଳକ୍ରମେ ଏକ ଆନ୍ତର୍ଜାତିକ ତଥା ସାର୍ବଜନୀନ ସ୍ୱୀକୃତି ଲାଭ କରିବାକୁ ଲାଗିଲା । ସାଂସ୍କୃତିକ ସମନ୍ୱୟ ଭାବନା ବିଶ୍ୱସଙ୍ଘ ମଧ୍ୟଦେଇ ଅଧିକ ପୁଷ୍ଟ ହେବାରେ ଲାଗିବା ମାନବିକ ମହନୀୟତାର ସ୍ୱାକ୍ଷର ବହନ କରିବା କୁହାଯାଇପାରେ ।

କିନ୍ତୁ ଧର୍ମଚେତନା କ୍ଷେତ୍ରରେ କେତେକ ବିଚାର ରହିଛି ଯେ ପ୍ରତ୍ୟେକ ଧର୍ମ ଚିରନ୍ତନ ଓ ମୁକ୍ତିପାଇଁ ଏକମାତ୍ର ଈଶ୍ୱରଦତ୍ତ ପନ୍ଥା । ସୁତରାଂ ଧର୍ମକୁ ନେଇ ବହୁ ଆବେଗ, ଏପରିକି ବିଦ୍ୱେଷ ଧର୍ମଗୋଷ୍ଠୀ ଭିତରେ ସୃଷ୍ଟି ହୋଇଛି । ଫଳତଃ ଧାର୍ମିକ ଆବେଗକୁ ନେଇ କଟ୍ଟରପନ୍ଥୀ ରକ୍ଷଣଶୀଳ ବ୍ୟକ୍ତି ସୃଷ୍ଟି ହୋଇଛନ୍ତି ଓ ଜନମାନସକୁ ପ୍ରଭାବିତ କରିପାରୁଛନ୍ତି । ଗୋଟିଏ ଧର୍ମଗୋଷ୍ଠୀର ଅବଚେତନରେ ଅନ୍ୟ ଧର୍ମ ପ୍ରତି ବିଦ୍ୱେଷ ନିହିତ ରହିଛି । ସେହି ମାନସିକତାରୁ ସାମ୍ପ୍ରଦାୟିକ ରାଜନୀତିର ବି ଉଦ୍ଭବ ହୋଇଛି । ଏପରିକି ଏକ ରକ୍ଷଣଶୀଳ ସାମାଜିକ ପରିବେଶରେ ସାମ୍ପ୍ରଦାୟିକ ରାଜନୀତି ଆଧାରରେ ଜନମାନସକୁ ପ୍ରଭାବିତ କରିବା ସହଜସାଧ୍ୟ ହୋଇପାରୁଛି ।

କିନ୍ତୁ ସାମ୍ପ୍ରଦାୟିକ ମାନସିକତା ଏକ ଅପସାଂସ୍କୃତିକ ଭାବନାର ପ୍ରତୀକ ହେବାବେଳେ ଧର୍ମନିରପେକ୍ଷତା ଏକ ସଭ୍ୟ ଜୀବନ ଦୃଷ୍ଟିର ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଧର୍ମନିରପେକ୍ଷତା ମାନବବାଦୀ ଓ ବୈଜ୍ଞାନିକ ବିଚାରବୋଧରୁ ଉତ୍ପନ୍ନ ଏକ ସାଂସ୍କୃତିକ ଭାବନା । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ମାନବବାଦ ଓ ଧର୍ମନିରପେକ୍ଷତା ଏକ ଉଦାରବାଦୀ, ସହନଶୀଳ ସଂସ୍କୃତିର ପ୍ରତୀକ, ଅଥଚ ସାମ୍ପ୍ରଦାୟିକତା ଧାର୍ମିକ ଅସହିଷ୍ଣୁତା, ବିଦ୍ୱେଷ ଓ ନାନା ରକ୍ଷଣଶୀଳ ମାନସିକତା ସହ ସଂଶ୍ଳିଷ୍ଟ ହେବା ଦେଖାଯାଏ ।

ତେବେ ବିଭିନ୍ନ ସଂସ୍କୃତି ଭିତରେ ଏପରି କିଛି ଉପାଦାନ ରହିଛି ଯାହା ମାନବବାଦ ଓ ଧର୍ମନିରପେକ୍ଷତାକୁ ପରିପୁଷ୍ଟ କରିଥାଏ । ସେହି ସଂସ୍କୃତିର ବିକାଶଦ୍ୱାରା ସାରା ବିଶ୍ୱରେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ବିଶ୍ୱ ଭ୍ରାତୃତ୍ୱବୋଧ ଓ ସମ୍ବେଦନଶୀଳ ଜୀବନଦୃଷ୍ଟିର ବିକାଶ ହୋଇପାରିବ । ଏହା ସହିତ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ସାରା ବିଶ୍ୱକୁ ଗୋଟିଏ ପରିବାର କରିବାର ପରିବେଶ ସୃଷ୍ଟି କରିପାରିଛି । ନାନା ଆନ୍ତର୍ଜାତିକ ସଙ୍ଗଠନମାନ ଜାତି, ଜାତୀୟତା, ଧର୍ମ, ଭାଷା ନିର୍ବିଶେଷରେ ସବୁ ମଣିଷଙ୍କର ଉନ୍ନତି ପାଇଁ ଭାବଗତ ସମ୍ବନ୍ଧ ସୃଷ୍ଟି କରିପାରିଛି । ଯେ କୌଣସି ମାନବୀୟ ବା ଆଞ୍ଚଳିକ ସମସ୍ୟା ବିଶ୍ୱ ଦରବାରରେ ଆଲୋଚିତ ହୋଇ ବିଶ୍ୱର ଦୃଷ୍ଟି ଆକର୍ଷଣ କରୁଛି । ମଣିଷ ଜାତିକୁ ଭ୍ରାତୃତ୍ୱର ବନ୍ଧନରେ ଯୋଡିବାକୁ ବିଜ୍ଞାନ, ହେତୁବାଦ ଓ ମାନବବାଦ ପ୍ରୟାସ କରିବା ସଭ୍ୟତାର ବିକାଶଧାରାରେ ଏକ ବଡ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ ।

(୬.୧୧.୨୦୧୩)



# କୋଟି ଜନତାର ଯୁଗ

ବିଂଶ ଶତାବ୍ଦୀକୁ କୁହାଯାଏ 'କୋଟି ଜନତାର ଯୁଗ' ।୧୯୦୦ ମସିହା ପରେ ସଭ୍ୟତାର ଜୟଯାତ୍ରା ଏତେ ଦ୍ରୁତ ଗତିରେ ଆଗେଇଲା ଯେ ଗୋଟିଏ ଶତାବ୍ଦୀ ଭିତରେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନ ମାନ ପରିଲକ୍ଷିତ ହେଲା । ଊନବିଂଶ ଶତାବ୍ଦୀ ବେଳକୁ ପୃଥିବୀର ସମସ୍ତ ଅଞ୍ଚଳକୁ ଜାଣିବା ସମ୍ଭବ ହୋଇଯାଇଥିଲା । ସବୁ ସାଗର ଓ ମହାସାଗରରେ ଜାହାଜ ନେଇ ପୃଥିବୀର ବିଭିନ୍ନ ଅଞ୍ଚଳ ଓ ଜନସମୂହ ବିଷୟରେ ୟୁରୋପୀୟ ମାନେ ଧାରଣା କରି ସାରିଥିଲେ । ବିଶେଷକରି କେତେକ ଦେଶର ନୌବାହିନୀ ଉନ୍ନତ ହୋଇଥିବା ହେତୁ ସେମାନେ ସବୁ ଅଞ୍ଚଳ ଉପରେ ନିଜର ଅଧିପତ୍ୟ ବିସ୍ତାର କରି ପାରିଥିଲେ । ଏ କ୍ଷେତ୍ରରେ ଇଂରେଜମାନେ ସବୁଠାରୁ ଆଗରେ ଥିଲେ । ୟୁରୋପର କିଛି ଜ୍ଞାନପିପାସୁ ବ୍ୟକ୍ତି ପୃଥିବୀର ବିଭିନ୍ନ ସଭ୍ୟତା, ସଂସ୍କୃତି, ଧର୍ମଧାରା, ସାହିତ୍ୟ ଇତ୍ୟାଦିକୁ ଅନୁଶୀଳନ କରି ସେଥିରେ ଥିବା ଭାବନାରାଜି, ମହତ୍ତର ମୂଲ୍ୟବୋଧ ଇତ୍ୟାଦିକୁ ୟୁରୋପରେ ପ୍ରସାର କରିବା ଫଳରେ ଦୃଷ୍ଟିଭଙ୍ଗୀରେ ଧୀରେ ଧୀରେ ପରିବର୍ତ୍ତନ ଆସିଲା । ବିଶ୍ୱବଦ୍ୟାଳୟ ଶିକ୍ଷାର ପ୍ରସାର ପରେ ଓ ପାଶ୍ଚାତ୍ୟ ଶିକ୍ଷାର ଭାବ ଯୋଗୁ ପୃଥିବୀର ଯେଉଁ ଅଞ୍ଚଳ ମୃତବତ୍ ପଡି ରହିଥିଲେ ସେଠାରେ ଜାଗରଣ ଦେଖାଦେଲା । ସାମ୍ରାଜ୍ୟବାଦୀ ଶୋଷଣରୁ ମୁକ୍ତ ହେବା ପାଇଁ ପରାଧୀନ ଦେଶମାନଙ୍କରେ ଆନ୍ଦୋଳନ ସଂଘଟିତ ହେବାକୁ ଲାଗିଲା । ଏହି ବିଂଶ ଶତାବ୍ଦୀରେ କେତେକ ଚମକପ୍ରଦ ଉଦ୍ଭାବନ ଓ ଆବିଷ୍କାର ସଭ୍ୟତାକୁ ନୂଆ ମୋଡ ଦେବାରେ ସହାୟକ ହେଲା ।

ବିଂଶ ଶତାବ୍ଦୀ ଆରମ୍ଭରୁ ସିନେମା ଓ ଚଳଚିତ୍ରର ଯୁଗ ଆରମ୍ଭ ହେଲା । ଗତିଶୀଳ ଛବି ଓ କଥାର ରେକର୍ଡିଂ କରି ପ୍ରସାରଣ ଜନିତ ଏହି ପ୍ରଯୁକ୍ତି ସିନେମାର ପ୍ରସାରରେ ସହାୟକ ହେଲା । ବିଂଶ ଶତାବ୍ଦୀ ଆରମ୍ଭରେ ରେଡିଓର ଉଦ୍ଭାବନ ସଭ୍ୟତାର ବିକାଶରେ ଥିଲା ଯୁଗାନ୍ତକାରୀ । ତେବେ ପ୍ରଥମ ବିଶ୍ୱଯୁଦ୍ଧ ପରେ ରେଡିଓର ପ୍ରଚଳନ ଆରମ୍ଭ ହେଲା । ୧୯୨୭ରେ ଇଂଲଣ୍ଡରେ ବ୍ରିଟିଶ ବ୍ରଡକାଷ୍ଟିଂ ସେଣ୍ଟର ବା ବିବିସିର ପ୍ରତିଷ୍ଠା ପରେ ପୃଥିବୀର

ଅନ୍ୟାନ୍ୟ ଦେଶମାନଙ୍କରେ ବେତାର କେନ୍ଦ୍ର ମାନ ସ୍ଥାପିତ ହେଲା । ରେଡିଓ ଓ ସିନେମାର ପ୍ରସାର ଯୋଗୁ ଜ୍ଞାନର ସାମାଜିକୀକରଣ ସମ୍ଭବ ହେଲା । ଊନବିଂଶ ଶତାବ୍ଦୀରୁ ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିସ୍ଥିତି ଆସିଥିଲେ ବି ଉଚ୍ଚଶିକ୍ଷା କେବଳ ଉଚ୍ଚ ବର୍ଗ ବା ସମ୍ଭ୍ରାନ୍ତଶ୍ରେଣୀ ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ରେଡିଓ ଓ ସିନେମାର ପ୍ରସାର ଜନମାନସରେ ସାମାଜିକ ସଚେତନତାର ସ୍ତରକୁ ଉନ୍ନତ କରିପାରିଲା । ବିଂଶଶତାବ୍ଦୀ ଆରମ୍ଭ ବେଳକୁ ସାଇକେଲ, ଟାଇପ୍‌ରାଇଟର ଓ ସିଲେଇ ମେସିନର ବହୁଳ ବ୍ୟବହାର ହୋଇ ସାରିଥିଲା । କିନ୍ତୁ ମଟର କାର କ୍ରୟ କରିବା ମଧ୍ୟବିତ୍ତ ପରିବାରର କଳ୍ପନା ବାହାର ଥିଲା । ତେବେ ହେନେରୀ ଫୋର୍ଡ ସୁଲଭ ମୂଲ୍ୟରେ କାର ନିର୍ମାଣ କରିବାର ପ୍ରଯୁକ୍ତି ଦେଇ ଏହାର ପ୍ରସାରକୁ ବ୍ୟାପକ କରିପାରିଲେ । ବିଂଶ ଶତାବ୍ଦୀ ଆରମ୍ଭରେ ଉଡାଜାହାଜ ନିର୍ମାଣର କୌଶଳ ୱିଲବର ରାଇଟ୍ ଓ ତାଙ୍କ ଭାଇ ଅର୍ଭିଲ ରାଇଟ୍ ବାହାର କଲେ । ଏସବୁ ମାନବ ସଭ୍ୟତାର ବିକାଶରେ ବହୁତ ବଡ ସଫଳତା କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଂଶ ଶତାବ୍ଦୀ ଆରମ୍ଭରେ ରେଡିୟମର ଆବିଷ୍କାର ମଧ୍ୟ ଥିଲା ଏକ ଯୁଗାନ୍ତକାରୀ ଘଟଣା । ମେରୀ କ୍ୟୁରି ଓ ତାଙ୍କର ସ୍ୱାମୀ ପେରିକ୍ୟୁରି ଅଣୁକୁ ଯେ ବିଭାଜିତ କରିହେବ ଏହି ଭାବନା ଦେଲେ । ଆଟମକୁ ବିଭାଜିତ କରିବାର ରହସ୍ୟ ଉନ୍ମୋଚିତ ହେବା ପରେ 'ଏକ୍ସରେ' ବାହାରିଲା । ଏହି କିରଣ ଅଦେଖା ବା ଅଦୃଶ୍ୟ ଇଲାକାକୁ ଦେଖାଇବାରେ ସହାୟକ ହେଲା । ଚିକିତ୍ସା ବିଜ୍ଞାନର ଦିଗନ୍ତ ଏହାଦ୍ୱାରା ବିସ୍ତାରିତ ହୋଇ ଚାଲିଲା । ପୂର୍ବରୁ ଏକ ଭାବନା ଥିଲା ଯେ ମୌଳିକ ବସ୍ତୁ ଓ ଶକ୍ତି ପ୍ରକୃତିର ମୂଳ ଉତ୍ସ । ବିଶ୍ୱରେ ଯାହା କିଛି ଅଛି ତାର ମୂଳାଧାର ହେଉଛି କେତୋଟି ମୌଳିକ ପଦାର୍ଥ ଓ ଶକ୍ତି । କିନ୍ତୁ ଆଇନ୍‌ଷ୍ଟାଇନ୍ ବିଚାର ଦେଲେ ଯେ ବସ୍ତୁ ଓ ଶକ୍ତି ପରସ୍ପରଠାରୁ ଭିନ୍ନ କିମ୍ବା ପୃଥକ୍ ନୁହନ୍ତି । ବସ୍ତୁ ଭିତରେ ଅଫୁରନ୍ତ ଶକ୍ତି ରହିଛି । ପୃଥିବୀର ଶକ୍ତି ସଂକଟ ଦୂରକରିବା କ୍ଷେତ୍ରରେ ଏହି ଜ୍ଞାନ ଓ ନୂତନ ପ୍ରଯୁକ୍ତି ଯେ ସଭ୍ୟତାର ବିକାଶରେ ଏକ ବଡ ସଫଳତା ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଟେଲିଭିଜନର ଯୁଗ ଆସିଲା । ଗଣମାଧ୍ୟମ ଶକ୍ତିଶାଳୀ ହେବାକୁ ଲାଗିଲା ଓ ସମାଜର ସବୁ ବର୍ଗର ଲୋକଙ୍କ ପାଖକୁ ଜ୍ଞାନବିଜ୍ଞାନର ବାର୍ତ୍ତା ଓ ମନୋରଂଜନର ପରିବେଶ ଯାଇପାରିଲା ।

କେତେକ ରାଷ୍ଟ୍ରରେ ସମାଜବାଦୀ ଆନ୍ଦୋଳନ ଏକ ନୂତନ ରାଜନୈତିକ ସଂସ୍କୃତିକୁ ଜନ୍ମ ଦେଲା । ସାମନ୍ତବାଦ, ସାମ୍ରାଜ୍ୟବାଦ ଓ ପୁଂଜିବାଦ ବିରୁଦ୍ଧରେ ସ୍ୱର ଉଠିଲା । ୟୁରୋପରେ ଶିଳ୍ପ ବିପ୍ଳବ ପରବର୍ତ୍ତୀ ଯୁଗରେ ପୁଂଜିବାଦର ଯେଉଁ ଧାରା ସୃଷ୍ଟି ହୋଇଥିଲା ସେଥିରେ ଶ୍ରମିକ ଶ୍ରେଣୀ ସୃଷ୍ଟି ହୋଇଗଲା । ପୁଂଜିବାଦ ମଣିଷକୁ ଯନ୍ତ୍ରରେ

ପରିଣତ କରିବା ସହ ଶ୍ରମିକ ଶ୍ରେଣୀ ନାନା ଶୋଷଣ ଓ ଅନ୍ୟାୟର ଶିକାର ହେବାକୁ ଲାଗିଲା । ଏହି ସ୍ଥିତିରେ ଏକ ଶ୍ରେଣୀହୀନ, ଶୋଷଣମୁକ୍ତ ସମାଜ ପାଇଁ କାର୍ଲ ମାର୍କ୍ସଙ୍କ ବୈପ୍ଳବିକ ଚିନ୍ତନକୁ ନେଇ କେତେକ ରାଷ୍ଟ୍ରରେ ସାମ୍ୟବାଦୀ ଆନ୍ଦୋଳନର ସୂତ୍ରପାତ ହେଲା । ପୃଥିବୀର ବିଭିନ୍ନ ଦେଶରେ ସଂଘବଦ୍ଧ ଶ୍ରମିକ ଶ୍ରେଣୀର ପ୍ରୟାସରେ ପୁଂଜିବାଦ ପରିବର୍ତ୍ତେ ଏକ ବିକଳ୍ପ ରାଜନୈତିକ ଓ ଅର୍ଥନୈତିକ ବ୍ୟବସ୍ଥା ଉଦ୍ଭବ ହେଲା । ତେବେ ଯେକୌଣସି ରାଜନୈତିକ ବ୍ୟବସ୍ଥାକୁ ରାଷ୍ଟ୍ର ଗ୍ରହଣ କରୁ ନା କାହିଁକି, ଜନମଙ୍ଗଳକାରୀ ଯୋଜନା ରାଷ୍ଟ୍ରର ଆଭିମୁଖ୍ୟ ହେବାକୁ ଲାଗିଲା ।

ବିଂଶ ଶତାବ୍ଦୀରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ସଭ୍ୟତାର ଇତିହାସରେ ଥିଲା ଏକ କଳଙ୍କମୟ ଘଟଣା । ପ୍ରତ୍ୟେକଟି ବିଶ୍ୱଯୁଦ୍ଧରେ ପାଖାପାଖି କୋଟିଏ ଲୋକ ମୃତ୍ୟୁ ମୁଖରେ ପଡିଲେ ଓ ତାହାର ଦୁଇଗୁଣ ଲୋକ ଆହତ ହେଲେ । ଯୁଦ୍ଧରେ ସଂପୃକ୍ତ ପ୍ରତ୍ୟେକ ରାଷ୍ଟ୍ର ଯୁଦ୍ଧ ଲକ୍ଷ୍ୟରେ ସମସ୍ତ କଳ କାରଖାନାକୁ ବିନିଯୋଗ କଲା । ଯୁବଶକ୍ତି ଯୁଦ୍ଧରେ ସଂପୃକ୍ତ ହେବାରୁ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହେବାକୁ ଲାଗିଲା । ଯୁଦ୍ଧରେ ଯେଉଁମାନେ ଅଧିକ ଆଗଭର ଥିଲେ ସେହିମାନେ ହିଁ ଥିଲେ ସାମ୍ରାଜ୍ୟବାଦର ପୃଷ୍ଠପୋଷକ । ବିଶ୍ୱଯୁଦ୍ଧର ପରିଣାମରୁ ସାମ୍ରାଜ୍ୟବାଦର ପତନ ଅବଶ୍ୟମ୍ଭାବୀ ହୋଇପଡିଲା । ସାମ୍ରାଜ୍ୟବାଦର ପତନ ସହ ସାରା ବିଶ୍ୱରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ହେଲା । ପୃଥିବୀର ଶାନ୍ତିକାମୀ ରାଷ୍ଟ୍ରନୀତିଜ୍ଞ, ବୈଜ୍ଞାନିକ, ମାନବହିତୈଷୀ ବୁଦ୍ଧିଜୀବୀ ଗଣ ପୃଥିବୀକୁ ଯୁଦ୍ଧରହିତ କରିବାକୁ ଗଭୀର ଆବେଦନ ସୃଷ୍ଟିକଲେ । ରାଷ୍ଟ୍ର ରାଷ୍ଟ୍ର ଭିତରେ ଥିବା ସମସ୍ୟା, ଦ୍ୱନ୍ଦ୍ୱକୁ ଦୂର କରିବା ପାଇଁ ଆନ୍ତର୍ଜାତିକ ସ୍ତରରେ ଉଦ୍ୟମ ହେଲା । ଯଦିବା ପୃଥିବୀରେ ବହୁ ମାନବୀୟ ସମସ୍ୟା ଓ ସଂକଟର ପରିବେଶ ରହିଛି ତଥାପି ସାରା ବିଶ୍ୱରେ ଯେ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀ, ବିଶ୍ୱଦୃଷ୍ଟି, ମାନବୀୟ ସମସ୍ୟା ପ୍ରତି ସାର୍ବଜନୀନ ସଂପୃକ୍ତି ବ୍ୟକ୍ତ ହେବାରେ ଲାଗିଛି ଏହା ଏକ ବଡ ସାଂସ୍କୃତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଆନ୍ତର୍ଜାତିକ ସଂପୃକ୍ତି ଯୋଗୁ ପୃଥିବୀରୁ ମହାମାରୀ ମାନଙ୍କୁ ମୂଳୋତ୍ପାଟନ କରିବା ସମ୍ଭବ ହୋଇଛି । ସାମାଜିକ ଗତିଶୀଳତା ବୃଦ୍ଧି ପାଇବାରେ ଲାଗିଛି ଓ ସାରା ବିଶ୍ୱ ଆଧୁନିକ ଜ୍ଞାନବିଜ୍ଞାନର ବିକାଶ ହେତୁ ଏକ କ୍ଷୁଦ୍ର ଗ୍ରାମରେ ପରିଣତ ହେବାରେ ଲାଗିଛି । ବିଭିନ୍ନ ମାନବୀୟ ସମସ୍ୟା ବା ସଂକଟର ସମାଧାନ ପାଇଁ ଆନ୍ତର୍ଜାତିକ ସହଯୋଗ ନେଇ ଏକ ସକାରାତ୍ମକ ମାନସିକତା ସାରା ବିଶ୍ୱରେ ସୃଷ୍ଟି ହୋଇପାରିଛି ।

ସବୁ ଦେଶରେ ଓ ବିଶେଷକରି ଧର୍ମର ଗଭୀର ପ୍ରଭାବ ଥିବା ଧର୍ମତାନ୍ତ୍ରିକ ରାଷ୍ଟ୍ରମାନଙ୍କରେ ମହିଳାମାନେ ବହୁ ମାନବିକ ଅଧିକାରରୁ ବଞ୍ଚିତ ହୋଇ ରହିଥିଲେ ।

ସେମାନଙ୍କୁ ଅବଳା ମନେ କରାଯାଉଥିଲା ଓ ସେମାନଙ୍କର ସ୍ୱାଧୀନତା ସଙ୍କୁଚିତ ହୋଇ ରହିଥିଲା । ରାଜନୈତିକ କାର୍ଯ୍ୟରୁ ସେମାନେ ଦୂରରେ ରହିଥିଲେ । ଇଂଲଣ୍ଡ ଯାହାକୁ ଗଣତନ୍ତ୍ରର ଜନନୀ କୁହାଯାଏ ସେ ଦେଶରେ ମଧ୍ୟ ମହିଳାମାନେ ସମାନ ଅଧିକାର ଉପଭୋଗ କରୁନଥିଲେ । ବହୁ ଆନ୍ଦୋଳନ ପରେ ୧୯୨୮ ରେ ମହିଳାମାନେ ଇଂଲଣ୍ଡରେ ଭୋଟ ଅଧିକାର ପାଇଲେ । ଧୀରେ ଧୀରେ ମହିଳା ସଶକ୍ତିକରଣର ଭାବନା ସାରା ବିଶ୍ୱରେ ପ୍ରସାରିତ ହେଲା ଓ ଲିଙ୍ଗ ଜନିତ ଭେଦଭାବ ବହୁ ସମାଜରୁ ଦୂରୀଭୂତ ହେବାକୁ ଲାଗିଲା । ୧୯୪୮ ରେ ମାନବିକ ଅଧିକାରର ବିଶ୍ୱ ଘୋଷଣା ମାନବଜାତିର ଇତିହାସରେ ଥିଲା ଏକ ଯୁଗାନ୍ତକାରୀ ଘଟଣା । କୌଣସି ଭେଦଭାବର ଶିକାର ନ ହେବା, ମର୍ଯ୍ୟାଦାର ସହ ଜୀବନ ବଞ୍ଚିବା ଓ ନାଗରିକ ଅଧିକାର ସମାନ ଭାବରେ ଉପଭୋଗ କରିବା ପ୍ରତ୍ୟେକ ବ୍ୟକ୍ତିର ଏକ ପ୍ରାକୃତିକ ଅଧିକାର । ଏହି ହେତୁବାଦୀ ମୂଲ୍ୟବୋଧକୁ ଆନ୍ତର୍ଜାତିକ ସ୍ୱୀକୃତି ଦିଆଯିବା ଓ ପ୍ରତ୍ୟେକ ରାଷ୍ଟ୍ର ଏହି ଲକ୍ଷ୍ୟ ଦିଗରେ ସଚେତନ ରହିବା ନିଶ୍ଚିତ ଭାବେ ଏକ ବଡ ନୈତିକ ଉତ୍ତରଣ । ବହୁ ଦେଶର ସାମାଜିକ ବାସ୍ତବତା ଏହି ଲକ୍ଷ୍ୟଠାରୁ ବହୁତ ଦୂରରେ ରହିଥିଲେ ମଧ୍ୟ ଏହା ପ୍ରତି ଆନ୍ତର୍ଜାତିକ ସ୍ୱୀକୃତି ରହିବା ସାଧାରଣ ମଣିଷ ପାଇଁ ଏକ ଗୌରବର ବିଷୟ ।

ମାନବ ସମୁଦାୟରେ ତଥା ପ୍ରତ୍ୟେକ ଦେଶ ବା ସମାଜରେ ନାନା ମନ୍ଦ ବା ସୋସିଆଲ ଇଭିଲ ରହିଛି । ନାନା ଭେଦଭାବ, ହିଂସା, କ୍ରୂରତା, ଶୋଷଣ ସଭ୍ୟତାର ଆଦିକାଳରୁ ସମାଜରେ ରହିଆସିଛି । ତେବେ ମଣିଷ ନିଜର ଉନ୍ନତ ମସ୍ତିଷ୍କ, ବିଚାରଶୀଳତା, ସୃଜନଶୀଳତା ଓ ସମ୍ବେଦନଶୀଳତା ଯୋଗୁ ଏକ ମହତ୍ତର ଜୀବନ ଓ ଉନ୍ନତ ସାମାଜିକ ସମ୍ବନ୍ଧ ନେଇ ଚିନ୍ତା କରିଆସିଛି । ସେହି ବୌଦ୍ଧିକ ସଂପୃକ୍ତିରୁ ସଭ୍ୟତାର ବୌଦ୍ଧିକ ଓ ନୈତିକ ଅଗ୍ରଗତି ସମ୍ଭବ ହୋଇଛି । ସମାଜର କିଛି ପ୍ରଜ୍ଞାଦୀପ୍ତ ବ୍ୟକ୍ତି ସାମାଜିକ ସଂପର୍କକୁ ନୀତିଯୁକ୍ତ ଓ ଅଧିକ ମାନବିକ କରିବାକୁ ସର୍ବଦା ନିଜର ବିଚାର ଓ ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି । ସୁଖର କଥା ବିଂଶଶତାବ୍ଦୀ ଏ କ୍ଷେତ୍ରରେ ଅନେକ ସକାରାତ୍ମକ ପରିବେଶ ସୃଷ୍ଟି କରିପାରିଛି । ଜୀବନର ଭୌତିକ ଓ ନୈତିକ ବିକାଶ କ୍ଷେତ୍ରରେ ଗତ ଶତାବ୍ଦୀ ଯେ ଅନେକ ମହନୀୟ ସ୍ୱାକ୍ଷର ରଖିଛି ଏହା ନିଃସନ୍ଦେହ ମନେହୁଏ ।

(୯.୪.୨୦୧୪)



# ବିଂଶଶତାବ୍ଦୀର ବାର୍ତ୍ତା

ବିଂଶ ଶତାବ୍ଦୀ ସଭ୍ୟତାର କ୍ରମବିକାଶ ଧାରାରେ ଅତି ମହତ୍ତ୍ୱପୂର୍ଣ୍ଣ । ଆଧୁନିକ ଜୀବନ ପ୍ରବାହର ବିକାଶ କ୍ଷେତ୍ରରେ ବିଂଶଶତାବ୍ଦୀ ବହୁ ଦୃଷ୍ଟିରୁ ନିର୍ଣ୍ଣାୟକ । ବହୁ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ଓ ଉଦ୍ଭାବନ ଏହି ଶତାବ୍ଦୀରେ ହୋଇଛି । ଊନବିଂଶ ଶତାବ୍ଦୀରେ ରେଳଯାତ୍ରା ଆରମ୍ଭ ହୋଇଥିଲେ ବି ଏଥିରେ ଉନ୍ନତିକରଣ ବିଂଶଶତାବ୍ଦୀରେ ହିଁ ସମ୍ଭବ ହୋଇଥିଲା । ସଡକରେ ଯାନବାହନ ଚାଲିବା ବିଂଶଶତାବ୍ଦୀରେ ହିଁ ବିକଶିତ ହେଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ଉଡାଜାହାଜ ଯୋଗେ ଆକାଶମାର୍ଗରେ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସଡକ ପଥରେ ଯାନବାହାନର ପ୍ରଚଳନ ହେଲା । ସଡକ ରାସ୍ତା ନିର୍ମାଣ କରାଗଲା ଓ ଗମନାଗମନରେ ଯଥେଷ୍ଟ ଅଗ୍ରଗତି ହେଲା । ବିଜୁଳିଶକ୍ତି ବା ଇଲେକ୍‌ଟ୍ରିସିଟିର ବ୍ୟବହାର ଜୀବନଧାରାରେ ଅଭୂତପୂର୍ବ ପରିବର୍ତ୍ତନ ଆଣିଲା । ସେହିପରି ବିଭିନ୍ନ ରୋଗବାଧକର ଚିକିତ୍ସା ବିଂଶ ଶତାବ୍ଦୀରେ ହିଁ ଉଦ୍ଭାବିତ ହେଲା । ବିଭିନ୍ନ ଟିକା, ପେନ୍‌ସିଲିନ୍ ବା ଆଣ୍ଟିବାୟୋଟିକ୍‌ର ଉଦ୍ଭାବନ ଯୋଗୁଁ ପୃଥିବୀ ପୃଷ୍ଠରୁ ବହୁ ରୋଗର ଚିକିତ୍ସା ସମ୍ଭବ ହେଲା । ବିଭିନ୍ନ ରୋଗ କିପରି ଜୀବାଣୁଜନିତ ଏହା ଜଣାପଡିବା ପରେ ନାନା ମହାମାରୀକୁ ନିୟନ୍ତ୍ରଣ କରାଯାଇ ପାରିଲା । ସେହିପରି ରେଡିଓ, ଟେଲିଭିଜନର ଉଦ୍ଭାବନ ଯୋଗୁ ଗଣମାଧ୍ୟମର ବିକାଶଜନିତ ସଞ୍ଚାରର ଯୁଗ ବିଂଶ ଶତାବ୍ଦୀରୁ ହିଁ ଆରମ୍ଭ ହେଲା । ଟେଲିଫୋନ୍, ମୋବାଇଲ ଓ ଇଣ୍ଟରନେଟ୍‌ର ଯୁଗ ଆସିବା ଦ୍ୱାରା ପୃଥିବୀ କ୍ଷୁଦ୍ର ହୋଇଚାଲିଲା । ଯାହା ଗୋଟିଏ ଶତାବ୍ଦୀ ତଳେ ଅଚିନ୍ତନୀୟ ଥିଲା ତାହା ଏବେ ସାଧାରଣ ବ୍ୟକ୍ତିର ବ୍ୟବହାର କ୍ଷେତ୍ରକୁ ଆସିଗଲାଣି । ସେହିପରି ଜନସଂଖ୍ୟାର କ୍ରମବର୍ଦ୍ଧିଷ୍ଣୁ ଅଭିବୃଦ୍ଧି ଯୋଗୁ ଉତ୍ପାଦନ କ୍ଷେତ୍ରରେ ମଧ୍ୟ ଅଭୂତପୂର୍ବ ଅଗ୍ରଗତି ହେଲା । ୧୯୦୦ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ୧୬୦ କୋଟି ଥିବାବେଳେ ୨୦୦୦ ମସିହା ବେଳକୁ ଏହା ୬୦୦ କୋଟି ହେଲା ଓ ୨୦୧୦ରେ ୭୦୦ କୋଟିରେ ପହଞ୍ଚିଛି । ଏହି ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ କୃଷିକ୍ଷେତ୍ରରେ ଯେଉଁ ଗବେଷଣା ହେଲା, ତାହାର ପରିଣାମ ସ୍ୱରୂପ ଖାଦ୍ୟଶସ୍ୟର ଉତ୍ପାଦନ

ଆଶାତୀତ ଭାବେ ବୃଦ୍ଧି ପାଇଲା । ସାରା ପୃଥିବୀରେ ବିଜ୍ଞାନ କ୍ଷେତ୍ରରେ ନୂଆ ନୂଆ ଗବେଷଣାରୁ ଜ୍ଞାନର ଦିଗନ୍ତ ଅଭୂତପୂର୍ବ ଭାବେ ବିସ୍ତାରିତ ହୋଇଚାଲିଲା । ଜ୍ଞାନ ବିଜ୍ଞାନର ବିସ୍ତାରରୁ ନୂଆ ନୂଆ ପ୍ରାଯୁକ୍ତିକ କୌଶଳ ସୃଷ୍ଟି ହେଲା । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଜୀବନର ଭୌତିକମାନକୁ ନାନା ଭାବରେ ଅଭିବୃଦ୍ଧି କରିପାରିଲା । ସାରା ପୃଥିବୀରୁ ମହାମାରୀ, ନିରକ୍ଷରତା, ଅନାହାର, ଦାରିଦ୍ର୍ୟ କମାଇବାରେ ବିଜ୍ଞାନ ଯେ ଏକ ମୁଖ୍ୟ ଭୂମିକା ନେଇପାରିଛି ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ ସହ ରାଷ୍ଟ୍ରର ସମୃଦ୍ଧି ଯେ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ଏହି ଅନୁଭବରୁ ସବୁ ଦେଶରେ ବୈଜ୍ଞାନିକ ଗବେଷଣାକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ନିଆଗଲା । ଯେଉଁ ଦେଶଗୁଡିକରେ ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ଯଥେଷ୍ଟ ଅଭିବୃଦ୍ଧି ହେଲା ସେସବୁ ରାଷ୍ଟ୍ର ଯେ ବିକଶିତ ହେଲେ ଏହା ଅନସ୍ୱୀକାର୍ଯ୍ୟ । ସାମ୍ପ୍ରତିକ ଯୁଗରେ ବିଜ୍ଞାନ ଓ ପ୍ରଯୁକ୍ତିକୁ ବାଦ୍ ଦେଇ ବିକାଶର ପରିକଳ୍ପନା କରାଯାଇପାରିବ ନାହିଁ । ଏପରିକି କେତେକ କ୍ଷେତ୍ରରେ ଅନ୍ତାରାଷ୍ଟ୍ରୀୟ ସହଯୋଗରେ ଗବେଷଣା ବିଂଶ ଶତାବ୍ଦୀରେ କରାଗଲା ।

ବିଜ୍ଞାନର ବିକାଶ ସହ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଏକ ଗୁଣାତ୍ମକ ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେହୁଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସଭ୍ୟ ଜୀବନ ଦୃଷ୍ଟିର ପ୍ରତିଫଳନ ହେବାବେଳେ ଏହାର ବିପରୀତ ଅଜ୍ଞତା ଓ କୁସଂସ୍କାର ସହିତ ସଂଶ୍ଳିଷ୍ଟ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଏକ ସଂସ୍କାରିତ ଚେତନାର ପ୍ରତୀକ । ଏହା ବୈଜ୍ଞାନିକ ପ୍ରଣାଳୀ ଓ ସତ୍ୟ ପ୍ରତି ପ୍ରତିବଦ୍ଧତାକୁ ଦର୍ଶାଇଥାଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ବିଚାରଶୀଳତା ଓ ବସ୍ତୁନିଷ୍ଠଜ୍ଞାନ କ୍ଷେତ୍ରରେ ବୈଜ୍ଞାନିକ ପ୍ରଣାଳୀକୁ ପ୍ରାଧାନ୍ୟ ଦେଇଥା'ନ୍ତି । ଆଜି ଜ୍ଞାନ ବିଜ୍ଞାନର ଯାହା ବିକାଶ ହୋଇଛି ତାହା ପଶ୍ଚାତରେ ବୌଦ୍ଧିକ କୌତୂହଳତା, ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ, ବସ୍ତୁନିଷ୍ଠ ଅନୁଶୀଳନ, ମୁକ୍ତମନ, ସତ୍ୟ ପ୍ରତି ଅନୁରକ୍ତି ଇତ୍ୟାଦି ରହିଛି । ଏସବୁ ହିଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ ।

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ସାଧାରଣତଃ ବିଚାରଶୀଳତା, ଯୁକ୍ତିଶୀଳ ଭାବନା ଓ ଜ୍ଞାନ ଲାଭ ପାଇଁ ପର୍ଯ୍ୟବେକ୍ଷଣ-ପରୀକ୍ଷଣ ଜନିତ ଦୃଷ୍ଟିଭଙ୍ଗୀକୁ ଗୁରୁତ୍ୱ ଦେଇଥାନ୍ତି । ଏହାର ଅନ୍ୟ ଏକ ତାତ୍ପର୍ଯ୍ୟ ହେଉଛି ଯେ ଏହା ସର୍ବଦା ମାନବିକ ପ୍ରୟାସ ଓ ବୌଦ୍ଧିକ ସୃଜନଶୀଳତାକୁ ମହତ୍ତ୍ୱ ଦେଇଥାଏ । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି ସେ ସବୁ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ଏକ ଆଦିମ ଅସଭ୍ୟ ସ୍ଥିତିରୁ କ୍ରମବିକାଶର ନାନା ଉତ୍ତରଣ ମଧ୍ୟ ଦେଇ ମଣିଷ ଆଜିର ସ୍ଥିତିକୁ ଆସିଛି । ସେ ଧୀରେ ଧୀରେ ସଭ୍ୟ ହୋଇଛି, ଯଦିବା ଏବେ ବି ସମାଜରେ ନାନା ଅସଭ୍ୟ ପ୍ରଥା

ପ୍ରାଚୀନକାଳରୁ ଚଳି ଆସିଛି । ସେହିପରି ଶିକ୍ଷା, ସଂସ୍କୃତି, ନୈତିକତା, ମହତ୍ତର ଜୀବନବୋଧ, ମାନବିକ ମୂଲ୍ୟଚୟ ବୌଦ୍ଧିକ ଅଗ୍ରଗତି ମଧ୍ୟଦେଇ ବିକଶିତ ହୋଇଛି । ନାଗରିକ ସଚେତନତା, ସମ୍ବେଦନଶୀଳତା, ଭ୍ରାତୃତ୍ୱଭାବ, ସହନଶୀଳତା ପରି ମୂଲ୍ୟବୋଧ ସଭ୍ୟତାର କ୍ରମବିକାଶ ସହ ମଣିଷର ଚେତନା ସ୍ତରକୁ ଆସିଛି । ଏସବୁ ଭାବନା ଉନ୍ନତ ଜୀବନଦୃଷ୍ଟି ଓ ସୃଜନଶୀଳ ଆବେଗ ଉପରେ ଗଭୀର ମନୋନିବେଶରୁ ସମ୍ଭବ ହୋଇଛି । ବିଂଶ ଶତାବ୍ଦୀରେ ଦୁଇଦୁଇଟି ବିଶ୍ୱଯୁଦ୍ଧର ଭୟାବହତା, ଆଣବିକ ମାରଣାସ୍ତ୍ର ନିର୍ମାଣ ଜନିତ ପ୍ରତିଯୋଗିତା, ଆଣବିକ ଯୁଦ୍ଧର ସମ୍ଭାବନା ଇତ୍ୟାଦି କାରଣରୁ ସାରା ବିଶ୍ୱର ଶାନ୍ତିକାମୀ ଜନଗଣ ମଣିଷ ସଭ୍ୟତାର ଭବିଷ୍ୟତ ନେଇ ଗଭୀର ଆଶଙ୍କା ବ୍ୟକ୍ତ କରିଛନ୍ତି । ପୃଥିବୀକୁ ଯୁଦ୍ଧରହିତ କରିବା ପାଇଁ ଓ ମାନବିକ ସମସ୍ୟା ସବୁର ଶାନ୍ତିପୂର୍ଣ୍ଣ ସମାଧାନ ପାଇଁ ବିଶ୍ୱସ୍ତରରେ ଚିନ୍ତା ଚେତନା ବିଂଶ ଶତାବ୍ଦୀରେ ହିଁ ପ୍ରକଟିତ ହୋଇଛି । ଶିଳ୍ପ ସଭ୍ୟତା ପରଠାରୁ ପୃଥିବୀରେ ଯେଉଁ ସାମ୍ରାଜ୍ୟବାଦୀ ଶୋଷଣ ଓ ଉପନିବେଶବାଦର ପରିବେଶ ଆସିଥିଲା ତାହା ବିରୁଦ୍ଧରେ ବିଶ୍ୱରେ ସଚେତନତା ପ୍ରକାଶ ପାଇଛି । ଉପନିବେଶବାଦୀ ପରାଧୀନତାରୁ ମୁକ୍ତି ପାଇଁ ପରାଧୀନ ଦେଶମାନଙ୍କରେ ଗଣବିପ୍ଳବ ସମ୍ଭବ ହୋଇଛି । ପରିଣାମ ସ୍ୱରୂପ ସାମ୍ରାଜ୍ୟବାଦ, ଉପନିବେଶବାଦ ପୃଥିବୀରୁ ଲୋପ ପାଇବାର ପରିବେଶ ସୃଷ୍ଟି ହୋଇଛି । ସେହିପରି ପୁଞ୍ଜିବାଦୀ ଶୋଷଣ, ରାଜତନ୍ତ୍ର ବିରୋଧରେ ସାମାଜିକ ଚେତନା ଦୃଢ଼ୀଭୂତ ହୋଇଛି । ସମାଜବାଦ, ମେହନତୀ ମଣିଷର ମାନବିକ ଅଧିକାର ନେଇ ଭାବନା ବ୍ୟକ୍ତ ହୋଇଛି । ଜନକଲ୍ୟାଣକାରୀ ଯୋଜନା ରାଷ୍ଟ୍ରୀୟ ଲକ୍ଷ୍ୟ ଭାବେ ଅଧିକରୁ ଅଧିକ ଗୃହୀତ ହେବାରେ ଲାଗିଛି । ପୁନଶ୍ଚ ଯେଉଁ ଯେଉଁ ସମାଜରେ ଜାତିବାଦ, ଲିଙ୍ଗଭେଦ, ବୈଷମ୍ୟଜନିତ ଭେଦଭାବର ପରିବେଶ ରହିଥିଲା ତାହା ବିରୁଦ୍ଧରେ ସାରା ପୃଥିବୀର ଜନଗଣଙ୍କ ଭିତରେ ସଚେତନତା ବ୍ୟକ୍ତ ହୋଇଛି । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ, ନାଗରିକ ଅଧିକାର, ଆଇନ ଦୃଷ୍ଟିରେ ସମାନ ହେବାର ଦୃଷ୍ଟିଭଙ୍ଗୀ, ଶିକ୍ଷା, ସ୍ୱାସ୍ଥ୍ୟସେବା ଇତ୍ୟାଦି ନେଇ ସାରା ପୃଥିବୀରେ ସଚେତନ ବାୟୁମଣ୍ଡଳ ସୃଷ୍ଟିହୋଇଛି । 'ମାନବିକ ଅଧିକାରର ବିଶ୍ୱ ଘୋଷଣାନାମା' ଦଲିଲରେ ପୃଥିବୀର ବହୁ ରାଷ୍ଟ୍ର ସମ୍ମତି ପ୍ରଦାନ କରିଛନ୍ତି । ଜାତିସଂଘ ଦ୍ୱାରା ମାନବିକ ଅଧିକାରର ଘୋଷଣା ସନନ୍ଦଟି ସଭ୍ୟ ଜୀବନଦୃଷ୍ଟିର ବିକାଶରେ ଏକ ବୈପ୍ଳବିକ କାର୍ଯ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ଯୁଗଯୁଗ ଧରି ରଙ୍ଗ, ଲିଙ୍ଗ, ଜାତି, ଜାତୀୟତା, ଭାଷା, ଧର୍ମ ଇତ୍ୟାଦିକୁ ନେଇ ପୃଥିବୀରେ ଯେଉଁ ଭେଦଭାବମୂଳକ ମାନସିକତା ରହିଥିଲା ତାହା ବିରୁଦ୍ଧରେ ପ୍ରତିବାଦର ସ୍ୱର ଉଠିଛି । ମଣିଷ ମଣିଷ ଭିତରେ ପ୍ରାଚୀର ସୃଷ୍ଟି କରୁଥିବା ଭେଦଭାବ, ଘୃଣା, ବିଦ୍ୱେଷ ଜନିତ ବିଚାର ଯେ ଅମାନବିକ, ଅନ୍ୟାୟ ଓ ଅହେତୁକ ଏହା ବିଂଶଶତାବ୍ଦୀରେ ଚିନ୍ତା ରାଜ୍ୟରେ

ଆଲୋଡ଼ନ ଆଣିଛି । ମାନବବାଦ, ସାମାଜିକ ନ୍ୟାୟ, ମାନବିକ ଅଧିକାର, ବିଶ୍ୱଭ୍ରାତୃତ୍ୱ, ସହନଶୀଳତା, ବିଶ୍ୱଦୃଷ୍ଟି ପରି ମୂଲ୍ୟବୋଧଗୁଡ଼ିକ ସାର୍ବଜନୀନ ହେବାରେ ଲାଗିଛି । ପୃଥିବୀରେ ଯେଉଁଠି ଯାହା ଜ୍ଞାନ ବା ନୂତନ ପ୍ରଯୁକ୍ତିର ଉଦ୍ଭାବନ ହେଉଛି ତାହାର ସୁଫଳ ମଣିଷଜାତି ପାଇଁ ଉପଲବ୍ଧ ହେବାରେ ଲାଗିଛି । ପୃଥିବୀର କୌଣସି କୋଣରେ କିଛି ପ୍ରାକୃତିକ ଦୁର୍ବିପାକ ଘଟିଲେ, ତାହାକୁ ମୁକାବିଲା କରିବା ପାଇଁ ତଥା ଦୁଃଖ ଦୁର୍ଦ୍ଦଶାକୁ ସାମନା କରୁଥିବା ମଣିଷ ପାଇଁ ସାରା ପୃଥିବୀରୁ ସାହାଯ୍ୟ ଓ ସହାନୁଭୂତିର ହାତ ପ୍ରସାରିତ ହୋଇପାରୁଛି । ଅନ୍ୟର ଦୁଃଖକୁ ନିଜର ଦୁଃଖ ବୋଲି ଅନୁଭବ କରିବାର ଦୃଷ୍ଟିଭଙ୍ଗୀ ସାରା ବିଶ୍ୱରେ ଯେପରି ପ୍ରସାରିତ ହୋଇଛି ଏହା ସଭ୍ୟତାର ଏକ ବଡ ନୈତିକ ଉତ୍ତରଣ କହିଲେ ଅତ୍ୟୁକ୍ତି ହେବନାହିଁ । ପୃଥିବୀର ଜନତାଙ୍କୁ ରୋଗମୁକ୍ତ, କ୍ଷୁଧାମୁକ୍ତ, ଭେଦଭାବମୁକ୍ତ କରିବାର ପରିବେଶ ବିଂଶଶତାବ୍ଦୀର ବୈଜ୍ଞାନିକ କ୍ରିୟାଶୀଳତାରୁ ସମ୍ଭବ ହୋଇଛି ।

ଜୀବନର ଭୌତିକ ଓ ନୈତିକ ମାନରେ ଗୁଣାତ୍ମକ ବିକାଶ ପାଇଁ ବିଂଶଶତାବ୍ଦୀର ଦ୍ୱିତୀୟ ଭାଗରୁ ଯେଉଁ ପରିବେଶ ସାରା ବିଶ୍ୱରେ ସୃଷ୍ଟି ହୋଇଛି ତାହାର ନାନା ସକାରାତ୍ମକ ପ୍ରୟୋଗ ହୋଇପାରିବ । ଏହି ସକାରାତ୍ମକ ପ୍ରୟୋଗ ଦ୍ୱାରା ମାନବସମୁଦାୟ ଏକ ବିଶ୍ୱଭ୍ରାତୃତ୍ୱର ବନ୍ଧନରେ ସମ୍ମିଳିତ ହୋଇପାରିବ । ମଣିଷ ସମାଜରେ ଯେଉଁ ସବୁ ସଙ୍କଟ ରହିଛି ବା ସୃଷ୍ଟି ହୋଇଛି ତାହାର ବିଚାରସମ୍ମତ ସମାଧାନ ମଣିଷମାନଙ୍କର ଉଦ୍ୟମରେ ସମ୍ଭବ । ଯୁଗଯୁଗ ଧରି ଆମ ସଂସାରରେ ଯେଉଁ ଶୋଷଣ, ଅନ୍ୟାୟ, ଅମାନବିକତା, ହିଂସା, ଭେଦଭାବ, ବିଭୀଷିକା ସୃଷ୍ଟି ହୋଇଛି, ତାହାର ସମାଧାନ ମଣିଷର ବିଚାରଶୀଳ, ବୈଜ୍ଞାନିକ ଓ ମାନବିକ ଦୃଷ୍ଟି ଦ୍ୱାରା ସମ୍ଭବ ହେବ । ସଭ୍ୟତାର ବିକାଶଧାରାରେ ମଣିଷ ସମାଜ ଆଦିମ ଯୁଗରୁ ନାନା ସ୍ତର ଓ ସୋପାନ ଦେଇ ସଭ୍ୟ ସ୍ତରକୁ ଆସିବା ପଛରେ ସୁଦୀର୍ଘ କାହାଣୀ ରହିଛି । ସେହି ଉତ୍ତରଣ ପ୍ରକ୍ରିୟାରେ ବିଂଶ ଶତାବ୍ଦୀ ମଣିଷ ସମାଜ ପାଇଁ ଜ୍ଞାନ ବିଜ୍ଞାନ ଓ ମାନବିକ ସମ୍ପ୍ରୀତିର ଯେଉଁ ପରିବେଶ ଓ ସମ୍ଭାବନା ଆଣିଛି, ତାହା ଯଦି ଠିକ୍ ଓ ସକାରାତ୍ମକ ଧାରାରେ ପ୍ରୟୋଗ ହୁଏ ତେବେ ସାରା ବିଶ୍ୱରେ ଏକ ନୂତନ ଯୁଗର ଶୁଭାରମ୍ଭ ହୋଇପାରିବ । ପରନ୍ତୁ ଯଦି ବିଜ୍ଞାନର ଅପପ୍ରୟୋଗ ହୁଏ, ରାଷ୍ଟ୍ରବାଦ ଜନିତ ଦୃଷ୍ଟିଭଙ୍ଗୀ ଯୁଦ୍ଧର ପରିବେଶ ସୃଷ୍ଟିକରେ, ଧାର୍ମିକ ଭାବ ପ୍ରବଣତା ସାମ୍ପ୍ରଦାୟିକ ଘୃଣାର ମନୋଭାବ ଆଣେ, ଅତ୍ୟାଧୁନିକ ପ୍ରଯୁକ୍ତି ସାମ୍ରାଜ୍ୟବାଦୀ ଶୋଷଣ ପାଇଁ ଉପଯୋଗ ହୁଏ ଓ ସାରା ପୃଥିବୀର ପରିବେଶ ଭୟାନକ ଭାବେ ପ୍ରଦୂଷିତ ହୋଇଚାଲେ, ତେବେ ପୃଥିବୀର ଜନଗଣ ଧ୍ୱଂସର ନିକଟବର୍ତ୍ତୀ ହୋଇଯିବେ । ଆଗାମୀ ପିଢ଼ି ପାଇଁ ଆମେ ଏକ ପ୍ରୀତିପୂର୍ଣ୍ଣ, ଜ୍ଞାନ ବିଜ୍ଞାନ ଜନିତ ଅନୁସନ୍ଧିତ୍ସୁ ଦୃଷ୍ଟିଭଙ୍ଗୀ ତଥା ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପୃଥିବୀ ଛାଡିଯିବା

ନା ଏକ ବିଦ୍ୱେଷପୂର୍ଣ୍ଣ, ଅବୈଜ୍ଞାନିକ ଓ ପ୍ରଦୂଷିତ ପରିବେଶ ଛାଡିଯିବା ଏହି ନିଷ୍ପତ୍ତି ଭବିଷ୍ୟତ ପାଇଁ ନିର୍ଣ୍ଣାୟକ ମନେହୁଏ । ସଭ୍ୟତାର ଆରମ୍ଭ ଯୁଗରୁ ମଣିଷ ସମାଜ ସହିତ ନାନା ସଙ୍କଟ ସର୍ବଦା ସଂଶ୍ଳିଷ୍ଟ ହୋଇ ରହିଥିବା ଏକ ଐତିହାସିକ ସତ୍ୟ । ଦାରିଦ୍ର୍ୟ, ଅନାହାର, ଅପପୁଷ୍ଟି, ଯୁଦ୍ଧ, ହିଂସା, ବୈଷମ୍ୟ, ଭେଦଭାବ, ରୋଗ ଯନ୍ତ୍ରଣା ସବୁ ସମୟରେ ମଣିଷ ସମାଜ ସହିତ ସଂଶ୍ଳିଷ୍ଟ ହୋଇ ରହିଆସିଛି । ତେବେ ବିଂଶଶତାବ୍ଦୀରେ ଜ୍ଞାନ ବିଜ୍ଞାନର ବିକାଶ ସହ ଯେଉଁ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ଅଭ୍ୟୁଦୟ ହୋଇଛି ତାହା ଆମ ସଂସାରରୁ ବହୁ ମନ୍ଦସ୍ଥିତିକୁ ଦୂର କରିବାରେ ସଫଳ ହୋଇଛି । ସେହିପରି ମାନବବାଦ, ବିଶ୍ୱଭ୍ରାତୃତ୍ୱ ଓ ସହନଶୀଳତାର ଯେଉଁ ବୌଦ୍ଧିକ ଆବେଦନ ସୃଷ୍ଟି ହୋଇଛି ତାହା ମଣିଷ ସମାଜରୁ ଭେଦଭାବ, ବିଦ୍ୱେଷ ଓ ଅସହିଷ୍ଣୁତାର ମନୋଭାବ ଦୂର କରିପାରିବ । ବୌଦ୍ଧିକ ସ୍ତରରେ ଉଦ୍ଭବ ବିଜ୍ଞାନ ଓ ଅନେକ ମହନୀୟ ଆଦର୍ଶ ଯଦି ବିଶ୍ୱରେ ସାର୍ବଜନୀନ ଭାବେ ଶିକ୍ଷା, ଗଣମାଧ୍ୟମ ଇତ୍ୟାଦି ଜରିଆରେ ପରିବ୍ୟାପ୍ତ ହୋଇପାରିବ, ତେବେ ଆମ ସଂସାର ମଧୁମୟ ହୋଇପାରିବ ।

(୨୯.୧.୨୦୧୪)



# ଆଶାର ଆଲୋକ

ଜ୍ଞାନ, ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶରୁ ସଭ୍ୟତାର ବିକାଶ ହୋଇଛି । ବିଭିନ୍ନ ଭୌଗୋଳିକ ଭୂଖଣ୍ଡରେ ସଭ୍ୟତାମାନ ଗଢ଼ି ଉଠିଥିଲେ ବି ଆଧୁନିକ ବିଜ୍ଞାନର ବିକାଶଠାରୁ ସଭ୍ୟତାର ବିକାଶ ତ୍ୱରାନ୍ୱିତ ହୋଇଛି । ବୈଜ୍ଞାନିକ ଜ୍ଞାନକୁ ଆଧାର କରି ନୂଆ ନୂଆ ପ୍ରଯୁକ୍ତି ସୃଷ୍ଟି ହୋଇଛି ଓ ସଭ୍ୟତାର ରୂପରେଖ ଧୀରେ ଧୀରେ ପରିବର୍ତ୍ତିତ ହୋଇଚାଲିଛି । ଜ୍ଞାନର ପ୍ରୟୋଗରୁ ଶିଳ୍ପ, କଳକାରଖାନା ଗଢ଼ି ଉଠିଛି । ଗମନାଗମନ କ୍ଷେତ୍ରରେ ପ୍ରଭୂତ ଉନ୍ନତି ହୋଇଛି । ବିଜ୍ଞାନକୁ ଆଧାରକରି ଯେଉଁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଜ୍ଞାନଦୀପ୍ତିର ପରିବେଶ ଆସିଛି ତାହାର ପ୍ରଭାବରେ ବହୁ କୁସଂସ୍କାର ଓ ଆଧାରହୀନ ବିଶ୍ୱାସ ସମାଜରୁ ଅପସରି ଯିବାରେ ଲାଗିଛି । ଅବଶ୍ୟ ଯେତେ ଜ୍ଞାନ ବିକାଶ ହେଲେ ମଧ୍ୟ କିଛି ବ୍ୟକ୍ତି ଅହେତୁକ ବିଶ୍ୱାସ ଓ କୁସଂସ୍କାରର ଗଣ୍ଡି ଭିତରୁ ମୁକ୍ତ ହୋଇପାରୁନାହାନ୍ତି ।

ଜ୍ଞାନ, ବିଜ୍ଞାନକୁ ଏକ ମହତ୍ତର ଲକ୍ଷ୍ୟରେ ପ୍ରୟୋଗ କରାଯାଇପାରେ କିମ୍ବା ସ୍ୱାର୍ଥସାଧନ ଦିଗରେ ବିନିଯୋଗ କରାଯାଇପାରେ । ମଣିଷ ମନର ଆସୁରିକ ପ୍ରକୃତି ସମାଜରେ ଅନେକ ଦୁଃଖ ଦୁର୍ଦ୍ଦଶାର ପରିବେଶ ଆଣିଛି । ଯୁଦ୍ଧ, ବିଭୀଷିକା, ଶୋଷଣ, ଅତ୍ୟାଚାର, କ୍ରୀତଦାସ ପ୍ରଥା, ଅସ୍ପୃଶ୍ୟତା ପରି ଅମାନବିକ ଘଟଣା ଇତିହାସରେ ଅନେକ ଥର ଘଟିଯାଇଛି । ସେହିପରି ବିଜ୍ଞାନକୁ ଯଦି ମାନବ ସମାଜର ହିତ ପରିବର୍ତ୍ତେ ଶୋଷଣ, ଅତ୍ୟାଚାର ପାଇଁ ପ୍ରୟୋଗ କରାଯାଏ ତେବେ ତାହା ସମାଜରେ ନାନା ଦୁଃଖଦୁର୍ଦ୍ଦଶାର ପରିଣତି ସୃଷ୍ଟି କରିବ । ସୁତରାଂ ଜ୍ଞାନବିଜ୍ଞାନକୁ କିପରି ମହତ୍ତର ଲକ୍ଷ୍ୟରେ ବିନିଯୋଗ କରାଯିବ ଏଥିପାଇଁ ଆନ୍ତର୍ଜାତିକ ସ୍ତରରେ କିଛି ସଚେତନତା ସୃଷ୍ଟି ହେବା ଏକ ସ୍ୱାଗତଯୋଗ୍ୟ ଘଟଣା ।

ଆଧୁନିକ ଜ୍ଞାନ ଓ ପ୍ରଯୁକ୍ତିଗତ ସାମର୍ଥ୍ୟ ସମୟ ଓ ଦୂରତାକୁ ଯଥେଷ୍ଟ ହ୍ରାସ କରିପାରିଛି । ଏହି ପୃଷ୍ଠଭୂମିରେ ପୃଥିବୀ କ୍ଷୁଦ୍ର ହୋଇ ଚାଲିଛି । ସବୁ ମଣିଷ ଯେ ଗୋଟିଏ

ଡୋରିରେ ବନ୍ଧା ଏହି ପ୍ରକାରର ଏକ ଭାବନା କ୍ରମେ ସୃଷ୍ଟି ହୋଇଛି । ସମଗ୍ର ମାନବ ସମାଜ ଗୋଟିଏ ପରିବାର, ବିଶ୍ୱ ଏକ କୁଟୁମ୍ବ ଏହି ପ୍ରକାରର କିଛି ଭାବନା ବହୁ ଅତୀତରେ କିଛି ମାନବବାଦୀ ଦାର୍ଶନିକଙ୍କ ବିଚାରକୁ ଆସିଥିଲେ ବି ଆଧୁନିକ ଯୁଗରେ ବିଜ୍ଞାନର ଅବଦାନ ଯୋଗୁ ତାହା ବାସ୍ତବରେ ସମ୍ଭବ ହେବାର ପରିବେଶ ଆସିଛି ।

ଗୋଟିଏ ସମୟରେ ରାଷ୍ଟ୍ରଭାବନା, ଧର୍ମ ଓ ନୃବଂଶୀୟ ପରିଚୟକୁ ନେଇ ମଣିଷ ସମାଜରେ ବହୁ ବିଦ୍ୱେଷାତ୍ମକ ମନୋଭାବ ରହିଥିଲା । ରାଷ୍ଟ୍ରୀୟ ଚେତନାକୁ ନେଇ ଦେଶ ଦେଶ ଭିତରେ ଭୌଗୋଳିକ ସୀମା ଜନିତ ବିବାଦ ସାରା ପୃଥିବୀରେ ସୃଷ୍ଟି ହୋଇଥିଲା । ଏଥିପାଇଁ ପ୍ରତ୍ୟେକ ରାଷ୍ଟ୍ର ନିଜ ଭୌଗୋଳିକ ସୀମାର ସୁରକ୍ଷା ପାଇଁ ପ୍ରତିରକ୍ଷା କ୍ଷେତ୍ରରେ ଅପର୍ଯ୍ୟାପ୍ତ ଅର୍ଥ ବିନିଯୋଗ କରିବା ଦେଖାଯାଏ । ପ୍ରତ୍ୟେକ ରାଷ୍ଟ୍ର ପ୍ରତିରକ୍ଷା କ୍ଷେତ୍ରରେ ଖର୍ଚ୍ଚ କରୁଥିବା ପ୍ରଭୂତ ସମ୍ବଳକୁ ଜନକଲ୍ୟାଣ ଦିଗରେ ବିନିଯୋଗ କରିପାରିଲେ ସମ୍ଭବତଃ ପୃଥିବୀରୁ ସକଳ ଦାରିଦ୍ର୍ୟ ଦୂର ହୋଇ ପାରନ୍ତା । ଅବଶ୍ୟ ରାଷ୍ଟ୍ରୀୟ ବିଚ୍ଛିନ୍ନତାବାଦ ଧୀରେ ଧୀରେ ପୃଥିବୀରୁ ହ୍ରାସ ପାଇବାରେ ଲାଗିଛି । ବହୁ କ୍ଷେତ୍ରରେ ଦେଶ-ଦେଶ ଭିତରେ ସମ୍ବନ୍ଧ ଓ ସହଯୋଗ ଏକ ବିଂଶ ଶତାବ୍ଦୀ ଆରମ୍ଭ ପୂର୍ବରୁ ବୃଦ୍ଧି ପାଇ ଚାଲିଛି । ବହୁ ମାନବିକ ଓ ପାରିବେଶିକ ସମସ୍ୟା ଆନ୍ତର୍ଜାତିକ ସ୍ତରରେ ଓ ଜାତିସଂଘ ପରିସରରେ ଆଲୋଚିତ ହେଉଛି । ସମଗ୍ର ମଣିଷ ସମାଜ ପାଇଁ ଯେଉଁ କ୍ଷେତ୍ରରେ ବିପଦର ସମ୍ଭାବନା ରହିଛି, ତାହାର ସଫଳ ମୁକାବିଲା ପାଇଁ ଆନ୍ତରାଷ୍ଟ୍ରୀୟ ସହଯୋଗ ଆବଶ୍ୟକ ପଡୁଛି । ପୁନଶ୍ଚ ଅର୍ଥନୈତିକ, ସାଂସ୍କୃତିକ ଓ ରାଜନୈତିକ ସହଯୋଗ ଓ ସ୍ୱାର୍ଥରକ୍ଷା ପାଇଁ ଦେଶମାନେ ଏକତ୍ରିତ ହେଉଛନ୍ତି । କେତେକ କ୍ଷେତ୍ରରେ ଅନ୍ତାରାଷ୍ଟ୍ରୀୟ ସହଯୋଗରେ ଉଚ୍ଚମାନର ଗବେଷଣା କରାଯାଉଛି । କେତେକ ପ୍ରସଙ୍ଗ କ୍ଷେତ୍ରରେ ଆନ୍ତର୍ଜାତିକ ସହଯୋଗ ଆଧାରରେ ଜ୍ଞାନର ବିକାଶ ଓ ଗବେଷଣା କ୍ଷେତ୍ରରେ ନୂଆ ଦିଗନ୍ତ ସୃଷ୍ଟି ହେଉଛି । କେତେକ ବିଶ୍ୱ ଚିନ୍ତାନାୟକ ଭୌଗୋଳିକ ପରିସୀମା ବିହୀନ ଏକ ବିଶ୍ୱର ସ୍ୱପ୍ନ ଦେଖୁଛନ୍ତି । ରାଷ୍ଟ୍ର ଜନିତ ବିଭାଜନର ଭାବନା ଦିନେ ବିଲୁପ୍ତ ହେବ ଓ ସମଗ୍ର ମଣିଷ ସମାଜ ଯେ ଗୋଟିଏ ଡୋରିରେ ଛନ୍ଦା ହୋଇଛନ୍ତି, ଏହି ଭାବନା ବାସ୍ତବତାରେ ପରିଣତ ହେବ । ଅତୀତରେ ମଣିଷର ବୌଦ୍ଧିକ ଦୁନିଆଟି ଅତି ଛୋଟ ଥିଲା । ସେହି ଯୁଗରେ ସେ କେଉଁ ରାଜ୍ୟର ଅଧିବାସୀ, ଏହା ତାର ବଡ ପରିଚୟ ଥିଲା । ଏହାପରେ ରାଷ୍ଟ୍ର ଭାବନା ବିକଶିତ ହେଲା । ରାଷ୍ଟ୍ର ଭାବନାର ବିକାଶ ପରେ ଜାତୀୟତା ନେଇ ଦୃଢ଼ ସଚେତନତା ଆସିଲା । ପ୍ରତ୍ୟେକ ବ୍ୟକ୍ତି ଏକ ରାଷ୍ଟ୍ରର ନାଗରିକ ଏହି ପରିଚୟଟି ବ୍ୟକ୍ତିର ସାମାଜିକ ଚେତନାକୁ ଗଭୀର ଭାବେ ପ୍ରଭାବିତ କଲା । ସାଂପ୍ରତିକ ଜ୍ଞାନକୌଶଳ ଓ ପ୍ରଯୁକ୍ତି ସାରା ପୃଥିବୀକୁ ଗୋଟିଏ

କ୍ଷୁଦ୍ର ଗ୍ରାମରେ ପରିଣତ କରିପାରିଛି । ସାରା ପୃଥିବୀର ଜନଗଣଙ୍କ ଭିତରୁ ଦାରିଦ୍ର୍ୟ, ରୋଗ, ନିରକ୍ଷରତା ଇତ୍ୟାଦିକୁ ଦୂର କରିବାକୁ ସମଗ୍ର ବିଶ୍ୱରେ ଚିନ୍ତା ପ୍ରକଟ ହେଉଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ କାଳରେ ଜାତୀୟତାବୋଧ ଜନିତ ଅସ୍ମିତାର ସାରା ପୃଥିବୀରେ ଏକ ଅସ୍ୱସ୍ତିକର ଓ ଅବିଶ୍ୱାସର ବାତାବରଣ ରହିଥିଲା । ରାଜନୈତିକ ଓ ଅର୍ଥନୈତିକ ଆଦର୍ଶ ଦୃଷ୍ଟିରୁ ପୃଥିବୀ ଭାଗ ଭାଗ ହୋଇ ରହିଥିଲା । ଗୋଟିଏ ସମୟରେ ଆଣବିକ ଶକ୍ତିର ଅଧିକାରୀ ହେବାକୁ ଉନ୍ନତ ରାଷ୍ଟ୍ରମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଥିଲା । ଆସ୍ତେ ଆସ୍ତେ ବିଜ୍ଞାନର ଜ୍ଞାନ ବିଶ୍ୱବ୍ୟାପୀ ହୋଇଯିବାରୁ ଏହି ପ୍ରତ୍ୟୟ ଆସିଲା ଯେ ପୃଥିବୀରେ ଆଣବିକ ଯୁଦ୍ଧର ପରିବେଶ ଆସିଲେ ଜୟ, ପରାଜୟର ପ୍ରଶ୍ନ ଅବାନ୍ତର ହୋଇଯିବ, ବରଂ ସାରା ପୃଥିବୀ ଧ୍ୱଂସସ୍ତୂପରେ ପରିଣତ ହେବ । ଆଣବିକ ଶକ୍ତିର ଯେପରି ଅପପ୍ରୟୋଗ ନହୁଏ ସେଥିପାଇଁ ସାରା ପୃଥିବୀର ଶାନ୍ତିକାମୀ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ମାନବବାଦୀ ବ୍ୟକ୍ତିଗଣ ଗଭୀର ଚିନ୍ତା ପ୍ରକଟ କଲେ । ଗତ ଶତାବ୍ଦୀର ଅଶୀ ଦଶକରେ ଏଥିପାଇଁ ଭିଏନାଠାରେ ଏକ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେଲା । ଏହାକୁ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ମାନବିକତାର ବିଜୟ ବୋଲି କୁହାଗଲା ।

ଏକଥା ସତ୍ୟ ଯେ ମଣିଷ ସମାଜରେ ନାନା ସମସ୍ୟା ରହିଛି । ନାନା ଭେଦଭାବ, ଅବିଶ୍ୱାସର ମାନସିକତା, ବିଦ୍ୱେଷ ଓ ଅସହିଷ୍ଣୁତା ଜନମାନସକୁ ମନ୍ଦ ଦିଗରେ ପ୍ରଭାବିତ କରିଆସିଛି । ମନୁଷ୍ୟର ମନ ମାନବ ସମାଜର ମଙ୍ଗଳ ଚିନ୍ତା କରିପାରୁନାହିଁ । ଏହି କ୍ଷେତ୍ରରେ ଧାର୍ମିକ ଆବେଗ ଓ ଜାତୀୟତା ବୋଧ ସବୁଠାରୁ ବଡ ବିଭେଦକାରୀ ଭାବନା ଭାବେ ଜନମାନସରେ ରହିଛି । ତେବେ ବିଜ୍ଞାନ ଏପରି ଏକ ସଂସ୍କୃତି ନିର୍ମାଣ କରିଚାଲିଛି ଯେଉଁଥିରେ ଏପରି ଏକ ଭାବନା ସୃଷ୍ଟି ହୋଇଛି ଯେ ପ୍ରତ୍ୟେକ ବ୍ୟକ୍ତି ଏକ ବିଶ୍ୱ ନାଗରିକ । ସମଗ୍ର ପୃଥିବୀର ଜନଗଣ ଗୋଟିଏ ଡୋରିରେ ବନ୍ଧା । ପରସ୍ପର ଭିତରେ କଳହ ଓ ତିକ୍ତତା ସୃଷ୍ଟକଲେ ତାହା ଆମର ଅଧିକ କ୍ଷତିସାଧନ ହିଁ କରିବ । ହିଂସା, ଅସହିଷ୍ଣୁତା କେବେ ବି ଜୀବନର ମୂଲ୍ୟବୋଧ ହୋଇପାରିବ ନାହିଁ । ବରଂ ଭାତୃତ୍ୱଭାବ, ସମ୍ବେଦନଶୀଳ ଜୀବନଦୃଷ୍ଟି ଓ ମାନବିକତା ଏକ ପ୍ରୀତିଭରା ଉନ୍ନତ ବିଶ୍ୱ ସୃଷ୍ଟି କରିପାରିବ । ଆସ୍ତେ ଆସ୍ତେ ସଭ୍ୟତା ମାନଙ୍କରେ ଥିବା ବହୁ ଅନ୍ଧକାର ମାନବିକତାର ଆଲୋକରେ ଦୂର ହୋଇଚାଲିଛି । ଯଦି ଅନ୍ୟ କାରଣରୁ ମଣିଷ ସଭ୍ୟତା କୌଣସି ଗୁରୁତର ଆହ୍ୱାନର ସମ୍ମୁଖୀନ ନ ହୁଏ, ତେବେ ଦ୍ୱାବିଂଶ ଶତାବ୍ଦୀ ବେଳକୁ ସମଗ୍ର ପୃଥିବୀରେ ଏକ ବିଶ୍ୱସରକାର ପ୍ରତିଷ୍ଠା ଲାଭକରିବ । ଏକ ସର୍ବଜନହିତୈଷୀ ବିଶ୍ୱଭାବ ପୃଥିବୀର ଜନଗଣଙ୍କ ପାଇଁ ଆଦର୍ଶ ହେବ ।

ପ୍ରତ୍ୟେକ ବ୍ୟକ୍ତିର ମୂଲ୍ୟ ରହିଛି, ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ବଞ୍ଚିବାର ଅଧିକାର ହେଉଛି ପବିତ୍ର । ବର୍ଣ୍ଣ, ଲିଙ୍ଗ, ଜାତି ଇତ୍ୟାଦିକୁ ନେଇ ପୃଥିବୀରେ ଯେତେ ଭେଦଭାବ ସୃଷ୍ଟି ହୋଇଛି ତାହା ଧୀରେ ଧୀରେ ଅତୀତ ଯୁଗର ଅମାନବିକ କାହାଣୀ ହେବାରେ ଲାଗିଛି । ପୃଥିବୀରେ ଏପରି ଏକ ନୂତନ ସଂସ୍କୃତି ଗଢ଼ି ଉଠୁଛି ଯାହା ପ୍ରତ୍ୟେକ ବ୍ୟକ୍ତି ଭିତରେ ମାନବିକ ଅଧିକାର, ସାମାଜିକ ସମତା, ବ୍ୟକ୍ତିମର୍ଯ୍ୟାଦାବୋଧ ଓ ମାନବବାଦୀ ଜୀବନଦର୍ଶନକୁ ପ୍ରସାର କରିପାରିବ । ଏହି ମୂଲ୍ୟବୋଧ ଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ରାଷ୍ଟ୍ର ବା ସଂସ୍କୃତିର ଅବଦାନ ନୁହେଁ, ବରଂ ସେଗୁଡ଼ିକ ହେଉଛି ଆନ୍ତର୍ସାଂସ୍କୃତିକ । ଗମନାଗମନ, ସ୍ୱାସ୍ଥ୍ୟସେବା, ପ୍ରଚୁର ଉତ୍ପାଦନ, ଶୈକ୍ଷିକ ପରିବେଶ, ମାନବିକ ଅଧିକାର ଜନିତ ବିଶ୍ୱ ସଚେତନତା ଇତ୍ୟାଦି କ୍ଷେତ୍ରରେ ପୃଥିବୀର ଯେଉଁ ସୃଜନଶୀଳ ବ୍ୟକ୍ତିମାନେ ମହାନ ଅବଦାନ ଦେଇ ଯାଇଛନ୍ତି ସେମାନେ ମଣିଷ ଜାତିର ମଙ୍ଗଳ ପାଇଁ କରିଛନ୍ତି, ନିଜ ଦେଶ ବା ଧର୍ମର ଲୋକଙ୍କ ପାଇଁ କରିନାହାନ୍ତି । ଯେଉଁମାନଙ୍କର ବିଚାରବୋଧ ଓ ବୌଦ୍ଧିକ ଅବଦାନରୁ ସଭ୍ୟତା ଆଗକୁ ଯାଇଛି, ମାନବିକତାର ବାର୍ତ୍ତା ସୁଦୃଢ଼ ହୋଇଛି, ବିଶ୍ୱବିବେକର ଆବେଦନ ଆସିଛି ଓ ପୃଥିବୀରୁ ବହୁ ଦୁଃଖ, ଦୁର୍ଦ୍ଦଶା, ଅନ୍ୟାୟ ଓ ଅମାନବିକତା ଦୂର ହୋଇଛି ସେହି ବ୍ୟକ୍ତିମାନେ ହିଁ ମାନବ ସମୁଦାୟର ଆଲୋକ-ବର୍ତ୍ତିକା ।

ଯୁଦ୍ଧମୁକ୍ତ ବିଶ୍ୱ ଦିଗରେ ପୃଥିବୀର ଅଗ୍ରଗତି ସଭ୍ୟତାର ଏକ ବଡ ଉତ୍ତରଣ । ତେବେ ନାନା କାରଣ ନେଇ ଆଜିର ବିଶ୍ୱରେ ସଂତ୍ରାସବାଦ ଯେପରି ମୁଣ୍ଡ ଟେକୁଛି ତାହା ବି ସଭ୍ୟ ଜୀବନଦୃଷ୍ଟିର ପରିପନ୍ଥୀ । ହିଂସା, ସନ୍ତ୍ରାସବାଦ ଏକ ବିଚ୍ଛିନ୍ନତାବାଦୀ ଦୃଷ୍ଟିଭଙ୍ଗୀର ଅଭିବ୍ୟକ୍ତି । ସନ୍ତ୍ରାସବାଦର ମୂଳ ଆଧାରଟି ହେଉଛି ଘୃଣା ଓ ବିଦ୍ୱେଷ । ସେହିପରି ଅର୍ଥନୈତିକ ଶୋଷଣ ବି ବେଳକେ ସନ୍ତ୍ରାସବାଦକୁ ଜନ୍ମ ଦେଇଥାଏ । ଯେଉଁ ସବୁ କାରଣରୁ ସାଂପ୍ରଦାୟିକତା, ବିଚ୍ଛିନ୍ନତାବାଦ ଓ ଅର୍ଥନୈତିକ ଶୋଷଣ କେତେକ ରାଷ୍ଟ୍ରରେ ଦୃଢ଼ ହୋଇ ରହୁଛି ସେ ସବୁକୁ ଅନୁଶୀଳନ କରି ତାହାର ଦୂରୀକରଣ ପାଇଁ ସୁଚିନ୍ତିତ ପନ୍ଥା ବାହାର କରିବାକୁ ହେବ । ଯେଉଁ ଦେଶମାନଙ୍କରେ ଦାରିଦ୍ର୍ୟ ଉତ୍କଟ ହୋଇ ରହିଛି, ଆନ୍ତର୍ଜାତିକ ସହଯୋଗରେ ତାକୁ ଅକ୍ଳେଶରେ ଦୂର କରାଯାଇ ପାରିବ । ରୋଗମୁକ୍ତ, କ୍ଷୁଧାମୁକ୍ତ, ନିରକ୍ଷରତାମୁକ୍ତ ଏକ ସୁନ୍ଦର ପୃଥିବୀର ରୂପାୟନ ପାଇଁ ବିଶ୍ୱ ସ୍ତରରେ ନାନା ସଂଗଠନ ସକ୍ରିୟ ଭାବେ କାର୍ଯ୍ୟ କରୁଛନ୍ତି । ସେହିପରି ହିଂସାମୁକ୍ତ, ଭେଦଭାବମୁକ୍ତ ବିଶ୍ୱ ଦିଗରେ ବି ସାରା ପୃଥିବୀରେ ସଚେତନତା ବ୍ୟକ୍ତ ହେବାରେ ଲାଗିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଜାତିସଂଘ ପରି ସଂଗଠନ ପୃଥିବୀରେ ଏକ ବିଶ୍ୱ, ଏକ ମାନବଜାତି ନେଇ ଯେଉଁ

ସଚେତନତାର ପରିବେଶ ସୃଷ୍ଟି କରିଛି ଆଗାମୀ ଦିନମାନଙ୍କରେ ତାହା ଯେ ଏକ ବାସ୍ତବ ଚିତ୍ର ନେବ ଏହା ଆଶା କାରଯାଏ ।

ତିନି ଶହ ବର୍ଷ ଭିତରେ ବିଜ୍ଞାନ ମଣିଷ ସମୁଦାୟକୁ ବାହ୍ୟିକ ସ୍ତରରେ ଏକ ଡୋରିରେ ବାନ୍ଧି ପାରିଛି । ବିଜ୍ଞାନ ସତ୍ୟର ସଂଧାନ କରିବାକୁ ଯାଇ ବିଶ୍ୱକୁ ଏକତ୍ର କରିବାକୁ ପ୍ରଯୁକ୍ତି ସୃଷ୍ଟି କରିଛି । ଏହି ଧାରାରେ ପୃଥିବୀରୁ ଅନେକ ଅଜ୍ଞତା ଓ କୁସଂସ୍କାର ବିଲୋପ ଘଟିଛି । ଏହି ପୃଷ୍ଠଭୂମିରେ ହେତୁବାଦ ଯେପରି ମାନବିକତାର ଜୟଗାନ କରିଚାଲିଛି ଓ ସାରା ବିଶ୍ୱରେ ଭ୍ରାତୃତ୍ୱଭାବ, ସାମାଜିକ ନ୍ୟାୟ ଓ ସମତାର ବିଚାର ପ୍ରସାର କରିଛି ତାହାର ଭବିଷ୍ୟତ ପରିଣାମ ଅନେକ ଆଶା ସଂଚାର କରୁଛି । ବିଜ୍ଞାନ ଓ ମାନବିକତାର ସମନ୍ୱୟରେ ଯେଉଁ ନୂତନ ସାଂସ୍କୃତିକ ବାର୍ତ୍ତାଟି ମୁଣ୍ଡ ଟେକୁଛି ତାହାର ପ୍ରଭାବରେ ମଣିଷ ସମାଜର ଯେ ନବଜନ୍ମ ହେବ ଏହା ଆଶା କରାଯାଏ । ବିଶ୍ୱ ଗୋଟିଏ ପରିବାର, ମଣିଷଜାତି ଏକ ଡୋରିରେ ବନ୍ଧା ଓ ସମସ୍ତେ ସୁଖ ଶାନ୍ତିରେ ଜୀବନନିର୍ବାହ କରନ୍ତୁ ଯାହା ଅତୀତର କିଛି ମାନବବାଦୀ ଦାର୍ଶନିକଙ୍କର ସ୍ୱପ୍ନ ଥିଲା, ତାହାକୁ ବିଜ୍ଞାନ ଓ ହେତୁବାଦ ଆଧାରିତ ମାନବବାଦ ଯେ ବାସ୍ତବରେ ସାକାର କରିବାକୁ ଯାଉଛନ୍ତି ଏହା ଏକ ଉନ୍ନତ ଭବିଷ୍ୟତର ଆଶା ସଂଚାର କରୁଛି ।

(୪.୬.୨୦୧୪)



# ସଭ୍ୟତାର ଆଲୋକ

ପ୍ରତ୍ୟେକ ପ୍ରାଣୀର କେତେକ ସହଜାତ ପ୍ରବୃତ୍ତି ଥାଏ । ମନୁଷ୍ୟର ମଧ୍ୟ କିଛି ସହଜାତ ପ୍ରବୃତ୍ତି ରହିଛି । ଏହା ଅନସ୍ୱୀକାର୍ଯ୍ୟ ଯେ ମଣିଷ ଭିତରେ ଏକ ସାମାଜିକ ପ୍ରବୃତ୍ତି ରହିଛି । ମନୁଷ୍ୟ ଯେତେ ବୁଦ୍ଧିମାନ ବା ଶକ୍ତିମାନ ହେଲେ ମଧ୍ୟ ସେ ସମାଜ ବ୍ୟତୀତ ଜୀବନଧାରଣ କରିପାରିବ ନାହିଁ । ଜୀବନର ସକଳ ଆବଶ୍ୟକତା, ନିରାପତ୍ତା ଓ ମାନସିକ ତଥା ବୌଦ୍ଧିକ ବିକାଶ ପାଇଁ ବ୍ୟକ୍ତିକୁ ଏକ ବୃହତ୍ତର ଗୋଷ୍ଠୀ ବା ସମାଜ ଉପରେ ନିର୍ଭର କରିବାକୁ ପଡିଥାଏ । ସାମାଜିକ ନିର୍ଭରଶୀଳତାରୁ ସମାଜ ସହ ଆଦାନ ପ୍ରଦାନର ଭାବନା ଆସିଥାଏ । ବ୍ୟକ୍ତି ତାର ସାମର୍ଥ୍ୟ ଓ ମାନସିକ ବିକାଶ ଅନୁଯାୟୀ ସମାଜକୁ ଅବଦାନ ଦିଏ ଓ ସାମାଜିକ ଜୀବନ ପ୍ରବାହର ଭାଗୀଦାରୀ ହୁଏ । ସାମାଜିକ ଆଦାନ ପ୍ରଦାନ ପ୍ରକ୍ରିୟାରେ ହଜାର ହଜାର ବର୍ଷର କ୍ରମବିକାଶ ମଧ୍ୟ ଦେଇ ଭାଷା, ସାହିତ୍ୟ, ସଂସ୍କୃତି, ଧର୍ମ, ବିଜ୍ଞାନ, ରାଜନୈତିକ ବ୍ୟବସ୍ଥା ଇତ୍ୟାଦିର ଅଭ୍ୟୁଦୟ ହେବା ଦେଖାଯାଏ । ଏ ସବୁର ବିକାଶ ଏକ ସଂଘବଦ୍ଧ ପ୍ରୟାସର ଯେ ପରିଣାମ ଏହା କୁହାଯାଇପାରେ । ବ୍ୟକ୍ତି ଯେହେତୁ ସମାଜରେ ରହେ, ସେହି ଧାରାରେ ସେ ଏକ ସଂସ୍କୃତିର ଭାଗୀଦାର ହୁଏ, ଏକ ବା ଏକାଧିକ ଭାଷାରେ ଭାବର ଆଦାନ ପ୍ରଦାନ କରେ, ନିଜର ଏକ ପରିଚୟ ସୃଷ୍ଟି କରେ ।

ଅତୀତରେ ମଣିଷର ସଂସାରଟି ଅତି କ୍ଷୁଦ୍ର ପରିସରରେ ସୀମିତ ଥିଲା । ଏ ବିରାଟ ପୃଥିବୀଟି ନଦୀ, ପର୍ବତ, ସମୁଦ୍ର, ମରୁଭୂମି, ହ୍ରଦ ଇତ୍ୟାଦି ଯୋଗୁ ଭାଗ ଭାଗ ହୋଇ ରହିଥିଲା । ଗୋଟିଏ ଅଞ୍ଚଳର ମଣିଷଙ୍କ ସହିତ ଅନ୍ୟ ଅଞ୍ଚଳର ମଣିଷଙ୍କର ସମ୍ପର୍କ ନଥିଲା । ପୃଥିବୀରେ ଏକକାଳୀନ ବହୁ ସଭ୍ୟତା ଓ ଭାଷା ବିଭିନ୍ନ ଭୂଖଣ୍ଡରେ ବିକଶିତ ହୋଇଥିଲା । ଯଦି ମଣିଷକୁ କେଉଁ ଈଶ୍ୱର ସୃଷ୍ଟି କରିଥାନ୍ତେ, ତେବେ ସବୁ ମଣିଷଙ୍କର ଭାଷା ଏକ ହୋଇଥାନ୍ତା । କିନ୍ତୁ ଆମ ସଂସାରରେ ହଜାର ହଜାର ଭାଷାର ଅଭ୍ୟୁଦୟ ହେବା ଏକ ବାସ୍ତବତା । ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ମଧ୍ୟ ଦେଇ ବିଭିନ୍ନ

ଭୌଗୋଳିକ ଭୂଖଣ୍ଡରେ ମଣିଷ ମାନଙ୍କର ଆବିର୍ଭାବ ପରେ ଭାବ ବିନିମୟର ଆବଶ୍ୟକତାରୁ ଭାଷାମାନ ସୃଷ୍ଟି ହୋଇଛି । ମଣିଷର ମସ୍ତିଷ୍କର ଉନ୍ନତି ସହ ଭାଷା କହିବାର ସାମର୍ଥ୍ୟରୁ ସଭ୍ୟତାର ବିକାଶ ପାଇଁ ପରିବେଶ ଆସିଛି । ସବୁ ସଭ୍ୟତାରେ କିଛି ଚିନ୍ତାଶୀଳ, ଅନୁସନ୍ଧିତ୍ସୁ ଲୋକଙ୍କର ଅବଦାନରୁ ସଭ୍ୟତା ଆଗକୁ ଯାଇଛି, ଜୀବନର ମାନରେ ପରିବର୍ତ୍ତନ ଘଟିଛି । ବିଭିନ୍ନ ଭୂଖଣ୍ଡରେ ଉଚ୍ଚ ଚିନ୍ତାର ଯେଉଁ ସ୍ରୋତଟି ମାନ ସୃଷ୍ଟି ହୋଇଛି ବହୁ ପରେ ଏହି ସ୍ରୋତମାନ ଏକତ୍ର ହୋଇ ମାନବ ଜାତିର ବିକାଶକୁ ଋଦ୍ଧିମନ୍ତ କରିଛି । ଜ୍ଞାନ ବିଜ୍ଞାନର ଯେଉଁ ରତ୍ନମାନ ପୃଥିବୀ ପୃଷ୍ଠର ବିଭିନ୍ନ ସଭ୍ୟତାରେ ଖେଳେଇ ହୋଇ ପଡିଥିଲା, ବହୁ ପରେ ମଣିଷ ସେ ସବୁକୁ ସଂଗ୍ରହ କରି ଜୀବନର ଉତ୍କର୍ଷ ସୃଷ୍ଟି କରିଛି । ଗୋଟିଏ ସମୟରେ ଅନ୍ୟର ସଭ୍ୟତା, ଜ୍ଞାନ, ମହନୀୟତା ବୁଝିବା ପାଇଁ ଭାଷା ପ୍ରତିବନ୍ଧକ ହୋଇ ରହିଥିଲା । କେବଳ ନିଜ ଭାଷାଟିରେ ସୀମାବଦ୍ଧ ଥିବା ବେଳେ ମଣିଷ କୂପମଣ୍ଡୁକ ହୋଇ ରହିଯାଉଥିଲା । କାଳକ୍ରମେ ବିଭିନ୍ନ ଭାଷାର ଜ୍ଞାନରାଜି ଅନ୍ୟ ଭାଷାରେ ଅନୁବାଦ ହେବାଦ୍ୱାରା ଜ୍ଞାନ ସାର୍ବଜନୀନ ହେବାକୁ ଲାଗିଲା । ବିଜ୍ଞାନର ଯୁଗ ଆସିବା ପରେ ଆଧୁନିକ ପ୍ରଯୁକ୍ତି ପୃଥିବୀର ଜନଗଣଙ୍କୁ ଏକ ରଜ୍ଜୁରେ ବାନ୍ଧି ପାରିଲା । ପୃଥିବୀରୁ ଦୂରତା ଲୋପ ପାଇଲା ।

ଆଜି ଆମେ ଯେଉଁ ଯୁଗରେ ବଞ୍ଚୁଛେ ଓ ନାନା ସୁବିଧା, ସୁଯୋଗ ଉପଭୋଗ କରୁଛେ ଏହା ପଶ୍ଚାତରେ ବହୁ ସୃଜନଶୀଳ ମନୁଷ୍ୟଙ୍କର ଅବଦାନ ରହିଛି । ଯଦି ସଭ୍ୟତା-ସଭ୍ୟତା ଭିତରେ ଆଦାନ ପ୍ରଦାନର ପରିବେଶ ଆସିନଥାନ୍ତା, ଜ୍ଞାନର ସାମାଜିକୀକରଣ ହୋଇନଥାନ୍ତା, ବୈଜ୍ଞାନିକ ଉଦ୍‌ଭାବନ, ଆବିଷ୍କାର ସର୍ବବ୍ୟାପୀ ହେବାର ପରିସ୍ଥିତି ସୃଷ୍ଟି ହୋଇନଥାନ୍ତା, ତେବେ ଜୀବନ କେତେ ସଙ୍କୁଚିତ ହୋଇ ରହିଥାନ୍ତା, ତାହା ସହଜରେ ଅନୁମେୟ । ପ୍ରତ୍ୟେକ ସଭ୍ୟତାରେ ମନୁଷ୍ୟ ଯେଉଁ ଜ୍ଞାନ, ପ୍ରଜ୍ଞା, ମହତ୍ତ୍ୱର ଜୀବନବୋଧର ଅଧିକାରୀ ହେଲା ତାହା ଅନ୍ୟମାନଙ୍କୁ ଜଣାଇଲା । ମଣିଷ ଓ ବିଶେଷକରି ଜ୍ଞାନଦୀପ୍ତ ବ୍ୟକ୍ତିମାନେ ଯେଉଁ ଜ୍ଞାନର ଅଧିକାରୀ ହୋଇଛନ୍ତି ତାହାକୁ ମଣିଷଜାତିର ମଙ୍ଗଳ, ଉପକାର ପାଇଁ ଦାନ କରିଛନ୍ତି । କିଛି ବ୍ୟକ୍ତି ସମାଜ କିପରି ଉନ୍ନତ ହେବ, ମଣିଷ ସମାଜରୁ ଦୁଃଖ-ଦୁର୍ଦ୍ଦଶା ହ୍ରାସ ପାଇବ ସେ ନେଇ ଗଭୀର ସଂପୃକ୍ତି ବ୍ୟକ୍ତ କରି ଆସିଛନ୍ତି । ମଣିଷ ସମାଜର ମଙ୍ଗଳ ପାଇଁ, ରୋଗ ଶୋକ ଦୂର ହେବା ପାଇଁ ଜୀବନବ୍ୟାପୀ ସାଧନା କରିଛନ୍ତି, ଗବେଷଣାରେ ନିଜକୁ ନିମଜ୍ଜିତ କରିଛନ୍ତି । ସେହି ଅନୁସନ୍ଧିତ୍ସୁ ସୃଜନଶୀଳ ମନୁଷ୍ୟଙ୍କର ଅବଦାନ ଯୋଗୁ ସଭ୍ୟତାର ରୂପରେଖ ବଦଳିଛି, ଜୀବନର ଗୁଣାତ୍ମକ ମୂଲ୍ୟରେ ପରିବର୍ତ୍ତନ ଆସିଛି, ମାନବିକତାର ମୂର୍ଚ୍ଛନା ଝଙ୍କୃତ ହୋଇଛି । ହଜାର ହଜାର ବର୍ଷର ଅନୁଭୂତି, ଅଭିଜ୍ଞତା ଓ ଜ୍ଞାନ ଆଜିର ଜୀବନଯାତ୍ରା ପାଇଁ ମୂଳଧନ ହୋଇଛି । ସବୁ ସଭ୍ୟତାର ସୃଜନଶୀଳ ପ୍ରତିଭାଧର ବ୍ୟକ୍ତିମାନେ ଆଗାମୀ ବଂଶଧରମାନଙ୍କ ପାଇଁ ଯେଉଁ ଜ୍ଞାନ,

ସଂସ୍କୃତି ଦାନ କରି ଯାଇଛନ୍ତି, ସେହି ପୁଞ୍ଜି ଉପରେ ସଭ୍ୟତା ବିକଶିତ ଓ ଉନ୍ନତ ହୋଇଚାଲିଛି । ଏହି ଧାରା ଅବ୍ୟାହତ ରହିଛି ଓ ଧରାପୃଷ୍ଠରେ ମଣିଷମାନେ ଥିବା ପର୍ଯ୍ୟନ୍ତ ଏହା ଅବ୍ୟାହତ ରହିବ । ଆଜି ଭାଷା କୌଣସି କ୍ଷେତ୍ରରେ ପ୍ରତିବଂଧକ ହେଉ ନାହିଁ । ଯିଏ ଯେଉଁ ଭାଷାରେ କିଛି ମୌଳିକ ଭାବନାର ଅବତାରଣା କଲେ ତାହା ଅବିଳମ୍ବେ ସମଗ୍ର ବିଶ୍ୱରେ ପ୍ରଚାରିତ ଓ ପ୍ରସାରିତ ହୋଇଯାଉଛି । ବିଜ୍ଞାନର ବିଭିନ୍ନ କ୍ଷେତ୍ରରେ ଯେଉଁ ଅଭୂତପୂର୍ବ ଜ୍ଞାନର ବିକାଶ ହୋଇଛି ତାହା ଯେ ସମ୍ମିଳିତ ଉଦ୍ୟମର ପରିଣାମ ଓ ମାନବୀୟ ପ୍ରଜ୍ଞାର ଉତ୍ତରଣ ଏହା କୁହାଯାଇପାରେ । ମୁଦ୍ରଣ ଶିଳ୍ପ, ରେଳଗାଡି, ବିଜୁଳି ଆଲୋକର ବ୍ୟବହାର, ଅଣୁ-ପରମାଣୁ ବିଷୟକ ଜ୍ଞାନ ଓ ତହିଁରୁ ଉଦ୍ଭବ କଂପ୍ୟୁଟର, ଇଣ୍ଟରନେଟ, ମୋବାଇଲ ଫୋନ, ସାଟେଲାଇଟ କମ୍ୟୁନିକେସନ କିପରି ସଭ୍ୟତାର ରୂପରେଖ ପରିବର୍ତ୍ତନ କରିପାରିଛି ତାହା କହିବା ନିଷ୍ପ୍ରୟୋଜନ ।

ନାନା ଭୌଗୋଳିକ, ଐତିହାସିକ ଓ ସାଂସ୍କୃତିକ କାରଣରୁ ଆମ ସଂସାରରେ ନାନା ଆଞ୍ଚଳିକ ଓ ସାଂପ୍ରଦାୟିକ ଦୃଷ୍ଟିକୋଣ ବହୁ ଅତୀତରୁ ରହିଆସିଛି । ଏହା ସହିତ ସ୍ୱାର୍ଥପରତା, ଅନ୍ୟ ପ୍ରତି ବିଦ୍ୱେଷ ଭାବ, ନାନା ଭେଦଭାବ ଜନିତ ମାନସିକତା ମଣିଷ ସମାଜରେ ଅନେକଟା ରହିଛି । ଅତୀତର ନାନା ଯୁଦ୍ଧ, ବିଭୀଷିକା, ଶୋଷଣ, ଅତ୍ୟାଚାରର ଲୋମହର୍ଷଣ କାହାଣୀ ମାନ ରହିଛି । ମଣିଷ ପଶୁଠାରୁ ଅଧିକ ହିଂସ୍ର ହୋଇଛି ଓ ନିଜର ସୁଖ, ମାନ, ପ୍ରତିପତି ପାଇଁ ଅନ୍ୟ ମଣିଷର ସଂସାରକୁ ଧ୍ୱସ୍ତ ବିଧ୍ୱସ୍ତ କରିଛି । ତେବେ ଯେଉଁ ଯୁଗରେ ଜ୍ଞାନ ବିଜ୍ଞାନର ଯଥେଷ୍ଟ ବିକାଶ ହୋଇ ନଥିଲା ସେତେବେଳେ ଯୁଦ୍ଧ, ସଂଗ୍ରାମ ସମଗ୍ର ପୃଥିବୀ ପାଇଁ ଆଶଙ୍କା ସୃଷ୍ଟି କରୁନଥିଲା । ଏସବୁ ଆଞ୍ଚଳିକ ସ୍ତରରେ ବା ଦୁଇଟି ପୃଥକ୍ ଜନଗୋଷ୍ଠୀ ବା ଦେଶ ଭିତରେ ସୀମାବଦ୍ଧ ରହୁଥିଲା । ତେବେ ସଂପ୍ରତି ଜ୍ଞାନର ଦିଗନ୍ତ ଏତେ ବିସ୍ତାରଲାଭ କରିଯାଇଛି ଯେ ଯଦି ଜ୍ଞାନର ବିକାଶ ସହ ମାନବିକତାର ସମନ୍ୱୟ ନ ହୁଏ, ତେବେ ବିଜ୍ଞାନ ସଭ୍ୟତାର ଆତ୍ମହତ୍ୟାର କାରଣ ହେବ ।

ମଣିଷ ପରମାଣୁ ଯୁଗରେ ପଦାର୍ପଣ କରିବା ତଥା ମହାକାଶ ଯାତ୍ରାରେ ସଫଳ ହେବା ଆଧୁନିକ ବିଜ୍ଞାନର ଚମତ୍କାରିତା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଜ୍ଞାନରୁ ଆଶାତୀତ ସୁଫଳ ମଣିଷ ଜାତି ପାଇବାକୁ ସମର୍ଥ ହୋଇପାରିଛି । ତେବେ ମଣିଷର ବି କିଛି ଦୁର୍ବୁଦ୍ଧି ରହିଛି । ଏହି ଜ୍ଞାନ ଯଦି ସାମରିକ ଶକ୍ତି ବୃଦ୍ଧି ପାଇଁ ବିନିଯୋଗ ହୁଏ ଓ ରାଷ୍ଟ୍ରମାନଙ୍କ ମଧ୍ୟରେ ଅବିଶ୍ୱାସ, ତିକ୍ତତା ଓ ଅସହିଷ୍ଣୁତା ବୃଦ୍ଧିପାଏ, ତେବେ ତାର ପରିଣତି ସଭ୍ୟତା ପାଇଁ ଦୁର୍ଭାଗ୍ୟଜନକ ହେବ । ଜ୍ଞାନକୁ ମାନବ ସମାଜର ହିତ ଦିଗରେ ବିନିଯୋଗ କରିବା ହିଁ ସଭ୍ୟତା ଓ ମାନବିକତା, ଅପରପକ୍ଷରେ ଜ୍ଞାନକୁ ଅହିତକର ଲକ୍ଷ୍ୟରେ ପ୍ରୟୋଗ କରିବା ହେଲା ବର୍ବରତା । ସଭ୍ୟତାର ବଡ ବିଡମ୍ବନା ଯେ ମଣିଷ ଜାତି ବହୁ ଜ୍ଞାନବିଜ୍ଞାନର ଅଧିକାରୀ ହେଲେ ମଧ୍ୟ ଏବେ ବି ମାନସିକତାରେ ଓ ସାମାଜିକ ଜୀବନ-ପ୍ରବାହରେ

କେତେକ ବର୍ବରତା ରହିଛି । ବିଦ୍ୱେଷ, ଘୃଣା, ଅସହିଷ୍ଣୁତା ମାନବିକତାର ପରିପନ୍ଥୀ ଓ ଏହି ଦୃଷ୍ଟିରୁ ସେ ସବୁ ସଭ୍ୟତାର ପ୍ରତିକୂଳ । ତେବେ ସୁଖର କଥା ଆନ୍ତର୍ଜାତିକ ଦୃଶ୍ୟପଟରେ କେତେକ ପଦକ୍ଷେପ ସଭ୍ୟ ଜୀବନଦୃଷ୍ଟିର ପ୍ରସାର ପାଇଁ ପ୍ରୟାସ କରିଛି । ଏହି କ୍ଷେତ୍ରରେ ଜାତିସଂଘ ବିଶ୍ୱବିବେକର ଭୂମିକା ନିର୍ବାହ କରୁଛି ।

ସଫଳ ମହାକାଶ ଯାତ୍ରା ଓ ଚନ୍ଦ୍ରପୃଷ୍ଠରେ ମଣିଷର ଅବତରଣ ଫଳରେ ପୃଥିବୀବାସୀ ଯେତିକି ଆହ୍ଲାଦିତ ହୋଇଥିଲେ ସେତିକି ମଧ୍ୟ ଆଶଙ୍କିତ ହୋଇଥିଲେ । ଯଦି ଉନ୍ନତ ରାଷ୍ଟ୍ରମାନେ ସେମାନଙ୍କର ଅତ୍ୟାଧୁନିକ ଜ୍ଞାନକୌଶଳକୁ ପ୍ରୟୋଗ କରି ସେମାନଙ୍କର ସାମରିକ ଶକ୍ତି ବଳରେ ନବସାମ୍ରାଜ୍ୟବାଦର ପରିବେଶ ସୃଷ୍ଟି କରିବେ, ତେବେ ତାହା ସଭ୍ୟତା ପାଇଁ ବଡ ବିପଦ ସୃଷ୍ଟି କରିବ । ଏହି ପରିପ୍ରେକ୍ଷୀରେ ଜାତିସଂଘ ଏକ ପ୍ରସ୍ତାବ ଅନୁମୋଦନ କଲା ଯେ ଚନ୍ଦ୍ର ବା ଗ୍ରହମଣ୍ଡଳ ହେଉଛି ମାନବ ସମାଜର ସମ୍ପତ୍ତି । କୌଣସି ଦେଶ ତାର ବୈଜ୍ଞାନିକ ଜ୍ଞାନ ସାହାଯ୍ୟରେ ଅନ୍ୟ ଗ୍ରହକୁ ଯାନ ବା ଲୋକ ପଠାଇ ପାରିବ, ବା ଏ କ୍ଷେତ୍ରରେ ଗବେଷଣା କରିପାରିବ । କିନ୍ତୁ କୌଣସି ଦେଶ ସେଠାରେ ସାମରିକ ଘାଟି ପ୍ରତିଷ୍ଠା କରିପାରିବ ନାହିଁ । ପୃଥିବୀ ବାହାରେ ଥିବା ପ୍ରାକୃତିକ ସଂପଦ ଉପରେ ମଣିଷ ଜାତିର ଅଧିକାର ରହିବ, ତାହା କୌଣସି ଦେଶର ସଂପଦ ହେବ ନାହିଁ । ସେହିପରି ପୃଥିବୀର ଦୁଇ ପ୍ରଭାବଶାଳୀ ରାଷ୍ଟ୍ର ଆମେରିକା ଓ ରୁଷ ୧୯୭୯ ରେ ଏକ ଚୁକ୍ତିରେ ସ୍ୱାକ୍ଷର କଲେ ଯେ କୌଣସି ରାଷ୍ଟ୍ର ଆଣବିକ ଅସ୍ତ୍ର ପ୍ରୟୋଗ କରିପାରିବେ ନାହିଁ । ଆଣବିକ ଜ୍ଞାନ କ୍ଷେତ୍ରରେ ବିଶ୍ୱରେ କଟକଣା ରହିବ ।

ଅତୀତରେ ସାମ୍ରାଜ୍ୟବାଦର ବିସ୍ତାର, ରାଜ୍ୟ ଜୟ ପାଇଁ ବହୁ ଯୁଦ୍ଧ ଧରାପୃଷ୍ଠରେ ଘଟିଯାଇଛି । ଆଜିର ସଂଗ୍ରାମର ଲକ୍ଷ୍ୟ ଭିନ୍ନ ହୋଇ ଚାଲିଛି । ଆଜି ସଂଗ୍ରାମର ଆଭିମୁଖ୍ୟ ହେଉଛି ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ଭ୍ରାତୃତ୍ୱଭାବର ପ୍ରସାର ଓ ମାନବିକତାର ଜୟଗାନ । ସେହିପରି ପ୍ରତ୍ୟେକ ବ୍ୟକ୍ତିର ସମ୍ମାନର ସହ ବଞ୍ଚିବା ଜନିତ ଅଧିକାର ହେଉଛି ପବିତ୍ର । ଯେଉଁ ବିଚାରବୋଧ, ଆଦର୍ଶ ଓ ମାନସିକତା ଏହି ଭାବନାର ବିପରୀତ ତାହା ସଭ୍ୟତାର ପ୍ରତିକୂଳ ଓ ମାନବିକ ମୂଲ୍ୟବୋଧର ପରିପନ୍ଥୀ । ସହଭାଗିତା, ସମ୍ବେଦନଶୀଳତା, ସମତା ଓ ନ୍ୟାୟବୋଧ ହିଁ ଯଥାର୍ଥ ମାନବିକତା । ଏହି ମୂଲ୍ୟଚୟର ସାର୍ବଜନୀନ ପ୍ରସାର ଏ ଯୁଗର ବଡ ଆବଶ୍ୟକତା କହିଲେ ଅତ୍ୟୁକ୍ତି ହେବନାହିଁ ।

(୧୮.୬.୨୦୧୪)



# ଆଦିମରୁ ଆନ୍ତର୍ଜାତିକ

ମାନବ ସଭ୍ୟତାର କ୍ରମବିକାଶର ଧାରାକୁ ସମାଜବିଜ୍ଞାନୀ ମାନେ ନାନା ଦିଗରୁ ଅନୁଶୀଳନ କରିଛନ୍ତି । ସମସ୍ତେ ସହମତ ଯେ ମଣିଷ ଏକ ଆଦିମ ଅବସ୍ଥାରୁ ନାନା ସ୍ତର ଓ ସୋପାନ ମଧ ଦେଇ ସଭ୍ୟ ସ୍ତରକୁ ଆସିଛି । ଏକଦା ମଣିଷମାନେ ଅତ୍ୟନ୍ତ ଦୈନ୍ୟ ଅବସ୍ଥାରେ ରହିଥିଲେ, ପଶୁମାନଙ୍କ ପରି ବଣ ଜଂଗଲରୁ ଖାଦ୍ୟ ସଂଗ୍ରହ କରି ଖାଉଥିଲେ । ଏହାପରେ ସେମାନେ ପଶୁପାଳନ କଲେ । କୃଷିର ଜ୍ଞାନ ପରେ ସେମାନଙ୍କ ଯାଯାବର ଜୀବନର ପରିସମାପ୍ତି ଘଟିଲା । କୃଷିର ଜ୍ଞନ ପରଠୁ ମଣିଷର ବିକାଶର ପର୍ବ ଧୀର ମନ୍ଥର ଗତିରେ ଅଗ୍ରଗତି କଲା । ଗ୍ରାମୀଣ ଗୋଷ୍ଠୀ ଜୀବନ, ରାଜତନ୍ତ୍ର, କେତେକ ନୀତିବୋଧ ଜୀବନଧାରାକୁ ପ୍ରଭାବିତ କଲା । କୃଷିର ଜ୍ଞାନ ସହ କୁଟୀର ଶିଳ୍ପର ବିକାଶ ହେଲା । ଗୋଷ୍ଠୀ ଜୀବନରେ ଭାଷା, ସାହିତ୍ୟର ଭାବନା ଆସିଲା । ନୃତ୍ୟ, ସଂଗୀତ, କଳା ଇତ୍ୟାଦି ଗୋଷ୍ଠୀ ଜୀବନରେ ସୃଷ୍ଟି ହେଲା । ସଭ୍ୟତାର ଏହିପରି ଦୀର୍ଘଯାତ୍ରା ପରେ ବିଜ୍ଞାନର ବିକାଶ ହେଲା । ପ୍ରାକୃତିକ ଅନୁଶୀଳନକୁ ନେଇ ଶିଳ୍ପ, କଳ-କାରଖାନା ସ୍ଥାପିତ ହେଲା । ବାଣିଜ୍ୟ, ବ୍ୟବସାୟର ପରିବେଶ ଆସିଲା । ରାଜନୈତିକ, ଅର୍ଥନୈତିକ, ଶୈକ୍ଷିକ ଓ ସାଂସ୍କୃତିକ ଦୃଶ୍ୟପଟରେ ଉଲ୍ଲେଖନୀୟ ପରିବର୍ତ୍ତନର ସୂତ୍ରପାତ ହେଲା । ରାଷ୍ଟ୍ରୀୟ ଭାବନାର ଉଦ୍ରେକ ହେଲା ଓ ଜୀବନ ଅଧିକ ନିରାପଦ ହେଲା । ନାନା କାରଣ ନେଇ ଲୋକମାନଙ୍କ ଭିତରେ ଯୁଦ୍ଧ, ସଂଘର୍ଷର ଯେଉଁ ପରିବେଶ ଥିଲା ସେଥିରେ କିଛି କିଛି ପରିବର୍ତ୍ତନ ଆସିଲା । ବିଭିନ୍ନ ଜନଗୋଷ୍ଠୀ, ରାଷ୍ଟ୍ରମାନଙ୍କର ଜନଗଣଙ୍କୁ ନେଇ ନାନା ଭାଷା, ସାହିତ୍ୟ, ଧର୍ମ, ସଂସ୍କୃତି, ରୀତିନୀତି, ବିଚାରବୋଧ, ରାଜନୈତିକ ଆଦର୍ଶ, ଅର୍ଥନୈତିକ ଢ଼ାଂଚା ସୃଷ୍ଟି ହେଲା । ଲୋକସଂଖ୍ୟାର କ୍ରମ ଅଭିବୃଦ୍ଧି ଓ ଗମନାଗମନର ବିକାଶ ହେତୁ ସହର ମାନ ଗଢ଼ି ଉଠିଲା । ହଜାର ହଜାର ବର୍ଷ ଧରି ମାନବିକ ପ୍ରୟାସ ଓ ବୁଦ୍ଧିର ବିକାଶ ଯୋଗୁ ସଭ୍ୟତା ବିଂଶ ଶତାବ୍ଦୀରେ ପଦାର୍ପଣ କଲା । ବିଂଶ ଶତାବ୍ଦୀ ସଭ୍ୟତାର ଇତିହାସରେ ଥିଲା ଏକ ନିର୍ଣ୍ଣାୟକ ସନ୍ଧିକ୍ଷଣ । ଏହି ଶତାବ୍ଦୀରେ ବିଜ୍ଞାନର ଅଭୂତପୂର୍ବ ବିକାଶ ହେଲା । ଅଧିକାଂଶ ରୋଗ ଓ ମହାମାରୀର ଚିକିତ୍ସା ବାହାରିଲା । ମଣିଷ ଆକାଶରେ ଉଡିବାର

ସାମର୍ଥ୍ୟ ହାସଲ କଲା । ଟେଲିଭିଜନ, ମୋବାଇଲ ଫୋନ, ଇଣ୍ଟରନେଟ୍ ଓ ନାନା ପ୍ରାଯୁକ୍ତିକ ବିକାଶ ପୃଥିବୀକୁ ଏକ ବିଶ୍ୱଗ୍ରାମରେ ପରିବର୍ତ୍ତନ କଲା । ପୃଥିବୀରୁ ଦୂରତ୍ୱ କମିଗଲା ଓ ସାରା ବିଶ୍ୱରେ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ହେଲା । ପୃଥିବୀରୁ ରାଜନୈତିକ ସାମ୍ରାଜ୍ୟବାଦର ପରିସମାପ୍ତି ଘଟିଲା ଓ ଶିକ୍ଷା ସାର୍ବଜନୀନ ହେଲା । ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧରେ ଦୁଇ ଦୁଇଟି ବିଶ୍ୱଯୁଦ୍ଧ ମାନବ ସଭ୍ୟତାର ଇତିହାସରେ ଥିଲା ଏକ କଳଙ୍କିତ ଘଟଣା । ସେହି ପ୍ରଥମାର୍ଦ୍ଧ କାଳରେ ମାର୍କ୍ସବାଦ, ସମାଜବାଦ ଓ କମ୍ୟୁନିଜିମ୍ ଅର୍ଥନୈତିକ ଓ ରାଜନୈତିକ ଦୃଶ୍ୟପଟରେ ବେଶ୍ କ୍ରାନ୍ତିକାରୀ ଆଲୋଡ଼ନ ଥିଲା । ଅର୍ଥନୈତିକ ବ୍ୟବସ୍ଥା ସାମାଜିକ ସ୍ତରରେ ନୀତି, ନୈତିକତା, ଧର୍ମ, ସଂସ୍କୃତିକୁ କିପରି ପ୍ରଭାବିତ କରୁଛି ତାହାର ନାନା ବିଶ୍ଲେଷଣ କରାଗଲା । ରାଷ୍ଟ୍ରରେ ଅର୍ଥନୈତିକ ବ୍ୟବସ୍ଥାର ପରିବର୍ତ୍ତନଦ୍ୱାରା ଏକ ସମତାଭିତ୍ତିକ, ମାନବୋଚିତ ଓ ନ୍ୟାୟ ଆଧାରିତ ସମାଜର ଯେ ବିକାଶ ହେବ ଏହି ବାର୍ତ୍ତା କମ୍ୟୁନିଜିମ ପ୍ରସାର କରିଥିଲା । ପ୍ରକୃତ ଗଣତନ୍ତ୍ର ସମାଜବାଦରେ ନିହିତ । 'ସମାଜରୁ ଅର୍ଥନୈତିକ ବୈଷମ୍ୟ ଦୂର ହୋଇପାରିଲେ ଅନ୍ୟ ସବୁ ଭେଦଭାବ ଦୂର ହୋଇପାରିବ' ଏହି ଭାବନା ଏକ କ୍ରାନ୍ତିକାରୀ ବିଚାର ଥିଲା । ସମସ୍ତ ଶିଳ୍ପ, କଳ କାରଖାନା, ବିକାଶ ରାଷ୍ଟ୍ରୀୟ ନିୟନ୍ତ୍ରଣରେ ରହିଲେ ରାଷ୍ଟ୍ରର ବିକାଶ ତ୍ୱରାନ୍ୱିତ ହୋଇପାରିବ । ସମାଜ ମଙ୍ଗଳକାରୀ ଯୋଜନାକୁ ରାଷ୍ଟ୍ର କାର୍ଯ୍ୟକାରୀ କରିବା ଦ୍ୱାରା ସମାଜରୁ ସମସ୍ତ ଭେଦଭାବ, ଶୋଷଣ ଓ ଉତ୍ପୀଡନର ପରିସମାପ୍ତି ଘଟିବ । ତେବେ ଏସବୁ ବିଚାର ଗୋଟିଏ ସମୟରେ ବେଶ୍ ଉଦ୍ଦୀପନା ଓ ଆକର୍ଷଣ ସୃଷ୍ଟି କରିଥିଲା । ପୃଥିବୀରୁ ସମସ୍ତ ଶୋଷଣ, ଭେଦଭାବ ଓ ବୈଷମ୍ୟର ବିଲୋପ ହେବାର ସ୍ୱପ୍ନ ଅନେକ ମାନବହିତୈଷୀଙ୍କୁ ସ୍ପର୍ଶ କରିଥିଲା ।

ବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ବିଶ୍ୱ ଦୃଶ୍ୟପଟରେ ଆଉ ଏକ ବଡ ଆଲୋଡନ ଆସିଲା, ଯାହାକୁ ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ କୁହାଯାଉଛି । ଜଗତୀକରଣ ନେଇ ରାଷ୍ଟ୍ରନୀତିଜ୍ଞ, ଦାର୍ଶନିକ ଓ ଅର୍ଥଶାସ୍ତ୍ରୀମାନେ ପରସ୍ପର ବିରୋଧୀ ମତ ଦେବା ଫଳରେ ଏହା କେତେକାଂଶରେ ବିବାଦୀୟ ମନେହୁଏ । ଜଗତୀକରଣର ସମର୍ଥକମାନେ ମତ ଦେଇଥାନ୍ତି ଯେ ଏହାଦ୍ୱାରା ବିକାଶ ତ୍ୱରାନ୍ୱିତ ହେବ, ପୃଥିବୀରୁ ଓ ବିଶେଷକରି ଅନଗ୍ରସର ରାଷ୍ଟ୍ରମାନଙ୍କରୁ ଦାରିଦ୍ର୍ୟର ବିଲୋପ ହେବ ଓ ତୃତୀୟ ବିଶ୍ୱର ଜନଗଣଙ୍କର ଜୀବନଧାରାରେ ଗୁଣାତ୍ମକ ପରିବର୍ତ୍ତନ ଆସିପାରିବ । ଜଗତୀକରଣର ସମାଲୋଚକ ମାନେ ମତ ଦେଇଥାନ୍ତି ଯେ ଏହା ଏକ ପ୍ରକାରର ଅର୍ଥନୈତିକ ସାମ୍ରାଜ୍ୟବାଦ ଯାହାର ମୂଳ ଭିତ୍ତି ପୁଂଜିବାଦ, ଶୋଷଣ ଓ ବୈଷମ୍ୟ ଉପରେ ଆଧାରିତ । ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣକୁ ଏକ ଅର୍ଥନୈତିକ ଭାବନା ଭିତରେ ସୀମିତ କରି ପୁଂଜିବାଦୀ ଓ ସମାଜବାଦୀ ମାନେ ଏହାକୁ ଯଥାକ୍ରମେ ମଙ୍ଗଳକର ଓ ହାନିକର ଭାବେ.

ବିଚାର କରିଥାନ୍ତି । ତେବେ ଜଗତୀକରଣକୁ ଏକ ବୃହତ୍ତର ପରିଧି ଭିତରେ ଅବବୋଧ କରାଯାଇପାରେ ।

ଜଗତୀକରଣର ଅର୍ଥ ହେଉଛି ଏକ ଆନ୍ତର୍ଜାତିକ ସଂହତି । ଏହି ଦୃଷ୍ଟିରୁ ଏହା ଏକ ସାର୍ବଜନୀନ ଦୃଷ୍ଟି ଓ ମାନବବାଦୀ ଭାବର ସୂଚନା ଦିଏ । ବସ୍ତୁତଃ ଏହା ଆଞ୍ଚଳିକତାବାଦ, ସାଂପ୍ରଦାୟିକତାବାଦ ଓ ସଂକୀର୍ଣ୍ଣ ଦୃଷ୍ଟିଭଙ୍ଗୀର ପରିପନ୍ଥୀ । ଜଗତୀକରଣ ଏହି ମାନଦଣ୍ଡରେ ଅର୍ଥନୈତିକ, ସାଂସ୍କୃତିକ କିମ୍ବା ରାଜନୈତିକ ଆଦର୍ଶ ହୋଇପାରେ । ଅର୍ଥନୈତିକ ପୃଷ୍ଠଭୂମିରୁ ଦେଖିଲେ ଏହା ଏକ ଉଦାରବାଦୀ ବ୍ୟବସ୍ଥା ଯାହା ରାଜନୈତିକ ବ୍ୟବସ୍ଥାର ଊର୍ଦ୍ଧ୍ୱରେ । ଏହି ବ୍ୟବସ୍ଥାରେ ପୁଂଜିର ମୁକ୍ତ ବିନିଯୋଗର ସମ୍ଭାବନା ଥାଏ ଓ ଆନ୍ତର୍ଜାତିକ ବାଣିଜ୍ୟକୁ ଏଠାରେ ପ୍ରୋତ୍ସାହନ ଦିଆଯାଏ । ବିକଶିତ ରାଷ୍ଟ୍ରମାନଙ୍କର ପୁଂଜି ଓ ପ୍ରଯୁକ୍ତିଗତ ଜ୍ଞାନ କୌଶଳ ଏବଂ ବିକାଶଶୀଳ ଦେଶମାନଙ୍କର କଞ୍ଚାମାଲ ଓ ଶସ୍ତା ଶ୍ରମର ସମନ୍ୱୟରେ ବିକାଶର ଧାରାକୁ ଆଗକୁ ନିଆଯାଇ ପାରିବ ବୋଲି ଜଗତୀକରଣର ସମର୍ଥକ ମାନେ ସାଧାରଣ ଭାବେ ମତ ଦେଇଥାନ୍ତି । ଏହାଦ୍ୱାରା ଶିଳ୍ପର ବିକାଶ, କଳକାରଖାନାର ପ୍ରସାର ଓ କର୍ମସଂସ୍ଥାନ ବହୁଳ ଭାବେ ଉପଲବ୍ଧ ହୋଇପାରିବ ବୋଲି ସେମାନେ କହିଥାନ୍ତି । ପରିଣାମତଃ ଅନଗ୍ରସର ଓ ବିକାଶଶୀଳ ଦେଶମାନଙ୍କର ଅର୍ଥନୀତିରେ ଗୁଣାତ୍ମକ ପରିବର୍ତ୍ତନ ଆସିବ ଓ ସାଧାରଣ ଜନଗଣଙ୍କ ମଧ୍ୟରେ ଶିକ୍ଷା, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଉନ୍ନତ ଜୀବନଶୈଳୀର ବିକାଶ ହେବ । ସେମାନଙ୍କର ପାରଂପରିକ ଉତ୍ପାଦନ ପ୍ରକ୍ରିୟା ଆନ୍ତର୍ଜାତିକ ସ୍ତରରେ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ହେଲେ ତାହା ଆଧୁନିକ ଜ୍ଞାନକୌଶଳ ଓ ବିଜ୍ଞାନର ସହଯୋଗ ନେବାକୁ ହେବ । ଏହାଦ୍ୱାରା ସେମାନଙ୍କର କର୍ମଦକ୍ଷତା ବୃଦ୍ଧିପାଇବ ଓ ରାଷ୍ଟ୍ରର ବିକାଶ ମଧ୍ୟ ସାଧିତ ହେବ । ମୋଟ ଉପରେ କହିଲେ ଅର୍ଥନୈତିକ ଉଦାରବାଦ ଆନ୍ତର୍ଜାତିକ ସହଯୋଗ, ପୁଂଜିର ମୁକ୍ତ ବିନିଯୋଗ ଓ ମୁକ୍ତ ବଜାରଦ୍ୱାରା ସମସ୍ତ ଦାରିଦ୍ର୍ୟ ଦୂର କରିବା ସହ ସମଗ୍ର ବିଶ୍ୱକୁ ଏକତାର ସୂତ୍ରରେ ଛନ୍ଦିପାରିବ ।

ଜଗତୀକରଣ ଓ ଉଦାରୀକରଣ ଅର୍ଥନୀତିର ସମାଲୋଚକମାନେ ଏକ ଭିନ୍ନ ଚିତ୍ର ଦେବା ସହ ସେମାନେ ଏହାର କ୍ଷତିକାରକ ଦିଗଟିର ସୂଚନା ଦେଇଥାନ୍ତି । ଶିଳ୍ପ ବିପ୍ଳବ ପରେ ଯେଉଁ ପୁଂଜିବାଦ ଓ ସାମ୍ରାଜ୍ୟବାଦ ଆସିଥିଲା, ଉଦାରୀକରଣ ଅର୍ଥନୀତି ସେହିପରି ବିକଶିତ ରାଷ୍ଟ୍ରମାନଙ୍କର ସାମ୍ରାଜ୍ୟବାଦୀ ଶୋଷଣର ଏକ ବିସ୍ତାରିତ ପ୍ରକରଣ । ବିକାଶଶୀଳ ରାଷ୍ଟ୍ରମାନଙ୍କର ପ୍ରାକୃତିକ ସମ୍ବଳ ଓ ଶସ୍ତା ଶ୍ରମକୁ କର୍ପୋରେଟ ବା ବହୁରାଷ୍ଟ୍ରୀୟ କଂପାନୀମାନେ ଶୋଷଣ କରିବାର ଏହା ଏକ ଅଭିନବ ପ୍ରୟାସ । କୌଣସି ରାଷ୍ଟ୍ରର ରାଜନୈତିକ ବ୍ୟବସ୍ଥାରେ ହସ୍ତକ୍ଷେପ ନ କରି ତାର ଅର୍ଥନୀତିକୁ କବଳିତ କରିବା ଏହି ବ୍ୟବସ୍ଥାର ଉଦ୍ଦେଶ୍ୟ । ସମଗ୍ର ବିଶ୍ୱକୁ ଏକ ଅର୍ଥନୈତିକ ବଜାରରେ ପରିଣତ କରିବା,

ଏକ ଉପଭୋକ୍ତାବାଦୀ ସମାଜ ସୃଷ୍ଟି କରିବା, ଲୋକଙ୍କ ଭିତରେ ଅଦରକାରୀ ବସ୍ତୁମାନଙ୍କ ପ୍ରତି ଆଗ୍ରହ ସୃଷ୍ଟି କରି ମୁନାଫା ଉଠାଇବା ଜଗତୀକରଣ ଅର୍ଥନୀତିର ମୂଳ ଲକ୍ଷ୍ୟ । ଅତ୍ୟାଧୁନିକ ପ୍ରଯୁକ୍ତି ଓ ବିଶାଳକାୟ କଳ କାରଖାନାଦ୍ୱାରା ସମାଜରେ ବୈଷମ୍ୟ ବଢ଼ିଚାଲିବ, ପରିବେଶ ପ୍ରଦୂଷିତ ହେବ ଓ ବହୁ ଲୋକ ବିସ୍ଥାପିତ ହେବାର ପରିବେଶ ଆସିବ । ଲାଭଖୋର ମନୋଭାବ, ଉପଭୋକ୍ତାବାଦୀ ଦୃଷ୍ଟିଭଙ୍ଗୀ ଓ ପରିବେଶ ଧ୍ୱଂସକାରୀ କଳକାରଖାନା ସମାଜ ପାଇଁ ମଙ୍ଗଳକର ନୁହେଁ । ସୀମିତ ପ୍ରାକୃତିକ ସମ୍ବଳକୁ ନଷ୍ଟ କରିଦେବା ଦ୍ୱାରା ମାନବ ସଭ୍ୟତାର ଭବିଷ୍ୟତ ଅନ୍ଧକାରମୟ ହେବ । ଏହାଦ୍ୱାରା ଦାରିଦ୍ର୍ୟ, ବୈଷମ୍ୟ ଓ ବେକାରୀ ଅଧିକ ହେବ । ନିରନ୍ତର ବିକାଶ ପ୍ରକ୍ରିୟା, ପରିବେଶ ହିତକାରୀ ଶିଳ୍ପ ଓ ସମତାଭିତ୍ତିକ ସମାଜ ପାଇଁ ଜଗତୀକରଣ ଜନିତ ଅର୍ଥନୀତି ଉପଯୋଗୀ ନୁହେଁ । ପୁଂଜିବାଦୀ ଅର୍ଥନୀତି ଉପରେ ଆଧାରିତ ଜଗତୀକରଣ, ଘରୋଇକରଣ ଓ ଉଦାରୀକରଣ ସମତାଭିତ୍ତିକ ସାମାଜିକ ବ୍ୟବସ୍ଥାର ପରିପନ୍ଥୀ ବୋଲି କେତେକ ଦୃଢ଼ ଭାବରେ ମତ ଦେଇଥାନ୍ତି ।

ଅର୍ଥନୈତିକ ଜଗତୀକରଣର ଭଲ-ମନ୍ଦ ଦିଗ ନେଇ ବିତର୍କ ଓ ବିବାଦ ରହିଛି । ତେବେ ଜଗତୀକରଣର ଏକ ମହତ୍ତର ଦିଗ ଯେ ରହିଛି ଏହା ଅସ୍ୱୀକାର କରାଯାଇ ପାରିବ ନାହିଁ । ଜ୍ଞାନ, ବିଜ୍ଞାନ କ୍ଷେତ୍ରରେ ମନୁଷ୍ୟ ସମାଜ ଯେଉଁ ସଫଳତା ହାସଲ କରୁଛି ତାହାର ସୁଫଳ ସବୁ ମଣିଷଙ୍କ ପାଇଁ ଉପଲବ୍ଧ ହେବା ଦରକାର । ସାର୍ବଜନୀନ ଶିକ୍ଷା, ଗୁଣାତ୍ମକ ଜୀବନ, ଉନ୍ନତ ସ୍ୱାସ୍ଥ୍ୟସେବା, ବିଶ୍ୱ ଦୃଷ୍ଟି, ସାମାଜିକ ନ୍ୟାୟ, ସମତା ଓ ମୈତ୍ରୀଭାବ ଜଗତୀକରଣ ଭାବନାର ଏକ ସାଂସ୍କୃତିକ ଅଭିବ୍ୟକ୍ତି । ଏକ ଯୁଦ୍ଧରହିତ ପୃଥିବୀ, ସମଗ୍ର ବିଶ୍ୱରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ମାନବିକ ସମସ୍ୟାମାନଙ୍କର ନ୍ୟାୟପୂର୍ଣ୍ଣ ସମାଧାନ, ମଣିଷ ସମାଜରୁ ଦାରିଦ୍ର୍ୟ, କୁସଂସ୍କାର, ଶୋଷଣ ଓ ସକଳ ଭେଦଭାବର ଅବସାନ ଜଗତୀକରଣର ମୌଳିକ ଆଭିମୁଖ୍ୟ ହେବା ଆବଶ୍ୟକ । ସୁଖର କଥା ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସମଗ୍ର ବିଶ୍ୱରେ ନାନା ଆନ୍ତର୍ଜାତିକ ସଂଗଠନମାନ ଏହି ଲକ୍ଷ୍ୟ ଦିଗରେ କାର୍ଯ୍ୟ କରୁଛନ୍ତି । ମାନବ ସମାଜ ଏକ ଆନ୍ତର୍ଜାତିକ ଦୃଷ୍ଟିଭଙ୍ଗୀର ବିକାଶ ଦିଗରେ ଅଗ୍ରସର ହେଉଛି । କେଉଁଠି କିଛି ପ୍ରାକୃତିକ ଦୁର୍ବିପାକ ହେଲେ ସମଗ୍ର ପୃଥିବୀରୁ ସହାନୁଭୂତିର ହାତ ପ୍ରସାରିତ ହେଉଛି । ମାନବୀୟ ସମସ୍ୟାମାନ ଆନ୍ତର୍ଜାତିକ ସ୍ତରରେ ଆଲୋଚିତ ହୋଇ ସମସ୍ୟାର ସୂତ୍ର ବାହାରି ପାରୁଛି । ସଭ୍ୟତାକୁ ଆହୁରି ଉନ୍ନତ ସ୍ଥିତିକୁ ନେବାକୁ ବିଶ୍ୱ ସ୍ତରରେ ଉଚ୍ଚମାନର ଗବେଷଣା ଚାଲୁ ରହିଛି । ଏକ ଆଦିମ ସ୍ଥିତିରୁ ଏହି ଆନ୍ତର୍ଜାତିକ ସ୍ତରକୁ ମଣିଷ ନିଜର ବିଚାରଶୀଳତା ଓ ସୃଜନଶୀଳତା ଯୋଗୁ ଆସିପାରିଛି ।

(୨୦.୪.୨୦୧୫)



# କୁସଂସ୍କାରର ସମାଜତତ୍ତ୍ୱ

ନିକଟରେ "ଡେଙ୍ଗୁରୁ ରକ୍ଷା ପାଇବାକୁ ମଶା ମହାପ୍ରଭୁଙ୍କୁ ପୂଜା" ଶିରୋନାମାରେ ସମ୍ବାଦପତ୍ରରୁ (ପ୍ରଗତିବାଦୀ, ନଭେମ୍ବର ୨୯, ୨୦୧୨) ଏକ ସମ୍ବାଦ ପଢ଼ିବାକୁ ପାଇଲି । ସମ୍ବାଦଟି ଅନୁଯାୟୀ ଡେଙ୍ଗୁ ଓ ମ୍ୟାଲେରିଆ ଭଳି ଜ୍ୱରରୁ ରକ୍ଷା ପାଇବା ପାଇଁ ଝାଡଖଣ୍ଡର ବୋକାରୋଠାରେ ମଶା-ମହାପ୍ରଭୁଙ୍କର ଏକ ବିରାଟକାୟ ମୂର୍ତ୍ତି ସ୍ଥାପନ କରାଯିବା ସହ ପୂଜକ ସେଠାରେ ପୂଜାର୍ଚ୍ଚନା କରିଛନ୍ତି । ମଶାର ମୂର୍ତ୍ତି ଆଗରେ ହୋମ ଯଜ୍ଞ କରାଯାଉଛି । ପୂଜକ ମନ୍ତ୍ରୋଚ୍ଚାରଣ ସହିତ ମଶାର ବୃହତ୍ତକାୟ ମୂର୍ତ୍ତିରେ ଫୁଲମାଳ ଚଢ଼ାଇ ଲୋକମାନଙ୍କୁ ପ୍ରଣାମ କରିବାକୁ କହିଲେ । ସେହି ଅଞ୍ଚଳରେ କେତେକ ଲୋକ ମ୍ୟାଲେରିଆ ଓ ଡେଙ୍ଗୁରେ ଆକ୍ରାନ୍ତ ହେବାରୁ ମଶାର ମୂର୍ତ୍ତି ପାଖରେ ପୂଜା କରିବାକୁ ସେଠାରେ ପ୍ରଚାର ହୋଇଛି । ମଶା ମହାପ୍ରଭୁଙ୍କୁ ପ୍ରାର୍ଥନା କଲେ ମ୍ୟାଲେରିଆ ବା ଡେଙ୍ଗୁ ହେବ ନାହିଁ ବୋଲି ସାଧାରଣରେ ବିଶ୍ୱାସ ସୃଷ୍ଟି କରାଯାଇଛି ।

ପିତୁଳା ପୂଜା ଆମ ସମାଜରେ ବହୁ ପ୍ରାଚୀନ କାଳରୁ ରହିଆସିଛି । ଏହି ପରିପ୍ରେକ୍ଷୀରେ ବହୁ ଦେବ-ଦେବୀ ଓ ବହୁ ଈଶ୍ୱରବାଦର ଭାବନା ଆମ ଧାର୍ମିକ ବିଶ୍ୱାସର ଅଙ୍ଗହୋଇ ରହିଛି । ଅବଶ୍ୟ ବିଭିନ୍ନ ସଭ୍ୟତାରେ ଅତୀତରେ ନାନା ଈଶ୍ୱରୀୟ ବିଶ୍ୱାସ ରହିଥିଲା । ପ୍ରାଚୀନ ଯୁଗରେ ବିଶ୍ୱାସ ଥିଲା ଯେ ଜୀବନର ବା ପ୍ରକୃତିର ପ୍ରତ୍ୟେକଟି କ୍ଷେତ୍ର କୌଣସି ଦେବ ବା ଦେବୀଙ୍କ ଦ୍ୱାରା ନିୟନ୍ତ୍ରିତ । ତାଙ୍କୁ ପ୍ରାର୍ଥନା ଓ ଆରାଧନାଦ୍ୱାରା ନିର୍ଦ୍ଦିଷ୍ଟ ଲକ୍ଷ୍ୟ ହାସଲ ହୋଇପାରିବ । ସୁତରାଂ ଧନ, ବିଦ୍ୟା, ସୁଖମୟ ବୈବାହିକ ଜୀବନ, ଜନ୍ମ, ମୃତ୍ୟୁ ଇତ୍ୟାଦି ପ୍ରତ୍ୟେକ କ୍ଷେତ୍ର ପାଇଁ କଳ୍ପିତ ଦେବତାଙ୍କୁ ଆରାଧନା କରାଯାଉଥିଲା । ତେବେ ଆନୁଷ୍ଠାନିକ ଧର୍ମମାନଙ୍କର ବିସ୍ତାର ଓ ଏକେଶ୍ୱରବାଦ ଭାବନାର ବିକାଶଦ୍ୱାରା ପିତୁଳା ପୂଜା ବିଭିନ୍ନ ଦେଶରେ ଲୋପ ପାଇଲା ବା ଏକ ଅ-ଧାର୍ମିକ କାର୍ଯ୍ୟ ବୋଲି କେତେକ ଧର୍ମରେ ଗୃହୀତ ହେଲା । ହିନ୍ଦୁଧର୍ମ ଭିତରେ ଆର୍ଯ୍ୟ ସମାଜ, ବ୍ରାହ୍ମ ସମାଜ ଓ

ପ୍ରାର୍ଥନା ସମାଜ ପରି ସଂସ୍କାରବାଦୀ ସଙ୍ଗଠନମାନ ପ୍ରତିମା ପୂଜାକୁ ଅବୈଦିକ ଓ ଅର୍ଥଶୂନ୍ୟ ବୋଲି ଭାବନା ସୃଷ୍ଟି କରିଛନ୍ତି । ତେବେ ହିନ୍ଦୁଧର୍ମର ଅଧିକାଂଶ ଲୋକ ପିତୁଳା ପୂଜାରେ ବିଶ୍ୱାସ କରିବା ଦେଖାଯାଏ ।

ଆମ ଦେଶରେ ବହୁ ଜାତି, ଗୋଷ୍ଠୀ, ପରମ୍ପରା ବହୁ ଅତୀତରୁ ରହି ଆସିଛି । ସାମାଜିକ ସ୍ତରରେ ଜାତିବାଦ ଜନିତ ଭେଦଭାବ ଆମ ବ୍ୟବସ୍ଥାରେ ଯୁଗ ଯୁଗ ଧରି ରହିଛି । ସେହିପରି ନାନା ସ୍ଥାନରେ ନାନା ବିଶ୍ୱାସ, ପରମ୍ପରା, ଲୋକ ଚଳଣି ଭିନ୍ନ ଭିନ୍ନ ଢ଼ଙ୍ଗରେ ପ୍ରଚଳିତ ରହି ଆସିଛି । ଦେବୀ ପୀଠମାନଙ୍କରେ ପଶୁବଳି ପକାଇବା ଏବେ ବି କେତେକ ସ୍ଥାନରେ କରାଯାଉଛି । କେଉଁଠି ଲୋକମାନେ ଚନ୍ଦ୍ର, ସାପକୁ ପୂଜା କରୁଛନ୍ତି ତ ଆଉ କେଉଁଠି ପଥର, କାଠକୁ ବି ପୂଜା କରୁଛନ୍ତି । ପ୍ରତ୍ୟେକ ପୂଜା ପାଇଁ ନାନା ମନ୍ତ୍ର, ପୂଜା ପଦ୍ଧତି, କର୍ମକାଣ୍ଡ ସୃଷ୍ଟି କରାଯାଇଛି । ସେହିପରି ଲୋକମାନଙ୍କ ଭିତରେ ବିଶ୍ୱାସ ସୃଷ୍ଟି କରିବା ପାଇଁ ନାନା କିମ୍ବଦନ୍ତୀ, କାଳ୍ପନିକ କାହାଣୀ ସୃଷ୍ଟି କରାଯାଇଛି । ସେଗୁଡ଼ିକ ଯେତେ ଅବାସ୍ତବ, ଅବାନ୍ତର ଓ ମନଗଢ଼ା ହେଲେ ବି ଜନମାନସରେ ସେଗୁଡ଼ିକ ବେଶ୍ ପ୍ରଚଳିତ ରହି ଆସିଛି । ଏହା ସହିତ କଳ୍ପିତ ଦେବଦେବୀଙ୍କର ବିବାହ ପାଇଁ କେତେ ଆଡମ୍ବର ବି କରାଯାଉଛି । ବର୍ଷସାରା ବିଭିନ୍ନ ପୂଜା, ପାର୍ବଣ ପରମ୍ପରା ନାମରେ ପାଳନ କରାଯାଉଛି । ତେବେ ଗୋଟିଏ ଅଞ୍ଚଳରେ ସୀମିତ ଥିବା କୌଣସି ପାରମ୍ପରିକ ପୂଜା ଧୀରେ ଧୀରେ ବିଭିନ୍ନ ଅଞ୍ଚଳକୁ ବିସ୍ତାରଲାଭ କରି ଲୋକ-ବିଶ୍ୱାସ ଓ ଲୋକ-ସଂସ୍କୃତିର ଅଙ୍ଗ ହୋଇଯାଉଛି । ଏହା ଆମର ଐତିହ୍ୟ, ଆମ ଆଧ୍ୟାତ୍ମିକ ପରମ୍ପରାର ଅଙ୍ଗବିଶେଷ ବୋଲି ସମାଜରେ ପ୍ରସାର କରାଯାଉଛି । ଲୋକବିଶ୍ୱାସକୁ ଆଧୁନିକ ଯୁଗରେ ଗଣମାଧ୍ୟମଦ୍ୱାରା ବ୍ୟାପକ କରାଯାଇ ପାରୁଛି ।

ବିଭିନ୍ନ ଶିକ୍ଷାନୁଷ୍ଠାନ ମାନଙ୍କରେ କଳ୍ପିତ ବିଦ୍ୟାଦାତା ବା ବିଦ୍ୟାଦାତ୍ରୀଙ୍କର ପୂଜା କରାଯାଇ କିଶୋର ଛାତ୍ରଛାତ୍ରୀମାନଙ୍କ ମନରେ ଅହେତୁକ ବିଶ୍ୱାସର ବୀଜ ବପନ କରାଯାଉଛି । ପରୀକ୍ଷାରେ ଉତୀର୍ଣ୍ଣ ହେବା ପାଇଁ ବା କୃତିତ୍ୱ ହାସଲ ପାଇଁ ପିଲାମାନେ ଏଥିରେ ବି ବିଶ୍ୱାସ କରୁଛନ୍ତି । ସେହିପରି ଏବେ ବିଭିନ୍ନ ସରକାରୀ ଅଫିସମାନଙ୍କରେ ବି ପୂଜାସ୍ଥଳ ସ୍ଥାପନ କରାଯାଇ ସେଠାରେ କଳ୍ପିତ ଦିଅଁ ଦେବତାଙ୍କ ମୂର୍ତ୍ତି ରଖାଯାଉଛି । ରାସ୍ତାକଡ଼ରେ ବା ସରକାରୀ ଜମିରେ ଯିଏ ଯେଉଁଠି ପାରିଲା ପୂଜାସ୍ଥଳ ସ୍ଥାପନ କରିବାକୁ ଉଦ୍ୟମ କରୁଛି । ଧର୍ମନାମରେ ବା ପୂଜାସ୍ଥଳୀ ସ୍ଥାପନ ପାଇଁ ନାନା ପନ୍ଥାରେ ଚାନ୍ଦା ସଂଗ୍ରହ କରାଯାଉଛି ଓ ଏ କ୍ଷେତ୍ରରେ କୌଣସି ପ୍ରତିବନ୍ଧକ ନାହିଁ ।

ମନସ୍ତାତ୍ତ୍ୱିକ କାରଣରୁ ଦେଖିଲେ ଦିଅଁ, ଦେବତା, ଠାକୁର, ପୂଜାସ୍ଥଳ, ଭକ୍ତିଭାବ, ପ୍ରାର୍ଥନା, ଆରାଧନା ଇତ୍ୟାଦି ଭୟ ଓ ଅସହାୟବୋଧରୁ ଲୋକମାନେ କରିଥାନ୍ତି । ପ୍ରାଚୀନ ଯୁଗରେ ଯେତେବେଳେ ମଣିଷର ପ୍ରକୃତି, ପରିବେଶ, ରୋଗ ପ୍ରତିଷେଧକ ଇତ୍ୟାଦି ବିଷୟରେ କୌଣସି ଜ୍ଞାନ ନଥିଲା, ସେତେବେଳେ ସେ ବିଭିନ୍ନ ଦିଅଁ ଦେବତାଙ୍କୁ କଳ୍ପନା କରିଥିଲା । ସମାଜର କିଛି ଚତୁର ଲୋକ ଏସବୁ ଭାବନା ସୃଷ୍ଟି କରିଥିଲେ । ଏହାକୁ ନେଇ ଆସ୍ତେ ଆସ୍ତେ ଏକ କ୍ଷୁଦ୍ର ଗୋଷ୍ଠୀ ରୋଜଗାରର ଏକ ସହଜ ପନ୍ଥା କଲେ । ଶ୍ରମବିହୀନ ରୋଜଗାରର ଏହା ଏକ ସହଜ ପନ୍ଥା ହୋଇଥିବାରୁ ସମାଜର ପ୍ରଭାବଶାଳୀ ଗୋଷ୍ଠୀ ଏହାକୁ ଧର୍ମ, ପରମ୍ପରା, ସାଂସ୍କୃତିକ ଐତିହ୍ୟ କହି ନାନା ଭାବାବେଗ ସୃଷ୍ଟିକଲେ । ଏହି ପରିପ୍ରେକ୍ଷୀରେ ପୂଜାସ୍ଥଳମାନ ନିର୍ମାଣ କରାଗଲା ଓ ପୂଜାସ୍ଥଳ ନିର୍ମାଣ କରିବା ଏକ ପବିତ୍ର କାର୍ଯ୍ୟ ବୋଲି ଭାବନା ସୃଷ୍ଟି ହେଲା । କେତେ କେତେ ପାରଲୌକିକ ବିଶ୍ୱାସର ଚିତ୍ରକଳ୍ପମାନ ସୃଷ୍ଟି ହେଲା । ନାନା ପୁରାଣମାନଙ୍କରେ ଦିଅଁ ଦେବତାର ସ୍ତୁତିଗାନ କରାଗଲା । ବିଭିନ୍ନ ଚମତ୍କାରିତାର ବିଚିତ୍ର କଥାମାନ ଦିଅଁ ଦେବତାଙ୍କୁ ନେଇ ସୃଷ୍ଟି କରାଗଲା । ସାଧାରଣ ମଣିଷଟିଏ ଜୀବନର ଘନଘଟା ଓ ପ୍ରତିକୂଳ ସ୍ଥିତିରେ ସେଥିରୁ ରକ୍ଷା ପାଇବାକୁ ଦିଅଁ ଦେବତାର ଶରଣ ପସିଲା । ବୃହତ୍ତର ସମାଜ ଉପରେ ଭରସା ରଖି ପାରୁନଥିବା ସାଧାରଣ ମଣିଷ ଦିଅଁ ଦେବତା ଉପରେ ଭରସା ରଖିବା ସହଜସାଧ୍ୟ ବୋଧ ହେଲା । ଯଦି କୌଣସି କାର୍ଯ୍ୟରେ ସଫଳତା ମିଳିଲା ଏହାକୁ ଦିଅଁ ଦେବତାର ଆଶୀର୍ବାଦର ପରିଣାମ ବୋଲି ସେ ବୁଝିଲା ଓ ଯେଉଁ କ୍ଷେତ୍ରରେ ଅସଫଳ ହେଲା ତାହାକୁ ଭାଗ୍ୟ, କପାଳ-ଲିଖନ ବୋଲି ଗ୍ରହଣ କରିନେଲା । ଏହି ବିଶ୍ୱାସ ସାମାଜିକ ମନସ୍ତତ୍ତ୍ୱରେ ଏପରି ଦୃଢ଼ ହେବାକୁ ଲାଗିଲା ଯେ ଯେକୌଣସି କାର୍ଯ୍ୟ ପାଇଁ ସେ ଅଦୃଷ୍ଟର ଆଶୀର୍ବାଦ ଲୋଡ଼ିଲା । ସେଥିପାଇଁ ନାନା ପୂଜା, ଆରାଧନା, ମନ୍ତ୍ର, କର୍ମକାଣ୍ଡର ବିଧାନମାନ ସମାଜରେ ସୃଷ୍ଟି ହେଲା । କେଉଁଠି ବୁଡ଼ ପକାଇଲେ ପାପ କ୍ଷୟ ହେବ, କେଉଁ ଦେବତାର ପାଦ ଦର୍ଶନ କଲେ ମୁକ୍ତି ମିଳିବ, କେଉଁଠି ପିଣ୍ଡ ପକାଇଲେ ପିତୃପୁରୁଷର ଉଦ୍ଧାର ହେବ, କେଉଁ ଦେବତାର ଦର୍ଶନ କଲେ ଜୀବନର ସବୁ ଅଭିଳାଷ ପୂରଣ ହେବ, କେଉଁଠି ପାଣି ଢ଼ାଳିଲେ ପ୍ରତିକୂଳ ପରିସ୍ଥିତି ଟଳି ଯିବ ଇତ୍ୟାଦି ଭାବନା ମାନଙ୍କୁ ନାନା ଭାବରେ ପ୍ରସାର ଓ ପ୍ରଚାର କରାଗଲା । ପରିଣାମତଃ ସମାଜର ସାଧାରଣ ମଣିଷ ପରିବେଶରୁ ଏହି ବିଶ୍ୱାସର ପ୍ରଭାବରେ ଏସବୁକୁ ଗ୍ରହଣ କଲା ।

ଆଗେ ଯେତେବେଳେ ହଇଜା, ବସନ୍ତ, ପ୍ଲେଗ୍, ମିଳିମିଳା, ହାଡ଼ଫୁଟି ପରି ରୋଗ ହେଉଥିଲା ସେତେବେଳେ କେତେ କେତେ ଠାକୁର ଠାକୁରାଣୀଙ୍କ ପ୍ରକୋପରୁ

ଏହା ସୃଷ୍ଟି ହେଉଛି ବୋଲି ଗାଆଁ ଗାଆଁରେ କେତେ ହୋମ, ଯଜ୍ଞ, ସଂକୀର୍ତ୍ତନ, ଅଷ୍ଟପ୍ରହରୀମାନ ହେଉଥିଲା । ବିଶ୍ୱାସ ଥିଲା ଯେ ଏସବୁ କଲେ ଦେବତା ସନ୍ତୁଷ୍ଟ ହେବେ ଓ ଗ୍ରାମକୁ ମହାମାରୀ ଆସିବ ନାହିଁ । ଏପରିକି ପଚାଶ ଷାଠିଏ ବର୍ଷ ତଳେ ଏସବୁ ରୋଗରୁ ତ୍ରାହି ପାଇବା ପାଇଁ ଲୋକମାନେ କେତେ ପୂଜାପାଠ, ମାନସିକ କରୁଥିଲେ । ସେହି ମାନସିକତା ଏବେ ବି ଭିନ୍ନ ରୂପରେ ସମାଜରେ ପ୍ରବର୍ତ୍ତିତ ରହିଥିବା ଦେଖାଯାଏ ।

ସେହିପରି ମାନସିକ ଭୟର ବାତାବରଣରୁ ଫାଇଦା ନେବା ପାଇଁ କିଛି ଧୂର୍ତ୍ତ ବ୍ୟକ୍ତି କେତେ କେତେ ଅହେତୁକ ପନ୍ଥା ସମାଜରେ ସୃଷ୍ଟି କଲେ । କୁଲା ବୁଲା, ଖଟବୁଲା, ନଖ ଦର୍ପଣ, କାଳିସୀ ପୂଜା, ପଣା ପାଣି ଇତ୍ୟାଦି ବିଭିନ୍ନ ଢ଼ଙ୍ଗରେ ବିଭିନ୍ନ ଅଞ୍ଚଳରେ ସୃଷ୍ଟି କରାଗଲା । ଚୋର ଧରିବା ପାଇଁ, କୌଣସି ଅସୁସ୍ଥତାରୁ ମୁକ୍ତି ପାଇଁ ମନ୍ତ୍ର, ତନ୍ତ୍ର, ଗୁଣିଗାରେଡି, ବ୍ଲାକ ମେଜିକ ଇତ୍ୟାଦି ଆମ ଜନ ଜୀବନରେ ପ୍ରଚଳିତ ଥିବା ଏକ ସାଧାରଣ ଘଟଣା ହୋଇ ରହିଲା । ଶିକ୍ଷା, ବୈଜ୍ଞାନିକ ଦୃଷ୍ଟଭଙ୍ଗୀ ଓ ସାମାଜିକ ସଚେତନତା ଅଭାବରେ ଲୋକମାନେ ଏବେ ବି ଏହି ପନ୍ଥାର ଆଶ୍ରୟ ନେବା ଦେଖାଯାଏ । କେଉଁ ସ୍ତ୍ରୀ ଲୋକର ଦୃଷ୍ଟି ମନ୍ଦ, କାହାର ନଜର ପଡିଲେ ପିଲା ଅସୁସ୍ଥ ହୁଏ, କିଏ ଡାଆଣୀ, କିଏ ମନ୍ତ୍ର ତନ୍ତ୍ର କରିବାରୁ ପରିବାରରେ ଅନିଷ୍ଟ ଘଟୁଛି ବିଶ୍ୱାସ ଏବେ ବି ଗ୍ରାମୀଣ ଜୀବନରେ କେତେକାଂଶରେ ରହିଛି । ଏହାକୁ ଆଧାର କରି ହିଂସା, ହତ୍ୟାକାଣ୍ଡ ପରି ଅଭାବନୀୟ ଘଟଣାମାନ ବି ଘଟୁଛି । ଶିକ୍ଷିତ ଲୋକମାନେ ଏହି ପ୍ରକାର ବିଶ୍ୱାସ ରଖୁ ନ ଥିଲେ ମଧ୍ୟ ଅନ୍ୟ କ୍ଷେତ୍ରରେ ଏହି ପ୍ରକାରର ବିଶ୍ୱାସ ପୋଷଣ କରୁଛନ୍ତି । ନୂଆ ଗାଡିଟିଏ କିଣାହେଲେ ଗାଡିଟିର ପୂଜା କରିବା, ଘରଟିଏ ଆରମ୍ଭ କଲେ ଶୁଭ ଦିନ ଦେଖି ଶୁଭ ଦେବା, ଘର ପ୍ରତିଷ୍ଠା ପାଇଁ ଶୁଭ ମୁହୂର୍ତ୍ତ ସ୍ଥିର କରିବା, ହୋମ ଯଜ୍ଞ କରିବା ଇତ୍ୟାଦି ବି ଆମ ସମାଜରେ ବ୍ୟାପକ ଭାବେ ରହିବା ଦେଖାଯାଏ । ଏପରିକି କେଉଁ ଦିନରେ କ'ଣ ଖାଇବା ନ ଖାଇବା, କେଉଁ ଦିନରେ କ'ଣ ପିନ୍ଧିବା ବା ନ ପିନ୍ଧିବା, କେଉଁ କାର୍ଯ୍ୟରେ ଯିବା ପୂର୍ବରୁ ଶୁଭ ବେଳା ନିର୍ଣ୍ଣୟ କରିବା, ଗ୍ରହର କୁପ୍ରଭାବକୁ ଦୂର କରିବା ପାଇଁ ତାବିଜ, ଡେଉଁରିଆ, ମାଳା ପିନ୍ଧିବା ଆମ ସମାଜର ସାଧାରଣ ବିଶ୍ୱାସ ଅଟେ ।

ଆମ ଚତୁର୍ପାଶ୍ୱର ପଶୁ, ପକ୍ଷୀମାନଙ୍କୁ ବି ଆମେ ଆମ ବିଶ୍ୱାସ ଅନୁଯାୟୀ ଶୁଭ ବା ଅଶୁଭ ବୋଲି ଭାବନା ଆଣିଥାଉ । ବଡ଼ ବ୍ୟଙ୍ଗପୂର୍ଣ୍ଣ ହେଲେ ମଧ୍ୟ ଏହା ନିଛକ ସତ୍ୟ ଯେ ଯେଉଁ ସାମାଜିକ ପରିବେଶରେ ପୂଜା, ପାର୍ବଣ, ପୂଜାସ୍ଥଳ ନିର୍ମାଣ, ଧାର୍ମିକ କର୍ମକାଣ୍ଡର ପ୍ରାବଲ୍ୟ ଯେତେ ଅଧିକ ସେଠାରେ ସାଧୁତା, କର୍ତ୍ତବ୍ୟନିଷ୍ଠା, ନାଗରିକ ଶୃଙ୍ଖଳାବୋଧ ସେତିକି କମ୍ । ଏପରିକି ବିଭିନ୍ନ ପୂଜାସ୍ଥଳମାନଙ୍କରେ ଭକ୍ତମାନଙ୍କର ବିଶ୍ୱାସର ସୁଯୋଗ ନେଇ ସେମାନଙ୍କୁ ଶୋଷଣ କରିବା ଏକ ସାଧାରଣ ଘଟଣା । କିଛି ବ୍ୟକ୍ତି ଦେବୀ ଦେବତାଙ୍କର ମଧ୍ୟସ୍ଥି ହେବା ପୂଜାସ୍ଥଳମାନଙ୍କରେ ଦେଖାଯାଏ । ଜଣେ ଭକ୍ତ ବା ବିଶ୍ୱାସୀ

ବ୍ୟକ୍ତି ସ୍ୱାଧୀନ ଭାବେ ଦେବତାଙ୍କୁ ପ୍ରାର୍ଥନା କରିପାରିବ ନାହିଁ । ତାର କଥା ଦେବତା ବୁଝିବେ ନାହିଁ । ମଧ୍ୟସ୍ଥି ଜରିଆରେ ହିଁ ଦେବତାଙ୍କୁ ମନର କଥା ଜଣାଇହେବ । ପୁନଶ୍ଚ ଦେବତା କେବଳ ଦେବ-ଭାଷା ଜାଣନ୍ତି, ତାଙ୍କୁ ଇତର ଭାଷାରେ ଡକାଯାଇ ପାରିବ ନାହିଁ । ଯେ କୌଣସି ଶୁଭକାର୍ଯ୍ୟ ବା ଦେବତାର ଆବାହନ ସେହି ଦେବ ଭାଷାରେ ହିଁ ହେବ ।

ସ୍ୱାଧୀନତାର ପ୍ରାକ୍ କାଳରେ ଭାରତରେ ଯେଉଁ ନବଜାଗରଣ ବା ରିନାସାଁର ସୀମିତ ପରିବେଶ ସୃଷ୍ଟି ହୋଇଥିଲା ତାହା ପୂର୍ବରୁ ସାଧାରଣ ବ୍ୟକ୍ତି ଓ ଉଚ୍ଚଜାତିର ମହିଳାମାନେ ବି ଧର୍ମଶାସ୍ତ୍ର ବା ଦେବଭାଷା ପଢ଼ିବା ନେଇ ସମାଜରେ କଟକଣା ରହିଥିଲା । ସମାଜରେ ଏକ କ୍ଷୁଦ୍ର ଗୋଷ୍ଠୀ ହିଁ ସଂସ୍କୃତ ଭାଷା ଉପରେ ନିଜର କର୍ତ୍ତୃତ୍ୱ ରଖିଥିଲେ ଓ ତାହାରି ଆଧାରରେ ସମାଜରେ 'ଶ୍ରେଷ୍ଠତା'ର ସ୍ଥାନ ନେଇଥିଲେ । ଭାରତରେ ଯାହା କିଛି ସଂସ୍କାରବାଦୀ ଆନ୍ଦୋଳନ ସୃଷ୍ଟି ହୋଇଛି ତାହା ଏକ ନିର୍ଦ୍ଦିଷ୍ଟ ସମୟରେ ଏକ କ୍ଷୁଦ୍ର ପରିସରରେ ସୀମିତ ହୋଇ ରହିଛି । ତାହା ଏକ ବ୍ୟାପକ ଭିତ୍ତି ନେବା ସମ୍ଭବ ହୋଇ ନାହିଁ । ଅଶିକ୍ଷା, ସମାଜର ପ୍ରତିପତ୍ତିଶାଳୀ ଗୋଷ୍ଠୀର ପ୍ରଭାବ ଓ ଧାର୍ମିକ ଆବେଗକୁ ପ୍ରତିହତ କରି ସଂସ୍କାରବାଦୀ ଆନ୍ଦୋଳନ ଏକ ରାଷ୍ଟ୍ରୀୟ ଭିତ୍ତି ନେବା ସମ୍ଭବ ହୋଇନାହିଁ । ମଧ୍ୟଯୁଗୀୟ ବିଶ୍ୱାସ, ସାମନ୍ତବାଦୀ ବ୍ୟବସ୍ଥା ଓ ଏକ ଶ୍ରେଣୀଭିତ୍ତିକ ସମାଜ ଯୁଗ ଯୁଗ ଧରି ଭାରତୀୟ ଜନଜୀବନକୁ କବଳିତ କରି ରଖିଛି ।

ପ୍ରତିକୂଳ ସ୍ଥିତିରେ ଥାଇ ଅସହାୟ ବୋଧ କରୁଥିବା ଲୋକମାନଙ୍କ ଭିତରେ ଧାର୍ମିକ ଆବେଗ, ପାରଲୌକିକ ବିଶ୍ୱାସ ଓ ଭାଗ୍ୟବାଦ ଖୁବ୍ ସହଜରେ ପ୍ରସାର କରାଯାଇପାରେ ବୋଲି ସମାଜ ବିଜ୍ଞାନୀମାନେ ମତ ପୋଷଣ କରିଥାନ୍ତି । ଯେହେତୁ ଏବେ ବି ଆମ ସମାଜରେ ଉତ୍କଟ ଦାରିଦ୍ର୍ୟ, ନିରକ୍ଷରତା ଓ ଭେଦଭାବ ମୂଳକ ପରିବେଶର ପ୍ରାବଲ୍ୟ ରହିଛି ତାହାର ପରିଣାମ ସ୍ୱରୂପ କୁସଂସ୍କାର ବ୍ୟାପକ ହୋଇ ରହିଛି । ଏପରିକି ଶିକ୍ଷାଲାଭ କରିଥିବା ବ୍ୟକ୍ତିମାନେ ବି ବୈଜ୍ଞାନିକ ସଚେତନତା ଅଭାବରେ କୁସଂସ୍କାରର ଶିକାର ହେବା ସାଧାରଣ ଘଟଣା ଅଟେ । ଏହା ସହିତ ସମାଜର ପ୍ରଭାବଶାଳୀ ବ୍ୟକ୍ତିଗଣ ଶ୍ରମବିହୀନ ଉପାର୍ଜନ ପାଇଁ ଧାର୍ମିକ କର୍ମକାଣ୍ଡକୁ ମାଧ୍ୟମ କରୁଥିବାରୁ ଏସବୁକୁ ବେଶ୍ ଚତୁରତାର ସହ ପ୍ରସାର କରୁଛନ୍ତି । ପ୍ରଚଳିତ ଦେବ ଦେବୀ ସହ ନୂଆ ନୂଆ ଦେବ ଦେବୀ ସୃଷ୍ଟି କରିବା ଓ ଏପରିକି ମଶା, କାଉ, ସାପକୁ ପୂଜା କରିବାରେ ସେମାନେ କିଛି ବିବେକର ଦଂଶନ ପାଆନ୍ତି ନାହିଁ ।

(୧୯.୧୨.୨୦୧୨)



# କୁସଂସ୍କାର ଓ ଅନଗ୍ରସରତା

ଆଧୁନିକ ମାନଦଣ୍ଡରେ ଆମ ଦେଶ ଏକ ବିକାଶଶୀଳ ରାଷ୍ଟ୍ର ଯାହାକୁ ତୃତୀୟ-ବିଶ୍ୱ ରାଷ୍ଟ୍ର ଭିତରେ ଅନ୍ତର୍ଭୁକ୍ତ କରାଯାଏ । ପ୍ରଥମ ବିଶ୍ୱର ରାଷ୍ଟ୍ରମାନେ ବିକଶିତ, ସେଠାରେ ଜୀବନର ଗୁଣାତ୍ମକମାନ ଉନ୍ନତ । ଦାରିଦ୍ର୍ୟ, ନିରକ୍ଷରତା, ଶିଶୁ ଶ୍ରମିକ, ଭିକ୍ଷା ବୃତ୍ତି, ଅପପୁଷ୍ଟି ଇତ୍ୟାଦି ସେ ଦେଶମାନଙ୍କରେ ନାହିଁ । ଦ୍ୱିତୀୟ ବିଶ୍ୱର ରାଷ୍ଟ୍ରମାନେ ସମାଜବାଦୀ ବା ଏକଦା କମ୍ୟୁନିଷ୍ଟ ଥିବା ଦେଶ ସମୂହ । ସେଠାରେ ମଧ୍ୟ ଜୀବନର ମାନ ଉନ୍ନତ ଓ ସେ ଦେଶମାନଙ୍କରେ ଏପରି ଦାରିଦ୍ର୍ୟ ନାହିଁ । ତେବେ ତୃତୀୟ ବିଶ୍ୱର ରାଷ୍ଟ୍ର ଭିତରେ ଆମ ଦେଶ ଅନ୍ତର୍ଭୁକ୍ତ । ଏଠାରେ ସମାଜର ଏକ ବଡ଼ ଅଂଶ ଦାରିଦ୍ର୍ୟର ସୀମାରେଖା ତଳେ ରହିଛନ୍ତି । ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରିବା ସେମାନଙ୍କ ପାଇଁ ସମ୍ଭବ ହୁଏ ନାହିଁ । ସେମାନେ ଅପପୁଷ୍ଟିରେ ଆକ୍ରାନ୍ତ ହୁଅନ୍ତି । ଖାଦ୍ୟାଭାବରୁ ଅନାହାର ଜନିତ ମୃତ୍ୟୁ ଆମ ଦେଶରେ ହୁଏ । ସବୁ ଲୋକ ସାମାନ୍ୟ ଚିକିତ୍ସା ବି ପାଇ ପାରନ୍ତି ନାହିଁ । ଗ୍ରାମବହୁଳ ରାଷ୍ଟ୍ରରେ ଚାଷୀମାନେ ସମାଜର ମେରୁଦଣ୍ଡ ହୋଇଥିଲେ ବି ସେମାନେ ଆମ ବ୍ୟବସ୍ଥାରେ ସବୁଠାରୁ ଉପେକ୍ଷିତ, ଶୋଷିତ ଓ ଦରିଦ୍ର । ଏପରିକି ଚାଷୀ ଆତ୍ମହତ୍ୟା ଆମ ଦେଶରେ ହୁଏ । ଆମ ଦେଶରେ ଶିଶୁ ଶ୍ରମିକ ପ୍ରଥା ଅତି ଉତ୍କଟ । ଯେଉଁ ବୟସରେ ପିଲାମାନେ ସ୍କୁଲକୁ ଯାଇ ଭବିଷ୍ୟ ନିର୍ମାଣ କରନ୍ତେ, ସେହି କଅଁଳ ବୟସରୁ ସେମାନେ ଜୀବନର ବୋଝ ବୋହିବାକୁ ବାଧ୍ୟ ହୁଅନ୍ତି । କିଏ ରାସ୍ତାରେ ଭିକ ମାଗେ, ମଇଳା ଗଦାରୁ ଜରି ଗୋଟାଏ, ଷ୍ଟେସନରେ ଜୋତା ପଲିସ କରେ ଇତ୍ୟାଦି । ସେମାନଙ୍କ ପାଇଁ ଜୀବନରେ କିଛି ସ୍ୱପ୍ନ ନଥାଏ । ଆମ ସହର ମାନଙ୍କର ବସ୍ତିମାନଙ୍କରେ ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ପରିବେଶରେ ଅନେକ ଲୋକ ରହନ୍ତି । ଗୋଟିଏ ସୁସ୍ଥ ପରିବେଶରେ ଏକ ସମ୍ମାନର ଜୀବନ ବଞ୍ଚିବା ସମାନଙ୍କ ପାଇଁ ସ୍ୱପ୍ନ ହୋଇଥାଏ । ଏବେ ବି ଆମ ଦେଶରେ ନିରକ୍ଷର ଲୋକଙ୍କ ସଂଖ୍ୟା ଲୋକସଂଖ୍ୟାର ଏକ ତୃତୀୟାଂଶ । ଭିକ୍ଷାବୃତ୍ତି କରି ଜୀବନ ବଞ୍ଚିବାର

ଲୋକମାନଙ୍କୁ ଆମେ ଟ୍ରେନରେ, ଷ୍ଟେସନରେ, ବସ୍‌ଷ୍ଟାଣ୍ଡରେ, ସାହି ବସ୍ତିରେ ପ୍ରତିଦିନ ଦେଖୁ । ଦାରିଦ୍ର୍ୟ, ନିରକ୍ଷରତା, ବାଳଶ୍ରମିକ, ଭିକ୍ଷା ବୃତ୍ତି, ଅପପୃଷ୍ଟି, ଅନାହାର ମୃତ୍ୟୁ, ଚାଷୀ ଆତ୍ମହତ୍ୟା ଇତ୍ୟାଦି ଆମ ସମାଜରେ ସାଧାରଣ ଘଟଣା । ଏକବିଂଶ ଶତାବ୍ଦୀରେ ବି ଜନସଂଖ୍ୟାର ଏକ ପ୍ରମୁଖ ଭାଗ ଏହିପରି ସ୍ଥିତିରେ ରହିଛନ୍ତି ।

ସେହିପରି ଆମର ସାମାଜିକ ଜୀବନ କେଉଁ ସ୍ତରରେ ରହିଛି ? ଆମର ନାଗରିକ ଶୃଙ୍ଖଳାବୋଧର ମାନ କିପରି ? ଆମ ରାଷ୍ଟ୍ରର ସଂସଦଠାରୁ ଆମର ସାହି ବସ୍ତି ଯାଏ ସବୁ କ୍ଷେତ୍ରରେ ଶୃଙ୍ଖଳାବୋଧର ଘୋର ଅଭାବ ପରିଲକ୍ଷିତ ହୁଏ । ଆଇନକୁ ହାତକୁ ନେବା, ସର୍ବ ସାଧାରଣ ସ୍ଥାନରେ ଶୃଙ୍ଖଳାକୁ ବ୍ୟାହତ କରିବା, ଯେକୌଣସି କଥାକୁ ଆଳ କରି ବନ୍ଦ ଡାକରା ଦେବା ଆମ ଜନ ଜୀବନର ସାଧାରଣ ଘଟଣା । ଆମର ସରକାରୀ କର୍ମକ୍ଷେତ୍ରରେ ଦୁର୍ନୀତି ତ ଏକ ମାମୁଲି ଘଟଣା ହୋଇଗଲାଣି । ନିଜର କାର୍ଯ୍ୟଟି ଯେତେ ନ୍ୟାୟ ସଙ୍ଗତ ହୋଇଥିଲେ ବି ଏହା ସହଜରେ ହୋଇପାରେ ନାହିଁ । ଆମର କର୍ମସଂସ୍କୃତିର ମାନ ଉନ୍ନତ ହୋଇପାରୁନାହିଁ । ଆମ ଦେଶର ପ୍ରମୁଖ ଶିକ୍ଷାନୁଷ୍ଠାନମାନ ବି ଆନ୍ତର୍ଜାତିକ ମାନଦଣ୍ଡରେ ଅତି ତଳେ ଏପରିକି ପୃଥିବୀର ଶହେଟି ପ୍ରମୁଖ ଶିକ୍ଷାନୁଷ୍ଠାନ ଭିତରେ ଆମ ଦେଶର ଗୋଟିଏ ହେଲେ ବି ସ୍ଥାନ ନ ପାଇବା ଆମ ଅନଗ୍ରସରତାର ସ୍ୱାକ୍ଷର ବହନ କରେ ।

ଆମ ଅନଗ୍ରସରତାର କାରଣମାନଙ୍କୁ ଖୋଜି ବସିଲେ ଏକ ଗ୍ରନ୍ଥ ହୋଇ ପାରିବ । ପ୍ରକୃତି ଆମ ପାଇଁ ଯଥେଷ୍ଟ ଅନୁକୂଳ । ଏପରି ନୁହେଁ ଯେ ପ୍ରାକୃତିକ ପ୍ରତିକୂଳତା ଯୋଗୁଁ ଆମେ ଅନଗ୍ରସର ବରଂ ପ୍ରକୃତି ଯେଉଁଠି ଅତ୍ୟନ୍ତ ପ୍ରତିକୂଳ, ସେହି ଦେଶମାନେ ନିଜର ପରିଶ୍ରମ, ନିଷ୍ଠା, କର୍ମସଂସ୍କୃତି ଓ ଆଧୁନିକ ବିଜ୍ଞାନ ତଥା ପ୍ରଯୁକ୍ତି ଯୋଗୁଁ ଯଥେଷ୍ଟ ଉନ୍ନତ ଓ ବିକଶିତ ହୋଇପାରିଛନ୍ତି । କିନ୍ତୁ ପରିତାପର ବିଷୟ ଆମ ଦେଶରେ ଯଥେଷ୍ଟ ପ୍ରାକୃତିକ ସମ୍ପଦ, ମାନବ ସମ୍ବଳ ଓ ପ୍ରଯୁକ୍ତିବିଦ୍ ଥାଇ ବି ଆମ ରାଷ୍ଟ୍ର ଅନଗ୍ରସର ହୋଇ ରହିଛି । ଆଉ ଆମ ରାଜ୍ୟ ତ ଭାରତର ଏକ ଦରିଦ୍ର ଓ ଅନଗ୍ରସର ରାଜ୍ୟ ।

ଆମ ଅନଗ୍ରସରତାର ରାଜନୈତିକ, ଅର୍ଥନୈତିକ କାରଣ ଯାହା ଥିଲେ ବି ଆମର ସାମାଜିକ ଓ ସାଂସ୍କୃତିକ କାରଣ ଏ କ୍ଷେତ୍ରରେ ଅଧିକ ଦାୟୀ ହେବା ମନେହୁଏ । ଏହି ପୃଷ୍ଠଭୂମିରେ ଆମ ସମାଜରେ ଭରି ରହିଥିବା ନାନା କୁସଂସ୍କାର, ଅପସଂସ୍କୃତି ଓ ଅହେତୁକ ବିଶ୍ୱାସ ଆମ ସାମାଜିକ ଜୀବନ ପ୍ରବାହକୁ ଏବେ ବି କବଳିତ କରି ରଖିଛି । ୟୁରୋପରେ ବିଜ୍ଞାନର ଯୁଗ ଆରମ୍ଭ ପୂର୍ବରୁ ସମାଜ ଯେଉଁ ସ୍ଥିତିରେ ଥିଲା ତାହାକୁ ଅନ୍ଧକାରର ଯୁଗ କୁହାଯାଏ । ଧାର୍ମିକ ବିଶ୍ୱାସ ଓ କୁସଂସ୍କାର ଜନଜୀବନକୁ ଆଚ୍ଛାଦିତ

କରି ରଖିଥିଲା । କିନ୍ତୁ ୟୁରୋପୀୟ ପୁନର୍ଜାଗରଣ ଓ ନବସଂସ୍କାର ପରେ ବିଜ୍ଞାନର ଯେଉଁ ଧାରାଟି ସୃଷ୍ଟି ହେଲା ତାର ପରିଣାମ ସ୍ୱରୂପ ସମାଜରେ ତୁମୁଳ ଆଲୋଡନ ଆସିଲା । ସବୁ କ୍ଷେତ୍ରରେ ନୂଆ ନୂଆ ଗବେଷଣା ଜ୍ଞାନର ଦିଗନ୍ତକୁ ବୃଦ୍ଧି କରି ଚାଲିଲା । ରେଳଗାଡି, ବିଦ୍ୟୁତ୍‌ଶକ୍ତି, ପ୍ରିଣ୍ଟିଂ ପ୍ରେସ ପରି ଗୋଟିଏ ପରେ ଗୋଟିଏ ଉଦ୍ଭାବନ ସମାଜର ରୂପରେଖ ବଦଳାଇଦେଲା । ସେହିପରି ମହାମାରୀ ରୋଗମାନଙ୍କୁ ନିୟନ୍ତ୍ରଣ କରିବା ପାଇଁ ଯେଉଁ ଗବେଷଣା ହେଲା ତାର ପରିଣାମସ୍ୱରୂପ ବିଭିନ୍ନ ରୋଗର ଚିକିତ୍ସା ସମ୍ଭବ ହେଲା । ହଇଜା, ବସନ୍ତ, କୁଷ୍ଠ, ଯକ୍ଷ୍ମା, ପ୍ଳେଗ ପରି ମାରାତ୍ମକ ରୋଗମାନଙ୍କର ପ୍ରତିଷେଧକ ଓ ଚିକିତ୍ସା ବାହାରି ପାରିଲା । ଶିକ୍ଷା ବ୍ୟବସ୍ଥାକୁ ସାର୍ବଜନୀନ କରାଗଲା ଓ ବିଦ୍ୟାଳୟ ଏବଂ ବିଶ୍ୱବିଦ୍ୟାଳୟ ଦ୍ୱାରା ଶିକ୍ଷାର ପ୍ରସାର ହେଲା । ଏହି ପରିବର୍ତ୍ତନର ଫଳସ୍ୱରୂପ ଗଣତାନ୍ତ୍ରିକ ଜୀବନଧାରା, ଧର୍ମନିରପେକ୍ଷ ମୂଲ୍ୟବୋଧ, ମାନବିକ ଅଧିକାର ଜନିତ ମାନବବାଦର ଦ୍ରୁତ ପ୍ରସାର ହେଲା । ଗୋଟିଏ ପଟେ ଆଧୁନିକ ଜ୍ଞାନ ବିଜ୍ଞାନର ବିକାଶ ଓ ଅନ୍ୟପଟେ ମାନବବାଦୀ ଜୀବନ ଦୃଷ୍ଟିର ପ୍ରସାର ୟୁରୋପର ଜନଜୀବନରେ ଉଲ୍ଲେଖନୀୟ ଓ ଗୁଣାତ୍ମକ ପରିବର୍ତ୍ତନ ସୃଷ୍ଟିକଲା । ୟୁରୋପୀୟ ରାଷ୍ଟ୍ରମାନେ ସାମ୍ରାଜ୍ୟବାଦ ବିସ୍ତାର କରିଛନ୍ତି, ଅନ୍ୟଦେଶକୁ ଶୋଷଣ ବି କରିଛନ୍ତି ତାହା ସହିତ ସମଗ୍ର ମାନବଜାତିକୁ ଜ୍ଞାନ ବିଜ୍ଞାନର ଆଲୋକ, ଗଣତାନ୍ତ୍ରିକ ମୂଲ୍ୟବୋଧ, ସାର୍ବଜନୀନ ଶିକ୍ଷା ବ୍ୟବସ୍ଥା, ବ୍ୟକ୍ତି ମର୍ଯ୍ୟାଦାବୋଧର ଭାବନା ଓ ମାନବବାଦର ବିଚାର ବି ଦେଇଛନ୍ତି ।

ତେବେ ଆମ ଦେଶର ଜନଜୀବନରେ ଏବେ ବି ମଧ୍ୟଯୁଗୀୟ ମାନସିକତାର ପ୍ରାବଲ୍ୟ ରହିଛି । ଜାତିଆଣ, ଉଚ୍ଚନୀଚ ଭେଦଭାବ ଓ ପାରଲୌକିକ ଜୀବନ ଦୃଷ୍ଟି ଆମ ଜନଜୀବନରୁ ଏବେ ବି ଦୂର ହୋଇପାରିନାହିଁ । ନାନା ପୂଜା,ପର୍ବ, ପର୍ବାଣୀ ଆମର ବର୍ଷସାରା ଚାଲେ ଓ ଆମର ଶ୍ରମ ଏହିଥିରେ ହିଁ ବ୍ୟୟ ହୁଏ । ଭାଗ୍ୟ, ରାଶି, ଗ୍ରହପ୍ରଭାବ ଉପରେ ଆମ ଲୋକଙ୍କର ଗଭୀର ବିଶ୍ୱାସ । ବାସ୍ତୁ, ଫଳିତ ଜ୍ୟୋତିଷ, ଗ୍ରହଶାନ୍ତି, ଶୁଭ-ଅଶୁଭ ମୁହୂର୍ତ୍ତ ଉପରେ ଆମେ ଅନେକ ବିଶ୍ୱାସ କରୁ । ରୋଗରୁ ମୁକ୍ତି ପାଇବାକୁ ବିଜ୍ଞାନ ଜନିତ ଗବେଷଣାରେ ଗୁରୁତ୍ୱ ନ ଦେଇ କୁସଂସ୍କାର ଜନିତ ବିଶ୍ୱାସକୁ ପ୍ରାଧାନ୍ୟ ଦେଉ । ଆମ ଚତୁର୍ପାର୍ଶ୍ୱରେ ରହିଥିବା ଦାରିଦ୍ର୍ୟ, ନିରକ୍ଷରତା ଓ ସାମାଜିକ ଭେଦଭାବ ପ୍ରତି ଆମେ ସ୍ପର୍ଶକାତରଶୂନ୍ୟ । ବରଂ ପର୍ବ ପର୍ବାଣୀ, ନାନା ପୂଜା ପଦ୍ଧତିରେ ଆମେ ବ୍ୟସ୍ତ ଥାଉ । ଆମର ପୂଜା, ପର୍ବପର୍ବାଣୀରେ ଆମେ ଯେତିକି ପରିବେଶ ପ୍ରଦୂଷଣ କରୁ, ସେ ବିଷୟରେ ଆମେ ସାମାନ୍ୟ ସମ୍ପୃକ୍ତି ବ୍ୟକ୍ତ କରୁନାହୁଁ । ଯେତେସବୁ ପୂଜାରେ ମୂର୍ତ୍ତିମାନ ନିର୍ମାଣ ହୁଏ ସେସବୁକୁ ଆମେ ପୁଷ୍କରିଣୀରେ ବା ନଦୀରେ ପକାଉ, ତାହା ଜଳକୁ କେତେ ପ୍ରଦୂଷିତ

କରେ ତାହା ଆମେ ଚିନ୍ତା କରୁନା । ପୂଜା ଓ ପର୍ବ ପର୍ବାଣୀରେ ତଥା ବିଭିନ୍ନ ପୂଜାସ୍ଥଳରେ ମାଇକ୍‌ର ଯେଉଁ ବ୍ୟବହାର ହୁଏ, ତାହା କେତେ ଶବ୍ଦ ପ୍ରଦୂଷଣ କରେ ସେ ବିଷୟରେ ଆମେ ସାମାନ୍ୟ ଚିନ୍ତା କରେନାହିଁ । ଆମ ରାସ୍ତାଘାଟରେ କୁଢ଼ କୁଢ଼ ମଇଳା, ଆବର୍ଜ୍ଜନା ଦେଖିବାକୁ ମିଳେ । ସ୍ୱାସ୍ଥ୍ୟରକ୍ଷା ଜନିତ ପରିମଳ ବ୍ୟବସ୍ଥା କ୍ଷେତ୍ରରେ ଆମେ ବହୁ ପଛରେ ।

ସେହିପରି ନାଗରିକ ଶୃଙ୍ଖଳାବୋଧ କ୍ଷେତ୍ରରେ ଆମର ସାମାଜିକ ଜୀବନର ମାନ ଅତି ନିମ୍ନସ୍ତରର ମନେହୁଏ । ଧାର୍ମିକ ଆବେଗ, ସାମ୍ପ୍ରଦାୟିକ ମାନସିକତା ଓ ଉଚ୍ଚ-ନୀଚ ଭେଦଭାବ ଆମ ଜନ ଜୀବନକୁ ଯେତେ ପ୍ରଭାବିତ କରେ ଶୃଙ୍ଖଳାବୋଧ, ସମୟାନୁବର୍ତ୍ତିତା, ସାମାଜିକ ଉତ୍ତରଦାୟିତ୍ୱବୋଧ ଓ କର୍ତ୍ତବ୍ୟଜ୍ଞାନ ଆମକୁ ପ୍ରଭାବିତ କରେନାହିଁ । ଆମ ସମାଜରେ କେତେ ବାବା, ମାତା, ଦେବପୁରୁଷ ବୁଲି ବୁଲି ପ୍ରବଚନ ଦିଅନ୍ତି । ସେମାନେ ଆମକୁ କାଳ୍ପନିକ ପରଜନ୍ମ, ମୁକ୍ତି, ମୋକ୍ଷ, ସ୍ୱର୍ଗପ୍ରାପ୍ତିର ବାର୍ତ୍ତା ଦିଅନ୍ତି କିନ୍ତୁ ଆମର ସାମାଜିକ ଜୀବନ ପ୍ରବାହକୁ କିପରି ଉନ୍ନତ ଓ ଦୁର୍ନୀତିମୁକ୍ତ କରାଯିବ ସେ ବିଷୟରେ ମୁହଁ ଖୋଲନ୍ତି ନାହିଁ । ପୂଜା, ପ୍ରାର୍ଥନା, ଉପାସନା କଲେ ଧନ ଆସିବ, ମୁକ୍ତି ମିଳିବ ସେହି ବାଣୀ ବାରମ୍ବାର ପ୍ରଚାରିତ ହୁଏ । ଯେଉଁମାନେ ପୂଜା, ବ୍ରତ, ମାନସିକ, ପ୍ରବଚନ, ଉପାସନାରେ ବ୍ୟସ୍ତ ସେହିମାନେ ସମାଜରେ ଆଦୃତ; ଅଥଚ ସାଧୁତା, ମାନବିକତା, ସମ୍ବେଦନଶୀଳତା ଇତ୍ୟାଦି ମୂଲ୍ୟବୋଧରେ ବିଶ୍ୱାସୀ ବ୍ୟକ୍ତିମାନେ ସମାଜରେ ଉପେକ୍ଷିତ । ବାବା ଭକ୍ତ, ମାତା ଭକ୍ତ, ଅମକ ଦିଅଁ ପ୍ରେମୀ, ସମକ ଦିଅଁର ପୂଜକ ବ୍ୟକ୍ତିମାନେ ଆମ ଜନ ଜୀବନରେ ବେଶ୍ ଆଦୃତ ଅଥଚ ହେତୁବାଦୀ, ନ୍ୟାୟବାନ, କର୍ତ୍ତବ୍ୟ ପ୍ରେମୀ, ଦରଦୀ ମଣିଷମାନେ ଆମର ଆଦର୍ଶ ନୁହନ୍ତି ।

ବିକାଶ, ପ୍ରଗତି ଓ ଗୁଣାତ୍ମକ ଜୀବନ ମଣିଷର ପ୍ରୟାସରେ ହିଁ ସମ୍ଭବ । ଗୋଟିଏ ଦେଶ ବା ସମାଜର ବିକାଶଧାରା ଜନଗଣଙ୍କର କର୍ତ୍ତବ୍ୟବୋଧ, ସାଧୁତା ଓ ସମାଜ ପ୍ରତି ଉତ୍ତର ଦାୟିତ୍ୱବୋଧରୁ ଉଦ୍ଭବ ହୋଇଥାଏ । ଯେଉଁ ଦେଶ ସମୂହ ବିକଶିତ ଓ ଯେଉଁ ସମାଜରେ ଜନଜୀବନର ଗୁଣାତ୍ମକ ମୂଲ୍ୟ ଉନ୍ନତ ତାହା ସେମାନଙ୍କୁ କେଉଁ ଦିଅଁ ଦେବତାଙ୍କର ଆଶୀର୍ବାଦରୁ ମିଳିନାହିଁ । ଆମେ ଯଦି ଆଜି ଅନଗ୍ରସର ରହିଛେ ଏହି ସ୍ଥିତି କେଉଁ ଦିଅଁ ଦେବତାଙ୍କର ଅଭିଶାପରୁ ଆସିନାହିଁ ବରଂ ଆମର ଧାର୍ମିକ ଭାବପ୍ରବଣତା, ଅହେତୁକ ପରମ୍ପରା ଓ ଅବୈଜ୍ଞାନିକ ଜୀବନଦୃଷ୍ଟି ଆମର ଅନଗ୍ରସରତା ପାଇଁ ଅନ୍ୟାନ୍ୟ କାରଣ ମଧ୍ୟରେ ଏକ ପ୍ରମୁଖ କାରଣ । ଆଜି ବିଜ୍ଞାନର ଅନେକ ଉପକରଣ ଆମେ ବ୍ୟବହାର କରୁଛେ । କିନ୍ତୁ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପ୍ରତି ଆମେ ସର୍ବକାତରଶୂନ୍ୟ ହୋଇ ରହିଛେ । ଯେଉଁ ସାମାଜିକ ଜୀବନ ପ୍ରବାହରେ ପ୍ରଚଳିତ ବ୍ୟବସ୍ଥା, ସରକାର ଓ ଶାସନକଳ

ଉପରେ ମଣିଷ ନିର୍ଭର କରିପାରେ ନାହିଁ ସେଠାରେ ସେ ହତାଶାର ମନୋଭାବ ନେଇ କଳ୍ପିତ ଦିଅଁ ଦେବତାଙ୍କୁ ବିଶ୍ୱାସ କରେ । ପନ୍ଥାର ପବିତ୍ରତା ଓ ସତ୍ ଉପାୟରେ ଉପାର୍ଜ୍ଜନକୁ ଗୁରୁତ୍ୱ ନ ଦେଇ ଯେ କୌଣସି ପନ୍ଥାରେ ସେ ଉପାର୍ଜ୍ଜନ କରେ । ଅସତ୍ ଉପାୟରେ ଉପାର୍ଜ୍ଜନ କରୁଥିବାରୁ ତାହା ଭିତରେ ଯେଉଁ ଗ୍ଳାନିବୋଧ ଆସେ ସେ ପାଇଁ ସେ ପୂଜା, ପ୍ରାର୍ଥନା ଓ କଳ୍ପିତ ଦିଅଁ ଦେବତା ପାଖରେ ଶରଣାପନ୍ନ ହୁଏ । ଏହି ପ୍ରକାରର ଧାର୍ମିକ ମନୋଭାବ ଆମ ଜନ ଜୀବନରେ ପରିବ୍ୟାପ୍ତ ହେବା ସାଧାରଣ ଘଟଣା ଅଟେ ।

ଆଧୁନିକ ଜୀବନଦର୍ଶନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଜନିତ ହେତୁବାଦ ଓ ସମ୍ବେଦନଶୀଳ ଭ୍ରାତୃଭାବ ଜନିତ ମାନବବାଦ ଦୁଇଟି ପ୍ରମୁଖ ସାର୍ବଜନୀନ ମୂଲ୍ୟବୋଧ । କିନ୍ତୁ ଆମ ଦେଶର ବ୍ୟବସ୍ଥାରେ ଥିବା ଜାତିବାଦ, ସାମନ୍ତବାଦ, ଚମତ୍କାରିତା ଓ ପାରଲୌକିକ ଜୀବନଦୃଷ୍ଟିର ଛାଇ ତଳେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ, ହେତୁବାଦ, ସାମାଜିକ ନ୍ୟାୟବୋଧ ଓ ମାନବବାଦ ଯେ ଉଧେଇ ପାରୁନାହିଁ ଏହା କୁହାଯାଇପାରେ । ଆମ ଦେଶର ସମ୍ବିଧାନ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦର ପ୍ରସାରକୁ ଆମର ଜାତୀୟ ଆଦର୍ଶ ଭାବେ ଗ୍ରହଣ କରିଥିଲେ ବି ବାସ୍ତବପକ୍ଷେ ଆମ ସାମାଜିକ ଜୀବନ ଏହାଠାରୁ ବହୁ ଦୂରରେ ରହିଥିବା ମନେହୁଏ ।

(୨୬.୧୨.୨୦୧୨)



# କୁସଂସ୍କାର ଓ ଚମତ୍କାରିତା

ନିକଟରେ ପ୍ରାତଃ ଭ୍ରମଣରେ ଯିବା ସମୟରେ ରାସ୍ତାରେ ଜଣେ ପରିଚିତ ବ୍ୟକ୍ତି ସାକ୍ଷାତ ହେଲେ । ସେ ବି ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀ । ବେଶ୍ ଧର୍ମପରାୟଣ ଓ ଭକ୍ତି ସ୍ୱଭାବର ବ୍ୟକ୍ତି । ସକାଳୁ ସେ ଫୁଲ ତୋଳିବା ପାଇଁ ପ୍ରାତଃ ଭ୍ରମଣ କରନ୍ତି । ହଠାତ୍ ସେ ଆଗ୍ରହର ସହ ମୋତେ ଅଭିବାଦନ ଜଣାଇ ମୋ ନିକଟକୁ ଆସିଲେ । ମୁଁ ବି ପରିଚିତ ବନ୍ଧୁଙ୍କ କୁଶଳ କାମନା କରି ତାଙ୍କ ପାଖରେ ଛିଡା ହେଲି । ମୁଁ ଜଣେ ଦର୍ଶନ ବିଭାଗର ଅବସରପ୍ରାପ୍ତ ଅଧାପକ ବୋଲି ସେ ଜାଣନ୍ତି । ସେ ଅତ୍ୟନ୍ତ ଆଗ୍ରହର ସହ ଗତ ସନ୍ଧ୍ୟାରେ ତାଙ୍କ ଘରେ ଘଟିଥିବା ଏକ ଚମତ୍କାରିତାର ବର୍ଣ୍ଣନା ମୋ ପାଖରେ କହି ବସିଲେ । ତାଙ୍କ ପୂଜା ଘରେ ରଖିଥିବା ବିଭିନ୍ନ ଫଟୋ ଓ ମୂର୍ତ୍ତିପାଖରେ ତାଙ୍କ ପତ୍ନୀ ପ୍ରତ୍ୟହଃ ପ୍ରାର୍ଥନା କରନ୍ତି । ପୂର୍ବଦିନ ସନ୍ଧ୍ୟାରେ ତାଙ୍କ ପତ୍ନୀ ଏକ ମୂର୍ତ୍ତି ପାଖରେ ଚାମଚରେ କ୍ଷୀର ଦେବାରୁ ସେହି ମୂର୍ତ୍ତି କ୍ଷୀର ପିଇ ଦେଇ ଚାମଚ ଖାଲି କରି ଦେଲେ । ସେ ଏହା ଜାଣିବାପରେ ନିଜେ ଭକ୍ତିର ସହ ମୂର୍ତ୍ତି ପାଖରେ କ୍ଷୀର ଦେବାରୁ ମୂର୍ତ୍ତି ବି କ୍ଷୀର ପିଇଲେ । ତାଙ୍କ ପ୍ରତି ଈଶ୍ୱରଙ୍କର ଏହି କରୁଣାରେ ସେ ଅତ୍ୟନ୍ତ ପ୍ରୀତ ହୋଇ ଭକ୍ତିରେ ଈଶ୍ୱରଙ୍କୁ କୃତଜ୍ଞତା ଜଣାଇଲେ । ତାଙ୍କର ଏହି ଅନୁଭୂତିଟିକୁ ମୋ ପାଖରେ ବ୍ୟକ୍ତ କରି ସେ ତାଙ୍କ ଭକ୍ତିଭାବର ପରିଚୟ ଦେବାକୁ ଚାହୁଁଥିଲେ । ମୁଁ ତାଙ୍କଠାରୁ ଏହା ଶୁଣିବା ପରେ ତାଙ୍କୁ କହିଲି ଯେ ଏଥିରେ ଚମତ୍କାରିତା ନାହିଁ, ବରଂ ତାଙ୍କର ଭକ୍ତିଭାବ ଜନିତ ବିଶ୍ୱାସ ଯୋଗୁଁ ସେ ଘଟଣାଟିକୁ ଏ ପ୍ରକାର ଭାବୁଛନ୍ତି । ଏହା ମଧ୍ୟ କହିଲି ଯେ ଯଦି ମୂର୍ତ୍ତି ପାଖରେ କ୍ଷୀର ପରିବର୍ତ୍ତେ ଚା କିମ୍ୱା କଫି ଚାମଚରେ ଦିଆଯାଏ, ତାହାହେଲେ ଚାମଚରୁ ତାହା ବି ଅଦୃଶ୍ୟ ହୋଇଯିବ । ପ୍ରକୃତରେ ମୂର୍ତ୍ତି ଏହା ପିଏ ନାହିଁ, ଏହା ବିଜ୍ଞାନର ଏକ ନିୟମ ଆଧାରରେ ତଳକୁ ବୋହିଯାଏ । ମୋର ଏହି ବକ୍ତବ୍ୟରେ ବନ୍ଧୁଙ୍କର ଆଗ୍ରହ କିପରି କିମିଯିବା ଓ ମୋଠାରୁ ତାଙ୍କର ପ୍ରଶଂସା ବା ମୋର କୌତୂହଳପୂର୍ଣ୍ଣ ଜିଜ୍ଞାସା ନ ଦେଖି ସେ ତାଙ୍କ ବାଟରେ ଚାଲିଗଲେ ।

ଏହି ଘଟଣାଟି ଅତୀତର ଏକ ଘଟଣା ମୋ ସ୍ମୃତିକୁ ଆଣିଲା । ସମ୍ଭବତଃ ପନ୍ଦର ବର୍ଷ ତଳର ଘଟଣା ହେବ । ମୁଁ ସେତେବେଳେ ବଲାଙ୍ଗିରସ୍ଥିତ ରାଜେନ୍ଦ୍ର କଲେଜରେ ଅଧ୍ୟାପକ ଥାଏ । ହଠାତ୍ ସହରରେ ପ୍ରଚାରିତ ହୋଇଗଲା ଯେ ଗଣେଶ ମୂର୍ତ୍ତି କ୍ଷୀର ପିଉଛନ୍ତି । ବିଭିନ୍ନ ମନ୍ଦିରରେ ଶହ ଶହ ଲୋକ କ୍ଷୀର ନେଇ ଜମା ହୋଇଛନ୍ତି । ତାପରେ ଶୁଣାଗଲା ଯେ ଗଣେଶ ମୂର୍ତ୍ତି ନୁହଁ ଯେ କୌଣସି ମୂର୍ତ୍ତିଙ୍କୁ କ୍ଷୀର ଦେଲେ ସେ ପିଉଛନ୍ତି । ସହରର ସବୁ ମନ୍ଦିରରେ ଲୋକଙ୍କର ଭିଡ, ସମସ୍ତେ କ୍ଷୀର ପାତ୍ର ନେଇ ଯାଉଛନ୍ତି । ଦୁଇ ଦିନ ଧରି ସହରରେ କ୍ଷୀର ମିଳିଲା ନାହିଁ, କ୍ଷୀର ଲିଟର ବହୁ ଅଧିକ ଦାମରେ ବିକ୍ରି ହେଲା । କୌଣସି ଏକ ଚମତ୍କାରିତାର ପ୍ରଚାର ହେଲେ ଲୋକମାନଙ୍କ ଭିତରେ ଏତେ କୌତୂହଳତା ପ୍ରକାଶ ପାଏ ଯେ ଲୋକମାନେ ନିଜର ସାଧାରଣ ଜ୍ଞାନ ପ୍ରୟୋଗ ନକରି ଏହି ସବୁ କଥାକୁ ବିଶ୍ୱାସ କରିଥାନ୍ତି । ସେହି ଚମତ୍କାରିତାର ଘଟଣାଟି ଲୋକମାନଙ୍କ ମଧ୍ୟରେ ବନାଗ୍ନି ଭଳି ବ୍ୟାପିଯାଏ । କେତେକ ଏହାକୁ ସତ୍ୟ ଭାବନ୍ତି, ଅନ୍ୟ କେତେକ କୌତୂହଳ ହୋଇ ଏହା ଦେଖିବାକୁ ଭିଡ ଜମାନ୍ତି, ଆଉ କେତେକ ଏକ ଦୈବୀ କରୁଣା ଜନିତ ଘଟଣାକୁ ସନ୍ଦେହ କରିବା ପାପ ଭାବି ଏହାକୁ ସମର୍ଥନ କରନ୍ତି, ଅନ୍ତତଃ ଏହାକୁ ବିରୋଧ କରନ୍ତି ନାହିଁ । ଏହିଭଳି କାରଣ ଯୋଗୁଁ ଏ ପ୍ରକାର ଘଟଣା ସହଜରେ ବ୍ୟାପି ଯାଇଥାଏ ଓ ଯେହେତୁ ସମାଜର ଅନେକ ବ୍ୟକ୍ତିଙ୍କ ଭିତରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନଥାଏ, ତେଣୁ ସେମାନେ ଏଥିରେ ବିଶ୍ୱାସ କରନ୍ତି ଓ ଏପରିକି ଆଉ ପାଞ୍ଚଜଣଙ୍କୁ ଏହା କହି ଘଟଣାର ପ୍ରସାରରେ ସାମିଲ ହୁଅନ୍ତି । ଏପରି କଥା ବି ବେଳେବେଳେ ଗଣମାଧ୍ୟମରେ ପ୍ରଚାରିତ ହୁଏ ଓ ତାହା ଲୋକଙ୍କର କୌତୂହଳତାକୁ ବଢ଼ାଇଦିଏ ।

ସେହିପରି ଲେଖକ କେତେକ ସମୟରେ ବେନାମି ପତ୍ର ପାଏ ଓ ବେଳେ ବେଳେ ରାସ୍ତାରେ ଅପରିଚିତ ଲୋକଙ୍କ ପାଖରୁ କିଛି ଛପା ଲିଫ୍‌ଲେଟ ବି ପାଇଥାଏ । ସେଥିର ବିଷୟବସ୍ତୁ ଥାଏ ଅମୁକ ସ୍ଥାନରେ ଏକ ଦିଅଁ ସ୍ୱପ୍ନରେ ନିର୍ଦ୍ଦେଶ ଦେଇଛନ୍ତି ଯେ ତାଙ୍କ ମହିମା ବିସ୍ତାର କରିବାକୁ ତାଙ୍କ ନାମରେ କିଛି ପତ୍ର ଲେଖିବାକୁ ହେବ । ଭକ୍ତ ଜଣକ ଏହି କଥାକୁ ଶିରୋଧାର୍ଯ୍ୟ କରି ପତ୍ର ପଠାଇବାରୁ ସପ୍ତାହକ ମଧ୍ୟରେ ଏକ ଲଟେରୀରେ ଜିତି ଲକ୍ଷାଧିକ ଟଙ୍କା ପାଇବାରୁ ତାଙ୍କର ଦାରିଦ୍ର୍ୟ ଦୂର ହୋଇଗଲା । ସେହିପରି କିଏ ଦେବୀଙ୍କ ଆଜ୍ଞା ପାଳନ କରିବାରୁ ରୋଗରୁ ଆରୋଗ୍ୟ ହେଲେ, କାହାର ପୁଅର ଚାକିରି ହୋଇଗଲା ଇତ୍ୟାଦି ଇତ୍ୟାଦି । ଆଉ କେହି ଏହାକୁ ଅବଜ୍ଞା କରିବାରୁ ତାର ଘର

ପୋଡିଗଲା, କିମ୍ବା ତାଙ୍କ ପୁଅ ଦୁର୍ଘଟଣାର ସମ୍ମୁଖୀନ ହେଲା କିମ୍ବା ତାଙ୍କର ବ୍ୟବସାୟରେ ଅନେକ କ୍ଷତି ହେଲା । ପତ୍ରରେ ଏହିସବୁ ବର୍ଣ୍ଣନା ସହ ଏହା ମଧ୍ୟ ନିର୍ଦ୍ଦେଶ ଥାଏ ଯେ, ଯେ ଏହି ପତ୍ର ପାଇବେ ସେ ଦେବୀଙ୍କ ନାମରେ ଏହିପରି ୧୦ ଖଣ୍ଡ ପତ୍ର ଲେଖିବେ କିମ୍ବା ଏହାକୁ ଛପାଇ ବିତରଣ କରିବେ ।

ଆମ ଦେଶରେ କେତେ ବାବା, ମାତା, ଅବତାରୀ ପୁରୁଷ ଓ ଭଗବାନଙ୍କର ଆବିର୍ଭାବ ହେବା ଆମେ ଦେଖେ । ସେମାନଙ୍କ ନାମରେ କିଛି କିଛି ଚମତ୍କାରିତା ସଂଶ୍ଲିଷ୍ଟ କରାଯାଇଥାଏ । ସେ ଛୁଇଁ ଦେଲେ ରୋଗ ଭଲ ହୋଇଯିବ, ତାଙ୍କ ହାତର ସ୍ପର୍ଶ ପାଇଲେ ସବୁ ପ୍ରତିବନ୍ଧକ ଚାଲିଯିବ, ତାଙ୍କୁ ଦର୍ଶନରେ ଜୀବନ ଧନ୍ୟ ହେବ ଇତ୍ୟାଦି ଇତ୍ୟାଦି । ବାବାମାନେ ଲୋକମାନଙ୍କର ମାନସିକତାକୁ ବେଶ୍ ଜାଣି କିଛି ଗୋଟିଏ ହାତସଫେଇ ଜନିତ ଚମତ୍କାରିତା ଦେଖାଇ ଭକ୍ତଙ୍କର ବିଶ୍ୱାସ ଭାଜନ ହୋଇଥାନ୍ତି । ଭକ୍ତମାନେ ପ୍ରଭାବିତ ହୋଇ ଗୁରୁଙ୍କର ଗାରିମା ଓ ମହିମା ପ୍ରଚାର କରନ୍ତି ଓ ଏହି ଧାରାରେ ବାବାମାନଙ୍କର ବିଶାଳ ଭକ୍ତ-ସମାଜ ସୃଷ୍ଟି ହୁଅନ୍ତି । ଏହା ସହିତ ଅସତ୍ ଉପାୟରେ ଉପାର୍ଜନ କରୁଥିବା ଧନବାନ ବ୍ୟକ୍ତିମାନେ ବାବାମାନଙ୍କୁ ସାହାଯ୍ୟ କରି ମାନସିକ ସ୍ତରରେ 'ଧର୍ମ' କାର୍ଯ୍ୟ କରୁଛନ୍ତି ବୋଲି ଆଶ୍ୱସ୍ତ ହୁଅନ୍ତି । ଏହି ଧାରାରେ ବାବାମାନେ ନାନା ପୂଜାସ୍ଥଳ ସ୍ଥାପନ କରି ଲୋକମାନଙ୍କ ପାଖରେ ପୁଣ୍ୟାତ୍ମା, ଅବତାର ବୋଲି ନିଜର ପରିଚୟ ସୃଷ୍ଟି କରନ୍ତି । ସେମାନେ କୋଟି କୋଟି ଟଙ୍କାର ମାଲିକ ହୁଅନ୍ତି, ବିଳାସ ବ୍ୟସନରେ ଜୀବନ ନିର୍ବାହ କରନ୍ତି ଓ ଲୋକମାନଙ୍କୁ କେତେ କେତେ ପ୍ରବଚନ ଦିଅନ୍ତି । ଏହା ସହିତ ପ୍ରାପ୍ତ ଅର୍ଥରୁ କିଛି ସେବାମୂଳକ କାର୍ଯ୍ୟ କରନ୍ତି, ଅତ୍ୟାଧୁନିକ ଚିକିତ୍ସାଳୟ ସ୍ଥାପନ କରିବା ପାଇଁ ବି ପ୍ରୟାସ କରନ୍ତି । ତାଙ୍କର ଅନୁଷ୍ଠାନ ଦେଶର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ହୁଏ ଓ ସାଧାରଣ ଲୋକମାନେ ସେମାନଙ୍କୁ ତ୍ରାଣକର୍ତ୍ତା, ମୁକ୍ତିଦାତା, ଅବତାର ପୁରୁଷ ବୋଲି ଭାବି ତାଙ୍କୁ ପୂଜା କରନ୍ତି । ଧୀରେ ଧୀରେ ବାବାମାନଙ୍କ ନାମରେ କେତେ କେତେ ଚମତ୍କାରିତା ଖଞ୍ଜି ବହି ଲେଖାଯାଏ, ସମାଜର ପ୍ରତିଷ୍ଠିତ ଲୋକମାନେ ବି ତାଙ୍କର ଭକ୍ତ ହୋଇ ଏହାର ପ୍ରସାରରେ ଭାଗୀ ହୁଅନ୍ତି ।

ଏହି ସବୁ ଘଟଣାରୁ ଆମ ସାମାଜିକ ଜୀବନର କେଉଁ ଚିତ୍ର ଆମେ ପାଏ ? ସାଧାରଣ ଲୋକମାନେ ଏହି ସବୁ କଥାକୁ କାହିଁକି ଏତେ ସହଜରେ ବିଶ୍ୱାସ କରନ୍ତି ? ଏହା ସହିତ ଆମ ରାଜ୍ୟର ବିଭିନ୍ନ ଅଞ୍ଚଳରେ କେତେ ଦିଅଁ ଦେବତା, ପୂଜାସ୍ଥଳ, ଠାକୁର,

ଠାକୁରାଣୀଙ୍କର ପୂଜା ଆରାଧନା ହୁଏ । ଲୋକମାନଙ୍କ ଜୀବନଧାରାରେ ପୂଜା, ପ୍ରାର୍ଥନା,ଭକ୍ତିଭାବ, ଚମତ୍କାରିତାରେ ବିଶ୍ୱାସ, ଦିଅଁ ଦେବତା ପାଖରେ ମାନସିକ ଅତି ସାଧାରଣ ଘଟଣା ମନେହୁଏ ଅଥଚ ଆମର ନାଗରିକ ଶୃଙ୍ଖଳାବୋଧ, କର୍ତ୍ତବ୍ୟଜ୍ଞାନ ଓ ସାଧୁତା ଦ୍ରୁତଗତିରେ ହ୍ରାସ ହେଉଥିବା ଏକ ସାଧାରଣ ଘଟଣା ଅଟେ । ଏସବୁ ଘଟଣାର ନାନା ମନସ୍ତାତ୍ତ୍ୱିକ, ଅର୍ଥନୈତିକ ଓ ସାମାଜିକ ବିଶ୍ଳେଷଣ କରାଯାଇପାରେ । ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଭୟ, ଆତ୍ମବିଶ୍ୱାସର ଅଭାବ ଓ ଅସହାୟବୋଧରୁ ମଣିଷ ଅତିପ୍ରାକୃତିକ ସତ୍ତାରେ ଓ ଚମତ୍କାରିତାରେ ବିଶ୍ୱାସ କରିବା ସାଧାରଣ ଘଟଣା ଅଟେ । ପ୍ରାଚୀନ ସମୟରେ ଏକ ନିରାପଦ ବିହୀନ ଅବସ୍ଥାରେ ମଣିଷ ଏସବୁକୁ ବିଶ୍ୱାସ କରୁଥିଲା । ସେତେବେଳେ ପ୍ରକୃତିର କୌଣସି ଘଟଣାକୁ ବୁଝିବା ବା ବୈଜ୍ଞାନିକ ଧାରାରେ ବ୍ୟାଖ୍ୟା କରିବା ମଣିଷ ସାମର୍ଥ୍ୟର ବହିର୍ଭୂତ ଥିଲା । ପ୍ରକୃତିର ପ୍ରତ୍ୟେକ କ୍ଷେତ୍ର ବା ଜୀବନର ଘଟଣା ପ୍ରବାହ ଯେ କିଛି ଅତୀନ୍ଦ୍ରିୟ ସତ୍ତା ଦ୍ୱାରା ନିୟନ୍ତ୍ରିତ ହେଉଛି ଏହି ପ୍ରକାରର ସରଳ ବିଶ୍ୱାସ ମଣିଷ ମନକୁ ଆସିଥିଲା, ସେତେବେଳର ସାମାଜିକ ସ୍ଥିତିରେ କିଛି ବୁଦ୍ଧିମାନ ବ୍ୟକ୍ତି ସେମାନଙ୍କ କଳ୍ପନା ବଳରେ କେତେ କେତେ ଦିଅଁ, ଦେବତା, ଠାକୁର ଅତୀନ୍ଦ୍ରିୟ ଶକ୍ତିର ଭାବନା ସୃଷ୍ଟି କରିଥିଲେ । ସେହିମାନଙ୍କ ଆଶୀର୍ବାଦ ଦ୍ୱାରା ଜୀବନର ପ୍ରତିକୂଳ ପରିବେଶ ଯେ ଦୂର କରାଯାଇପାରିବ ଏହି ପ୍ରକାରର ବିଚାର ଗୋଟିଏ ସମୟରେ ପୃଥିବୀର ସବୁ ସଭ୍ୟତାରେ ଚିନ୍ତା କରାଯାଇଥିଲା । ଆନୁଷ୍ଠାନିକ ଧର୍ମ ଓ ଏକେଶ୍ୱରବାଦର ଭାବନା ବଳିଷ୍ଠ ଭିତ୍ତି ନେବା ପୂର୍ବରୁ ଏହି ପରିବେଶ ସର୍ବତ୍ର ରହିଥିଲା । ଜୀବନର ଘନଘଟା ଓ ପ୍ରାକୃତିକ ଘଟଣା ସବୁର ରହସ୍ୟକୁ ଅଲୌକିକତା, ଈଶ୍ୱରୀୟ କାର୍ଯ୍ୟ, ଦୈବୀବିଧାନ ଭାବି ମଣିଷକୁ ନୀରବ ରହିବାକୁ ହେଉଥିଲା । ଭୟ ଓ ଅସହାୟବୋଧରୁ ଏହି ବିଶ୍ୱାସ ସୃଷ୍ଟି ହେଉଥିଲା । ତେବେ ଯେଉଁମାନେ ସମାଜର ପ୍ରଚଳିତ ବିଶ୍ୱାସ ବିରୁଦ୍ଧରେ ନୂଆ ଭାବରେ ଚିନ୍ତାକରି ନୂତନ ବିଚାରର ସୂତ୍ରପାତ କରୁଥିଲେ ସେମାନଙ୍କୁ ସମସାମୟିକ ସମାଜରେ ବହୁ କଟାକ୍ଷର ସମ୍ମୁଖୀନ ହେବାକୁ ପଡୁଥିଲା ଓ ଏପରିକି ନିର୍ଯ୍ୟାତନା ବି ସହ୍ୟ କରିବାକୁ ହେଉଥିଲା । ଅଧିକାଂଶ ବିଚାରଶୀଳ ବୁଦ୍ଧିଜୀବୀମାନଙ୍କୁ ସେମାନଙ୍କ ସମସାମୟିକ ସମାଜରେ ନାସ୍ତିକ ଓ ଧର୍ମବିରୋଧୀ ବୋଲି ଚିତ୍ରଣ କରାଯିବାର ବହୁ ଦୁଃଖଦ ଦୃଷ୍ଟାନ୍ତ ଇତିହାସରେ ଦେଖିବାକୁ ମିଳେ । ତେବେ ଯେଉଁମାନେ ନୂଆ ଭାବରେ ଚିନ୍ତା କରନ୍ତି ସେମାନେ ସମାଜରେ ବୈଚାରିକ ଆଲୋଡନ ଆଣନ୍ତି । ସେମାନେ ବୌଦ୍ଧିକ ସ୍ତରରେ ଅନୁସନ୍ଧିତ୍ସୁ ହୋଇ ବିକଳ୍ପର ସନ୍ଧାନ କରିବାକୁ ପ୍ରୟାସ କରନ୍ତି, ପରିବେଶକୁ ବୁଝିବାକୁ ବୈଜ୍ଞାନିକ ଧାରାରେ ଉଦ୍ୟମ କରନ୍ତି ଓ ଜୀବନର ଗୁଣାତ୍ମକ ମୂଲ୍ୟ ନେଇ ଗମ୍ଭୀର ଚିନ୍ତା ପ୍ରକଟ କରନ୍ତି ।

ସାଧାରଣତଃ ସମାଜରେ ଯେଉଁମାନେ ଆର୍ଥିକ ଦୃଷ୍ଟିରୁ ପ୍ରତିକୂଳ ସ୍ଥିତି ଭିତରେ ରହିଛନ୍ତି ସେମାନଙ୍କ ମନସ୍ତତ୍ତ୍ୱରେ ଅହେତୁକ ବିଶ୍ୱାସର ପ୍ରସାର ଅଧିକ ହେବା ଦେଖାଯାଏ । ଯେଉଁମାନେ ରୋଗ ବାଧକରେ ଚିକିତ୍ସାର ସୁଯୋଗରୁ ବଞ୍ଚିତ ସେମାନେ ଗୁଣୀ, ଗୁଣୀ, ତନ୍ତ୍ର ମନ୍ତ୍ରରେ ବିଶ୍ୱାସ କରିବା ସହଜ ହୋଇଥାଏ । ସେହିପରି ଜୀବନର ସର୍ବନିମ୍ନ ଆବଶ୍ୟକତା ପୂରଣ କରି ପାରୁନଥିବା ବ୍ୟକ୍ତି କାଳେ କେଉଁ କଳ୍ପିତ ଦିଅଁ ଦେବତାର ଆଶୀର୍ବାଦରୁ ଏହା ହୋଇପାରିବ ସେ ପାଇଁ କେତେ ମାନସିକ, ପୂଜା ଆରାଧନା, ପ୍ରାର୍ଥନା କରିବା ସାଧାରଣ ଘଟଣା ହୋଇଥାଏ । ଏପରିକି କେଉଁ ଦେବୀ ପାଖରେ ବଳି ଦେବାକୁ, ଏକ ଶୁଭ ମୁହୂର୍ତ୍ତରେ କେଉଁଠି ବୁଡ ପକାଇବାକୁ ବା କେଉଁ ଠାକୁରଙ୍କ ପ୍ରତିମାକୁ ଦର୍ଶନ କରିବାକୁ ସେ କେତେ ମାନସିକ କରିଥାଏ । ମଣିଷ ଯାହା ନିଜର ସାମର୍ଥ୍ୟ ଭିତରେ ସମାଜରୁ ପାଇପାରେ ନାହିଁ, ତାହା ତାହାର ଭକ୍ତି, ନିଷ୍ଠାଦ୍ୱାରା ମିଳି ପାରିବାର ସ୍ୱପ୍ନ ଦେଖିବା ସ୍ୱାଭାବିକ ହୋଇଥାଏ । ପୁନଶ୍ଚ ଯେହେତୁ ସେ ବଞ୍ଚୁଥିବା ସାମାଜିକ ପରିବେଶରେ ଏହି ପ୍ରକାରର ବିଶ୍ୱାସ ଭରପୁର ହୋଇ ରହିଥାଏ ତାହାର ପ୍ରଭାବ ତାହା ଉପରେ ପଡେ ଓ ଜଣେ ବୈଜ୍ଞାନିକ ବିଚାରଧାରାରେ ଦୃଢ଼ ନ ଥିଲେ ସେ ଏ ପ୍ରକାର ବିଶ୍ୱାସରେ ପରିଚାଳିତ ହୋଇଥାଏ । ବ୍ୟକ୍ତିର ଜୀବନଦୃଷ୍ଟିକୁ ସାମାଜିକ ଚଳଣି, ପରମ୍ପରା, ପାରିବାରିକ ପରିବେଶ ଅନେକାଂଶରେ ପ୍ରଭାବିତ କରୁଥିବା ହେତୁ ଜଣଙ୍କର ଦୃଷ୍ଟିଭଙ୍ଗୀ ଏ ଦିଗରେ ସହଜରେ ପ୍ରଭାବିତ ହୋଇଥାଏ । ଏପରିକି ସମାଜର ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନେ ବି କୁସଂସ୍କାରପୂର୍ଣ୍ଣ ବିଶ୍ୱାସରୁ ମୁକ୍ତ ହୋଇପାରନ୍ତି ନାହିଁ । ସେମାନେ ନିଜର ଅଧ୍ୟୟନ କ୍ଷେତ୍ରରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି, କିନ୍ତୁ ତାହାକୁ ଏକ ଜୀବନଦୃଷ୍ଟିରେ ରୂପାନ୍ତରିତ କରିପାରନ୍ତି ନାହିଁ । ଫଳତଃ ନିଜର ବୌଦ୍ଧିକ ପରିସର ବାହାରେ ଜୀବନର ବହୁବିଧ ସ୍ତରରେ ଅହେତୁକ ଭାବନା ଓ କୁସଂସ୍କାରକୁ ମାନି ନିଅନ୍ତି ଓ ଏପରିକି ସେସବୁକୁ ପରମ୍ପରା ଓ ଐତିହ୍ୟ କହି ଆବେଗ ସୃଷ୍ଟି କରନ୍ତି । ସୁତରାଂ କେତେକ ବିଶ୍ୱାସ, ପରମ୍ପରା ଯେତେ ଅବୈଜ୍ଞାନିକ ଓ ଅହେତୁକ ହେଲେ ମଧ୍ୟ ତାହା ସମାଜରେ ପ୍ରଚଳିତ ହୋଇ ରହିବା ଦେଖାଯାଏ । ଏହା ସହିତ ନୂଆ ନୂଆ କୁସଂସ୍କାର ଓ ଅହେତୁକ ଭାବନା ମଧ୍ୟ ମଝିରେ ମଝିରେ ସୃଷ୍ଟି କରାଯାଏ ଓ ସେଥିରେ ଲାଭାନ୍ୱିତ ହେଉଥିବା ବ୍ୟକ୍ତିମାନେ ଚତୁରତାର ସହ ଏହାକୁ ପ୍ରସାର କରିଥାନ୍ତି । ବିଶେଷକରି ଅନଗ୍ରସର ସାମାଜିକ ପରିବେଶରେ କୁସଂସ୍କାର ଜନିତ ବିଶ୍ୱାସର ପ୍ରାବଲ୍ୟ ରହିବା ସାଧାରଣ ଘଟଣା ଅଟେ ।

ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରିବା ଏକ ସଭ୍ୟ ମାନସିକତା, ଯାହା ହିଁ ହେତୁବାଦର ଅନ୍ତର୍ନିହିତ ତାତ୍ପର୍ଯ୍ୟ । ମୁକ୍ତ ମନ, ବିଚାରଶୀଳ ଦୃଷ୍ଟି, ବୈଜ୍ଞାନିକ ପ୍ରଣାଳୀରେ ଉପଲବ୍ଧ ଜ୍ଞାନ ଉପରେ ନିର୍ଭରଶୀଳତା ଓ ତର୍କଶୀଳ ମାନସିକତା ହିଁ ହେତୁବାଦର ନିଷ୍କର୍ଷ । ତେବେ ବିଡମ୍ବନାର ବିଷୟ ସଭ୍ୟତାକୁ ଅମୂଲ୍ୟ ଅବଦାନ ଦେଇଥିବା, ଗୁଣାତ୍ମକ ଜୀବନର ବାର୍ତ୍ତାବହ ହୋଇଥିବା ଓ ମାନବବାଦକୁ ଜୀବନର ଶ୍ରେୟଭାବେ ସ୍ୱୀକାର କରୁଥିବା ହେତୁବାଦୀମାନଙ୍କୁ ରକ୍ଷଣଶୀଳ ଓ ଧର୍ମାନ୍ଧ ଲୋକମାନେ ଧର୍ମ ବିରୋଧୀ ଓ ନାସ୍ତିକ ଭାବେ ଚିତ୍ରଣ କରିଥାନ୍ତି । ସାମାଜିକ ଜୀବନରେ କର୍ତ୍ତବ୍ୟ ପରାୟଣ ହେବା, କର୍ମକ୍ଷେତ୍ରରେ ସାଧୁତା ରକ୍ଷା କରିବା ଓ ମଣିଷ ସମାଜ ପ୍ରତି ସମ୍ବେଦନଶୀଳ ହେବା ପରିବର୍ତ୍ତେ ଚମତ୍କାରିତାରେ ବିଶ୍ୱାସ କରିବା, ଧର୍ମନାମରେ ଅହେତୁକ ବିଶ୍ୱାସ ପ୍ରସାର କରିବାକୁ ସେମାନେ ଅଧିକ ମହତ୍ତ୍ୱପୂର୍ଣ୍ଣ ମନେକରନ୍ତି ।

(୯.୧.୨୦୧୩)



# କୁସଂସ୍କାର ଓ ଅଜ୍ଞତା

କିଛି ଦିନ ତଳେ ଭାରତୀୟ ପ୍ରେସ କାଉନସିଲର ଚେୟାରପର୍ସନ ନ୍ୟାୟାଧୀଶ ମାର୍କଣ୍ଡେୟ କାଟଜୁଙ୍କର ଏକ ବକ୍ତବ୍ୟ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । କାଟଜୁ ମହାଶୟ ତାଙ୍କ ବକ୍ତବ୍ୟରେ କହିଥିଲେ-ଯେ ଭାରତରେ ନବେ ଭାଗ ଲୋକ ହେଉଛନ୍ତି ନିର୍ବୋଧ (ଇଡିଅଟ), ଯେଉଁମାନଙ୍କୁ ସହଜରେ ଭ୍ରମାତ୍ମକ କାର୍ଯ୍ୟରେ ପ୍ରଭାବିତ କରିହେବ । ସମ୍ବାଦପତ୍ରରେ ପ୍ରକାଶ ପାଇଥିବା ତାଙ୍କ ବକ୍ତବ୍ୟ ଥିଲା ଯେ ଏ ଦେଶରେ ଅଳ୍ପ ଟଙ୍କା ଖର୍ଚ୍ଚ କରି ଏକ ସାମ୍ପ୍ରଦାୟିକ ଦଙ୍ଗା ସୃଷ୍ଟି କରାଯାଇପାରେ କିମ୍ବା ଏକ ପୂଜାସ୍ଥଳରେ କିଛି ଅଘଟଣ ଘଟାଇ ଦେଶରେ ହଇ ଚଇ ସୃଷ୍ଟି କରାଯାଇପାରେ । ଆଧୁନିକ ମାନଦଣ୍ଡରେ ଆମ ସମାଜର ପଶ୍ଚାତ୍‌ଗତି ହେଉଥିବା ସେ ଦର୍ଶାଇଛନ୍ତି । ଏପରିକି ଆମ ସାଧାରଣ ଜୀବନ ପ୍ରବାହରେ ସ୍ୱାଧୀନତା ସମୟରେ ଯେଉଁ ନୈତିକ ମାନ ଥିଲା ସେଥିରେ ମଧ୍ୟ ଅଧୋଗତି ହେବା ଦେଖାଯାଏ । କାଟଜୁ ମହାଶୟ ଏହି ପ୍ରକାରର ମନ୍ତବ୍ୟ ଦେବା ପଛରେ ଆମ ସାମାଜିକ ଜୀବନର ଘଟଣା ପ୍ରବାହ କ୍ଷେତ୍ରରେ ତାଙ୍କ ଅସନ୍ତୋଷ ବ୍ୟକ୍ତ କରିବା ମନେହୁଏ ।

ଏକଥା ସତ ଯେ ଆମ ଦେଶ ଓ ସମାଜରେ ଅନେକ ମନ୍ଦ ପରିସ୍ଥିତି ରହିଛି । ଆମ ଜନ ଜୀବନରେ ଦାରିଦ୍ର୍ୟ, ନିରକ୍ଷରତା, ବୈଷମ୍ୟ ଭରପୁର ହୋଇ ରହିଛି । ଏତେ ବର୍ଷର ଯୋଜନା ସତ୍ତ୍ୱେ ଏସବୁ ସମସ୍ୟା ଦୂର ହେବା ସମ୍ଭବ ହୋଇନାହିଁ । ଏସବୁ ଯଦିବା ଚିନ୍ତାର ବିଷୟ, ତେବେ ଏଥିପାଇଁ ସମାଜର ଲୋକମାନଙ୍କୁ ନିର୍ବୋଧ କହିବା ଯଥାର୍ଥ ମନେହୁଏ ନାହିଁ । ବରଂ ଯେଉଁ ମନ୍ଦ ପରିସ୍ଥିତି ବା ସୋସିଆଲ ଇଭିଲ ସମାଜରେ ଦୃଢ଼ ହୋଇ ରହିଛି ଓ ଯାହାର ପରିବର୍ତ୍ତନ ପାଇଁ ସେପରି ସାମାଜିକ ସଚେତନତା ପ୍ରକାଶ ପାଉନାହିଁ ତାହା ହିଁ ଚିନ୍ତାର ବିଷୟ । ଏଠାରେ ସାମାନ୍ୟ କେତୋଟି ମନ୍ଦ ପରିସ୍ଥିତିର ସୂଚନା ଦିଆଯାଇପାରେ ଯାହାଦ୍ୱାରା ଆମର ବିଚାରଶକ୍ତି ପ୍ରତି ପ୍ରଶ୍ନବାଚୀ ଉଠି ପାରିବ ।

ଆମ ଦେଶର ସମ୍ବିଧାନର ମୁଖବନ୍ଧରେ କେତେ ଉଚ୍ଚାଙ୍ଗ ଆଦର୍ଶକୁ ରାଷ୍ଟ୍ରର ଲକ୍ଷ୍ୟ ବୋଲି ସ୍ୱୀକାର କରାଯାଇଛି । ଏହି ପରିପ୍ରେକ୍ଷୀରେ ସାମାଜିକ ସମତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟବୋଧକୁ ଆମର ଆଦର୍ଶ ଭାବେ ଆମେ ସ୍ୱୀକାର କରିଛେ । ଏହା ବି ଆଧୁନିକ ମାନଦଣ୍ଡରେ ସାର୍ବଜନୀନ ମୂଲ୍ୟବୋଧ ଭାବେ ସ୍ୱୀକୃତ । ଗୋଟିଏ ସମାଜର ସଭ୍ୟ ଜୀବନଧାରାର ଏହା ଅଙ୍ଗବିଶେଷ । କିନ୍ତୁ ପରିତାପର ବିଷୟ ଯେ ଆମ ସମାଜ ଯୁଗ ଯୁଗ ଧରି ନାନା ଭାବରେ ବିଭାଜିତ ହୋଇ ରହିଛି । ବିଶେଷକରି ଜାତିଆଣ ମାନସିକତା ଯାହା ସାମାଜିକ ବୈଷମ୍ୟର ଭିତ୍ତି ଉପରେ ଗଢ଼ି ଉଠିଛି ତାହା ଏବେ ବି ଆମ ସମାଜରେ କାୟା ବିସ୍ତାର କରି ରହିଛି । ସାନ-ବଡ଼ ଭେଦଭାବ ସାମାଜିକ ସଂହତିର ଯେପରି ପ୍ରତିକୂଳ, ସେହିପରି ମାନବବାଦୀ ଓ ଗଣତାନ୍ତ୍ରିକ ଜୀବନଦୃଷ୍ଟିର ମଧ୍ୟ ପରିପନ୍ଥୀ । ସ୍ୱାଧୀନତାର ଦୀର୍ଘ ବର୍ଷ ପରେ ବି ଏକ 'ଜାତିବିହୀନ' ସମତାଭିତ୍ତିକ ସମାଜର ବାସ୍ତବ ରୂପାୟନ ସମ୍ଭବ ହୋଇନାହିଁ । ଏପରିକି ଜାତିବାଦ ରାଜନୈତିକ ଦୃଶ୍ୟପଟରେ ଦୃଢ଼ ହେବାରେ ଲାଗିଛି ।

ଆମ ସମାଜରେ ଆଉ ଏକ ମନ୍ଦ ପରିବେଶ ହେଲା ସାମ୍ପ୍ରଦାୟିକ ମନୋଭାବ । ଧର୍ମ ଭିତ୍ତିରେ ସମାଜକୁ ଭାଗ ଭାଗ କରିବା ଓ ବିଭିନ୍ନ ଧର୍ମଗୋଷ୍ଠୀ ଭିତରେ ବିଦ୍ୱେଷର ମନୋଭାବ ସୃଷ୍ଟି କରିବାର ପରିବେଶ ଆମ ଦେଶରେ ସୃଷ୍ଟି କରାଯାଉଛି । ଧର୍ମ ଏକ ବ୍ୟକ୍ତିଗତ ବିଶ୍ୱାସର ପ୍ରସଙ୍ଗ । ଜଣେ ନିଜର ବ୍ୟକ୍ତିଗତ ବିଶ୍ୱାସ ଅନୁଯାୟୀ ଧାର୍ମିକ ଜୀବନ ବଞ୍ଚିବାକୁ କେହି ବିରୋଧ କରିବ ନାହିଁ । କିନ୍ତୁ ଯେଉଁମାନେ "ମୋ ଧର୍ମ ବିଶ୍ୱାସର ନୁହନ୍ତି, ସେମାନେ ମୋର ବିରୋଧୀ" ଏହି ଭାବନା ସମାଜରେ କିଛି ବ୍ୟକ୍ତିଙ୍କ ପାଖରେ ତୀବ୍ର ଭାବରେ ରହିଛି । ପରିଣାମତଃ ଯେ କୌଣସି ଏକ ସାଧାରଣ ଘଟଣାକୁ ଆଳକରି ସମାଜରେ ଜାତିଗତ, ଧର୍ମଗତ ଦଙ୍ଗା ସୃଷ୍ଟି କରାଯାଇ ପାରୁଛି । ନିଜର ଏକ ନିର୍ଦ୍ଦିଷ୍ଟ ପରିଚୟକୁ ଆଧାର କରି ଅନ୍ୟ ପରିଚୟର ବ୍ୟକ୍ତିଙ୍କ ପ୍ରତି ଘୃଣା ଓ ବିଦ୍ୱେଷର ମନୋଭାବ ରଖିବା ଆମ ସାମାଜିକ ଜୀବନପ୍ରବାହର ଏକ ବଡ ଦୁର୍ବଳତା । ଜାତି, ଧର୍ମକୁ ନେଇ ସମାଜରେ ବିଦ୍ୱେଷ, ଭେଦଭାବ ଓ ଘୃଣାଭାବ ରହିବା ଏକ ଅସୁସ୍ଥ ମାନସିକତା କହିଲେ ଅତ୍ୟୁକ୍ତି ହେବନାହିଁ । ଧର୍ମଗତ ବିଶ୍ୱାସ ଆଧାରରେ ସନ୍ତ୍ରାସବାଦୀ କାର୍ଯ୍ୟକଳାପକୁ ପ୍ରୋତ୍ସାହନ ଦେବା, ଅନ୍ୟ ବିଶ୍ୱାସର ଲୋକମାନଙ୍କ ପ୍ରତି ହିଂସା ଆଚରଣ କରିବା ସଭ୍ୟ ଜୀବନଧାରାର ଅଙ୍ଗ ହୋଇ ନପାରେ । ଯେଉଁ ଚେତନା ମଣିଷର ସତ୍ତାକୁ ବିଶ୍ୱମୁଖୀ କରେ ତାହା ମାନବବାଦୀ ଆଦର୍ଶର ଅଙ୍ଗ, ଅଥଚ ଯେଉଁ ଦୃଷ୍ଟିଭଙ୍ଗୀ ବ୍ୟକ୍ତି ଭିତରେ ଭେଦଭାବ ଜନିତ ମାନସିକତାକୁ ଦୃଢ଼କରେ ତାହା ଏକ ସୁସ୍ଥ ବିଚାରର ପ୍ରତୀକ ହୋଇ ନପାରେ । ତେବେ

ଆମ ଦେଶରେ ଧର୍ମର ଧ୍ୱଜା ଧରିଥିବା ଅନେକ ବ୍ୟକ୍ତିଙ୍କ ଭିତରେ ଉଦାରତା, ମାନବିକ ସମ୍ପ୍ରୀତି, ସମ୍ବେଦନଶୀଳତା ଓ ମାନବିକତା ଦେଖିବାକୁ ମିଳେନାହିଁ ବରଂ ବିଦ୍ୱେଷ, ଘୃଣାର ମାନସିକତା ଦେଖିବାକୁ ମିଳେ । ଧର୍ମକୁ ନେଇ ରାଜନୀତି ହୁଏ ଓ ଧର୍ମନାମରେ ଜନମାନସରେ ସାମ୍ପ୍ରଦାୟିକତାର ବିଷମଞ୍ଜି ବପନ କରାଯାଏ । ଧାର୍ମିକ ଅସହିଷ୍ଣୁତାର ପରିବେଶ ରହିଥିବା ଯୋଗୁଁ ସାମ୍ପ୍ରଦାୟିକ ଦଙ୍ଗା ଓ ହିଂସା-ପ୍ରତିହିଂସାର ମନୋଭାବ ଆମ ସମାଜରେ ସୃଷ୍ଟି ହେବା ସାଧାରଣ ଘଟଣା ଅଟେ ।

ନାଗରିକ ଶୃଙ୍ଖଳାବୋଧର ଅଭାବ ଆମ ଜନଜୀବନର ସାଧାରଣ ଘଟଣା ଅଟେ । କର୍ତ୍ତବ୍ୟଜ୍ଞାନ ନେଇ ସମାଜ ପ୍ରତି ଏକ ଉତ୍ତରଦାୟୀ ସଂସ୍କୃତି ଆମ ସମାଜରେ ଦୃଢ଼ ଭିତ୍ତି ନେଇ ପାରିନାହିଁ । ଯେ କୌଣସି ଆଳରେ ରାସ୍ତାକୁ ଓହ୍ଲାଇବା, ବନ୍ଦ ଡାକରା ଦେବା ଓ ସାଧାରଣ ଜନଜୀବନକୁ ବିପର୍ଯ୍ୟସ୍ତ କରିଦେବା ଏକ ସାଧାରଣ ଘଟଣା । ଆଇନକୁ ହାତକୁ ନେବାର ମାନସିକତା ଆମ ସମାଜରେ ବ୍ୟାପକ ଥିବା ଦେଖାଯାଏ । କୌଣସି ଏକ ଦୁର୍ଘଟଣା ବା ଆକସ୍ମିକ ଘଟଣାରେ ଆମର ଲୋକମାନେ ପ୍ରତିକ୍ରିୟାଶୀଳ ହୋଇ ଗାଡି, ମଟର ପୋଡିବା, ସରକାରୀ ଅଫିସ ଉପରେ ଆକ୍ରମଣ କରିବା, ସରକାରୀ ସମ୍ପତ୍ତି ନଷ୍ଟ କରିବାର ମନୋଭାବ ଆମ ନାଗରିକ ବିଶୃଙ୍ଖଳାର ଚିତ୍ର ଦେଇଥାଏ । ସେହିପରି ସରକାରୀ କର୍ମକ୍ଷେତ୍ରରେ କୌଣସି ଉତ୍ତରଦାୟିତ୍ୱବୋଧ ନ ରହିବା ଓ ନିଜ ପଦ-ପଦବୀର ଅପବ୍ୟବହାର କରି ଦୁର୍ନୀତିରେ ସମ୍ପୃକ୍ତ ହେବା ଆମ ସମାଜର ନିତିଦିନିଆ ଘଟଣା । ଗୋଟିଏ କ୍ଷେତ୍ରରେ ନିଜର ପ୍ରଭୁତ୍ୱ ବିସ୍ତାର କରିବା ଓ ଅନ୍ୟ ଗୋଟିଏ କ୍ଷେତ୍ରରେ ନିଜକୁ ଅସହାୟ ମନେ କରିବାର ପରିବେଶ ସମାଜରେ ବ୍ୟାପକ ହେବା ଦେଖାଯାଏ । ନିଜ କର୍ମ ପରିସର ବାହାରେ ଅନ୍ୟ କ୍ଷେତ୍ରରେ ଜଣେ ନାନା ପ୍ରତିବନ୍ଧକର ସମ୍ମୁଖୀନ ହୁଏ ଓ ପରିଣାମତଃ ସମାଜ ପ୍ରତି ଏକ ଅବିଶ୍ୱାସର ମନୋଭାବ ଆଣେ । ଫଳରେ ତାର ପରିସରରେ ସୁଯୋଗ ଥିଲେ ସେ ଦୁର୍ନୀତିରେ ସମ୍ପୃକ୍ତ ହୁଏ ଓ ଏଥିପାଇଁ କୌଣସି ବିବେକର ଦଂଶନ ପାଏନାହିଁ । ବ୍ୟକ୍ତିଗତ ଅସନ୍ତୋଷର ସମଷ୍ଟିରେ ସାଧାରଣ ଅସନ୍ତୋଷ ବିରାଟ ଆକାର ନିଏ ଯାହା ରାସ୍ତା ଘାଟରେ, ସର୍ବ ସାଧାରଣ ସ୍ଥାନରେ ନାନା ଭାବରେ ପ୍ରକାଶ ପାଏ । ନାଗରିକ ଶୃଙ୍ଖଳାବୋଧ ନେଇ ସର୍ଶକାତରଶୂନ୍ୟ ମନୋଭାବ ସମାଜରେ ବ୍ୟାପକ ଭାବେ ରହିବା ଆମ ବିଚାରହୀନତାର ପରିଚୟ ଦିଏ ।

ସେହିପରି ପାରଲୌକିକ ମାନସିକତା ଆମ ସମାଜରେ ବହୁ ବ୍ୟାପକ ଭାବେ ରହିବା ଆମ ଅହେତୁକ ଦୃଷ୍ଟିଭଙ୍ଗୀର ପ୍ରମାଣ ଦିଏ । ଯେଉଁଠି ପାରଲୌକିକ ଜୀବନ ଦୃଷ୍ଟିର ପ୍ରାବଲ୍ୟ ରହେ, ସେଠାରେ ଲୋକମାନେ ନିଜ ଉପରେ, ସମାଜ ଉପରେ ଓ

ବୃହତ୍ତର ମାନବଜାତି ଉପରେ ଭରସା କରନ୍ତି ନାହିଁ । ତାଙ୍କର ଦାରିଦ୍ର୍ୟ, ଅନଗ୍ରସରତା ପାଇଁ ସେମାନେ ଭାଗ୍ୟ, ଅଦୃଷ୍ଟ, ବିହି ଉପରେ ଭରସା କରନ୍ତି । ମଣିଷର ଉଦ୍ୟମରେ ଯେ ସମାଜ ଆଗକୁ ଯିବ, ଜୀବନର ମାନ ଉନ୍ନତ ହେବ, ଉନ୍ନତ ବ୍ୟବସ୍ଥା ବିକାଶ ଲାଭ କରିବ ଏହି ପ୍ରକାର ବିଶ୍ୱାସ ଆମ ଜନଜୀବନରେ ଦୃଢ଼ ଭିତ୍ତି ନେଇଥିବା ମନେହୁଏ ନାହିଁ । ଘରେ କେଉଁ ମୂର୍ତ୍ତି ରଖିଲେ ଘରକୁ ଧନ ଆସିବ, କେଉଁ ଦିନରେ ଶୁଭ କାର୍ଯ୍ୟ କରିବାକୁ ହେବ, ଗୋଟିଏ କାର୍ଯ୍ୟ ଆରମ୍ଭରେ କେଉଁ ଦିଅଁ ଦେବତାଙ୍କୁ ଆରାଧନା କରିବାକୁ ହେବ, ଗୃହରେ ବାସ୍ତୁ ନିୟମରେ କେଉଁ ସ୍ଥାନରେ କ'ଣ ରଖିଲେ ଘରର ଉନ୍ନତି ହେବ, କେଉଁ ତିଥି ବା ବାରରେ କେଉଁ ଦିଗକୁ ଯାତ୍ରା କଲେ କାର୍ଯ୍ୟ ସଫଳ ହେବ ଏହି ପ୍ରକାରର ବିଶ୍ୱାସ ଆମ ଜନଜୀବନରେ ଓ ସାମାଜିକ ମନସ୍ତତ୍ତ୍ୱରେ ବ୍ୟାପକ ହୋଇ ରହିବା ଆମ ଅହେତୁକ ମାନସିକତାର ପରିଚୟ ଦିଏ । ଆମ ଅନଗ୍ରସରତା ପଛରେ ଆମର ଏହି ଦୃଷ୍ଟିଭଙ୍ଗୀର ପ୍ରାବଲ୍ୟ ରହିବା ଦେଖାଯାଏ । ସମାଜ ଯେତେବେଳେ ବିକାଶ ପାଇଁ ମଣିଷ ଉପରେ ବିଶ୍ୱାସ ନ ରଖି କଳ୍ପିତ ଦିଅଁ ଦେବତା ଉପରେ ଭରସା ରଖେ ସେତେବେଳ ସମାଜ ଅନଗ୍ରସର ରହିବା ଏକ ସାଧାରଣ ସତ୍ୟ ଅଟେ । ମଣିଷ ସମାଜରେ ଯେଉଁଠି ଯାହା ବିକାଶ ହୋଇଛି, ଯେଉଁ ରାଷ୍ଟ୍ର ସମୂହ ଉନ୍ନତ ହୋଇଛନ୍ତି ତାହା ପଛରେ ଏକ ମୁଖ୍ୟ କାରଣ ହେଉଛି ମଣିଷର ପ୍ରୟାସ ଓ ଉଦ୍ୟମ । ବିକାଶ ବା ପ୍ରଗତି କେଉଁ ଦିଅଁ ଦେବତାଙ୍କ ଆଶୀର୍ବାଦରୁ ଆସିନାହିଁ ବା ଆକାଶରୁ ଆସିନାହିଁ । ଏହା ଜ୍ଞାନ, ବିଜ୍ଞାନ ଓ ମାନବିକ ପ୍ରୟାସ ଯୋଗୁ ସମ୍ଭବ ହୋଇଛି । ବସ୍ତୁତଃ ବିଚାରଶୀଳତା ଓ ବିଜ୍ଞାନ ବିରୋଧୀ ପାରଲୌକିକ ଦୃଷ୍ଟିଭଙ୍ଗୀ ଆମ ଜନଜୀବନରେ ବ୍ୟାପକ ରହିବା ଆମ ଅନଗ୍ରସରତାର ଏକ ମୁଖ୍ୟ କାରଣ ଅଟେ ।

ଆମର ପରିମଳ ବ୍ୟବସ୍ଥା ଓ ସ୍ୱାସ୍ଥ୍ୟରକ୍ଷା ଜ୍ଞାନ ଅତି ନିମ୍ନମାନର ମନେହୁଏ । ଆମର ରାସ୍ତାଘାଟରେ ଯେପରି ଗୁଦ୍ଧ ଗୁଦ୍ଧ ମଇଳା, ଆବର୍ଜନା ଦେଖିବାକୁ ମିଳେ ଓ ଆମର ଜନଜୀବନରେ ପରିବେଶ ସୁରକ୍ଷା ନେଇ ଯେପରି ସାମାନ୍ୟ ସଚେତନତା ପ୍ରକାଶ ପାଏ ନାହିଁ, ତାହା ଆମର ଏକ ବଡ ଦୁର୍ବଳତା କହିବାକୁ ହେବ । ବିଦେଶରେ ରହିଥିବା ଆମ ଦେଶର ଲୋକମାନେ ଅନ୍ୟ ଦେଶର ପରିମଳ ବ୍ୟବସ୍ଥା ବିଷୟରେ ଯାହା କହନ୍ତି ସେଥିରେ ଆମେ ଲଜ୍ଜିତ ହେବା ଆବଶ୍ୟକ । ସର୍ବସାଧାରଣ ରାସ୍ତାରେ ମଇଳା ପକାଇବା, ପରିସ୍ରା କରିବା ଇତ୍ୟାଦି ଉନ୍ନତ ଦେଶମାନଙ୍କରେ କେହି ଚିନ୍ତା ବି କରିପାରିବ ନାହିଁ । କିନ୍ତୁ ଆମର ରାସ୍ତାଘାଟରେ ଗାଈ, ବୁଲା କୁକୁରଙ୍କର ମଳତ୍ୟାଗ ଅତି ସାଧାରଣ ଘଟଣା । ଏହା ସହିତ ଏକବିଂଶ ଶତାବ୍ଦୀରେ ବି ଆମର ଲୋକମାନେ ପାଇଖାନା ବ୍ୟବହାର

କରିବାର ସୁଯୋଗ ନାହିଁ । ଗ୍ରାମଠାରୁ ସହର ପର୍ଯ୍ୟନ୍ତ ବର୍ଷସାରା ଆମେ ଯେତେ ପୂଜାପାର୍ବଣରେ ସମୟ, ଶକ୍ତି ଓ ଅର୍ଥ ବ୍ୟୟକରୁ ଆମର ପରିମଳ ବ୍ୟବସ୍ଥାକୁ ଉନ୍ନତ କରିବାକୁ ସାମାନ୍ୟ ସଚେତନତା ପ୍ରକାଶ କରୁନାହୁଁ । ସର୍ବସାଧାରଣ ରାସ୍ତାରେ ଟାୟାର ପୋଡିବା, ଘରର ଆବର୍ଜନା ରାସ୍ତାକୁ ଫିଙ୍ଗିବା, ବିଷାକ୍ତ ରଙ୍ଗରେ ନିର୍ମିତ ବିଭିନ୍ନ ମୂର୍ତ୍ତିମାନଙ୍କୁ ସର୍ବସାଧାରଣ ବ୍ୟବହାର କରୁଥିବା ଜଳାଶୟରେ ନିକ୍ଷେପ କରିବା, ପୂଜାସ୍ଥଳମାନଙ୍କରେ ବର୍ଷସାରା ମାଇକ ଯୋଗେ ଶବ୍ଦ ପ୍ରଦୂଷଣ କରିବା ପରି ଘଟଣାମାନ ଆମର ନିତିଦିନର ଅନୁଭୂତି । ଏସବୁ ସମସ୍ୟା ପ୍ରତି ଆମେ ସମ୍ପୂର୍ଣ୍ଣ ଉଦାସୀନ ।

ଆମର ବାସ୍ତବ ସ୍ଥିତି ଆମ ବିଚାରହୀନତା ଓ ସମାଜ ପ୍ରତି ସ୍ପର୍ଶକାତରହୀନ ମାନସିକତାର ଯଥେଷ୍ଟ ପରିଚୟ ଦେଉଥିବା ବେଳେ କିଛି ବ୍ୟକ୍ତି ଆମ ଦେଶର ସଭ୍ୟତା ଓ ସଂସ୍କୃତି ଯେ ଆଧ୍ୟାତ୍ମିକ ଏହା କହିଥାନ୍ତି । ଆଧ୍ୟାତ୍ମିକତା ଯଦି ପାରଲୌକିକ ମାନସିକତା ଓ ଧାର୍ମିକ ଆବେଗକୁ ବୁଝାଏ, ତେବେ ଆମେ ଆଧ୍ୟାତ୍ମିକ । କିନ୍ତୁ ଯଦି ଆଧ୍ୟାତ୍ମିକତା କହିଲେ ନୈତିକତା, ଉଚ୍ଚ କର୍ତ୍ତବ୍ୟଜ୍ଞାନ, ମାନବିକ ସମ୍ବେଦନଶୀଳତା ଓ ସମାଜ ପ୍ରତି ଉତ୍ତରଦାୟିତ୍ୱବୋଧକୁ ବୁଝାଏ ତେବେ ଆମେ ଆଧ୍ୟାତ୍ମିକତାଠାରୁ ଯେ ବହୁ ଦୂରରେ ଏହା କୁହାଯାଇପାରେ । ଆମ ଦେଶରେ ମଣିଷ ସହିତ କଳ୍ପିତ ଈଶ୍ୱରଙ୍କ ସହ ସମ୍ପର୍କ ନେଇ ଯେତେ ଚର୍ଚ୍ଚା ହୁଏ ମଣିଷ ସହିତ ମଣିଷର ସମ୍ପର୍କ ଓ ମଣିଷ ସହ ତାର ପରିବେଶର ସମ୍ପର୍କ ନେଇ ସେହିପରି ଚର୍ଚ୍ଚା ହୁଏ ନାହିଁ । ପରିଣାମତଃ ମାନବବାଦ, ନାଗରିକ ଶୃଙ୍ଖଳାବୋଧ ଓ ସୁସ୍ଥ ପରିବେଶ ନେଇ ଆମ ଜନଜୀବନ ଉଦାସୀନ । ଯେଉଁଠି ଜନଗଣ ବିଚାରଶୀଳତା ପ୍ରତି ଅଧିକ ମହତ୍ତ୍ୱ ଦେଇଥାନ୍ତି ସେମାନେ ଏହି ବାସ୍ତବ ସମସ୍ୟାକୁ ପ୍ରାଧାନ୍ୟ ଦିଅନ୍ତି, ଅଥଚ ବିଚାରଶୀଳ ଦୃଷ୍ଟି ଅଭାବରେ ଲୋକମାନେ ଅଧିକ ପାରଲୌକିକ ହୋଇଥାନ୍ତି । ମଣିଷର ଅଜ୍ଞତା ହିଁ ତାକୁ କୁସଂସ୍କାରୀ ହେବାରେ ସହାୟକ ହୋଇଥାଏ ।

(୧୬.୧.୨୦୧୩)



# ବିଶ୍ୱାସ : ଏକ ବିଶ୍ଳେଷଣ

ଆମେ ଏକବିଂଶ ଶତାବ୍ଦୀରେ ପହଞ୍ଚିଥିଲେ ବି ଆମ ସାମାଜିକ ଚେତନାର ସ୍ତର କେଉଁଠି ରହିଛି ? ଆମେ କେତେଦୂର ସଭ୍ୟ ହୋଇଛେ ? ମଧ୍ୟଯୁଗରେ ଧାର୍ମିକ ମାନସିକତା ଜନିତ ଯେଉଁ କୁସଂସ୍କାର ଓ ବର୍ବରତା ରହିଥିଲା ଏବେ ବି ସେହିଭଳି ଘଟଣା ଆମ ସମାଜରେ ରହିବା ଦେଖାଯାଏ । ଏହି ପରିପ୍ରେକ୍ଷୀରେ ଏକ ଓଡ଼ିଆ ଟିଭି ଚାନେଲରେ ପ୍ରଚାରିତ ତିନୋଟି ଘଟଣାକୁ ଏଠାରେ ବ୍ୟକ୍ତ କରୁଛନ୍ତି ।

ପ୍ରଥମ ଘଟଣା ହେଲା- ଗୋଟିଏ ମନ୍ଦିର ସମ୍ମୁଖରେ ବର୍ଷେ-ଦୁଇବର୍ଷରୁ ଚାରି-ପାଞ୍ଚବର୍ଷ ବୟସର ପିଲାମାନଙ୍କୁ ବାପା ମା ଗୋଡ ଉପରେ ଶୁଆଇଥାନ୍ତି । ଜଣେ କାଳିସୀ ହୋଇ ପିଲାଙ୍କ ଉପରେ ଗୋଡ ଥୋଇ ଚାଲିକରି ଯାଉଥାନ୍ତି ଓ ହାତରେ ଧରିଥିବା ଏକ ଦଣ୍ଡ ପିଲାଙ୍କ ମୁଣ୍ଡରେ ଛୁଆଁଉଥାନ୍ତି । ବାପା ମା'ଙ୍କର ବିଶ୍ୱାସ ଏହାଦ୍ୱାରା ପିଲାମାନଙ୍କର ରୋଗ ଭଲ ହେବ । କାଳିସୀ ଲୋକଟି ପିଲାଙ୍କ ଉପରେ ପାଦଦେଇ ଯିବାବେଳେ ପିଲାମାନେ ଜୋରରେ କାନ୍ଦିବା ବେଳକୁ ବାପା, ମା ପିଲାଙ୍କୁ ମାଡି ଧରୁଥାନ୍ତି । ଲୋକଙ୍କର ବିଶ୍ୱାସ ଯେ କାଳିସୀଙ୍କ ଠାରେ ଦେବୀ ଆବିର୍ଭାବ ହେଉଛନ୍ତି ଓ ସେ ପିଲାଙ୍କ ଉପରେ ପାଦରେ ଚାଲିଗଲେ ପିଲାମାନେ ରୋଗମୁକ୍ତ ହୋଇଯିବେ । ଦ୍ୱିତୀୟ ଘଟଣାଟି ହେଲା ଜଣେ ଶିକ୍ଷିତ ବ୍ୟକ୍ତି ଏକ ଗଛମୂଳେ ତନ୍ତ୍ର ସାଧନା କରୁଥାନ୍ତି । ସେ କିପରି ଗୁପ୍ତଧନ ପାଇବେ ସେଥିପାଇଁ ତନ୍ତ୍ର ସାଧନାରେ ବ୍ରତୀ ହୋଇଥାନ୍ତି । ଘରେ ତାଙ୍କର ପତ୍ନୀ ଓ ଦୁଇଟି ସନ୍ତାନ । ଦିନେ ରାତିରେ ସେ ସ୍ୱପ୍ନ ଦେଖିଲେ ଯେ ସେ ଆବାହନ କରୁଥିବା ଦେବୀ ତାଙ୍କ ସମ୍ମୁଖକୁ ଆସି କହିଲେ ଏକ କନ୍ୟା ବଳି ଦେଲେ ତାଙ୍କର ଲକ୍ଷ୍ୟ ପୂରଣ ହୋଇପାରିବ । ଭଦ୍ରଲୋକ ସ୍ୱପ୍ନ ପୂରଣ କରିବା ପାଇଁ ଏକ ବଳି ଦେବାକୁ ବହୁତ ଉଦ୍ୟମ କଲେ, କିନ୍ତୁ କେଉଁଠି ହେଲେ ଜଣେ ଝିଅକୁ କବଳିତ କରିପାରିଲେ ନାହିଁ । ଶେଷରେ ସେ ନିଜ ଝିଅକୁ ହତ୍ୟାକରି ତାର ରକ୍ତ ଦେବୀଙ୍କୁ ଦେଲେ । ଝିଅଟିର ହତ୍ୟାର ଘଟଣା ନେଇ ପୁଲିସ ପ୍ରଥମରୁ କିଛି ଜାଣିପାରିଲା ନାହିଁ । ପରେ ଝିଅଙ୍କ ବାପାଙ୍କ କଥାବାର୍ତ୍ତାରେ ଅମେଳ ହେଉଥିବା ଦେଖି ବାପାଙ୍କୁ ନେଇ ପଚରା ଉଚରା ପରେ ଘଟଣାଟି

ପଦାକୁ ଆସିଲା । ଭଦ୍ରଲୋକ ଗୁପ୍ତଧନ ପାଇବା ପାଇଁ ସ୍ୱପ୍ନରେ ପାଇଥିବା ଦେବୀଙ୍କ ନିର୍ଦ୍ଦେଶ ଯୋଗୁଁ ହତ୍ୟା କରିଥିବା ସ୍ୱୀକାର କଲେ । ତୃତୀୟ ଘଟଣା- ଗୋଟିଏ ଗ୍ରାମରେ କିଛି ଜିନିଷ ଚୋରି ହେଲା । ଗାଆଁର ଲୋକମାନେ ଜଣେ ତାନ୍ତ୍ରିକକୁ ଡାକିଲେ । ତାନ୍ତ୍ରିକ ଖଟ ଚଲାଇ ଚୋର ଧରି ପାରିବ ବୋଲି ଲୋକେ ବିଶ୍ୱାସ କରନ୍ତି । ତାନ୍ତ୍ରିକଜଣଙ୍କ ଲୋକଙ୍କ ମନରେ ବିଶ୍ୱାସ ସୃଷ୍ଟି କରିବାକୁ ବିଭିନ୍ନ ପୂଜାର ଆୟୋଜନ କରି ଲୋକମାନଙ୍କୁ ଖଟ ଧରାଇ ଚଲାଇବାର ଦୃଶ୍ୟ ଟିଭିରେ ପ୍ରସାର କରାଯାଇଥିଲା ।

ଏହି ପ୍ରକାରର ଘଟଣା ଏବେ ବି ଆମ ସମାଜରେ ଘଟୁଛି । ହୁଏତ ଯେଉଁ ଘଟଣାଗୁଡିକ ଗଣମାଧ୍ୟମରେ ପ୍ରଚାରିତ ହେଉଛି, ତାହା ସମାଜର ଦୃଷ୍ଟି ଆକର୍ଷଣ କରୁଛି, ନଚେତ ଅଲକ୍ଷ୍ୟରେ ଏହିପରି ଘଟଣାମାନ କେତେ ରଙ୍ଗରେ ବିଭିନ୍ନ ଅଞ୍ଚଳରେ ଘଟି ଚାଲିଛି । କିଛି ବ୍ୟକ୍ତି ଲୋକମାନଙ୍କର କୁସଂସ୍କାର ଜନିତ ମାନସିକତାର ସୁଯୋଗ ନେଇ କିଛି ରହସ୍ୟମୟ ଘଟଣାକୁ କୌଶଳର ସହ ଦେଖାଇ ସେମାନଙ୍କର ଆସ୍ଥା ଭାଜନ ହୋଇଥାନ୍ତି । ନିଜକୁ ତାନ୍ତ୍ରିକ, ଦେବୀ ସାଧକ, କାଳିସୀ ଇତ୍ୟାଦି କହି ଜନଗଣଙ୍କୁ ବିଭ୍ରାନ୍ତ କରି ଉପାର୍ଜ୍ଜନ କରିବା ସେମାନଙ୍କର ବ୍ୟବସାୟ । ତେବେ ସମୟ ସମୟରେ ଗାଆଁ ଗହଳରେ କେତେକ ନିରୀହ ବ୍ୟକ୍ତି ଏଥିରେ ଶିକାର ହୋଇଥାନ୍ତି ।

କୁସଂସ୍କାର ଦୂର କରିବା ପାଇଁ ଉଦ୍ଦିଷ୍ଟ ଏକ ହେତୁବାଦୀ ସଙ୍ଗଠନର ଏକ ମୁଖପତ୍ରରେ ପ୍ରକାଶ ପାଇଥିବା ତଥ୍ୟଭିତ୍ତିକ ସମ୍ବାଦ ଅନୁଯାୟୀ ଗୁଣିଗାରେଡି ଜନିତ ହତ୍ୟାକାଣ୍ଡ ଓଡିଶାରେ ୨୦୧୦ରେ ୫୬ଟି ହୋଇଥିବା ବେଳେ ୨୦୧୧ରେ ୭୨ଟି ହୋଇଛି । ଗୁଣିଗାରେଡି, ମନ୍ତ୍ର ତନ୍ତ୍ର ଯୋଗୁଁ ହତ୍ୟାକାଣ୍ଡ ପରେ ହତ୍ୟାକାରୀମାନଙ୍କୁ ପୁଲିସ ଗିରଫ କରୁଛି ଓ ସେମାନେ ପ୍ରାୟତଃ ଜେଲ ଜୀବନ ବିତାଉଛନ୍ତି । ତେବେ ସାଧାରଣ ଲୋକମାନଙ୍କୁ ଯେଉଁ ଧୂର୍ତ୍ତ ଲୋକମାନେ ମନ୍ତ୍ର, ତନ୍ତ୍ର, କାଳିସୀ ଇତ୍ୟାଦିର ଭାବନା ଦେଇ ସେମାନଙ୍କୁ ସହଜରେ ଏ ଦିଗରେ ପ୍ରଭାବିତ କରୁଛନ୍ତି ସେମାନେ ଯେ ଏପ୍ରକାର ଅପରାଧର ମୁଖ୍ୟ ବ୍ୟକ୍ତି ତାହା ନିଃସନ୍ଦେହ ମନେହୁଏ ।

ପରିତାପର ବିଷୟ ଯେ ଅନେକ କୁସଂସ୍କାରକୁ ଜନମାନସରେ ଧାର୍ମିକ ପରମ୍ପରାର ଆଖ୍ୟା ଦିଆଯାଉଛି । ଜନମାନସରେ ପିଢ଼ି ପିଢ଼ି ଦେଇ ରହିଆସିଥିବା କେତେକ ବିଶ୍ୱାସ, ଲୋକାଚାର ଓ ଚଳଣି ହିଁ ହେଉଛି ପରମ୍ପରା । ତେବେ ପରମ୍ପରାକୁ ଧର୍ମୀୟ ପୁଟ ଦେଇ ତାହା ସହିତ କିଛି ଭାବାବେଗ ସୃଷ୍ଟି କରିବା ହେଉଛି ଆମର ମାନସିକତା । କେତେକ ବିଶ୍ୱାସ, ଲୋକାଚାର ଓ ଚଳଣି ଯେତେ ଆଧାରହୀନ, ଅବୈଜ୍ଞାନିକ ହେଲେ ବି ତାହା ହିଁ ପରମ୍ପରା ନାମରେ ସମାଜରେ ପାଳିତ ହୁଏ ଓ ତାହା ସହ ଧାର୍ମିକ ଭାବାବେଗକୁ ସଂଶ୍ଳିଷ୍ଟ କରାଯାଏ । ତେବେ ବିଡମ୍ବନାର ବିଷୟ ନାଗରିକ ଶୃଙ୍ଖଳାବୋଧକୁ ମାନୁ ନଥିବା ଓ ବ୍ୟକ୍ତିମର୍ଯ୍ୟାଦାବୋଧ ପରି ମୂଲ୍ୟବୋଧରେ ସାମାନ୍ୟ ଆସ୍ଥା ନ ଥିବା ବ୍ୟକ୍ତିମାନେ ହିଁ

ପରମ୍ପରାର ଦୁହିଦେଇ ସମାଜରେ ନାନା ଅସାମାଜିକ ଘଟଣାମାନ ଘଟାଉଥାନ୍ତି । କଳ୍ପିତ ଠାକୁର ଠାକୁରାଣୀଙ୍କୁ ପ୍ରତିବର୍ଷ ବିବାହ କରାଇବା, କେଉଁ ଶୁଭବେଳାରେ କେଉଁଠି ବୁଡ ପକାଇବା, କେଉଁ ଦିଅଁଙ୍କର ପାଦ ଦର୍ଶନ କରିବା, କାହାର ଦଉଡି ଛୁଇଁବା ଓ କେଉଁଠି ପାଣି ଢ଼ାଳିବା ଇତ୍ୟାଦି ପାଇଁ ଲକ୍ଷ ଲକ୍ଷ ଲୋକ ସମବେତ ହେଉଛନ୍ତି । ଜନମାନସରେ ବିଶ୍ୱାସ ଯେ ଏସବୁ କାର୍ଯ୍ୟଦ୍ୱାରା ଜୀବନରୁ ସକଳ ପାପ ଦୂର ହୋଇଯିବ ବା ଜୀବନର ଅଭିଳଷିତ ଲକ୍ଷ୍ୟ ପୂରଣ ହୋଇପାରିବ ।

ସମାଜରେ ଏହିପରି ମାନସିକତା ରହିବା ନେଇ କାରଣମାନଙ୍କର ବିଶ୍ଳେଷଣ କରି ବସିଲେ ତାହା ଏକ ବିରାଟ ଗ୍ରନ୍ଥ ହେବ । ତେବେ ସାଧାରଣ ଭାବରେ କହିଲେ ମନସ୍ତାତ୍ତ୍ୱିକ ଭୟ ଓ ସହଜରେ ନିଜର ଅଭିଳଷିତ ବସ୍ତୁ ପାଇବା ପାଇଁ ଲୋକମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଅଭାବରେ ବିଭିନ୍ନ ମହାଜାଗତିକ ସତ୍ତାରେ ବିଶ୍ୱାସ ସ୍ଥାପନ କରିଥାନ୍ତି । ଯେତେବେଳେ ବୃହତ୍ତର ସମାଜ ଉପରେ ବ୍ୟକ୍ତି ଆସ୍ଥା ସ୍ଥାପନ କରିପାରେ ନାହିଁ କିମ୍ବା ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୁଏ ସେତେବେଳେ ସେହି ସ୍ଥିତିରେ ସେ ସହଜରେ ଅଲୌକିକ ଶକ୍ତି ଉପରେ ଆସ୍ଥା ସ୍ଥାପନ କରେ । ଅସାମାଜିକ ବାତାବରଣରେ ଯେହେତୁ କୁସଂସ୍କାର ଜନିତ ବିଶ୍ୱାସର ପ୍ରାବଲ୍ୟ ରହିଛି, ତାର ପରିଣାମରୁ ଜଣେ ବ୍ୟକ୍ତି ସହଜରେ ଏସବୁରେ ବିଶ୍ୱାସ କରିଥାଏ । ଯେଉଁ ବାପା ମା' ନିଜର ପିଲାଟିର ଚିକିତ୍ସା ପାଇଁ ଡାକ୍ତରଙ୍କ ପରାମର୍ଶ ପାଇବାକୁ ଅସମର୍ଥ, ସେମାନେ ପିଲାଟିକୁ କାଳିସୀ ପାଦ ତଳେ ରଖିଲେ ତାର ରୋଗ କାଳେ ଭଲ ହୋଇଯିବ ବୋଲି ଭାବିବା ସେମାନଙ୍କ ପାଇଁ ସ୍ୱାଭାବିକ ମନେହୁଏ । ସେହିପରି ନିଜର ଅଭାବ ଅସୁବିଧାକୁ ଦୂର କରିବାକୁ ଅସମର୍ଥ ବ୍ୟକ୍ତିଟି କେତେକ ପ୍ରଚଳିତ ବିଶ୍ୱାସର ଶରବ୍ୟ ହେଉଛି । କାଳେ ଦିଅଁ ଦେବତାକୁ ମାନସିକ କରି କିଛି ଦେଲେ ସେ ଅସୁବିଧା ପୂରଣ କରିଦେବେ ଏହି ବିଶ୍ୱାସରୁ କିଏ ନଡିଆ ବାଡେଉଛି ତ ଆଉ କିଏ ବଳି ପକାଇବା ପରି ଅଭାବନୀୟ ଘଟଣା ସୃଷ୍ଟି କରୁଛି । ସେହିପରି ପୁଲିସ, ପ୍ରଶାସନ ଉପରେ ଭରସା ନକରିପାରି ଖଟବୁଲା, କୁଲାବୁଲା ପରି କାର୍ଯ୍ୟଦ୍ୱାରା ସମସ୍ୟାର ସମାଧାନ ହୋଇଯିବ ବୋଲି କେତେକ ଲୋକ ସହଜରେ ଭାବୁଛନ୍ତି । ଯେହେତୁ ଗୁଣାତ୍ମକ ଶିକ୍ଷା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସେମାନଙ୍କୁ ସ୍ପର୍ଶ କରିନାହିଁ, ସେମାନେ ଏ ସବୁଥିରେ ଭରସା କରୁଛନ୍ତି । ସେମାନଙ୍କର ସାମାଜିକ ଓ ଆର୍ଥିକ ସ୍ଥିତି ଜନିତ କାରଣ ସେମାନଙ୍କ ଭିତରେ ଏହିପରି ଏକ ମନସ୍ତତ୍ତ୍ୱ ସୃଷ୍ଟି ଦିଗରେ ସହାୟକ ହେଉଛି ।

ଆମ ସାମାଜିକ ଜୀବନ ପ୍ରବାହରେ ଆମେ ଏପ୍ରକାର ଘଟଣା ମଧ୍ୟ ଦେଖୁ ଯେ ଯେଉଁମାନେ ସେମାନଙ୍କର ସାମାଜିକ କର୍ତ୍ତବ୍ୟ କ୍ଷେତ୍ରରେ ସାଧୁତା, ସଚ୍ଚୋର ପବିତ୍ରତା ରକ୍ଷା କରନ୍ତି ନାହିଁ, ସେମାନେ ଅଧିକ ମାତ୍ରାରେ ଧାର୍ମିକ କାର୍ଯ୍ୟରେ ଲିପ୍ତ ହୁଅନ୍ତି । ଏହି ପ୍ରକାରର ବିଶ୍ୱାସ ଜନଜୀବନରେ ବେଶ୍ ବ୍ୟାପକ ଯେ ଶୁଭବେଳାରେ କେଉଁଠି ବୁଡ ପକାଇଲେ, କେଉଁଠି ଅଧିଆ ପଡିଲେ, କେଉଁ ପିତୁଳାକୁ ଦର୍ଶନ କଲେ ଜୀବନର ସବୁ

ପାପ ଧୋଇ ହୋଇଯିବ । ଏତଦ୍‌ବ୍ୟତୀତ ସମାଜରେ ନାନା ଓଷା, ବାର, ବ୍ରତ ପାଇଁ କେତେ କେତେ କାଳ୍ପନିକ କାହାଣୀମାନ ସୃଷ୍ଟି କରାଯାଇଛି । କେତେକ ତଥାକଥିତ ବାବା, ମାତାମାନେ ସ୍ୱର୍ଗ, ମୋକ୍ଷ, ମୁକ୍ତି ପାଇଁ କେତେ ପ୍ରବଚନମାନ ଦେଇ ଲୋକମାନଙ୍କୁ ଧାର୍ମିକ ବିଶ୍ୱାସ ଦିଗରେ ପ୍ରରୋଚିତ କରୁଛନ୍ତି । ଏହା ମଧ୍ୟ ଏକ ସାଧାରଣ ମନସ୍ତତ୍ତ୍ୱ ଯେ ଅନ୍ୟାୟ କରୁଥିବା ବା ଅସାଧୁ ଉପାୟରେ ଉପାର୍ଜନ କରୁଥିବା ଲୋକମାନେ ଧାର୍ମିକ କର୍ମକାଣ୍ଡ ପାଇଁ ଅଧିକ ଆନ୍ତରିକତା ପ୍ରକାଶ କରିଥାନ୍ତି । ଦିଅଁ ଦେବତାଙ୍କୁ ପ୍ରାର୍ଥନା କଲେ, ସେମାନଙ୍କୁ ପୂଜା  ଆରାଧନା କଲେ ସେମାନଙ୍କ ଆଶୀର୍ବାଦରୁ ଅସାଧୁ କାର୍ଯ୍ୟ ଜନିତ ପାପରୁ ମୁକ୍ତି ମିଳିବ । ଧର୍ମର ଧ୍ୱଜା ଧରିଥିବା ଲୋକମାନେ ସାମ୍ପ୍ରଦାୟିକ ହିଂସାରେ ସମ୍ପୃକ୍ତ ହେବା ଓ ଅସାଧୁ ପ୍ରକୃତିର ଲୋକମାନେ ବେଶି ପୂଜା ପାର୍ବଣରେ ମତୁଆଲା ହେବାର ଦୃଷ୍ଟାନ୍ତ ସମାଜରେ ବେଶ୍ ଦେଖାଯାଏ ।

ଯେଉଁଠି ଜନଜୀବନରେ ନାଗରିକ ଶୃଙ୍ଖଳାବୋଧ ନେଇ ସାମାଜିକ ଚେତନାର ସ୍ତର ଉନ୍ନତ ନୁହେଁ ସେଠି ଲୋକମାନେ ଅଧିକ ଧର୍ମୀୟ କର୍ମକାଣ୍ଡ ଓ ପୂଜାପାର୍ବଣରେ ନିମଗ୍ନ ହେବା ଏକ ସାଧାରଣ ଘଟଣା । ଏହା ସାମାଜିକ ଓ ବୌଦ୍ଧିକ ଅନଗ୍ରସରତାର ଏକ ମୁଖ୍ୟ ଲକ୍ଷଣ । ଆମ ଜନଜୀବନରେ ନାଗରିକ ସଚେତନତାର ଘୋର ଅଭାବ, ଧର୍ମ, ଜାତି ନେଇ ନାନା ଭେଦଭାବ, ମହିଳାମାନଙ୍କ ପ୍ରତି ଅଶୋଭନୀୟ ବ୍ୟବହାର, ପ୍ରଶାସନିକ ଓ ରାଜନୈତିକ ବ୍ୟବସ୍ଥାରେ ଦୁର୍ନୀତି ଓ ଭ୍ରଷ୍ଟାଚାର ଜନଜୀବନର ନିଛକ ବାସ୍ତବତା । ଏହି ସ୍ଥିତିରେ ଜଣେ ସାଧାରଣ ବ୍ୟକ୍ତି ନାନା ଭାବରେ ଅସନ୍ତୁଳିତ ହେବା ସ୍ୱାଭାବିକ । ବୃହତ୍ତର ସମାଜ ଯେତେବେଳେ ବ୍ୟକ୍ତିର ଆବଶ୍ୟକୀୟ ନିରାପତ୍ତା, ଶିକ୍ଷା, କର୍ମସଂସ୍ଥାନ, ଗୁଣାତ୍ମକ ଜୀବନ ଓ ସୁସ୍ଥ ପରିବେଶ ଦେଇ ପାରୁନାହିଁ, ସେତେବେଳେ ଜଣେ ବ୍ୟକ୍ତି ମହାଜାଗତିକ ଶକ୍ତି, ଦିଅଁ ଦେବତା ଉପରେ ବିଶ୍ୱାସ କରିବା ସ୍ୱାଭାବିକ ମନେହୁଏ । ଅନେକ ସମୟରେ ଗଣମାଧ୍ୟମ ବି ନକାରାତ୍ମକ ଭୂମିକା ନେଇ କୁସଂସ୍କାର ପ୍ରସାର କରିବା ଦେଖାଯାଏ । ତାହାର ପ୍ରତିଫଳନ ଧାର୍ମିକ ଆବେଗ, ପୂଜାପାର୍ବଣ, କର୍ମକାଣ୍ଡ ଇତ୍ୟାଦିରେ ପ୍ରତିଫଳିତ ହୋଇଥାଏ । ଏହି ସ୍ଥିତିରେ ପରିବର୍ତ୍ତନ ପାଇଁ ଜନଜୀବନରେ ମଣିଷର ମୂଲ୍ୟ ନେଇ ସଚେତନତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବା ପାଇଁ ସୁଚିନ୍ତିତ ପଦକ୍ଷେପ ଆବଶ୍ୟକ । ମଧ୍ୟଯୁଗୀୟ ଅନ୍ଧ ସଂସ୍କାର ଜନିତ ମାନସିକତାରୁ ଜନଗଣଙ୍କୁ ମୁକ୍ତ କରିବାକୁ ହେଲେ ଏହି ବିଶ୍ୱାସ ସୃଷ୍ଟି କରିବାକୁ ହେବ ଯେ କଳ୍ପିତ ଦିଅଁ ଦେବତା ସାମାଜିକ ବିକାଶରେ ସହାୟକ ହେବେ ନାହିଁ ବା ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆଣିବେ ନାହିଁ । ମଣିଷ ହିଁ ତାର ଭାଗ୍ୟକୁ ବଦଳାଇ ପାରିବ ଓ ଏକ ଉତ୍ତରଦାୟୀ ସାମାଜିକ ବ୍ୟବସ୍ଥାଦ୍ୱାରା ଉଚ୍ଚ ନାଗରିକ ଶୃଙ୍ଖଳାବୋଧ ସମାଜରେ ଆସିପାରିବ ।

(୧୪.୮.୨୦୧୩)



# ହେତୁବାଦର ବାର୍ତ୍ତା

ହେତୁବାଦ, ଯୁକ୍ତିବାଦ, ତର୍କଶୀଳତା ସମାର୍ଥବୋଧକ ହେଲେ ମଧ୍ୟ ହେତୁବାଦର ଏକ ବ୍ୟାପକତର ତାତ୍ପର୍ଯ୍ୟ ଥିବା ମନେହୁଏ । ସାଧାରଣ ଭାବେ କହିଲେ ବିଚାରଶୀଳତା ଓ ମହତ୍ତର ଜୀବନବୋଧର ଏକ ସମନ୍ୱିତ ଅଭିବ୍ୟକ୍ତି ହିଁ ହେତୁବାଦ । ଏହି ପୃଷ୍ଠଭୂମିରେ ବିଚାର କଲେ ହେତୁବାଦ ଏକ ଜୀବନଧାରା ଓ ଏକ ଜୀବନ-ଦର୍ଶନ । ସଭ୍ୟତାର କ୍ରମବିକାଶକୁ ଅନୁଶୀଳନ କଲେ ଜଣାଯାଏ ଯେ, ମଣିଷ ଏକ ଆଦିମ ସ୍ତରରୁ ନାନା ପରିବର୍ତ୍ତନ ଦେଇ ସାମ୍ପ୍ରତିକ ସ୍ଥିତିକୁ ଆସିଛି । ଆଦିମ ଗୋଷ୍ଠୀ ଜୀବନରୁ କୃଷିର ଜ୍ଞାନ ସହ ଯାଯାବର ଜୀବନର ଅନ୍ତ ହୋଇଛି । ଗ୍ରାମୀଣ ଜୀବନ, କ୍ଷୁଦ୍ର ରାଜ୍ୟର ପରିବେଶରୁ ବୃହତ୍ତର ରାଜ୍ୟ ଓ ସାର୍ବଭୌମ ରାଷ୍ଟ୍ର ଭାବନାର ଅଭ୍ୟୁଦୟ ହେଇଛି । ଆଜିର ଅନ୍ତାରାଷ୍ଟ୍ରୀୟ ଭାବନାର ବିକାଶ ପଶ୍ଚାତରେ ମାନବ ସଭ୍ୟତାର ସୁଦୀର୍ଘ କାହାଣୀ ରହିଛି । ସମାଜର ବିକାଶ ପ୍ରକ୍ରିୟା, ଗୁଣାତ୍ମକ ଜୀବନ ନେଇ କ୍ରମବର୍ଦ୍ଧିଷ୍ଣୁ ସଚେତନତା ଓ ମାନବ ସମୁଦାୟର କଲ୍ୟାଣ ସାଧନ ପାଇଁ ପ୍ରୟାସ ପଶ୍ଚାତରେ ରହିଛି ମଣିଷର ବୌଦ୍ଧିକ ଜିଜ୍ଞାସା, ବିଚାରଶୀଳ ଦୃଷ୍ଟି ଓ ଗଭୀର ମାନବିକ ସମ୍ପୃକ୍ତି । ମୁକ୍ତ ମନ, ସ୍ୱାଧୀନ ଚିନ୍ତାର ବିକାଶ, ଅନୁସନ୍ଧିତ୍ସୁ ଦୃଷ୍ଟି ଓ ବୈଜ୍ଞାନିକ ଅନୁଶୀଳନରୁ ଚେତନାର ସମ୍ପ୍ରସାରଣ ସହ ଜ୍ଞାନ ବିଜ୍ଞାନର ଦିଗନ୍ତ ବିସ୍ତାରିତ ହୋଇଛି । ନୂଆ ନୂଆ ଯାନ୍ତ୍ରିକ କୌଶଳ ଓ ପ୍ରଯୁକ୍ତିର ଉଦ୍ଭାବନ ଜୀବନକୁ ସରସ, ସୁନ୍ଦର କରିଛି । ଏହା ସହ ମାନବବାଦୀ ଜୀବନଦୃଷ୍ଟିରୁ ସମତା, ସାମାଜିକ ନ୍ୟାୟ, ମାନବିକ ଅଧିକାର, ଗଣତାନ୍ତ୍ରିକ ବିଚାରବୋଧ, ଧର୍ମନିରପେକ୍ଷ ମୂଲ୍ୟବୋଧ ଓ ବ୍ୟକ୍ତି ମର୍ଯ୍ୟାଦାବୋଧ ପରି ମୂଲ୍ୟଚୟର ବିକାଶ ହୋଇଛି । ଏହି ପୃଷ୍ଠଭୂମିରେ ବିଚାରଶୀଳତା ଓ ମାନବିକତା ହେଉଛି ହେତୁବାଦର ଏକ ସାର୍ବଜନୀନ ଅଭିବ୍ୟକ୍ତି ।

ବିଚାରଶୀଳତା ସହିତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀଟି ଅଙ୍ଗାଙ୍ଗୀ ଭାବେ ସଂଶ୍ଲିଷ୍ଟ । ବିଜ୍ଞାନର ବିକାଶ ସହିତ ବୈଜ୍ଞାନିକ ବିଚାରବୋଧର ବିକାଶ ଓତଃପ୍ରୋତ ଭାବେ ଜଡିତ । ମଣିଷ ସଭ୍ୟତାର ଇତିହାସ ବହୁ ପ୍ରାଚୀନ ହେଲେ ମଧ୍ୟ ବୈଜ୍ଞାନିକ ଅନୁଶୀଳନର ଯୁଗ

ସପ୍ତଦଶ ଶତାବ୍ଦୀରୁ ହିଁ ଆରମ୍ଭ ହୁଏ । ନବଜାଗରଣ ଓ ନବସଂସ୍କାର (୧୪୫୩ରୁ ୧୬୯୦) ଯୋଗୁ ୟୁରୋପରେ ଯେଉଁ ସାଂସ୍କୃତିକ ଆଲୋଡନଟି ଆସିଥିଲା ତାହାର ପରିଣାମରୁ ବିଜ୍ଞାନର ଯୁଗ ଆରମ୍ଭ ହୋଇଥିଲା । ବିଜ୍ଞାନର ଆଦି ପର୍ବଟି ଥିଲା ଏକ ସଂଘର୍ଷର ସମୟ । ଧାର୍ମିକ ବିଶ୍ୱାସ, ଜଗତ୍‌ଦୃଷ୍ଟି ସହିତ ବୈଜ୍ଞାନିକ ସତ୍ୟର ଦ୍ୱନ୍ଦ୍ୱରୁ ଅନେକ ବୈଜ୍ଞାନିକଙ୍କୁ ନାନା ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡିଛି । ତେବେ ବୈଜ୍ଞାନିକ ଜ୍ଞାନ ତଥ୍ୟଭିତ୍ତିକ, ବସ୍ତୁନିଷ୍ଠ, ପରୀକ୍ଷା ସାପେକ୍ଷ, ସ୍ୱସଂଶୋଧନାତ୍ମକ ଓ ସାର୍ବଜନୀନ ହୋଇଥିବାରୁ ବିଜ୍ଞାନର ଅଗ୍ରଗତିକୁ ଧର୍ମ ପ୍ରତିରୋଧ କରିପାରି ନାହିଁ । ଏହି ପୃଷ୍ଠଭୂମିରେ ଏହା କୁହାଯାଇପାରେ ଯେ, ବୈଜ୍ଞାନିକ ଦୃଷ୍ଟି ଦୁଇଟି ମୌଳିକ ବିଚାର ଉପରେ ଆଧାରିତ । ବିଜ୍ଞାନର ଏକ ସ୍ୱତଃସିଦ୍ଧ ବିଶ୍ୱାସ ହେଉଛି ଯେ, ପ୍ରକୃତିରେ ଥିବା ସମସ୍ତ ବସ୍ତୁ ବା ପ୍ରାକୃତିକ ଘଟଣା ପଶ୍ଚାତରେ କେବଳ ପ୍ରାକୃତିକ ନିୟମ ବା କାରଣ ରହିଛି । ପ୍ରାକୃତିକ ଘଟଣା ପଶ୍ଚାତରେ କୌଣସି ଈଶ୍ୱରୀୟ, ଦୈବୀ ବା ଆଧିଦୈବିକ କାରଣ ନାହିଁ । ସେହିପରି ପ୍ରକୃତିରେ ରହିଥିବା ନିୟମ, ଶୃଙ୍ଖଳା ବା ଏକରୂପତାକୁ ପର୍ଯ୍ୟବେକ୍ଷଣ ପରୀକ୍ଷଣ ସାହାଯ୍ୟରେ ଅନୁଶୀଳନ କରାଯାଇ ପାରିବ । ପର୍ଯ୍ୟବେକ୍ଷଣ ପରୀକ୍ଷଣ ହିଁ ବସ୍ତୁନିଷ୍ଠ ଜ୍ଞାନର ମୂଳ ଆଧାର । ସକଳ ବୈଜ୍ଞାନିକ ଜ୍ଞାନର ଉତ୍ସ ହେଉଛି ବୈଜ୍ଞାନିକ ପ୍ରକୃତିବାଦ ଓ ବୈଜ୍ଞାନିକ ପ୍ରଣାଳୀ । ବୈଜ୍ଞାନିକ ପ୍ରକୃତିବାଦ ଓ ବୈଜ୍ଞାନିକ ପ୍ରଣାଳୀର ପ୍ରୟୋଗରୁ ବିଜ୍ଞାନର ଦିଗନ୍ତ ବିସ୍ତାର ଲାଭ କରିଥିବା ମନେହୁଏ । ଏହି ପରିପ୍ରେକ୍ଷୀରେ କୁହାଯାଇପାରେ ଯେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ବ୍ୟକ୍ତି ବିଜ୍ଞାନର ଏହି ସିଦ୍ଧାନ୍ତକୁ ସ୍ୱୀକାର କରେ । ତେବେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ବିଜ୍ଞାନର ଛାତ୍ର ହେବା ଅବଶ୍ୟମ୍ଭାବୀ ନୁହେଁ, କିମ୍ବା ପ୍ରତ୍ୟେକ ବିଜ୍ଞାନର ଛାତ୍ର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ନାହିଁ । ବରଂ ଯେଉଁମାନେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ସେମାନେ ହେତୁବାଦୀ ହୋଇଥା'ନ୍ତି ।

ଆମର ଭାବନା ଯୁକ୍ତିସଂଗତ ଓ ତର୍କସମ୍ମତ ହେବା ଆବଶ୍ୟକ, ତେବେ ଯୁକ୍ତି ବା ତର୍କ କେବଳ ଏକ ସାଧନ । ଯୁକ୍ତି ବା ତର୍କକୁ ଏକ ଉତ୍ତମ ଲକ୍ଷ୍ୟ ଦିଗରେ ବିନିଯୋଗ କରାଯାଇପାରେ କିମ୍ବା ଏକ ମନ୍ଦ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଇପାରେ । ଏହି ସାଦୃଶ୍ୟରେ କୁହାଯାଇପାରେ ଯେ, ବିଜ୍ଞାନ ମାନବ ସମାଜର କଲ୍ୟାଣ ଦିଗରେ ପ୍ରୟୋଗ ହୋଇପାରେ କିମ୍ବା ଏହା ସଭ୍ୟତାର ଧ୍ୱଂସ ଦିଗରେ ବି ପ୍ରୟୋଗ ହୋଇପାରେ । ଏଣୁ ଏଠାରେ ନୈତିକତାର ପ୍ରଶ୍ନ ଆସେ । ସୁତରାଂ ହେତୁବାଦ ମାନବବାଦର ପ୍ରସଙ୍ଗ ଆଣେ । ମଣିଷର ସୁଖ, ଶାନ୍ତି, ଭ୍ରାତୃତ୍ୱଭାବ, ସହନଶୀଳତା ଓ କଲ୍ୟାଣ ହିଁ ମାନବବାଦୀ ଦୃଷ୍ଟିଭଙ୍ଗୀ ସହ ସଂଶ୍ଳିଷ୍ଟ । ଜୀବନର ନୈତିକ ଉତ୍ତରଣ କ୍ଷେତ୍ରରେ ମାନବବାଦୀ ଦୃଷ୍ଟିଭଙ୍ଗୀ ମହତ୍ତ୍ୱପୂର୍ଣ୍ଣ

ହୋଇଥାଏ । ହେତୁବାଦୀ ଜୀବନଦର୍ଶନ କାଳ୍ପନିକ ସ୍ୱର୍ଗ, ନର୍କ, ମୁକ୍ତି, ମୋକ୍ଷ, ନିର୍ବାଣ, ଈଶ୍ୱରପ୍ରାପ୍ତି ଇତ୍ୟାଦି ପାରଲୌକିକ ସ୍ଥିତିରେ ଆସ୍ଥା ପୋଷଣ କରେନାହିଁ । ଏଗୁଡ଼ିକ ଧର୍ମଜନିତ ବିଶ୍ୱାସ । ପୁନଶ୍ଚ ଏହି ବିଶ୍ୱାସ ଭିନ୍ନ ଭିନ୍ନ ଧର୍ମରେ ପରସ୍ପରଠାରୁ ପୃଥକ୍ । ଆତ୍ମାର ଅମରତ୍ୱ, ପୂନର୍ଜନ୍ମ, ସ୍ୱର୍ଗପ୍ରାପ୍ତି, ଆତ୍ମାର ସ୍ୱରୂପ ଇତ୍ୟାଦି ପ୍ରସଙ୍ଗ ଗୁଡ଼ିକ ସମ୍ପୂର୍ଣ୍ଣ କାଳ୍ପନିକ ହୋଇଥିବାରୁ ବିଭିନ୍ନ ଧର୍ମରେ ଏଗୁଡ଼ିକ ବିଷୟରେ ପୃଥକ୍ ପୃଥକ୍ କଳ୍ପନା ବ୍ୟକ୍ତ ହୋଇଛି । ଏସବୁ ବିଶ୍ୱାସ ପଶ୍ଚାତରେ କୌଣସି ବସ୍ତୁନିଷ୍ଠ ବା ଯୁକ୍ତିନିଷ୍ଠ କାରଣ ନଥିବାରୁ ହେତୁବାଦ ଏସବୁକୁ ସ୍ୱୀକାର କରେନାହିଁ । ପୁନଶ୍ଚ ହେତୁବାଦ ସ୍ୱୀକାର କରେ ଯେ କୌଣସି ବିକାଶ, ପ୍ରଗତି ବା ଉନ୍ନତି ଦୈବୀ ଆଶୀର୍ବାଦରୁ ହୋଇନାହିଁ କିମ୍ବା ସ୍ୱର୍ଗରୁ ଖସି ନାହିଁ । ସଭ୍ୟତାରେ ଯାହା କିଛି ବିକାଶ ହୋଇଛି ସେସବୁ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ଯେଉଁ ରାଷ୍ଟ୍ରମାନେ ଉନ୍ନତ ହୋଇଛନ୍ତି ଓ ଯେଉଁ ଦେଶମାନଙ୍କରେ ଜୀବନର ଭୌତିକ ମାନ ଉନ୍ନତ ଓ ରୁଚିପୂର୍ଣ୍ଣ ହୋଇଛି ସେସବୁ ଦେବତାର ବା ଈଶ୍ୱରୀୟ ଆଶୀର୍ବାଦରୁ ସମ୍ଭବ ହୋଇନାହିଁ ଓ ଯେଉଁ ଦେଶମାନେ ଅନଗ୍ରସର ରହିଛନ୍ତି (ଭାରତ ପରି ତୃତୀୟ ବିଶ୍ୱର ରାଷ୍ଟ୍ରମାନେ) ସେମାନଙ୍କୁ ଈଶ୍ୱରଙ୍କର ଅଭିଶାପ ମିଳିନାହିଁ । ରାଷ୍ଟ୍ରର ବିକାଶ, ଭୌତିକ ଅଗ୍ରଗତି, ଜୀବନର ଗୁଣାତ୍ମକମାନ ଓ ନୀତିପୂର୍ଣ୍ଣ ସାମାଜିକ ସମ୍ପର୍କ ମଣିଷର ଉଦ୍ୟମରେ ସମ୍ଭବ ହୋଇଛି । ସେହିପରି ନୀତି, ନୈତିକତା, ଉନ୍ନତ ସାମାଜିକ ଜୀବନ, ନାଗରିକ କର୍ତ୍ତବ୍ୟବୋଧ, ମାନବିକ ସମ୍ବେଦନଶୀଳତା, ସାଧୁତା, ସତ୍ୟବାଦିତା ପରି ମୂଲ୍ୟଚୟର ଧର୍ମ ବା ଈଶ୍ୱର ଉପାସନା ସହ ସମ୍ପର୍କ ନାହିଁ । ଗୋଟିଏ ଯୁଗରେ ଓ ବିଶେଷକରି ଧର୍ମର ଗଭୀର ପ୍ରଭାବ ରହିଥିବା ବେଳେ ସମାଜରେ ଏହି ବିଶ୍ୱାସ ବ୍ୟାପ୍ତ ଥିଲା ଯେ ଈଶ୍ୱରଙ୍କଠାରେ ନିର୍ମଳ ବିଶ୍ୱାସ ଦ୍ୱାରା ବ୍ୟକ୍ତି ନୀତିବାନ୍ ହୁଏ; ଅର୍ଥାତ୍ ଈଶ୍ୱରଙ୍କଠାରେ ବିଶ୍ୱାସ ନୈତିକତାର ପ୍ରଧାନ ଅବଲମ୍ବନ । ନୈତିକତା ଓ ଈଶ୍ୱର ବିଶ୍ୱାସ ଭିତରେ ହୁଏତ ଏକ ମନସ୍ତାତ୍ତ୍ୱିକ ସମ୍ପର୍କ ଥାଇପାରେ, କିନ୍ତୁ ଏହି ଦୁଇ ଭାବନା ପରସ୍ପରଠାରୁ ସମ୍ପୂର୍ଣ୍ଣ ଭିନ୍ନ । ନୈତିକତା ଏକ ସାମାଜିକ କର୍ତ୍ତବ୍ୟ ଓ ନୈତିକତା ଏବଂ ଈଶ୍ୱର ବୈଚାରିକ ମାନଦଣ୍ଡରୁ ଦୁଇଟି ପୃଥକ୍ ଭାବନା । ଜୀବନର ଅନୁଭୂତି, ଉତ୍ତମ ଜୀବନ ନେଇ ବିଚାରବୋଧ ଓ ସୁଖ-ଶାନ୍ତି ବିଷୟରେ ଅନୁଶୀଳନରୁ ମଣିଷ ନୀତି, ନୈତିକତାକୁ ସଭ୍ୟ ଜୀବନ ପାଇଁ ଅବଶ୍ୟମ୍ଭାବୀ ମନେକରେ । ମଣିଷର ନୈତିକ ବିଚାରଗୁଡ଼ିକ ଜୀବନର ଘଟଣା ପ୍ରବାହ ଓ ସାମାଜିକ ସ୍ଥିତି ନେଇ ପରିବର୍ତ୍ତିତ ହେଉଥାଏ । ସାମାଜିକ ସ୍ଥିରତା, ସୁଖ-ଶାନ୍ତି, ସମ୍ପ୍ରୀତି ଭ୍ରାତୃତ୍ୱଭାବ ଓ ମାନବିକ ସମ୍ବେଦନଶୀଳତା ପୃଷ୍ଠଭୂମିରେ ନୈତିକତା ମହତ୍ତ୍ୱପୂର୍ଣ୍ଣ ଏହା ସହ ଧର୍ମ, ଈଶ୍ୱର ବିଶ୍ୱାସର ସମ୍ପର୍କ ହିଁ ନାହିଁ ।

ବିଚାରଶୀଳତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରେ ଗୁରୁତ୍ୱରୁ ଏହା ଭାବିବା ଯଥାର୍ଥ ନୁହେଁ ଯେ ହେତୁବାଦ କଳା, ସାହିତ୍ୟ ପରି ସୃଜନଶୀଳ କ୍ଷେତ୍ରକୁ କୌଣସି ପ୍ରାଧାନ୍ୟ

ଦିଏ ନାହିଁ । ଜୀବନରେ ଅନ୍ତର୍ବୋଧ ଓ ସୃଜନଶୀଳ ଅଭିବ୍ୟକ୍ତିର ବହୁ ପ୍ରାଧାନ୍ୟ ମଧ୍ୟ ରହିଛି । ମହତ୍ତର ଜୀବନବୋଧ ପାଇଁ ସୃଜନଶୀଳ ଆବେଗର ପ୍ରେରଣାକୁ କେହି ଅସ୍ୱୀକାର କରିବେ ନାହିଁ । ବରଂ ଜନଜୀବନର ଗୁଣାତ୍ମକ ବିକାଶରେ କେଉଁ ସୃଜନଶୀଳ ଆବେଗର ମହତ୍ତ୍ୱ ରହିଛି ତାହା ବିଚାରଶୀଳ ଭାବେ ନିର୍ଣ୍ଣୟ କରାଯାଇପାରିବ । ଧାର୍ମିକ ଆବେଗ ଦ୍ୱାରା ପରିଚାଳିତ ହୋଇ ଦୁସ୍ଥ ମଣିଷର ସେବା ପାଇଁ ଜଣେ ନିଜ ଜୀବନକୁ ଉତ୍ସର୍ଗ କରିପାରେ, ପୁନଶ୍ଚ ଅନ୍ୟ ଜଣେ ସେହି ଧାର୍ମିକ ଆବେଗଦ୍ୱାରା ଅଭିପ୍ରେରିତ ହୋଇ ସାମ୍ପ୍ରଦାୟିକ ହିଂସାଜନିତ ନାନା ନାରକୀୟ କାର୍ଯ୍ୟ କରିପାରେ । କେଉଁ ଆବେଗ ମଣିଷକୁ ଅଧିକ ସମ୍ବେଦନଶୀଳ କରାଏ ବା ଅଧିକ ପ୍ରତିହିଂସା ପରାୟଣ କରାଏ, ତାହାର ମାନଦଣ୍ଡ ଏକ ବିଚାରଶୀଳ ଦୃଷ୍ଟିରୁ ହିଁ ଆସିଥାଏ । ସୁତରାଂ ସୃଜନଶୀଳ ଆବେଗ ଓ କଳାତ୍ମକ ଅଭିବ୍ୟକ୍ତି ବିଚାରଶୀଳତାର ପରିପନ୍ଥୀ ନୁହେଁ, ବରଂ ବିଚାରଶୀଳତାର ଆଧାରରେ ତାହା ଅଧିକ ଜୀବନଧର୍ମୀ, ମାନବିକ ଓ ସମ୍ବେଦନଶୀଳ ହୋଇଥାଏ ।

ସବୁ ଯୁଗରେ ଓ ସବୁ ସଭ୍ୟତାରେ ହେତୁବାଦୀମାନେ ପ୍ରଜ୍ଞାଦୀପ୍ତ ବ୍ୟକ୍ତି ଓ ମୁଖ୍ୟତଃ ସମାଜ ସଂସ୍କାରକ । ସେହିମାନେ ହିଁ ଗଭୀର ନ୍ୟାୟବୋଧ ଓ ମାନବିକ ମହତ୍ତ୍ୱକୁ ଅନୁଭବ କରି ସାମାଜିକ କୁସଂସ୍କାରକୁ ବିରୋଧ କରିଥାନ୍ତି । ସବୁ ସଭ୍ୟତାରେ ଧର୍ମଗୋଷ୍ଠୀରେ ଥିବା ରକ୍ଷଣଶୀଳତା, ଧର୍ମାନ୍ଧତା, ରୂଢ଼ିବାଦ, ସାମ୍ପ୍ରଦାୟିକତା ଓ ଭିତ୍ତିହୀନ ବିଶ୍ୱାସର ବିଲୋପ ପାଇଁ ହେତୁବାଦୀମାନେ ପ୍ରୟାସ କରିଆସିଛନ୍ତି । ସମାଜର କୁସଂସ୍କାର ଓ ମାନସିକ ଦାସତ୍ୱର ବିଲୋପ ପାଇଁ ହେତୁବାଦୀମାନେ ହିଁ ପ୍ରଚେଷ୍ଟା କରିଥାନ୍ତି । ପ୍ରାୟତଃ ହେତୁବାଦୀମାନେ ସଂସ୍କାରିତ ଚେତନାର ବାର୍ତ୍ତାବହ । ସମାଜରୁ ସକଳ କୁସଂସ୍କାର, ଭେଦଭାବ ଓ ଅନ୍ୟାୟ ଦୂରକରିବାକୁ ସେମାନେ ପ୍ରଯତ୍ନ କରିଥାନ୍ତି । ଏହି ଦୃଷ୍ଟିରୁ ପ୍ରତ୍ୟେକ ହେତୁବାଦୀ ଜଣେ ସମାଜ ସଂସ୍କାରକ, ତେବେ ପ୍ରତ୍ୟେକ ସମାଜ ସଂସ୍କାରକ ହେତୁବାଦୀ ନ ହୋଇପାରନ୍ତି । ହେତୁବାଦର ମୌଳିକ ସିଦ୍ଧାନ୍ତ ଉପରେ ଆସ୍ଥା ସ୍ଥାପନ କରି ବିଚାରଶୀଳତା ଓ ମାନବବାଦୀ ଦୃଷ୍ଟିର ବାର୍ତ୍ତା ଆଗକୁ ନେଉଥିବା ସଂସ୍କାରିତ ବ୍ୟକ୍ତିମାନେ ହିଁ ହେତୁବାଦୀ ।

(୧୯.୩.୨୦୧୪)



# ଦାଭୋଲକର ଓ ସମାଜ ସଂସ୍କାର

ସାମ୍ପ୍ରତିକ ସମୟର ସମାଜ ସଂସ୍କାର ଇତିହାସରେ ଡ. ନରେନ୍ଦ୍ର ଦାଭୋଲକର ଏକ ପରିଚିତ ବ୍ୟକ୍ତିତ୍ୱ । ଦାଭୋଲକରଙ୍କର ଜନ୍ମ ମହାରାଷ୍ଟ୍ରରେ ୧୯୪୫ ମସିହାରେ । ବୃତ୍ତିରେ ସେ ଥିଲେ ଜଣେ ଡାକ୍ତର । ତେବେ ୧୯୮୯ରେ ସେ "ମହାରାଷ୍ଟ୍ର ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତି" ନାମରେ ଏକ ସଙ୍ଗଠନ ଗଠନ କରି ସମାଜରୁ କୁସଂସ୍କାର, ଅପସଂସ୍କୃତି ଓ ସାମାଜିକ ଭେଦଭାବ ଦୂର କରିବାକୁ ସଙ୍କଳ୍ପ ନେଇ ଏହି ଲକ୍ଷ୍ୟରେ ନିଜକୁ ଉତ୍ସର୍ଗ କଲେ । ତାଙ୍କରି ପ୍ରୟାସରେ ମହାରାଷ୍ଟ୍ରରେ କୁସଂସ୍କାର ଦୂର କରିବାକୁ ସମିତିର ସହସ୍ରାଧିକ କେନ୍ଦ୍ର ସ୍ଥାପିତ ହେଲା । ତେବେ ପରିତାପର ବିଷୟ ପୁନେଠାରେ ଅଗଷ୍ଟ ୨୧ ତାରିଖ ଦିନ ସେ ପ୍ରାତଃ ଭ୍ରମଣରେ ଯାଉଥିବାବେଳେ ଦୁଇଜଣ ଆତତାୟୀ ରାସ୍ତା ଉପରେ ତାଙ୍କୁ ଗୁଳିକରି ହତ୍ୟା କଲେ । ଜଣେ ମହାନ ସଂସ୍କାରକଙ୍କର ଜୀବନଦୀପ ନିର୍ବାପିତ ହୋଇଗଲା ।

ଭାରତୀୟ ସମାଜରେ କୁସଂସ୍କାର, ଅପସଂସ୍କୃତି ଓ ଅମାନବିକ ପରମ୍ପରା ଅସ୍ଥିମଜ୍ଜାଗତ । ଏହା ସହ ଯୁଗ ଯୁଗ ଧରି ଜାତିଗତ ଓ ଲିଙ୍ଗଗତ ଭେଦଭାବ ଆମ ସାଂସ୍କୃତିକ ଜୀବନଧାରା ସହିତ ଅଙ୍ଗାଙ୍ଗୀ ଭାବେ ଜଡିତ । ଯେଉଁମାନେ ସାମାଜିକ ଭେଦଭାବ ଓ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ସେମାନେ ତାଙ୍କ ସମସାମୟିକ ସମାଜରେ ବହୁ ବିରୋଧର ସମ୍ମୁଖୀନ ହୋଇଛନ୍ତି ଓ ଏପରିକି ହତ୍ୟାର ଶିକାର ମଧ୍ୟ ହୋଇଛନ୍ତି । ରକ୍ଷଣଶୀଳ, କଟ୍ଟରପନ୍ଥୀ ସ୍ୱାର୍ଥାନ୍ୱେଷୀ ଲୋକମାନେ ସେମାନଙ୍କୁ ଜନମାନସରେ ନିନ୍ଦିତ କରିବାକୁ ପ୍ରୟାସ କରିଛନ୍ତି । ବିଡମ୍ବନାର ବିଷୟ ଯେ ଯେଉଁମାନେ ବିଚାରଶୀଳତା, ମାନବିକତା ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପ୍ରସାର ପାଇଁ ବାର୍ତ୍ତାବହ ହୁଅନ୍ତି ସେମାନଙ୍କୁ ସମସାମୟିକ ସମାଜ ଗ୍ରହଣ କରିପାରେ ନାହିଁ । କିନ୍ତୁ ସେହିମାନଙ୍କର ପ୍ରୟାସ, ପ୍ରଜ୍ଞା ଓ ଅବଦାନ ଯୋଗୁଁ ସମାଜ ଆଗକୁ ଯାଏ । ଜୀବନର ଗୁଣାତ୍ମକ ମାନରେ ପରିବର୍ତ୍ତନ ଆସେ ଓ ସଭ୍ୟ ମୂଲ୍ୟବୋଧର ବିକାଶ ହୁଏ । ଇତିହାସରେ ଆମେ ଏହିପରି ବହୁ କ୍ରାନ୍ତିକାରୀ ସଂସ୍କାରକଙ୍କୁ ଦେଖେ ଯେଉଁମାନେ ନିଜର ମୁକ୍ତ ଚିନ୍ତା, ହେତୁବାଦୀ ଜୀବନ ଦୃଷ୍ଟି ଓ

ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଯୋଗୁଁ ନିନ୍ଦିତ ହୋଇଛନ୍ତି, ବନ୍ଦୀ ଜୀବନ ବିତାଇଛନ୍ତି ବା ଶହୀଦ ହୋଇଛନ୍ତି । ତେବେ ସେହିମାନଙ୍କର ଅବଦାନ ଓ ବୈଚାରିକ କ୍ରାନ୍ତି ଯୋଗୁଁ ସଭ୍ୟତାର ଚକ ଆଗକୁ ଯାଇଛି ଓ ମନୁଷ୍ୟ ସମାଜ ବହୁ ଭାବରେ ଉପକୃତ ହୋଇଛି ।

ରୂଢ଼ିବାଦୀ ମାନସିକତା ଓ ଧର୍ମାନ୍ଧତା ଯୋଗୁଁ ବହୁ ପ୍ରାଚୀନ ସମୟରୁ ଆଜି ପର୍ଯ୍ୟନ୍ତ ମୁକ୍ତ ଚିନ୍ତକମାନଙ୍କୁ ହିଂସାତ୍ମକ ପନ୍ଥାରେ ହତ୍ୟା କରିବାର କାହାଣୀ ବେଶ୍ ମର୍ମାନ୍ତିକ । ଏହା ସବୁ ସଭ୍ୟତାରେ ହୋଇଛି । ମାନବବାଦର ମହାନ୍ ପ୍ରବକ୍ତା ସକ୍ରେଟିସ୍‌ଙ୍କୁ ପ୍ରାଚୀନ ଗ୍ରୀସରେ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଯାଇଛି । ଭାରତବର୍ଷର ଦର୍ଶନ ଇତିହାସରେ ନ'ଟି ବୈଚାରିକ ପରମ୍ପରା ରହିଥିବା ସୁବିଦିତ । ପ୍ରତ୍ୟେକ ପରମ୍ପରାର ବିସ୍ତୃତ ସାହିତ୍ୟରାଜି ରହିଥିବା ବେଳେ କ୍ରାନ୍ତିକାରୀ ଚିନ୍ତାନାୟକ ଚାର୍ବାକ ବା ଲୋକାୟତ ଦର୍ଶନର କୌଣସି କୃତି ନାହିଁ । ଚାର୍ବାକ ଦର୍ଶନର ସମସ୍ତ କୃତିକୁ ନଷ୍ଟ କରାଯାଇଛି । ତେବେ ଚାର୍ବାକ୍ ଦର୍ଶନର ସମାଲୋଚନାରୁ ଚାର୍ବାକ ଦର୍ଶନର ସିଦ୍ଧାନ୍ତ କ'ଣ ହୋଇଥାଇପାରେ ସେ ବିଷୟରେ ବହୁ ପରେ କଳ୍ପନା କରାଯାଇଛି । ଭାବବାଦୀ ବିଚାରର ପ୍ରାବଲ୍ୟ ହେତୁ କୌଣସି ପରିସ୍ଥିତିରେ ଏକ ବାସ୍ତବବାଦୀ ଓ ଇହଲୋକବାଦୀ ଦର୍ଶନକୁ ଧ୍ୱଂସ କରାଯାଇ ସେହି ଦର୍ଶନର କୁତ୍ସା କରାଯାଇଛି । ୟୁରୋପୀୟ ନବଜାଗରଣ ଯୁଗରେ ଯେଉଁ ସବୁ ବୈଜ୍ଞାନିକ ବିଚାରର ପରମ୍ପରା ସୃଷ୍ଟି ହୋଇଛି, ସେହି କ୍ଷେତ୍ରରେ ବିଜ୍ଞାନ ଓ ଧାର୍ମିକ ମାନସିକତା ଭିତରେ ଦ୍ୱନ୍ଦ୍ୱ ଆସିଛି । ବହୁ ପ୍ରତିଭାଧାରୀ ବୈଜ୍ଞାନିକଙ୍କୁ ବନ୍ଦୀ ଜୀବନ ବିତାଇବାକୁ ହୋଇଛି, ହତ୍ୟା କରାଯାଇଛି ଓ ଧାର୍ମିକ ଲୋକମାନଙ୍କର ଅତ୍ୟାଚାର ସହିବାକୁ ହୋଇଛି । ଆଧୁନିକ ପଦାର୍ଥବିଜ୍ଞାନର ଜନକ ଗାଲିଲିଓ, ଶରୀରବଜ୍ଞାନର ଜନକ ଆଣ୍ଡ୍ରିଆସ ଭେସାଲିୟସ, ଭୂତତ୍ତ୍ୱ ବିଜ୍ଞାନର ପଥପ୍ରଦର୍ଶକ ବଫୁନଙ୍କୁ ବନ୍ଦୀ ଜୀବନ ବିତାଇବାକୁ ହୋଇଛି ବା ଧର୍ମୀୟ ସଙ୍ଗଠନ ପାଖରେ କ୍ଷମା ପ୍ରାର୍ଥନା କରି ଜୀବନ ବଞ୍ଚାଇବାକୁ ପଡିଛି । ବ୍ରୁନୋଙ୍କ ପରି ସ୍ୱାଭିମାନୀ ବ୍ୟକ୍ତି କ୍ଷମା ପ୍ରାର୍ଥନା ନ କରିବାରୁ ତାଙ୍କୁ ସର୍ବ ସମ୍ମୁଖରେ ପୋଡି ହତ୍ୟା କରାଯାଇଛି । ଏହି କାହାଣୀ ବହୁ ସୁଦୀର୍ଘ, ତେବେ ଏହି ସତ୍ୟାନ୍ୱେଷଣକାରୀ ବୈଜ୍ଞାନିକମାନେ ଆଧୁନିକ ସଭ୍ୟତାର ବିକାଶ କ୍ଷେତ୍ରରେ ପଥପ୍ରଦର୍ଶକ ହୋଇଛନ୍ତି ।

ୟୁରୋପରେ ବିଜ୍ଞାନର ଆଦିପର୍ବରେ ଧର୍ମ ଓ ବିଜ୍ଞାନ ଭିତରେ ସଙ୍ଘର୍ଷ ହୋଇଥିବା ସୁବିଦିତ । ଭାରତବର୍ଷରେ ଏହି ସଙ୍ଘର୍ଷ ହୋଇଛି ଧାର୍ମିକ ବିଶ୍ୱାସ ଓ ସମାଜ ସଂସ୍କାର ଭିତରେ । ଆଧୁନିକ ବିଜ୍ଞାନକୁ ଅବଦାନ ଦେବା ପରି କୌଣସି ଆବିଷ୍କାର ଭାରତବର୍ଷରେ ହୋଇନାହିଁ ଯାହା ୟୁରୋପୀୟ ଦେଶମାନଙ୍କରେ ହୋଇଛି । ତେବେ ଭାରତୀୟ ସମାଜରେ ଯେଉଁମାନେ ସାମାଜିକ ନ୍ୟାୟ, ସମତା ଓ ବ୍ୟକ୍ତି ମର୍ଯ୍ୟାଦାବୋଧର ବାର୍ତ୍ତା ଦେବାକୁ ପ୍ରୟାସ କରିଛନ୍ତି ସେମାନଙ୍କୁ ନାନା ବିରୋଧ ବା ନିର୍ଯ୍ୟାତନା ସହ୍ୟ

କରିବାକୁ ହୋଇଛି । ଭାରତୀୟ ସମାଜ ଯୁଗ ଯୁଗ ଧରି ଏକ ଜାତିଭିତ୍ତିକ ଅନମନୀୟ ସମାଜ ହୋଇରହିଛି । ଅସ୍ପୃଶ୍ୟତା, ଜାତିପ୍ରଥା ଓ ସାମାଜିକ ଭେଦଭାବ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବା ବ୍ୟକ୍ତିମାନେ ତଥାକଥିତ ଉଚ୍ଚଜାତିର ଲୋକମାନଙ୍କଦ୍ୱାରା ନିନ୍ଦିତ ହୋଇଛନ୍ତି । ଗୋଟିଏ ସମୟରେ ସତୀଦାହପ୍ରଥା, ନରବଳି ପରି ଜଘନ୍ୟ ବ୍ୟବସ୍ଥାକୁ ଦୂର କରିବା ପାଇଁ ସ୍ୱର ଉଠାଇଥିବା ସଂସ୍କାରକମାନଙ୍କୁ ରୂଢ଼ିବାଦୀ ଧର୍ମାନ୍ଧ ଲୋକମାନେ ପରମ୍ପରାବିରୋଧୀ କହି ବିରୋଧ କରିଛନ୍ତି । ତେବେ କଠୋର ଆଇନ ଦ୍ୱାରା ଏହି ସାମାଜିକ ପ୍ରଥାମାନଙ୍କୁ ବନ୍ଦ କରାଯାଇଛି । ଶୂଦ୍ର, ଦଳିତ ଓ ମହିଳାମାନଙ୍କ ଶିକ୍ଷା ପାଇଁ ସ୍ୱର ଉଠାଇଥିବା ଜ୍ୟୋତିରାଓ ଫୁଲେ, ଅସ୍ପୃଶ୍ୟତା ବିରୋଧରେ ଆନ୍ଦୋଳନ କରିଥିବା ବାବାସାହେବ ଆମ୍ବେଦକର, ନାରାୟଣଗୁରୁ, ଓ ପେରିୟାରଙ୍କ ପରି ମହାନ ସଂସ୍କାରକମାନେ ବହୁ ବିରୋଧର ସମ୍ମୁଖୀନ ହୋଇଛନ୍ତି । ମନ୍ଦିର ମାନଙ୍କରେ ଦଳିତ ମାନଙ୍କର ପ୍ରବେଶ ନେଇ ଏକବିଂଶ ଶତାବ୍ଦୀରେ ବି ସାମାଜିକ ଦୃଶ୍ୟପଟ ପରିବର୍ତ୍ତନ ହୋଇନାହିଁ । ଜାତିଭିତ୍ତିକ ବିବାହ ଏବେ ବି ସାମାଜିକ ଜୀବନ ପ୍ରବାହର ପ୍ରଥା ହୋଇରହିଛି । ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିର ପରିଣାମରୁ ସାମାଜିକ ଗତିଶୀଳତାରେ ବୃଦ୍ଧି, ବୃତ୍ତିଗତ ଢ଼ାଞ୍ଚାରେ ପରିବର୍ତ୍ତନ, ଶିକ୍ଷାର ପ୍ରସାର ପରି କାରଣରୁ ସହରୀ ଜୀବନରେ ଜାତିବିହୀନ ପ୍ରେମ-ବିବାହ ହୁଏତ ବୃଦ୍ଧି ପାଇବାରେ ଲାଗିଛି, ହେଲେ ଏହା ସମାଜର ଧାରା ନ ହୋଇ ବ୍ୟତିକ୍ରମ ହୋଇ ରହିଛି । ଗ୍ରାମୀଣ ଜୀବନଧାରାରେ ଜାତିଗତ ବ୍ୟବସ୍ଥା ଏବେ ବି ଦୃଢ଼ ଭିତ୍ତିରେ ରହିଛି । ଜାତିଗତ ବ୍ୟବସ୍ଥାକୁ ଲଙ୍ଘନ କରି ଯେଉଁଠି ପ୍ରେମ ବିବାହ ହେଉଛି ତାହା ବେଳେବେଳେ ଭୟଙ୍କର ସାମାଜିକ ଆଲୋଡନ ସୃଷ୍ଟି କରୁଛି । କେତେକ ରାଜ୍ୟରେ ଖାପ ପଞ୍ଚାୟତ ଜନିତ ରୁଦ୍ଧ ମାନସିକତା ଦୃଢ଼ ହୋଇ ରହିଛି । ବ୍ୟକ୍ତି ମର୍ଯ୍ୟାଦାବୋଧ, ମାନବିକ ଅଧିକାର, ସାମାଜିକ ନ୍ୟାୟ ଆମ ସମ୍ବିଧାନର ଅନ୍ତଃସ୍ୱର ହୋଇଥିଲେ ମଧ ଏହା ସାମାଜିକ ଜୀବନରେ ପ୍ରତିଫଳିତ ହୋଇପାରୁନାହିଁ । ପ୍ରତ୍ୟେକ ନାଗରିକ ମର୍ଯ୍ୟାଦାର ସହ ଜୀବନ ଅତିବାହିତ କରିବା ତାର ଏକ ପ୍ରାକୃତିକ ଅଧିକାର ହୋଇଥିଲେ ମଧ ଏହା କେବଳ ପୋଥିର ପାଠ ହୋଇ ରହିଛି, ସାମାଜିକ ଜୀବନର ଆଦର୍ଶ ହୋଇପାରୁନାହିଁ । ପୁରୁଷ-ପ୍ରାଧାନ୍ୟ ବ୍ୟବସ୍ଥା ଏବେ ବି ସାମାଜିକ ବାସ୍ତବତା ହୋଇ ରହିଛି ଓ ନାନା ସାଂସ୍କୃତିକ ଓ ମନସ୍ତାତ୍ତ୍ୱିକ କାରଣରୁ ସମାଜରେ 'ଲିଙ୍ଗ-ଭେଦ' ଜନିତ ମାନସିକତା ରହିଛି । ବିଶେଷକରି ଆଧୁନିକ ଜ୍ଞାନ କୌଶଳକୁ ଆଧାର କରି କନ୍ୟାଭ୍ରୂଣ ହତ୍ୟା, ଝିଅମାନଙ୍କର ହତାଦର ଯୋଗୁଁ ସେମାନଙ୍କର ମୃତ୍ୟୁହାର ଅଧିକ ଯୋଗୁ ନାରୀ-ପୁରୁଷର ଅନୁପାତରେ ବିଷମତା ସୃଷ୍ଟି କରାଯାଉଛି । ଏହି ପ୍ରକ୍ରିୟାଦ୍ୱାରା ଭବିଷ୍ୟତରେ ଯେ ଏକ ଭୟଙ୍କର ସ୍ଥିତି ସୃଷ୍ଟି ହେବାକୁ ଯାଉଛି ଏହା ନିଃସନ୍ଦେହ ମନେହୁଏ ।

ଏତଦ୍‌ବ୍ୟତୀତ କୌଶଳପୂର୍ଣ୍ଣଭାବେ ହାତସଫେଇ ଚମତ୍କାରିତା ଦେଖାଇ କେତେକ ବ୍ୟକ୍ତି ଜନମାନସକୁ ବିଭ୍ରାନ୍ତ କରି ସେମାନଙ୍କର ଅସଂଖ୍ୟ ଭକ୍ତ ସୃଷ୍ଟି କରି ଚାଲିଛନ୍ତି । ବୈଜ୍ଞାନିକ ସଚେତନତା ଅଭାବରେ ପ୍ରତିକୂଳ ପରିସ୍ଥିତିରେ ରହିଥିବା ଅଗଣିତ ବ୍ୟକ୍ତି ନାନା ମନସ୍ତାତ୍ତ୍ୱିକ କାରଣରୁ ବାବାମାନଙ୍କୁ ଦିବ୍ୟପୁରୁଷ ବୋଲି ବିଶ୍ୱାସ କରୁଛନ୍ତି । ତଥାକଥିତ ଅବତାର ପୁରୁଷମାନେ ବିଶାଳ ସମ୍ପତ୍ତିର ମାଲିକ ହେଉଛନ୍ତି ଓ ରାଜନୈତିକ ସମର୍ଥନ ବି ଲାଭ କରୁଛନ୍ତି । ସୁତରାଂ ସେମାନେ ଆଇନର ଊର୍ଦ୍ଧ୍ୱରେ ରହି ଅହେତୁକ, ଅବୈଜ୍ଞାନିକ ଓ ପାରଲୌକିକ ଭାବନାର ପ୍ରସାର ଦିଗରେ ବ୍ରତୀ ହେଉଛନ୍ତି । ଶିକ୍ଷା, ସଚେତନତା ଓ ବୈଜ୍ଞାନିକ ମାନସିକତା ଅଭାବରେ ଆମର ଗାଁ ଗହଳରେ ଗୁଣିଗାରେଡି, ମନ୍ତ୍ର, ତନ୍ତ୍ର, କଳାଯାଦୁ ବା ବ୍ଲାକମ୍ୟାଜିକ୍‌ରେ ବିଶ୍ୱାସ ଅତୁଟ ରହିଛି । ଯେଉଁ ଲୋକମାନେ ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାରୁ ବଞ୍ଚିତ ହୋଇ ରହିଛନ୍ତି ସେମାନେ ଗୁଣି ଟୁଣିର ସାହାଯ୍ୟ ନେଉଛନ୍ତି । ସମାଜରେ କିଛି ଧୂର୍ତ୍ତ ବ୍ୟକ୍ତି ମନ୍ତ୍ରତନ୍ତ୍ରଦ୍ୱାରା ରୋଗ ଭଲ କରିବା, ଚୋର ଧରାଇଦେବା ପାଇଁ ଅହେତୁକ କଳାଯାଦୁର ଆଶ୍ରୟ ନେଉଛନ୍ତି । ସେମାନେ ଜନମାନସକୁ ବିଭ୍ରାନ୍ତ କରି କୌଣସି ରୋଗବାଧକ ପାଇଁ ଅନ୍ୟ ଲୋକମାନେ ମନ୍ତ୍ର ତନ୍ତ୍ର କରିଥିବା କହି ଗାଁରେ ଗାଁରେ ଫାଟ ସୃଷ୍ଟି କରିପାରୁଛନ୍ତି । ଗୁଣି ଗାରେଡିର ବିଶ୍ୱାସ ଯୋଗୁ ଓଡିଶାରେ ପ୍ରତିବର୍ଷ ନାନା ହତ୍ୟାକାଣ୍ଡ ଘଟୁଛି । ଏପରିକି ମାଓହିଂସାରେ ଓଡିଶାରେ ପ୍ରତ୍ୟେକ ବର୍ଷ ଯେତେ ଲୋକ ପ୍ରାଣ ହରାଉଛନ୍ତି ବିଗତ ବର୍ଷମାନଙ୍କରେ ତାର ଦୁଇଗୁଣରୁ ଅଧିକ ଲୋକ ଗୁଣିଗାରେଡି ଜନିତ ହତ୍ୟାକାଣ୍ଡରେ ମୃତ୍ୟୁବରଣ କରୁଛନ୍ତି । ତାନ୍ତ୍ରିକ ମାନଙ୍କର କଳାଯାଦୁରେ ବିଶ୍ୱାସ କରି ଗାଁ ଗହଳର ଲୋକମାନେ କାହାକୁ ହତ୍ୟା କରିବା, କାହାକୁ ବିଷ୍ଠା ଖୁଆଇବା, କୌଣସି ମହିଳାଙ୍କୁ ଉଲଗ୍ନ କରି ରାସ୍ତାରେ ଚଲାଇବା ପରି ବର୍ବରୋଚିତ କାର୍ଯ୍ୟମାନ କରୁଛନ୍ତି । ମଧ୍ୟଯୁଗୀୟ ବର୍ବରତା ଏକବିଂଶ ଶତାବ୍ଦୀରେ ବି ଆମ ସମାଜରେ ବଳବତ୍ତର ରହିଛି ।

ଏହି ସ୍ଥିତିରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ଜୀବନଦର୍ଶନର ପ୍ରବକ୍ତା ହେତୁବାଦୀମାନେ ନାନା ବିରୋଧର ସମ୍ମୁଖୀନ ହେଉଛନ୍ତି । ସମାଜ ସଂସ୍କାର ଦିଗରେ ବ୍ରତୀ ହେଉଥିବା ହେତୁବାଦୀ ମାନଙ୍କର ଉଦ୍ଦେଶ୍ୟ ଯେତେ ମହତ୍ ହେଲେ ବି ସେମାନଙ୍କୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକମାନଙ୍କ ହିଂସାର ଶରବ୍ୟ ହେବାକୁ ପଡୁଛି । ସେହି ପରିଣାମରୁ ଡାକ୍ତର ନରେନ୍ଦ୍ର ଦାଭୋଲକରଙ୍କ ପରି ଜଣେ ହେତୁବାଦୀ ସଂସ୍କାରକ ଶହୀଦ ହୋଇଛନ୍ତି ।

(୧୮.୯.୧୩)



# କୁସଂସ୍କାର ବିରୁଦ୍ଧରେ ଦୁଇ ସଂଗ୍ରାମୀ ବ୍ୟକ୍ତିତ୍ୱ

ହେତୁବାଦ ଏକ ଜୀବନ-ଦର୍ଶନ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦୀ ମୂଲ୍ୟବୋଧ ଏହି ଜୀବନ-ଦର୍ଶନର ମୌଳିକ ନିର୍ଯ୍ୟାସ । ମୁକ୍ତମନ, ବିଚାରଶୀଳତା, ଅନୁସନ୍ଧିତ୍ସୁ ମାନସିକତା, ଜ୍ଞାନ୍ ଆହରଣ କ୍ଷେତ୍ରରେ ଏକ ସାର୍ବଜନୀନ ପ୍ରଣାଳୀ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ତାତ୍ପର୍ଯ୍ୟ । ସେହିପରି ସାମାଜିକ ନ୍ୟାୟ, ମାନବିକ ଅଧିକାର ଓ ବ୍ୟକ୍ତିମର୍ଯ୍ୟାଦାବୋଧ ମାନବବାଦର ସାରମର୍ମ । ଚମତ୍କାରିତା, ଅଲୌକିକ ଘଟଣା ଓ ପାରଲୌକିକ ଜୀବନଦୃଷ୍ଟି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ପରିପନ୍ଥୀ । ବୈଜ୍ଞାନିକ ଜ୍ଞାନ ସର୍ବଦା ମୁକ୍ତ, ନିରପେକ୍ଷ, ପ୍ରଗତିଶୀଳ, ପରୀକ୍ଷା ସାପେକ୍ଷ, ନୂତନ ଜ୍ଞାନ ଆଧାରରେ ପରିବର୍ତ୍ତନଶୀଳ ଓ ପ୍ରାୟତଃ ସାର୍ବଜନୀନ । ହେତୁବାଦୀମାନେ ବୈଜ୍ଞାନିକ ମାନଦଣ୍ଡରେ ଆସ୍ଥା ସ୍ଥାପନ କରନ୍ତି କାରଣ ଏହା ସାର୍ବଜନୀନ ଓ ନିର୍ଭରଶୀଳ । ଯେଉଁମାନେ ପ୍ରାକୃତିକ ନିୟମ ବିରୋଧୀ କୌଣସି ଚମତ୍କାରିତା ପ୍ରଦର୍ଶନ କରିବାର ଆସ୍ଫାଳନ କରନ୍ତି, ହେତୁବାଦରେ ତାହାକୁ ଗ୍ରହଣ କରାଯାଏ ନାହିଁ । ହେତୁବାଦୀମାନେ ଚମତ୍କାରିତା ପ୍ରଦର୍ଶନ କରୁଥିବା ବ୍ୟକ୍ତିମାନଙ୍କୁ ଆହ୍ୱାନ ଦେଇଛନ୍ତି । ଯଦି କୌଣସି ତାନ୍ତ୍ରିକ, ଦେବପୁରୁଷ, ବାବା ବା ମାତା ଚମତ୍କାରିତାର ପ୍ରମାଣ ଦେଇପାରିବେ କିମ୍ୱା ଗୋଟିଏ ଅଲୌକିକ ଘଟଣା ସୃଷ୍ଟି କରିପାରିବେ ସେମାନଙ୍କୁ କୋଟି କୋଟି ଟଙ୍କା ଦେବାକୁ ଆହ୍ୱାନ ରଖିଛନ୍ତି । ହେଲେ ଭାରତରେ ବା ଆନ୍ତର୍ଜାତିକ ସ୍ତରରେ ରହିଥିବା ଏହି ଆହ୍ୱାନକୁ କୌଣସି ତାନ୍ତ୍ରିକ ବା ଚମତ୍କାରିତା ଦେଖାଉଥିବା ବ୍ୟକ୍ତି ସମ୍ମୁଖୀନ ହେବାରେ ସାହସ ଦେଖାଇନାହାନ୍ତି ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ହେତୁବାଦୀମାନେ କୌଣସି ବ୍ୟକ୍ତିର ଈଶ୍ୱର ବିଶ୍ୱାସ ବା ଧର୍ମଭାବନାକୁ ବିରୋଧ କରନ୍ତି ନାହିଁ । ହେତୁବାଦୀମାନେ ଈଶ୍ୱର ବା ଧର୍ମବିରୋଧୀ ନୁହନ୍ତି । କିନ୍ତୁ ଧାର୍ମିକ ଭାବନା ଆଧାରରେ କରାଯାଉଥିବା ଶୋଷଣ, ଅତ୍ୟାଚାର ଓ ସାମାଜିକ ଭେଦଭାବକୁ ସେମାନେ ବିରୋଧ କରିଥା'ନ୍ତି । ସାଧାରଣ ଲୋକର ସରଳ ବିଶ୍ୱାସକୁ ନେଇ ଯେଉଁମାନେ ଅବୈଜ୍ଞାନିକ ଭାବନା ଓ କୁସଂସ୍କାର

ପ୍ରସାର କରନ୍ତି ସେହି ପରିସ୍ଥିତିରେ ସତ୍ୟ କ'ଣ ତାହା ଜଣାଇବାକୁ ହେତୁବାଦୀମାନେ ଉଦ୍ୟମ କରିଆସିଛନ୍ତି । ବିଶେଷକରି ତନ୍ତ୍ର, ମନ୍ତ୍ର, ଗୁଣିଗାରେଡି ଜନିତ କଳାଯାଦୁ ବା ବ୍ଲାକ ମ୍ୟାଜିକ ଜରିଆରେ ସାଧାରଣ ମଣିଷକୁ ଠକୁଥିବା ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକମାନଙ୍କୁ ହେତୁବାଦୀମାନେ ସର୍ବଦା ଆହ୍ୱାନ ଦେଇ ଆସିଛନ୍ତି । ଯେଉଁ ବ୍ୟକ୍ତିମାନେ ବ୍ଲାକ ମ୍ୟାଜିକକୁ ନେଇ ନିଜର ଅସାଧାରଣ ଶକ୍ତିଥିବା ଦାବି କରନ୍ତି ବା ଯେଉଁମାନେ ଚମତ୍କାରିତା ଆଳରେ ସାଧାରଣ ଜନଗଣଙ୍କୁ ଶୋଷଣ କରନ୍ତି ସେହିମାନଙ୍କୁ ହେତୁବାଦୀମାନେ ପରୀକ୍ଷା ପାଇଁ ଆହ୍ୱାନ ଦେଇଥା'ନ୍ତି । କୁସଂସ୍କାର, ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ଚମତ୍କାରିତାରେ ବିଶ୍ୱାସ ଜ୍ଞାନ-ବିଜ୍ଞାନର ଯେପରି ପରିପନ୍ଥୀ, ସେହିପରି ସଭ୍ୟ ଜୀବନ ଦୃଷ୍ଟିର ମଧ୍ୟ ପ୍ରତିକୂଳ । ସମାଜରେ ସଭ୍ୟ ଦୃଷ୍ଟିଭଙ୍ଗୀ, ବୈଜ୍ଞାନିକ ବିଚାରବୋଧ ଓ ମାନବବାଦୀ ଆଚରଣର ପ୍ରସାର ଚାହୁଁଥିବା ହେତୁବାଦୀମାନେ ସାମାଜିକ ଜୀବନ ପ୍ରବାହକୁ ଉନ୍ନତ, ନ୍ୟାୟପୂର୍ଣ୍ଣ ଓ କୁସଂସ୍କାର ମୁକ୍ତ କରିବାକୁ ସର୍ବଦା ନିଜର ଗଭୀର ସମ୍ପୃକ୍ତି ବ୍ୟକ୍ତ କରି ଆସିଛନ୍ତି । ଏହି ପ୍ରୟାସ ଭିତରେ ସେମାନେ ରୂଢ଼ିବାଦୀ ଧର୍ମାନ୍ଧ ଲୋକମାନଙ୍କ ଦ୍ୱାରା ନିନ୍ଦିତ ବା ନିର୍ଯ୍ୟାତିତ ହୋଇଛନ୍ତି, ଏପରିକି ସହିଦ ପାଲଟିଛନ୍ତି । ଏହି ପୃଷ୍ଠଭୂମିରେ ସାମ୍ପ୍ରତିକ ସମୟର ଦୁଇଜଣ ବିଶିଷ୍ଟ ହେତୁବାଦୀଙ୍କ ସଂଗ୍ରାମର ସାମାନ୍ୟ ସୂଚନା ଦେବାକୁ ଏଠାରେ ଚାହୁଁଛି । ସେମାନେ ହେଲେ ଡାକ୍ତର ନରେନ୍ଦ୍ର ଦାଭୋଲକର ଓ ସାନାଲ ଏଡମାରୁକ୍ ।

ନରେନ୍ଦ୍ର ଦାଭୋଲକର (୧.୧୧.୧୯୪୫ ରୁ ୨୦.୮.୨୦୧୩) ନିକଟରେ ଆତତାୟୀଙ୍କ ଗୁଳିରେ ପ୍ରାଣ ହରାଇଛନ୍ତି । ସେ ଥିଲେ 'ମହାରାଷ୍ଟ୍ର ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତି'ର ପ୍ରତିଷ୍ଠାତା ଓ ସଭାପତି । ଏହା ସହିତ ଏକ ମରାଠା ସାପ୍ତାହିକ ପତ୍ରିକା 'ସାଧନା'ର ସମ୍ପାଦକ । ସମାଜରୁ କୁସଂସ୍କାର, କଳାଯାଦୁ ଜନିତ ଠକାମି, ତଥାକଥିତ ଦେବପୁରୁଷମାନଙ୍କର ଚମତ୍କାରିତା ବିରୁଦ୍ଧରେ ସେ ଜନମାନସକୁ ସଚେତନ କରାଇବାରେ ନିଜକୁ ଉତ୍ସର୍ଗ କରିଥିଲେ । ତାଙ୍କର ନିଷ୍ଠାପର ଉଦ୍ୟମରେ ଅନ୍ଧଶ୍ରଦ୍ଧା ନିର୍ମୂଳନ ସମିତିର ସହସ୍ରାଧିକ କେନ୍ଦ୍ର ମହାରାଷ୍ଟ୍ରରେ ସ୍ଥାପିତ ହୋଇଛି । କୁସଂସ୍କାର ପ୍ରସାରକୁ ପ୍ରତିହତ କରିବାକୁ ଆଇନ କରିବା ପାଇଁ ସେ କିଛି ବର୍ଷ ହେଲା ସରକାରଙ୍କ ପାଖରେ ଦାବି ଉପସ୍ଥାପନ କରି ଆସିଛନ୍ତି । ଯେଉଁ ବ୍ୟକ୍ତିମାନେ ଅତୀତର ସନ୍ଥମାନଙ୍କର ଅବତାର ବୋଲି ନିଜକୁ ପରିଚୟ ଦେଇ ଲୋକଙ୍କର ଆବେଗକୁ ଶୋଷଣ କରୁଛନ୍ତି, ଦିବ୍ୟଶକ୍ତିର ଅଧିକାରୀ ବୋଲି ଦାବି କରୁଛନ୍ତି, ତଥାକଥିତ ଚମତ୍କାରିତା ଦେଖାଉଛନ୍ତି, କଳାଯାଦୁ ପ୍ରଦର୍ଶନ କରି ଲୋକମାନଙ୍କ ଭିତରେ ଭୟସଞ୍ଚାର କରାଉଛନ୍ତି, ମାନସିକ ସମସ୍ୟା ଥିବା ଲୋକମାନଙ୍କୁ ଭୂତ ଲାଗିଥିବା କହି ଶୋଷଣ କରୁଛନ୍ତି, ନିଜକୁ ଦେବୀଙ୍କ ପ୍ରତିନିଧି ଭାବେ କାଳିସୀ କହି ଲୋକଙ୍କର

ରୋଗ ଭଲ କରିବା ବା ଆଗତ ଭବିଷ୍ୟତ କହିବାର ଅଭିନୟ କରୁଛନ୍ତି, ଝଡା ଫୁଙ୍କା କରି ରୋଗ ବା ବିଷ ଭଲ କରିଦେବେ କହି ଲୋକଙ୍କୁ ବିଭ୍ରାନ୍ତ କରୁଛନ୍ତି, ମନ୍ତ୍ର ତନ୍ତ୍ର ଆଧାରରେ କୌଣସି ମହିଳାଙ୍କୁ ଗର୍ଭଧାରଣ କରାଇବାର ପ୍ରଲୋଭନ ଦେଖାଉଛନ୍ତି, ପୁତ୍ରସନ୍ତାନ ଲାଭ ପାଇଁ ପୂଜାବିଧିର ଆୟୋଜନ କରାଉଛନ୍ତି, ଯେକୌଣସି ପ୍ରତିକୂଳ ପରିସ୍ଥିତି ଦୂର କରିବାକୁ ତାବିଜ, ତେଉଁରିଆ ବିକ୍ରି କରି ଲୋକଙ୍କୁ ଶୋଷଣ କରୁଛନ୍ତି, ଲକ୍ଷ୍ୟ ସାଧନ ପାଇଁ ମନ୍ଦିରରେ ପଶୁବଳି ଦେବାକୁ ଲୋକଙ୍କୁ ପ୍ରଭାବିତ କରୁଛନ୍ତି, କାହାକୁ ଡାଆଣୀ କହି ତାଙ୍କୁ ନିନ୍ଦିତ କରାଉଛନ୍ତି ଇତ୍ୟାଦି କାର୍ଯ୍ୟସବୁକୁ ଧର୍ତ୍ତବ୍ୟ ଅପରାଧ ଭାବେ ଗ୍ରହଣ କରିବାକୁ ଆଇନର ବ୍ୟବସ୍ଥା ପାଇଁ ସରକାରଙ୍କ ପାଖରେ ଦାବିକରି ଆସୁଥିଲେ । ଯେଉଁମାନେ ଏହିସବୁ କାର୍ଯ୍ୟରେ ସମ୍ପୃକ୍ତ ରହି ଲୋକଙ୍କର ଅଜ୍ଞତାର ସୁଯୋଗ ନେଇ ଅର୍ଥ ରୋଜଗାର କରୁଛନ୍ତି ସେମାନେ ଦାଭୋଲକରଙ୍କର ବିରୋଧୀ ହେଉଥିଲେ । ସେ ଯେତେ ଧମକ ପାଇଲେ ମଧ୍ୟ ନିଜର ନିରାପତ୍ତା ପାଇଁ ପୋଲିସର ସହାୟତା ନେଇନଥିଲେ । ଗଭୀର ଆତ୍ମବିଶ୍ୱାସ ସହ ଲୋକମାନଙ୍କ ଭିତରେ ବୈଜ୍ଞାନିକ ସଚେତନତା ଓ ସାମାଜିକ ସମତାର ବାର୍ତ୍ତା ପ୍ରଚାର କରି ଆସୁଥିଲେ । କୁସଂସ୍କାରର ନିୟନ୍ତ୍ରଣ ପାଇଁ ଆଇନର ଅଙ୍କୁଶ ରହିବା ଉଚିତ୍, ତା'ସହିତ ସାମାଜିକ ସ୍ତରରେ ଲୋକମାନେ ସଚେତନ ହେବା ଆବଶ୍ୟକ । କେବଳ ଆଇନଗତ ବ୍ୟବସ୍ଥା ଦ୍ୱାରା ସମାଜରୁ କୁସଂସ୍କାର ଓ ଜାତିଆଣ ଭେଦଭାବ ଦୂର କରିହେବ ନାହିଁ । ଏହି ସ୍ଥିତିରେ ଏଭଳି ଜଣେ ମାନବବାଦୀ ସଂସ୍କାରକଙ୍କୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର କେହି ବ୍ୟକ୍ତି ଅଗଷ୍ଟ ୨୦ ତାରିଖ ଦିନ ଗୁଳି କରି ହତ୍ୟାକରିଛି । ତାଙ୍କ ହତ୍ୟାରେ ପୁନା ସହର ସ୍ତବ୍ଧ ହୋଇଯାଇଛି । ମହାରାଷ୍ଟ୍ରର ବିଭିନ୍ନ ସ୍ଥାନରେ ଆନ୍ଦୋଳନ ଓ ପ୍ରତିବାଦର ସ୍ୱର ଉଠିଛି । ଏହି ପରିସ୍ଥିତିରେ ମହାରାଷ୍ଟ୍ର ସରକାର ବ୍ଲାକମ୍ୟାଜିକକୁ ଏକ ଦଣ୍ଡନୀୟ ଅପରାଧ କରିବାକୁ ଏକ ଅଧ୍ୟାଦେଶ ଜାରି କରିଛନ୍ତି । ଯେଉଁଥିପାଇଁ ବହୁ ବର୍ଷ ହେଲା ଦାଭୋଲକର ଦାବି କରି ଆସୁଥିଲେ, ତାଙ୍କ ହତ୍ୟାରେ ଜନ ଅସନ୍ତୋଷକୁ ପ୍ରଶମିତ କରିବା ପାଇଁ ସରକାର ଏହି ପଦକ୍ଷେପ ନେଲେ ବୋଲି କୁହାଯାଉଛି ।

ସାନାଲ୍ ଏଡ୍‌ମାରୁକୁ ଏକ ହେତୁବାଦୀ ପରିବାରରୁ ଆସିଛନ୍ତି । ବାପା ଯୋଶେଫ୍ ଏଡମାରୁକୁ ଥିଲେ ଜଣେ ବିଶିଷ୍ଟ ହେତୁବାଦୀ ଓ ସୁଲେଖକ । ସାନାଲଙ୍କ ଜନ୍ମ କେରଳରେ, ୧୯୫୫ରେ । ସାନାଲ ଥିଲେ ଭାରତୀୟ ହେତୁବାଦୀ ସମାଜ (ଇଣ୍ଡିଆନ ରେସନାଲିଷ୍ଟ ଆସୋସିଏସନ)ର ସଭାପତି । ଚମତ୍କାରିତା ପ୍ରଦର୍ଶନ ପାଇଁ ଯେଉଁ ଆହ୍ୱାନ ରହିଛି, ସାନାଲ ଭାରତୀୟ ହେତୁବାଦୀ ସମାଜ ତରଫରୁ ସେହି ଆହ୍ୱାନ ରଖିଛନ୍ତି ଯେ ଯଦି କୌଣସି

ବ୍ୟକ୍ତି ଏକ ଚମତ୍କାରିତା (ମିରାକେଲ) ପ୍ରଦର୍ଶନ କରିପାରିବେ ତାଙ୍କୁ ଏକଲକ୍ଷ ଟଙ୍କା ପ୍ରଦାନ କରିବେ । ଆବ୍ରାହମ କୋଭୁରଙ୍କଠାରୁ ଆରମ୍ଭ ହୋଇଥିବା ଏହି ଚାଲେଞ୍ଜ ଭାରତବର୍ଷରେ ଯେଉଁମାନେ ରଖିଛନ୍ତି, ସେମାନଙ୍କ ମଧ୍ୟରେ ସାନାଲ୍ ଅନ୍ୟତମ । ସେ ବହୁବାର ଟିଭି ଚାନେଲଗୁଡିକରେ ଦେବପୁରୁଷ ଓ ତାନ୍ତ୍ରିକମାନଙ୍କର ଚମତ୍କାରିତାକୁ ମିଥ୍ୟା ପ୍ରମାଣ କରିଛନ୍ତି ।

୨୦୧୨ରେ ମୁମ୍ବାଇଠାରେ ଏକ କ୍ୟାଥଲିକ୍ ଚର୍ଚ୍ଚ ତରଫରୁ ଘୋଷଣା କରାଗଲା ଯେ ସେଠାରେ ଥିବା ପ୍ରଭୁ ଯୀଶୁଙ୍କ ପ୍ରତିମୂର୍ତ୍ତିରୁ ଲୁହ ଝରୁଛି । ଏହି ଘଟଣା ଜଣାପଡିଲା ପରେ ବହୁ ଲୋକ ସେହି ଚମତ୍କାରିତା ଦେଖିବାକୁ ସେଠାକୁ ଗଲେ । ସାନାଲ ସେଠାକୁ ଯାଇ ଘଟଣାଟିର ଅନୁସନ୍ଧାନ କରି ଜାଣିବାକୁ ପାଇଲେ ଯେ, ସେଠାରେ ଥିବା ଏକ ପାଇପ୍ ରୁନ୍ଧି ହୋଇଯାଇଛି, ଫଳରେ ଜଳ ନିଷ୍କାସନ ହୋଇପାରୁନାହିଁ । ଜମି ରହୁଥିବା ଜଳ ଝରି ଲୁହର ଭ୍ରମ ସୃଷ୍ଟି କରୁଛି । ଘଟଣାଟିକୁ ବିଜ୍ଞାନ ସମ୍ମତ ଧାରାରେ ବ୍ୟାଖ୍ୟା କରିବା ପରେ ଚମତ୍କାରିତାର ପ୍ରଚାର କରୁଥିବା ଲୋକମାନେ ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଲେ ଯେ ସାନାଲ ସେମାନଙ୍କର ଧାର୍ମିକ ଭାବନାକୁ ଆଘାତ ଦେଇଛନ୍ତି । ଏହା ଈଶ୍ୱର-ନିନ୍ଦା ସହ ସମାନ, ସୁତରାଂ ତାଙ୍କୁ ଗିରଫ କରାଯିବା ଆବଶ୍ୟକ । ଏପରିକି ତାଙ୍କୁ ମାରିଦେବାକୁ କେତେକ ଧମକ ଦେଇଥିବା ସେ ପ୍ରକାଶ କରିଛନ୍ତି । ଏହି ସ୍ଥିତିରେ ନିଜକୁ ଅସୁରକ୍ଷିତ ମନେକରି ସାନାଲ ଭାରତ ଛାଡି ୟୁରୋପ ଚାଲିଗଲେ । ଏବେ ସେ ବିଦେଶରେ ରହୁଛନ୍ତି ଓ ସେଠାରେ ତାଙ୍କର ହେତୁବାଦୀ ଭାବନାକୁ ପ୍ରସାର କରୁଛନ୍ତି । ତାଙ୍କ ମତରେ ସେ ଅତୀତରେ ନିଜ ଦେଶରେ ବହୁ ଟିଭି ଚାନେଲରେ ତାଙ୍କର ମତ ରଖିଛନ୍ତି, ଶହ ଶହ ସଭାରେ ଲୋକମାନଙ୍କୁ କୁସଂସ୍କାର ବିରୁଦ୍ଧରେ ସଚେତନ କରାଇଛନ୍ତି, ତେବେ ଲୋକଙ୍କ ପାଖରୁ କୌଣସି ବିରୋଧର ସମ୍ମୁଖୀନ ହୋଇନାହାନ୍ତି । କିନ୍ତୁ ଯେତେବେଳେ କୌଣସି ସ୍ୱଘୋଷିତ ଦେବପୁରୁଷଙ୍କର ଚମତ୍କାରିତାର କୌଶଳକୁ ଅନାବୃତ କରିଛନ୍ତି କିମ୍ବା ଅଲୌକିକ ମନେ ହେଉଥିବା ଘଟଣାର ଅନୁସନ୍ଧାନ କରି ତାହାର ବୈଜ୍ଞାନିକ କାରଣ ଦର୍ଶାଇଛନ୍ତି ସେତେବେଳେ ସେ ଧମକ ପାଇଛନ୍ତି ।

ଏହା ବିଡ଼ମ୍ବନା ଯେ ଯେଉଁମାନେ ବିଚାରଶୀଳତା, ବୈଜ୍ଞାନିକ ମାନସିକତା ଓ ମାନବବାଦୀ ମୂଲ୍ୟବୋଧର ପ୍ରବକ୍ତା, ସେମାନେ ନିଜ ସମସାମୟିକ ସମାଜରେ ନାନା ପ୍ରତିକୂଳ ସ୍ଥିତିର ସମ୍ମୁଖୀନ ହୁଅନ୍ତି, ନିନ୍ଦିତ ହୁଅନ୍ତି ଓ ଏପରିକି ସହିଦ ପାଲଟନ୍ତି । ତେବେ ସେହିମାନଙ୍କର ବିଚାରବୋଧ ସଭ୍ୟ ଜୀବନଦୃଷ୍ଟିର ବିକାଶରେ ସହାୟକ ହୋଇଥାଏ ଓ ଜୀବନର ଗୁଣାତ୍ମକ ମାନରେ ଉତ୍କର୍ଷ ସାଧନ କରିଥାଏ । ସକ୍ରେଟିସ୍, ମାର୍ଟିନ ଲୁଥର

କିଙ୍ଗ, ମହାତ୍ମା ଗାନ୍ଧୀଙ୍କ ପରି ବହୁ ସତ୍ୟାନ୍ୱେଷୀ ମାନବବାଦୀଙ୍କୁ ହତ୍ୟା କରାଯାଇଛି, କିନ୍ତୁ ବିବେକର ସ୍ୱରକୁ ଧର୍ମାନ୍ଧ ଲୋକମାନେ କେବେ ବି ନଷ୍ଟ କରିପାରି ନାହାନ୍ତି । ବ୍ରୁନୋ, ଗାଲିଲିଓ, ଆଣ୍ଡ୍ରିଆସ ଭେସାଲିୟସଙ୍କ ପରି ବହୁ ପ୍ରତିଭାଧର ବୈଜ୍ଞାନିକ ନୂତନ ଜ୍ଞାନର ଆବିଷ୍କାର ପାଇଁ ନାନା ଯନ୍ତ୍ରଣା ସହ୍ୟ କରିଛନ୍ତି କାରଣ ସେହି ଜ୍ଞାନ ଧାର୍ମିକ ବିଶ୍ୱାସର ବିରୁଦ୍ଧାଚରଣ କରିଛି । ରକ୍ଷଣଶୀଳ ଧର୍ମଧ୍ୱଜାଧାରୀ ଲୋକମାନେ ସେମାନଙ୍କୁ ଧର୍ମବିରୋଧୀ କହି ନିର୍ଯ୍ୟାତନା ଦେଇଥିଲେ ବି ବିଜ୍ଞାନର ଅଗ୍ରଗତିକୁ ପ୍ରତିହତ କରିପାରି ନାହାନ୍ତି । ସେହିପରି ଯେଉଁ ହେତୁବାଦୀମାନେ ବିଚାରଶୀଳତା, ମାନବିକତା ଓ ବିବେକର ବାର୍ତ୍ତା ଦେଇ ସଭ୍ୟ ଜୀବନଧାରାର ମାର୍ଗ ଦେଖାଇଛନ୍ତି ସେମାନଙ୍କୁ ଯେତେ ବିରୋଧ କରାଗଲେ ବି ସଭ୍ୟତା ଯେତେ ଆଗକୁ ଯାଉଥିବ, ସେମାନେ ସେତେ ଅଧିକ ଇତିହାସରେ ସଭ୍ୟ ମୂଲ୍ୟବୋଧର ବାର୍ତ୍ତାବହ ଭାବେ ସ୍ୱୀକୃତ ହେଉଥିବେ ।

(୨୪.୯.୨୦୧୩)



# ବୁଦ୍ଧି ଓ ବିଚାରଶୀଳତା

ଜୈବିକ ବିବର୍ତ୍ତନ ଧାରାରେ ପ୍ରକୃତିରେ ଯେତେ ଯେତେ ପ୍ରାଣୀ ଉଦ୍‌ଭବ ହୋଇଛନ୍ତି ସେମାନଙ୍କ ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ । ମନୁଷ୍ୟ ଏହି ଦୃଷ୍ଟିରୁ ଶ୍ରେଷ୍ଠ ଯେ ମନୁଷ୍ୟ ପାଖରେ  ବୁଦ୍ଧି ଓ ବିଚାରଶୀଳତାର ବିକାଶ ହୋଇଛି । ବୁଦ୍ଧିର ବିକାଶ ଯୋଗୁଁ ମଣିଷ ସମାଜ, ସଭ୍ୟତା ଓ ସଂସ୍କୃତି ନିର୍ମାଣ କରିଛି । କ୍ରମବିକାଶ ଧାରାରେ ଜ୍ଞାନ, ବିଜ୍ଞାନ, କ୍ଷେତ୍ରରେ ଅଭିବୃଦ୍ଧି ହୋଇଛି ଓ ସଭ୍ୟତାରେ ଅଗ୍ରଗତି ଘଟିଛି । ଇତର ପ୍ରାଣୀମାନଙ୍କ କ୍ଷେତ୍ରରେ ବୁଦ୍ଧିର ବିକାଶ ଘଟି ନାହିଁ କିମ୍ବା ସେମାନେ ଭାଷା କହିବାକୁ ସମର୍ଥ ନୁହନ୍ତି । ଫଳରେ ଲକ୍ଷ ଲକ୍ଷ ବର୍ଷ ତଳେ ସେମାନେ ଯେଉଁ ସ୍ଥିତିରେ ଥିଲେ ଏବେ ମଧ୍ୟ ସେହି ସ୍ଥିତିରେ ଜୀବନ ଧାରଣ କରୁଛନ୍ତି ବା କେତେକ ବିଲୟର ସମ୍ମୁଖୀନ ହେଉଛନ୍ତି । କିନ୍ତୁ ମନୁଷ୍ୟ ବୁଦ୍ଧି ପ୍ରୟୋଗ କରି ଉନ୍ନତରୁ ଉନ୍ନତତର ସ୍ଥିତିକୁ ଯିବାକୁ ସର୍ବଦା ପ୍ରୟାସ କରିଛି । ଏହି ପ୍ରୟାସ ଯୋଗୁଁ ଏକ ଆଦିମ ସ୍ତରରୁ ସେ ଉନ୍ନତିର ସୋପାନରେ ଆଗକୁ ଯାଇଛି ଓ ପିଢ଼ି ପରେ ପିଢ଼ି ଜୀବନର ମାନକୁ ଉନ୍ନତ କରିଚାଲିଛି । ସକଳ ବିକାଶ ଓ ପ୍ରଗତି ପଥରେ ରହିଛି ମଣିଷର ବୌଦ୍ଧିକ ଉଦ୍ୟମ । ଯେତେବେଳେ ସାମୂହିକ ଜୀବନ ପ୍ରତି କୌଣସି ପ୍ରାକୃତିକ ଆହ୍ୱାନ ଆସିଛି ସେତେବେଳେ ସେ ଉପାୟ ଚିନ୍ତା କରିଛି, ବୁଦ୍ଧି ପ୍ରୟୋଗ କରି ବାଟ ଖୋଜିଛି । ବୁଦ୍ଧିର ପ୍ରୟୋଗ ଭିତରୁ ସେ ପ୍ରକୃତିର ବହୁ ରହସ୍ୟକୁ ଜାଣିବାକୁ ସମର୍ଥ ହୋଇଛି, କେତେ କେତେ ଆବିଷ୍କାର କରିଛି, ଜ୍ଞାନକୁ ପ୍ରୟୋଗ କରି ନୂତନ ପ୍ରଯୁକ୍ତି ସୃଷ୍ଟି କରିଛି, ଜୀବନକୁ ଅଧିକ ନିରାପଦ କରିବାକୁ ଉପାୟ ବାହାର କରିଛି ଓ ପ୍ରାକୃତିକ ବିପର୍ଯ୍ୟୟରୁ ନିଜକୁ ସୁରକ୍ଷା ଦେବାକୁ ଚେଷ୍ଟା କରିଛି ।

ସଭ୍ୟତାରେ ଯେପରି କ୍ରମବିକାଶ ଘଟିଛି, ବୁଦ୍ଧିର ବି ସେହିପରି କ୍ରମବିକାଶ ହୋଇଛି, ବରଂ ଏହା କହିଲେ ଯଥାର୍ଥ ହେବ ଯେ ବୁଦ୍ଧିର ପ୍ରୟୋଗରୁ ଜ୍ଞାନବିଜ୍ଞାନର ଅଭିବୃଦ୍ଧି ଘଟିଛି ଓ ଜ୍ଞାନର ବିକାଶରୁ ସଭ୍ୟତାର ବିକାଶ ସମ୍ଭବ ହୋଇଛି । ଜ୍ଞାନର ଦିଗନ୍ତ

ଯେତେ ଅଧିକ ପ୍ରସାରିତ ହେଉଥିବ, ସଭ୍ୟତା ସେତିକି ଉନ୍ନତିର ଶିଖରକୁ ଯାଉଥିବ । ଜ୍ଞାନ କ୍ଷେତ୍ରରେ ସ୍ଥାଣୁତ୍ୱ ଆସିଗଲେ ସଭ୍ୟତାର ବିକାଶ ପ୍ରକ୍ରିୟା ମଧ୍ୟ ସ୍ଥାଣୁ ପାଲଟିଯିବ । ଯେଉଁ ଜନଗୋଷ୍ଠୀ ଭିତରେ ଜ୍ଞାନ ବିଜ୍ଞାନର ବିକାଶ, ଶିକ୍ଷାର ପ୍ରସାର ଓ ଗୁଣାତ୍ମକ ଜୀବନ ନେଇ ବିଚାରର ବିକାଶ ହେଉ ନାହିଁ, ସେମାନେ ଆଧୁନିକ ମାନଦଣ୍ଡରେ ଅନୁନ୍ନତ ହୋଇ ରହିଥିବା ମନେହୁଏ ।

ପ୍ରତ୍ୟେକ ବ୍ୟକ୍ତି ଜୀବନର ନାନା କ୍ଷେତ୍ରରେ ନିଜ ବୁଦ୍ଧିର ପ୍ରୟୋଗ କରିଥାଏ । କୌଣସି ବିଷୟରେ ଚିନ୍ତା କରିବା, କିଛି ଲକ୍ଷ୍ୟ ନେଇ କାର୍ଯ୍ୟ କରିବା, କୌଣସି ଏକ ନିଷ୍ପତ୍ତିକୁ ଆସିବା ଏସବୁ କ୍ଷେତ୍ରରେ ବ୍ୟକ୍ତି ବୁଦ୍ଧିର ପ୍ରୟୋଗ କରିଥାଏ । ଏହି ଦୃଷ୍ଟିରୁ ଦେଖିଲେ ବୁଦ୍ଧି ଏକ ମାନସିକ ସାମର୍ଥ୍ୟକୁ ବୁଝାଏ । ତେବେ ସବୁ ବ୍ୟକ୍ତିଙ୍କର ମାନସିକ ସାମର୍ଥ୍ୟ ସମାନ ନୁହେଁ । ସବୁ ଲୋକ ସବୁ କ୍ଷେତ୍ରରେ ସମାନ ବୁଦ୍ଧି ପ୍ରୟୋଗ କରିପାରନ୍ତି ନାହିଁ । ବୁଦ୍ଧିର ଉତ୍ସ ନେଇ କୁହାଯାଏ ଯେ ପ୍ରତ୍ୟେକ ବ୍ୟକ୍ତି ନିଜର ବୁଦ୍ଧି ବାପା, ମାଙ୍କ ଠାରୁ ଜୈବିକ ଧାରାରେ ପ୍ରାପ୍ତ ହୋଇଥାଏ ଓ ନିଜ ପରିବେଷ୍ଟନୀ ପ୍ରଭାବରେ ପୁଷ୍ଟ ବା ବିକଶିତ ହୋଇଥାଏ । ଜଣେ ବ୍ୟକ୍ତି ତାହାର ଶରୀରଟିକୁ ବାପା-ମାଙ୍କର ଶାରୀରିକ ସଂପର୍କରୁ ପ୍ରାପ୍ତ ହୋଇଥାଏ ଓ ତାର ମାନସିକ ବିକାଶ ପରିବେଷ୍ଟନୀର ପ୍ରଭାବରୁ ହୋଇଥାଏ । ଶିଶୁଟିଏ ଜନ୍ମ ନେବା ପରେ ତାହାର ଶାରୀରିକ ବିକାଶ ସହ ବୁଦ୍ଧିର ବିକାଶ ମଧ୍ୟ ଘଟିଥାଏ । ଶିକ୍ଷଣ ପ୍ରକ୍ରିୟାରେ ଓ ସାମାଜିକ ପରିସ୍ଥିତିର ପ୍ରବାହରେ ଜଣଙ୍କର ବୁଦ୍ଧି, ବିଚାର କ୍ଷେତ୍ରରେ ଉତ୍କର୍ଷ ଆସିଥାଏ । ବୟସର ବୃଦ୍ଧି ସହ ବୁଦ୍ଧିର ବିକାଶ ସମତାଳ ରକ୍ଷା କରି ହେଉଥିଲେ ଜଣଙ୍କର ବୁଦ୍ଧି ସାଧାରଣ ବୋଲି ମନେହୁଏ । କାହା ପାଖରେ ବୁଦ୍ଧିର ଯଥାର୍ଥ ବିକାଶ ହେଉଛି, କାହା ପାଖରେ ଏହାର ଉପଯୁକ୍ତ ବିକାଶ ହେଉନାହିଁ, କିଏ ବୁଦ୍ଧିମାନ, କିଏ ଅଳ୍ପ ବୁଦ୍ଧିଆ ବା କିଏ ବୁଦ୍ଧିହୀନତାରେ ଆକ୍ରାନ୍ତ ଏହାକୁ ବିଭିନ୍ନ ପରୀକ୍ଷା ମାଧ୍ୟମରେ ମନୋବିଜ୍ଞାନରେ ଅଧ୍ୟୟନ କରାଯାଉଛି । ତେବେ ଏଠାରେ ଉଲ୍ଲେଖନୀୟ ଯେ ବ୍ୟକ୍ତିର ବୌଦ୍ଧିକ ସାମର୍ଥ୍ୟ ଶାରୀରିକ ଅଭିବୃଦ୍ଧିରୁ ଜଣାପଡେ ନାହିଁ ।

ବ୍ୟକ୍ତିର ବୁଦ୍ଧି ଯୋଗୁ ସେ ଚିନ୍ତା କରିଥାଏ । କୌଣସି କିଛିକୁ ପ୍ରତ୍ୟକ୍ଷ ବା ପର୍ଯ୍ୟବେକ୍ଷଣ କଲାବେଳେ, କୌଣସି ବିଷୟରେ କିଛି ଶିକ୍ଷା କଲା ବେଳେ, ପୁସ୍ତକଟିଏ ପଢ଼ିବା ବେଳେ କିଛି ଚିନ୍ତା ମନ ଭିତରକୁ ଆସିଥାଏ । ସୁତରାଂ ଚିନ୍ତନ ଏକ ଜଟିଳ ବହୁମୁଖୀ କ୍ରିୟା । ପ୍ରତ୍ୟକ୍ଷ, ଶିକ୍ଷଣ, ସ୍ମରଣ, ଅଭିପ୍ରେରଣା ଇତ୍ୟାଦି ସହ ଚିନ୍ତନ ସମ୍ବନ୍ଧିତ । ଜଣେ ବ୍ୟକ୍ତିର ଚିନ୍ତନ ଓ ମାନସିକ ଦକ୍ଷତା ତାର କଥା, ବ୍ୟବହାର, ପ୍ରତିକ୍ରିୟା ଆଧାରରୁ ଜଣା ପଡିଥାଏ । ଚିନ୍ତନ ଏକ ଅନ୍ତରୀଣ ପ୍ରକ୍ରିୟା ହେଲେ ବି ଏହାର ଅଭିବ୍ୟକ୍ତି ବାହ୍ୟିକ

ପରିପ୍ରକାଶ ମଧ୍ୟ ଦେଇ ହୋଇଥାଏ । ଚିନ୍ତନ ଭାଷା, କେତେକ ପ୍ରତୀକ, ନାନା ରୂପକଳ୍ପ ଓ ପ୍ରତ୍ୟୟ ମାଧ୍ୟମରେ ସଂଘଟିତ ହୋଇଥାଏ ।

ମଣିଷ ହିଁ ଚିନ୍ତା କରିପାରେ, ଚିନ୍ତା କରିବା ମଣିଷର ବିଶେଷତ୍ୱ । ଭାଷା କହିବା ଯେପରି ମଣିଷର ଏକ ବିଶେଷତ୍ୱ, ଚିନ୍ତା କରିବାର ସାମର୍ଥ୍ୟ ବି ମଣିଷର ସେହିପରି ଏକ ବିଶେଷତ୍ୱ । ଚିନ୍ତନକୁ କେତେକ ଏକ ନିଃଶବ୍ଦ କଥନ ପ୍ରକ୍ରିୟା ବୋଲି ଅଭିହିତ କରିଥାନ୍ତି । ପୁନଶ୍ଚ ଚିନ୍ତନ ମସ୍ତିଷ୍କ ଦ୍ୱାରା ସମ୍ଭବ ହୋଇଥାଏ । ମଣିଷର ମସ୍ତିଷ୍କ ଅଧିକ ବିକଶିତ ଯୋଗୁ ମଣିଷ ହିଁ ଚିନ୍ତା କରିଥାଏ । ମସ୍ତିଷ୍କ ସହ ବିଭିନ୍ନ ସ୍ନାୟବିକ କ୍ରିୟା ସଂଶ୍ଳିଷ୍ଟ । ସୁତରାଂ ଚିନ୍ତନ ସହ ସ୍ନାୟବିକ କ୍ରିୟା, ଶାରୀରିକ ପ୍ରକ୍ରିୟାର ସମ୍ବନ୍ଧ ନେଇ ମନୋବିଜ୍ଞାନ, ଚିକିତ୍ସା ବିଜ୍ଞାନ ବିଭିନ୍ନ ଦିଗନ୍ତକୁ ବ୍ୟାଖ୍ୟା କରିବା ଦେଖାଯାଏ । ବିଶେଷକରି ଚିନ୍ତା କରିବା ସହ ମସ୍ତିଷ୍କ, ସ୍ନାୟବିକ କ୍ରିୟା-ପ୍ରତିକ୍ରିୟା, ଭାଷା, ପ୍ରତୀକ ଇତ୍ୟାଦିର ସମ୍ବନ୍ଧ ନେଇ ବିଭିନ୍ନ ସ୍ତରରେ ବିଶ୍ଳେଷଣାତ୍ମକ ଅନୁଶୀଳନ କରାଯାଉଛି ।

ବୁଦ୍ଧିର ବିକାଶରୁ ସୃଜନଶୀଳ ଚିନ୍ତନ ଧୀରେ ଧୀରେ ବିକଶିତ ହୋଇଛି । ସଭ୍ୟତା ମାନଙ୍କର ବିକାଶର ଯେପରି ସୁଦୀର୍ଘ ଇତିହାସ ରହିଛି, ସୃଜନାତ୍ମକ ଚିନ୍ତନର ମଧ୍ୟ ଏକ ସୁଦୀର୍ଘ କାହାଣୀ ରହିଛି । ସଂପ୍ରତି ଜ୍ଞାନବିଜ୍ଞାନ, କାଳାତ୍ମକ ଅଭିବ୍ୟକ୍ତି, ନାନା ପ୍ରାଯୁକ୍ତିକ ଯନ୍ତ୍ର ଇତ୍ୟାଦି କ୍ଷେତ୍ରରେ ମଣିଷ ବହୁ ସଫଳତା ହାସଲ କରିପାରିଛି । ତେବେ ଏସବୁ କ୍ଷେତ୍ରରେ ଯାହା ସବୁ ସଫଳତା ମିଳିଛି ତାହା ପଶ୍ଚାତରେ ବହୁ ପ୍ରୟାସ, ଜିଜ୍ଞାସା ଓ ଅନୁଶୀଳନ ରହିଛି । ଜ୍ଞାନ ବିଜ୍ଞାନ, ପ୍ରଯୁକ୍ତି କ୍ଷେତ୍ରରେ ଯାହା କିଛି ନୂତନ ଭାବନା ଓ ସାମର୍ଥ୍ୟ ଯେଉଁ ଯୁଗରେ ସୃଷ୍ଟି ହୋଇଛି ତାହାର ସୁଫଳ ପରବର୍ତ୍ତୀ ପିଢ଼ିର ଲୋକମାନେ ଅକ୍ଲେଶରେ ପାଇଛନ୍ତି ଓ ସେଥିରେ ଉନ୍ନତି ସାଧନ କରିଛନ୍ତି । ପରିଣାମତଃ ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ଚିନ୍ତନର ଧାରା ସର୍ବଦା ଆଗକୁ ଯାଇଛି । ସାମାଜିକ ବ୍ୟବସ୍ଥା ଦୃଢ଼ ଭିତ୍ତି ନେବା ପରଠାରୁ ଶିକ୍ଷାଦାନର ଆବଶ୍ୟକତା ସୃଷ୍ଟି ହୋଇଛି । ଶିକ୍ଷାଦାନ ମାଧ୍ୟମରେ ସୃଜନଶୀଳ ଚିନ୍ତନ ପାଇଁ ଅନୁକୂଳ ପରିବେଶ ସବୁ ସଭ୍ୟତାରେ ଆସିପାରିଛି । ଶିକ୍ଷଣ ସମାଜର ବିକାଶ ଯୋଗୁ ସୃଜନାତ୍ମକ ଚିନ୍ତନ ଓ ବିଚାର କ୍ଷେତ୍ରରେ ଯଥେଷ୍ଟ ଅଗ୍ରଗତି ସମ୍ଭବ ହୋଇଛି ଓ ଏହି ଧାରା କ୍ରମବର୍ଦ୍ଧିଷ୍ଣୁ ଭାବେ ଅଗ୍ରଗତି କରିଚାଲିଛି । ଶିକ୍ଷା, ଚିନ୍ତନ ଓ ବୈଜ୍ଞାନିକ ଅନୁସନ୍ଧିତ୍ସା ମଧ୍ୟ ଦେଇ ସଭ୍ୟତାର ବିକାଶ ଘଟିଛି ଓ ଜୀବନର ମାନରେ କ୍ରମୋନ୍ନତି ସମ୍ଭବ ହୋଇପାରିଛି । ଏ ସବୁ ବୁଦ୍ଧି ଓ ବିଚାରଶୀଳତାର ପରିଣାମରୁ ହୋଇଛି ।

ବିଚାରଶୀଳତା ଏକ ବୌଦ୍ଧିକ ମାନକର (ଷ୍ଟାଣ୍ଡାର୍ଡ) ସୂଚନା ଦିଏ । ଯାହାର ବିଚାର ତର୍କସଂଗତ ଓ ସତ୍ୟାଧାରିତ ସେ ବିଚାରଶୀଳ ବୋଲି ସାଧାରଣତଃ କୁହାଯାଏ ।

ଏହି ଦୃଷ୍ଟିରୁ ଦେଖିଲେ ବିଚାରଶୀଳତା ଏକ ସାମର୍ଥ୍ୟ ଓ ଏକ ପ୍ରକ୍ରିୟାକୁ ସ୍ଥଳ ବିଶେଷରେ ବୁଝାଇଥାଏ । ମୁକ୍ତ ମନ ପୋଷଣ କରିବା, ସତ୍ୟସନ୍ଧାନୀ ହେବା, ଯୁକ୍ତିସଂଗତ ଆଧାରରେ କୌଣସି ନିଷ୍ପତ୍ତିରେ ଉପନିତ ହେବା ବିଚାରଶୀଳ ସାମର୍ଥ୍ୟର ଅନ୍ତର୍ଭୁକ୍ତ । ଜଣେ ବ୍ୟକ୍ତିର ବିଚାରଶୀଳ ସାମର୍ଥ୍ୟ ତାହାର ଶିକ୍ଷଣ ପ୍ରକ୍ରିୟାର ଉତ୍କର୍ଷ ଦେଇ ବିକଶିତ ହୋଇଥାଏ । ତେବେ ଏହି ସାମର୍ଥ୍ୟ ସବୁ ବ୍ୟକ୍ତିଙ୍କ ପାଖରେ ନଥାଏ କିମ୍ବା ସମସ୍ତଙ୍କ ପାଖରେ ସମାନ ହୋଇନଥାଏ । ବିଚାରଶୀଳତାକୁ ଏକ ପ୍ରକ୍ରିୟା ଭାବେ ନେବାର ତାତ୍ପର୍ଯ୍ୟ ହେଉଛି କେଉଁ ପ୍ରକ୍ରିୟାରେ ଆମେ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥାଏ । ତାର୍କିକ ଚିନ୍ତନ ଭିତରେ ଦୁଇଟି ବୈଧ ପ୍ରକ୍ରିୟାର ବିଶଦ ବ୍ୟାଖ୍ୟା ଦେଖିବାକୁ ମିଳେ । ଯେତେ ପ୍ରକାରର ଗାଣିତିକ ଜ୍ଞାନ ରହିଛି ସେଥିରେ ଯେଉଁ ବୌଦ୍ଧିକ ପଦ୍ଧତିଟି ପ୍ରୟୋଗ ହୋଇଥାଏ ତାହାକୁ "ଅବରୋହ ପଦ୍ଧତି" କୁହାଯାଏ । ଅବରୋହ ପଦ୍ଧତି ବିଭିନ୍ନ ନିୟମର ଅବତାରଣା କରିଥାଏ । ଆମେ ଯାହା କିଛି ସିଦ୍ଧାନ୍ତରେ ଉପନୀତ ହେଉ ତାହା ଏକ ଯୌକ୍ତିକ ପ୍ରକ୍ରିୟା ଦେଇ ସମ୍ଭବ ହୋଇଥାଏ । ନିୟମ ଅନୁଯାୟୀ ବିଚାର ପରିଚାଳିତ ହୋଇଥିଲେ ଆମର ସିଦ୍ଧାନ୍ତ ବୈଧ ହୋଇଥାଏ,  ସିଦ୍ଧାନ୍ତ କ୍ଷେତ୍ରରେ ନିୟମର ଉଲଘଂନ ହେଉଥିଲେ ସିଦ୍ଧାନ୍ତ ଅବୈଧ ଓ ଭ୍ରମାତ୍ମକ ହୋଇଥାଏ । ସକଳ ବୈଜ୍ଞାନିକ ଜ୍ଞାନ ଯେଉଁ ପଦ୍ଧତି ଉପରେ ଆଧାରିତ ତାହାକୁ "ଅରୋହ ପଦ୍ଧତି" କୁହାଯାଏ । ଏହି ଜ୍ଞାନ ତଥ୍ୟ-ଆଧାରିତ, ପରୀକ୍ଷା ସାପେକ୍ଷ ଓ ସାର୍ବଜୀନନ ହୋଇଥାଏ । ବିଚାରଶୀଳତା ଏକ ପ୍ରକ୍ରିୟା ଭାବରେ ଏକ ବୈଧ ପଦ୍ଧତିକୁ ଜ୍ଞାନଆହରଣ କ୍ଷେତ୍ରରେ ପ୍ରୟୋଗ କରିଥାଏ ।

ବ୍ୟାବହାରିକ ଦୃଷ୍ଟିରୁ ଦେଖିଲେ ବୁଦ୍ଧି ଏକ ସାଧନ ଓ ବିଚାରଶୀଳତା ଏକ ତର୍କସଂଗତ ମାନକ ବା ଲଜିକାଲ ଷ୍ଟାଣ୍ଡାଡର ସୂଚନା ଦେଇଥାଏ । ଏକ ସାଧନକୁ ଭଲ ବା ମନ୍ଦ ଲକ୍ଷ୍ୟ ଦିଗରେ ବିନିଯୋଗ କରାଯାଇପାରେ । ବୁଦ୍ଧିକୁ ଭଲ ଦିଗରେ ବା ମନ୍ଦ ଦିଗରେ ପ୍ରୟୋଗ କରାଯିବା ଦେଖାଯାଏ । ଚୋରି କରୁଥିବା ଲୋକ ବି ବେଶ୍ ବୁଦ୍ଧିମାନ ହୋଇପାରେ ଓ କିପରି ଏକ ମନ୍ଦ ଲକ୍ଷ୍ୟ ହାସଲ କରିପାରିବ ସେଥି ପାଇଁ ବୁଦ୍ଧିର ଆଶ୍ରୟ ନେଇଥାଏ । ବିଚାରଶୀଳତା କିନ୍ତୁ ଏକ ମହତ୍ତର ଲକ୍ଷ୍ୟରେ ବିନିଯୋଗ ହୋଇଥାଏ । ଏହି ମାନଦଣ୍ଡରେ ବୁଦ୍ଧି ଓ ବିଚାରଶୀଳତା ଭିତରେ ଭାବନାଗତ ଓ ନୀତିଗତ ପାର୍ଥକ୍ୟ ରହିପାରେ ।

(୨୨.୧୦.୨୦୧୪)



# ବିଚାରଶୀଳତା ଓ ହେତୁବାଦ

ସମାଜର ସବୁ ଲୋକ ବୁଦ୍ଧିମାନ ନୁହଁନ୍ତି କିମ୍ବା ସବୁ ଲୋକ ବିଚାରଶୀଳ ନୁହଁନ୍ତି । ସେହିପରି ସବୁ ବୁଦ୍ଧିମାନ ଲୋକ ଯେ ବିଚାରଶୀଳ ତାହା ମଧ୍ୟ କୁହାଯାଇ ନପାରେ । ସବୁ ବୁଦ୍ଧିମାନ ବା ଇଣ୍ଟେଲିଜେଣ୍ଟ ଲୋକମାନେ ଯେ ସର୍ବଦା ବିଚାରଶୀଳ ବା ରେସ୍‌ନାଲ୍ ଏହା ଦେଖାଯାଏ ନାହିଁ । ବୁଦ୍ଧିମାନ ଲୋକମାନେ ଅହେତୁକ ହେବାର ବହୁ ଦୃଷ୍ଟାନ୍ତ ବାସ୍ତବ ଅନୁଭୂତିରେ ଦେଖିବାକୁ ମିଳିଥାଏ । ଜଣେ ବିଚାରଶୀଳ ବ୍ୟକ୍ତି ହେତୁବାଦୀ ହୋଇଥାଏ । ଏହି ଦୃଷ୍ଟିରୁ ବିଚାରଶୀଳତା ଓ ହେତୁବାଦ ସମାର୍ଥବୋଧକ ମନେହୁଅନ୍ତି । ସେହିପରି ପ୍ରତ୍ୟେକ ବିଚାରଶୀଳ ବ୍ୟକ୍ତି ଯେ ବୁଦ୍ଧିମାନ ତାହା ମଧ୍ୟ ନୁହେଁ । ସାଧାରଣତଃ ବୁଦ୍ଧିମାନ ହେବା ଏକ ମାନସିକ ସାମର୍ଥ୍ୟ ବା ଦକ୍ଷତାର ସୂଚନା ଦେଲାବେଳେ ବିଚାରଶୀଳ ହେବା ଏକ ଜୀବନଦୃଷ୍ଟି ଓ ଆଚରଣଗତ ବ୍ୟବହାରର ସୂଚନା ଦେଇଥାଏ ।

ବୁଦ୍ଧିର ଏକ ଯଥାର୍ଥ ସଂଜ୍ଞା ନିରୂପଣ କରିବା ସହଜ ମନେହୁଏ ନାହିଁ । ବୁଦ୍ଧିକୁ ଜନ୍ମଗତ ଓ ଜ୍ଞାନଗତ ସାମର୍ଥ୍ୟ ବୋଲି କେତେକ ମନେକରନ୍ତି । ତେବେ ବ୍ୟକ୍ତିର ଜନ୍ମଗତ ସାମର୍ଥ୍ୟ ଏକ ସୁସ୍ଥ ପରିବେଷ୍ଟନୀ ପାଇଲେ  ହିଁ ବିକଶିତ ହୋଇଥାଏ । ବ୍ୟକ୍ତିର ସହଜାତ ସାମର୍ଥ୍ୟ ଅତ୍ୟନ୍ତ ପ୍ରତିକୂଳ ପରିବେଶରେ ବିକଶିତ ହୋଇପାରି ନଥାଏ । ବୁଦ୍ଧିକୁ କେତେକ ବିଭିନ୍ନ ସାମର୍ଥ୍ୟର ସମାହାର ଭାବେ ଗ୍ରହଣ କରିଥାନ୍ତି । ଏହି ସାମର୍ଥ୍ୟ ସାଧାରଣ, ସ୍ୱତନ୍ତ୍ର, ବ୍ୟାବହାରିକ, ଶବ୍ଦପଟୁତା, ଯୁକ୍ତିଶୀଳତା ଇତ୍ୟାଦି ହୋଇପାରେ । ଏକ ଲକ୍ଷ୍ୟ ହାସଲ ପାଇଁ ଜଣେ ନିଜର ମାନସିକ ସାମର୍ଥ୍ୟର ପ୍ରୟୋଗ କରୁଥିଲେ ଓ ନିଜର ବିଚାର ପ୍ରୟୋଗ କ୍ଷେତ୍ରରେ ବୌଦ୍ଧିକ ଦକ୍ଷତାର ପରିଚୟ ଦେଉଥିଲେ ସାଧାରଣତଃ ଜଣେ ବୁଦ୍ଧିମାନ ବୋଲି ପରିଚିତ ହୋଇଥାନ୍ତି । ମନୋବିଜ୍ଞାନରେ କେତେକ ପ୍ରଣାଳୀ ପ୍ରୟୋଗ କରି ବ୍ୟକ୍ତିର ବୁଦ୍ଧ୍ୟଙ୍କ୍ ବା ଆଇକ୍ୟୁ ନିରୂପଣ କରାଯାଏ । ବ୍ୟକ୍ତିର ମାନସିକ ସାମର୍ଥ୍ୟ ଓ ଦକ୍ଷତାକୁ ମୂଲ୍ୟାୟନ କରାଯାଇ ଲୋକମାନଙ୍କୁ ଶ୍ରେଣୀ ବିଭାଗ କରାଯାଏ । ଜଣଙ୍କର କୌଣସି

ଏକ ବିଷୟକୁ ବୁଝିବା ବା ଅବବୋଧ କରିବାର ଶକ୍ତି, ତାଙ୍କର ଭାଷାଜ୍ଞାନ, ବିଚାର କ୍ଷେତ୍ରରେ ସଂହତି, କଥାବାର୍ତ୍ତା କ୍ଷେତ୍ରରେ ସଂଗତି ଓ ସାବଲୀଳତା ଇତ୍ୟାଦିକୁ ଆଧାର କରି ତାଙ୍କର ବୁଦ୍ଧ୍ୟଙ୍କ ବା ଆଇକ୍ୟୁକୁ ମୂଲ୍ୟାୟନ କରିବାକୁ ପଡିଥାଏ । ଏହିପରି କେତେକ ମାନଦଣ୍ଡରେ ଦେଖାଯାଏ ଯେ ସମାଜର ଅଧିକାଂଶ ବ୍ୟକ୍ତିଙ୍କର ବୁଦ୍ଧି ସାଧାରଣ ହୋଇଥିବା ବେଳେ ମୁଷ୍ଟିମେୟ ଲୋକଙ୍କର ବୁଦ୍ଧି ଅସାଧାରଣ ଜଣାପଡେ । ସମାଜରେ କେତେକ ଲୋକ ନିର୍ବୁଦ୍ଧିଆ ହେବା ମଧ୍ୟ ଦେଖିବାକୁ ମିଳିଥାଏ । ମନୋବିଜ୍ଞାନ ପରିସରରେ 'ମାନସିକ ବୟସ'ର ଏକ ଭାବନା ରହିଛି । ଯେଉଁ ଲୋକମାନଙ୍କ କ୍ଷେତ୍ରରେ ଶାରୀରିକ ବୟସ ସହ ମାନସିକ ବୟସର ସାମଂଜସ୍ୟ ଦେଖିବାକୁ ମିଳେ ସେମାନେ ସାଧାରଣ ବୁଦ୍ଧିସଂପନ୍ନ ବୋଲି ନିଆଯାଏ । ଯେଉଁ ଲୋକମାନଙ୍କର ଶାରୀରିକ ବୟସଠାରୁ ମାନସିକ ବୟସ ଅଧିକ ହୋଇଥାଏ ସେମାନେ ଅସାଧାରଣ ବା ବେଶ୍ ବୁଦ୍ଧିମାନ ବିବେଚିତ ହୋଇଥାନ୍ତି । ସେହିପରି ଯେଉଁମାନଙ୍କ କ୍ଷେତ୍ରରେ ମାନସିକ ବୟସ ଶାରୀରିକ ବୟସଠାରୁ ବହୁତ୍ କମ୍ ଥାଏ ସେମାନଙ୍କୁ ନିର୍ବୁଦ୍ଧିଆ ଶ୍ରେଣୀର ପର୍ଯ୍ୟାୟ ଭୁକ୍ତ କରାଯାଏ ।

ପ୍ରତ୍ୟେକ ବ୍ୟକ୍ତିର ସହଜାତ ସାମର୍ଥ୍ୟକୁ ତାର ସାମାଜିକ ପରିବେଶ ବିକଶିତ ହେବାରେ ସାହାଯ୍ୟ କରିଥାଏ । ବ୍ୟକ୍ତିର ବୁଦ୍ଧି, ବିଚାରଶୀଳତା ଓ ବ୍ୟକ୍ତିତ୍ୱ ବିକାଶରେ ତାର ପରିବେଷ୍ଟନୀ ଏକ ମୁଖ୍ୟ ଭୂମିକା ନେଇଥାଏ । ଏପରିକି ଗୋଟିଏ ମତରେ ଶିଶୁର ମନଟି ଏକ ଅଲେଖା ଧଳାକାଗଜ ସଦୃଶ । ଏହା ଏକ ସ୍ୱଚ୍ଛ ସମ୍ବେଦନଶୀଳ ଫଳକ । ବ୍ୟକ୍ତି ତାର ପରିବେଷ୍ଟନୀରୁ ଯେଉଁ ପ୍ରକାରର ଭାବନା, ବିଚାର, ଦୃଷ୍ଟିଭଙ୍ଗୀର ଚିତ୍ର ପାଏ ତାହା ତାର ମନ-ଫଳକରେ ଲିପିବଦ୍ଧ ହୋଇଯାଏ । ଜନ୍ମରୁ ମନ ଯେହେତୁ ଏକ ସ୍ୱଚ୍ଛ ଫଳକ ସଦୃଶ ରହିଥାଏ ବହିର୍ପରିବେଶରୁ ଯେଉଁ ପ୍ରଭାବ ଆସେ ତାହା ଅଲେଖା ଧଳାକାଗଜରେ ତାର ଛାପ ଛାଡିଯାଏ । ଏହି ଦୃଷ୍ଟିରୁ ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ବିଚାରଶୀଳତା ବିକାଶ କ୍ଷେତ୍ରରେ ପରିବେଷ୍ଟନୀ, ପରିବାର ଓ ସାମାଜିକ ପରିବେଶର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥାଏ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ବ୍ୟକ୍ତି ସ୍ୱଭାବରେ କେତେକ ପ୍ରବୃତ୍ତି ରହିଛି । ମଣିଷର ବୁଦ୍ଧି, ଜ୍ଞାନ, ବିଚାରଶୀଳ ଦୃଷ୍ଟିକୁ ବାଦ୍ ଦେଲେ ପଶୁ ଭିତରେ ଯେଉଁ ପ୍ରବୃତ୍ତି ରହିଛି ବ୍ୟକ୍ତି ଭିତରେ ମଧ୍ୟ ସେହିପରି କେତେକ ପ୍ରବୃତ୍ତି ରହିଛି । ଆହାର, ଭୟ, ନିଦ୍ରା, ଯୌନ ଆବେଗ ମଣିଷର ବି ସହଜାତ ପ୍ରବୃତ୍ତି । ତେବେ ସାମାଜିକ ପରିବେଶ, ନୀତିବୋଧ, ସାଂସ୍କୃତିକ ଦୃଷ୍ଟିଭଙ୍ଗୀ, ରୁଚିବୋଧ ଇତ୍ୟାଦି ବ୍ୟକ୍ତିର ଆବେଗକୁ ଶୃଙ୍ଖଳିତ କରିବାରେ ସାହାଯ୍ୟ କରିଥାଏ । ତଥାପି କେହି କେହି ପାଶବିକ ଆବେଗଦ୍ୱାରା ପରିଚାଳିତ ହୋଇ ଅସାମାଜିକ କାର୍ଯ୍ୟରେ ସଂପୃକ୍ତ ହେବାର ଦୃଷ୍ଟାନ୍ତ ସମାଜରେ ବିରଳ ନୁହେଁ । ବ୍ୟକ୍ତିର

ଆବେଗିକ ସ୍ତରରୁ ଯେଉଁ ଭାବନା ଆସେ, ତାକୁ ଚରିତାର୍ଥ କରିବା ପାଇଁ ବୁଦ୍ଧି ପନ୍ଥା ବାହାର କରିଥାଏ । ଆବେଗିକ ସ୍ତରରେ ଲକ୍ଷ୍ୟଟି ନୀତିପୂର୍ଣ୍ଣ, ସାମାଜିକ ହୋଇପାରେ କିମ୍ବା ଅନୈତିକ ଓ ଅସାମାଜିକ ବି ହୋଇପାରେ । ଏକ ଅନୈତିକ ଓ ଅସାମାଜିକ କାର୍ଯ୍ୟ କରିବା ପାଇଁ ବେଳକେ ବୁଦ୍ଧି ସାଧନ ହୋଇଥାଏ । ମନୋବିଜ୍ଞାନ ଯାହା ବ୍ୟକ୍ତିମାନଙ୍କର ଆଚରଣକୁ ବିଜ୍ଞାନ ସମ୍ମତ ପଦ୍ଧତିରେ ବ୍ୟାଖ୍ୟା କରିଥାଏ, ସେଥିରେ ବ୍ୟକ୍ତି ସ୍ୱଭାବ, ଅସ୍ୱାଭାବିକ ବ୍ୟବହାର ଓ ଅସାମାଜିକ କାର୍ଯ୍ୟକଳାପର ବିଭିନ୍ନ ବିଶ୍ଳେଷଣ ଦେଖିବାକୁ ମିଳେ । କେଉଁ ପ୍ରକାରର ପରିବେଶ ବ୍ୟକ୍ତି ସ୍ୱଭାବକୁ ମନ୍ଦ ଆଚରଣ ଦିଗରେ ପ୍ରଭାବିତ କରିଥାଏ ଓ ସେଥିରେ ବୁଦ୍ଧିର କ'ଣ ଭୂମିକା ଥାଏ ତାହା ଏହି ମନୋବୈଜ୍ଞାନିକ ଅନୁଶୀଳନରୁ ଜଣାପଡେ । ବ୍ୟକ୍ତି ଭିତରେ ବୁଦ୍ଧି ଭଲ ଦିଗରେ ବା ମନ୍ଦ ଦିଗରେ ବ୍ୟବହୃତ ହୋଇପାରେ ।

ଏହି ପୃଷ୍ଠଭୂମିରେ ବୁଦ୍ଧି ଓ ବିଚାରଶୀଳତା ମଧ୍ୟରେ ଗୁଣାତ୍ମକ ପାର୍ଥକ୍ୟ ଦେଖିବାକୁ ମିଳେ । କାରଣ ବିଚାରଶୀଳ ଦୃଷ୍ଟି ପୋଷଣ କରୁଥିବା ବ୍ୟକ୍ତି ବିଶେଷ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଜୀବନର ଉତ୍କର୍ଷ ସାଧନ ପାଇଁ ବିଚାରଶୀଳତାକୁ ବିନିଯୋଗ କରିଥାନ୍ତି । ବିଚାରଶୀଳତାକୁ ପ୍ରାଧାନ୍ୟ ଦେଉଥିବା ବ୍ୟକ୍ତିମାନେ ସ୍ୱରୂପରେ ସୁତରାଂ ହେତୁବାଦୀ । ଯେଉଁମାନେ ବିଚାରଶୀଳ ସେମାନେ ବୌଦ୍ଧିକ ସ୍ତରରେ ବୈଜ୍ଞାନିକ ମାନସିକତାକୁ ପ୍ରାଧାନ୍ୟ ଦେଇଥାନ୍ତି । ମୁକ୍ତ ମନ ପୋଷଣ କରିବା, ସତ୍ୟସନ୍ଧାନୀ ହେବା, ବୈଜ୍ଞାନିକ ପ୍ରଣାଳୀକୁ ଜ୍ଞାନାର୍ଜନ କ୍ଷେତ୍ରରେ ନିର୍ଭରଯୋଗ୍ୟ ପଦ୍ଧତି ଭାବରେ ଗ୍ରହଣ କରିବା ସେମାନଙ୍କର ଆଦର୍ଶ ହୋଇଥାଏ । ବିଚାରଶୀଳ ବ୍ୟକ୍ତିବିଶେଷ କୁସଂସ୍କାର, ଆଧାରହୀନ ବିଶ୍ୱାସ, ପାରଲୌକିକ ଜୀବନଦୃଷ୍ଟି ଓ ଅହେତୁକ ପରଂପରାକୁ ପ୍ରତ୍ୟାଖ୍ୟାନ କରିଥାନ୍ତି । ସମାଜରେ ଅନେକ ବୁଦ୍ଧିମାନ ଓ ଉଚ୍ଚଶିକ୍ଷିତ ବ୍ୟକ୍ତି ବି କୁସଂସ୍କାରରେ ବିଶ୍ୱାସ କରିବା ଦେଖାଯାଏ । ଏଠାରେ ଉଚ୍ଚଶିକ୍ଷା ଓ ବିଚାରଶୀଳ ଦୃଷ୍ଟି ଭିତରେ ପାର୍ଥକ୍ୟ ସୁବିଦିତ ମନେହୁଏ । ଜଣେ ବୁଦ୍ଧିମାନ ଲୋକ ଅନୈତିକ କାର୍ଯ୍ୟରେ ସଂପୃକ୍ତ ହେବା ଯେପରି ସମ୍ଭବ, ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି କୁସଂସ୍କାରରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିବା ମଧ୍ୟ ସେହିପରି ସମ୍ଭବ । ବରଂ ଏକ ରକ୍ଷଣଶୀଳ ସାମାଜିକ ପରିବେଶରେ ଶିକ୍ଷିତ ଲୋକମାନେ ନାନା ଅବୈଜ୍ଞାନିକ, ଅହେତୁକ ଓ ଆଧାରହୀନ ବିଶ୍ୱାସର ପ୍ରସାର ଦିଗରେ ମୁଖ୍ୟ ଭୂମିକା ନେଇଥାନ୍ତି । କେତେକ ଭିତ୍ତିହୀନ ବିଶ୍ୱାସକୁ ଧର୍ମ, ପରଂପରା ସହିତ ସଂଶ୍ଳିଷ୍ଟ କରାଇ ସେସବୁର ପ୍ରଚାର ଓ ପ୍ରସାର ଦିଗରେ ଗଭୀର ସଂପୃକ୍ତି ବ୍ୟକ୍ତ କରିଥାନ୍ତି ।

## ଜୀବନ ଅନ୍ୱେଷା

ବିଚାରଶୀଳ ଜୀବନଦୃଷ୍ଟି ମାନବବାଦକୁ ସବୁଠାରୁ ଅଧିକ ପ୍ରାଧାନ୍ୟ ଦେଇଥାଏ । ମାନବବାଦ ବୃହତ୍ତର ମାନବ ସମାଜକୁ ଏକ ଭାତୃତ୍ୱପୂର୍ଣ୍ଣ ବନ୍ଧନରେ ଐକ୍ୟବଦ୍ଧ କରିବାକୁ ଚାହେଁ । ଜାତି, ବର୍ଣ୍ଣ, ଜାତୀୟତା, ଧର୍ମ, ଭାଷା, ଲିଙ୍ଗ, ସଂସ୍କୃତିକୁ ଆଧାର କରି ଯେଉଁ ଭେଦଭାବମୂଳକ ଓ ସାଂପ୍ରଦାୟିକ ଦୃଷ୍ଟିକୋଣ ଆମ ସଂସାରକୁ ଭାଗ ଭାଗ କରି ରଖିଛି ତାହାର ବିଲୋପ ସାଧନ କରି ମାନବିକ ସଂପ୍ରୀତିର ମୂଲ୍ୟବୋଧ ସୃଷ୍ଟି କରିବାକୁ ଆବେଦନ ଦେଇଥାଏ । ଏକ ବିଶ୍ୱ, ଏକ ମାନବଜାତି ବିଚାର ଆଧାରରେ ଏକ ସମ୍ବେଦନଶୀଳ ଜୀବନଦୃଷ୍ଟିକୁ ମାନବବାଦରେ ପ୍ରାଧାନ୍ୟ ଦିଆଯାଏ । ହିଂସା, ବିଦ୍ୱେଷ, ଘୃଣା, ସନ୍ତ୍ରାସବାଦ, ଯୁଦ୍ଧ, ବିଭୀଷିକା ମାନବବାଦର ପରିପନ୍ଥୀ ଓ ସଭ୍ୟ ଜୀବନ ଦୃଷ୍ଟିର ପ୍ରତିକୂଳ । ବିଚାରଶୀଳ ଦୃଷ୍ଟିର ପ୍ରସାର ଅର୍ଥ ସମାଜରେ ଭାତୃତ୍ୱଭାବ, ପ୍ରୀତିଭାବ ଓ ଉଦାର ମାନବିକତାର ପରିମଣ୍ଡଳ ସୃଷ୍ଟି କରିବା । ଏହା ହିଁ ହେତୁବାଦର ଅନ୍ତଃସ୍ୱର ।

ବସ୍ତୁତଃ ବିଚାରଶୀଳତା ଏକ ମହତ୍ତର ଜୀବନବୋଧର ବାର୍ତ୍ତାବହ ଯାହାର ପରିପ୍ରକାଶ ହେଉଛି ହେତୁବାଦୀ ଜୀବନଦୃଷ୍ଟି । ହେତୁବାଦ ଦୁଇଟି ମୌଳିକ ଆଦର୍ଶ ଉପରେ ପ୍ରତିଷ୍ଠିତ, ଏହା ହେଲା- ବୈଜ୍ଞାନିକ ମାନସିକତା ଓ ମାନବବାଦ । ବିଜ୍ଞାନ ଓ ବୈଜ୍ଞାନିକ ମାନସିକତା ଦୁଇଟି ପୃଥକ୍ ଭାବନା । ବୈଜ୍ଞାନିକ ମାନସିକତା ପୋଷଣ କରୁଥିବା ପ୍ରତ୍ୟେକ ବ୍ୟକ୍ତି ବୈଜ୍ଞାନିକ ନୁହନ୍ତି ବା ବିଜ୍ଞାନରେ ଡିଗ୍ରୀ ପ୍ରାପ୍ତ ପ୍ରତ୍ୟେକ ବ୍ୟକ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ପୋଷଣ କରନ୍ତି ନାହିଁ । ସେହିପରି ମାନବବାଦ ବିଶ୍ୱ ଭାତୃତ୍ୱ, ବ୍ୟକ୍ତି ମର୍ଯ୍ୟାଦାବୋଧ, ସାମାଜିକ ନ୍ୟାୟକୁ ପ୍ରାଧାନ୍ୟ ଦେଇଥାଏ । ଏହା ଭେଦଭାବମୂଳକ ବିଚାରବୋଧର ପରିପନ୍ଥୀ । ଏହା ପାରଲୌକିକ ଜୀବନଦୃଷ୍ଟିକୁ ସ୍ୱୀକାର କରିନଥାଏ କାରଣ ଏହା ପଶ୍ଚାତରେ କୌଣସି ତଥ୍ୟଗତ ବା ଯୁକ୍ତିଗତ ଆଧାର ନାହିଁ । ଏକ ସୁଖପ୍ରଦ, ଶାନ୍ତପୂର୍ଣ୍ଣ ଓ ଭାତୃତ୍ୱପୂର୍ଣ୍ୟ ଐହିକ ଜୀବନକୁ ଏହା ପ୍ରାଧାନ୍ୟ ଦେଇଥାଏ । ସମାଜରୁ ଦୁଃଖ, ଦୁର୍ଦ୍ଦଶା, ନୈରାଶ୍ୟ, ଦାରିଦ୍ର୍ୟକୁ ଦୂର କରି ଏକ ସୁସ୍ଥ ପରିବେଶ ପ୍ରତି ଏହାର ପ୍ରତିବଦ୍ଧତା ବ୍ୟକ୍ତ କରିଥାଏ । ଏହା ବିଶ୍ୱାସ କରେ ଯେ ମଣିଷର ପ୍ରୟାସ ଓ ବିଚାରଶୀଳତାର ପ୍ରୟୋଗରେ ଆମ ଜୀବନକୁ ସୁଖପ୍ରଦ ଓ ସକଳ ସାମାଜିକ ସଂପର୍କକୁ ପ୍ରୀତିପଦ କରାଯାଇ ପାରିବ ।

(୨୯.୧୦.୧୪)



# ଗାନ୍ଧୀଙ୍କ ଦୃଷ୍ଟିରେ ସାତୋଟି ପାପ

ପାପ ଓ ଅପରାଧ ଭିତରେ କିଛି ପାର୍ଥକ୍ୟ ରହିଥିଲେ ମଧ୍ୟ ଉଭୟ ନୈତିକତାର ପରିପନ୍ଥୀ । ଯାହା ଅନୈତିକ ତାହା ପାପ ହୋଇପାରେ ବା ଅପରାଧ ହୋଇପାରେ । ଏକ ଅପରାଧ ରାଷ୍ଟ୍ରୀୟ ଜୀବନରେ ଦଣ୍ଡନୀୟ, କିନ୍ତୁ ପ୍ରତ୍ୟେକଟି ପାପ ହୁଏତ ଦଣ୍ଡନୀୟ ନୁହେଁ । ତେବେ ନୈତିକ ମାନଦଣ୍ଡରୁ ଅପରାଧ ହେଉ ବା ପାପ ହେଉ ଉଭୟ ଅକରଣୀୟ । ନୈତିକତା ଏକ ଜଟିଳ ଭାବନା, ତେବେ ସାଧାରଣ ଭାବେ ନୈତିକତା ଏକ ସାମାଜିକ କର୍ତ୍ତବ୍ୟ । ସାମାଜିକ ସମ୍ବନ୍ଧ ପୃଷ୍ଠଭୂମିରେ ନୀତି, ନୈତିକତାର ପ୍ରଶ୍ନ ଆସିଥାଏ । ସାମାଜିକ ସମ୍ପର୍କକୁ ଆଦର୍ଶଯୁକ୍ତ ଓ ମାନବିକ କରିବାକୁ ନୈତିକତାର ପ୍ରସଙ୍ଗ ଆସେ । ନାଗରିକ ଶୃଙ୍ଖଳା ଓ ନୈତିକ ଆଚରଣ ବ୍ୟତୀତ ଜୀବନର ଗୁଣାତ୍ମକ ମାନ ଉନ୍ନତ ହୋଇପାରେ ନାହିଁ । ଧର୍ମ, ଈଶ୍ୱରବିଶ୍ୱାସ ସହ ନୈତିକତାର ପ୍ରଶ୍ନ ଜଡିତ ନୁହେଁ । ହୁଏତ ସ୍ଥଳ ବିଶେଷରେ ଧର୍ମ ଓ ଈଶ୍ୱର ବିଶ୍ୱାସରୁ କେହି ନୈତିକ ଜୀବନ ପାଇଁ ପ୍ରେରଣା ପାଇଥା'ନ୍ତି । ତେଣୁ ଧର୍ମ, ଈଶ୍ୱର ବିଶ୍ୱାସ ସହ ନୈତିକତାର ସମ୍ପର୍କ ମନସ୍ତାତ୍ତ୍ୱିକ । ସମସ୍ତ ଧର୍ମବିଶ୍ୱାସୀ ନୀତିବାନ ନୁହନ୍ତି ବା ପ୍ରତ୍ୟେକ ନୀତିବାନ ବ୍ୟକ୍ତି ଧର୍ମ-ଈଶ୍ୱର ବିଶ୍ୱାସୀ ନୁହଁନ୍ତି । ବରଂ ନୈତିକ ଜୀବନ ପାଇଁ ବ୍ୟକ୍ତି ନାନା ସ୍ତରରୁ ପ୍ରେରଣା ଲାଭ କରିଥାଏ । ସାମାଜିକ ବିକାଶ ଓ ପରିବର୍ତ୍ତନ ଧାରାରେ ନୀତି, ନୈତିକତାର ଅବଧାରଣା ବି ବଦଳୁଥାଏ । ମହତ୍ତର ଜୀବନବୋଧ ନେଇ ବିଚାର ବୌଦ୍ଧିକ ଅନୁଶୀଳନ ଓ ବାସ୍ତବ ଅନୁଭୂତିରୁ ଆସିଥାଏ । ମଣିଷର ବିଚାରଶୀଳ ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀରୁ ନୈତିକ ବିଚାରବୋଧ ଜନିତ ଭାବନା ଆସିଥାଏ । ନୀତି, ନୈତିକତା, ମାନବିକ ଦୃଷ୍ଟି, ନାଗରିକ ଶୃଙ୍ଖଳାବୋଧ ଇତ୍ୟାଦି ସାମାଜିକ କର୍ତ୍ତବ୍ୟ ବ୍ୟକ୍ତି ତା'ର ବୃହତ୍ତର ସମାଜରୁ ଶିକ୍ଷାକରେ । ସାମାଜିକ ପରିବେଶ ଯେତେ ଉନ୍ନତ ହୁଏ ବ୍ୟକ୍ତି ଭିତରେ ତାହା ଏକ ଶୃଙ୍ଖଳିତ ଜୀବନ ପାଇଁ ପ୍ରେରଣା ସୃଷ୍ଟି କରେ, ଯେଉଁ ସାମାଜିକ ପରିବେଶ ଉନ୍ନତ ନଥାଏ ସେଠାରେ ଜନଜୀବନରେ ନୈତିକ ଆଚରଣ ପାଇଁ ଯଥାର୍ଥ ପ୍ରେରଣା ମିଳିପାରେ ନାହିଁ ।

ଏହି ପୃଷ୍ଠଭୂମିରେ ମହାତ୍ମା ଗାନ୍ଧୀ ଯେଉଁ ସାତୋଟି ପାପର ଅବତାରଣା କରିଥିଲେ ତାହାର ଏକ ସାର୍ବଜନୀନ ମହତ୍ତ୍ୱ ରହିଥିବା ମନେହୁଏ । ଗାନ୍ଧୀ ତାଙ୍କ ବିଚାର ପୃଷ୍ଠଭୂମିରେ

ଏକ ଉନ୍ନତ ସମାଜର ସ୍ୱପ୍ନ ଦେଖିଛନ୍ତି । ଅହିଂସା, ସମତା ଓ ସାମାଜିକ ନ୍ୟାୟ ମୂଲ୍ୟଚୟ ପ୍ରତି ଗାନ୍ଧୀ ଯେଉଁ ସମ୍ପୃକ୍ତି ବ୍ୟକ୍ତ କରିଛନ୍ତି ତାହା ଯଥାର୍ଥରେ ଏକ ଉନ୍ନତ ସମାଜର ଚିତ୍ର ଦେଇଥାଏ । ତେବେ ସାମାଜିକ ବ୍ୟବସ୍ଥା ଓ ସମ୍ପର୍କ ଏତେ ଜଟିଳ ଯେ ସମାଜରୁ ନୈତିକ ସ୍ଖଳନ, ଦ୍ୱନ୍ଦ୍ୱ, ଅମାନବିକ ମନୋଭାବ ସମ୍ପୂର୍ଣ୍ଣ ଦୂର ହେବା ପ୍ରାୟତଃ ସମ୍ଭବ ନୁହେଁ । କାରଣ ବ୍ୟକ୍ତି ସ୍ୱଭାବରେ ମହତ୍ତର ଭାବନା ଯେପରି ରହିଛି ସେହିପରି ସ୍ୱାର୍ଥପରତା ମଧ୍ୟ ରହିଛି । ସାମାଜିକ ପରିବେଶ ଉନ୍ନତ ହେଲେ ବ୍ୟକ୍ତିକୁ ଉତ୍ତମ ଆଚରଣ ପାଇଁ ପ୍ରେରଣା ମିଳିଥାଏ । ସାମାଜିକ ପରିବେଶ କ୍ଷୟଶୀଳ ହେଲେ ଜଣେ ଉତ୍ତମ ସ୍ୱଭାବର ବ୍ୟକ୍ତି ମଧ୍ୟ ମନ୍ଦ କାର୍ଯ୍ୟରେ ସମ୍ପୃକ୍ତ ହେବାର ସମ୍ଭାବନା ଆସେ । ମନ୍ଦ ଆଚରଣ, ବିଶୃଙ୍ଖଳା, ଅସାଧୁତା ସମାଜରେ ବ୍ୟତିକ୍ରମ ହେବା ଆବଶ୍ୟକ, କିନ୍ତୁ ଏହା ଯଦି ଧାରା ହୋଇଯାଏ ତେବେ ସମାଜ କଳୁଷିତ ହୋଇଯାଏ । ସମାଜ କିପରି ଉନ୍ନତରୁ ଉନ୍ନତତର ହେବ ଓ ସାମାଜିକ ଜୀବନଧାରା କିପରି ଅଧିକ ନୀତିଯୁକ୍ତ, ନ୍ୟାୟଯୁକ୍ତ ଓ ଅଧିକ ମାନବିକ ହେବ ସେହି ଦୃଷ୍ଟିରୁ ଗାନ୍ଧୀଙ୍କ ସାତଟି ପାପର ଧାରଣା ବେଶ୍ ଭାବଗର୍ଭକ ମନେହୁଏ ।

ପ୍ରଥମରେ ଶ୍ରମବିହୀନ ଉପାର୍ଜନ ଗାନ୍ଧୀଙ୍କ ପାଇଁ ଏକ ପାପ । ପ୍ରତ୍ୟେକ ସକ୍ଷମ ବ୍ୟକ୍ତି ନିଜର ସାମର୍ଥ୍ୟ ଭିତରେ କର୍ମରେ ବ୍ରତୀ ହେବା ଆବଶ୍ୟକ । ବିନା ଶ୍ରମରେ ଉପାର୍ଜନ କରିବା ବା ଅନ୍ୟର ଉପାର୍ଜନକୁ ଲୁଣ୍ଠନ କରିବା ଏକ ପାପ । ଜୀବନର ଆବଶ୍ୟକତା ପୂରଣ ପାଇଁ କର୍ମ ହିଁ ଅପରିହାର୍ଯ୍ୟ । ଶ୍ରମବିହୀନ ଉପାର୍ଜନ ଆଧାରରେ ନିଜର ଆବଶ୍ୟକତା ପୂରଣ କରିବା ଅନ୍ୟାୟ ଓ ଅନୈତିକ । ଆମ ଦେଶପରି ଏକ ଜାତିଭିତ୍ତିକ ସମାଜରେ ଯେଉଁଠି ଶ୍ରମର ମର୍ଯ୍ୟାଦା ନାହିଁ ବା ଶ୍ରମ ଜାତିଭିତ୍ତିକ ହୋଇଯାଇଛି ସେହି ପରିପ୍ରେକ୍ଷୀରେ ଏହା ଏକ ଆପ୍ତବାକ୍ୟ ମନେହୁଏ । ମେହନତୀ ମଣିଷର ଶ୍ରମକୁ ଶୋଷଣ କରି ଆମ ଦେଶର ବର୍ଣ୍ଣବ୍ୟବସ୍ଥା ତିଷ୍ଠି ରହିଛି । ଜାତିବାଦୀ ବ୍ୟବସ୍ଥାରେ ସମାଜର ତଥାକଥିତ ଉଚ୍ଚଶ୍ରେଣୀର ଲୋକମାନେ ବିନାଶ୍ରମରେ ସମ୍ପତ୍ତିର ଅଧିକାରୀ ହୋଇଛନ୍ତି ଓ ଯୁଗଯୁଗ ଧରି ଅନ୍ୟର ଶ୍ରମକୁ ଲୁଣ୍ଠନ କରିଛନ୍ତି । ସେହି ପୃଷ୍ଠଭୂମିରେ ଶ୍ରମବିହୀନ ଉପାର୍ଜନ ଯେ ଅନୈତିକ ଏହି ବିଚାର ଏକ ଉନ୍ନତ ଓ ସମତାପୂର୍ଣ୍ଣ ସମାଜ ପାଇଁ ପ୍ରେରଣାଦାୟକ ।

ସେହିପରି ବିବେକହୀନ ଉପଭୋଗ ମଧ୍ୟ ଏକ ପାପ । ବିଶେଷ କରି ଆଧୁନିକ ଜୀବନ ପ୍ରବାହରେ ଉପଭୋକ୍ତାବାଦ ଓ ଉପଭୋଗ ଯେପରି ପ୍ରାଧାନ୍ୟ ନେଉଛି ତାହା ଅନୈତିକ ମନେହୁଏ । ଯେଉଁ ସମାଜରେ ଏତେ ଦାରିଦ୍ର୍ୟ ରହିଛି ଓ ଦେଶର ଅଗଣିତ ଜନଗଣ ସର୍ବନିମ୍ନ ଆବଶ୍ୟକତାରୁ ବଞ୍ଚିତ ହୋଇରହିଛନ୍ତି ସେହି ସ୍ଥିତିରେ ବିଳାସପୂର୍ଣ୍ଣ ଉପଭୋଗ ଏକ ଅନ୍ୟାୟ କହିଲେ ଅତ୍ୟୁକ୍ତି ହେବନାହିଁ । ଗୋଟିଏ ଯୁଗରେ ସମାଜବାଦ, ଜନମଙ୍ଗଳକାରୀ ଆଭିମୁଖ୍ୟକୁ ରାଷ୍ଟ୍ରୀୟ ଲକ୍ଷ୍ୟ ଭାବରେ ନିଆଯାଉଥିଲା, କିନ୍ତୁ ସାମ୍ପ୍ରତିକ ପରିସ୍ଥିତିରେ ରାଷ୍ଟ୍ର ସେହି ଲକ୍ଷ୍ୟରୁ ଦୂରେଇ ଯାଉଥିବା ମନେହୁଏ । ପୁଞ୍ଜିବାଦ,

ଉପଭୋକ୍ତାବାଦ, ଅର୍ଥହୀନ ଉପଭୋଗ ଭିତରେ ମଣିଷ ଅଧିକ ସ୍ୱାର୍ଥପର ହୋଇଯାଏ ଓ ମାନବିକ ସମ୍ବେଦନ ହରାଇବସେ । ଆଧୁନିକ ଜୀବନଧାରାରେ ଭୌତିକ ବିକାଶ, ପ୍ରଗତି ସହିତ ମାନବୀୟ ଗୁଣର ଅବକ୍ଷୟ ଆମ ସମୟର ବଡ଼ ପ୍ରହେଳିକା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଚରିତ୍ରବିହୀନ ଶିକ୍ଷାକୁ ଗାନ୍ଧୀ ଏକ ପାପ ସଦୃଶ ମନେ କରିଛନ୍ତି । ଶିକ୍ଷାର ବ୍ୟାପକତର ଅର୍ଥରେ ଏହା ବ୍ୟକ୍ତିକୁ ମହତ୍ତର ଜୀବନବୋଧ ଦେଇଥାଏ । ଭଲ-ମନ୍ଦ, ନ୍ୟାୟ-ଅନ୍ୟାୟ, ନୀତି-ଅନୀତି ଭିତରେ ପାର୍ଥକ୍ୟ କରିବାର ବିଚାରବୋଧ ବ୍ୟକ୍ତି ଶିକ୍ଷା ମାଧ୍ୟମରେ ଲାଭକରେ । ଶିକ୍ଷା ବ୍ୟକ୍ତିର ଜ୍ଞାନକୁ ପ୍ରସାର କରେ, ସ୍ୱାବଲମ୍ବୀ ହେବାର ପରିବେଶ ଆଣେ । ତେବେ ଏହାର ସବୁଠାରୁ ବଡ ଆବେଦନଟି ହେଉଛି ଶିକ୍ଷା ମଣିଷକୁ ଅଧିକ ବିଚାରଶୀଳ, ମାନବିକ ଓ ନୀତିବାନ କରିବାରେ ସହାୟକ ହେବା ଆବଶ୍ୟକ । କିନ୍ତୁ ଶିକ୍ଷା ଯଦି ନୈତିକ ଲକ୍ଷ୍ୟ ଠାରୁ ଦୂରେଇ ଯାଇ ବ୍ୟକ୍ତି ଭିତରେ ଅର୍ଥ ଉପାର୍ଜନ, ସ୍ୱାର୍ଥପରତା ଓ ଅସାଧୁତାର ମନୋଭାବ ଆଣେ ସେହି ଶିକ୍ଷା ଯଥାର୍ଥ ଶିକ୍ଷା ନୁହେଁ । ସେ କ୍ଷେତ୍ରରେ ଶିକ୍ଷା କେବଳ ସାକ୍ଷରତାରେ ସୀମିତ ହୋଇଥାଏ । ନିରକ୍ଷରତା ଏକ ସଭ୍ୟ ସମାଜ ପାଇଁ ଅଭିଶାପ, ତେବେ ଶିକ୍ଷାର ଏକ ବୃହତ୍ତର ଆଭିମୁଖ୍ୟ ରହିବା ଆବଶ୍ୟକ । ଶିକ୍ଷା ବ୍ୟବସ୍ଥା ଉନ୍ନତ ହେଲେ ସମାଜ ଉନ୍ନତ ହୁଏ, ଶିକ୍ଷା ବ୍ୟବସ୍ଥା ଅବକ୍ଷୟମୁଖୀ ହେଲେ ସମାଜ କଳୁଷିତ ହୋଇଯାଏ ।

ନୈତିକତାବିହୀନ ବ୍ୟବସାୟକୁ ଏକ ଅପରାଧ ଭାବେ ଗାନ୍ଧୀ ଗ୍ରହଣ କରିଛନ୍ତି । ବ୍ୟବସାୟ ଏକ ବୃତ୍ତି । ତେବେ ବ୍ୟବସାୟକୁ ଏକ ବୃତ୍ତି ଭାବରେ ନେଇ ସମାଜରେ କିଛି ବ୍ୟକ୍ତି ଉପାର୍ଜନକ୍ଷମ ହୋଇ ସ୍ୱାବଲମ୍ବୀ ହୋଇଥା'ନ୍ତି । ଯେକୌଣସି ସମାଜ ପାଇଁ ଏହା ଆବଶ୍ୟକ । ଉତ୍ପାଦିତ ସାମଗ୍ରୀକୁ ଆଣି ଜନସାଧାରଣଙ୍କ ପାଖରେ ପହଞ୍ଚାଇବା ବ୍ୟବସାୟର ଲକ୍ଷ୍ୟ । ତେବେ ଏଥିରେ ବ୍ୟବସାୟୀ ଯଦି ଅତ୍ୟନ୍ତ ଅସାଧୁ ପନ୍ଥା ଅବଲମ୍ବନ କରେ ତେବେ ସମାଜରେ ଦୁର୍ନୀତି ବ୍ୟାପେ । ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନର ଆବଶ୍ୟକତା ପୂରଣ ପାଇଁ ସମାଜ ଉପରେ ନିର୍ଭର କରେ । ଯଦି ସାମାଜିକ ଜୀବନରେ ସେ ପ୍ରତାରିତ ବା ଶୋଷିତ ହୁଏ, ତେବେ ସମାଜ ପ୍ରତି ଏକ ନକାରାତ୍ମକ ମନୋଭାବ ଆଣେ । ସୁତରାଂ ସବୁ ସ୍ତରର ବୃତ୍ତି ଭଳି ବ୍ୟାବସାୟିକ ବୃତ୍ତିରେ ମଧ୍ୟ ସାଧୁତା ରଖିବା ଆବଶ୍ୟକ ।

ମାନବିକତାବିହୀନ ବିଜ୍ଞାନକୁ ଗାନ୍ଧୀ ଏକ ପାପ ବୋଲି ବିଚାର କରିଛନ୍ତି । ବିଜ୍ଞାନ ସଭ୍ୟତାର ବିକାଶ ଓ ଜୀବନର ଭୌତିକ ମାନ ବୃଦ୍ଧିରେ ନିର୍ଣ୍ଣାୟକ ହୋଇଆସିଛି । ଗୋଟିଏ ଗୋଟିଏ ନୂତନ ଉଦ୍ଭାବନ ସଭ୍ୟତାର ରୂପରେଖ ବଦଳାଇ ଦେଇଛି । ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବ୍ୟତୀତ ଆଜିର ଜୀବନ ପ୍ରବାହକୁ କଳ୍ପନା କରାଯାଇ ପାରିବ ନାହିଁ । ତେବେ ବିଜ୍ଞାନକୁ ଭଲ ଦିଗରେ ବା ମନ୍ଦ ଲକ୍ଷ୍ୟରେ ପ୍ରୟୋଗ କରାଯାଇପାରିବ । ଆମ ସଂସାରରୁ ରୋଗ, ଶୋକ, ଦାରିଦ୍ର୍ୟ ଦୂର କରିବାରେ, ଉତ୍ପାଦନ ବୃଦ୍ଧି କରିବାରେ, ଜ୍ଞାନ

ବିଜ୍ଞାନର ପ୍ରସାର ଦିଗରେ, ପୃଥିବୀର ଦୂରତା କମାଇବାରେ ବିଜ୍ଞାନ ଆମକୁ ବାଟ ଦେଖାଇଛି । ତେବେ ବିଜ୍ଞାନର ଅପପ୍ରୟୋଗଦ୍ୱାରା ସଭ୍ୟତା ମଧ୍ୟ ଆତ୍ମହତ୍ୟା କରିବାର ସମ୍ଭାବନା ରହିଛି । ଯଦି ବିଜ୍ଞାନକୁ ସଭ୍ୟତା ଧ୍ୱଂସକାରୀ ମାରଣାସ୍ତ୍ର ନିର୍ମାଣ ପାଇଁ ବିନିଯୋଗ କରାଯାଏ ତେବେ ସଭ୍ୟତାର ବିଲୋପ ଅବଶ୍ୟମ୍ଭାବୀ ମନେହୁଏ । ମାନବିକ ଅହିତ ସାଧନ ପାଇଁ ବିଜ୍ଞାନର ପ୍ରୟୋଗ ବା ଅପପ୍ରୟୋଗ ଯେ ସବୁଠାରୁ ବଡ଼ ପାପ ଏହା କହିଲେ ଅତ୍ୟୁକ୍ତି ହେବନାହିଁ ।

ତ୍ୟାଗବିହୀନ ଉପାସନାକୁ ଗାନ୍ଧୀ ନିରର୍ଥକ ମନେ କରିଛନ୍ତି । ଉପାସନା, ଭକ୍ତିଭାବ ଯଦି ନିଛକ କର୍ମ କାଣ୍ଡରେ ସୀମିତ ହୁଏ ଓ ଏହା ପଶ୍ଚାତରେ କୌଣସି ମହତ୍ତର ଜୀବନବୋଧର ପ୍ରେରଣା ନରହେ, ସେହି ପ୍ରକାରର ଉପାସନା ଯେ ନିରର୍ଥକ ଏହା କୁହାଯାଇପାରେ । ଉପାସନା ବ୍ୟକ୍ତିଭିତରେ ନୀତିବୋଧ, ସମ୍ବେଦନଶୀଳ ମନୋଭାବ, ସାଧୁତା, କର୍ତ୍ତବ୍ୟପରାୟଣ ଜନିତ ଦୃଷ୍ଟିଭଙ୍ଗୀ ଉଦ୍ରେକ କରିବା ଆବଶ୍ୟକ । ଏସବୁର ଅଭାବରେ ଉପାସନା, ପୂଜାପାର୍ବଣ ମୂଲ୍ୟହୀନ ହୋଇଥାଏ ।

ଶେଷରେ ନୀତିବିହୀନ ରାଜନୀତି ଗାନ୍ଧୀଙ୍କ ଦୃଷ୍ଟିରେ ଏକ ଗର୍ହିତ କାର୍ଯ୍ୟ । ଯେ କୌଣସି ଦେଶ ବା ରାଷ୍ଟ୍ରୀୟ ଜୀବନରେ ରାଜନୈତିକ କାର୍ଯ୍ୟ ଗୁରୁତ୍ୱପୂର୍ଣ୍ଣ । ରାଜନୀତି ହିଁ ଦେଶର ଶାସନବ୍ୟବସ୍ଥା, ନାଗରିକମାନଙ୍କର ଉନ୍ନତ ଜୀବନଧାରଣ ଓ ଭବିଷ୍ୟ ନିର୍ମାଣ ପାଇଁ ମୁଖ୍ୟ ଆୟୁଧ । ରାଜନୀତିଜ୍ଞ ବ୍ୟକ୍ତିମାନେ ସାଧୁ, ନୀତିବାନ, ଦୂରଦୃଷ୍ଟିସମ୍ପନ୍ନ ହେବା ଆବଶ୍ୟକ । କିନ୍ତୁ ରାଜନୀତି ଯଦି ସ୍ୱାର୍ଥପରତା ଓ ଯେକୌଣସି ପନ୍ଥାରେ କ୍ଷମତା ଅଧିକାର ପାଇଁ ସାଧନ ହୁଏ, ତେବେ ସମାଜ କଳୁଷିତ ହୋଇଯାଏ । ସମାଜ ଯେତିକି କଳୁଷିତ ହୋଇଚାଲେ ତାହା ସମାଜରେ ଦୁଃଖ ଦୁର୍ଦ୍ଦଶାର ପରିସ୍ଥିତି ଆଣେ । ରାଜନୀତିଜ୍ଞମାନଙ୍କର ସାଧୁତା, କର୍ମନିପୁଣତା ଓ ଚରିତ୍ରବତ୍ତା ଉପରେ ପ୍ରାଧାନ୍ୟ ଦେଇଥିବା ଗାନ୍ଧୀ ନିଜ ଜୀବନରେ ତାହା ଦେଖାଇ ଯାଇଛନ୍ତି ।

ଗାନ୍ଧୀ ସାଧାରଣ ଜୀବନ ପ୍ରବାହକୁ ନୀତିଯୁକ୍ତ କରିବା ପାଇଁ ସାତୋଟି କ୍ଷେତ୍ରରେ ଯେଉଁ ନୈତିକ ମୂଲ୍ୟବୋଧର ପରିକଳ୍ପନା କରିଛନ୍ତି ତାହା ବେଶ୍ ଭାବଗର୍ଭକ ମନେହୁଏ । ଉପାର୍ଜନ, ଉପଭୋଗ, ଶିକ୍ଷା, ବ୍ୟବସାୟ, ବିଜ୍ଞାନ, ଉପାସନା ଓ ରାଜନୀତି ପ୍ରତ୍ୟେକଟି ପଶ୍ଚାତରେ ନୈତିକ ଆଦର୍ଶ ରହିବା ଆବଶ୍ୟକ । ନୈତିକ ଆଦର୍ଶ ଅଭାବରେ ଏ ପ୍ରତ୍ୟେକଟି କଳୁଷିତ ହୋଇଗଲେ ତାହା ସମାଜ, ସଭ୍ୟତା ଓ ଭବିଷ୍ୟତ ପାଇଁ ଅହିତକର ହୁଏ । ଏ ପ୍ରତ୍ୟେକ କ୍ଷେତ୍ରରେ ଗାନ୍ଧୀ ଯେଉଁ ମାନବିକ ଆଦର୍ଶର ସ୍ପର୍ଶ ରଖିଛନ୍ତି ତାହା ତାଙ୍କ ମହତ୍ତର ଜୀବନବୋଧର ସ୍ୱାକ୍ଷର ବହନ କରେ ।

(୧.୧.୧୪) ।



# ସାଂପ୍ରତିକ ସ୍ଥିତିରେ ଶିକ୍ଷା

ଶିକ୍ଷା ସଂପର୍କରେ ଗୋଟିଏ ମତ ରହିଛି ଯେ ଯେଉଁ ଦେଶ ବା ସମାଜର ଲୋକମାନେ ଯେତେ ଶିକ୍ଷିତ, ସେହି ଦେଶ ସେତିକି ଉନ୍ନତ ଓ ପ୍ରଗତିଶୀଳ । ଏହି ମତରୁ ଏକ ସିଦ୍ଧାନ୍ତ ନିଷ୍ପନ୍ନ ହୁଏ ଯେ ଯେଉଁ ଦେଶର ଜନଗଣଙ୍କ ମଧ୍ୟରେ ଅଶିକ୍ଷା ଓ ନିରକ୍ଷରତା ଯେତେ ଅଧିକ, ସେହି ଦେଶ ସେତିକି ଅନୁନ୍ନତ ଓ ଅନଗ୍ରସର । ଅବଶ୍ୟ ଶିକ୍ଷା ଓ ସାକ୍ଷରତା ଭିତରେ ଯେପରି ପାର୍ଥକ୍ୟ ରହିଛି ସେହିପରି ଅଶିକ୍ଷା ଏବଂ ନିରକ୍ଷରତା ମଧ୍ୟରେ ମଧ୍ୟ ତଫାତ୍ ରହିଛି । ସାଧାରଣ ଭାବେ କହିଲେ ଜଣେ ବ୍ୟକ୍ତି ବା ନାଗରିକ ଯଦି କୌଣସି ଲେଖା ପଢ଼ା ଜାଣନ୍ତି ନାହିଁ, ଏପରିକି ନିଜର ନାମଟି ମଧ୍ୟ ଲେଖିବାକୁ ସମର୍ଥ ନୁହନ୍ତି ତେବେ ସେ ଜଣେ ନିରକ୍ଷର ବ୍ୟକ୍ତି । ପ୍ରତ୍ୟେକ ନିରକ୍ଷର ବ୍ୟକ୍ତି ଅଶିକ୍ଷିତ, କିନ୍ତୁ ପ୍ରତ୍ୟେକ ସାକ୍ଷର ବ୍ୟକ୍ତି ଯେ ଶିକ୍ଷିତ ଏହା କୁହାଯାଇ ପାରିବ ନାହିଁ । ଜଣେ ଅଶିକ୍ଷିତ ବ୍ୟକ୍ତି ସାକ୍ଷର ହୋଇପାରନ୍ତି କିମ୍ବା ନିରକ୍ଷର ହୋଇ ପାରନ୍ତି । ସାକ୍ଷର ହେବା ବା ନିରକ୍ଷର ରହିବା ଏକ ଆକସ୍ମିକ ଘଟଣା । ସମାଜରେ କେତେକ ବ୍ୟକ୍ତି ସାକ୍ଷର ହେବା ବା ଶିକ୍ଷିତ ହେବା ଓ ଅନ୍ୟ କେତେକ ବ୍ୟକ୍ତି ନିରକ୍ଷର ରହିବା ଏକ ଆକସ୍ମିକ ଘଟଣା । ଏହା ଆକସ୍ମିକ ଘଟଣା ଏହି ଦୃଷ୍ଟିରୁ ଯେ ଏହା ପଛରେ ବିଭିନ୍ନ ପାରିବାରିକ, ଅର୍ଥନୈତିକ, ସାମାଜିକ ଓ ଭୌଗୋଳିକ କାରଣ ରହିଛି । ନାନା ପାରିବାରିକ ତଥା ଅର୍ଥନୈତିକ କାରଣରୁ କେତେ ପିଲା ପଢ଼ିବାର ସୁଯୋଗ ପାଉ ନାହାନ୍ତି, କିମ୍ବା ସ୍କୁଲ ଜୀବନରୁ ପାଠ ଛାଡିବାକୁ ବାଧ୍ୟ ହେଉଛନ୍ତି । କେତେକ ସାମାଜିକ ଓ ସାଂସ୍କୃତିକ କାରଣରୁ ଅନେକ ପିଲା କଲେଜ ସ୍ତରକୁ ଯାଇପାରୁ ନାହାନ୍ତି । ସରକାରୀ ପରିସଂଖ୍ୟାନରୁ ଜଣାଯାଏ ଯେ ଓଡିଶାରେ ତଥା ଭାରତରେ ଜନସଂଖ୍ୟାର ପ୍ରାୟ ଏକ ତୃତୀୟାଂଶ ଲୋକ ନିରକ୍ଷର ରହିଛନ୍ତି । ଓଡିଶାର କେତେକ ଆଦିବାସୀ ବହୁଳ ଜିଲ୍ଲାମାନଙ୍କରେ ନିରକ୍ଷର ଲୋକଙ୍କ ସଂଖ୍ୟା ପ୍ରାୟ ଅଧାଅଧି । ସେହିପରି ପନ୍ଦର ବର୍ଷ ପୂର୍ବରୁ ବିଦ୍ୟାଳୟ ଛାଡି ପାଠରେ ଡୋରି ବାନ୍ଧୁଥିବା ବା ଡ୍ରପ ଆଉଟ୍ ସଂଖ୍ୟା ମଧ୍ୟ କିଛି କମ୍ ନୁହେଁ । ଅବଶ୍ୟ ଅଣସ୍ୱାକ୍ଷର ବା ଅଶିକ୍ଷିତ ବ୍ୟକ୍ତିମାନେ କୌଣସି ପାରିବାରିକ

ବୃତ୍ତି ବା କାରିଗରୀ କାର୍ଯ୍ୟରେ କିଛିଟା ପଟୁତା ହାସଲ କରିବାର ଅନେକ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏପରିକି ବିଭିନ୍ନ ବୃତ୍ତିରେ ସ୍ୱାବଲମ୍ବୀ ହୋଇଥିବା ବହୁ ଅଶିକ୍ଷିତ ମଣିଷ ଉଚ୍ଚ ନୈତିକ ଗୁଣର ଅଧିକାରୀ ହେବା ସମ୍ଭବ । ସାଧୁତା, ସତ୍ୟବାଦିତା, ନିଷ୍ଠାପରତା, ସାମାଜିକ ଶୃଂଖଳାବୋଧ ଇତ୍ୟାଦି କ୍ଷେତ୍ରରେ ବହୁ ସାଧାରଣ ଅଶିକ୍ଷିତ ବ୍ୟକ୍ତି ବେଶ୍ ସଚେତନତା ପ୍ରକାଶ କରନ୍ତି । ସୁତରାଂ ମାନବିକ ମୂଲ୍ୟବୋଧ କହିଲେ ସାଧାରଣତଃ ଯାହା ବୁଝାଏ ତାହା ସାକ୍ଷରତା, ନିରକ୍ଷରତା ନିର୍ବିଶେଷରେ ବ୍ୟକ୍ତି ସ୍ୱଭାବରେ ରହିପାରେ । ସମାଜରେ ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତି ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ଲାଭ କରିଛନ୍ତି, ସେମାନେ ଯେ ନୀତିବାନ ଏହା କୁହାଯାଇପାରିବ ନାହିଁ । ସରକାରୀ ଉଚ୍ଚ ପଦ ପଦବୀରେ ଥିବା, ରାଜନୀତି କରୁଥିବା, ବଡ ବଡ ବ୍ୟବସାୟରେ ସଂପୃକ୍ତ ରହିଥିବା ବା ଆର୍ଥିକ ଦୃଷ୍ଟିରୁ ଅତ୍ୟନ୍ତ ସ୍ୱଚ୍ଛଳ ଥିବା ବ୍ୟକ୍ତିମାନେ ଯେ ନୀତିବାନ୍, ସାଧୁ ଏହା ମଧ ନୁହେଁ । ଶିକ୍ଷିତ ହେବା ଓ ନୀତିବାନ ହେବା ଦୁଇଟି ପୃଥକ୍ ପ୍ରଶ୍ନ । ନୀତିବାନ ହେବା, ଅସାଧୁ ପନ୍ଥା ପରିହାର କରିବା, ସମାଜ ପ୍ରତି ଉତ୍ତରଦାୟୀ ରହିବା, ମାନବିକ ମୂଲ୍ୟବୋଧକୁ ସମ୍ମାନ କରିବା ମହତ୍ତର ଜୀବନବୋଧର ପରିଚାୟକ । ସାକ୍ଷରତା-ନିରକ୍ଷରତା ନିର୍ବିଶେଷରେ ଏହା କେତେକ ବ୍ୟକ୍ତିଙ୍କ ଆଚରଣରେ ଦେଖାଯାଏ । ଜଣେ ସୁଯୋଗ ପାଇ ସାକ୍ଷର ବା ଶିକ୍ଷିତ ହୋଇପାରିଛନ୍ତି, ଅନ୍ୟ ଜଣେ ସେହି ସୁଯୋଗ ଅଭାବରୁ ଶିକ୍ଷା ଲାଭରୁ ବଞ୍ଚିତ ରହିଛନ୍ତି, ତେବେ ମଣିଷ ଭାବରେ ସେ ବେଶ୍ ଭଲ ହୋଇପାରନ୍ତି । ଅନେକ ଅପାଠୁଆ ବ୍ୟକ୍ତି ବେଶ୍ ଭଲ ମଣିଷ ହୋଇଥିବା ବେଳେ କିଛି ଉଚ୍ଚଶିକ୍ଷିତ ବ୍ୟକ୍ତି ଧୂର୍ତ୍ତ ହୋଇଥିବା ଏକ ସାଧାରଣ ଅନୁଭବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତେବେ ନିରକ୍ଷରତା ସାଂପ୍ରତିକ ଜୀବନ ପ୍ରବାହରେ ଏକ କଳଙ୍କ ବୋଲି ଗୃହୀତ ହେବାରେ ଲାଗିଛି । ସୁତରାଂ ପ୍ରତ୍ୟେକ ରାଷ୍ଟ୍ର ତାର ଜନମଙ୍ଗଳକାରୀ ଆଭିମୁଖ୍ୟରେ ନିରକ୍ଷରତା ଦୂର କରିବା ପାଇଁ ପ୍ରୟାସ କରିଆସୁଛି । ଯେଉଁ ରାଷ୍ଟ୍ର ସମୂହ ବିକଶିତ ସେ ଦେଶମାନଙ୍କରେ କୌଣସି ନାଗରିକ ନିରକ୍ଷର ରହିବା କଳ୍ପନାତୀତ । ପିଲାମାନଙ୍କୁ ଶିକ୍ଷା ଦେବା ପିତାମାତାଙ୍କର ଯେପରି ଏକ ନୈତିକ କର୍ତ୍ତବ୍ୟ, ରାଷ୍ଟ୍ରର ମଧ ସେହିପରି ଏକ ଦାୟିତ୍ୱ । କେବଳ ଆମ ଦେଶ ପରି ବିକାଶଶୀଳ ଦେଶମାନଙ୍କରେ ନିରକ୍ଷରତା ଏକ ଗମ୍ଭୀର ପ୍ରଶ୍ନ । ନିରକ୍ଷରତା ଦୂରୀକରଣ ପାଇଁ ତଥା ବିଦ୍ୟାଳୟ ଡ୍ରପ-ଆଉଟ୍‌କୁ ରୋକିବା ପାଇଁ ବହୁ ଜନହିତକାରୀ ଯୋଜନା ଦେଶରେ କାର୍ଯ୍ୟକାରୀ ହେଉଛି । ତଥାପି ସମସ୍ୟାଟିର ସମାଧାନ ହୋଇପାରୁ ନାହିଁ । ଆମ ଦେଶର ସମ୍ବିଧାନ ପ୍ରଣୟନ ବେଳେ ଏହି ଜାତୀୟ ସମସ୍ୟାଟି ଉପରେ ବେଶ୍ ଚର୍ଚ୍ଚା ହୋଇଥିବା ମନେହୁଏ । ରାଷ୍ଟ୍ର ସବୁ ପିଲାଙ୍କୁ ଚଉଦ ବର୍ଷ

ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ଦେବାର ଏକ ପବିତ୍ର ପ୍ରତିଶ୍ରୁତି ସମ୍ବିଧାନରେ ମଧ୍ୟ ଦିଆଯାଇଛି । ଏପରି କିଛି ସକାରାତ୍ମକ ପଦକ୍ଷେପ ସତ୍ତ୍ୱେ ସବୁ ନାଗରିକ ସ୍ୱାକ୍ଷର ହୋଇ ନପାରିବା ଆମ ଅନୁନ୍ନତ ସ୍ଥିତିର ପ୍ରମାଣ ଦିଏ ।

ପ୍ରତ୍ୟେକ ନାଗରିକକୁ ଶିକ୍ଷିତ କରିବା ପଶ୍ଚାତରେ ଏକ ଜାତୀୟ ଲକ୍ଷ୍ୟ ନିହିତ ଥାଏ । ରାଷ୍ଟ୍ରର ବିକାଶ ଓ ଜୀବନର ଗୁଣାତ୍ମକ ମାନ ଉନ୍ନତ କରିବାକୁ ନାଗରିକ ମାନଙ୍କର ସଚେତନତା ଅବଶ୍ୟମ୍ଭାବୀ ମନେହୁଏ । ରାଷ୍ଟ୍ରର ବିକାଶ ଓ ସାମାଜିକ ଉନ୍ନତି ବିଧାନରେ ପ୍ରତ୍ୟେକ ନାଗରିକ କିପରି ଏକ ସକ୍ରିୟ ଭୂମିକା ନେଇପାରିବ ସେହି ବିଚାର ପୃଷ୍ଠଭୂମିରେ ଶିକ୍ଷାକୁ ଏତେ ପ୍ରାଧାନ୍ୟ ଦିଆଯାଏ । ଜଣେ ବ୍ୟକ୍ତି ନିଜ ଜୀବନର ସକଳ ଆବଶ୍ୟକତା ପୂରଣ ପାଇଁ ଓ ସାମାଜିକ ବିକାଶ ପ୍ରକ୍ରିୟାରେ ନିଜକୁ ଭାଗିଦାରୀ କରିବା ପାଇଁ ତାର ଶିକ୍ଷା ଆବଶ୍ୟକ । ଅନ୍ୟ ଭାବରେ କହିଲେ ବ୍ୟକ୍ତି ଭିତରେ ସୃଜନଶୀଳ ସାମର୍ଥ୍ୟର ଉପଯୁକ୍ତ ବିକାଶ ଓ ସାମାଜିକ କର୍ତ୍ତବ୍ୟବୋଧ ପାଇଁ ସଚେତନତା ଶିକ୍ଷାର ଏକ ମୌଳିକ ଆଭିମୁଖ୍ୟ । ଏକ ସୁସ୍ଥ ସମାଜ ପାଇଁ ଶିକ୍ଷା ଓ ନାଗରିକ ସଚେତନତା ଯେ ଏକ ବଡ ଆବଶ୍ୟକତା ଏହା ମନେ ହୁଏ । ଏଠାରେ ଶିକ୍ଷା ଏକ ବୃହତ୍ତର ଓ ବ୍ୟାପକତର ଅର୍ଥରେ ବ୍ୟବହୃତ ହୁଏ ଯାହା ଆନୁଷ୍ଠାନିକ ଶିକ୍ଷାଠାରୁ ପୃଥକ୍ । ବ୍ୟକ୍ତି ଭିତରେ ସୃଜନାତ୍ମକ ସାମର୍ଥ୍ୟର ବିକାଶ, ମାନବୀୟ ମୂଲ୍ୟବୋଧ ନେଇ ସଚେତନତା ଓ ନାଗରିକ କର୍ତ୍ତବ୍ୟବୋଧ ନେଇ ସକାରାତ୍ମକ ଜୀବନଦୃଷ୍ଟି ଶିକ୍ଷାର ବ୍ୟାପକତର ଆଭିମୁଖ୍ୟ ଅଟେ । ଏହି ଦୃଷ୍ଟିରୁ ଶିକ୍ଷା କେବଳ ଆନୁଷ୍ଠାନିକ ଶିକ୍ଷାର ପରିସରରେ ସୀମିତ ନୁହେଁ ।

ଶିକ୍ଷା-ଦର୍ଶନରେ ବ୍ୟକ୍ତିର ଶିକ୍ଷା ସଂକ୍ରାନ୍ତରେ ଏକ ସିଦ୍ଧାନ୍ତ ରହିଛି । ଗୋଟିଏ ମତ ହେଉଛି ପିଲାର ମନ ହେଉଛି ଏକ ଧଳା କାଗଜ ସଦୃଶ । ପିଲାଟିଏ ନିଜ ପରିବାରରୁ, ସାମାଜିକ ପରିବେଷ୍ଟନୀରୁ ଓ ଶିକ୍ଷାନୁଷ୍ଠାନରୁ ଯାହା ସେହି ଆଦ୍ୟ ଅବସ୍ଥାରେ ଜାଣିବାକୁ ପାଏ ତାହା ତାର ମାନସ ପଟରେ ଲିପିବଦ୍ଧ ହୋଇଯାଏ । ତାର ବ୍ୟକ୍ତିତ୍ୱର ବିକାଶରେ ତାର ଅନୁଭବ ଓ ସଂପର୍କର ପ୍ରତିକ୍ରିୟା ମୁଖ୍ୟ ଭୂମିକା ନେଇଥାଏ । ସୁତରାଂ ସାମାଜିକ ଜୀବନର ଘଟଣା ପ୍ରବାହ ପିଲାଟି ମନରେ ଯେଉଁ ଅଲିଭା ଦାଗ ସୃଷ୍ଟିକରେ ତାହା ତା'ର ଜୀବନ ପ୍ରବାହକୁ ଗଭୀର ଭାବେ ପ୍ରଭାବିତ କରିଥାଏ । ଏଣୁ କେତେକ ମନସ୍ତତ୍ତ୍ୱବିତ୍‌ଙ୍କ ମତରେ ସାମାଜିକ ଜୀବନର ସୃଜନଶୀଳ ମୂଲ୍ୟବୋଧ ଗୁଡିକୁ ପ୍ରାଥମିକ ସ୍ତରରୁ ଯଦି ପିଲାଙ୍କୁ ଶିକ୍ଷା ଦିଆଯାଇ ପାରିବ, ତେବେ ଏକ ସୁସଂହତ ସମାଜ ଉଦ୍‌ଭବ ହୋଇପାରିବ । ଏହି ବିଚାର ପଶ୍ଚାତରେ ଏହି ଭାବନା ନିହିତ ରହିଛି ଯେ ଏକ ଉପଯୁକ୍ତ ଶୈକ୍ଷିକ ବାତାବରଣ ଏକ ଉନ୍ନତ ଓ ସୁସ୍ଥ ସମାଜର ବକାଶ ପାଇଁ ଅବଶ୍ୟମ୍ଭାବୀ ।

ଏହି ପରିପ୍ରେକ୍ଷୀରେ ଆନୁଷ୍ଠାନିକ ଶିକ୍ଷା ଶିକ୍ଷାର ସବୁ କିଛି ନୁହେଁ । ବରଂ ଏପରି ମଧ୍ୟ ସମ୍ଭବ ଯେ ଉଚ୍ଚ ଡିଗ୍ରୀ ପ୍ରାପ୍ତ ସାକ୍ଷର ବ୍ୟକ୍ତିମାନେ ମାନବିକ ମୂଲ୍ୟବୋଧ, ସାଧୁତା ପାଳନ କ୍ଷେତ୍ରରେ କୌଣସି ବିଶେଷ ସଂପୃକ୍ତି ବ୍ୟକ୍ତ କରନ୍ତି ନାହିଁ । ଯେକୌଣସି ପନ୍ଥାରେ ସ୍ୱାର୍ଥ ସାଧନ କରିବା, ଅନ୍ୟ ପ୍ରତି ବିଦ୍ୱେଷପୂର୍ଣ୍ଣ ମନୋଭାବ ପୋଷଣ କରିବା ଓ ବିଚାରଶୀଳତାକୁ କୌଣସି ମହତ୍ତ୍ୱ ନ ଦେବା ଅତି ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନଙ୍କ ପାଖରେ ଦେଖାଯାଏ । ଆନୁଷ୍ଠାନିକ ଶିକ୍ଷା ହୁଏତ ଗୋଟିଏ କର୍ମସଂସ୍ଥାନ ପାଇବାରେ ବ୍ୟକ୍ତିକୁ ସାହାଯ୍ୟ କରୁଛି କିନ୍ତୁ ବ୍ୟକ୍ତିର ଚରିତ୍ର, ଜୀବନଦୃଷ୍ଟିକୁ ଯେପରି ଗଢ଼ିବା କଥା ତାହା କରିପାରୁ ନାହିଁ । ବିଚାରସଂପନ୍ନ ହେବା, ମାନବିକ ମୂଲ୍ୟବୋଧକୁ ପ୍ରାଧାନ୍ୟ ଦେବା ଓ ସମାଜର ସୁସ୍ଥ ବିକାଶ ପ୍ରକ୍ରିୟାରେ ନିଜକୁ ସାମିଲ କରିବା କ୍ଷେତ୍ରରେ ଯଦି ଆନୁଷ୍ଠାନିକ ଶିକ୍ଷା ବ୍ୟକ୍ତିକୁ ପ୍ରଭାବିତ କରିପାରୁନାହିଁ, ତେବେ ଶିକ୍ଷା ବ୍ୟବସ୍ଥାରେ ଯେ ବଡ ସଂସ୍କାର ଆବଶ୍ୟକ ଏହା ମନେହୁଏ ।

ଆମ ଦେଶର ଜୀବନ ପ୍ରବାହରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଯେ କୌଣସି ମହତ୍ତର ମୂଲ୍ୟବୋଧର ପ୍ରସାରରେ ବିଶେଷ ବଡ ଭୂମିକା ନେଇ ପାରୁନାହିଁ ଏହା ଏକ ବଡ ଅନୁଭବ ଅଟେ । ଶିକ୍ଷାନୁଷ୍ଠାନ ମାନ ଯେତିକି ବେସରକାରୀ ଉଦ୍ୟମରେ ସ୍ଥାପିତ ହେଉଛି, ସେଠାରେ ଏହା ଏକ ବ୍ୟାବସାୟିକ ଆଭିମୁଖ୍ୟ ନେଉଛି । ଶିକ୍ଷା ଓ ବିଶେଷକରି ଆନୁଷ୍ଠାନିକ ବୈଷୟିକ ଉଚ୍ଚଶିକ୍ଷା କ୍ରମବର୍ଦ୍ଧିଷ୍ଣୁ ଭାବେ ଘରୋଇ ପରିଚାଳନା କ୍ଷେତ୍ରକୁ ଚାଲିଯାଉଛି । ହୁଏତ କେହି କେହି ମହତାକାଂକ୍ଷୀ ବ୍ୟକ୍ତି ଘରୋଇ ଉଦ୍ୟମରେ ଶିକ୍ଷାନୁଷ୍ଠାନ ମାନ ପ୍ରତିଷ୍ଠା କରି ଉଚ୍ଚମାନର ବୈଷୟିକ ଶିକ୍ଷା ଦେବାକୁ ପ୍ରୟାସ କରୁଛନ୍ତି, ତେବେ କାଳକ୍ରମେ ଶିକ୍ଷା ସହ ଚାକିରି ଓ ଉଚ୍ଚ ବେତନ ହିଁ ଆଭିମୁଖ୍ୟ ହୋଇଯାଉଛି । ଅପର ପକ୍ଷରେ ବିଭିନ୍ନ ସ୍ତରରେ ସରକାରୀ ସ୍କୁଲ, କଲେଜମାନ ସମାଜର ତଳେ ପଡିଥିବା ପିଲାମାନଙ୍କ ପାଇଁ ଶେଷ ଆଶ୍ରୟସ୍ଥଳ ହେଉଛି । ସରକାରୀ ଶିକ୍ଷାନୁଷ୍ଠାନ ମାନଙ୍କ ପ୍ରତି ସମାଜର ଶିକ୍ଷିତ, ସଚେତନ ବର୍ଗର ଆଗ୍ରହ କମିବାରେ ଲାଗିଛି । ଆମ ଦେଶର ପ୍ରଚଳିତ ଶିକ୍ଷା ବ୍ୟବସ୍ଥାରୁ ସାମାଜିକ ବିଭାଜନ ଓ ଆର୍ଥିକ ବୈଷମ୍ୟ ଯେ ପରିଲକ୍ଷିତ ହେଉଛି ତା ନୁହଁ, ଏହା ଭବିଷ୍ୟତ ପାଇଁ ଏକ ଭେଦଭାବ ମୂଳକ ପରିସ୍ଥିତି ସୃଷ୍ଟି କରିବାକୁ ଯାଉଛି । ଏହା ସହିତ ବୈଜ୍ଞାନିକ ମନୋଭାବ, ନୀତିବୋଧ, ବୃହତ୍ତର ସମାଜ ପ୍ରତି ଅଙ୍ଗୀକାରବଦ୍ଧତା ଶିକ୍ଷାର ମୌଳିକ ଲକ୍ଷ୍ୟ ଭିତରେ ପ୍ରତିଫଳିତ ହେଉନାହିଁ । ଶିକ୍ଷା ବ୍ୟବସ୍ଥାଟି କଳୁଷିତ ହେଉଥିବା ମନେ ହେଉଛି । ଏହି ଦୃଷ୍ଟିରୁ ଏହାର ସୁଦୂରପ୍ରସାରୀ ପରିଣାମ ସମାଜ ପାଇଁ ଯେ ମଙ୍ଗଳକର ନୁହେଁ ଏହା ମନେହୁଏ । (୨୫.୬.୨୦୧୪)



# ଲୋକଶିକ୍ଷା: ଏକ ଦୃଷ୍ଟିପାତ

ସଭ୍ୟତା ଯେତିକି ଅଗ୍ରସର ହେଉଛି, ଶିକ୍ଷା ଉପରେ ଗୁରୁତ୍ୱ ସେତିକି ବୃଦ୍ଧି ପାଉଛି । କାରଣ ସଭ୍ୟ ହେବାର ଏକ ତାତ୍ପର୍ଯ୍ୟ ହେଉଛି ଶିକ୍ଷିତ ହେବା । ଶିକ୍ଷା ଓ ସଭ୍ୟତା ଭିତରେ ଏକ ନିବିଡ ସଂପର୍କ ରହିବା ମନେହୁଏ । ସଂପ୍ରତି ଶିକ୍ଷା ସମାଜର ସଂଭ୍ରାନ୍ତ ବର୍ଗର ଏକାଧିପତ୍ୟ ଅଧିକାରର ବିଷୟ ନୁହେଁ । ଅତୀତରେ ନାନା କାରଣରୁ ଏହା ସମାଜର କେବଳ ସଂଭ୍ରାନ୍ତବର୍ଗର ଅଧିକାରର ବିଷୟ ଥିଲା । ଧୀରେ ଧୀରେ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ସହ ଶିକ୍ଷା ପ୍ରତ୍ୟେକ ବ୍ୟକ୍ତିର ଅଧିକାରର ବିଷୟ ହେଲା । ବିଶେଷକରି ଜନମଙ୍ଗଳକାରୀ ରାଷ୍ଟ୍ରୀୟ ଚେତନାର ବିକାଶ ଓ ପ୍ରତ୍ୟେକ ବ୍ୟକ୍ତି ମର୍ଯ୍ୟାଦାର ସହ ଜୀବନ ବଞ୍ଚିବାର ଅଧିକାରରୁ ଏହି ଭାବନା ଆସିଲା ଯେ ପ୍ରତ୍ୟେକ ବ୍ୟକ୍ତି ଶିକ୍ଷାଲାଭ କରିବା ଆବଶ୍ୟକ । ଶିକ୍ଷା ଧୀରେ ଧୀରେ ସାର୍ବଜନୀନ ହେବାକୁ ଲାଗିଲା । ବିଶ୍ୱର ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ର ଏକ ଶିକ୍ଷଣ ସମାଜର ବିକାଶ ଦିଗରେ ସହାୟକ ହେଲା । ଫଳତଃ ଶିକ୍ଷାର ସଂଜ୍ଞା, ପ୍ରୟୋଗ, ମାନବୃଦ୍ଧି ଲକ୍ଷ୍ୟ ନେଇ ଆଲୋଚନା ଚାଲିଲା । ଆନୁଷ୍ଠାନିକ ଶିକ୍ଷା ବାହାରେ ଶିକ୍ଷାର ବ୍ୟାପକ କ୍ଷେତ୍ର ଓ ନିରନ୍ତର ବିକାଶଧାରାକୁ ସ୍ୱୀକାର କରାଗଲା ।

ସମାଜ ଯେହେତୁ ଏକ ଚିରସ୍ଥାୟୀ ସଂଗଠନ ଓ କ୍ରମପରିବର୍ତ୍ତନଶୀଳ, ଶିକ୍ଷା କ୍ଷେତ୍ରରେ ଗୁଣାତ୍ମକ ଅଭିବୃଦ୍ଧିକୁ ଅଧିକାଂଶ ରାଷ୍ଟ୍ର ପ୍ରାଧାନ୍ୟ ଦେଲେ । ପ୍ରତ୍ୟେକ ରାଷ୍ଟ୍ର ଦେଶର ଶିକ୍ଷା ବ୍ୟବସ୍ଥାକୁ ଅଧିକ ଉନ୍ନତ ଓ ସମୟ ଉପଯୋଗୀ କରିବାକୁ ପ୍ରୟାସ କଲା । ଗୋଟିଏ ସମୟରେ ସମାଜରୁ ନିରକ୍ଷରତା ଦୂର କରିବାକୁ ଅନଗ୍ରସର ରାଷ୍ଟ୍ରମାନଙ୍କରେ ବିଶେଷ ଉଦ୍ୟମ ମାନ ଆରମ୍ଭ ହୋଇଥିଲା । ସମାଜର ଯେଉଁ ଲୋକମାନେ ସୁବିଧା, ସୁଯୋଗ ଓ ପରିବେଶ ଅଭାବରୁ ସାକ୍ଷର ହେବାର ଅବକାଶ ପାଇନାହାନ୍ତି, ସେମାନେ କିପରି ସାକ୍ଷର ହୋଇପାରିବେ ଏଥିପାଇଁ ପ୍ରୌଢଶିକ୍ଷାର ଭାବନା ଆସିଥିଲା । ସଂପ୍ରତି ପ୍ରୌଢ଼ଶିକ୍ଷା ପରିବର୍ତ୍ତେ ଜନଶିକ୍ଷା, ଲୋକଶିକ୍ଷାର ଭାବନା ମାନ ବିଭିନ୍ନ ଦେଶରେ ବିକଶିତ ହୋଇଛି । ଏହାର ଏକ ବୃହତ୍ତର ଓ ମହତ୍ତର ଲକ୍ଷ୍ୟ ମଧ୍ୟ ରହିଛି । ପ୍ରତ୍ୟେକ ନାଗରିକ ସାମାଜିକ ବିକାଶ ପ୍ରକ୍ରିୟାରେ କିପରି ସକ୍ରିୟ ଭୂମିକା ନେଇପାରିବ ସେଥିପାଇଁ ଆନୁଷ୍ଠାନିକ

ବା ଅଣଆନୁଷ୍ଠାନିକ ଶିକ୍ଷା ମାଧ୍ୟମରେ ତାକୁ ପ୍ରଶିକ୍ଷିତ କରିବାକୁ ଲୋକଶିକ୍ଷା ବା ..
କୁହାଯାଉଛି । ତେବେ ଯେଉଁମାନେ ବିଶ୍ୱବିଦ୍ୟାଳୟ ଶିକ୍ଷାଠାରୁ ଦୂରରେ ରହି ମଧ୍ୟ ସାମାଜିକ ବିକାଶ ଧାରାରେ ନିଜର ଭୂମିକା ନିର୍ବାହ କରୁଛନ୍ତି ସେହିମାନେ ହିଁ ଅଣଆନୁଷ୍ଠାନିକ ଶିକ୍ଷା ପ୍ରାପ୍ତ ହେଉଛନ୍ତି, ଯାହାକୁ ଲୋକଶିକ୍ଷା ଭାବେ ନାମିତ କରାଯାଉଛି ।

କେତେକ ବିକାଶଶୀଳ ଦେଶରେ ନିରକ୍ଷରତା ଜନିତ ସମସ୍ୟା ଏକବିଂଶ ଶତାବ୍ଦୀରେ ବି ରହିଛି । ତେବେ ବିକଶିତ ରାଷ୍ଟ୍ରମାନଙ୍କରେ ଏ ସମସ୍ୟା ନାହିଁ । ସବୁ ଲୋକ ସେଠାରେ କିଛି ପଢ଼ିଛନ୍ତି, ଲେଖା ପଢ଼ା ଜାଣନ୍ତି । ଦେଶ ଦୁନିଆରେ କ'ଣ ଘଟୁଛି ସେ ବିଷୟରେ ଖବର ରଖନ୍ତି । ଖବର କାଗଜ ପଢ଼ନ୍ତି, ରେଡିଓ ଓ ଦୂରଦର୍ଶନରୁ ସମ୍ବାଦ ଶୁଣନ୍ତି ଓ ଦେଶ ଦୁନିଆ ଭିତରର ବିଷୟ ଜାଣିବାକୁ ଆଗ୍ରହ ପ୍ରକାଶ କରନ୍ତି । ତେବେ ସବୁ ଦେଶରେ ଅଗଣିତି ମଣିଷ ବିଭିନ୍ନ ବୃତ୍ତି କରି ଜୀବିକା ନିର୍ବାହ କରନ୍ତି । ସମାଜରେ ବହୁ ବୃତ୍ତି ରହିଛି, ଜଣେ ବୟସ୍କ ନାଗରିକ ଯେକୌଣସି କର୍ମସଂସ୍ଥାନ ଭିତରେ ରହି ନିଜକୁ ସ୍ୱାବଲମ୍ବୀ କରିପାରିବ । ଲୋକଶିକ୍ଷା ସମାଜର ସବୁ ଶ୍ରେଣୀର ଲୋକମାନଙ୍କ ପାଇଁ ବିଭିନ୍ନ ଯୋଜନା ଓ ପରିକଳ୍ପନା ମାନ ସୃଷ୍ଟି କରିଛି । କୃଷକ, କୃଷିଶ୍ରମିକ, କଳକାରଖାନାର ଶ୍ରମିକ, ବିଭିନ୍ନ କୁଟୀରଶିଳ୍ପ କରି ଜୀବିକା ନିର୍ବାହ କରୁଥିବା ବ୍ୟକ୍ତିବିଶେଷ, ସମାଜର କାରିଗର ଶ୍ରେଣୀ, ପରିବହନରେ କାର୍ଯ୍ୟ କରୁଥିବା ଲୋକମାନେ ଏ ସମସ୍ତଙ୍କ ପାଇଁ ଲୋକଶିକ୍ଷାର ପ୍ରୟୋଜନିୟତା ରହିଛି । ଏପରିକି ଯେଉଁମାନେ ବୈଷୟିକ ଶିକ୍ଷା ପ୍ରାପ୍ତ ବ୍ୟକ୍ତି ସେମାନେ ମଧ୍ୟ ନିଜ ବୃତ୍ତି ବାହାରେ ଅନ୍ୟ କିଛି ନିଜର ରୁଚି ଅନୁଯାୟୀ ଶିକ୍ଷା କରିପାରିବେ । ବିଭିନ୍ନ ବିଷୟରେ ଲୋକମାନଙ୍କୁ ତାଲିମ ଦେବା, ସର୍ବନିମ୍ନ ବିଷୟ ଜଣାଇବା, ବୈଜ୍ଞାନିକ ପଦ୍ଧତି ବିଷୟରେ ସଚେତନ କରାଇ ସେମାନଙ୍କର କାର୍ଯ୍ୟଦକ୍ଷତା ବୃଦ୍ଧି କରିବା ପାଇଁ ଚେଷ୍ଟା କରିବା ଏସବୁ ଲୋକଶିକ୍ଷାର ପରିସରଭୁକ୍ତ । ସୁତରାଂ ଲୋକଶିକ୍ଷା କେବଳ ନିରକ୍ଷରତା ଦୂରୀକରଣ ଜନିତ ଏକ କାର୍ଯ୍ୟକ୍ରମ ନୁହେଁ, ବରଂ ଏହାର ଏକ ବ୍ୟାପକ ପରିସର ଥିବା ମନେହୁଏ । ସେଥିପାଇଁ ବିଭିନ୍ନ ଦେଶରେ ଗୋଟିଏ ବିସ୍ତୃତ ପରସରରେ ଲୋକଶିକ୍ଷା କାର୍ଯ୍ୟକ୍ରମ ମାନ ଗ୍ରହଣ କରାଯାଉଛି । ରାଷ୍ଟ୍ର ନିର୍ମାଣ ଓ ସମାଜର ବିକାଶ ପ୍ରକ୍ରିୟାରେ ସମାଜର ବୃହତ୍ତର ଜନଗୋଷ୍ଠୀର ସକ୍ରିୟ ଓ ପ୍ରତ୍ୟକ୍ଷ ସହଯୋଗ କିପରି ନେଇହେବ ଓ ସେଥିପାଇଁ ଜନଗଣଙ୍କୁ ପ୍ରଶିକ୍ଷିତ କରାଯିବ ଏହା ହିଁ ଲୋକଶିକ୍ଷାର ମୁଖ୍ୟ ଉଦ୍ଦେଶ୍ୟ ।

ଧନ୍ଦାମୂଳକ ଶିକ୍ଷା ଦେବା ବା ଲୋକମାନଙ୍କୁ ସ୍ୱାବଲମ୍ବନଶୀଳ ହୋଇ ଜୀବନ ନିର୍ବାହ କରିବା ବାହାରେ ଆହୁରି ଅନେକ କିଛି ବିଷୟରେ ଜନମାନସକୁ ଶିକ୍ଷା ଦିଆଯାଇ ପାରିବ । ସୁତରାଂ ଲୋକଶିକ୍ଷା ବିଭିନ୍ନ କ୍ଷେତ୍ରରେ ସାମାଜିକ ଚେତନାର ସ୍ତରକୁ କିପରି ବୃଦ୍ଧି କରି ହେବ ସେଥିପାଇଁ ପ୍ରୟାସ କରିଥାଏ । ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଜନିତ

ସର୍ବନିମ୍ନ ଶିକ୍ଷା ପ୍ରତ୍ୟେକ ସଚେତନ ବ୍ୟକ୍ତି ରଖିବା ଆବଶ୍ୟକ । ରୋଗ ପ୍ରତିଷେଧକ ବ୍ୟବସ୍ଥା କ'ଣ, କଣ ପ୍ରତିଷେଧକ ବ୍ୟବସ୍ଥା ନେଲେ ରୋଗରୁ ମୁକ୍ତ ରହିପାରିବା, ପରିବେଶ ନେଇ ସଚେତନତା କାହିଁକି ରଖିବା ଦରକାର, ପରିବେଶ ପ୍ରଦୂଷଣକୁ କିପରି ପ୍ରତିହତ କରାଯାଇ ପାରିବ ଏସବୁ ବିଷୟ ଉପରେ ସାମାଜିକ ଚେତନାର ସ୍ତର ବଢ଼ିବା ଆବଶ୍ୟକ । ନାଗରିକ ଶୃଂଖଳାବୋଧ ଓ କର୍ତ୍ତବ୍ୟ କାହିଁକି ଜଣେ ମାନିବ ବା କରିବ, ନାଗରିକ ଅଧିକାର ନେଇ ସଚେତନତା, ଏକ ଜନମଙ୍ଗଳକାରୀ ରାଷ୍ଟ୍ରରେ ବ୍ୟକ୍ତିର ରାଜନୈତିକ ସଚେତନତା କାହିଁକି ଦରକାର ଏ ବିଷୟରେ ପ୍ରତ୍ୟେକ ନାଗରିକ ଜାଣିବା ଉଚିତ । ସମାଜରେ ବିଭିନ୍ନ ଲୋକଙ୍କର ବିଭିନ୍ନ ପ୍ରକାରର ରୁଚି ରହିପାରେ । ସଂଗୀତ, ନାଟକ କଳା, ଖେଳ, ବାଦ୍ୟ, ନୃତ୍ୟ, ମୂର୍ତ୍ତି ନିର୍ମାଣ ଇତ୍ୟାଦି ବହୁ ବିଷୟ ରହିଛି ଓ କାହାର କେଉଁଥିରେ ଆଗ୍ରହ ବା ପାରଦର୍ଶିତା ରହିଥାଇ ପାରେ । ବ୍ୟକ୍ତି ଭିତରର ସୃଜନ ପ୍ରତିଭାକୁ କିପରି ବିକଶିତ କରିହେବ, ସେଥି ପାଇଁ କଣ ସୁବିଧା ସୁଯୋଗ ରହିଛି ଏ ବିଷୟରେ ସାଧାରଣ ଲୋକ ଜାଣିବା ଦରକାର । ଏପରିକି ଶିକ୍ଷା ସମାପ୍ତ ପରେ ଯେଉଁମାନଙ୍କ ଭିତରେ ବୌଦ୍ଧିକ ଅନୁସନ୍ଧିତ୍ସା ରହୁଛି ଓ ଯେଉଁମାନେ କୌଣସି କ୍ଷେତ୍ରରେ ଅଭାବବୋଧର ଅନୁଭବ କରୁଛନ୍ତି ସେମାନଙ୍କ ପାଇଁ ନିଜର ଜ୍ଞାନର ପରିସରକୁ ବୃଦ୍ଧି କରିବା ପାଇଁ ସୁଯୋଗ ସୃଷ୍ଟି କରାଯିବା ଆବଶ୍ୟକ । ସୁତରାଂ ସମାଜର ବିଭିନ୍ନ ବର୍ଗର ଜନଗଣଙ୍କର ବୌଦ୍ଧିକ, ସାଂସ୍କୃତିକ ଓ ଶୈକ୍ଷିକ ଅଭାବବୋଧ ଦୂର କରିବା ପାଇଁ ଜନଶିକ୍ଷା ମାଧ୍ୟମରେ ବିଭିନ୍ନ ଦେଶରେ ପ୍ରୟାସ କରାଯାଉଛି ।

ଏହି ଲକ୍ଷ୍ୟ ହାସଲ ପାଇଁ ସଂପ୍ରତି ଆଧୁନିକ ପ୍ରଯୁକ୍ତି ଯଥେଷ୍ଟ ସହାୟକ ହୋଇପାରୁଛି । ରେଡିଓ, ଟେଲିଭିଜନ, ବିଭିନ୍ନ ଗଣମାଧ୍ୟମ ଲୋକମାନଙ୍କୁ ଏ ବିଷୟରେ ସଚେତନ କରାଇ ପାରୁଛନ୍ତି । ତା ସହିତ ବିଭିନ୍ନ ପ୍ରସଙ୍ଗରେ ବିଭିନ୍ନ ସୁଖପାଠ୍ୟ ପୁସ୍ତକମାନ କେତେକାଂଶରେ ଉପଲବ୍ଧ ହୋଇପାରୁଛି । ଏହା ସହିତ ବିଭିନ୍ନ ବିଷୟରେ ଲୋକମାନଙ୍କୁ ଆବଶ୍ୟକୀୟ ସୂଚନା ଦେବା ପାଇଁ ବିଭିନ୍ନ ଦେଶର ସରକାରମାନେ ବିଭିନ୍ନ ବ୍ୟବସ୍ଥା ପ୍ରଚଳନ କରୁଛନ୍ତି । ଏକବିଂଶ ଶତାବ୍ଦୀରେ ସାମାଜିକ ପରିବର୍ତ୍ତନ ଯେପରି ଦ୍ରୁତତର ହୋଇଚାଲିଛି ସେହି ପରିବର୍ତ୍ତନ ସହ ଲୋକମାନେ କିପରି ଅଭ୍ୟସ୍ତ ହୋଇ ଜୀବନ ନିର୍ବାହ କରିବେ ଏଥିପାଇଁ ବିଭିନ୍ନ ସ୍ତରରେ ପ୍ରୟାସ ହେଉଛି । ପରିବର୍ତ୍ତନରେ ସାମିଲ ହେବା ଓ ନିଜର ସୃଜନଶୀଳ ଅବଦାନଦ୍ୱାରା ସାମାଜିକ ବିକାଶ ପ୍ରକ୍ରିୟାକୁ ଆଗକୁ ନେବା ଲୋକଶିକ୍ଷାର ଏକ ମୁଖ୍ୟ ଉଦ୍ଦେଶ୍ୟ ।

ଆମ ଦେଶ ପରି ବିକାଶଶୀଳ ରାଷ୍ଟ୍ର ମାନଙ୍କରେ ଲୋକଶିକ୍ଷାର ଯଥେଷ୍ଟ ଉପଯୋଗିତା ରହିଛି । ସ୍ୱାଧୀନତା ପରଠାରୁ ପଞ୍ଚବାର୍ଷିକ ଯୋଜନା ମାଧ୍ୟମରେ ଲୋକଶିକ୍ଷାକୁ ସରକାର ମଧ୍ୟ ପ୍ରାଧାନ୍ୟ ଦେଇ ଆସିଛନ୍ତି । ପ୍ରାୟ ପ୍ରତ୍ୟେକ ରାଜ୍ୟରେ "ଜନଶିକ୍ଷା ସାଧନ

କେନ୍ଦ୍ର" ମାନ ପ୍ରତିଷ୍ଠା କରାଯାଇ କିଛି କିଛି ଉଦ୍ୟମ ଏ ଦିଗରେ ହେଉଛି । ତଥାପି ରାଷ୍ଟ୍ରୀୟ ସ୍ତରରେ ଏହା ଯଥେଷ୍ଟ ସଫଳତା ହାସଲ କରିପାରି ନାହିଁ । "ସାକ୍ଷର ଭାରତ" ଯୋଜନା ମାଧ୍ୟମରେ ସମାଜରୁ ନିରକ୍ଷରତା ଦୂରୀକରଣ ପାଇଁ ପ୍ରୟାସ ସତ୍ତ୍ୱେ ଏବେ ବି ସମାଜର ଏକ ତୃତୀୟାଂଶ ବ୍ୟକ୍ତି ନିରକ୍ଷର ରହିଛନ୍ତି । ଏହାଠାରୁ ଆହୁରି ଦୁର୍ଭାଗ୍ୟର ବିଷୟ ହେଉଛି ସମାଜରେ ନାନା କୁସଂସ୍କାର, ଅହେତୁକ ବିଶ୍ୱାସ, ଧାର୍ମିକ ବିଶ୍ୱାସ ଜନିତ ସାଂପ୍ରଦାୟିକ ତିକ୍ତତା ରହିଛି ଓ ତାହା ହ୍ରାସ ହେଉ ନାହିଁ । ନାନା ଅହେତୁକ କର୍ମକାଣ୍ଡ, ଅବୈଜ୍ଞାନିକ ମାନସିକତା, ପରିବେଶ ଧ୍ୱଂସକାରୀ ନାନା ପରଂପରା ସମାଜରେ ବ୍ୟାପକ ଭାବେ ରହିଛି । ଏପରିକି କେତେକ କୁସଂସ୍କାର ଯାହା ଏକଦା ଆଞ୍ଚଳିକ ହୋଇ ରହିଥିଲା ତାହା ସକ୍ରିୟ ଗଣମାଧ୍ୟମ ଯୋଗୁ ଜନମାନସରେ ବିସ୍ତାରିତ ହୋଇଚାଲିଛି । ପାରଲୌକିକ ବିଶ୍ୱାସ, ନାନା ପୂଜାପାର୍ବଣ ଓ କର୍ମକାଣ୍ଡ ଅହେତୁକ ଭାବେ ବୃଦ୍ଧି ପାଉଛି । ବିଚାରସଂପନ୍ନ ଦୃଷ୍ଟିକୋଣ, ସମ୍ବେଦନଶୀଳ ମାନବବାଦୀ ଜୀବନଦୃଷ୍ଟି ସମାଜରେ ବ୍ୟାପକ ହୋଇପାରୁ ନାହିଁ । ଯେତେ ମହିଳା ସଶକ୍ତିକରଣ କଥା କୁହାଗଲେ ମଧ୍ୟ ନାରୀ ନିର୍ଯ୍ୟାତନା ସମାଜରେ ବୃଦ୍ଧି ପାଇବାରେ ଲାଗିଛି । ସ୍ୱାଧୀନତା ଆନ୍ଦୋଳନ କାଳରେ ଏକ ଜାତିମୁକ୍ତ ସମାଜର ଯେଉଁ ସ୍ୱପ୍ନ ରହିଥିଲା ତାହା ଏବେ ବି ସୁଦୂରପ୍ରସାରୀ ହୋଇ ରହିଛି । ବରଂ ଜାତିଗତ ବୈଷମ୍ୟ, ଭେଦଭାବ ସମାଜରେ ଅତୁଟ ରହିଛି । ସାଂପ୍ରଦାୟିକ ବିଷଜ୍ୱାଳା ବେଳେ ବେଳେ ଉଗ୍ରରୂପ ନେଇ ଦଙ୍ଗାର ପରିବେଶ ସୃଷ୍ଟି କରୁଛି । ଏହିପରି ନାନା ସାମାଜିକ ମନ୍ଦ ସ୍ଥିତି ଜନଜୀବନରେ ବ୍ୟାପକ ହୋଇ ରହିଛି । ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ସମାଜର ଅଗଣିତ ବ୍ୟକ୍ତି ନାଗରିକ କର୍ତ୍ତବ୍ୟବୋଧ ନେଇ ଯଥେଷ୍ଟ ସଚେତନତା ପ୍ରକାଶ କରୁନାହାନ୍ତି । ଆଇନକୁ ହାତକୁ ନେବା, ଜନଜୀବନକୁ ଅସ୍ତବ୍ୟସ୍ତ କରିବା, ନିଜର କର୍ତ୍ତବ୍ୟ କ୍ଷେତ୍ରରେ ଉତ୍ତରଦାୟିତ୍ୱବୋଧ ନ ରଖିବା ଆମ ଜନଜୀବନର ସାଧାରଣ ଘଟଣା । ଏହି ପୃଷ୍ଠଭୂମିରେ ଜନଜୀବନକୁ ଉନ୍ନତ କରିବାକୁ ହେଲେ "ଲୋକଶିକ୍ଷା" କାର୍ଯ୍ୟକ୍ରମରେ ଅନେକ କିଛି କରିବାର ରହିଛି । ବିଶେଷକରି ଲୋକମାନଙ୍କୁ ବିଚାରବୁଦ୍ଧିସଂପନ୍ନ କରାଇବା, ଜନମାନସରେ ବୈଜ୍ଞାନିକ ସଚେତନତା ସୃଷ୍ଟି କରିବା, ମାନବବାଦୀ ମୂଲ୍ୟବୋଧର ପ୍ରସାର ଘଟାଇବା, ସାମାଜିକ ସମତା ଭାବନାର ପ୍ରସାର କରି ସାମାଜିକ ଭେଦଭାବର ମୂଳୋତ୍ପାଟନ କରିବା, ଧାର୍ମିକ ବିଶ୍ୱାସ ନିର୍ବିଶେଷରେ ଶାନ୍ତିପୂର୍ଣ୍ଣ ଓ ଭାତୃତ୍ୱଭାବର ପରିବେଶ ଆଣିବା "ଲୋକଶିକ୍ଷା"ର ଆଭିମୁଖ୍ୟ ହେବା ଦରକାର । ଏହା ସଫଳ ହେଲେ ଏକ ଉନ୍ନତ ସମାଜର ଭିତ୍ତି ସୁଦୃଢ଼ ହୋଇ ପାରିବ ।

(୯.୭.୧୪)



# ଲୋକଶିକ୍ଷା ଓ ନାଗରିକ ସମାଜ

ଏକ ଶିକ୍ଷଣ-ସମାଜ ପ୍ରତିଷ୍ଠା ପାଇଁ ପ୍ରତ୍ୟେକ ଜନମଙ୍ଗଳକାରୀ ରାଷ୍ଟ୍ରରେ କିଛି ପ୍ରୟାସ ହୋଇଆସୁଛି । ଶିକ୍ଷଣ ସମାଜ କହିଲେ ସମାଜର ସମସ୍ତ ନାଗରିକ ଓ ବିଶେଷତଃ ବୟସ୍କ ନାଗରିକ ଯେଉଁମାନେ ରାଷ୍ଟ୍ରୀୟ ବିକାଶରେ ନିଜର ସଂପୃକ୍ତି ରଖିପାରିବେ । ଆନୁଷ୍ଠାନିକ ଶିକ୍ଷା ପରେ ଜଣେ ନାଗରିକ ସ୍ୱାବଲମ୍ବୀ ହେବା ଏକ ଆବଶ୍ୟକତା । ନିଜର ସାମର୍ଥ୍ୟ ଓ ସୁଯୋଗର ଉପଯୋଗ କରି ପ୍ରତ୍ୟେକ ନାଗରିକ କୌଣସି ପ୍ରକାରର ବୃତ୍ତିଗତ କାର୍ଯ୍ୟରେ ସଂପୃକ୍ତ ହୋଇ ସ୍ୱାବଲମ୍ବୀ ହୋଇ ଜୀବନ ନିର୍ବାହ କରିବା ଦରକାର । ଜଣେ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇଁ ସୁଯୋଗ ପାଇଥାନ୍ତୁ କିମ୍ବା ସେଥିରୁ ବଞ୍ଚିତ ହୋଇଥାନ୍ତୁ ପ୍ରତ୍ୟେକ ନାଗରିକ ଦେଶର ବିକାଶରେ ନିଜର ଅବଦାନ ଦେଇପାରିବେ । ସମାଜରେ ବିଭିନ୍ନ ବୃତ୍ତିର ପରିବେଶ ଥାଏ । ବିଭିନ୍ନ ବୃତ୍ତିର ବ୍ୟକ୍ତି ନଥିଲେ ସାମାଜିକ ଜୀବନ ସୁଚାରୁରୂପେ ପରିଚାଳିତ ହୋଇପାରିବ ନାହିଁ । କୃଷକଶ୍ରେଣୀ, କାରିଗର ଶ୍ରେଣୀ, ନିର୍ମାଣକାରୀ ଶ୍ରେଣୀ, ଶିକ୍ଷକ, ପ୍ରଶାସକ ଇତ୍ୟାଦି ବିଭିନ୍ନ ବୃତ୍ତିର ଲୋକ ରହିବା ଏକ ସାଧାରଣ ଘଟଣା । ସମସ୍ତେ ବି ଜାତୀୟ ଜୀବନର ବିକାଶ କ୍ଷେତ୍ରରେ ନିଜର କିଛି ଭୂମିକା ନିର୍ବାହ କରୁଛନ୍ତି । ଯେଉଁମାନେ ବିଶ୍ୱବିଦ୍ୟାଳୟରୁ ଶିକ୍ଷା ପାଇବାର ସୁଯୋଗ ପାଇ ନାହାନ୍ତି, ସେମାନେ ଯେ ରାଷ୍ଟ୍ରୀୟ ବିକାଶ ପ୍ରକ୍ରିୟାରେ ସଂପୃକ୍ତ ନୁହନ୍ତି ତାହା ଭାବିବା ଠିକ୍ ନୁହେଁ । ବିଶ୍ୱବିଦ୍ୟାଳୟ ଶିକ୍ଷା ଲାଭକରିଥିବା ବା ସେହି ସୁଯୋଗ ପାଇନଥିବା ନିର୍ବିଶେଷରେ ସମାଜର ସବୁ ବ୍ୟକ୍ତି ସାମାଜିକ ସ୍ତରରେ ସଚେତନ ହେବା, ମାନବିକ ମୂଲ୍ୟବୋଧ ପ୍ରତି ସମ୍ମାନ ରଖିବା, ନିଜ ସୃଜନ-ସାମର୍ଥ୍ୟର ବିକାଶ ଘଟାଇବା, ଜୀବନ ଓ ବୃହତ୍ତରସମାଜ ପାଇଁ ଏକ ସକାରାତ୍ମକ ଦୃଷ୍ଟିଭଙ୍ଗୀ ପୋଷଣ କରିବା, ଜୀବନରେ ଅଧିକରୁ ଅଧିକ ବିଚାର ବୁଦ୍ଧିସଂପନ୍ନହେବା ଯେ ଶିକ୍ଷଣ ସମାଜର ଆଭିମୁଖ୍ୟ ଏହା କୁହାଯାଇପାରେ ।

ଏହି ଦୃଷ୍ଟିରୁ ଦେଖିଲେ ଏକ ନାଗରିକ ସମାଜ ଓ ଏକ ଶିକ୍ଷଣ ସମାଜ ସମାନ ଭାବନାକୁ ବ୍ୟକ୍ତ କରେ । ଏକ ନାଗରିକ ସମାଜ କହିଲେ ସାଧାରଣତଃ ସମାଜର ଏକ

ଶିକ୍ଷିତ ଓ ସଚେତନ ଗୋଷ୍ଠୀକୁ ହିଁ ବୁଝାଯାଇଥାଏ । ସମାଜର ଗୁଣାତ୍ମକ ବିକାଶ କ୍ଷେତ୍ରରେ ନିଜର ସଂପୃକ୍ତି ରଖୁଥିବା ଓ କୌଣସି ସାମାଜିକ ଅନ୍ୟାୟ, ଅଶୋଭନୀୟତା, ଭ୍ରଷ୍ଟାଚାର, ଭେଦଭାବ ଇତ୍ୟାଦି ବିରୁଦ୍ଧରେ ସ୍ୱର ଉଠାଉଥିବା ତଥା ଜନମତକୁ ଉତ୍ତମ ଲକ୍ଷ୍ୟ ଦିଗରେ ପ୍ରଭାବିତ କରୁଥିବା ବ୍ୟକ୍ତିବିଶେଷ ନାଗରିକ ସମାଜର ଅନ୍ତର୍ଭୁକ୍ତ । ନାଗରିକ ସମାଜର ପରିସର ବ୍ୟାପକ ହେଲେ ବି ସମାଜର ସୁସ୍ଥ ବିକାଶ ପ୍ରତି ଗଭୀର ସଂପୃକ୍ତି ବ୍ୟକ୍ତ କରୁଥିବା ବ୍ୟକ୍ତିମାନେ ହିଁ ନାଗରିକ ସମାଜର ପରିସରଭୁକ୍ତ । ଏହି ଦୃଷ୍ଟିରୁ ଦେଖିଲେ ନାଗରିକ ସମାଜ ହିଁ ସମାଜର ଶିକ୍ଷଣ ଓ ସଚେତନ ଗୋଷ୍ଠୀ ।

ନାଗରିକ ସମାଜର ଭାବନା ବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରୁ ବିଭିନ୍ନ ଦେଶରେ ଦୃଢ଼ ଭିତ୍ତି ନେବାରେ ଲାଗିଛି । ସାଧାରଣ ମଣିଷର ଉନ୍ନତି ପାଇଁ ନାନା ଭାବରେ ଆନ୍ତରିକତା ପ୍ରକାଶ ପାଉଛି । ସମାଜବାଦୀ ଅର୍ଥନୈତିକ ବ୍ୟବସ୍ଥା କେତେକ ରାଷ୍ଟ୍ରର ମୂଳ ଆଭିମୁଖ୍ୟ ହୋଇଛି । ଗଣତାନ୍ତ୍ରିକ ବିଚାରବୋଧ କେତେକ ରାଷ୍ଟ୍ରର ରାଜନୈତିକ ଆଦର୍ଶରୁ ସାମାଜିକ ଆଦର୍ଶ ହୋଇଛି । ପ୍ରତ୍ୟେକ ବ୍ୟକ୍ତିର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ନେଇ ଆନ୍ତର୍ଜାତିକ ସଚେତନତା ସୃଷ୍ଟି ହୋଇଛି । ସାମ୍ରାଜ୍ୟବାଦ, ଏକଛତ୍ରବାଦ ବିରୁଦ୍ଧରେ ସାରା ବିଶ୍ୱରେ ଆଲୋଡନ ଆସିଛି । ସାର୍ବଜନୀନ ଶିକ୍ଷାର ପରିବେଶ ସୃଷ୍ଟି ହୋଇଛି । ଅତୀତରେ ମୁଷ୍ଟିମେୟ ଲୋକ ଅଗଣିତ ଲୋକଙ୍କୁ ଶୋଷଣ କରୁଥିଲେ, ନାଲି ଆଖି ଦେଖାଉଥିଲେ, ମହିଳାମାନେ ପୁରୁଷମାନଙ୍କ ସହ ସମାନ ସୁବିଧା ସୁଯୋଗରୁ ବଞ୍ଚିତ ଥିଲେ । ବହୁ ସମାଜରେ ନାନା ସ୍ତରରେ ଭେଦଭାବ ରହିଥିଲା । ତେବେ ଏହି ସବୁ ସ୍ଥିତିରେ ଅନେକଟା ପରିବର୍ତ୍ତନ ଆସିପାରିଛି । ସମାଜବାଦୀ ବିଚାରବୋଧ, ଗଣତାନ୍ତ୍ରିକ ଆଦର୍ଶ, ମାନବିକ ଅଧିକାରର ବିଶ୍ୱଘୋଷଣା, ଧର୍ମନିରପେକ୍ଷ ଜୀବନଧାରା ପ୍ରତ୍ୟେକଟି କ୍ଷେତ୍ରରେ କିଛି ମହତ୍ତର ଆଦର୍ଶ ଓ କିଛି ପବିତ୍ର ଆକାଂକ୍ଷା ଅନ୍ତର୍ନିହିତ ରହିଛି ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ଜୀବନର ସୁଖ, ସ୍ୱାଚ୍ଛନ୍ଦ୍ୟ ବୃଦ୍ଧି କରିବାରେ ଯଥେଷ୍ଟ ସହାୟକ ହୋଇଛି । ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଯେପରି ଦୁର୍ଭିକ୍ଷ, ଅନାଟନ, ଅପପୁଷ୍ଟି, ମହାମାରୀର ଆତଙ୍କ ପୃଥିବୀର କେତେକ ଦେଶରେ ବ୍ୟାପକ ଭାବେ ରହିଥିଲା ସେ ପ୍ରକାରର ସ୍ଥିତିରେ ଅନେକ ପରିବର୍ତ୍ତନ ଆସିଛି । ପୃଥିବୀର ଯେକୌଣସି ରାଷ୍ଟ୍ରରେ କିଛି ବିପତ୍ତି ପଡିଲେ, ସମଗ୍ର ମାନବ ସମାଜରୁ ସହାନୁଭୂତି ଓ ସାହାଯ୍ୟର ହାତ ପ୍ରସାରିତ ହୋଇପାରୁଛି । ପୃଥିବୀରୁ ଦୁଃଖ, ଦାରିଦ୍ର୍ୟ, ରୋଗ, ନିରକ୍ଷରତା ଇତ୍ୟାଦି କିପରି ହ୍ରାସ ପାଇବ ବା ଲୋପ ପାଇବ ସେ ପାଇଁ ବିଶ୍ୱ ସ୍ତରରେ ଦରଦୀ ମନୋଭାବ ସୃଷ୍ଟି ହେବାରେ ଲାଗିଛି । ଏକ ଉନ୍ନତ ସମାଜ ଓ ପ୍ରୀତିପୂର୍ଣ୍ଣ ବିଶ୍ୱ ପାଇଁ ସବୁ ସଂସ୍କୃତିର ମାନବହିତୈଷୀ

ବ୍ୟକ୍ତିମାନେ ସଂପୃକ୍ତି ବ୍ୟକ୍ତ କରି ଆସୁଛନ୍ତି । ସମଗ୍ର ମାନବ ସମାଜର ଶାନ୍ତିପୂର୍ଣ୍ଣ ସ୍ଥିତି ଓ ସୁଖପ୍ରଦ ପରିବେଶ ପାଇଁ ବହୁ ଆନ୍ତର୍ଜାତିକ ସଂଗଠନ ପୃଥିବୀରେ କାର୍ଯ୍ୟ କରୁଛନ୍ତି । ଆଧୁନିକ ପ୍ରଯୁକ୍ତି ସମଗ୍ର ମାନବ ସମାଜକୁ ଏକ କ୍ଷୁଦ୍ର ଗ୍ରାମରେ ପରିଣତ କରିବାର ପରିବେଶ ସୃଷ୍ଟି କରିପାରିଛି । ଏହି ସବୁ ଘଟଣାର ପରିଣାମରୁ ଶିକ୍ଷଣ ନାଗରିକ ସମାଜ ଭାବନା ଦୃଢ଼ ହେବାରେ ଲାଗିଛି । ଯେଉଁଠି ସାମାଜିକ ଚେତନାର ସ୍ତର ଉନ୍ନତ ହେବାର ପରିବେଶ ଆସିଛି, ସେଠାରେ ନାଗରିକ ସମାଜ ଏକ ଦୃଢ଼ ଭିତ୍ତି ନେଇପାରିଛି । ଯେଉଁଠି ସାମାଜିକ ପରିବେଶ ଉନ୍ନତ ହୋଇ ନାହିଁ, ଯେଉଁଠି ଦୁର୍ନୀତି, ଭେଦଭାବମୂଳକ ମନୋଭାବ ଉତ୍କଟ ରହିଛି ସେଠିକାର ଜୀବନର ଗୁଣାତ୍ମକ ମାନ ନ୍ୟୂନ ହୋଇ ରହିଛି । ନାଗରିକ ସଚେତନତାର ଭିତ୍ତି ସୁଦୃଢ଼ ହୋଇପାରି ନାହିଁ ।

ନାଗରିକ ସଚେତନତା, ଉଚ୍ଚ କର୍ମସଂସ୍କୃତି, ସାମାଜିକ ଶୃଂଖଳାବୋଧ ମୂଲ୍ୟବୋଧମାନଙ୍କର ପ୍ରସାର ପାଇଁ ଉଦାର ମାନବବାଦ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ବିକାଶ ଅବଶ୍ୟମ୍ଭାବୀ ମନେହୁଏ । ବୈଜ୍ଞାନିକ ଦୃଷ୍ଟିଭଙ୍ଗୀରୁ ଏକ ସିଦ୍ଧାନ୍ତ ନିଷ୍ପନ୍ନ ହୁଏ ଯେ ସଭ୍ୟତାର ସକଳ ବିକାଶ ମଣିଷର ପ୍ରୟାସରେ ସମ୍ଭବ ହୋଇଛି । ସଭ୍ୟତାରେ ଯାହା କିଛି ବିକଶିତ ହୋଇଛି, ଜୀବନର ଭୌତିକ ମାନରେ ଯେଉଁ ଉନ୍ନତି ଆସିଛି, ବିଂଶ ଶତାବ୍ଦୀଠାରୁ ଜୀବନର ସୁଖ, ସ୍ୱାଚ୍ଛନ୍ଦ୍ୟ ଯେପରି ବୃଦ୍ଧି ପାଇବାରେ ଲାଗିଛି, ଗମନାଗମନ, ଚିକିତ୍ସା, ସାମାଜିକ ନିରାପତ୍ତା ଯେପରି ଉପଲବ୍ଧ ହେଉଛି ଏ ସବୁ ମଣିଷର ବୌଦ୍ଧିକ ଅନୁସନ୍ଧିତ୍ସା ଓ ପ୍ରୟାସରୁ ସମ୍ଭବପର ହୋଇଛି । ସଭ୍ୟତାର ବିକାଶ ସହିତ ବିଜ୍ଞାନ ଗଭୀର ଭାବେ ସଂପୃକ୍ତ ହୋଇଛି, ବିଜ୍ଞାନକୁ ଛାଡି ସଭ୍ୟତାର ବିକାଶକୁ ସଂପ୍ରତି କଳ୍ପନା କରାଯାଇ ପାରିବ ନାହିଁ । ସେହିପରି ବିଜ୍ଞାନର ବିକାଶ ସହ ବୈଜ୍ଞାନିକ ମନୋଭାବ ପ୍ରଶ୍ନଟି ଅଙ୍ଗାଙ୍ଗୀ ଭାବେ ଜଡିତ । ବୈଜ୍ଞାନିକ ମନୋଭାବର ବିକାଶ ନ ହେଲେ ସାମାଜିକ ବିକାଶର ଧାରାଟି ଲକ୍ଷ୍ୟହୀନ ହୋଇ ଉଠିବ । ମଧ୍ୟଯୁଗୀୟ ମାନସିକତାରୁ ଏକ ଉନ୍ନତ ସାମାଜିକ ପରିବେଶର ପରିକଳ୍ପନା କରାଯାଇନପାରେ । ପ୍ରାଚୀନ ପରଂପରା ଓ ଅହେତୁକ ପୂଜାପାର୍ବଣରେ ମସଗୁଲ ହେଲେ, ପାରଲୌକିକ ଜୀବନଦୃଷ୍ଟି ବ୍ୟକ୍ତି ଓ ଗୋଷ୍ଠୀ ଜୀବନର ଆଦର୍ଶ ହେଲେ, ନିଜର ପ୍ରାଚୀନ ସଂସ୍କାର ଓ ବିଶ୍ୱାସକୁ ପବିତ୍ର ମନେ କରି ପରିବର୍ତ୍ତନବିରୋଧୀ ହେଲେ ସମାଜର ସାମୂହିକ ଜୀବନ ପ୍ରବାହରେ ଉନ୍ନତି ଆସିପାରିବ ନାହିଁ । ସେହିପରି ବିଜ୍ଞାନ ଓ ଆଧୁନିକ ପ୍ରଯୁକ୍ତିକୁ ମହତ୍ତର ଓ ଜନହିତକର ଲକ୍ଷ୍ୟରେ ବିନିଯୋଗ ନ କଲେ ସଭ୍ୟତାର ଯଥୋଚିତ ବିକାଶ ହେବ ନାହିଁ । ବିଜ୍ଞାନ ଓ ପ୍ରଯୁକ୍ତି ଏକ ସାଧନ ମାତ୍ର । ଏକ ସାଧନ ହିତକର ବା ଅହିତକର ଲକ୍ଷ୍ୟରେ ବିନିଯୋଗ ହୋଇପାରେ ।

## ଜୀବନ ଅନ୍ୱେଷା

ସଭ୍ୟତାର ଯେଉଁ ସୋପାନଟିରେ ଆମେ ଆଜି ଦଣ୍ଡାୟମାନ ହୋଇଛେ ତାର ପଛରେ ବହୁ ସୃଜନଶୀଳ ବ୍ୟକ୍ତିଙ୍କର ଅବଦାନ ରହିଛି । ମଣିଷ ଜନ୍ମ ହେବା ପରେ ସାମାଜିକ ଜୀବନ ପ୍ରବାହରେ ସମୃଦ୍ଧି ଓ ସଂସ୍କୃତିର ଉତ୍ତରଦାୟିତ୍ୱ ସେ ଛାଏଁ ପାଇଥାଏ । ସେହି ପ୍ରକାରରେ ସେ କେତେକ ସଂସ୍କାର ବି ପାଇଥାଏ । ଯେଉଁ ସଂସ୍କାରମାନ ବ୍ୟକ୍ତି ଭିତରେ ମହତ୍ତର ଜୀବନବୋଧ ଓ ବୈଜ୍ଞାନିକ ସଚେତନତା ଆଣିଥାଏ ତାହା ବ୍ୟକ୍ତି ଜୀବନକୁ ଉତ୍କର୍ଷ ଦିଗରେ ପ୍ରଭାବିତ କରେ । ପରନ୍ତୁ ଯେଉଁ ଭାବନା ଓ ସଂସ୍କାର ବ୍ୟକ୍ତି ଭିତରେ ସାଂପ୍ରଦାୟିକ ବିଦ୍ୱେଷ ଓ କୁସଂସ୍କାର ଜନିତ ବିଶ୍ୱାସକୁ ଜାବୁଡ଼ି ଧରିବାର ମନୋଭାବ ଆଣେ ତାହା ଜୀବନ ପାଇଁ ଅହିତକର ମନେହୁଏ ।

ଏହି ପୃଷ୍ଠଭୂମିରେ ଏକ ଶିକ୍ଷଣ ବା ଉନ୍ନତ ନାଗରିକ ସମାଜ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବାରେ ସହାୟକ ହୋଇଥାଏ । କିନ୍ତୁ ସମାଜ ଭିତରେ ଯଦି କୁସଂସ୍କାର, ଅହେତୁକ ଭାବନା, ଅବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ପାରଲୌକିକ ଜୀବନଦୃଷ୍ଟି ବ୍ୟାପକ ଭାବେ ରହେ ଓ ଗଣମାଧ୍ୟମ ସେହି ଧାରାରେ ପ୍ରଭାବିତ ହୁଏ ତେବେ ସମାଜ ଉନ୍ନତ ହୋଇପାରେ ନାହିଁ । ହୁଏତ ସମାଜରେ ବିଜ୍ଞାନର ସାଧନ ମାନ ଉପଲବ୍ଧ ହେଉଥାଏ, କିନ୍ତୁ ଜୀବନର ମାନ ନିମ୍ନ ସ୍ତରରେ ରହିଥାଏ । ସେହିଭଳି ସାମାଜିକ ପରିବେଶରେ ଦାରିଦ୍ର୍ୟ, ଦୁର୍ନୀତି, ଭେଦଭାବ, ସାଂପ୍ରଦାୟିକ ମନୋଭାବ, ନିରକ୍ଷରତା, ନାନା ବୈଷମ୍ୟ ବ୍ୟାପକ ହୋଇରହିବା ଦେଖାଯାଏ । ଏହି ସ୍ଥିତିରେ ଲୋକଶିକ୍ଷାକୁ ବ୍ୟାପକ କରିବା ପାଇଁ ପ୍ରୟାସ ଆବଶ୍ୟକ ମନେହୁଏ । ଲୋକଶିକ୍ଷା ଅଭାବରେ ନାଗରିକ ସମାଜ ଉନ୍ନତ ହୋଇପାରେ ନାହିଁ ।

(୧୬.୭.୨୦୧୪)



# ଓଡିଆ ଭାଷା : କିଛି ଅନୁଚିନ୍ତା

ଏପ୍ରିଲ ପହିଲା ଦିନ ସ୍ୱତନ୍ତ୍ର ଉତ୍କଳ ଦିବସ ଉପଲକ୍ଷେ ଆୟୋଜିତ ଏକ ସାହିତ୍ୟ ସଭାରେ ଯୋଗଦେବାକୁ ଯାଇଥିଲି । ଭାଷାଭିତ୍ତିକ ପ୍ରଦେଶ ଗଠନ କ୍ଷେତ୍ରରେ ଓଡିଶା ଭାରତବର୍ଷରେ ଥିଲା ପ୍ରଥମ ରାଜ୍ୟ । ସୁଖର କଥା ଏହା ଭିତରେ ଓଡିଆ ଭାଷା କେନ୍ଦ୍ର ସରକାରଙ୍କଦ୍ୱାରା ଶାସ୍ତ୍ରୀୟ ମାନ୍ୟତା ଲାଭ କରିଛି । କିନ୍ତୁ ସେଦିନ ଅନେକ ବକ୍ତା ଓଡିଆ ଭାଷା ଯେ ସଂକଟରେ ଏହି ପ୍ରକାର ଆଶଙ୍କା ବ୍ୟକ୍ତ କରୁଥିଲେ । ଭାଷା ଜନିତ ଅସ୍ମିତାକୁ ପ୍ରାଧାନ୍ୟ ଦେଉଥିବା କେତେକ ବକ୍ତା ଓଡିଆ ଭାଷାର ସୁରକ୍ଷା ଓ ବିକାଶ ପାଇଁ କେତେକ କଠୋର ପ୍ରସ୍ତାବ ମଧ୍ୟ ଦେଉଥିଲେ । ଗୋଟିଏ ଗୋଷ୍ଠୀର କୌଣସି ପରିଚୟକୁ ନେଇ କେତେକ ବ୍ୟକ୍ତି ଅନେକ ଭାବପ୍ରବଣତା ବ୍ୟକ୍ତ କରିଥାନ୍ତି । ଧର୍ମ, ଭାଷା, ଜାତୀୟତା ଓ ଏପରିକି ଜାତିକୁ ନେଇ କେତେକ ବ୍ୟକ୍ତି ବେଶ୍ ଭାବପ୍ରବଣ ହେବା ଦେଖାଯାଏ । ବ୍ୟକ୍ତି ଯେତେବେଳେ ନିଜର ଏକ ନିର୍ଦ୍ଦିଷ୍ଟ ପରିଚୟକୁ ଅତ୍ୟନ୍ତ ପ୍ରାଧାନ୍ୟ ଦିଏ, ସେତେବେଳେ ସେହି ପରିଚୟ ପ୍ରତି କୌଣସି ଆଶଙ୍କା ପ୍ରକାଶ ପାଇଲେ ସେ ପ୍ରତିକ୍ରିୟାଶୀଳ ହେବା ଏକ ସାଧାରଣ ଅନୁଭବ ଅଟେ ।

ଭାଷା କହିବା ଓ ଭାଷା ଜରିଆରେ ମନର ଭାବ ବ୍ୟକ୍ତ କରିବା ମଣିଷର ଏକ ପ୍ରାକୃତିକ ସାମର୍ଥ୍ୟ । ପ୍ରକୃତି ମଣିଷକୁ ଭାଷା କହିବାର ସାମର୍ଥ୍ୟ ଦେଇଛି, କାରଣ ଆମ କଣ୍ଠରେ ଭାଷା କହିବା ପାଇଁ ସ୍ୱରପେଟିକା ରହିଛି । ସ୍ୱରପେଟିକାରୁ ଧ୍ୱନି ନିର୍ଗତ ହୁଏ, ଧ୍ୱନି କରିବାର ଶକ୍ତି ସ୍ୱରପେଟିକା ଯୋଗୁଁ ସମ୍ଭବ ହୋଇଥାଏ । ଧ୍ୱନି ଶବ୍ଦରେ ରୂପାନ୍ତରିତ ହୁଏ । ମଣିଷ କଣ୍ଠରେ ସ୍ୱରପେଟିକା ନଥିଲେ ସମ୍ଭବତଃ ମଣିଷ ପଶୁ ସ୍ତରରେ ରହିଥାନ୍ତା; ସଭ୍ୟତା, ସଂସ୍କୃତିର ନିର୍ମାଣ ସମ୍ଭବ ହୋଇନଥାନ୍ତା । ଇତର ଜୀବ ମାନେ ଯେଉଁ ସ୍ତରରେ ରହିଛନ୍ତି, ମଣିଷ ଭାଷା କହୁ ନ ଥିଲେ ସେହି ସ୍ତରରେ ରହିଥାନ୍ତା । ମଣିଷ ଭାଷା କହୁଥିବାରୁ ହିଁ ଜ୍ଞାନ ବିଜ୍ଞାନ ବିକାଶ କରିବାରେ, ସଭ୍ୟତାକୁ ଆଗକୁ ନେବାରେ ଓ ଜୀବନର ମାନକୁ ଉନ୍ନତ କରିବାରେ ସମର୍ଥ ହୋଇପାରିଛି । ତେବେ ମଣିଷମାନଙ୍କର ମୁଖ ଯେପରି

ପରସ୍ପରଠାରୁ ଭିନ୍ନ, ସ୍ୱର ମଧ୍ୟ ପରସ୍ପରଠାରୁ ପୃଥକ୍ । ସ୍ୱରପେଟିକାରୁ ଯେଉଁ ଧ୍ୱନି ବାହାରେ, ତାହା ଶବ୍ଦରେ ରୂପାନ୍ତରିତ ହୁଏ । ଧ୍ୱନିକୁ ଶବ୍ଦରେ ରୂପାନ୍ତରିତ କରିବାର ପ୍ରକ୍ରିୟା ଭିନ୍ନ ଭିନ୍ନ । ଗୋଟିଏ ଶିଶୁ ଯେଉଁ ଭାଷା ଗୋଷ୍ଠୀ ଭିତରେ ରହେ, ସେହି ଭାଷାର ଶବ୍ଦମାନଙ୍କୁ ଶୁଣିବା ପରେ ସେହି ଢ଼ଙ୍ଗରେ କହିବାକୁ ଉଦ୍ୟମ କରେ । ବହୁ ଅତୀତରେ ଯେହେତୁ ମଣିଷମାନେ କ୍ଷୁଦ୍ର ଗୋଷ୍ଠୀ ଭିତରେ ରହୁଥିଲେ ଭାଷା ବ୍ୟବହାର କରିବାର ସାମର୍ଥ୍ୟ ଭିତରୁ ପୃଥିବୀରେ କାଳକ୍ରମେ ପାଞ୍ଚହଜାର ଭାଷା ସୃଷ୍ଟି ହୋଇଗଲା । ଭାଷାବିତ୍ ମାନଙ୍କ ମତରେ ଭାଷାର ଆଦି ପର୍ବରେ ମଣିଷ ଯାହା ସବୁ ବସ୍ତୁ ପ୍ରକୃତିରେ ଦେଖିଲା ତାକୁ ଶବ୍ଦରେ ପ୍ରକାଶ କରିବା ପାଇଁ ପ୍ରୟାସ କଲା । ଧୂଳିଠାରୁ ସୂର୍ଯ୍ୟ ପର୍ଯ୍ୟନ୍ତ ସବୁ କିଛି ଦୃଶ୍ୟମାନ ବସ୍ତୁ ପାଇଁ ବିଭିନ୍ନ ଭାଷାରେ ଶବ୍ଦର ଉଦ୍ଭାବନ ହେଲା । ଗୋଟିଏ ବସ୍ତୁର ହଜାର ହଜାର ନାମ ରହିବା ଯେତିକି ରହସ୍ୟମୟ ସେତିକି ଆନନ୍ଦପ୍ରଦ । ପାଣିକୁ ଜଳ, ପାନୀ, ନୀର, ୱାଟର, ହାଇଡ୍ରୋ, ଆକ୍ୱା ପରି ହଜାର ହଜାର ଶବ୍ଦରେ ମଣିଷ ବୁଝିଛି । ପ୍ରତ୍ୟେକ ଭାଷାରେ ଗୋଟିଏ ବସ୍ତୁ ପାଇଁ ଗୋଟିଏ ବା କେତୋଟି ଶବ୍ଦ ସୃଷ୍ଟି ହୋଇଛି । ସେହିପରି ମଣିଷ ଯେଉଁ ସବୁ କାର୍ଯ୍ୟ ସଂପାଦନ କରୁଛି ତାହା ପାଇଁ ପ୍ରତ୍ୟେକ ଭାଷାରେ ଶବ୍ଦ ସୃଷ୍ଟି ହୋଇଛି । ଖାଇବା, ଶୋଇବା, ଦୌଡିବା, ଚାଲିବା, ହସିବା, କାନ୍ଦିବା ପରି କାର୍ଯ୍ୟକୁ ବୁଝିବା ପାଇଁ ପ୍ରତ୍ୟେକ ଭାଷାରେ ଶବ୍ଦ ରହିଛି । ସଭ୍ୟତାର ଅଗ୍ରଗତି ସହିତ ମଣିଷ ବହୁ କଥା ଚିନ୍ତାକରିଛି । ଚିନ୍ତନ ପ୍ରକ୍ରିୟାରୁ ହିଁ ବିଭିନ୍ନ ପ୍ରତ୍ୟୟ, ଜ୍ଞାନ-ବିଜ୍ଞାନର ବିକାଶ ହୋଇଛି । ଯେଉଁ ଭାଷାଗୋଷ୍ଠୀର ଲୋକମାନେ ନାନା ବିଷୟ ଚିନ୍ତା କରିଛନ୍ତି, ଜ୍ଞାନବିଜ୍ଞାନର ବିକାଶ କ୍ଷେତ୍ରରେ ସଂପୃକ୍ତ ହୋଇଛନ୍ତି ସେମାନେ ଆବଶ୍ୟକତାରୁ ନିଜର ଭାଷାକୁ ସମୃଦ୍ଧ କରିଛନ୍ତି । ହଜାର ହଜାର ଶବ୍ଦ ଓ ପରିଭାଷା ଏହି ଧାରାରେ ଭାଷାକୁ ସମୃଦ୍ଧ କରିଛି ।

କୌତୂହଳର ବିଷୟ ହଜାର ହଜାର ଭାଷାର ନିଜସ୍ୱ ବର୍ଣ୍ଣମାଳା ନାହିଁ । ସୁତରାଂ ବର୍ଣ୍ଣମାଳା ଏକ ଭାଷା ପାଇଁ ହୁଏତ ଅବିଚ୍ଛେଦ୍ୟ ନ ହୋଇପାରେ । ଏକ ଭାଷାକୁ ଯେକୌଣସି ବର୍ଣ୍ଣମାଳାରେ ଲେଖାଯାଇପାରେ । ତେବେ ଉନ୍ନତ ଭାଷାମାନଙ୍କର ନିଜସ୍ୱ ଲିପି ଓ ବର୍ଣ୍ଣମାଳା ରହିଛି । ଧ୍ୱନିର ସୁସଂହତ ଅଭିବ୍ୟକ୍ତିକୁ  ବର୍ଣ୍ଣମାଳା ଆକାରରେ ଉନ୍ନତ ଭାଷାମାନ ବ୍ୟକ୍ତ କରିଥାନ୍ତି । ବର୍ଣ୍ଣମାଳା ଲିପି ବା ଅକ୍ଷରକୁ  ନେଇ ଗଠିତ । ସୁତରାଂ ଏକ ଲିପି ଗୋଟିଏ ଭାଷାର ଏକ ଦୃଶ୍ୟମାନ ସଂକେତ । ଅଧିକାଂଶ ଭାଷାର ବର୍ଣ୍ଣମାଳା ବା ଲିପିରେ ସମୟର ବ୍ୟବଧାନରେ ସଂସ୍କାରମାନ ହୋଇଛି । ବର୍ଣ୍ଣମାଳାର ବିକାଶ ପୂର୍ବରୁ ବିଭିନ୍ନ କଥାକୁ ବୁଝାଇବାକୁ ମଣିଷ ବିଭିନ୍ନ ଚିତ୍ର ମାନ ଭାଷାମାନଙ୍କରେ ସୃଷ୍ଟି କରିଥିଲା । ଚୀନ୍ ଦେଶର ଲୋକମାନେ ତାଙ୍କ ଭାଷାରେ ହଜାର ହଜାର ଚିତ୍ରଲେଖା ଜରିଆରେ

ଭାବ ବିନିମୟ କରିବା କୁହାଯାଏ । ଧ୍ୱନିରୁ ଶବ୍ଦ, ଶବ୍ଦରୁ ଚିତ୍ରଲେଖା, ଏହାପରେ ବାକ୍ୟ, ବାକ୍ୟରୁ ଭାଷା ଓ ପରେ ଲିପି, ବର୍ଣ୍ଣମାଳା, ବ୍ୟାକରଣ ସୃଷ୍ଟି ହୋଇଛି । କେତେକ ଭାଷାର ବର୍ଣ୍ଣମାଳାରେ ବହୁ ମେଳ ଥାଏ, ସୁତରାଂ ସେମାନେ ଏକ ଭାଷା ଶ୍ରେଣୀର ବୋଲି ପରିଗଣିତ ହୁଅନ୍ତି, ଯଦିବା ସେମାନଙ୍କର ଲିପି ଗୁଡିକ ପରସ୍ପରଠାରୁ ସଂପୂର୍ଣ୍ଣ ପୃଥକ୍ । ଓଡିଆ, ବଙ୍ଗଳା, ହିନ୍ଦୀ, ଆସାମୀ ଭାଷାମାନଙ୍କର ବର୍ଣ୍ଣମାଳାରେ ଅନେକ ମେଳ ରହିଛି, ଯଦିବା ଏ ପ୍ରତ୍ୟେକ ଭାଷାର ଲିପି ପରସ୍ପରଠାରୁ ଭିନ୍ନ ।

ଏକ ଭୌଗୋଳିକ ଭୂଖଣ୍ଡରେ ରହୁଥିବା ଗୋଟିଏ ଗୋଷ୍ଠୀ ଯଦି ସୌଭାଗ୍ୟ କ୍ରମେ ଜ୍ଞାନବିଜ୍ଞାନର ବିକାଶ କରିବାରେ ସଫଳ ହେଉଥିଲେ ସେମାନେ ତାକୁ ଅତୀତରେ ସ୍ମୃତି ଭିତରେ ରଖୁଥିଲେ । ତେବେ ଧୀରେ ଧୀରେ ଜ୍ଞାନର ଓଜନକୁ ସ୍ମୃତି ଭିତରେ ରଖିବା ସମ୍ଭବ ହୋଇନାହିଁ, ତେଣୁ ତାକୁ ଲିପି ସାହାଯ୍ୟରେ ଲେଖିବାକୁ ପ୍ରୟାସ ହୋଇଛି । ଏହି ଆବଶ୍ୟକତାରୁ ଲିପି ଓ ବର୍ଣ୍ଣମାଳାର ବିକାଶ ହୋଇଛି । ତେବେ ଅତୀତରେ ଲୋକମାନେ ପଥର ଦେହରେ ଲେଖୁଥିଲେ, ଯାହାକୁ ଶିଳାଲିପି କୁହାଯାଏ । ପରେ ତାଳପତ୍ରରେ ଲେଖିବାର ପ୍ରୟାସ ହେଲା, ଲୁହାର ଏକ ଲିଖନ ସାହାଯ୍ୟରେ । ତେବେ ପଞ୍ଚଦଶ ଶତାବ୍ଦୀରେ ଜର୍ମାନୀର ଗୁଟେନ୍‌ବର୍ଗ ପ୍ରିଣ୍ଟିଂପ୍ରେସ ଉଦ୍ଭାବନ କଲେ । କାଗଜ ପ୍ରସ୍ତୁତି ଓ ପ୍ରିଣ୍ଟିଂପ୍ରେସର ନିର୍ମାଣ ସଭ୍ୟତାର ବିକାଶରେ ଏକ ଯୁଗାନ୍ତକାରୀ ଘଟଣା ଥିଲା । କାରଣ ଏହାପରେ ବିଭିନ୍ନ ପୁସ୍ତକମାନ ପ୍ରକାଶ ପାଇଲା । ପୁସ୍ତକ ପ୍ରକାଶନ ଜ୍ଞାନର ବିକାଶ ଓ ସାମାଜିକୀକରଣରେ ଏକ ପ୍ରମୁଖ ଭୂମିକା ନେଇଥିବା ମନେହୁଏ ।

ପୃଥିବୀରେ ହଜାର ହଜାର ଭାଷା ରହିଥିଲେ ମଧ୍ୟ ହାତ ଗଣତି କେତୋଟି ଭାଷା ବେଶ୍ ସମୃଦ୍ଧ । ଯେଉଁ ଭାଷା ସମୃଦ୍ଧ ହୋଇଛି ତାହାର କାରଣ ନୁହେଁ ଯେ ସେ ଭାଷାର କିଛି ସ୍ୱତନ୍ତ୍ରତା ରହିଛି । କୌଣସି ଅନ୍ତର୍ନିହିତ ସ୍ୱତନ୍ତ୍ରତା ଯୋଗୁଁ ଗୋଟିଏ ଭାଷା ସମୃଦ୍ଧ ହୋଇନାହିଁ ବରଂ କେତେକ ଐତିହାସିକ ପରିସ୍ଥିତି ସେହି ଭାଷାକୁ ଉନ୍ନତ କରିବାରେ ସହାୟକ ହୋଇଛି । ପ୍ରତ୍ୟେକ ଭାଷା ଭିତରେ ତାହା ସମୃଦ୍ଧ ହେବାର ସମ୍ଭାବନା ରହିଛି, ଯଦିବା ଐତିହାସିକ କାରଣରୁ ତାହା ସମ୍ଭବ ହୋଇ ନାହିଁ । ସାଂପ୍ରତିକ ସ୍ଥିତିରେ ଇଂରାଜୀ ଏକ ସମୃଦ୍ଧ ଭାଷା । ଏହି ଭାଷାରେ ପାଞ୍ଚ ଲକ୍ଷରୁ ଅଧିକ ଶବ୍ଦରାଜି ରହିଛି । କିନ୍ତୁ ଷୋଡଶ ଶତାବ୍ଦୀ ବେଳକୁ ଇଂରାଜୀ ଭାଷା ଅତ୍ୟନ୍ତ ଅନୁନ୍ନତ ଅବସ୍ଥାରେ ରହିଥିଲା । ଲାଟିନ୍ ଭାଷାରୁ ବାଇବେଲ୍‌କୁ ଇଂରାଜୀରେ ଅନୁବାଦ କରିବା ପାଇଁ ପ୍ରୟାସକୁ ସେତେବେଳେ ନାପସନ୍ଦ କରାଯାଉଥିଲା । ଭାବନା ଥିଲା ଇଂରାଜୀ ଭାଷାର ଅନୁବାଦ ଆକର୍ଷଣୀୟ ବା ସୁଖପାଠ୍ୟ ହେବ ନାହିଁ । ଏପରିକି ବିଶ୍ୱବନ୍ଦ୍ୟ ଲେଖକ ସେକ୍ସପିୟରଙ୍କ (୧୫୬୪-୧୬୧୬) ସମୟକୁ ଇଂରାଜୀ ଭାଷାରେ ମାତ୍ର ପଚାଶ/ଷାଠିଏ ହଜାର ଶବ୍ଦ ରହିଥିଲା ।

କାଳକ୍ରମେ ଇଂରେଜମାନେ ବେପାର କରିବାକୁ ବିଭିନ୍ନ ଭୂଖଣ୍ଡକୁ ଯାଇ ସାମ୍ରାଜ୍ୟ ବିସ୍ତାର କଲେ । ବହୁ ବୈଜ୍ଞାନିକ ଉଦ୍ଭାବନ, ଆବିଷ୍କାର ଯୋଗୁ ବହୁ ନୂଆ ନୂଆ ଶବ୍ଦମାନ ସୃଷ୍ଟି ହେଲା । ବହୁ ଭାଷାରୁ ନୂତନ ଭାବନାକୁ ପ୍ରକାଶ କରୁଥିବା ଶବ୍ଦମାନଙ୍କୁ ନେଇ ସେମାନେ ନିଜ ଭିତରେ ସ୍ଥାନ ଦେଲେ । ଭାଷାର ଶବ୍ଦ ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଲା ଓ ସ୍ଥିତିବାନ ଶବ୍ଦମାନ ନୂଆ ନୂଆ ଭାବରେ ଭିନ୍ନ ଭିନ୍ନ ପ୍ରତ୍ୟୟ ସୃଷ୍ଟି କଲେ । ଭାଷା ଏପରି ସମୃଦ୍ଧ ସ୍ଥିତିକୁ ଗଲା ଯେ ଜ୍ଞାନବିଜ୍ଞାନର ଯେତେ କ୍ଷେତ୍ର ରହିଛି ଓ ମାନବିକ ଉତ୍କର୍ଷର ଯେତେ ବୌଦ୍ଧିକ ଦିଗନ୍ତ ସୃଷ୍ଟି ହୋଇଛି, ସବୁ କିଛି ଇଂରାଜୀ ଭାଷାରେ ବ୍ୟକ୍ତ ହୋଇପାରୁଛି । କୌଣସି ଭାବନାକୁ ବ୍ୟକ୍ତ କରିବାକୁ ଶବ୍ଦ ଅଭାବ ହେଲେ ଅନ୍ୟ ଭାଷାରୁ ସେପରି ଶବ୍ଦ ଗ୍ରହଣ କରି, ନୂତନ ଶବ୍ଦ ସୃଷ୍ଟିକରି ଇଂରାଜୀ ଭାଷାକୁ ସେମାନେ ଜ୍ଞାନ ବିଜ୍ଞାନର ଭାଷା କରିବାରେ ସମର୍ଥ ହୋଇଛନ୍ତି । ଜ୍ଞାନବିଜ୍ଞାନର ପ୍ରତ୍ୟେକ ବିଭାଗ ପାଇଁ ସ୍ୱତନ୍ତ୍ର ଜ୍ଞାନ କୋଷ ସହିତ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା ଇଂରାଜୀ ଭାଷାକୁ ଉନ୍ନତିର ଶିଖର ସ୍ତରକୁ ନେଇପାରିଛି ।

ଗୋଟିଏ ଭାଷାକୁ ସମୃଦ୍ଧ କରିବାକୁ ହେଲେ ତାହାକୁ ଜ୍ଞାନବିଜ୍ଞାନର ଭାଷା କରିବାକୁ, ପ୍ରସାରର ଭାଷା କରିବାକୁ ତଥା ପ୍ରଶାସନର ଭାଷା କରିବାକୁ ପ୍ରୟାସ ଆବଶ୍ୟକ । ଏହି ଦିଗରେ ଉଦ୍ୟମ ନହେଲେ ଭାଷା ସମୃଦ୍ଧ ହେବ ନାହିଁ । ଏତଦ୍‌ବ୍ୟତୀତ ଉଚ୍ଚମାନର ଅଭିଧାନ, ପାରିଭାଷିକ ଶବ୍ଦକୋଷ ତଥା ଜ୍ଞାନକୋଷ ଭାଷା ଭିତରକୁ ନ ଆସିଲେ ଏକ ଭାଷା ଉନ୍ନତ ହୋଇପାରିବ ନାହିଁ ।

ଆଜିର ପରିବର୍ତ୍ତିତ ପରିସ୍ଥିତିରେ ଜ୍ଞାନ-ପିପାସା ଓ କର୍ମସଂସ୍ଥାନ ଜନିତ ସ୍ୱାବଲମ୍ୱନଶୀଳତା ଯୁବମାନସର ପ୍ରଧାନ ଶ୍ରେୟ । ଏହି ଆବଶ୍ୟକତା ପୂରଣ ଦିଗରେ ଯେଉଁ ଭାଷା ଅଧିକ ସହାୟକ ହେବ, ତାହା ପ୍ରତି ଆକର୍ଷଣ ବୃଦ୍ଧି ହେବା ସ୍ୱାଭାବିକ ମନେହୁଏ । ଏତଦ୍‌ବ୍ୟତୀତ ବହୁ ଭାଷାରେ ଆଦାନ ପ୍ରଦାନ ଓ ଦକ୍ଷତା ଆଜିର ଏକ ବଡ ଆବଶ୍ୟକତା । ଏହି ସବୁ ସ୍ଥିତିକୁ ବିଚାରକୁ ନେଇ ଓଡିଆ ଭାଷାର ସାମର୍ଥ୍ୟ ବୃଦ୍ଧି କରିବା ପାଇଁ ପ୍ରୟାସ ସହ ଓଡିଶା ଭିତରେ କର୍ମସଂସ୍ଥାନର ପରିସର ବୃଦ୍ଧି କରିପାରିଲେ ଭାଷାର ସଙ୍କୋଚନକୁ ଯେ ପ୍ରତିହତ କରିହେବ ଏହା ମନେହୁଏ । ତାହା ସହ ମାନବ ଜ୍ଞାନର ଉତ୍କର୍ଷ ବହନ କରୁଥିବା ପ୍ରମୁଖ ଗ୍ରନ୍ଥମାନଙ୍କୁ ଓଡିଆରେ ଅନୁସୃଜନ କରିବାର ପ୍ରୟାସ ଭାଷାର ସାମର୍ଥ୍ୟକୁ ବୃଦ୍ଧିକରିପାରିବ ।

(୧୬.୪.୨୦୧୪)



# ଭାଷାର ଦିଗନ୍ତ

ଗୋଟିଏ ସମୟରେ ଭାଷାକୁ ଆଧାର କରି ସ୍ୱାଭିମାନ ଓ ଏକ ଜାତୀୟତାବୋଧ ସାରା ପୃଥିବୀରେ ରହିଥିଲା । ଗୋଟିଏ ଭାଷା ଗୋଷ୍ଠୀର ଲୋକ ନିଜର ମାତୃଭାଷା ଜନିତ ଅସ୍ମିତା ଉପରେ ବହୁତ ଗୁରୁତ୍ୱ ଦେଉଥିଲେ । ଭାଷାପ୍ରବଣତା ଏବେ ବି କେତେକ ସମାଜରେ ରହିବା ଦେଖାଯାଏ । ବହୁ ଅତୀତରେ ମଣିଷର ପାରିବାରିକ ଓ ସାମାଜିକ ଜୀବନ ନିର୍ଦ୍ଦିଷ୍ଟ ଭାଷାଗୋଷ୍ଠୀ ଭିତରେ ସୀମାବଦ୍ଧ ରହୁଥିଲା । ଭାବର ଆଦାନ ପ୍ରଦାନ କ୍ଷେତ୍ରରେ ନିଜର ଭାଷା ଏକମାତ୍ର ମାଧ୍ୟମ ହୋଇ ରହିଥିଲା ।

ସଭ୍ୟତାର ବିକାଶ ଓ ସାମାଜିକ ଗତିଶୀଳତା ବୃଦ୍ଧି ଯୋଗୁ ଜଣାପଡିଲା ଯେ ମଣିଷ ସମାଜରେ ଭାଷା ଓ ଭାଷାମାନଙ୍କର ଉପଭାଷା ମିଶି ପାଞ୍ଚ ହଜାରରୁ ଅଧିକ କଥିତ ଭାଷା ରହିଛନ୍ତି । ହଜାର ହଜାର କଥିତ ଭାଷା ଥିଲେ ମଧ୍ୟ ପ୍ରାୟ ଦୁଇଶହଟି ଭାଷା ଖ୍ୟାତିଲାଭ କରିଛନ୍ତି । ପୁନଶ୍ଚ ଏହି ଦୁଇ ଶହ ଭାଷା ମଧ୍ୟରୁ ପ୍ରାୟ ପନ୍ଦର କୋଡିଏଟି ଭାଷା ବେଶ୍ ସମୃଦ୍ଧ ଓ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତ । ଯେଉଁ ଭାଷା ଗୁଡିକ ସମୃଦ୍ଧ ହୋଇଛନ୍ତି ନାନା ଐତିହାସିକ କାରଣ ସେମାନଙ୍କୁ ଉନ୍ନତ ହେବାରେ ସହାୟକ ହୋଇଛନ୍ତି ଓ ଯେଉଁ ଭାଷାମାନ ସମୃଦ୍ଧ ହୋଇପାରି ନାହାନ୍ତି ନାନା କାରଣରୁ ଆଗକୁ ଯାଇପାରି ନାହାନ୍ତି । ଯେଉଁ ଭାଷାମାନ ଉନ୍ନତ ହୋଇଛନ୍ତି ଭାଷାର ଅନ୍ତର୍ନିହିତ ସାମର୍ଥ୍ୟରୁ ଉନ୍ନତ ହୋଇନାହାନ୍ତି । ବରଂ ଯେକୌଣସି ଭାଷା ଅନୁକୂଳ ପରିସ୍ଥିତିରେ ଉନ୍ନତ ହେବାର ସମ୍ଭାବନା ରଖିଛି । ସାଂପ୍ରତିକ ମାନଦଣ୍ଡରେ କିଛି ଭାଷା ବେଶ୍ ସମୃଦ୍ଧ, କେତେକ ଭାଷା ବିକଶିତ ହେବାର ପ୍ରୟାସ ଭିତରେ ରହିଛନ୍ତି ଓ ଅନେକ ଭାଷା ଅବିକଶିତ ବା ଅନୁନ୍ନତ ଅବସ୍ଥାରେ ନାନା ସାମାଜିକ ଓ ଐତିହାସିକ କାରଣରୁ ସଙ୍କୁଚିତ ହୋଇ ଯାଇଛନ୍ତି ।

ଏହି ମାନଦଣ୍ଡରେ ଓଡିଆ ଭାଷାର ଜଣେ ଯଶସ୍ୱୀ ଲେଖକ ଓ ଜ୍ଞାନମଣ୍ଡଳର ପ୍ରଣେତା ବିନୋଦ କାନୁନ୍‌ଗୋ ଭାଷାମାନଙ୍କର ସ୍ଥିତି ନେଇ ସୁନ୍ଦର ଉପମାଟିଏ ଦେଇଛନ୍ତି ।

କେତେକ ଭାଷା ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ଭିତରେ କୂପ ଭଳି ଆବଦ୍ଧ ହୋଇ ଯାଇଛନ୍ତି । ସେମାନେ ବାହାର ଜଗତ ସହ ସଂପର୍କିତ ହୋଇପାରି ନାହାନ୍ତି । ଆଉ କେତେକ ଭାଷା ପୁଷ୍କରିଣୀ ପରି ପ୍ରସାରିତ ହୋଇ ସାମାନ୍ୟ ବିସ୍ତାର ଲାଭ କରିଛନ୍ତି । ଆଉ କେତେକ ଭାଷା ନଦୀ ସଦୃଶ ବିସ୍ତାରିତ ହୋଇଛନ୍ତି । ସେହି ବିସ୍ତାର ଭିତରେ କେତେକ ଉପନଦୀ ସେମାନଙ୍କ ସହ ମିଶିଛନ୍ତି ଓ କେତେ ଶାଖାନଦୀ ସେମାନଙ୍କଠାରୁ ବାହାରିଯାଇଛନ୍ତି । କିନ୍ତୁ କେତେକ ଭାଷା ନିଜକୁ ସାଗର ସ୍ଥାନକୁ ନେଇଛନ୍ତି । ବହୁ ନଦୀର ଜଳ ସେମାନଙ୍କ ସହ ମିଶିଛି, ସେମାନେ ସେହି ଜଳକୁ ନିଜ ସାଙ୍ଗରେ ମିଶାଇ ପ୍ରବାହିତ ହୋଇଛନ୍ତି । ପୃଥିବୀର ବହୁ ଭାଷା କୂଅ ପରି ଆବଦ୍ଧ ହୋଇଯାଇଛନ୍ତି ତ ଆଉ କେତେକ ଭାଷା ସାଗର ସଦୃଶ ବିସ୍ତାରିତ ହୋଇଛନ୍ତି । ଭାଷାମାନଙ୍କର ଅନ୍ତର୍ନିହିତ ଦୁର୍ବଳତା ବା ସାମର୍ଥ୍ୟ ଯୋଗୁ ଏହା ହୋଇ ନାହିଁ, ଏହା ହୋଇଛି ଐତିହାସିକ ପରିସ୍ଥିତି ଜନିତ କାରଣରୁ ।

ଭାଷାମାନଙ୍କର ତୁଳନାତ୍ମକ ଅନୁଶୀଳନରୁ ଏହା ଜଣାଯାଏ ଯେ ପୃଥିବୀର କେତେକ ପ୍ରାଚୀନ ଭାଷା ଯାହା ଏକ ସମୟରେ ବେଶ୍ ସମୃଦ୍ଧ ଥିଲେ ସେମାନେ ପରିସ୍ଥିତି କ୍ରମେ ପୁଷ୍କରିଣୀ ବା ନଦୀଟିଏ ହୋଇ ରହିଗଲେ । କେତେକ ଅର୍ବାଚୀନ ଭାଷା ସୁଯୋଗ ପାଇ ସାଗର ସଦୃଶ ହୋଇଗଲେ । ଯେଉଁ ଭୌଗୋଳିକ ଭୂଖଣ୍ଡରେ ପ୍ରାଚୀନ ସଭ୍ୟତାମାନ ଗଢ଼ି ଉଠିଥିଲା, ସେମାନଙ୍କର ଭାଷା ବି ଗୋଟିଏ ସମୟରେ ବେଶ୍ ଉନ୍ନତ ହୋଇଥିଲା । ବିଭିନ୍ନ ଭାବନାକୁ ପ୍ରକାଶ କରିବା ପାଇଁ ବିଭିନ୍ନ ସଭ୍ୟତାରେ ଓ ଭାଷା ଗୋଷ୍ଠୀରେ ଅନେକ ଶବ୍ଦ ସୃଷ୍ଟି ହୋଇଥିଲା । ସଭ୍ୟତାର ବିକାଶଧାରାରେ ମନୁଷ୍ୟର ମାନସିକ ସାମର୍ଥ୍ୟ ବି ଧୀରେ ଧୀରେ ବୃଦ୍ଧି ପାଇଛି । ମାନସିକ ଦକ୍ଷତାର ବିକାଶ ସହ କିଛି ଭାବନାକୁ ବୁଝାଇବା ପାଇଁ ନୂଆ ନୂଆ ଶବ୍ଦମାନ ଭାଷା ଭିତରେ ସୃଷ୍ଟି ହୋଇଛି । ଏହି ଦୃଷ୍ଟିରୁ ଦେଖିଲେ ସଂସ୍କୃତ, ଲାଟିନ, ଗ୍ରୀକ୍, ଚୀନା, ରୁଷୀୟ ଇତ୍ୟାଦି ଭାଷାମାନ ପ୍ରାଚୀନ ଭାଷା । କିନ୍ତୁ ଏହା ଏକ ବିଡମ୍ୱନା ଯେ କେତେକ ପ୍ରାଚୀନ ଓ ସମୃଦ୍ଧ ଭାଷା ମୃତ-ଭାଷାର ସ୍ଥିତିକୁ ଚାଲିଗଲେ । ଯେଉଁ ଭାଷା ସର୍ବସାଧାରଣ ଭାଷା ହୋଇ ରହିଲା ନାହିଁ ଓ ସେହି ଭାଷାରେ ନୂଆ ନୂଆ କୃତି ସୃଷ୍ଟି ହେଲା ନାହିଁ ସେ ଭାଷାମାନ ମୃତପ୍ରାୟ ହୋଇଗଲେ । କେଉଁ କାରଣରୁ ଏହି ପରିସ୍ଥିତି ହେଲା, ତାହା ଏକ ଭିନ୍ନ ପ୍ରସଙ୍ଗ । ତେବେ କେତେକ ସମୃଦ୍ଧ ଭାଷା ଯେ ଆଜି ମୃତ ଭାଷାର ସ୍ତରକୁ ଯାଇଛନ୍ତି ଏହା ଏକ ଐତିହାସିକ ସତ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । ପୁନଶ୍ଚ ଯେଉଁ ଭାଷାମାନ ଚିନ୍ତା ଓ ଜ୍ଞାନସ୍ରୋତରୁ ଦୂରେଇ ଯାଇଛନ୍ତି ସେମାନେ ବି ସମୃଦ୍ଧ ହୋଇପାରି ନାହାନ୍ତି । ବହୁ କଥିତ ଭାଷା ଓ ଏପରିକି ସାହିତ୍ୟ ସମ୍ଭାରରେ ବିକଶିତ ଭାଷା ଶହ ଶହ ବର୍ଷ ତଳେ ଯେଉଁ ସ୍ଥିତିରେ ରହିଥିଲେ ସେମାନେ ଜ୍ଞାନସ୍ରୋତରୁ ଦୂରେଇ ଯିବା ଦ୍ୱାରା ଆଜି ବି ସେହି ସ୍ଥିତିରେ ରହିଯାଇଛନ୍ତି ।

ସାଂପ୍ରତିକ ପରିସ୍ଥିତିରେ ଇଂରାଜୀ ଏକ ସମୃଦ୍ଧ ଭାଷାର ମାନ୍ୟତା ଲାଭ କରିବା ସହ ଏହା ଏକ ଆନ୍ତର୍ଜାତିକ ଭାଷା ହେବାର ଗୌରବଲାଭ କରିଛି । କିନ୍ତୁ ପାଞ୍ଚଶହ ବର୍ଷ ତଳେ ଏହି ଭାଷା ଅତ୍ୟନ୍ତ ଅନୁନ୍ନତ ସ୍ଥିତିରେ ରହିଥିଲା । ଇଂରାଜୀ ଭାଷାର ମୂଳ ସ୍ଥାନ ଇଂଲଣ୍ଡ ବୋଲି ନିଆଯାଉଛି, ତେବେ ଏକ ହଜାର ବର୍ଷ ତଳେ ଇଂଲଣ୍ଡର ଲୋକମାନେ କେଉଁ ଭାଷାରେ କଥା ହେଉଥିଲେ ତାହା କହିବା ସହଜ ନୁହେଁ । ଇଂରାଜୀ ଭାଷା ପୃଥିବୀର ଅନେକ ଭାଷା ତୁଳନାରେ ନୂତନ, ତେବେ ଆଜିର ଏକବିଂଶ ଶତାବ୍ଦୀରେ ଇଂରାଜୀ ଭାଷାକୁ ପୃଥିବୀର ଏକ ଚତୁର୍ଥାଂଶ ଲୋକ ବୁଝି ପାରୁଛନ୍ତି । ଇଂରାଜୀ ଭାଷା ଜାଣିଥିବା ବ୍ୟକ୍ତି ପୃଥିବୀର ଯେକୌଣସି ଅଞ୍ଚଳକୁ ଗଲେ କାହା ସାହାଯ୍ୟରେ ହେଲେ ମଧ୍ୟ ସମ୍ବନ୍ଧ ସ୍ଥାପନ କରିବାରେ ପ୍ରତିବଂଧକର ସମ୍ମୁଖୀନ ହେବ ନାହିଁ ।

ଇଂରାଜୀ ଭାଷା ପାଞ୍ଚଶହ ବର୍ଷ ଭିତରେ କିପରି ଏତେ ଉନ୍ନତ ସ୍ଥିତିକୁ ଆସିଲା ତାହାର ଅନୁଶୀଳନ ବେଶ୍ ରୋଚକ ମନେହୁଏ । ଚତୁର୍ଦ୍ଦଶ ଶତାବ୍ଦୀର ଲେଖକ ଚସର ଓ ଷୋଡଶ ଶତାବ୍ଦୀର ଲେଖକ ସେକ୍ସପିଅର ଇଂରାଜୀ ଭାଷାର ଦୁଇ ଜନକ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଜି ଯଦି ଚସର ଆସନ୍ତେ, ସମ୍ଭବତଃ ଆଜିର ଇଂରାଜୀକୁ ସେ ବୁଝିପାରନ୍ତେ ନାହିଁ । ଚସରଙ୍କ ଠାରୁ ଇଂରାଜୀ ଭାଷାର ସାହିତ୍ୟ ଉପଲବ୍ଧ ହେଲେ ମଧ୍ୟ ଆଜିର ଇଂରାଜୀ ବହୁ ଆଗକୁ ଯାଇପାରିଛି । ଯେକୌଣସି ଭାଷାର ସଂପଦ ହେଉଛି ତାହାର ଶବ୍ଦସମ୍ଭାର । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଇଂରାଜୀ ଭାଷାରେ ରଚିତ ଇମ୍ପିରିଆଲ ଡିକ୍ସନାରୀରୁ ଜଣାପଡେ ଯେ ସେ ସମୟରେ ଭାଷାର ଶବ୍ଦ ସଂଖ୍ୟା ଥିଲା ଏକ ଲକ୍ଷ । ଆଉ ଶହେ ବର୍ଷ ଭିତରେ ଅର୍ଥାତ୍ ବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଇଂରାଜୀ ଭାଷାର ଶତକଡା ପନ୍ଦରଟି ଶବ୍ଦ ପ୍ରାଚୀନ ଇଂରାଜୀ ଭିତରେ ରହିଛି, ଅଥଚ ପଞ୍ଚାଅଶୀ ଭାଗ ଶବ୍ଦ ପୃଥିବୀର ସବୁ ଅଞ୍ଚଳର ଭାଷାରୁ ଆସି ଇଂରାଜୀ ଭାଷାରେ ମିଶିଛି । ବହୁ ବିଦେଶୀ ଶବ୍ଦ ଇଂରାଜୀ ପୋଷାକ ଭିତରେ ଇଂରାଜୀ ଭାଷାକୁ ସମୃଦ୍ଧ କରିଛନ୍ତି । ଆଧୁନିକ ଭାଷାବିତ୍ ମାନଙ୍କ ମତରେ ସାଗର ଯେପରି ବହୁ ନଦ-ନଦୀର ଜଳରେ ସମୃଦ୍ଧ, ଇଂରାଜୀ ଭାଷା ସେହିପରି ବହୁ ଭାଷାରୁ ଶବ୍ଦମାନ ନେଇ ସମୃଦ୍ଧ ହୋଇପାରିଛି । ଏହି ବିଶାଳ ଶବ୍ଦ ସମ୍ଭାର ଯୋଗୁ ଇଂରାଜୀ ଭାଷା ଜ୍ଞାନ ବିଜ୍ଞାନର ଯେତେ ବିଭାଗ ରହିଛି, ସେ ସବୁ ବିଭାଗର ଭାବନା ଓ ସିଦ୍ଧାନ୍ତକୁ ବ୍ୟକ୍ତ କରିବାରେ ସମର୍ଥ ହୋଇଛି । ଏକ ଅନୁଶୀଳନରୁ ଜଣାଯାଏ ଯେ ଦଶରୁ ପନ୍ଦର ହଜାର ଶବ୍ଦ ଜାଣିଥିବା ଜଣେ ବ୍ୟକ୍ତି ଇଂରାଜୀ ଭାଷା ବୁଝିବାରେ, କହିବାରେ ଅସୁବିଧାର ସମ୍ମୁଖୀନ ହେବ ନାହିଁ । ପାଞ୍ଚଲକ୍ଷ ଶବ୍ଦ ଭିତରୁ ଚାରି ଲକ୍ଷ ପଞ୍ଚାଅଶୀ ହଜାର ଶବ୍ଦର ଅର୍ଥ ଜାଣି ନଥିବା ଜଣେ ବ୍ୟକ୍ତି ଇଂରାଜୀ ଭାଷାରେ ଭାବର ଆଦାନ ପ୍ରଦାନ କରିବା ଓ ବହି ପଢ଼ି ବୁଝିପାରିବା ଏହି ଭାଷାର ଏକ ବିଶେଷତ୍ୱ ।

ଇଂରାଜୀ ଭାଷାର ପ୍ରସାର କ୍ଷେତ୍ରରେ ବହୁବିଧ ଐତିହାସିକ କାରଣ ରହିଥିଲେ ସୁଦ୍ଧା ଏହି ଭାଷାର ସରଳତା ଭାଷାକୁ ବିଶ୍ୱ ସ୍ତରକୁ ନେବାରେ ସହାୟକ ହୋଇଛି । ଭାଷାକୁ ଯେତେ ସରଳ କରାଯାଇ ପାରିବ ସେଥିରେ ନିଷ୍ଠାପର ଉଦ୍ୟମ ହେବାରୁ କୌଣସି ଭାବନାକୁ ବ୍ୟକ୍ତ କରିବା ପାଇଁ ଭାଷାର ସାମର୍ଥ୍ୟ ଭରି ରହିଛି । ଏହି ସରଳତା ଯୋଗୁଁ ଇଂରାଜୀ ଭାଷାର ଉଚ୍ଚାରଣ ଓ ବ୍ୟାକରଣ ଭିତରେ ବିବିଧତା ଦେଖିବାକୁ ମିଳେ । ଅବଶ୍ୟ ଇଂରାଜୀ ଭାଷାରେ ରହିଥିବା ଏକ ମାନକ ଅଭିଧାନରେ ଶବ୍ଦର ଉଚ୍ଚାରଣ ବ୍ୟକ୍ତ ହୋଇଥିବା ଦେଖାଯାଏ । ଯେହେତୁ ବହୁ ଭାଷାଭାଷୀ ଲୋକ ଇଂରାଜୀ ଭାଷାକୁ ମାଧ୍ୟମ ଭାବେ ନେଇ ଭାବ ବିନିମୟ କରୁଛନ୍ତି, ଶବ୍ଦମାନଙ୍କର ଉଚ୍ଚାରଣ କ୍ଷେତ୍ରରେ କିଛିଟା ଭିନ୍ନତା ପ୍ରକାଶ ପାଇଥାଏ । ଇଂରାଜୀ ଅଭିଧାନ ମାନଙ୍କରେ ଶବ୍ଦର ଅର୍ଥ ସହ ତାହାର ଉଚ୍ଚାରଣ ମଧ୍ୟ ସୂଚିତ ଥାଏ, କାରଣ ଏକା ଶବ୍ଦ ବହୁ ଭାବରେ ଉଚ୍ଚାରିତ ହୋଇପାରେ । ଇଂରାଜୀ ଭାଷାର ଏହି ସବୁ ଦୁର୍ବଳତା ସତ୍ତ୍ୱେ ଇଂରାଜୀ ଭାଷା ଯେ ଜ୍ଞାନ ବିଜ୍ଞାନର ଭାଷା, ଆନ୍ତର୍ଜାତିକ ସ୍ତରର ଭାଷା ଏହା ଅନସ୍ୱୀକାର୍ଯ୍ୟ ।

ଆମ ଦେଶର କୌଣସି ଆଞ୍ଚଳିକ ଭାଷାକୁ ଉନ୍ନତ କରିବା ପାଇଁ ହେଲେ ଇଂରାଜୀ ଭାଷା ପ୍ରତି କଟାକ୍ଷ କଲେ ହେବ ନାହିଁ । ବରଂ ପାଞ୍ଚଶହ ବର୍ଷ ଭିତରେ ଏକ ଅନୁନ୍ନତ ଭାଷା କିପରି ଉନ୍ନତିର ଶିଖର ଦେଶକୁ ଆସିପାରିଛି ତାହା ଅନୁଧ୍ୟାନ କରିବା ଆବଶ୍ୟକ । ଏହା ସହିତ ଏକ ଭାଷାର ସରଳୀକରଣ, ପରିଭାଷାରେ ଉନ୍ନତି ତଥା ଜ୍ଞାନ ବିଜ୍ଞାନର ଭାଷା ହେବାକୁ ଏହାର ଦକ୍ଷତା ବୃଦ୍ଧି ନ ହେଲେ ଭାଷାର ସଙ୍କୋଚନକୁ ପ୍ରତିହତ କରିହେବ ନାହିଁ । ମାନବ ଜ୍ଞାନର ବିଭିନ୍ନ ବିଭାଗର ସର୍ବନିମ୍ନ ଜ୍ଞାତବ୍ୟ ବିଷୟକୁ ଗୋଟିଏ ଭାଷା ପ୍ରକାଶ କରିବାକୁ ସମର୍ଥ ନହେଲେ ଭାଷାର ପ୍ରସାର ଯେ ହେବ ନାହିଁ ଏହା ନିଃସନ୍ଦେହ ମନେହୁଏ । ଏହି ଆବଶ୍ୟକତାକୁ ପୂରଣ କରିବା ପାଇଁ ପ୍ରୟାସ ନ କରି କେବଳ ଭାବପ୍ରବଣତା ବ୍ୟକ୍ତ କଲେ ଭାଷାର ପ୍ରସାର ହେବ ନାହିଁ । ବିଶ୍ୱାସ କ୍ଷେତ୍ରରେ ଆବେଗ ପ୍ରାଧାନ୍ୟ ନେଇଥାଏ, କିନ୍ତୁ ବୈଜ୍ଞାନିକ ଦୃଷ୍ଟି ଭିତରେ ଜିଜ୍ଞାସାବୋଧ ଜନିତ ସତ୍ୟାନ୍ୱେଷଣ ରହିଥାଏ । ଏକ ବୈଜ୍ଞାନିକ ମାନସିକତା ନେଇ ଭାଷାର ବିସ୍ତାର ଜନିତ କାରଣକୁ ଅନୁଶୀଳନ କରି ପଦକ୍ଷେପ ନେଲେ ଭାଷାର ସଙ୍କୋଚନକୁ ପ୍ରତିହତ କରିବା ସମ୍ଭବ ହେବ ।

(୨୩.୪.୨୦୧୪)



# ପରିବେଶ ଓ ଭବିଷ୍ୟତ

ସଭ୍ୟତାର କ୍ରମବିକାଶ ଯୋଗୁ ପରିବେଶରେ ପରିବର୍ତ୍ତନ ହେଉଛି । ତେବେ ଗତ ଏକ ଶତାବ୍ଦୀ ଭିତରେ ପରିବେଶ ଏପରି ପ୍ରଦୂଷିତ ଓ ଅସନ୍ତୁଳିତ ହୋଇଚାଲିଛି ଯାହା ଭବିଷ୍ୟତ ନେଇ ଏକ ନୈରାଶ୍ୟର ଚିତ୍ର ପ୍ରଦାନ କରୁଛି । କେତେକ ପ୍ରାକୃତିକ କାରଣ ଯଥା ବାତ୍ୟା, ବନ୍ୟା, ଭୂକମ୍ପ, ସୁନାମି ଜନିତ କାରଣରୁ ପରିବେଶରେ କିଛି ପରିବର୍ତ୍ତନ ଆସିଥାଏ । ତେବେ ପ୍ରକୃତି ଭିତରେ ଏକ ଭାରସାମ୍ୟତା ରହିବା ଦେଖାଯାଏ ଓ ସାମୟିକ ଭାବରେ କୌଣସି କାରଣ ଯୋଗୁଁ ତାହା ବାଧାପ୍ରାପ୍ତ ହେଉଥିଲେ ବି ପରବର୍ତ୍ତୀ ସମୟରେ ପ୍ରକୃତି ନିଜ ଭିତରେ ଏକ ସନ୍ତୁଳନ ରକ୍ଷା କରିଥାଏ । ତେବେ ମଣିଷଦ୍ୱାରା ସୃଷ୍ଟ କେତେକ ପରିସ୍ଥିତି ପ୍ରାକୃତିକ ସନ୍ତୁଳନ ଓ ଭାରସାମ୍ୟତାକୁ ନଷ୍ଟ କରିବା ଦେଖାଯାଏ । ହୁଏତ ଜୀବନ ଧାରଣ କ୍ଷେତ୍ରରେ କେତେକ ସ୍ଥିତିଶୀଳ ପରିସ୍ଥିତି ଯୋଗୁଁ ପ୍ରାକୃତିକ ପରିବେଶ ନଷ୍ଟ ହେବା ଅସମ୍ଭବ ନୁହେଁ । ଗୋଟିଏ ଶତାବ୍ଦୀ ଭିତରେ ଜନସଂଖ୍ୟାରେ ଆଶାତୀତ ଅଭିବୃଦ୍ଧି ଯୋଗୁ ନୂଆ ନୂଆ ବସ୍ତି ଗଢ଼ି ଉଠିବାଦ୍ୱାରା ପ୍ରାକୃତିକ ପରିବେଶ ନଷ୍ଟ ହେବାରେ ଲାଗିଛି । ଶିଳ୍ପର ବିକାଶ ଓ କଳ କାରଖାନାର ନିର୍ମାଣ ପରିବେଶକୁ ପ୍ରଭାବିତ କରିଛି । ମାଟି ତଳେ ସଞ୍ଚିତ ହୋଇ ରହିଥିବା ପେଟ୍ରୋଲ, କୋଇଲା ପରି ପ୍ରାକୃତିକ ଶକ୍ତି ଉତ୍ସ ଗୁଡିକର ଉତ୍ତୋଳନ ଓ ବ୍ୟବହାର ଯୋଗୁ ତାହାର ମନ୍ଦ ପ୍ରଭାବରୁ ପରିବେଶ ଅସନ୍ତୁଳିତ ହେବାରେ ଲାଗିଛି । ସ୍ଥଳଭାଗରେ ରହିଥିବା ଜଙ୍ଗଲ ସମ୍ପଦ ଦ୍ରୁତ  ଗତିରେ ନାନା କାରଣ ଯୋଗୁ କମିବାରେ ଲାଗିଛି । ନଦୀ, ନାଳ ଜନିତ ମଧୁର ଜଳର ଉତ୍ସ ଗୁଡିକ ଦୂଷିତ ଓ ବିଷାକ୍ତ ହୋଇ ଚାଲିଛି । ମାଟିର ଅମ୍ଳତା ବୃଦ୍ଧି ପାଇବାରେ ଲାଗିଛି ଓ ବିରଳ ମୃତ୍ତିକାର ସ୍ତର ଅନୁର୍ବର ହୋଇ ଚାଲିଛି । ନାନା ରାସାୟନିକ ବସ୍ତୁର ବ୍ୟବହାର ଯୋଗୁ ମାଟି, ପାଣି ଓ ପବନ ଅବାରିତ ଭାବେ ପ୍ରଦୂଷିତ ହେବାରେ ଲାଗିଛି । ଏହା ସହିତ ମିଜାଇଲ କ୍ଷେପଣାସ୍ତ୍ର ଓ ଆଣବିକ ଅସ୍ତ୍ର ନିର୍ମାଣ ଓ ପରୀକ୍ଷାର ତେଜସ୍କ୍ରିୟ ବିକିରଣ ପରିବେଶ ଉପରେ ଗଭୀର କୁପ୍ରଭାବ ପକାଉଛି । ପୃଥିବୀର ସଭ୍ୟ ରାଷ୍ଟ୍ରମାନେ ପ୍ରକୃତିର  ଅମୂଲ୍ୟ ସୀମିତ ସଂସାଧନ

ଗୁଡିକୁ ସଭ୍ୟତା ଧ୍ୱଂସକାରୀ ମିଜାଇଲ ଓ ଅଣୁ ଅସ୍ତ୍ର ନିର୍ମାଣରେ ନଷ୍ଟ କରି ଚାଲିଛନ୍ତି । ଆଧୁନିକ ପ୍ରଯୁକ୍ତିର ବିଚାରହୀନ ପ୍ରୟୋଗ ଓ ଅତ୍ୟାଧୁନିକ ଜୀବନଶୈଳୀ ପାଇଁ ଆବଶ୍ୟକ ହେଉଥିବା କେତେକ ବସ୍ତୁର କୁପ୍ରଭାବ ପରିବେଶ ଉପରେ ପଡୁଛି । ନଦୀମାନଙ୍କରେ ବିଶାଳକାୟ ବନ୍ଧ ନିର୍ମାଣଦ୍ୱାରା ବା ସମୁଦ୍ର ତଟରେ ଅତ୍ୟାଧୁନିକ ବନ୍ଦର ନିର୍ମାଣ ଯୋଗୁଁ ପାରିବେଶିକ ଅସନ୍ତୁଳନ କେତେକାଂଶରେ ସୃଷ୍ଟି ହେଉଛି । ସଭ୍ୟତାର ଯେତିକି ବିକାଶ ହେଉଛି ଓ ଯେତେ ସମୃଦ୍ଧିର ପରିବେଶ ଆସୁଛି ପ୍ରକାରାନ୍ତରେ ତାହାର ଏକ ବିଷମୟ ପରିଣତି ବି ସୃଷ୍ଟି ହେଉଛି ।

ଏହିପରି ନାନା କାରଣ ଯୋଗୁଁ ପରିବେଶ କାଳକ୍ରମେ ବଦଳି ଯାଉଛି । ପାଗରେ ଅସ୍ୱାଭାବିକ ପରିବର୍ତ୍ତନ ପରିଲକ୍ଷିତ ହେଉଛି । ପୁନଶ୍ଚ ପୃଥିବୀର ଉତ୍ତାପ ବଢ଼ିବାରେ ଲାଗିଛି । ଯେତିକି ଉତ୍ତାପରେ ଜୀବନ ଧାରଣ ସମ୍ଭବ, ସେହି ଉତ୍ତାପର ସ୍ତର ଅଧିକ ହେଲେ ଜୀବଜଗତ ନାନା ବିପଦର ସମ୍ମୁଖୀନ ହେବ । ସେହିପରି ପୃଥିବୀର ବାୟୁମଣ୍ଡଳକୁ ଲାଗି ଓଜନ ସ୍ତର ରହିଛି ଯାହା ସୂର୍ଯ୍ୟଠାରୁ ନିର୍ଗତ ହେଉଥିବା କ୍ଷତିକାରକ ରଶ୍ମିକୁ ଶୋଷଣ କରିନିଏ । ସେହି ରଶ୍ମି ଜୀବଜଗତ ପାଇଁ ଅତ୍ୟନ୍ତ କ୍ଷତିକାରକ ହୋଇଥିବାରୁ ଓ ତାହା ଓଜନ ସ୍ତରରେ ଅଟକି ଯାଉଥିବା ଯୋଗୁଁ ପୃଥିବୀ ପୃଷ୍ଠରେ ଜୀବଜଗତ ସମ୍ଭବ ହୋଇପାରିଛି । ଏବେ କୁହାଯାଉଛି ଯେ ଅଙ୍ଗାରକାମ୍ଳର ଅତ୍ୟଧିକ ମାତ୍ରା ହେତୁ ଓଜନ ସ୍ତର ପ୍ରଭାବିତ ହେଉଛି । ଫଳରେ ସୂର୍ଯ୍ୟରୁ ନିର୍ଗତ କ୍ଷତିକାରକ ବିକିରଣକୁ ଏହା ସମ୍ପୂର୍ଣ୍ଣ ଭାବେ ପ୍ରତିରୋଧ କରିପାରିବ ନାହିଁ । ଏହି ରଶ୍ମି ପୃଥିବୀକୁ ଆସିଲେ ଏଠାରେ ଜୀବଜଗତ ଭୟଙ୍କର ଭାବେ ପ୍ରଭାବିତ ହେବ । ଯାନ ବାହାନ, କଳ କାରଖାନା, ଜୈବ ଜାଳେଣିର ପ୍ରଭାବରୁ ନିର୍ଗତ ବାଷ୍ପ ଯୋଗୁ ବାୟୁ ମଣ୍ଡଳର ଉତ୍ତାପ ଧୀରେ ଧୀରେ ବଢ଼ିବାରେ ଲାଗିଛି । ଏହା ସହିତ ଆଣବିକ ଅସ୍ତ୍ରର ପରୀକ୍ଷାର ବିକିରଣ ବାୟୁମଣ୍ଡଳର ଉତ୍ତାପକୁ ବୃଦ୍ଧି କରାଉଛି । ଏସବୁର ପ୍ରଭାବକୁ 'ଗ୍ରୀନ ହାଉସ' ପ୍ରଭାବ କୁହାଯାଉଛି । ପୃଥିବୀର ଉତ୍ତାପ ଅଧିକ ହେଲେ ମେରୁ ଅଞ୍ଚଳରେ ଥିବା ବିଶାଳ ବରଫର ସ୍ତର ତରଳି ଯିବ, ଫଳରେ ସମୁଦ୍ରର ଜଳପତନ ଏତେ ବଢ଼ିଯିବ ଯେ ସମୁଦ୍ରତଟର ଅଧିକାଂଶ ସହର ସମୁଦ୍ର ଭିତରେ ରହିଯିବ । ପୁନଶ୍ଚ ପ୍ରାକୃତିକ ଜଙ୍ଗଲର କ୍ରମବର୍ଦ୍ଧିଷ୍ଣୁ ଅବକ୍ଷୟ ଯୋଗୁ ପୃଥିବୀର କେତେକ ଅଞ୍ଚଳରେ ବୃଷ୍ଟିପାତର ପରିମାଣ ଏତେ କମିଯିବ ଯେ ସେ ସବୁ ଅଞ୍ଚଳ ମରୁଭୂମିରେ ପରିଣତ ହୋଇଯିବ । ପୃଥିବୀର ବିଭିନ୍ନ ଅଞ୍ଚଳରେ ଥିବା ଜୈବ ବିବିଧତା ଏତେ ଭୟଙ୍କର ଭାବେ ପ୍ରଭାବିତ ହେଉଛି ଯାଦ୍ୱାରା ତାହା ପ୍ରାକୃତିକ ଭାରସାମ୍ୟତାକୁ କ୍ଷୁର୍ଣ୍ଣ କରିଚାଲିଛି । ଏହି ଧାରା ଅନିୟନ୍ତ୍ରିତ ଭାବେ ଅବ୍ୟାହତ ରହିଲେ ଆମର ଏହି ବିବିଧବର୍ଣ୍ଣା ଧରିତ୍ରୀ କାଳକ୍ରମେ

ଏକ ମୃତ ଗ୍ରହରେ ପରିଣତ ହେବାର ଆଶଙ୍କା ରହିଛି । ଆଗାମୀ ଯୁଗର ବଂଶଧରମାନେ ଆମର ଅହେତୁକ କାର୍ଯ୍ୟଯୋଗୁଁ ନାନା ରୋଗ ଓ ପ୍ରାକୃତିକ ଧ୍ୱଂସର ସମ୍ମୁଖୀନ ହେବାର ଭୟ ଦେଖା ଦେଇଛି । ମନୁଷ୍ୟ ନିଜର ବୁଦ୍ଧିଦ୍ୱାରା ପ୍ରାକୃତିକ ଭାରସାମ୍ୟତାକୁ ଏପରି ବିକୃତ କରିଚାଲିଛି ଯାହାକୁ ବିକାଶର ପ୍ରହେଳିକା କୁହାଯାଉଛି ।

ଏହି ସ୍ଥିତିରେ ମନୁଷ୍ୟର ଭବିଷ୍ୟତ ନେଇ ଆସୁଥିବା ଆଶା, ଆଶଙ୍କା ଓ କରୁଣର ଚିତ୍ରଟି ବିଶ୍ୱର କିଛି ମାନବଦରଦୀ ବ୍ୟକ୍ତିଙ୍କୁ ଗଭୀର ଭାବେ ଚିନ୍ତିତ କରାଉଛି । ଯେଉଁମାନେ ମାନବଜାତିର ଶୁଭକାରୀ ଭବିଷ୍ୟତ ପାଇଁ ଚିନ୍ତିତ ସେହିମାନେ ବିକାଶର ପ୍ରହେଳିକାକୁ ନେଇ ଗମ୍ଭୀର ଚିନ୍ତା ପ୍ରକଟ କରୁଛନ୍ତି । ବିକାଶ ସହ ପ୍ରାକୃତିକ ପ୍ରଦୂଷଣ କିପରି ଅଧିକ ତୀବ୍ର ନହେବ ଏଥିପାଇଁ କେତେକ ବୈଜ୍ଞାନିକ ଓ ପରିବେଶବିତ୍ ଜନମାନସକୁ ନାନା ଲେଖା ଜରିଆରେ ସଚେତନ କରାଉଛନ୍ତି । ଏହି ପୃଷ୍ଠଭୂମିରେ ଏହାର ସମ୍ୟକ୍ ସୂଚନା ଦେବା ଉଚିତ ମନେ କରୁଛି । ଆମେରିକାର ବିଶିଷ୍ଟ ଜୀବ ବିଜ୍ଞାନୀ ଓ ପରିବେଶବିତ୍ ଶ୍ରୀମତୀ ରାକେଲ କାର୍ସନ (୧୯୦୭-୧୯୬୪)ଙ୍କର ନିଃଶବ୍ଦ ବସନ୍ତ (ସାଇଲେଣ୍ଟ ସ୍ପ୍ରିଙ୍ଗ୍) ନାମରେ ଏକ ପୁସ୍ତକ ୧୯୬୪ରେ ପ୍ରକାଶ ପାଇଥିଲା । ପରିବେଶ ପ୍ରଦୂଷଣ ସମ୍ପର୍କରେ କାର୍ସନଙ୍କର ଏହି ବହିଟି ସେ ସମୟରେ ଥିଲା ଯୁଗାନ୍ତକାରୀ । କୀଟମାନଙ୍କୁ ଦମନ କରିବାକୁ ସେତେବେଳେ ଯେଉଁ ଡିଡିଟି ବ୍ୟବହାର କରାଯାଉଥିଲା ତାହାର କି ଭୟଙ୍କର ପରିଣାମ ଜୀବଜଗତ ଉପରେ ପଡିବାର ସମ୍ଭାବନା ରହିଛି ତାହାର ଚିତ୍ର ସେ ବହିରେ ରହିଛି । ପରିବେଶର ସୁରକ୍ଷା କାହିଁକି ଆମ ପାଇଁ ଯୁଗର ବଡ଼ ଆହ୍ୱାନ ତାହାର ବିଭିନ୍ନ ଦିଗ ଉପରେ ଶ୍ରୀମତୀ କାର୍ସନ ଜନ ମାନସକୁ ଅବଗତ କରାଇଥିଲେ । କୁହାଯାଏ ପୃଥିବୀରେ ପରିବେଶ ଆନ୍ଦୋଳନ ବା ସଚେତନତା ସୃଷ୍ଟି କରିବା କ୍ଷେତ୍ରରେ "ନିଃଶବ୍ଦ ବସନ୍ତ" ର ବହୁ ପ୍ରଭାବ ରହିଛି ।

ସେହିପରି "ଗାଇଆ ପ୍ରକଳ୍ପ" ର ଭାବନା ଦୁଇ ପ୍ରବୀଣ ପରିବେଶବିତ୍ ବ୍ରିଟିଶ ରସାୟନ ବିଜ୍ଞାନୀ ଜେମସ ଲଭଲକ ଓ ଆମେରିକୀୟ ଜୀବବିଜ୍ଞାନୀ ଲିନ୍ ମାର୍ଗୁଲିସ ବିଂଶ ଶତାବ୍ଦୀର ଅଶୀ ଦଶକ ଆରମ୍ଭରେ ଦେଇଥିଲେ । ଗାଇଆ ଏକ ଗ୍ରୀକ୍ ଶବ୍ଦ ଯାହାର ଅର୍ଥ ହେଉଛି "ଧରିତ୍ରୀ ମା" । ପ୍ରାଚୀନ ଗ୍ରୀସରେ ଗ୍ରୀକ୍‌ମାନେ ପୃଥିବୀକୁ ଏକ ଦେବୀ ମନେକରି ଗାଇଆ ବା ଧରିତ୍ରୀ ମା କହି ପୂଜା କରୁଥିଲେ । ଲଭଲକ ଓ ମାର୍ଗୁଲିସ ବସ୍ତୁଜଗତ, ଉଦ୍ଭିଦ ଜଗତ ଓ ପ୍ରାଣୀ ଜଗତ ଭିତରେ ଏକ ସୁସାମଞ୍ଜସ୍ୟ ରକ୍ଷା କରିବାକୁ ଗାଇଆ ପ୍ରକଳ୍ପର ଅବତାରଣା କରିଥିଲେ । ଆମ ସୌରମଣ୍ଡଳର ପୃଥିବୀ ରୂପକ ଗ୍ରହଟିରେ ଗୋଟିଏ ଜୀବ ଜଗତ ରହିଛି ଓ ବିବର୍ତ୍ତନ ପ୍ରକ୍ରିୟାରେ ମଣିଷ ଏକ ବୁଦ୍ଧିମାନ ଜୀବ

ଭାବେ ସୃଷ୍ଟି ହୋଇଛି । ଏହି ଗ୍ରହ ଓ ପ୍ରକୃତିକୁ ସୁରକ୍ଷା ଦେବା ଆମର ଏକ ନୈତିକ କର୍ତ୍ତବ୍ୟ । ବିଶେଷ କରି ପୃଥିବୀ ବକ୍ଷରେ ସଞ୍ଚିତ ଥିବା ସମସ୍ତ ପ୍ରାକୃତିକ ସଂସାଧନ ଯାହାର ନବୀକରଣ ହେବା ସମ୍ଭବ ନୁହେଁ ତାହାକୁ ଅବିଚାରିତ ଭାବେ ଧ୍ୱଂସ ନ କରିବା ଆମର ଉତ୍ତରଦାୟିତ୍ୱ । ଆମେ ଏହି ଗ୍ରହଟିକୁ ସବୁଦିନ ପାଇଁ ବାସୋପଯୋଗୀ କିପରି କରି ରଖିବା ସେଥିପାଇଁ ଆମର ଗମ୍ଭୀର ସମ୍ପୃକ୍ତି ଆବଶ୍ୟକ ।

ମୋଟ ଉପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୃଥିବୀର ପ୍ରାକୃତିକ ପରିବେଶର ସୁରକ୍ଷା ନେଇ ନାନା ଭାବରେ ସାରା ବିଶ୍ୱରେ ଏକ ସଚେତନତାର ବାତାବରଣ ସୃଷ୍ଟି ହୋଇଛି । ବ୍ୟକ୍ତିଗତ ସ୍ତରରେ କେତେକ ବୈଜ୍ଞାନିକ ଓ ପରିବେଶବିତ୍ ପରିବେଶର ସୁରକ୍ଷା ନେଇ ସମ୍ପୃକ୍ତି ବ୍ୟକ୍ତ କରୁଥିଲେ ବି ଏହି ସମସ୍ୟାଟି ଆନ୍ତର୍ଜାତିକ ସ୍ତରରେ ଦୃଷ୍ଟି ଆକର୍ଷଣ କରିଛି । ଫଳରେ ପୃଥିବୀରେ ଅନେକ ଆନ୍ତର୍ଜାତିକ ସମ୍ମିଳନୀମାନ ଆୟୋଜିତ ହୋଇ ବିଭିନ୍ନ ଦେଶର ରାଷ୍ଟ୍ରମୁଖ୍ୟ ମାନଙ୍କ ଭିତରେ ଏକ ସହମତି ଆଣିବାକୁ ପ୍ରୟାସ ହୋଇଛି । ୧୯୭୨ରେ ଷ୍ଟକହୋମଠାରେ ଜାତିସଙ୍ଘ ଆନୁକୂଲ୍ୟରେ ଯେଉଁ ଆନ୍ତର୍ଜାତିକ ସମ୍ମିଳନୀ ହୋଇଥିଲା ସେଥିରେ ପୃଥିବୀର ପରିବେଶର ସୁରକ୍ଷା ପାଇଁ ବିଭିନ୍ନ ନିଷ୍ପତ୍ତିମାନ ଗ୍ରହଣ କରାଯାଇଥିଲା । ସେହିପରି ୧୯୯୨ ରେ ବ୍ରାଜିଲର ରିଓ ସମ୍ମିଳନୀ ଥିଲା ଏକ ଯୁଗାନ୍ତକାରୀ ଘଟଣା । ସେଥିରେ ପୃଥିବୀର ଅଧିକାଂଶ ରାଷ୍ଟ୍ରର ପ୍ରତିନିଧି ଓ ବହୁ ରାଷ୍ଟ୍ରମୁଖ୍ୟ ଯୋଗ ଦେଇ ପାଗ ପରିବର୍ତ୍ତନ, ଗ୍ଲୋବାଲ ୱାର୍ମିଂ ପରି ସମସ୍ୟା ଗୁଡିକୁ କିପରି ବିଶ୍ୱ ସ୍ତରରେ ପ୍ରତିରୋଧ କରାଯାଇ ପାରିବ ସେଥିପାଇଁ ବହୁ ବିଷୟରେ ବିଚାର ବିମର୍ଶ କରିଥିଲେ । ଜୈବ ଇନ୍ଧନ ବା ଫସିଲ ଫୁଏଲର ବ୍ୟବହାରକୁ ସୀମିତ କରିବା, ବିକଳ୍ପ ଶକ୍ତି ପାଇଁ ବିଶ୍ୱ ସ୍ତରରେ ଗବେଷଣାକୁ ପ୍ରୋତ୍ସାହନ ଦେବା, ନବୀକରଣ ହୋଇ ପାରୁଥିବା ପ୍ରାକୃତିକ ସାଧନମାନଙ୍କୁ ବ୍ୟବହାର କରିବା, ପରିବେଶରୁ ଧ୍ୱଂସ ପାଇବାକୁ ବସିଥିବା ପ୍ରାଣୀ ଓ ଉଦ୍ଭିଦମାନଙ୍କ ବଂଶ ରକ୍ଷା କରିବାକୁ ପ୍ରଯତ୍ନ କରିବା, ବିଭିନ୍ନ ଅଞ୍ଚଳର ଜୈବ ବିବିଧତାକୁ ସୁରକ୍ଷା ଦେବା, ନଦୀ, ସମୁଦ୍ର ଓ ବାୟୁମଣ୍ଡଳକୁ ପ୍ରଦୂଷଣରୁ ରକ୍ଷା କରିବାକୁ ଯତ୍ନବାନ ହେବା ପରି ନାନା ନିଷ୍ପତ୍ତି ବିଶ୍ୱ ସ୍ତରରେ ନିଆଯାଇଥିଲା । ଆମେମାନେ କିପରି ମଣିଷ ଜାତିର ଆଗାମୀ ବଂଶଧର ମାନଙ୍କ ପାଇଁ ଏକ ପ୍ରଦୂଷିତ ଧରିତ୍ରୀ ଛାଡିବାରୁ ବିରତ ରହିବା, ସେଥିରେ ବହୁ ଆନ୍ତରିକ ସଦ୍‌ଭାବନା ବି ପ୍ରକାଶ ପାଇଥିଲା । ରିଓ ସମ୍ମିଳନୀର ୨୦ ବର୍ଷ ପୂର୍ତ୍ତି ଉପଲକ୍ଷେ ୨୦୧୨ ରେ ଜୁନ୍ ୨୦ ରୁ ୨୨ ପର୍ଯ୍ୟନ୍ତ ବ୍ରାଜିଲର ରିଓଠାରେ ମଧ୍ୟ ପରିବେଶ ସମ୍ପର୍କରେ ଏକ ବିଶ୍ୱ ସମ୍ମିଳନୀ ହୋଇଯାଇଛି । ପୃଥିବୀର ରାଷ୍ଟ୍ର ମୁଖ୍ୟମାନେ ଏହି ସମ୍ମିଳନୀରେ ଯୋଗ ଦେଇ ପୃଥିବୀର ପରିବେଶକୁ

ରକ୍ଷା କରିବାକୁ ଆନ୍ତରିକତା ବ୍ୟକ୍ତ କରିଛନ୍ତି । ଏଥିପାଇଁ ଅନ୍ତାରାଷ୍ଟ୍ରୀୟ ସହଯୋଗ ଓ ଗବେଷଣା ପାଇଁ ବି ନିଷ୍ପତ୍ତିମାନ ହୋଇଛି । ସାରା ପୃଥିବୀରେ ଜୁନ ମାସ ୫ ତାରିଖକୁ ପରିବେଶ ଦିବସଭାବେ ପାଳନ କରାଯାଇ ପରିବେଶ ସୁରକ୍ଷା ପାଇଁ ଜନସଚେତନତା ସୃଷ୍ଟି କରାଯାଉଛି । ଏହା ସହିତ ପୃଥିବୀରେ ଶିକ୍ଷାନୁଷ୍ଠାନ ମାନଙ୍କରେ ପରିବେଶ ବିଷୟରେ ଯୁବ ସମାଜକୁ ଶିକ୍ଷା ଦିଆଯାଉଛି । ଏସବୁ ସକାରାତ୍ମକ ପଦକ୍ଷେପ ସତ୍ତ୍ୱେ ତଥାପି ପରିବେଶ ପ୍ରତି ବିପଦ ବଢ଼ିବାରେ ଲାଗିଛି । ଏହି ସ୍ଥିତିରେ ପ୍ରାକୃତିକ ପ୍ରଦୂଷଣ ରୋକିବା ପାଇଁ ଓ ଏହା ଅଧିକ ତୀବ୍ର ନ ହେବା ପାଇଁ ସାରା ପୃଥିବୀର ଜନଗଣ ନିଜର ସମ୍ପୃକ୍ତି ବ୍ୟକ୍ତ କରିବା ଦରକାର ।

ପରିବେଶ ସୁରକ୍ଷା ନେଇ ଏକ ଆନ୍ତର୍ଜାତିକ ସମ୍ପୃକ୍ତି ଓ ସଚେତନତା ସୃଷ୍ଟି ହୋଇଛି । ଏକଥା ସତ ଯେ ସଭ୍ୟତା ପଛକୁ ଯିବ ନାହିଁ ବା ଯାନବାହାନ ଓ ବିକାଶକୁ ବାଦ୍ ଦେବା ସମ୍ଭବ ନୁହେଁ । ତେବେ ବୈଜ୍ଞାନିକ ଗବେଷଣାଦ୍ୱାରା ପରିବେଶ-ଉପଯୋଗୀ ପ୍ରଯୁକ୍ତିର ବିକାଶ କରିବାକୁ ହେବ । ଜୈବ ଇନ୍ଧନ ପରିବର୍ତ୍ତେ ନୂତନ ଶକ୍ତି-ଉତ୍ସର ସନ୍ଧାନ କରିବାକୁ ହେବ । କୃଷି କ୍ଷେତ୍ରରେ ଜୈବିକ ସାରର ବ୍ୟବହାର କରାଯାଇ ପାରିବ । ଆଣବିକ ଅସ୍ତ୍ର ନିର୍ମାଣ ନିଷିଦ୍ଧ କରିବାକୁ ହେବ । ଏହିପରି ନାନା ଦିଗରେ ସୁଚିନ୍ତିତ ପଦକ୍ଷେପ ନିଆଗଲେ ପରିବେଶକୁ ସୁରକ୍ଷା କରାଯାଇ ପାରିବ । ଏହା ହିଁ ପୃଥିବୀବାସୀଙ୍କ ପାଇଁ ବଡ଼ ଆହ୍ୱାନ ।

(୫.୯.୨୦୧୨)



# ବିକାଶ ଓ ପରିବେଶ

ଆଧୁନିକ ବିକାଶର ପରିଣତି ବିୟୋଗାନ୍ତକ କି ? ହଜାର ହଜାର ବର୍ଷର ପ୍ରୟାସଦ୍ୱାରା ଯେଉଁ ସଭ୍ୟତାର ଉଦ୍ଭବ ହୋଇଛି ତାହାର ଭବିଷ୍ୟତ ନେଇ ଏବେ ନୈରାଶ୍ୟ ଆସୁଛି । ଏହି ନୈରାଶ୍ୟର ମୁଖ୍ୟ କାରଣ ହେଉଛି ପାରିବେଶିକ ଅସନ୍ତୁଳନ ଓ ପ୍ରଦୂଷଣ । ପରିବେଶ ଯେଉଁ ଧାରାରେ ପ୍ରଦୂଷିତ ହୋଇ ଚାଲିଛି ସେହି ଧାରା ଯଦି ଅବ୍ୟାହତ ରହେ ତେବେ ଧରାପୃଷ୍ଠରୁ ଜୀବ ଜଗତ ଲୋପ ପାଇବାର ସମ୍ଭାବନା ରହିଛି । ପୃଥିବୀର ପରିବେଶ ମଣିଷର ବାସସ୍ଥାନ ପାଇଁ ହୁଏତ ଧୀରେ ଧୀରେ ଅନୁପଯୋଗୀ ହୋଇ ଉଠିବ । ସେପରି ସ୍ଥଳେ ପୃଥିବୀ ରୂପକ ଆମର ଏହି ଗ୍ରହଟିରେ ଜୀବ ଜଗତ ପ୍ରତି ବଡ଼ ଆହ୍ୱାନ ଆସିବ । ଆଧୁନିକ ପ୍ରଯୁକ୍ତି ଓ ବିଜ୍ଞାନାଶ୍ରୟୀ ସଭ୍ୟତା ମାନବ ସମାଜର ହିତ ସାଧନ ପରିବର୍ତ୍ତେ ଭବିଷ୍ୟତରେ ଯେ ଏକ ଭୟାନକ ସ୍ଥିତି ସୃଷ୍ଟି କରିବ ଏହି ଆଶା ଆଶଙ୍କା ପୃଥିବୀର ବହୁ ଶୁଭକାରୀ ବୁଦ୍ଧିଜୀବୀଙ୍କୁ ବ୍ୟଥିତ କରୁଛି । ଆଧୁନିକ ପ୍ରଯୁକ୍ତି ଓ ସଭ୍ୟତା ଯେଉଁ ଧାରାରେ ପ୍ରକୃତି ଓ ପରିବେଶକୁ ନଷ୍ଟ କରିଚାଲିଛି ତାହାର ଭବିଷ୍ୟତ ଯେ ଶୁଭଙ୍କର ନୁହେଁ ଏହା ମନେ ହେଉଛି ।

କହିବା ନିଷ୍ପ୍ରୟୋଜନ ଯେ ପ୍ରକୃତି ଓ ପରିବେଶ ଉପରେ ନିର୍ଭର କରି ପୃଥିବୀ ପୃଷ୍ଠରେ ଜୀବ ଜଗତ ତିଷ୍ଠି ରହିଛି । ଜୀବ ଜଗତ ରହିବା ପାଇଁ ଗୋଟିଏ ଅନୁକୂଳ ପରିବେଶ ଆବଶ୍ୟକ । ଏକ ବ୍ୟାପକତର ଅର୍ଥରେ ପ୍ରକୃତି କହିଲେ ଆମେ ଆମର ସୂର୍ଯ୍ୟ, ଗ୍ରହମଣ୍ଡଳ, ଆମ ପୃଥିବୀ, ପ୍ରାକୃତିକ ସଂସାଧନ, ଜୀବଜଗତ ଓ ଉଦ୍ଭିଦ ଜଗତକୁ ବୁଝିଥାଏ, କିନ୍ତୁ ପରିବେଶ କହିଲେ ପ୍ରକୃତି ଭିତରେ ସୃଷ୍ଟି ହେଉଥିବା ପରିସ୍ଥିତି ଓ ପରିବର୍ତ୍ତନକୁ ନେଇଥାଏ । ପରିବେଶ ନାନା କାରଣ ଯୋଗୁ ବଦଳୁଥାଏ । କୃଷିର ଜ୍ଞାନ ଆସିବା ପୂର୍ବରୁ ଯେଉଁ ପରିବେଶ ରହିଥିଲା, ମଣିଷ କୃଷି କରି ସ୍ଥାୟୀ ଭାବରେ ବସବାସ କରିବା ହେତୁ ପରିବେଶରେ କେତେକ ପରିବର୍ତ୍ତନ ଆସିଲା । କୁହାଯାଏ ପୃଥିବୀ ପୃଷ୍ଠରେ ଏକଦା ବିଶାଳକାୟ ଜୀବମାନେ ରହିଥିଲେ, ଯେଉଁ ଜୀବଗୁଡିକ ପାରିବେଶିକ

ପରିବର୍ତ୍ତନଦ୍ୱାରା ଲୋପ ପାଇଗଲେ । ଭୂକମ୍ପ, ସୁନାମି ଦ୍ୱାରା ନଦୀର ଗତିପଥ ବଦଳିଥିବା ବା କେଉଁଠି ପର୍ବତ ସୃଷ୍ଟି ହେବା ବା ଲୋପ ପାଇବା ଦ୍ୱାରା ପରିବେଶରେ ପରିବର୍ତ୍ତନ ଆସିଥାଏ । ସେହିପରି ଲକ୍ଷ ଲକ୍ଷ ବର୍ଷର ଜୈବିକ ବିବର୍ତ୍ତନ ଧାରାରେ ଜୀବ ଜଗତରେ ବି କିଛି କିଛି ପରିବର୍ତ୍ତନ ସଙ୍ଘଟିତ ହେଉଥାଏ । ପୃଥିବୀର ସବୁ ସ୍ଥାନର ପରିବେଶ ସମାନ ନୁହେଁ ବା ଗୋଟିଏ ଭୂଖଣ୍ଡର ପ୍ରାକୃତିକ ପରିବେଶ ସର୍ବଦା ସମାନ ରହିନାହିଁ । ପରିବେଶ ଅନୁଯାୟୀ ଉଦ୍ଭିଦ ଓ ପ୍ରାଣୀମାନଙ୍କ ମଧ୍ୟରେ ଭିନ୍ନତା ଦୃଷ୍ଟିଗୋଚର ହୋଇଥାଏ । ମୋଟ ଉପରେ ପରିବେଶରେ ଭିନ୍ନତା, ବିବିଧତା ଓ ପରିବର୍ତ୍ତନ ହେଉଥିବା ଦେଖାଯାଏ । ପୃଥିବୀର ସବୁସ୍ଥାନର ଜଳବାୟୁ ସମାନ ନୁହେଁ ବା ସବୁ ଅଞ୍ଚଳର ମାଟିର ଉର୍ବରତା ଏକା ପ୍ରକାର ନୁହେଁ । ପୃଥିବୀର ପ୍ରକୃତି ଓ ପରିବେଶର ଭିନ୍ନତା ସତ୍ତ୍ୱେ ପରିବେଶ ସ୍ୱକୀୟ ଧାରାରେ ଏକ ସନ୍ତୁଳନ ଓ ସଂହତି ରକ୍ଷା କରୁଥିବା ଆମର ପର୍ଯ୍ୟବେକ୍ଷଣରୁ ଜଣାଯାଏ ।

ତେବେ ପଥିବୀରେ ଶିଳ୍ପ ବିପ୍ଳବ ଆସିବା ପରଠୁ ପରିବେଶରେ ଏପରି କେତେକ ପରିବର୍ତ୍ତନ ଆସିଛି ଯାହା ସମ୍ପ୍ରତି ଭବିଷ୍ୟତ ନେଇ ଏକ ଭୟାନକ ଚିତ୍ର ପ୍ରଦାନ କରୁଛି । ଶିଳ୍ପ ବିପ୍ଳବ, ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତିର ବିକାଶ, ପ୍ରାକୃତିକ ସାଧନ ଗୁଡ଼ିକର କ୍ରମବର୍ଦ୍ଧିଷ୍ଣୁ ଅବକ୍ଷୟ, ଜନସଂଖ୍ୟାର ଅଭିବୃଦ୍ଧି ଯୋଗୁଁ ପରିବେଶରେ ଦ୍ରୁତ ପରିବର୍ତ୍ତନ ହୋଇଚାଲିଛି । ଏ କ୍ଷେତ୍ରରେ ଜନସଂଖ୍ୟାର ଅଭିବୃଦ୍ଧି ହିଁ ପରିବେଶ ପରିବର୍ତ୍ତନ ହେବାର ଏକ ମୁଖ୍ୟ କାରଣ । ବୈଜ୍ଞାନିକ ତଥ୍ୟରୁ ଜଣାଯାଏ ଯେ ଖ୍ରୀଷ୍ଟାବ୍ଦ ଆରମ୍ଭ ବେଳକୁ ଅର୍ଥାତ୍ ଆଜକୁ ୨୦୧୨ ବର୍ଷ ତଳେ ପୃଥିବୀର ଜନସଂଖ୍ୟା ଥିଲା ମାତ୍ର କୋଡିଏ କୋଟି, ଖ୍ରୀଷ୍ଟାବ୍ଦ ଏକ ହଜାର ବେଳକୁ ପୃଥିବୀର ଲୋକସଂଖ୍ୟା ହେଲା ଶାଢେ ସତାଇଶ କୋଟି । ୧୮୦୦ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ଥିଲା ପ୍ରାୟ ୧୦୦ କୋଟି ଓ ୧୯୦୦ ମସିହା ବେଳକୁ ପୃଥିବୀର ଲୋକସଂଖ୍ୟା ହେଲା ୧୬୦ କୋଟି । ତେବେ ୨୦୦୦ ମସିହା ବେଳକୁ ଜନସଂଖ୍ୟା ବୃଦ୍ଧିପାଇ ହେଲା ୬୦୦ କୋଟି ଓ ୨୦୧୧ ଜନଗଣନା ଅନୁଯାୟୀ ପୃଥିବୀର ଲୋକସଂଖ୍ୟା ୭୦୦ କୋଟି । ଆଧୁନିକ ଚିକିତ୍ସା ଓ ମହାମାରୀ ରୋଗମାନଙ୍କର ନିୟନ୍ତ୍ରଣ ଯୋଗୁଁ ଶହେବର୍ଷ ଭିତରେ ପୃଥିବୀର ଜନସଂଖ୍ୟାରେ ଏହି ଦ୍ରୁତ ଅଭିବୃଦ୍ଧି ଯୋଗୁଁ ଆବଶ୍ୟକ ହେଉଥିବା ଖାଦ୍ୟ ପାଇଁ କୃଷିର ଉତ୍ପାଦନକୁ ନାନା ଭାବରେ ବୃଦ୍ଧି କରିବାକୁ ପଡିଛି । ବହୁ ଅଞ୍ଚଳ ଯାହା ଗଛ, ଲତାରେ ଭରପୂର ଥାଇ ଜଙ୍ଗଲ ଥିଲା, ତାହାକୁ କାଟି ସେଠାରେ ଜନବସତି ମାନ ଗଢ଼ି ଉଠିଛି । ସହରୀ ସଭ୍ୟତାର ବିକାଶ ହୋଇଛି । ଆଧୁନିକ ଜ୍ଞାନ ଓ ପ୍ରଯୁକ୍ତି ସାହାଯ୍ୟରେ ବିଶାଳକାୟ ଅଟ୍ଟାଳିକା ମାନ ନିର୍ମିତ ହୋଇଛି । ସଡ଼କ ନିର୍ମାଣ, ରେଳପଥ ନିର୍ମାଣ ଯୋଗୁଁ ଅସଂଖ୍ୟ ଗଛ, ଲତା

କାଟିବାକୁ ପଡୁଛି, ପାହାଡକୁ ଭାଙ୍ଗିବାକୁ ହେଉଛି, ନଦୀ ଉପରେ ବ୍ରିଜ ନିର୍ମାଣ କରିବା ଆବଶ୍ୟକ ପଡିଛି । ଅନ୍ତାରାଷ୍ଟ୍ରୀୟ ବାଣିଜ୍ୟ ପାଇଁ ସମୁଦ୍ର ତଟରେ ବିଶାଳ ବନ୍ଦରମାନ ଆଧୁନିକ ଜ୍ଞାନ କୌଶଳରେ ନିର୍ମାଣ କରାଯାଉଛି । ଏହା ସହିତ ଉଗ୍ର ଜାତୀୟତା ଓ ରାଷ୍ଟ୍ରଭାବନାର ବିକାଶ ପରଠୁ ପ୍ରତ୍ୟେକ ରାଷ୍ଟ୍ର ନିଜର ନିରାପତ୍ତା ପାଇଁ ସାମରିକ ସ୍ତରରେ ବଳଶାଳୀ ହେବାକୁ ପ୍ରୟାସ କରୁଛି । ପରିଣାମତଃ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ସାମରିକ ଅସ୍ତ୍ର ଶସ୍ତ୍ର ନିର୍ମାଣ ପାଇଁ ଅହେତୁକ ପ୍ରତିଯୋଗିତା ଲାଗି ରହିଛି । ଦୁର୍ମୂଲ୍ୟ ସୀମିତ ପ୍ରାକୃତିକ ସଂସାଧନ ଗୁଡିକୁ ବ୍ୟବହାର କରି କ୍ଷେପଣାସ୍ତ୍ର, ଆଣବିକ ଅସ୍ତ୍ର ନିର୍ମାଣ ପାଇଁ ପ୍ରତ୍ୟେକ ରାଷ୍ଟ୍ର ଉଦ୍ୟମ କରିବାଦ୍ୱାରା ତାହାର ନାନା କୁପ୍ରଭାବ ପରିବେଶ ଉପରେ ପଡୁଛି ।

କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ପୂରଣ ପାଇଁ ଅଧିକ ଉତ୍ପାଦନ ପାଇବାକୁ ସୀମିତ ଚାଷ ଜମିରେ ରାସାୟନିକ ସାର, କୀଟନାଶକ ଇତ୍ୟାଦି ବ୍ୟବହାର କରାଯାଉଛି । ତାହାଦ୍ୱାରା ଉତ୍ପାଦନ ବୃଦ୍ଧି ପାଉଥିଲେ ବି ତାହାର ଅନିଷ୍ଟକାରୀ ପ୍ରଭାବ ପରିବେଶକୁ ପ୍ରଦୂଷିତ କରି ଚାଲିଛି । ଆଧୁନିକ ଜୀବନ ଶୈଳୀ କ୍ଷେତ୍ରରେ ଆବଶ୍ୟକ ପଡୁଥିବା ସାମଗ୍ରୀ ପାଇଁ ନାନା କଳ କାରଖାନା ଗଢ଼ିଉଠୁଛି । କଳକାରଖାନା, ଶିଳ୍ପ ବିକାଶ ଓ ଆଧୁନିକ ପ୍ରଯୁକ୍ତିଦ୍ୱାରା ଆର୍ଥିକ ବିକାଶ, କର୍ମସଂସ୍ଥାନ, ଜୀବନର ଭୌତିକ ମାନ ବୃଦ୍ଧି ହେଉଥିଲେ ବି କଳକାରଖାନାରୁ ନିର୍ଗତ ବହୁ  ବର୍ଜ୍ୟ ଓ ରାସାୟନିକ ବସ୍ତୁ ପ୍ରାକୃତିକ ପରିବେଶକୁ ପ୍ରଦୂଷିତ କରିଚାଲିଛି । ଗମନା ଗମନ, କଳକାରଖାନା ଓ ସାଧାରଣ ଜୀବନ ଧାରଣ କ୍ଷେତ୍ରରେ ଇନ୍ଧନ, ଶକ୍ତି ବର୍ତ୍ତମାନ ଅତ୍ୟନ୍ତ ଅପରିହାର୍ଯ୍ୟ ହୋଇପଡିଛି । କୋଇଲା, ପେଟ୍ରୋଲ ପରି ଜୈବିକ ଇନ୍ଧନ ଯାହା କୋଟି କୋଟି ବର୍ଷଦେଇ ପ୍ରାକୃତିକ ପରିବେଶରେ ସୃଷ୍ଟି ହୋଇଛି ଓ ଯାହାର ପରିମାଣ ସୀମିତ, ତାହା ଉପରେ ଆମର ନିର୍ଭରଶୀଳତା ଆଶାତୀତ ଭାବରେ ବଢ଼ିଚାଲିଛି । ସେହି ସୀମିତ  ପ୍ରାକୃତିକ ଇନ୍ଧନକୁ ଆମେ ଯେପରି ଓ ଯେଉଁ ହାରରେ ବ୍ୟବହାର କରି ଚାଲିଛେ ତାହା ବି ଭବିଷ୍ୟତ ନେଇ ନାନା ଆଶଙ୍କା ସୃଷ୍ଟି କରୁଛି । ଏହି ଶକ୍ତି ଉତ୍ସ ଗୁଡିକ ସରିଗଲେ ସଭ୍ୟତାର ଭବିଷ୍ୟତ କ'ଣ ହେବ ତାହା ଚିନ୍ତାର ବିଷୟ ହେଉଛି । ଆଧୁନିକ ଜ୍ଞାନକୌଶଳରେ ବହୁମୁଖୀ ନଦୀବନ୍ଧ ଯୋଜନାଦ୍ୱାରା ନଦୀମାନଙ୍କ ଉପରେ ଯେଉଁ ବିଶାଳ ଜଳଭଣ୍ଡାର ସୃଷ୍ଟି ହେଉଛି ତାହାର ସୁଫଳ ବିଷୟରେ କୁହାଯାଉଥିଲେ ବି ଏହା ଫଳରେ ଜଙ୍ଗଲ ଓ ଉପତ୍ୟକା ସବୁଦିନପାଇଁ ଜଳଗର୍ଭରେ ବୁଡିଯାଇ ଅସ୍ତିତ୍ୱ ହରାଉଛି । ସେଠାରୁ ହୁଏତ ଜନବସତିକୁ ସ୍ଥାନାନ୍ତର କରାଯାଉଛି, ତେବେ ସେ ଅଞ୍ଚଳର ବୃକ୍ଷରାଜି, ପଶୁପକ୍ଷୀ ଧ୍ୱଂସ ପାଉଛି । ନୂଆ ନୂଆ ଜନବସତି ଓ କଳ କାରଖାନାଦ୍ୱାରା ଜଙ୍ଗଲର ଅବକ୍ଷୟ ହୋଇଚାଲିଛି । ଏ ସବୁର ସମ୍ମିଳିତ ପ୍ରଭାବରୁ ବିଭିନ୍ନ ଅଞ୍ଚଳର ଜୈବ ବିବିଧତା ଧ୍ୱଂସ ପାଉଛି ।

ଆମର ପ୍ରାକୃତିକ ପରିବେଶ କହିଲେ ସାଧାରଣତଃ ପୃଥିବୀର ଜଳଭାଗ, ସ୍ଥଳଭାଗ ଓ ବାୟୁମଣ୍ଡଳ ଜନିତ ଆକାଶକୁ ବୁଝାଇଥାଏ । ଏଥିରେ ରହିଛି ନଦୀ, ନାଳ, ସମୁଦ୍ର, ପାହାଡ, ଉପତ୍ୟକା, ପର୍ବତ, ଉର୍ବର-ଅନୁର୍ବର ଜମି, ଆମର ଆକାଶ ଓ ବାୟୁମଣ୍ଡଳ । ଏହି ପ୍ରାକୃତିକ ପରିବେଶରେ ରହିଛି ଉଭିଦ ଜଗତ ଓ ପ୍ରାଣୀ ଜଗତ ଯାହା ନିୟୁତ ନିୟୁତ ବର୍ଷର ବିବର୍ତ୍ତନ ଧାରାରେ ଉଦ୍ଭବ ହୋଇଛି । ଆମ ସୌରମଣ୍ଡଳରେ ପୃଥିବୀ ନାମଧେୟ ଗ୍ରହଟିରେ ହିଁ ଜୀବଜଗତର ବିବର୍ତ୍ତନ ଘଟିଛି । ବିବର୍ତ୍ତନ ସାଧାରଣତଃ ଦୁଇଟି ସ୍ତରରେ ପୃଥିବୀରେ ସମ୍ଭବ ହୋଇଛି, ଯଥା ଜୈବ ବିବର୍ତ୍ତନ ଓ ଅଜୈବିକ ବା ଇନଅର୍ଗାନିକ ବିବର୍ତ୍ତନ । ପ୍ରାକୃତିକ ପରିବେଶରେ ଅନୁକୂଳତା ଯୋଗୁଁ ନିୟୁତ ନିୟୁତ ବର୍ଷ ଧରି ଜୀବଜଗତର ଯେଉଁ କ୍ରମୋନ୍ନତ ପଦୋନ୍ନତି ଘଟିଛି ତାହା ହେଉଛି ଜୈବବିବର୍ତ୍ତନ । ଏହି ବିବର୍ତ୍ତନ ପ୍ରକ୍ରିୟା ଜୀବନର ସତ୍ତା ସୃଷ୍ଟିଠାରୁ ଚାଲି ଆସିଛି । ସରଳ ଜୀବମାନଙ୍କଠାରୁ ଜଟିଳ ଜୀବମାନଙ୍କର ଉତ୍ପତ୍ତି ସହିତ ମଣିଷ ରୂପି ପ୍ରାଣୀମାନଙ୍କର ଉଦ୍ଭବ ହୋଇଛି । ବିବର୍ତ୍ତନ ଧାରାରେ ମଣିଷ ହିଁ ହୋଇଛି ଶ୍ରେଷ୍ଠ ପ୍ରାଣୀ କାରଣ ତାହାର ବିଚାର ବୁଦ୍ଧି ରହିଛି, ଭାଷା ପ୍ରୟୋଗର ସାମର୍ଥ୍ୟ ଅଛି, ଜୀବନ ଓ ପରିବେଶ ନେଇ ଜ୍ଞାନ ରହିଛି ଓ ନିଜର ସ୍ଥିତିରେ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିବାର ସାମର୍ଥ୍ୟ ଆସିଛି । ପରିବେଶରେ ଜୈବିକ ବିବର୍ତ୍ତନ ଯେପରି ନିୟୁତ ନିୟୁତ ବର୍ଷ ଧରି ଚାଲି ଆସିଛି, ସେହିପରି ପ୍ରକୃତି ସ୍ତରରେ ଅଜୈବିକ ବିବର୍ତ୍ତନ ମଧ୍ୟ ପୃଥିବୀ ରୂପକ ଗ୍ରହର ସୃଷ୍ଟିଠାରୁ ସଘଂଟିତ ହୋଇଆସିଛି । ଆମର ଚତୁଷ୍ପାର୍ଶ୍ୱରେ ଥିବା ପାହାଡ, ପର୍ବତ, ନଦୀ, ସମୁଦ୍ରର ବି କୋଟି କୋଟି ବର୍ଷରେ ବିବର୍ତ୍ତନ ହୋଇଛି । ମାଟି ତଳେ ଥିବା କୋଇଲା, ପେଟ୍ରୋଲ ଆଦି ନିୟୁତ ନିୟୁତ ବର୍ଷର ଜୈବିକ ଓ ଅଜୈବିକ ବିବର୍ତ୍ତନ ପ୍ରକ୍ରିୟାରେ ସୃଷ୍ଟି ହୋଇଛି ।

ଲକ୍ଷାଧିକ ବର୍ଷତଳେ ମଣିଷର ବିବର୍ତ୍ତନ ହୋଇଥିଲେ ବି କୃଷିର ଜ୍ଞାନପରେ ପୃଥିବୀର ବିଭିନ୍ନ ଭୂଖଣ୍ଡରେ ମାତ୍ର ଚାରି ପାଞ୍ଚ ହଜାର ବର୍ଷ ତଳେ ସଭ୍ୟତା ଆରମ୍ଭ ହୋଇଥିଲା । ତେବେ ଦୁଇ ତିନି ଶତାବ୍ଦୀ ତଳେ ପୃଥିବୀ ପୃଷ୍ଠରେ ଶିଳ୍ପ ବିପ୍ଳବର ଯୁଗ ଆସିଲା । ଏହାଦ୍ୱାରା ନାନା ଉନ୍ନୟନ, ଶିଳ୍ପୋନ୍ନତି ଓ ଆଧୁନିକ ଜୀବନଶୈଳୀ ପରିବେଶ ଉପରେ ନାନା ଚାପ ସୃଷ୍ଟି କଲା । ପରିଣାମ ସ୍ୱରୂପ ଆମର ଚତୁର୍ଦ୍ଦିଗରେ ରହିଥିବା ମାଟି, ପାଣି, ପବନ ଓ ଜୈବ ବିବିଧତା କ୍ରମବର୍ଦ୍ଧିଷ୍ଣୁ ଭାବେ ପ୍ରଦୂଷିତ ହୋଇଚାଲିଛି । ଚାଷ ପାଇଁ ବ୍ୟବହୃତ ହେଉଥିବା କୀଟନାଶକ, ରାସାୟନିକ ସାର ଓ ଅନ୍ୟାନ୍ୟ କାରଣରୁ ମାଟିର ଅମ୍ଳତା ବୃଦ୍ଧି ପାଇବା ସହ ଏହାର ପ୍ରାକୃତିକ ଲକ୍ଷଣ ନଷ୍ଟ ହୋଇଚାଲିଛି । ବିଭିନ୍ନ କଳ କାରଖାନାର ବର୍ଜ୍ୟବସ୍ତୁ, ସାର ଓ କୀଟନାଶକ ଧୋଇ ହୋଇ ନଦୀ ନାଳର ପାଣିରେ

ମିଶି ତାହାକୁ ପ୍ରଦୂଷିତ କରିଚାଲିଛି । କଳକାରଖାନାର ଧୂଆଁ, ଗାଡି ମଟରରୁ ନିର୍ଗତ ଅଙ୍ଗାରକାମ୍ଳ ଓ ମିଥେନ ପ୍ରଭୃତି ବାଷ୍ପ ବାୟୁ ମଣ୍ଡଳରେ ମିଶି ଏହାକୁ ପ୍ରଦୂଷିତ କରୁଛି । ନୂଆ ବସ୍ତି ଓ ରାସ୍ତାଘାଟ ନିର୍ମାଣ ତଥା ଶିଳ୍ପବିକାଶ ଯୋଗୁ ଜଙ୍ଗଲ କ୍ଷୟ ହେବାରେ ଲାଗିଛି । ନାନା ଧାର୍ମିକ ବିଶ୍ୱାସ ଯୋଗୁଁ ବିଭିନ୍ନ ପର୍ବ ପର୍ବାଣୀ ମଧ୍ୟ ପରିବେଶକୁ ପ୍ରଦୂଷିତ କରିଚାଲିଛି । ମାଟି, ପାଣି, ପବନ ଓ ଜୈବ ବିବିଧତା ଯାହା ମନୁଷ୍ୟ ଓ ପ୍ରାଣୀ ଜଗତର ଜୀବନ ଧାରଣ ପାଇଁ ଅତ୍ୟାବଶ୍ୟକ ସେଥିରେ ଏକ ଅସନ୍ତୁଳିତ ପରିସ୍ଥିତି ଯୋଗୁଁ ଆମ ପାଇଁ ଉତ୍କଟ ପରିସ୍ଥିତି ସୃଷ୍ଟି ହେବାରେ ଲାଗିଛି । କେତେକ ଜୀବ ପରିବର୍ତ୍ତିତ ପରିବେଶରେ ଲୋପ ପାଇ ଆସୁଛନ୍ତି । ସେମାନେ ପରିବେଶରେ ଯେଉଁ ଭାରସାମ୍ୟତା ରକ୍ଷା କରୁଥିଲେ ତାହା ଭୟଙ୍କର ଭାବରେ ବାଧାପ୍ରାପ୍ତ ହେଉଛି । ଏହିପରି ନାନା ଜଟିଳ ସ୍ଥିତି ଯୋଗୁଁ ବାୟୁମଣ୍ଡଳର ଉତ୍ତାପ ବଢ଼ିଚାଲିଛି, ମେରୁ ଅଞ୍ଚଳର ବରଫ ତରଳିବାରେ ଲାଗିଛି । ସୂର୍ଯ୍ୟରୁ ନିର୍ଗତ କ୍ଷତିକାରକ ରଶ୍ମିକୁ ପୃଥିବୀ ପୃଷ୍ଠକୁ ଛାଡୁନଥିବା ଓଜନ ସ୍ତରରେ ଗର୍ତ୍ତ ସୃଷ୍ଟି ହେବାର ସମ୍ଭାବନା ସୃଷ୍ଟି ହେଉଛି । ଏହି ପରିସ୍ଥିତିର ପ୍ରଭାବ ଭବିଷ୍ୟତର ମାନବ ସମାଜ ପାଇଁ ନାନା ସଙ୍କଟ ସୃଷ୍ଟି କରିବାକୁ ଯାଉଛି । ମନେ ହେଉଛି ଆମର ଭବିଷ୍ୟତ ପିଢ଼ି ଆଗକୁ ଏକ ଭୟଙ୍କର ସ୍ଥିତିର ସମ୍ମୁଖୀନ ହେବ ।

(୧୨.୯.୨୦୧୨)



# କ୍ଲାନ୍ତ ଧରିତ୍ରୀ

ଆମ ସୌରମଣ୍ଡଳର ପୃଥିବୀ ରୂପକ ଗ୍ରହଟିରେ ଜୀବ ଜଗତର ଉଦ୍ଭବ ହୋଇଛି । ପୃଥିବୀର ଉତ୍ପତ୍ତି ପରଠାରୁ ନାନା ଜୈବିକ ଓ ଅଜୈବିକ ପରିବର୍ତ୍ତନ ଓ ବିବର୍ତ୍ତନ ଦେଇ ପୃଥିବୀ ପୃଷ୍ଠରେ ଜଳ, ବାୟୁ, ପରିମିତ ଉତ୍ତାପ ଓ ମୃତ୍ତିକା ସୃଷ୍ଟି ହୋଇଛି । ମଣିଷର ଉତ୍ପତ୍ତି ବିବର୍ତ୍ତନ ଧାରାର ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । କାଳକ୍ରମେ ମଣିଷ ଯୋଗୁଁ ସଭ୍ୟତା ସୃଷ୍ଟି ହୋଇଛି । ସମାଜ ବ୍ୟବସ୍ଥା ଆସିଛି ଓ ଗୋଷ୍ଠୀ ଜୀବନଠାରୁ ରାଷ୍ଟ୍ର ଓ ଅନ୍ତାରାଷ୍ଟ୍ରୀୟ ପରିକଳ୍ପନାମାନ ଉଦ୍ଭବ ହୋଇଛି । ପ୍ରାକୃତିକ ଧାରାରେ ଯେତେ ଜୀବମାନଙ୍କର ଉତ୍ପତ୍ତି ହୋଇଛି ତା ଭିତରେ ମଣିଷ ହେଉଛି ଶ୍ରେଷ୍ଠ । ମଣିଷ ଭିତରେ ରହିଥିବା ସୃଜନଶୀଳ ସାମର୍ଥ୍ୟ ଯୋଗୁଁ ମଣିଷ ପ୍ରାକୃତିକ ସାଧନମାନଙ୍କ ସାହାଯ୍ୟରେ ବିଭିନ୍ନ ବସ୍ତୁ ନିର୍ମାଣ କରିବାକୁ ସମର୍ଥ ହୋଇଛି । ଭାଷା କହିବାର ସାମର୍ଥ୍ୟ ମଣିଷର ରହିଛି । ଫଳରେ ଯେଉଁ ଯୁଗରେ ଯେଉଁ ଜ୍ଞାନର ବିକାଶ ହୋଇଛି ତାହାକୁ ଲିପିବଦ୍ଧ କରାଯାଇ ପରବର୍ତ୍ତୀ ପିଢ଼ିମାନଙ୍କ ପାଇଁ ସଂରକ୍ଷିତ କରାଯିବା ସମ୍ଭବ ହୋଇଛି । ଏହା ସହିତ ବୁଦ୍ଧି, ବିଚାରଶୀଳ ସାମର୍ଥ୍ୟ ମଣିଷ ଭିତରେ ରହିଛି ଯାହାଦ୍ୱାରା ସଭ୍ୟତାର ବିକାଶ ପ୍ରକ୍ରିୟା ଅଭିବୃଦ୍ଧି ହୋଇ ଚାଲିଛି । ସମାଜ ବ୍ୟବସ୍ଥା, ରାଷ୍ଟ୍ର, ସାମାଜିକ ମୂଲ୍ୟଚୟ, ନୀତିବୋଧ ଇତ୍ୟାଦି ସୃଷ୍ଟି କରିବାରେ ମଣିଷ ହିଁ ସମର୍ଥ ହୋଇପାରିଛି । ଏସବୁ କାରଣରୁ ମଣିଷ ହିଁ ପ୍ରାକୃତିକ ବିବର୍ତ୍ତନ ପ୍ରକ୍ରିୟାରେ ଶ୍ରେଷ୍ଠ ପ୍ରାଣୀର ସ୍ଥାନରେ ରହିଛି ।

ବୈଜ୍ଞାନିକ ଅନୁଶୀଳନରୁ ଅନୁମାନ କରାଯାଏ ଯେ ପାରିବେଶିକ ପରିବର୍ତ୍ତନ ଯୋଗୁ କେତେକ ଜୀବ ପରିବର୍ତ୍ତିତ ସ୍ଥିତିରେ ଜୀବନ ଧାରଣ କରିବା ସମ୍ଭବ ହୁଏ ନାହିଁ । କୁହାଯାଏ ଯେ କୋଟି କୋଟି ବର୍ଷ ତଳେ ପୃଥିବୀରେ ବିଶାଳକାୟ ଜୀବମାନେ ଥିଲେ, ଯେଉଁମାନେ କି କୌଣସି କାରଣରୁ ଧ୍ୱଂସ ପାଇଗଲେ । ଡାଏନୋସର ଜୀବମାନେ ପୃଥିବୀ ପୃଷ୍ଠରୁ ପରିବେଶ ଜନିତ ପରିବର୍ତ୍ତନ ଯୋଗୁଁ ତିଷ୍ଠି ପାରିଲେ ନାହିଁ । ବିକାଶ ଓ ବିବର୍ତ୍ତନ ପ୍ରକ୍ରିୟାରେ ସେହି ଧାରା ଅବ୍ୟାହତ ରହିଛି । ପ୍ରାକୃତିକ ପରିବେଶରେ ପରିବର୍ତ୍ତନ ଓ ଅସନ୍ତୁଳନ ଯୋଗୁଁ କେତେକ ଜୀବ ବା ଉଦ୍ଭିଦମାନେ ଧରାପୃଷ୍ଠରୁ ଲୋପ ପାଉଥିବା

ଦେଖାଯାଏ । ତେବେ ଲକ୍ଷାଧିକ ବର୍ଷ ହେଲା ପ୍ରାକୃତିକ ସ୍ଥିତିରେ ଜୀବ ଜଗତ ପାଇଁ ସେପରି କିଛି ଆହ୍ୱାନ ଆସିନାହିଁ । କିନ୍ତୁ ପୃଥିବୀରେ ଶିଳ୍ପ ବିପ୍ଳବ ପରଠାରୁ ଏକ ଅସନ୍ତୁଳିତ ଅବସ୍ଥା ଧୀରେ ଧୀରେ ଚାଲୁ ରହିଛି ଓ ଏହି ଧାରା ଅବ୍ୟାହତ ରହିଲେ ଧରାପୃଷ୍ଠରୁ ସଭ୍ୟତାର ବିଲୋପ ଘଟିବ ବୋଲି ଆଶଙ୍କା ବ୍ୟକ୍ତ ହେଉଛି ।

ଜଳବାୟୁରେ ଦ୍ରୁତ ପରିବର୍ତ୍ତନ ଓ ବାୟୁ ମଣ୍ଡଳର ଉତ୍ତାପ ବୃଦ୍ଧି କରଣ ନେଇ, ଏହି ଆଶଙ୍କା ସୃଷ୍ଟି ହେବାରେ ଲାଗିଛି ଯେ ସମ୍ଭବତଃ ସଭ୍ୟତା ଧ୍ୱଂସାଭିମୁଖୀ ହେଉଛି । ପୃଥିବୀ ପୃଷ୍ଠର ପରିବେଶରେ ଏପରି କେତେକ ପରିବର୍ତ୍ତନ ସୃଷ୍ଟି ହେବାରେ ଲାଗିଛି ଯାହା ଜୀବଜଗତ ପାଇଁ ଶୁଭଙ୍କର ମନେହୁଏ ନାହିଁ । ପୃଥିବୀର ପରିବେଶରେ ରହିଥିବା ପ୍ରାକୃତିକ ସନ୍ତୁଳନ ଯୋଗୁଁ ପୃଥିବୀରେ ଜୀବସତ୍ତା ତିଷ୍ଠି ରହିଛି । ଜୀବ ଜଗତ ରହିବା କ୍ଷେତ୍ରରେ ବାୟୁମଣ୍ଡଳ, ସମୁଦ୍ର, ନଦୀ, ନାଳ, ବର୍ଷା ଜନିତ ଜଳଚକ୍ର, ଖାଦ୍ୟ ଶସ୍ୟ, ବୃକ୍ଷରାଜି ଜନିତ ଭୂମଣ୍ଡଳ ଓ ମେରୁର ହିମମଣ୍ଡଳ ମୁଖ୍ୟତଃ ଅନୁକୂଳ ହେଉଛି । ସୂର୍ଯ୍ୟଙ୍କ ଠାରୁ ଆସୁଥିବା ଆଲୋକ, ଉତ୍ତାପ ବି ପୃଥିବୀରେ ଜୀବନ ଧାରଣ ପାଇଁ ଉପଯୋଗୀ ହୋଇଛି । ତେବେ ସୌର ବିକିରଣର ଅହିତକର ରଶ୍ମିମାନ ବାୟୁମଣ୍ଡଳର ଊର୍ଦ୍ଧ୍ୱରେ ରହିଥିବା ଓଜୋନ ସ୍ତର ଶୋଷି ନେଉଥିବା ଯୋଗୁଁ ଜୀବ ଜଗତ ତିଷ୍ଠି ରହିପାରିଛି । ପ୍ରାକୃତିକ ପରିବେଶରେ ଏକ ସୁସଂହତ ଭାରସାମ୍ୟତା ଯୋଗୁଁ ଜୀବଜଗତ ଏଠାରେ ରହିଥିବା ସମ୍ଭବ ହୋଇପାରିଛି । ତେବେ ବିଂଶଶତାବ୍ଦୀର ମଧ୍ୟଭାଗରେ ବୈଜ୍ଞାନିକ ଗବେଷଣା ଓ କ୍ରିୟାଶୀଳତା ଭିତରେ ଏହା ଅନୁଭୂତ ହେଲା ଯେ ପୃଥିବୀର ବାୟୁମଣ୍ଡଳର ଉତ୍ତାପ ବଢ଼ିବାରେ ଲାଗିଛି । ପୃଥିବୀର ବିଭିନ୍ନ ଦେଶର ଗବେଷକମାନେ ଅତ୍ୟାଧୁନିକ ଅନୁଶୀଳନଦ୍ୱାରା ଜାଣିବାକୁ ସମର୍ଥ ହେଲେ ଯେ ପୃଥିବୀର ବାୟୁମଣ୍ଡଳର ଉତ୍ତାପରେ ବୃଦ୍ଧି ହେଉଛି । ୧୮୫୦ ମସିହାରେ ପୃଥିବୀର ବାୟୁମଣ୍ଡଳର ଉତ୍ତାପ ହାରାହାରି ୧୩° ଥିବା ବେଳେ ଶହେ ବର୍ଷ ପରେ ୧୯୫୦ ବେଳକୁ ଏହି ତାପମାତ୍ରା ୧୩.୮° ହେବା ସେମାନେ ଜଣାଇଲେ । ୧୯୭୦ ମସିହା ବେଳକୁ ଏହା ୧୪° କୁ ବୃଦ୍ଧି ପାଇବା କୁହାଗଲା । ୨୦୦୦ ମସିହାରେ ଏହି ଉତ୍ତାପ ୧୪.୪୧° ହେବା ଜଣାଯାଇଛି । ଏହା କ୍ରମବର୍ଦ୍ଧିଷ୍ଣୁ ଭାବେ ବର୍ଷକୁ ବର୍ଷ ବୃଦ୍ଧି ପାଉଥିବା ଗବେଷଣାରୁ ଜଣାପଡୁଛି । ତେବେ ଏହି ଉତ୍ତାପ ୧୫° ଭିତରେ ରହିବା ଆବଶ୍ୟକ, ତା'ଠାରୁ ଏହା ଅଧିକ ହେଲେ ପୃଥିବୀର ପାଣି ପାଗରେ ଭୟଙ୍କର ପରିବର୍ତ୍ତନ ହେବ ଯାହାକି ଏକ ଧ୍ୱଂସର ବିଭୀଷିକା ସୃଷ୍ଟି କରିବ । ବାୟୁମଣ୍ଡଳର ଉତ୍ତାପ ୨୧୦୦ ମସିହା ବେଳକୁ ୧୭° ହେବ ବୋଲି ଅନୁମାନ କରାଯାଉଛି । ତାହା ହେଲେ ଏହି ଶତାବ୍ଦୀ ଶେଷ ବେଳକୁ ପୃଥିବୀରେ ଏପରି ଏକ ପରିବେଶ ଆସିବ ଯାହା 'ପ୍ରଳୟ' ସୃଷ୍ଟି କରିବ । ସୁତରାଂ ସାରା ପୃଥିବୀର ପରିବେଶ

ବିଜ୍ଞାନୀମାନେ ଆଗାମୀ ବିଭୀଷିକା ନେଇ ସତର୍କ କରାଇ ଚାଲିଛନ୍ତି । ଏବେଠାରୁ ସତର୍କ ନହେଲେ ଏହି ଗ୍ରହମଣ୍ଡଳରେ ମଣିଷ ତିଷ୍ଠି ରହିବା ସମ୍ଭବ ହେବ ନାହିଁ ।

ବାୟୁ ମଣ୍ଡଳର ଉତ୍ତାପ ବୃଦ୍ଧି ହେବାର କାରଣ କ'ଣ ହୋଇପାରେ ? ଏହାର ମୁଖ୍ୟ କାରଣ ହେଉଛି ଗ୍ରୀନ ହାଉସ ପ୍ରଭାବ । ଆଧୁନିକ ବିଜ୍ଞାନ ସାହାଯ୍ୟରେ ପରୀକ୍ଷା କରାଯାଇ ଦେଖାଯାଉଛି ଯେ ଅଙ୍ଗାରକାମ୍ଳ ବା କାର୍ବନ ଡାଇ ଅକ୍‌ସାଇଡ଼ର ପରିମାଣ ବୃଦ୍ଧି ଯୋଗୁ ଏହା ଘଟୁଛି । ବୈଜ୍ଞାନିକମାନେ ହିସାବ କରି ଦେଖାଉଛନ୍ତି ଯେ ପୃଥିବୀ ବାୟୁମଣ୍ଡଳରେ ଉତ୍ତାପ ବୃଦ୍ଧିର କାରଣ ହେଉଛି ବାୟୁର ସାନ୍ଦ୍ରତାରେ ଅଙ୍ଗାରକାମ୍ଳ ବାଷ୍ପ ଅତିମାତ୍ରାରେ ବୃଦ୍ଧି ପାଇବା । ପ୍ରାୟ ୨୫୦ ବର୍ଷ ଆଗରୁ ଅର୍ଥାତ୍ ଶିଳ୍ପ ବିପ୍ଳବ ଆରମ୍ଭ ପୂର୍ବରୁ ବାୟୁମଣ୍ଡଳର ଏକ ନିୟୁତ କଣିକାରେ ଅଙ୍ଗାରକାମ୍ଳ କଣିକାର ସଂଖ୍ୟା ଥିଲା ୨୭୭ । ୧୯୫୦ ମସିହା ବେଳକୁ ଏହା ବୃଦ୍ଧି ପାଇ ହେଲା ୩୧୧ । ପ୍ରତ୍ୟେକ ବର୍ଷ ଅଙ୍ଗାର କଣିକାର ମାତ୍ରା କିପରି ବୃଦ୍ଧି ପାଉଛି ତାହାକୁ ଅତ୍ୟାଧୁନିକ ପ୍ରକ୍ରିୟାରେ ବୈଜ୍ଞାନିକମାନେ ହିସାବ କରି ପାରୁଛନ୍ତି । ୧୯୮୦ ମସିହା ବେଳକୁ ଅଙ୍ଗାର କଣିକାର ସଂଖ୍ୟା ହେଲା ୩୪୦, ୧୯୯୦ ମସିହାରେ ଏହାର ସଂଖ୍ୟ ହେଲା ୩୫୪, ୨୦୦୦ରେ ଏହାର ସଂଖ୍ୟା ହେଲା ୩୬୯ ଓ ୨୦୦୫ରେ ଏହାର ସଂଖ୍ୟା ହୋଇଛି ୩୭୯ । ମୋଟ ଉପରେ କହିଲେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପର ମାତ୍ରା ଦ୍ରୁତ ଗତିରେ ବର୍ଷକୁ ବର୍ଷ ବୃଦ୍ଧି ପାଇଚାଲିଛି, ଯାହା କି ପରିବେଶବିତ୍ ମାନଙ୍କ ପାଇଁ ଉଦ୍‌ବେଗର କାରଣ ହେଉଛି । ୧୭୫୦ରୁ ୧୯୫୦ ଏହି ୨୦୦ ବର୍ଷ ଭିତରେ ଏହାର ଅଭିବୃଦ୍ଧି ୧୩% ହୋଇଥିବାବେଳେ ୧୯୫୦ରୁ ୨୦୦୦ ଏହି ପଚାଶ ବର୍ଷ ଭିତରେ ଏହାର ଅଭିବୃଦ୍ଧି ୧୭% ହୋଇଛି । ବାୟୁ ମଣ୍ଡଳରେ ଅଙ୍ଗାରକାମ୍ଳର ପରିମାଣ ଯେତେ ଅଧିକ ବଢ଼ିବ, ତାହାର ପ୍ରଭାବରୁ ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି ପାଇବ ।

ନାନା ଗବେଷଣାରୁ ଏହା ଜଣାଯାଏ ଯେ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ କଣିକାର ଅଭିବୃଦ୍ଧିର ମୁଖ୍ୟ କାରଣ ହେଉଛି ତାପଜ ବିଦ୍ୟୁତ୍ ପ୍ରକଳ୍ପ ଯେଉଁଠି ପ୍ରତିଦିନ ଟନ ଟନ କୋଇଲା ଜାଳି ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଉଛି । ଏହା ସହିତ ଅସଂଖ୍ୟ ଗାଡି ମଟରରେ ବି ଯେଉଁ ପେଟ୍ରୋଲ, ଡିଜେଲ ବ୍ୟବହାର କରାଯାଉଛି ସେଥିରୁ ନିର୍ଗତ ବାଷ୍ପ ବାୟୁମଣ୍ଡଳରେ ମିଶୁଛି । ମୋଟ ଉପରେ କୋଇଲା, ପେଟ୍ରୋଲ, ଡିଜେଲ ପରି ଫସିଲ ଜାଳେଣିର ଜ୍ୱଳନ ପ୍ରକ୍ରିୟାରୁ ଅଙ୍ଗାରକାମ୍ଳ ବାଷ୍ପ ନିର୍ଗତ ହୋଇ ବାୟୁମଣ୍ଡଳରେ ପ୍ରବେଶ କରୁଛି । ପୃଥିବୀର ବିଭିନ୍ନ ଦେଶରେ ଗଢ଼ିଉଠିଥିବା ଲକ୍ଷ ଲକ୍ଷ କଳ କାରଖାନା ଓ ଲକ୍ଷ ଲକ୍ଷ ଗାଡି ମଟରର ବ୍ୟବହାର କ୍ଷେତ୍ରରେ ଆବଶ୍ୟକ ପଡୁଥିବା ଶକ୍ତି ମୁଖ୍ୟତଃ ଫସିଲ ଜାଳେଣୀରୁ ମିଳୁଛି । ତାପଜ ଶକ୍ତି ଉତ୍ପାଦନ ପାଇଁ କୋଇଲାକୁ ଜାଳିବାକୁ ପଡୁଛି ଓ ଏହା

ହିଁ ସବୁଠାରୁ ବେଶି ଅଙ୍ଗାରକାମ୍ଳ ବାଷ୍ପ ଛାଡୁଛି । ବିଂଶ ଶତାବ୍ଦୀ ଆରମ୍ଭରେ ପୃଥିବୀରେ ମଟର ଗାଡିର ବ୍ୟବହାର ଆରମ୍ଭ ହେଲା ଓ ଏହି ଶହେ ବର୍ଷ ଭିତରେ ଗାଡି ମଟରର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଛି । ସେହିପରି ଗତ ଶହେ ବର୍ଷ ଭିତରେ ପୃଥିବୀର ଜନସଂଖ୍ୟା ବି ଆଶାତୀତ ଭାବରେ ବଢ଼ିଚାଲିଛି । ୧୮୦୦ ମସିହାରେ ପୃଥିବୀର ଲୋକସଂଖ୍ୟା ୧୦୦ କୋଟି ଥିବା ବେଳେ ୧୯୦୦ ରେ ଏହା ୧୬୦ କୋଟି ହେବା ଓ ୨୦୦୦ ବେଳକୁ ୬୦୦ କୋଟି ହେବା ଜଣାଯାଏ । ୨୦୦୦ ରୁ ୨୦୧୧ ଭିତରେ ପୃଥିବୀର ଲୋକସଂଖ୍ୟା ୧୦୦ କୋଟି ବୃଦ୍ଧିପାଇ ଏହା ୭୦୦ କୋଟିରେ ପହଞ୍ଚିବା ଜନସଂଖ୍ୟା ପରିସଂଖ୍ୟାନରୁ ଜଣାଯାଏ । ଜନସଂଖ୍ୟା ବୃଦ୍ଧି, କଳ କାରଖାନାର ବିସ୍ତାର, ଫସିଲ ଜାଳେଣିର କ୍ରମବର୍ଦ୍ଧିଷ୍ଣୁ ବ୍ୟବହାର ଜନିତ କାରଣ ସମୂହରୁ ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପ ଆଶାତୀତ ଭାବରେ ବଢ଼ି ଚାଲିଛି । ଏହାର ପ୍ରଭାବରୁ ବାୟୁମଣ୍ଡଳର ଉତ୍ତାପ ବି ଧୀରେ ଧୀରେ ବଢ଼ି ଚାଲିଛି ।

ଏହି ପୃଷ୍ଠଭୂମିରେ ବୈଜ୍ଞାନିକମାନଙ୍କର ବିଶଦ୍ ଗବେଷଣାରୁ ଜଣାଯାଏ ଯେ ୧୮୫୦ ମସିହା ବେଳକୁ ଅଙ୍ଗାରକାମ୍ଳ ନିର୍ଗମନ ୬୦ କୋଟି ଟନ ଥିବା ବେଳେ ୧୯୦୦ ମସିହା ବେଳକୁ ଏହାର ନିର୍ଗମନ ପରିମାଣ ୧୫୦ କୋଟି ଟନକୁ ବୃଦ୍ଧି ପାଇଲା । ତେବେ ୨୦୦୦ ମସିହା ବେଳକୁ ଅଙ୍ଗାରକାମ୍ଳ ନିର୍ଗମନ ପରିମାଣ ପ୍ରାୟ ୧୫୦୦ କୋଟି ଟନକୁ ବୃଦ୍ଧି ପାଇଛି ।

ଅତୀତରେ ଶିଳ୍ପ ବିପ୍ଳବ ଆରମ୍ଭ ପୂର୍ବରୁ ବାୟୁମଣ୍ଡଳର ସୀମିତ ଅଙ୍ଗାରକାମ୍ଳ ବାଷ୍ପକୁ ନିୟନ୍ତ୍ରଣ କରିବା ପାଇଁ ପୃଥିବୀରେ ଘଞ୍ଚ ଜଙ୍ଗଲ ରହିଥିଲା । ତେବେ ସଭ୍ୟତାର ବିକାଶ ସହ ଜନସଂଖ୍ୟାର ଅଭିବୃଦ୍ଧି ଶିଳ୍ପ ବିପ୍ଳବ ପରବର୍ତ୍ତୀ ଯୁଗରେ କଳ କାରଖାନାର ଆଶାତୀତ ବୃଦ୍ଧି, ବିଂଶ ଶତାବ୍ଦୀ ଆରମ୍ଭରୁ ଯାନବାହନର ପ୍ରଚଳନ ଏସବୁ କାରଣରୁ ପୃଥିବୀରେ ଜଙ୍ଗଲର ପରିମାଣ ଆଶାତୀତ ଭାବେ କମିବାରେ ଲାଗିଛି । ଗୋଟିଏ ପଟେ ଅଙ୍ଗାରକାମ୍ଳ ବାଷ୍ପର ଆଶାତୀତ ନିର୍ଗମନ ଓ ଅନ୍ୟପଟେ ଏହାକୁ ନିୟନ୍ତ୍ରଣ କରୁଥିବା ସବୁଜ ଜଙ୍ଗଲର ହ୍ରାସ ଏକ ବିକଟାଳ ସ୍ଥିତି ସୃଷ୍ଟି କରିଚାଲିଛି । ଯେତେବେଳେ ଅଙ୍ଗାରକାମ୍ଳ ନିର୍ଗମନର ମାତ୍ରା ଅତି ଅଳ୍ପ ଥିଲା ସେତେବେଳେ ଘଞ୍ଚ ଜଙ୍ଗଲ ରହିଥିଲା । ସମ୍ପ୍ରତି ଯେତେବେଳେ ଅଙ୍ଗାରକାମ୍ଳ ନିର୍ଗମନର ପରିମାଣ ବହୁ ବଢ଼ି ଚାଲିଛି ସେତେବେଳେ ଜଙ୍ଗଲ କମିଚାଲିଛି । ଏହି ସ୍ଥିତିରେ ଅଙ୍ଗାରକାମ୍ଳର ହଳାହଳକୁ ନିୟନ୍ତ୍ରଣ କରିବା ପାଇଁ ଆବଶ୍ୟକ ହେଉଥିବା ଜଙ୍ଗଲ-ଅରଣ୍ୟ ନ ଥିବା ଯୋଗୁଁ ପରିଣତି ଭୟାନକ ହେବାରେ ଲାଗିଛି । କ୍ରମବର୍ଦ୍ଧମାନ ଜନସଂଖ୍ୟା ପାଇଁ ଆବଶ୍ୟକ ହେଉଥିବା ଚାଷଜମି, ବାସଗୃହ ଇତ୍ୟାଦି କାରଣରୁ ଜଙ୍ଗଲ ଧ୍ୱଂସ ହୋଇ ଚାଲିଛି । ସେହିପରି ସଡ଼କ, ରେଳପଥ, ନଦୀବନ୍ଧ

ଯୋଜନା ପାଇଁ ଜଙ୍ଗଲର ଅବକ୍ଷୟ ହୋଇଚାଲିଛି । ଏହି ସ୍ଥିତିରେ ପ୍ରକୃତି ଅତ୍ୟନ୍ତ ବିପର୍ଯ୍ୟସ୍ତ ପରିସ୍ଥିତି ଆଡକୁ ଆଗେଇ ଚାଲିଛି ଓ ପୃଥିବୀ କ୍ଳାନ୍ତ ହୋଇ ପଡୁଛି ।

ପରିବେଶ ଉପରେ ଅବିଚାରିତ ଉତ୍ପୀଡ଼ନ ସଭ୍ୟତାର ବିକାଶଧାରାରେ ଗତ ଶହେ ବର୍ଷ ଭିତରେ ଯେପରି ବୃଦ୍ଧି ପାଇଛି ତାହାର ପରିଣତି ସ୍ୱରୂପ ଭବିଷ୍ୟତର ପୃଥିବୀରେ ଯେ ଏକ ଭୟଙ୍କର ପରିସ୍ଥିତି ଆସିବ ତାହାର ସୂଚନା ପରିବେଶ ବିଜ୍ଞାନୀମାନେ ଦେଇଚାଲିଛନ୍ତି । ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପର ବୃଦ୍ଧି ଯୋଗୁଁ ପୃଥିବୀ ଉତ୍ତପ୍ତ ହୋଇ ଚାଲିଛି । ଏହି ଉତ୍ତାପ ବୃଦ୍ଧିଦ୍ୱାରା ମେରୁର ବରଫ ପାହାଡ଼ ତରଳିବାରେ ଲାଗିଛି । ତୁଷାରାଛନ୍ନ ଗ୍ଲାସିୟର ତରଳିଲେ ତାହାର ବହୁ କୁପ୍ରଭାବ ଜୀବଜଗତ ଉପରେ ପଡିବ । ଏହାଦ୍ୱାରା ବନ୍ୟାର ପ୍ଲାବନ ସୃଷ୍ଟି ହେବ, ସମୁଦ୍ର ତଟର ସହରମାନ ବୁଡିଯିବ କାରଣ ସମୁଦ୍ରର ଜଳ ପତ୍ତନ ଆଶାତୀତ ଭାବେ ବଢ଼ିଚାଲିବ । ବହୁ ଚାଷ-କ୍ଷେତ ସମୁଦ୍ରରେ ବିଲୀନ ହୋଇଯିବ । ଏହା ସହିତ ବାୟୁମଣ୍ଡଳରେ ତାପମାତ୍ରା ବୃଦ୍ଧି ପାଇଲେ ବିଭିନ୍ନ ଅଞ୍ଚଳରେ ଭୟଙ୍କର ଝଡର ପରିବେଶ ସୃଷ୍ଟି ହେବ । ସମଗ୍ର ପୃଥିବୀରେ ମାଟିତଳ ଜଳ ଶୁଷ୍କ ହୋଇଯିବ ଓ ସାରା ବିଶ୍ୱରେ ଜଳସଙ୍କଟ ଦେଖାଯିବ । ମଧୁର ଜଳର ପରିମାଣ ପୃଥିବୀରେ ୧.୭ ଯାହା ରହିଛି ତାହାର ଅବକ୍ଷୟ ଘଟିବ । ସେହିପରି ସ୍ଥିତିରେ ବହୁ ପ୍ରାଣୀ ଜଳ ନପାଇ ବଞ୍ଚିପାରିବେ ନାହିଁ । ଅନେକ ପ୍ରଜାତି ଜୀବଙ୍କର ବିଲୋପ ହେବ । ପରିବେଶ ଉପରେ ଏହାର ଅତ୍ୟନ୍ତ କୁପ୍ରଭାବ ପଡିବ । ଏହି ପ୍ରକ୍ରିୟାରେ ସବୁ ଅଞ୍ଚଳର ଜୈବ ବିବିଧତା ଧ୍ୱଂସ ହେବ ଓ ପରିବେଶରେ ଯେଉଁ ସୁସଂହତ ଭାରସାମ୍ୟତା ଥିଲା ତାହା ବି ଲୋପ ପାଇଯିବ । ପରିବେଶରେ ପ୍ରାଣୀଜଗତର କ୍ରମ ବିଲୟ ଘଟିବ । ପରିବେଶର ସବୁସ୍ତରରେ ଅସନ୍ତୁଳନ ଦେଖାଦେବ । ନାନା ଭାବରେ ପରିବେଶ ଅସନ୍ତୁଳିତ ହେବାଦ୍ୱାରା ଏକ ପ୍ରଳୟର ପରିସ୍ଥିତି ଆସିବ । ଏହି ସ୍ଥିତିରେ ଆମ ପୃଥିବୀ ଆଉ ଶସ୍ୟ ଶ୍ୟାମଳା ହୋଇ ରହିବ ନାହିଁ । ଏ ସୁନ୍ଦର ପୃଥିବୀ ମୁମୂର୍ଷୁ ସ୍ଥିତି ଭିତରକୁ ଯିବ । ଏହିପରି ଭୟାନକ ସ୍ଥିତି ବିଷୟରେ ପରିବେଶ ବିଜ୍ଞାନୀମାନେ ଆମକୁ ନାନା ଆଶଙ୍କାର ଚିତ୍ର ପ୍ରଦାନ କରୁଛନ୍ତି । ସେମାନେ କହନା କରୁଛନ୍ତି ଯେ ଆମେ ବିକାଶର ନାମରେ ବିନାଶର ନିକଟବର୍ତ୍ତୀ ହୋଇଚାଲିଛେ ।

(୨୬.୯.୧୨)



# ପରିବେଶ ଓ ଆନ୍ତର୍ଜାତିକ ସମ୍ପୃକ୍ତି

ପୃଥିବୀର ପରିବେଶ ଯେ ଏକ ଜଟିଳ ଆହ୍ୱାନର ସମ୍ମୁଖୀନ ହେବାକୁ ଯାଉଛି ଏହି ବିଷୟରେ ପୃଥିବୀର ବହୁ ପରିବେଶ ବିଜ୍ଞାନୀ ଗମ୍ଭୀର ଚିନ୍ତା ପ୍ରକଟ କରି ଆସୁଛନ୍ତି । ତେବେ ଏହି କ୍ଷେତ୍ରରେ କେତେକ ବିଶିଷ୍ଟ ଲେଖକ ସେମାନଙ୍କ କୃତି ମଧ୍ୟ ଦେଇ ଭବିଷ୍ୟତର ଏକ ଗମ୍ଭୀର ଚିତ୍ର ପ୍ରଦାନ କରିଛନ୍ତି । ଏଠାରେ ଦୁଇଟି ପୁସ୍ତକର ସାମାନ୍ୟ ସୂଚନା ଦେଉଛି । ବିଶିଷ୍ଟ ଆମେରିକୀୟ ଜୀବ ବିଜ୍ଞାନୀ ଓ ପରିବେଶବିତ୍ ଶ୍ରୀମତୀ ରାକେଲ କାର୍ସନ (୧୯୦୭-୬୪) ତାଙ୍କର ପ୍ରସିଦ୍ଧ ପୁସ୍ତକ "ନିଃଶବ୍ଦ ବସନ୍ତ" (ସାଇଲେଣ୍ଟ ସ୍ପ୍ରିଙ୍ଗ) ପୁସ୍ତକରେ ଯେଉଁ  ରାସାୟନିକ କୀଟନାଶକ ଜମିରେ ବ୍ୟବହାର କରାଯାଉଛି ତାହାର  କି ଭୟଙ୍କର ପ୍ରଭାବ ପରିବେଶ ଓ ପ୍ରାଣୀମାନଙ୍କ ଜୀବନ ଉପରେ ରହିଛି ତାହାର ଗବେଷଣା ଲବ୍ଧ ତଥ୍ୟ ଦେଇଛନ୍ତି । ସେହି କୀଟନାଶକ କିପରି ଜମିମାନଙ୍କର ଜୈବ ବିବିଧତା ନଷ୍ଟ କରିବା ସହ ଜଳରେ ମିଶି ଜଳକୁ ଧୀରେ ଧୀରେ ବିଷାକ୍ତ କରୁଛି ତାହା ଦର୍ଶାଇଛନ୍ତି । ଏହା ସହିତ ସେତେବେଳେ ବହୁଳ ବ୍ୟବହୃତ କୀଟନାଶକ ଡିଡିଟି ପ୍ରୟୋଗ ହୋଇଥିବା ଫସଲ ବା ଗୁଳ୍ମକୁ ଖାଉଥିବା ପ୍ରାଣୀମାନଙ୍କ ଦେହରେ ସୃଷ୍ଟି ହେଉଥିବା ନାନା କୁପ୍ରଭାବକୁ ବୁଝାଇଛନ୍ତି । ଏହି କୀଟନାଶକମାନ ପ୍ରକୃତିର ବିବିଧତା ନଷ୍ଟ କରିବା ସହ ବିଭିନ୍ନ ଋତୁରେ ପ୍ରକୃତି ଯେପରି ବିବିଧବର୍ଣ୍ଣ ହୁଏ ତାହାକୁ ମଧ୍ୟ ଧ୍ୱଂସ କରିଦେଉଛି । ଏହାକୁ ବ୍ୟବହାର କରିଚାଲିଲେ ବସନ୍ତର ସୌନ୍ଦର୍ଯ୍ୟ ଓ କାକଳି ସବୁଦିନ ପାଇଁ ପ୍ରକୃତିରୁ ନଷ୍ଟ ହୋଇଯିବ । କୁହାଯାଉଛି ପୃଥିବୀର ପରିବେଶ ସୁରକ୍ଷା ଆନ୍ଦୋଳନ କ୍ଷେତ୍ରରେ ଶ୍ରୀମତୀ କାର୍ସନଙ୍କର ଏହି ବହି ଏକ ପ୍ରେରଣାଦାୟକ କୃତି । ପ୍ରକୃତିର କେତେକ କୀଟକୁ ନଷ୍ଟ କରିବାର ଦକ୍ଷତା ଭିତରେ ଆମେ ଆମର, ପ୍ରାଣୀ ଜଗତର, ପ୍ରକୃତିର ଓ ପ୍ରାକୃତିକ ସନ୍ତୁଳନର ଯେ ଅଶେଷ କ୍ଷତି କରିଚାଲିଛୁ ଏହା କାର୍ସନଙ୍କର ବହିର ପ୍ରତିପାଦ୍ୟ ବିଷୟ ଅଟେ । ଆଉ ଜଣେ ଆମେରିକୀୟ ପରିବେଶବିତ୍ ଅଲ୍ ଗୋର ଯେ ଆମେରିକାରେ ଦୁଇଥର ଉପରାଷ୍ଟ୍ରପତି ହୋଇଛନ୍ତି "ଆର୍ଥ ଇନ ଦି ବାଲାନ୍ସ" ନାମରେ ଖଣ୍ଡିଏ ପୁସ୍ତକ ଲେଖିଛନ୍ତି ।

ପରିବେଶ ଉପରେ ଅନୁଧାନ କରୁଥିବା ଅନୁସନ୍ଧାନକାରୀ ଦଳ ଭିତରେ ସେ ସାମିଲ ହୋଇ ପୃଥିବୀର ବିଭିନ୍ନ ଅଞ୍ଚଳର ପ୍ରାକୃତିକ ଅବକ୍ଷୟ ଗୁଡ଼ିକ ଦେଖିବା ପାଇଁ ଯାଇଛନ୍ତି । ବ୍ରାଜିଲରେ ଥିବା ପୃଥିବୀର ସବୁଠାରୁ ବଡ଼ ନଦୀ ଆମାଜନ ଓ ତାହାର କୂଳରେ ଗଢ଼ିଉଠିଥିବା ବିଶାଳ ଜଙ୍ଗଲ ଆମାଜନ ଉପତ୍ୟକାକୁ ସେ ଅନୁଧାନ କରିବା ସହ ସାଇବେରିଆ ଓ ମେରୁ ଅଞ୍ଚଳର ବରଫାବୃତ ଗ୍ଲାସିଅରକୁ ବି ବିଶେଷଜ୍ଞ ଦଳଙ୍କ ସହ ଅନୁଶୀଳନ କରିଛନ୍ତି । ସେ ବିଶିଷ୍ଟ ପରିବେଶ ବିଜ୍ଞାନୀ ମାନଙ୍କ ସହ ଆଲୋଚନାଦ୍ୱାରା ଓ ନିଜସ୍ୱ ପର୍ଯ୍ୟବେକ୍ଷଣ ଦ୍ୱାରା ପ୍ରାକୃତିକ ଭାରସାମ୍ୟତା କିପରି କ୍ଷୟ ହୋଇ ଚାଲୁଛି ତାହା ତାଙ୍କ ପୁସ୍ତକରେ ବର୍ଣ୍ଣନା କରିଛନ୍ତି । ପରିବେଶ ଉପରେ ତାଙ୍କର ଗଭୀର ଅନୁଧାନ ଓ ସଚେତନତା ସୃଷ୍ଟି ପାଇଁ ଅବଦାନ ଯୋଗୁ ତାଙ୍କୁ ୨୦୦୭ ରେ ଶାନ୍ତି ପାଇଁ ନୋବେଲ ପୁରସ୍କାର ଦିଆଯାଇଛି । ଅଲ୍ ଗୋର ତାଙ୍କ ପୁସ୍ତକରେ ପ୍ରାକୃତିକ ପରିବେଶର ଅସନ୍ତୁଳିତ ସ୍ଥିତି ବିଷୟରେ ସୂଚନା ଦେଇଛନ୍ତି ।

ଏହିପରି ବିଶ୍ୱସ୍ତରରେ ପରିବେଶ ନେଇ ସଚେତନତା ଆସିଛି ଓ ପୃଥିବୀ ଯେ ଏକ ଭୟାନକ ସ୍ଥିତି ଆଡକୁ ଆଗେଇ ଚାଲିଛି ତାହାର ପ୍ରତିକାର ପାଇଁ ବହୁ ଆନ୍ତର୍ଜାତୀୟ ସମ୍ମିଳନୀମାନ ମିଳିତ ଜାତିସଂଘଦ୍ୱାରା ଆହୂତ ହୋଇଛି । ପୃଥିବୀର ଜଳବାୟୁ ପରିବର୍ତ୍ତିତ ହୋଇ ଚାଲିଛି । ବାୟୁମଣ୍ଡଳର ଉତ୍ତାପ କ୍ରମବର୍ଦ୍ଧିଷ୍ଣୁ ଭାବେ ବୃଦ୍ଧି ପାଉଛି, ବାୟୁମଣ୍ଡଳର ଅଙ୍ଗାରକାମ୍ଳ ପରିମାଣ ବଢ଼ିଚାଲିଛି, ମାଟି, ପାଣି, ପବନ ବିଷାକ୍ତ ହୋଇ ଉଠୁଛି, ଜନସଂଖ୍ୟା ବଢ଼ି ବଢ଼ି ଚାଲିଛି ଇତ୍ୟାଦି ନାନା ସମସ୍ୟା ପରିବେଶକୁ ଅସନ୍ତୁଳିତ କରିବାରେ ଲାଗିଛି । ବିଭିନ୍ନ ଅଞ୍ଚଳର ଜୈବ ବିବିଧତା ନଷ୍ଟ ହେଉଛି, କେତେକ ପ୍ରଜାତିର ପ୍ରାଣୀ ପରିବେଶରୁ ଲୋପ ପାଇବାରେ ଲାଗିଛନ୍ତି । ଏହି ଧାରା ଅବ୍ୟାହତ ରହିଲେ ଭବିଷ୍ୟତରେ ପୃଥିବୀ ପୃଷ୍ଠରୁ ଜୀବଜଗତ ଓ ମଣିଷ ସମାଜ ବଡ଼ ଆହ୍ୱାନର ସମ୍ମୁଖୀନ ହେବ । ଏହି ଅବକ୍ଷୟକୁ କିପରି ନିୟନ୍ତ୍ରଣ କରାଯିବ ସେ ବିଷୟରେ ବିଶ୍ୱସ୍ତରରେ ନାନା ବିଚାର ବିମର୍ଶ ହେଉଛି ଓ ବିଶ୍ୱର ଶାନ୍ତିକାମୀ ପରିବେଶବିତ୍‌ମାନେ ମଣିଷ ଜାତିର ଭବିଷ୍ୟତ ନେଇ ଉଦ୍‌ବେଗ ପ୍ରକାଶ କରିବାରେ ଲାଗିଛନ୍ତି । ୧୯୭୨ରେ ସୁଇଡେନର ଷ୍ଟକହୋମଠାରେ ମିଳିତ ଜାତିସଂଘ ଆନୁକୂଲ୍ୟରେ ଜନପରିବେଶ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଦଶବର୍ଷ ପରେ ୧୯୮୨ରେ କେନିଆର ରାଜଧାନୀ ନାଏ ରୋବିଠାରେ 'ମିଳିତ ଜାତିସଘଂ ପରିବେଶ କାର୍ଯ୍ୟକ୍ରମ' ଶୀର୍ଷକରେ ଏକ ସମ୍ମିଳନୀ ହୋଇ ପୃଥିବୀର ପରିବେଶର ସୁରକ୍ଷା ପାଇଁ ଆନ୍ତର୍ଜାତିକ ସ୍ତରରେ ବିଚାର ବିମର୍ଶ ହୋଇଥିଲା । ୧୯୯୨ ରେ ବ୍ରାଜିଲର ରିଓଠାରେ 'ଆର୍ଥ ସମିଟ ଅନ ଏନ୍‌ଭିରନମେଣ୍ଟ' ନାମରେ ଏକ ସମ୍ମିଳନୀ

ବିଶ୍ୱର ରାଷ୍ଟ୍ରମୁଖ୍ୟ, ବୈଜ୍ଞାନିକ, ପରିବେଶ ବିଜ୍ଞାନୀମାନଙ୍କୁ ନେଇ ଅନୁଷ୍ଠିତ ହୋଇଥିଲା । ୧୯୯୭ରେ ଜାପାନର କ୍ୟୋଟୋଠାରେ 'ଜଳବାୟୁ ପରିବର୍ତ୍ତନ ଶିଖର ସମ୍ମିଳନୀ' ଅନୁଷ୍ଠିତ ହୋଇଥିଲା । ଏହାପରେ ୨୦୦୨ ରେ ଦକ୍ଷିଣ ଆଫ୍ରିକାର ଜୋହାନସବର୍ଗଠାରେ ଏକ ବିଶ୍ୱ ସମ୍ମିଳନୀ ଅନୁଷ୍ଠିତ ହୋଇ "ନିରନ୍ତର ବିକାଶ" ଉପରେ ବିଶ୍ୱ ସ୍ତରରେ ନାନା ଆଲୋଚନା ହୋଇଥିଲା । ବିକାଶକୁ ଏକ ନିରନ୍ତର ଧାରା ଭାବରେ ନେଇ ସବୁ ମଣିଷଙ୍କର ଖାଦ୍ୟ, ଶିକ୍ଷା, ବାସସ୍ଥାନ, ସାମାଜିକ ନିରାପତ୍ତା ପ୍ରସଙ୍ଗ ଉପରେ ରାଷ୍ଟ୍ରମାନଙ୍କ ମଧ୍ୟରେ ମତ ବିନିମୟ କରାଯାଇଥିଲା । ଏହାପରେ ୨୦୦୭ରେ ଇଣ୍ଡୋନେସିଆର ବାଲିଠାରେ "ପାଗ ପରିବର୍ତ୍ତନ" ବା 'କ୍ଲାଇମେଟ ଚେଞ୍ଜ' ଉପରେ ବିଶ୍ୱ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ବିଶ୍ୱସ୍ତରରେ ପାଗର ଯେଉଁ ପରିବର୍ତ୍ତନ ହୋଇଚାଲିଛି ତାହାକୁ କିପରି ପ୍ରତିହତ କରାଯାଇ ପ୍ରାକୃତିକ ପରିବେଶକୁ ସୁରକ୍ଷା ଦିଆଯିବ ତାହା ଆଲୋଚ୍ୟ ବିଷୟ ଥିଲା । ଶେଷରେ ୨୦୧୨ ରେ ବ୍ରାଜିଲର ରିଓଠାରେ ମିଳିତ ଜାତିସଂଘ ଆନୁକୂଲ୍ୟରେ "ନିରନ୍ତର ବିକାଶ" ଉପରେ ଏକ ବିଶ୍ୱ ସମ୍ମିଳନୀ ହୋଇଯାଇଛି । ଆମ ଧରିତ୍ରୀର ପାରିବେଶିକ ନିରାପତ୍ତା, ଜୈବିକ ବିବିଧତା, ନିରନ୍ତର ପ୍ରଗତି ଉପରେ ବିଶ୍ୱର ରାଷ୍ଟ୍ରମୁଖ୍ୟ, ବୈଜ୍ଞାନିକ, ପରିବେଶବିତ୍‌ମାନେ ଆଲୋଚନା କରିଛନ୍ତି । ପାଗ ପରିବର୍ତ୍ତନ ନେଇ ସମସ୍ତେ ଗଭୀର ଉଦ୍‌ବେଗ ପ୍ରକାଶ କରିବା ସହ ଏହି ସ୍ଥିତିକୁ ପ୍ରତିହତ କରିବାକୁ ବିଶ୍ୱସ୍ତରରେ ଗବେଷଣା ଓ ପ୍ରୟାସକୁ ପ୍ରାଧାନ୍ୟ ଦେଇଛନ୍ତି ।

ଏହି ସବୁ ବିଶ୍ୱ ସମ୍ମିଳନୀମାନଙ୍କରେ ପୃଥିବୀର ରାଷ୍ଟ୍ର ବା ସରକାରୀ ମୁଖ୍ୟ, ବହୁ ପ୍ରବୀଣ ବୈଜ୍ଞାନିକ, ପରିବେଶ ବିଜ୍ଞାନୀମାନେ ଯୋଗଦେଇ ପୃଥିବୀର ପ୍ରାକୃତିକ ପରିବେଶକୁ ରକ୍ଷା କରିବା ପାଇଁ ବିଚାର ବିମର୍ଶ ଓ ନିଷ୍ପତ୍ତିମାନ ନେଇ ଆସୁଛନ୍ତି । ପୃଥିବୀର ପରିବେଶର ସୁରକ୍ଷା ନେଇ ସାରା ବିଶ୍ୱରେ ଯେ ଏକ ସଚେତନତାର ବାତାବରଣ ସୃଷ୍ଟି ହୋଇଛି ଏହା ମନେହୁଏ । ଏକ ଭୟଙ୍କର ଜଟିଳ ସ୍ଥିତିକୁ କିପରି ମୁକାବିଲା କରାଯାଇ ପାରିବ ସେ ନେଇ ବିଶ୍ୱ ସ୍ତରରେ ନାନା ଗବେଷଣା ଓ ସମ୍ପୃକ୍ତି ବ୍ୟକ୍ତ ହେବା ଏକ ସକାରାତ୍ମକ ପଦକ୍ଷେପ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହା ସହିତ ବିଶ୍ୱସ୍ତରରେ ଓ ରାଷ୍ଟ୍ରୀୟ ସ୍ତରରେ ପରିବେଶ ସଚେତନତା ପାଇଁ ନାନା ସଂସ୍ଥା ଓ ସଙ୍ଗଠନମାନ ସୃଷ୍ଟି କରାଯାଇଛି । ପୃଥିବୀର ବୈଜ୍ଞାନିକ, ଗବେଷକ ପରିବେଶବିତ୍‌ମାନଙ୍କୁ ନେଇ ବିଭିନ୍ନ ସଂସ୍ଥା ଆନ୍ତର୍ଜାତିକ ସ୍ତରରେ କାର୍ଯ୍ୟ କରୁଛନ୍ତି । ଜଳବାୟୁ ପରିବର୍ତ୍ତନ ସମ୍ବନ୍ଧୀୟ ଆନ୍ତଃସରକାରୀ ବିଶେଷଜ୍ଞ ଗୋଷ୍ଠୀ (ଇଣ୍ଟର ଗଭର୍ଣ୍ଣମେଣ୍ଟାଲ ପାନେଲ ଅନ କ୍ଲାଇମେଟ ଚେଞ୍ଜ), ମିଳିତ ଜାତିସଂଘ ପରିବେଶ ପ୍ରୋଗ୍ରାମ, ପରିବେଶ

ବିକାଶ ବିଶ୍ୱ କମିଶନ (ୱାର୍ଲଡ କମିଶନ ଅନ ଏନଭିରନମେଣ୍ଟ ଏଣ୍ଡ ଡେଭଲପମେଣ୍ଟ) ପରି ସଂସ୍ଥାମାନ ବିଶ୍ୱସ୍ତରରେ ପରିବେଶର ସୁରକ୍ଷା ପାଇଁ କାର୍ଯ୍ୟ କରି ଆସୁଛନ୍ତି ।

ଶିଳ୍ପ ବିପ୍ଳବ ଆରମ୍ଭ ପରଠାରୁ ପ୍ରାକୃତିକ ସମ୍ବଳ ଓ ଶକ୍ତି ବା ଉର୍ଜାକୁ ନେଇ ବିକାଶର ଯେଉଁ ଧାରାଟି ବିଶ୍ୱର କେତେକ ରାଷ୍ଟ୍ରରେ ସୃଷ୍ଟି ହେଲା ସେଥିରୁ ଗୋଟିଏ ମାନସିକତା ଆସିଲା ଯେ ବିକାଶର ଧାରା ଚିରନ୍ତନ ଭାବେ ଅବ୍ୟାହତ ରହିବ । ଏକ ସୌଖୀନ ଜୀବନ ପାଇଁ ବିଳାସ ସାମଗ୍ରୀ ଆଧୁନିକ ପ୍ରଯୁକ୍ତି ସାହାଯ୍ୟରେ ସବୁଦିନ ଉପଲବ୍ଧ ହୋଇପାରିବ । ଏପରିକି ନୂଆ ନୂଆ ପ୍ରଯୁକ୍ତି ଦ୍ୱାରା ନୂଆ ନୂଆ ସାମଗ୍ରୀ ସୃଷ୍ଟି ହେବ ଓ ଜୀବନର ବିଳାସ ଓ ସମ୍ଭୋଗ ଅଫୁରନ୍ତ ଭାବରେ ସର୍ବଦା ମିଳିପାରିବ । ତେବେ ବିକାଶର ଧାରାରେ ପୁଞ୍ଜିବାଦ ଏହି ଯେଉଁ ସାଂସ୍କୃତିକ ମାନସିକତା ସୃଷ୍ଟି କରିଥିଲା, ସେଥିରେ ଦେଖା ଯାଉଛି ଯେ ବିକଶିତ ରାଷ୍ଟ୍ରମାନେ ବିକାଶଶୀଳ ରାଷ୍ଟ୍ର ସମୂହକୁ ଶୋଷଣ କରୁଛନ୍ତି ଓ ପରିବେଶ ପ୍ରଦୂଷଣ, ଗ୍ଲୋବାଲ ୱାର୍ମିଂ କ୍ଷେତ୍ରରେ ମୁଖ୍ୟ ଭୂମିକା ନେଉଛନ୍ତି । ଏହା ସହିତ ବିଶ୍ୱର ବହୁ ବୁଦ୍ଧିଜୀବୀ ବିକାଶର ଧାରାକୁ ନିରନ୍ତର (ସଷ୍ଟେନବଲ ଡେଭଲପମେଣ୍ଟ) କରିବାକୁ ବିଭିନ୍ନ କ୍ଷେତ୍ରରେ ବିକଳ୍ପର ସନ୍ଧାନ ପାଇଁ ପ୍ରେରଣା ସୃଷ୍ଟି-କରୁଛନ୍ତି । ବିକାଶର ଭାବନାକୁ ଏକ ସାମୂହିକ ଜୀବନ ସ୍ତରକୁ ପ୍ରସାରିତ କରିବା ଓ ଜୀବନର ଗୁଣାତ୍ମକମାନ ବୃଦ୍ଧି ଦିଗରେ ଚେତନା ସୃଷ୍ଟି କରିବା ପାଇଁ ନୂତନ ଭାବନା ବିକଶିତ ହେବାରେ ଲାଗିଛି । ବିକାଶ ପ୍ରକୃତିକୁ ଧ୍ୱଂସକରି ନୁହେଁ ବରଂ ପ୍ରକୃତିର ସନ୍ତୁଳନ ରକ୍ଷା କରି ଏକ ନିରନ୍ତର ଧାରାରେ ପରିଚାଳିତ ହେବା ଆବଶ୍ୟକ ବୋଲି ପରିବେଶ ବିଜ୍ଞାନୀମାନେ ମତ ପୋଷଣ କରୁଛନ୍ତି ।

ଏହି ପୃଷ୍ଠଭୂମିରେ ଆଧୁନିକ ଶିଳ୍ପ ବିକାଶ ଓ ନୂତନ ପ୍ରଯୁକ୍ତି ପରିବେଶ ଉପରେ କ'ଣ ପ୍ରଭାବ ପକାଇବ ତାହାକୁ ବିଚାରକୁ ନିଆଯାଉଛି । ଯେଉଁ ଶିଳ୍ପ, କାରଖାନା ବା ବିକାଶ ସୀମିତ ପ୍ରାକୃତିକ ସମ୍ବଳକୁ ଧ୍ୱଂସ କରୁଛି ତାହାକୁ ପରିହାର କରିବାକୁ ଚେତନା ପ୍ରକାଶ ପାଉଛି । ବିଭିନ୍ନ ସ୍ଥାନରେ ବଡ଼ ବଡ଼ କଳ କାରଖାନା ପରିବେଶ ଉପରେ କୁପ୍ରଭାବ ପକାଉଥିବାରୁ ସେ ସବୁକୁ ବନ୍ଦ କରିବାକୁ ଜନ ଆନ୍ଦୋଳନ ବି ସୃଷ୍ଟି ହେଉଛି । କ୍ଷୁଦ୍ର କ୍ଷୁଦ୍ର ପ୍ରକଳ୍ପ ଓ ପ୍ରକୃତି ପରିବେଶ- ଅନୁକୂଳ ପ୍ରଯୁକ୍ତି ପାଇଁ ଅଧିକରୁ ଅଧିକ ଆଗ୍ରହ ସୃଷ୍ଟି ହେଉଛି । ବିଚିତ୍ରବର୍ଣ୍ଣା ପୃଥିବୀର ଜୈବ ବିବିଧତାକୁ ସୁରକ୍ଷା ଦେବା, ପରିବେଶ ଅନୁକୂଳ ପ୍ରଯୁକ୍ତିର ବିକାଶ ଘଟାଇବା, ପରିବେଶ ପ୍ରତି ସଚେତନତା ସୃଷ୍ଟି କରିବା, ପରିବେଶ ପ୍ରଦୂଷଣକୁ ନିୟନ୍ତ୍ରଣ କରିବା ପାଇଁ ଜନଚେତନତା ବୃଦ୍ଧି ପାଇବାରେ ଲାଗିଛି । ଆମ ଗ୍ରହମଣ୍ଡଳରେ ଗଢ଼ି ଉଠିଥିବା ସଭ୍ୟତାକୁ କିପରି ନିରନ୍ତର ଭାବରେ ସୁରକ୍ଷା

ଦିଆଯାଇପାରିବ ସେଥିପାଇଁ ବିଶ୍ୱ ସ୍ତରରେ କିଛି ଆଲୋଡନ ଗତ ପଚାଶ ବର୍ଷ ଭିତରେ ସୃଷ୍ଟି ହୋଇଛି । ପରିବେଶ ସୁରକ୍ଷା ଆମର ଯେ ଏକ ନୈତିକ କର୍ତ୍ତବ୍ୟ ତାହାକୁ ଶିକ୍ଷାର ପାଠ୍ୟକ୍ରମରେ ସ୍ଥାନ ଦେଇ ସାମାଜିକ ସଚେତନତା ପାଇଁ ପ୍ରୟାସ କରାଯାଇଛି । ପୃଥିବୀର ଆଗାମୀ ପିଢ଼ିର ଲୋକମାନେ ଯେପରି ସୁଖ ସ୍ୱାଚ୍ଛନ୍ଦ୍ୟରେ ରହିପାରିବେ ଓ ସଙ୍କଟର ସମ୍ମୁଖୀନ ହେବେ ନାହିଁ ତାହାକୁ ବିଚାରକୁ ନେବା ଆମର ଏକ ନୈତିକ କର୍ତ୍ତବ୍ୟ ।

ପରିବେଶ ସମ୍ପର୍କରେ ଆମର ନୈତିକ କର୍ତ୍ତବ୍ୟ ବିଷୟଟି ଏବେ ବିଶ୍ୱ ବିଦ୍ୟାଳୟ ସ୍ତରରେ ବି ଗବେଷଣାର ବିଷୟ ହେଲାଣି । ପ୍ରକୃତି ସହ ମଣିଷର ସମ୍ପର୍କ କ'ଣ ହେବା ଆବଶ୍ୟକ ଏ କ୍ଷେତ୍ରରେ ବିଭିନ୍ନ ଦାର୍ଶନିକ ସିଦ୍ଧାନ୍ତ ମାନ ବି ଏ ଭିତରେ ବିକାଶ ଲାଭ କରିଛି । ପରିବେଶକୁ ନେଇ ମାନବ-କେନ୍ଦ୍ରବାଦ, ଜୀବ-କେନ୍ଦ୍ରବାଦ, ବିଶ୍ୱ-କେନ୍ଦ୍ରବାଦ ତିନୋଟି ଦାର୍ଶନିକ ମତ ବି ରହିଛି । ମାନବ କେନ୍ଦ୍ରବାଦ ଅନୁଯାୟୀ ମଣିଷ ହିଁ ସଭ୍ୟତା, ସଂସ୍କୃତିର ମୂଳ ପିଣ୍ଡ । ପ୍ରକୃତି, ପ୍ରାଣୀଜଗତ ମଣିଷର ହିତ ପାଇଁ ଉଦ୍ଦିଷ୍ଟ । ମଣିଷ ସାଧ୍ୟ ଓ ଅନ୍ୟ ସବୁ ସାଧନ ବା ମଣିଷ ପାଇଁ ନିମିତ୍ତ । ଜୀବ କେନ୍ଦ୍ରବାଦ ଅନୁଯାୟୀ ପ୍ରତ୍ୟେକ ଜୀବର ମହତ୍ତ୍ୱ ରହିଛି । ପ୍ରକୃତିରେ ମଣିଷର ଯେଉଁଭଳି ମୂଲ୍ୟ ରହିଛି, ପ୍ରତ୍ୟେକ ପ୍ରାଣୀର ମଧ୍ୟ ସେହିପରି ମହତ୍ତ୍ୱ ରହିଛି । ପ୍ରତ୍ୟେକ ପ୍ରାଣୀ ବିବର୍ତ୍ତନ ପ୍ରକ୍ରିୟାରେ ପରିବେଶରେ ସୃଷ୍ଟି ହୋଇ ପାରିବେଶିକ ଭାରସାମ୍ୟତା ରକ୍ଷା କରୁଛି । ସୁତରାଂ ପ୍ରାଣୀ ଜଗତ ହେଉ ବା ଉଦ୍ଭିଦ ଜଗତ ହେଉ ପ୍ରତ୍ୟେକ ପ୍ରାଣୀ ବା ଉଦ୍ଭିଦର ନିଜସ୍ୱ ମହତ୍ତ୍ୱ ରହିଛି । ପ୍ରତ୍ୟେକ ଜୀବ ପରିବେଶର ଭାରସାମ୍ୟତା ରକ୍ଷା ଦିଗରେ କିଛି ଅବଦାନ ଦେଉଛି । ସୁତରାଂ ଅବିଚାରିତ ଭାବେ ଜୀବନ ବା ବୃକ୍ଷ ନଷ୍ଟ କରିବାର ଅଧିକାର ବ୍ୟକ୍ତିର ନାହିଁ । ଏହି ମତ ବ୍ୟତୀତ ତୃତୀୟ ମତଟି ହେଉଛି ବିଶ୍ୱ-କେନ୍ଦ୍ରବାଦ । ବିଶ୍ୱ କେନ୍ଦ୍ରବାଦ ଅନୁଯାୟୀ ବିଶ୍ୱର ପ୍ରକୃତି ନିଜସ୍ୱ ଧାରାରେ ମହତ୍ତ୍ୱପୂର୍ଣ୍ଣ । ଏକ ଅନୁକୂଳ ପ୍ରାକୃତିକ ପରିବେଶରେ ଜୀବ ଜଗତ ଓ ଉଦ୍ଭିଦ ଜଗତ ସୃଷ୍ଟି ହୋଇଛି । ସୁତରାଂ ବିଶ୍ୱର କୌଣସି ବସ୍ତୁ ଅହିତକର ବା ସଭ୍ୟତା ପ୍ରତିକୂଳ ନୁହେଁ । ପ୍ରକୃତିକୁ ସୁରକ୍ଷା ଦେବା ଆମର ଏକ ନୈତିକ ଦାୟିତ୍ୱ । ପ୍ରକୃତି ନିଜ ଭିତରେ ଭାରସାମ୍ୟତା ରକ୍ଷା କରି ଆସିଛି । ସେହି ଭାରସାମ୍ୟତା ନଷ୍ଟ ହେଲେ ପରିବେଶ ବିପର୍ଯ୍ୟସ୍ତ ହେବ ।

ଏହି ତିନୋଟି ମତ - ମାନବ କେନ୍ଦ୍ରବାଦ, ଜୀବ କେନ୍ଦ୍ରବାଦ ଓ ବିଶ୍ୱକେନ୍ଦ୍ରବାଦ- ଭିତରେ ଅନ୍ତର୍ନିହିତ ସମ୍ପର୍କ ରହିଛି । ତେବେ ଏହି ମତବାଦ ଗୁଡିକ ପରସ୍ପରର ପରିପୂରକ । ଏହି ତିନୋଟି ମତର ସମନ୍ୱୟରେ ଏକ ବିଚାରବୋଧ ସମ୍ପ୍ରତି ବିକଶିତ ହୋଇଛି, ଯାହାକୁ ପ୍ଲାନେଟାରୀ ହ୍ୟୁମାନିଜମ୍ ବା 'ଗ୍ରହଭିତ୍ତିକ ମାନବବାଦ' କୁହାଯାଉଛି । ଏହାର ନିଷ୍କର୍ଷ

ହେଉଛି ସୌରମଣ୍ଡଳରେ ଥିବା ଗ୍ରହ ଭିତରୁ କେବଳ ପୃଥିବୀ ରୂପକ ଗ୍ରହଟିରେ ଜୀବସତ୍ତା ଓ ସଭ୍ୟତା ରହିଛି । ସେହି ସଭ୍ୟତାକୁ ରକ୍ଷା କରିବା ମାନବ ଜାତିର ଏକ ନୈତିକ କର୍ତ୍ତବ୍ୟ । ପୃଥିବୀ ଯେପରି ମଣିଷକୃତ କାର୍ଯ୍ୟଦ୍ୱାରା ଧ୍ୱଂସ ନ ହୁଏ ସେହି ବିଚାରବୋଧ ସାରା ବିଶ୍ୱରେ ରହିବା ଆବଶ୍ୟକ । ଆଣବିକ ଯୁଦ୍ଧ ବା ଆଣବିକ ତେଜସ୍କ୍ରିୟତା ପୃଥିବୀ ପାଇଁ ସବୁଠାରୁ ବିପଦର ବିଷୟ । ସେହିପରି ବିଚାରହୀନ କାର୍ଯ୍ୟଦ୍ୱାରା ଯେପରି ପୃଥିବୀ ଉତପ୍ତ ହୋଇଚାଲିଛି ବା ଜଳବାୟୁରେ ପରିବର୍ତ୍ତନ ହେଉଛି ତାହାକୁ ପ୍ରତିହତ କରିବା ପାଇଁ ବିଜ୍ଞାନ ସାହାଯ୍ୟରେ ପନ୍ଥା ବାହାର କରିବା ଦରକାର । ପରିବେଶର ଅବକ୍ଷୟକୁ କିପରି ରୋକାଯାଇ ପାରିବ ଓ ଜନସଂଖ୍ୟାର ଚାପକୁ ନିୟନ୍ତ୍ରଣ କରିହେବ ଏହାକୁ ଗୁରୁତ୍ୱର ସହ ସବୁ ସ୍ତରରେ ଚିନ୍ତା କରିବାକୁ ହେବ । ବିଶେଷକରି ଆମ ଦେଶ ପରି ଯେଉଁ ଦେଶମାନଙ୍କରେ ଜନସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଉଛି ତାହାକୁ ନିୟନ୍ତ୍ରଣ କରିବାକୁ ପଡିବ । ସୁଖର କଥା ବିଶ୍ୱ ସ୍ତରରେ ଏଥିପାଇଁ ସଚେତନତାର ଏକ ବାୟୁମଣ୍ଡଳ ସୃଷ୍ଟି ହୋଇଛି । ଆଶା କରାଯାଏ ଯେ ବିଶ୍ୱର ବୁଦ୍ଧିଜୀବୀ, ବୈଜ୍ଞାନିକ ଓ ମାନବ ହିତୈଷୀ ରାଷ୍ଟ୍ରନୀତିଜ୍ଞମାନେ ମଣିଷ ଜାତିର ସ୍ଥାୟିତ୍ୱ ପାଇଁ ବିହିତ ପନ୍ଥା ଦେଖାଇବେ ।

(୩.୧୦.୨୦୧୨)



# ପରିବେଶ ଓ ପରମ୍ପରା

ଆମର ପରିବେଶ ଯେପରି ଧୀରେ ଧୀରେ ବଦଳିବାରେ ଲାଗିଛି ସେହିପରି ପ୍ରଦୂଷିତ ହୋଇଚାଲିଛି । ପରିବେଶ ପ୍ରଦୂଷିତ ହେବାର ନାନା କାରଣ ରହିଛି । ପୃଥିବୀର ଜନସଂଖ୍ୟା ଆଶାତୀତ ଭାବରେ ବଢ଼ିବାରେ ଲାଗିଛି । ୧୮୦୦ ମସିହାରେ ପୃଥିବୀର ଲୋକସଂଖ୍ୟା ୧୦୦ କୋଟି ଓ ୧୯୦୦ ମସିହାରେ ୧୬୦ କୋଟି ଥିବା ବେଳେ ବର୍ତ୍ତମାନ କେବଳ ଭାରତର ଲୋକସଂଖ୍ୟା ୧୨୦ କୋଟିରୁ ଅଧିକ ହେଲାଣି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟା ପାଇଁ ନୂଆ ନୂଆ ବସ୍ତି ନିର୍ମିତ ହେବାରେ ଲାଗିଛି । ଶିଳ୍ପ ସଭ୍ୟତାର ଯୁଗ ଆସିବା ପରେ ନାନା ପ୍ରକାରର କଳ କାରଖାନା ଗତ ଦୁଇଶହ ବର୍ଷ ଭିତରେ ଗଢ଼ି ଉଠିଛି । ଆଧୁନିକ ପ୍ରଗତି ସହ ଶିଳ୍ପର ବିକାଶ ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ହୋଇଯାଇଛି । ପ୍ରତ୍ୟେକ ଦେଶରେ କଳକାରଖାନା, ନୂଆ ନୂଆ ପ୍ରଯୁକ୍ତି ଆଧାରିତ ଶିଳ୍ପର ବିକାଶ ଯୋଗୁଁ ପରିବେଶ ପ୍ରଦୂଷିତ ହେଉଛି । ଏହା ସହିତ ଗମନା ଗମନ କ୍ଷେତ୍ରରେ ବିକାଶ ଯୋଗୁଁ ବନ୍ଧ ନିର୍ମାଣ, ରାସ୍ତା ନିର୍ମାଣ ଯୋଗୁଁ ବହୁ ଗଛ କାଟିବାକୁ ପଡୁଛି ଓ ପାହାଡ଼ ଭାଙ୍ଗିବାକୁ ହେଉଛି ଯାହାଦ୍ୱାରା ପରିବେଶ ନାନା ଭାବରେ ପ୍ରଭାବିତ ହେବାରେ ଲାଗିଛି । ପୁନଶ୍ଚ ଗାଡ଼ି, ମଟର, କଳ କାରଖାନା ଚଳାଇବା ପାଇଁ କୋଇଲା, ପେଟ୍ରୋଲ ପରି ଫସିଲ ଜାଳେଣିର ବ୍ୟାପକ ବ୍ୟବହାର ଯୋଗୁଁ ପରିବେଶ ଉପରେ ଏହାର ନାନା କୁପ୍ରଭାବ ପଡୁଛି । ସେହିପରି ପ୍ରତ୍ୟେକ ରାଷ୍ଟ୍ର ନିଜକୁ ସାମରିକ ଶକ୍ତିରେ ବଳଶାଳୀ କରିବାକୁ ନାନା କ୍ଷେପଣାସ୍ତ୍ର ନିର୍ମାଣ କରୁଛି ବା ସେ ସବୁର ପରୀକ୍ଷା କରି ପରିବେଶକୁ ପ୍ରଦୂଷିତ କରୁଛି । ପୃଥିବୀର ସୀମିତ ପ୍ରାକୃତିକ ସମ୍ବଳ ଏସବୁଦ୍ୱାରା ନଷ୍ଟ ହେବାରେ ଲାଗିଛି । ଏସବୁର ସମ୍ମିଳିତ ପ୍ରଭାବରୁ ବାୟୁମଣ୍ଡଳର ଉତ୍ତାପ ଧୀରେ ଧୀରେ ବୃଦ୍ଧି ପାଉଛି । ଜଙ୍ଗଲର ଅବକ୍ଷୟ ହୋଇ ଚାଲିଛି । ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ବାଷ୍ପର ମାତ୍ରା ଆଶାତୀତ ଭାବେ ବଢ଼ି ଚାଲିଛି । କ୍ରମବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ସମସ୍ୟା ଦୂର କରିବାକୁ ଅଧିକ ଉତ୍ପାଦନ ପାଇଁ ନାନା ରାସାୟନିକ ସାର, କୀଟନାଶକ ଜମିରେ ବ୍ୟବହାର କରାଯାଉଛି ଯାହାଦ୍ୱାରା ମାଟିର ଅମ୍ଳତା ବୃଦ୍ଧି ପାଉଛି । ସେସବୁ ଧୋଇ ହୋଇ ଜଳରେ ମିଶିବା ଯୋଗୁଁ ଜଳଉତ୍ସ ଗୁଡ଼ିକ ପ୍ରଦୂଷିତ ହେବାରେ ଲାଗିଛି । ମୋଟ ଉପରେ ଆଧୁନିକ ଜୀବନଶୈଳୀ, କଳ

କାରଖାନାର ବୃଦ୍ଧି, ଜନସଂଖ୍ୟାର ଆଶାତୀତ ଅଭିବୃଦ୍ଧି, ଗମନା ଗମନର ପ୍ରଭୂତ ବିକାଶ, ରାସାୟନିକ ସାର, କୀଟନାଶକର ବହୁଳ ବ୍ୟବହାର ଇତ୍ୟାଦି କାରଣରୁ ପରିବେଶ ନାନା ଭାବରେ ପ୍ରଦୂଷିତ ହେଉଛି । ଏହି ପରିସ୍ଥିତି ସବୁ ଦେଶରେ ଅଳ୍ପ ବହୁତ ଲାଗି ରହିଛି ।

ତେବେ ଆମ ଦେଶରେ ବି ଏହି ପରିସ୍ଥିତି ଗମ୍ଭୀର ହେବାରେ ଲାଗିଛି । ଆମ ଦେଶର ଜନସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି, ଜଙ୍ଗଲର ଅବକ୍ଷୟ ହୋଇଚାଲିଛି, ଜୈବ ବିବିଧତା ଅନେକ ସ୍ଥାନରେ ନଷ୍ଟ ହେବାରେ ଲାଗିଛି । ତେବେ ଏସବୁ ସହ ନାନା ପାରମ୍ପରିକ ବିଶ୍ୱାସ ବି ପରିବେଶ ପ୍ରଦୂଷଣ କ୍ଷେତ୍ରରେ ଏକ ମୁଖ୍ୟ କାରଣ ହେଉଛି ।

ଆମ ସାମାଜିକ ଜୀବନ ପ୍ରବାହରେ ବୈଜ୍ଞାନିକ ସଚେତନତା ଅଭାବରେ ନାନା କୁସଂସ୍କାର, ଧର୍ମଗତ ଆବେଗ, ଅତୀନ୍ଦ୍ରିୟ ମାନସିକତା ବହୁଳ ଭାବେ ରହିଛି । ମଣିଷ ଯେତେବେଳେ ତାର ସାମାଜିକ ପରିବେଶ, ରାଷ୍ଟ୍ରୀୟ ବିଧାନ ଓ ପ୍ରଚଳିତ ବ୍ୟବସ୍ଥା ଉପରେ ନିର୍ଭର କରିପାରେ ନାହିଁ, ସେତେବେଳେ ସେ ଅଲୌକିକତା, ଦୈବୀ ଆଶୀର୍ବାଦ ଓ କଳ୍ପିତ ଦିଅଁ ଦେବତା ଉପରେ ଭରସା କରେ । କୌଣସି ପ୍ରତିକୂଳ ପରିସ୍ଥିତିରୁ ମୁକ୍ତ ହେବାକୁ, କୌଣସି ଲକ୍ଷ୍ୟ ସାଧନ କରିବାକୁ ଓ ଏପରିକି ସାମାଜିକ ହିତ-ସାଧନ ପାଇଁ ଉଦ୍ଦିଷ୍ଟ କୌଣସି ପ୍ରକଳ୍ପର ସଫଳ ରୂପାୟନ ପାଇଁ ସେ ଦିଅଁ ଦେବତାର ଆଶ୍ରୟ ନିଏ, କର୍ମକାଣ୍ଡଦ୍ୱାରା ଦେବତାକୁ ସନ୍ତୁଷ୍ଟ କରିବାର ମାନସିକତା ପୋଷଣ କରେ । ଏସବୁକୁ ପରମ୍ପରାର ପୁଟ ଦିଏ । କେତେକ ବିଶ୍ୱାସ ଯେତେ ଅହେତୁକ, ଅବୈଜ୍ଞାନିକ ହେଲେ ମଧ ତାହାକୁ ପରମ୍ପରା, ଐତିହ୍ୟ କହି ଏକ ଆବେଗ ସୃଷ୍ଟି କରେ ।

ପରମ୍ପରା କହିଲେ ଏକ ଜନଗୋଷ୍ଠୀର କେତେକ ପ୍ରଚଳିତ ବିଶ୍ୱାସ, ଚଳଣି, ଲୋକାଚାର ଓ ଜୀବନଧାରାକୁ ବୁଝାଏ । ସାମାଜିକ ଅସ୍ମିତା ଥିବା ଏକ ଜନଗୋଷ୍ଠୀର ବିଶ୍ୱାସ, ଯଦି ପିଢ଼ିପରେ ପିଢ଼ି ଦେଇ ପ୍ରକାଶିତ ହୁଏ ତାହାକୁ ପରମ୍ପରା କୁହାଯାଏ । ପରମ୍ପରା କାଳକ୍ରମେ ଏକ ଭୌଗୋଳିକ ଭୂଖଣ୍ଡର ଜନଗୋଷ୍ଠୀର ସଂସ୍କୃତି ପାଲଟିଯାଏ । ଅବଶ୍ୟ ଗୋଟିଏ ଭୌଗୋଳିକ ଭୂଖଣ୍ଡର ଏକ ନିର୍ଦ୍ଦିଷ୍ଟ ଅସ୍ମିତା ଥିବା ଏକ ଜନଗୋଷ୍ଠୀ ନିଜର ଚଳଣି, ବିଶ୍ୱାସ ଓ ଜୀବନଦୃଷ୍ଟିକୁ ନିଜର ପରମ୍ପରା କହେ । ଅର୍ଥାତ୍ ପ୍ରତ୍ୟେକ ଜନଗୋଷ୍ଠୀ ବା ଏକ ନିର୍ଦ୍ଦିଷ୍ଟ ପରିଚୟ ଥିବା ଜନ ସମୂହର କିଛି ପରମ୍ପରା ଥାଏ । ସେଗୁଡିକ ଜନଗୋଷ୍ଠୀର ବିଶ୍ୱାସ, ଚଳଣି, ଭାବାବେଗ ଯାହା ସାମାଜିକ ଅଭିବ୍ୟକ୍ତି ମଧ ଦେଇ ପୁଷ୍ଟ ହୋଇଥାଏ ।

ତେବେ ପରମ୍ପରାମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ, ଯଥା ଧାର୍ମିକ ଓ ଅଣଧାର୍ମିକ । ଧାର୍ମିକ ପରମ୍ପରା ସହିତ କିଛି ବିଶ୍ୱାସ, ଜୀବନଦୃଷ୍ଟି, କର୍ମକାଣ୍ଡ ସଂଶ୍ଳିଷ୍ଟ ଥାଏ । ଧାର୍ମିକ ଭାବନା ବା ଆବେଗକୁ ଛାଡି ଅନ୍ୟ ଯେଉଁ ପ୍ରଥା, ଲୋକାଚାର,

କଳା, ସଙ୍ଗୀତ ଇତ୍ୟାଦି ସାମାଜିକ ଜୀବନ ପ୍ରବାହ ସହ ସଂଶ୍ଳିଷ୍ଟ ସେ ସବୁକୁ ଅଣଧାର୍ମିକ ପରମ୍ପରା ଭାବେ ନିଆଯାଇପାରେ । ଏହି ଦୃଷ୍ଟିରୁ ଦେଖିଲେ ପରମ୍ପରା ଏକ ଜଟିଳ ସାମାଜିକ ଅଭିବ୍ୟକ୍ତି ଯାହା ଏକ ଜନଗୋଷ୍ଠୀ ସହ ବିଭିନ୍ନ ଭାବରେ ସଂଶ୍ଳିଷ୍ଟ ହୋଇ ରହିଥାଏ । ପୁନଶ୍ଚ ଏକ ସମୂହ ଭିତରେ ଭାଷାଗତ, ଧର୍ମଗତ ବା ସାଂସ୍କୃତିକ ଭିନ୍ନତା ଥିବା ଗୋଷ୍ଠୀମାନ ରହିପାରେ ଓ ପ୍ରତ୍ୟେକ ଗୋଷ୍ଠୀର ନିଜସ୍ୱ କିଛି ପରମ୍ପରା ରହିପାରେ । ଯେଉଁ ଭାବଧାରା, ବିଶ୍ୱାସ, ଚଳଣି ପୁରୁଷ ପୁରୁଷ ଧରି ବା ପୁରୁଷାନୁକ୍ରମେ ଏକ ଜନଗୋଷ୍ଠୀ ଭିତରେ ଅଭିବ୍ୟକ୍ତ ହେଉଥାଏ ତାହାକୁ ପରମ୍ପରା କୁହାଯାଏ ।

ଧାର୍ମିକ ପରମ୍ପରା ଜନିତ ବିଶ୍ୱାସ କିପରି ପରିବେଶ ପ୍ରଦୂଷଣ ପାଇଁ ବି ସହାୟକ ହେଉଛି ତାହାର କିଞ୍ଚିତ ସୂଚନା ଏଠାରେ ଦିଆଯାଇପାରେ । ଧର୍ମ ଯେହେତୁ ଶହ ଶହ ବର୍ଷ ଧରି ସାମାଜିକ ଜୀବନକୁ ନାନା ଭାବେ ପ୍ରଭାବିତ କରିଆସିଛି ଓ ଧର୍ମର ଏକ ଗଭୀର ପ୍ରଭାବ ରହିଛି ସେ ଦୃଷ୍ଟିରୁ ଧାର୍ମିକ ବିଶ୍ୱାସ ଆଧାରରେ ନାନା ପରମ୍ପରା ସମାଜରେ ସୃଷ୍ଟି ହୋଇଛି । ଅବଶ୍ୟ କାଳକ୍ରମେ ସାମାଜିକ ଗତିଶୀଳତା ବୃଦ୍ଧି, ଆଧୁନିକ ବିଜ୍ଞାନର ପ୍ରଭାବ ଓ ସାର୍ବଜନୀନ ମୂଲ୍ୟବୋଧର ବିକାଶ ଇତ୍ୟାଦି କାରଣରୁ କେତେକ ପରମ୍ପରା ଯାହା ସମାଜ ପାଇଁ ଅନିଷ୍ଟକର ମନେ ହେଉଛି ତାହା କାଳକ୍ରମେ ପରିବର୍ତ୍ତିତ ହୋଇଛି । ଭାରତୀୟ ସମାଜରେ ବହୁ ଶାକ୍ତ ମନ୍ଦିରରେ 'ପଶୁବଳି' ପ୍ରଥା ଦୀର୍ଘ ଦିନ ଧରି ଚଳି ଆସୁଥିଲେ ବି ସେ ସବୁ ସାମ୍ପ୍ରତିକ ବିଚାରବୋଧରେ ଅହେତୁକ ଓ ହିଂସାତ୍ମକ ମନେ ହେବାରୁ ସେ ସବୁ ପ୍ରାୟତଃ ବନ୍ଦ ହୋଇ ଆସିଲାଣି । ତେବେ ସାମାଜିକ ଗତିଶୀଳତା ଯେତିକି ବୃଦ୍ଧି ପାଉଛି ବିଭିନ୍ନ ଅଞ୍ଚଳର ବିଶ୍ୱାସ, ଚଳଣି ଓ କର୍ମକାଣ୍ଡ ଅନ୍ୟ ଅଞ୍ଚଳକୁ ପ୍ରସାରିତ ହେବାରେ ଲାଗିଛି । ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ପରମ୍ପରା କାଳକ୍ରମେ ଅନ୍ୟ ଅଞ୍ଚଳକୁ ପ୍ରସାରିତ ହେଉଛି ଓ ଧୀରେ ଧୀରେ ଜନ ଜୀବନର ଅଙ୍ଗ ପାଲଟୁଛି । ଏହା ସହିତ ନୂତନ ପ୍ରଯୁକ୍ତି ସାହାଯ୍ୟରେ ଓ ଗଣମାଧ୍ୟମର ବ୍ୟାପକତା ଯୋଗୁଁ କୌଣସି ପରମ୍ପରା ଆଉ ସ୍ଥାନୀୟ ହୋଇ ରହୁନାହିଁ । ଏହା ଧୀରେ ଧୀରେ ବହୁ ଅଞ୍ଚଳକୁ ପ୍ରସାରିତ ହେବାରେ ଲାଗିଛି । ରଥଯାତ୍ରା, ଗଣେଶ ପୂଜା, ଦୁର୍ଗା ପୂଜା, ଦୀପାବଳି ଇତ୍ୟାଦି ଧାର୍ମିକ ପରମ୍ପରା ଓ କର୍ମକାଣ୍ଡ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଉଦ୍ଭବ ହୋଇଥିଲେ ବି ଧୀରେ ଧୀରେ ସେସବୁ ଜାତୀୟ ସ୍ତରରେ ପାଳିତ ହେଉଛି । ରଥଯାତ୍ରା ଯାହା ପୁରୀର ଜଗନ୍ନାଥ ମନ୍ଦିରର ଏକ ପରମ୍ପରା ତାହା ଏବେ ଭାରତର ବିଭିନ୍ନ ସ୍ଥାନରେ କରାଯାଉଛି । ଗଣେଶ ପୂଜା ଏକଦା ମହାରାଷ୍ଟ୍ରରେ ପାଳିତ ହେଉଥିଲା, ଦୁର୍ଗାପୂଜା ବଙ୍ଗଳାର ଏକ ପର୍ବ ଥିଲା ଓ ଦୀପାବଳି ଯାହା ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ଭିତରେ ସୀମିତ ଥିଲା ତାହା ଏବେ ସାରା ଦେଶର ବିଭିନ୍ନ ଅଞ୍ଚଳରେ ବେଶ୍ ଆନନ୍ଦ ଉଲ୍ଲାସରେ ପାଳିତ ହେଉଛି । ଏସବୁ ସହିତ ଧାର୍ମିକ ଆବେଗ ସଂଶ୍ଳିଷ୍ଟ ହୋଇ ଏହାକୁ ସାଂସ୍କୃତିକ ବୈଭବର ଆଖ୍ୟା ଦିଆଯାଉଛି ।

ପୂଜା ପାର୍ବଣ, କର୍ମକାଣ୍ଡ ଇତ୍ୟାଦି ସହିତ ଧାର୍ମିକ ଆବେଗ ଏପରି ସଂଶ୍ଳିଷ୍ଟ ହୋଇଥାଏ ଯେ କୌଣସି ଧାର୍ମିକ ପରମ୍ପରାର ଅନିଷ୍ଟକର ଦିଗ ଉପରେ ସାମାଜିକ ସଚେତନତା ପ୍ରକାଶ ପାଏ ନାହିଁ । ପୂଜା ପାର୍ବଣର ପରିବେଶ ଉପରେ କି ପ୍ରକାର ଅନିଷ୍ଟ ପ୍ରଭାବ ରହୁଛି ତାହା ନେଇ ସଚେତନତା ପ୍ରକାଶ ପାଉନାହିଁ । ଆମ ପରିବେଶ ଯେତେ ଯେତେ କାରଣରୁ ପ୍ରଦୂଷିତ ହେଉଛି ସେ ଭିତରୁ ଆମର ପର୍ବପର୍ବାଣୀ, କର୍ମକାଣ୍ଡ ଓ ଧାର୍ମିକ ବିଶ୍ୱାସ ବି ଏକ ପ୍ରଧାନ କାରଣ । ଦୀପାବଳିରେ ଆମର ଚତୁର୍ଦ୍ଦିଗରେ ଯେଉଁ ବାଣ ଫୁଟାଯାଏ ଓ ଯେଉଁ ବିଷାକ୍ତ ବାଷ୍ପ ବାୟୁମଣ୍ଡଳରେ ମିଶେ ତାହା ଯଥେଷ୍ଟ କ୍ଷତିକାରକ ହୋଇଥିଲେ ବି ସେ ବିଷୟରେ ଆମର ସାମାଜିକ ସଚେତନତା ପ୍ରକାଶ ପାଏନାହିଁ । ଆଗେ ରଥଯାତ୍ରା କେବଳ ପୁରୀରେ ସୀମିତ ରହିଥିଲା ଓ ରଥ ନିର୍ମାଣ ପାଇଁ ଜଙ୍ଗଲରୁ ଶତାଧିକ ଗଛ କାଟିବାକୁ ହେଉଥିଲା । ଏବେ ଓଡିଶାର ପୁର ପଲ୍ଲୀରେ ବି ରଥଯାତ୍ରା ପାଳିତ ହେଉଛି ଓ ରଥ ନିର୍ମାଣ ପାଇଁ ପ୍ରତ୍ୟେକ ଅଞ୍ଚଳରେ ଅନେକ ଗଛ କାଟିବାକୁ ପଡୁଛି । ଧାର୍ମିକ ଆବେଗଦ୍ୱାରା କରାଯାଉଥିବା କାର୍ଯ୍ୟ ପରିବେଶ ପାଇଁ ଯାହା କ୍ଷତିକାରକ ହେଲେ ବି ତାହା ପ୍ରତି ଅଙ୍କୁଶ ଲଗାଯାଇ ପାରୁନାହିଁ । ଗଣେଶ ପୂଜା, ଦୁର୍ଗାପୂଜା, ଲକ୍ଷ୍ମୀପୂଜା, କାଳୀପୂଜା, କାର୍ତ୍ତିକେଶ୍ୱର ପୂଜା, ସରସ୍ୱତୀ ପୂଜା, ଖୁଦୁରୁକୁଣୀ ଓଷା ଇତ୍ୟାଦି ବହୁ ପୂଜା ଆମ ସାମାଜିକ ଜୀବନରେ ବିସ୍ତାର ଲାଭ କରିବାରେ ଲାଗିଛି । ଆଗେ ମୁଷ୍ଟିମେୟ ଶିକ୍ଷାନୁଷ୍ଠାନ ମାନଙ୍କରେ ଗଣେଶ ପୂଜା ପାଳନ କରାଯାଉଥିଲା, ଏବେ ବହୁ ଅଞ୍ଚଳରେ ଓ ଗୋଟିଏ ସହରର ବିଭିନ୍ନ ସାହି ବସ୍ତିରେ ବି ଏସବୁ ପୂଜା କରାଯାଉଛି । ତେବେ ଏହି ମୂର୍ତ୍ତି ଗୁଡିକରେ ରାସାୟନିକ ରଙ୍ଗ ଦିଆଯାଇ ମୂର୍ତ୍ତି ଗୁଡିକୁ ଆକର୍ଷଣୀୟ କରାଯାଉଛି । ମୂର୍ତ୍ତିଗୁଡିକୁ ବିଶ୍ୱାସ ଅନୁଯାୟୀ ନେଇ ପୋଖରୀ, ଯୋର ବା ନଦୀମାନଙ୍କରେ ବିସର୍ଜ୍ଜନ କରାଯାଉଛି । ମୂର୍ତ୍ତିର ଛାଞ୍ଚରେ ବ୍ୟବହୃତ କୁଟା ଜଳରେ ପଚି ଜଳକୁ ଦୂଷିତ କରୁଛି । ତେବେ ମୂର୍ତ୍ତିମାନଙ୍କରେ ବ୍ୟବହୃତ ହେଉଥିବା ରାସାୟନିକ ରଙ୍ଗଗୁଡିକ ଜଳଚର ପ୍ରାଣୀମାନଙ୍କ ପାଇଁ ଅତ୍ୟନ୍ତ କ୍ଷତିକାରକ ଜଣାଯାଏ । ଏପରିକି କୀଟନାଶକ ପରି ଏହି ରଙ୍ଗ ଗୁଡିକ ମାଛ ମାନଙ୍କ ଦେହରେ ଭୟଙ୍କର ରୋଗ ସୃଷ୍ଟି କରୁଥିବା ଓ ସେହି ମାଛକୁ ଖାଇବା ଦ୍ୱାରା ମଣିଷମାନେ ବି ନାନା ରୋଗରେ ଆକ୍ରାନ୍ତ ହେଉଥିବା ପରିବେଶବିତ୍‌ମାନେ ମତପୋଷଣ କରୁଛନ୍ତି । ଏତଦ୍‌ବ୍ୟତୀତ ପାରିବାରିକ ଶ୍ରାଦ୍ଧ ଓ ଘରର ପୂଜାରେ ବ୍ୟବହୃତ ବସ୍ତୁକୁ ଲୋକମାନେ ଡଷ୍ଟବିନରେ ନ ପକାଇ ତାକୁ ଆଣି ପୋଖରୀ ଜଳରେ ପକାଇବା ଦେଖାଯାଏ । ଏହି ଧାରାରେ ଜଳ ଯେ କେତେ ଦୂଷିତ ହେଉଛି ତାହା ପ୍ରତି କୌଣସି ସାମାଜିକ ସଚେତନତା ପ୍ରକାଶ ପାଉନାହିଁ ।

ଆଜକୁ ପ୍ରାୟ ପଚାଶ ବର୍ଷ ତଳେ ଗ୍ରାମମାନଙ୍କରେ ଜଳର ଉତ୍ସଗୁଡିକ ଏପରି ପ୍ରଦୂଷଣ ମୁକ୍ତ ଥିଲା ଯେ ସେ ସବୁ ପାଣିକୁ ଲୋକମାନେ ପିଉଥିଲେ । ଏ କ୍ଷେତ୍ରରେ

ମୋର ଅନେକ ବ୍ୟକ୍ତିଗତ ସ୍ମୃତି ରହିଛି । ନଦୀକୂଳରେ ଅବସ୍ଥିତ ଗ୍ରାମମାନଙ୍କର ଲୋକମାନେ ନଦୀ ଜଳକୁ ପାନୀୟ ଜଳ ଭାବେ ବ୍ୟବହାର କରୁଥିଲେ । ଶରତ ଋତୁରେ ବିଲମାନଙ୍କର ସ୍ୱଚ୍ଛ ଜଳକୁ ସମସ୍ତେ ବିନା ଦ୍ୱିଧାରେ ପିଇ ପାରୁଥିଲେ । ଓଡିଶାର ଗ୍ରାମମାନଙ୍କରେ ନଳକୂପ ଆସିବା ପୂର୍ବରୁ ଲୋକମାନେ ଯୋର ଓ ନଦୀର ଜଳକୁ ପାନୀୟ ଜଳ ଭାବେ ବ୍ୟବହାର କରୁଥିଲେ । ଏବେ କେଉଁଠି ପ୍ରାକୃତିକ ଉତ୍ସର ପାଣି ପିଇବା ନିରାପଦ ମନେ ହେଉନାହିଁ । ଆମର ଜଳ ଉତ୍ସଗୁଡିକ ନାନା କାରଣରୁ ଆଜି ପ୍ରଦୂଷିତ ହେବାରେ ଲାଗିଛି ଓ ସେହି ପରିପ୍ରେକ୍ଷୀରେ ଧାର୍ମିକ ପରଂପରା ଓ ତଦ୍‌ଜନିତ ବିଶ୍ୱାସ ବି ଏହି ଦୂଷିତୀକରଣ ପାଇଁ କାରଣ ହେଉଛି । ଅଧିକନ୍ତୁ ଏହି ଦୂଷିତ ପରିବେଶ ଯୋଗୁଁ କର୍କଟ ରୋଗ ପରି ମାରାତ୍ମକ ରୋଗମାନ ଏବେ ଆଶାତୀତ ଭାବେ ବୃଦ୍ଧି ପାଇବାରେ ଲାଗିଛି ।

ସେହିପରି ଆଜିକାଲି ପୂଜା ପାର୍ବଣରେ ଯେପରି ଶବ୍ଦ ପ୍ରଦୂଷଣ ସୃଷ୍ଟି କରାଯାଉଛି ତାହା ବି ବେଶ୍ ଉଦ୍‌ବେଗଜନକ । ନାନା ପୂଜାସ୍ଥଳୀରେ ଓ ଧର୍ମପୀଠ ମାନଙ୍କରେ ଏତେ ଉଚ୍ଚସ୍ୱରରେ ମାଇକ ବଜା ଯାଉଛି ଯାହାର ମନ୍ଦ ଦିଗ ପ୍ରତି ଆମେ ସଚେତନ ହେଉନାହୁଁ । ଏପରିକି ଶବ୍ଦ ପ୍ରଦୂଷଣ ଜନିତ ଅତ୍ୟାଚାରରୁ ସାଧାରଣ ମଣିଷଟି ରକ୍ଷା ପାଉନାହିଁ । ଡାକ୍ତରଖାନାର ରୋଗୀ ବି ସେଥିରୁ ମୁକ୍ତି ପାଇପାରୁନାହିଁ । ଏହାର ପ୍ରତ୍ୟକ୍ଷ ଅନୁଭୂତି, ବିଭିନ୍ନ ସହରରେ ସାଧାରଣ ଘଟଣା ହୋଇ ଯାଉଛି ।

ଧାର୍ମିକ ବିଶ୍ୱାସ, ପରମ୍ପରା ପାଳନ କରିବାରେ କେହି ବାଧା ସୃଷ୍ଟି କରିବ ନାହିଁ । କିନ୍ତୁ ଯେତେବେଳେ ଏହି ବିଶ୍ୱାସ ଓ  କାର୍ଯ୍ୟଦ୍ୱାରା ବୃହତ୍ତର ସାମାଜିକ ଜୀବନର କ୍ଷତିହୁଏ, ପରିବେଶ ପ୍ରତି ବିପଦ ଆସେ ଓ ଏହାର ନକାରାତ୍ମକ ପ୍ରଭାବ ରହେ ସେହି ବିଶ୍ୱାସକୁ ବାଦ୍ ଦେବା ଆବଶ୍ୟକ । ଏହା ଛଡା ଆଧୁନିକ ପ୍ରଯୁକ୍ତି ଓ ବିଜ୍ଞାନର ସାଧନମାନଙ୍କୁ ଧାର୍ମିକ ପୂଜା ପାର୍ବଣରେ ବହୁଳ ବିନିଯୋଗ କରିବା ଏକ ବିଡମ୍ବନା ଅଟେ ।

ଉପସଂହାରରେ ଆମ ପରିବେଶକୁ ପ୍ରଦୂଷଣମୁକ୍ତ ରଖିବା ଆମର ଏକ ନୈତିକ କର୍ତ୍ତବ୍ୟ । ଆମ ଚତୁଃପାର୍ଶ୍ୱରେ ମାଟି, ପାଣି, ପବନକୁ ଆମେ ଯଦି ବିଷାକ୍ତ କରିଚାଲିବା, ଗଛମାନଙ୍କୁ କାଟି ପରିବେଶର ସନ୍ତୁଳନକୁ ଧ୍ୱଂସ କରିବା, ତେବେ ତାର କୁପରିଣାମ ଆମକୁ ବା ଆମର ଆଗାମୀ ବଂଶଧରମାନଙ୍କୁ ଭୋଗିବାକୁ ହେବ । ସାରା ପୃଥିବୀରେ ପରିବେଶ ନେଇ ସଚେତନତା ପ୍ରକାଶ ପାଉଥିବା ବେଳେ ଆମେ ସେ ପ୍ରତି ସ୍ପର୍ଶକାତରଶୂନ୍ୟ ରହିବା ଏକ ଆତ୍ମଘାତୀ ଦୃଷ୍ଟିଭଙ୍ଗୀ କହିଲେ ଅତ୍ୟୁକ୍ତି ହେବନାହିଁ ।

(୩୧.୧୦.୨୦୧୨)





ଲେଖକ ଧନେଶ୍ୱର ସାହୁଙ୍କର ଜନ୍ମ ୧୯୪୯ରେ ଢେଙ୍କାନାଳ ଜିଲ୍ଲାର ଭୁବନରେ। ଦର୍ଶନ ବିଭାଗରେ ଅଧ୍ୟାପକ ଭାବେ ବିଭିନ୍ନ ସରକାରୀ ମହାବିଦ୍ୟାଳୟମାନଙ୍କରେ ୧୯୭୪ରୁ ଅଧ୍ୟାପନା କରି ୨୦୦୭ରେ ବି.ଜେ.ବି. ସ୍ୱୟଂଶାସିତ ମହାବିଦ୍ୟାଳୟରୁ ବିଭାଗୀୟ ମୁଖ୍ୟ ଭାବେ ଅବସର ଗ୍ରହଣ।

ସମକାଳର ଓଡ଼ିଆ ପ୍ରବଂଧ ସାହିତ୍ୟ କ୍ଷେତ୍ରରେ ଅଧ୍ୟାପକ ସାହୁଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ। ମୌଳିକ ବିଚାରଧାରା, ନିରପେକ୍ଷ ଦୃଷ୍ଟିଭଙ୍ଗୀ ଓ ଯୁକ୍ତିନିଷ୍ଠ ଅଭିବ୍ୟକ୍ତି ତାଙ୍କ ଲେଖାର ବୈଶିଷ୍ଟ୍ୟ। ପ୍ରବଂଧ କ୍ଷେତ୍ରରେ ୨୦୧୦ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଓ ୨୦୧୪ କେ. ବୀରମଣି ଆୱାର୍ଡ୍ ଫର ସୋସିଆଲ ଜଷ୍ଟିସ୍ ଆନ୍ତର୍ଜାତିକ ପୁରସ୍କାରରେ ସେ ସମ୍ମାନିତ।

ଇଂରାଜୀ ପୁସ୍ତକ ବ୍ୟତୀତ ଓଡ଼ିଆରେ ଧର୍ମର ଊର୍ଦ୍ଧ୍ୱରେ; ଆବ୍ରାହମ କୋଭୁର; ଧର୍ମ, ଦର୍ଶନ ଓ ସମାଜ; ଭାରତୀୟ ଦର୍ଶନରେ ନିରୀଶ୍ୱରବାଦ; ସଂସ୍କୃତି ଓ ସର୍ବୋଦୟ; ଗାନ୍ଧୀ ବିଜ୍ଞାନ ଓ ମାନବବାଦ; ଜୀବନର ମୂଲ୍ୟ ଓ ହେତୁବାଦ ତାଙ୍କର ସୃଜନ-ସୃଷ୍ଟି। ଗୋରାଙ୍କ ଦୃଷ୍ଟିରେ ଗାନ୍ଧୀ ଓ ନିରୀଶ୍ୱରବାଦ; ଭାରତରେ ଜାତିପ୍ରଥାର ଉତ୍ପତ୍ତି ଓ ସ୍ୱରୂପ; ପେରିୟାରଙ୍କ ରଚନା ତାଙ୍କର ତିନୋଟି ସୁଖପାଠ୍ୟ ଅନୁବାଦ। ଜଣେ ପ୍ରାବଂଧିକ, ସ୍ତମ୍ଭକାର, ହେତୁବାଦୀ ବୁଦ୍ଧିଜୀବୀ ଓ ସଂସ୍କାରକ ଭାବେ ଓଡ଼ିଶା ଓ ଓଡ଼ିଶା ବାହାରେ ପରିଚିତ।



**Gyanajuga Publication**
**Bhubaneswar, Odisha**
Email : contact@gyanajuga.com
website : www.gyanajuga.com


ISBN 93-85798-24-5
9 789385 798245